ଅନୁବାଦ – ଅବନୀ କୁମାର ବରାଳ

ସଂପାଦନା – ବୈଷ୍ଣବ ଚରଣ ପରିଡ଼ା

**Николай Островский**

КАК ЗАКАЛЯЛАСЬ СТАЛЬ

Роман в двух книгах

*На языке ория*

**Nikolai Ostrovsky**

HOW THE STEEL WAS TEMPERED

A Novel in Two Parts

*In Oriya*



ମୁଖ୍ୟ ପରିବେଷକ –
ନବଯୁଗ ଗ୍ରନ୍ଥାଳୟ, ବକ୍ସିବାଜାର ରୋଡ୍,
କଟକ-୭୫୩୦୦୧

ସୋଭିଏତ୍ ୟୁନିଅନ୍‌ରେ ମୁଦ୍ରିତ

$O\frac{4702010200-164}{031(01)-88}234-87$

ISBN 5-05-001351-8

# ସୂଚୀପତ୍ର

# ପ୍ରଥମ ପରିଚ୍ଛେଦ

"ତମମାନଙ୍କ ଭିତରୁ ଯେଉଁମାନେ ଇଷ୍ଟର ଛୁଟି ଆଗରୁ ପରୀକ୍ଷା ଦେବା ପାଇଁ ମୋ ଘରକୁ ଆସିଥିଲେ, ଛିଡ଼ାହୁଅ !"

ଧର୍ମଯାଜକ ବେଶ ପିନ୍ଧିଥିବା ମୋଟାସୋଟା ହୋଇ ଭଦ୍ରଲୋକ ପଚାରିଲେ । ତାଙ୍କ ବେକରୁ ବେଶ୍ ଓଜନଦାରିଆ କ୍ରୁଶ ଝୁଲୁଥାଏ ଏବଂ ସାରା ଶ୍ରେଣୀଟା ତାଙ୍କର ଅମଙ୍ଗଳ କଟମଟ ଚାହାଣୀରେ ଚଟପଟ ହୋଇ ପଡ଼ିଥାଏ ।

ତାଙ୍କର ଛୋଟ ଛୋଟ ଆଖି ଦିଇଟା ସତେ ଯେମିତି ଛ'ଟିଯାକ ପିଲାଙ୍କ ଭିତରେ ଗଳିଯାଉଥାଏ, ଯେଉଁ ଚାରୋଟି ପୁଅ ଆଉ ଦିଓଟି ଝିଅ ଭୟରେ ସେ ପୋଷାକ ଆଡ଼କୁ ଚାହିଁ, ନିଜ ଜାଗାରୁ ଉଠି ଛିଡ଼ା ହେଲେ ।

ଝିଅ ଦିଓଟିଙ୍କ ଆଡ଼କୁ ବୁଲିପଡ଼ି ଧର୍ମଯାଜକ କହିଲେ, "ତମେ ବସିପଡ଼ ।"

ନିଶ୍ୱାସ ମାରି ଖୁସିରେ ଝିଅ ଦୁଇଟି ସାଙ୍ଗେ ସାଙ୍ଗେ ବସିପଡ଼ିଲେ ।

ଫାଦର ଭାସିଲିଙ୍କର କୁତୁକୁତୁ ଆଖି ଏଥର ବାକି ଚାରିଜଣଙ୍କ ଉପରେ ପଡ଼ିଲା ।

"ଏଥର, ମୋ ସୁନା ପିଲାଗୁଡ଼ାକ, ଏଠିକି ଚାଲିଆସ !"

ଫାଦର ଭାସିଲି ନିଜ ଚଉକିଟାକୁ ପଛକୁ ଠେଲିଦେଇ ଉଠିଲେ ଏବଂ ପାଖକୁପାଖ ଲଗାଲଗି ହୋଇ ଛିଡ଼ାହୋଇଥିବା ଦଳଟିଯାକ ପିଲାଙ୍କ ଆଡ଼କୁ ଆଗେଇଗଲେ ।

"ତମ ଭିତରୁ କେଉଁ ବଦ୍‌ମାସ ସିଗାରେଟ୍ ଟାଣେ ?"

"ଆମେ କେହି ସିଗାରେଟ୍ ଟାଣୁ ନାହିଁ", ଚାରିହେଁ ଏକାଠି କୁଁ-କୁଁ ହୋଇ କହିଲେ ।

ଧର୍ମଯାଜକଙ୍କ ମୁହଁକୁ ରକ୍ତ ଚହଟି ଗଲା ।

"ତମେ କେହି ଧୂଆଁ ପିଅ ନାହିଁ ? ଏଁ ? ବଜ୍ଜାତ୍ ! ତା'ହେଲେ କିଏ ସେ ଚକଟା ଅଟା ଉପରେ ତମାଖୁ ରଖିଲା ? ଏଁ ? ତମେ କେହି ଧୂଆଁ ପିଅ ନାହିଁ, ନା ? ଆଚ୍ଛା ଦେଖାଯିବ ଧୂଆଁ ପିଅ କି ନାହିଁ । ଏଥର ତମର ପକେଟ୍‌ସବୁ ଓଲଟାଇ ଦେଖାଇଲ । ଦେଖାଅ ! ଆସ ... ଦେଖାଅ ମୁଁ କହୁଛି !"

ତିନୋଟି ପିଲା ନିଜ ନିଜ ପକେଟ୍ ଖାଲିକରି, ପକେଟ୍‌ରେ ଥିବା ଜିନିଷପତ୍ର ଟେବୁଲ ଉପରେ ରଖିବାକୁ ଆଗେଇ ଆସିଲେ ।

ଧର୍ମଯାଜକ ବେଶ୍ ସାବଧାନ ହୋଇ ପକେଟ୍‌ର ଭାଙ୍ଗସବୁ ତନଖି କଲେ, କାଳେ ତମାଖୁ ଗୁଣ୍ଡ ରହିଥିବ ବୋଲି । ମାତ୍ର କିଛି ପାଇଲେ ନାହିଁ । ଏଥର ସେ ଚତୁର୍ଥ ପିଲା ଆଡ଼କୁ ମୁହାଁଇଲେ । ପାଉଁଶିଆ ରଙ୍ଗର କାମିଜ ଆଉ ଆଣ୍ଠୁରେ ତାଳିପକା ହୋଇଥିବା ଗୋଟିଏ ନୀଳ ରଙ୍ଗର ଟ୍ରାଉଜର ସେ ପିନ୍ଧିଛି । କଳା କଳା ଆଖି ପିଲାଟାର ।

"ତୁ କାହିଁକି ସେଠି କଣ୍ଢେଇଟାଏ ଭଳି ଛିଡ଼ା ହୋଇଛୁ ?"

ପ୍ରଶ୍ନକର୍ତ୍ତାଙ୍କ ଆଡ଼କୁ ନୀରବରେ ଏକ ଘୃଣାବ୍ୟଞ୍ଜକ ଦୃଷ୍ଟି ପକାଇଲା ପିଲାଟି ।

"ମୋର କୌଣସି ପକେଟ୍ ନାହିଁ", ଟ୍ରାଉଜରର ଦୁଇ କଡ଼ରେ ହାତ ମାରି ଦେଖାଇ ଧୀର ସ୍ୱରରେ ସେ କହିଲା ।

"ପକେଟ୍ ନାହିଁ... ନାଁ ? ତୁ ଭାବୁଛୁ, ମୋ ଦଳା ଅଟାଗୁଡ଼ାକ ନଷ୍ଟ କରିଦେବା ପାଇଁ କିଏ ଏମିତି ବଜ୍ଜାତି କରିଛି, ସେକଥା ମୁଁ ଜାଣି ନାହିଁ ବୋଲି, ନାଁ ? ତୋତେ ଏଥର ଛାଡ଼ିଦେବି ବୋଲି ଭାବୁଛୁ ? ଆଉ ନୁହଁ ରେ ପିଲା । ଏଥରକ ତୋତେ ଭୋଗିବାକୁ ପଡ଼ିବ । ଗତଥର ଖାଲି ତୋ ମା ବିକଳରେ କହିଲା ବୋଲି ତୋତେ ସ୍କୁଲରେ ରଖିଲି । ଆଉ ନୁହଁ ! ଏଥରକ ତୋର ଶେଷ ପାଳି । ଯା' ନିକଲ୍ ଏଥର", ପିଲାଟାର କାନକୁ ଜୋର୍‌ରେ ଧରି, ଘୋଷାରି ଆଣି ବାରଣ୍ଡାକୁ ପେଲି ଦେଇ, କବାଟକୁ ଦୁମ୍‌କରି ବନ୍ଦ କରିଦେଲେ ସେ ।

ସାରା ଶ୍ରେଣୀ ଚୁପ୍‌ଚାପ୍ ହୋଇ ବସିଥାଏ । କେହି କିଛି କହୁ ନଥାନ୍ତି । ଜଣେହେଲେ ପିଲା ବୁଝିପାରୁ ନଥାଏ, ପାଭେଲ୍ କୋର୍ଚ୍ଚାଗିନ୍‌କୁ କାହିଁକି ତଡ଼ିଦିଆଗଲା । ହେଲେ ସେର୍ଗେଇ ବ୍ରୁଝାକ୍, ପାଭେଲ୍‌ର ଅନ୍ତରଙ୍ଗ ବନ୍ଧୁ ଏକଥା ଜାଣିଥାଏ । ତାକୁ ଧର୍ମଯାଜକଙ୍କ ରୋଷେଇଘର ଝରକାବାଟେ ମୁଠାଏ ବାଡ଼ି ତମାଖୁ, ତାଙ୍କର ଇଷ୍ଟର କେକ୍ ପାଇଁ ଦଳା ହୋଇ ଥୁଆହୋଇଥିବା ମଇଦା ଉପରେ ପୋପାଡ଼ିଲା ବେଳେ ସେ ଦେଖିଛି । ଛ'ଜଣ ପଛୁଆ ପିଲା ସେଠି ଯାଜକଙ୍କୁ ଅପେକ୍ଷା କରିଥାଆନ୍ତି, ଯାଜକ ଫେରି ଆସିଲେ ସେମାନେ ତାଙ୍କର ପାଠ ଆବୃତ୍ତି ଶୁଣାଇବେ ବୋଲି ।

ପାଭେଲ୍ ଏଥର ସ୍କୁଲଘରର ସବାତଳ ପାହାଚ ଉପରେ ଚିନ୍ତିତ ମନରେ ବସିଥିଲା, ଆଉ ଦୁଃଖରେ ଭାବୁଥିଲା, ଅବକାରୀ ଇନ୍‌ସପେକ୍ଟରଙ୍କ ଘରେ ସକାଳୁ ସଞ୍ଜ ପର୍ଯ୍ୟନ୍ତ ଖଟି ଖଟି ମରୁଥିବା ଦୁଃଖିନୀ ମାଙ୍କୁ ତା'ର ଯେତେବେଳେ ସେ ଆଜି ଯାହା ଯାହା ଘଟିଗଲା ସବୁ କହିବ, ସେତେବେଳେ ମାଆ କ'ଣ କହିବେ ।

କୋହରେ କଣ୍ଠ ତା'ର ବାଷ୍ପରୁଦ୍ଧ ହୋଇଗଲା ।

"କ'ଣ ଏବେ ମୁଁ କରିବି ?" ଭାବିଲା ସେ । "ଏସବୁ ସେ ଖଚଡ଼ ଧର୍ମଯାଜକ ପାଇଁ । ମୁଁ ଭଲା କାହିଁକି ତା' ଦଳାମଇଦା ଉପରେ ତମାଖୁ ଗୁଣ୍ଡ ପକାଇବାକୁ ଗଲି ? ସେରୋଝକା ମୁଣ୍ଡରୁ ଏ ବୁଦ୍ଧି ବାହାରିଲା, 'ଚାଲ ଯିବା, ବୁଢ଼ା ଗେଧ ସାଙ୍ଗରେ ମଜାଟାଏ

କରିବା ।' ଆମେ ତା'କଥା ମାନି ସେଇଆ କଲୁ । ଏବେ ସେରୋ୍ୟାଝକା ଖସିଗଲା, ମୁଁ ଚଡ଼ା ଖାଉଛି ।"

ଫାଦର ଭାସିଲିଙ୍କ ସହିତ ତା'ର ଗଣ୍ଡଗୋଳ ଅନେକ ଦିନରୁ । ଯେଉଁଦିନରୁ ମିଣ୍ଟକା ଲେଭଚୁକୋଭ୍ ସାଙ୍ଗେ ତା'ର କଳି ହେଲା, ଆଉ ଦଣ୍ଡ ପାଇ ସେ ଛୁଟି ପରେ ରହିଲା । ସେଇଦିନରୁ ଫାଙ୍କା କ୍ଲାସ୍ ଘରଟାରେ କାଳେ ଟୋକା ଦୁଷ୍ଟାମୀ କରିବ, ସେଥିପାଇଁ ଶିକ୍ଷକ ତାକୁ ଦ୍ୱିତୀୟ ଶ୍ରେଣୀରେ ପଢ଼ା ହେଉଥିବା ଜାଗାକୁ ନେଇ ବସାଇ ଦେଇଥିଲେ ତାଙ୍କ ସାଙ୍ଗରେ । ପଛରେ ଗୋଟାଏ ସିଟ୍‌ରେ ପାଭେଲ୍ ବସିଥିଲା ।

ଶିକ୍ଷକଟି କଳା ଜ୍ୟାକେଟ୍‌ପିନ୍ଧା, ଶୁଖୁଟାମୁହାଁ ଛୋଟିଆ ମଣିଷଟିଏ । ଶ୍ରେଣୀର ପିଲାଙ୍କୁ ସେ ପୃଥିବୀ ଆଉ ନଭୋମଣ୍ଡଳର ଗ୍ରହ ଇତ୍ୟାଦିଙ୍କ କଥା ବୁଝାଉଥାନ୍ତି ଏବଂ ପାଭେଲ୍ ଆଶ୍ଚର୍ଯ୍ୟ ହୋଇ ଶୁଣିଥାଏ ଯେ, ଏ ପୃଥିବୀ କୋଟି କୋଟି ବର୍ଷ ତଳେ ବି ଥିଲା, ଆଉ ଏ ନକ୍ଷତ୍ରଗୁଡ଼ାକ ବି ଗୋଟାଏ ଗୋଟାଏ ପୃଥିବୀ । ସେ ଯାହାସବୁ ଶୁଣିଲା ସେଥିରେ ଏତେ ଆଚମ୍ବିତ ହୋଇଗଲା ଯେ, ସିଟ୍‌ରୁ ଉଠି ଠିଆହେବା ଆଗରୁ ପାଟି କରି କହିବାକୁ ଚାହୁଁଥିଲା, "କିନ୍ତୁ ଏକଥା ତ ବାଇବେଲ୍‌ରେ ନାହିଁ ..." ଆଉ ଅଧିକ ଗହୀରକୁ ଯିବାକୁ କିନ୍ତୁ ସେ ଚାହୁଁ ନଥିଲା ।

ଧର୍ମଯାଜକ ପାଭେଲ୍‌କୁ ଧର୍ମଗ୍ରନ୍ଥ କ୍ଲାସ୍‌ରେ ସବୁବେଳେ ପୂରା ନମ୍ବର ଦିଅନ୍ତି । ସେ ପ୍ରାର୍ଥନା ବହିଟା ସାରା ପ୍ରାୟ ମୁଖସ୍ଥ କରିଥାଏ । ପୁରୁଣା ଓ ନୂଆ ଟେଷ୍ଟାମେଣ୍ଟ ମଧ୍ୟ ମୁଖସ୍ଥ କରିଥାଏ । ସପ୍ତାହକର ପ୍ରତିଟି ଦିନରେ ଭଗବାନ କ'ଣ କ'ଣ ସବୁ ସୃଷ୍ଟି କରିଛନ୍ତି, ସେକଥା ସେ ଠିକ୍ ଠିକ୍ ଜାଣିଥାଏ । ତେଣୁ ଏବେ ସେ ସ୍ଥିର କଲା, କଥାଟାକୁ ଫାଦର ଭାସିଲିଙ୍କ କାନକୁ ନେବ । ଠିକ୍ ତା'ପର କ୍ଲାସ୍‌ରେ ଫାଦର ଭାସିଲି ତାଙ୍କ ଚଉକିରେ ବସୁଛନ୍ତି, ପାଭେଲ୍ ହାତ ଟେକିଲା କିଛି କହିବ ବୋଲି । କହିବାକୁ ଅନୁମତି ନେଇ ସେ ଛିଡ଼ା ହୋଇପଡ଼ିଲା ।

"ଫାଦର, ଦ୍ୱିତୀୟ ଶ୍ରେଣୀରେ ଶିକ୍ଷକ କାହିଁକି କହୁଛନ୍ତି ଯେ, ପୃଥିବୀଟା କୋଟି କୋଟି ବର୍ଷର ପୁରୁଣା ? ବାଇବେଲ୍‌ରେ ଯାହା ଅଛି ପାଞ୍ଚ ହଜାର ..."

ଫାଦର ଭାସିଲିଙ୍କର ରୁକ୍ଷ ଚିତ୍କାର ତାକୁ ଚୁପ୍ କରିଦେଲା ।

"କ'ଣ କହିଲୁ ବଦ୍‌ମାସ ? ଏଇଆ ତୁ ଧର୍ମଗ୍ରନ୍ଥରୁ ଶିଖୁଛୁ ?"

କ'ଣ ଘଟିଲା, ପାଭେଲ୍ ସେକଥା ଜାଣିବା ଆଗରୁ ଫାଦର ଭାସିଲି ତା' କାନ ମୋଡ଼ି ମୁଣ୍ଡକୁ ତା'ର କାନ୍ଥରେ ବାଡ଼େଇବାକୁ ଲାଗିଲେ । ତା'ର କେତେ ମିନିଟ୍ ପରେ କଷ୍ଟ ଆଉ ଭୟରେ ବିବ୍ରତ ହୋଇ ସେ ଦେଖିଲା ଯେ, ତାକୁ ବାରଣ୍ଡାକୁ ତଡ଼ି ଦିଆହୋଇଛି ।

ତା' ମା' ମଧ୍ୟ ସେଥର ତାକୁ ଭଲକରି ଗାଳି ଶୁଣାଇଥିଲା ।

ତା' ପରଦିନ ମା' ସ୍କୁଲକୁ ଯାଇ ଫାଦର ଭାସିଲିଙ୍କୁ ଅନୁନୟ କରିଥିଲା, ପାଭେଲ୍‌କୁ ସ୍କୁଲରେ ରହିବାକୁ ଅନୁମତି ଦେବାକୁ । ସେହିଦିନଠାରୁ ପାଭେଲ୍ ମନପ୍ରାଣ ଦେଇ

ଧର୍ମଯାଜକଙ୍କୁ ଘୃଣା କରେ ଏବଂ ଡରେ । ତା'ର ପିଲା ହୃଦୟ କୌଣସି ଅନ୍ୟାୟ, ତା' ଯେତେ ଛୋଟ ହେଉ ନା କାହିଁକି, ଦେଖିଲେ ବିଦ୍ରୋହ କରିଉଠେ । ଅଯଥା ଏ ମାଡ଼ ପାଇଁ ସେ ଧର୍ମଯାଜକଙ୍କୁ କ୍ଷମା କରିପାରିଲା ନାହିଁ । କ୍ରମଶଃ ତା' ମନ ଅପ୍ରସନ୍ନ ଓ ତିକ୍ତ ହୋଇଗଲା ।

ତା ପରେ ଫାଦର ଭାସିଲିଙ୍କଠାରୁ ତାକୁ କେଜାଣି କେତେ ଅପମାନ ସହ୍ୟ କରିବାକୁ ପଡ଼ିଛି । ତାକୁ ସଦାବେଳେ ସେ କ୍ଲାସ୍‌ରୁ ବାହାର କରିଦେଉଥାନ୍ତି – କେତେବେଳେ କ'ଣ ଟିକିଏ ଭୁଲ ହୋଇଗଲେ, ସପ୍ତାହ ସପ୍ତାହ ଧରି ଦିନ ପରେ ଦିନ, ଗୋଟାଏ କଣରେ ଛିଡ଼ା କରିଦେଉଥାନ୍ତି । କେବେହେଲେ ତାକୁ ପ୍ରଶ୍ନର ଉତ୍ତର ଦେବା ପାଇଁ ପଚ୍ଚାରନ୍ତି ନାହିଁ । ଫଳରେ, ଇଷ୍ଟର ଛୁଟି ଆଗରୁ ପଛୁଆ ପିଲାଙ୍କ ସାଙ୍ଗରେ ପାଠ ପରୀକ୍ଷା ଦେବା ପାଇଁ ତାକୁ ଧର୍ମଯାଜକଙ୍କ ଘରକୁ ଯିବାକୁ ପଡ଼ିଥିଲା । ଆଉ ସେଇଠି, ରୋଷେଇଘରେ ଚକଟା ମଇଦା ଉପରେ ତମାଖୁ ବିଞ୍ଚି ଦେଇଥିଲା ସେ ।

ଏକଥା କରିବାର କେହିହେଲେ ତାକୁ ଦେଖି ନାହାନ୍ତି । ଫାଦର କିନ୍ତୁ ଏକଥା କିଏ କରିଥିବ ବୋଲି ମନକୁ ମନ ଠଉରେଇ ନେଇଛନ୍ତି ।

ଶେଷରେ କ୍ଲାସ୍‌ରେ ପଢ଼ାପଢ଼ି ସରିଲା । ପିଲାମାନେ ସବୁ ଆସି ଅଗଣାରେ ଜମା ହୋଇ ପାଭେଲ୍ ଚାରିକଡ଼େ ଘେରିଗଲେ । ପାଭେଲ୍ କିନ୍ତୁ ଦୁଃଖରେ ମୁହଁ ଲଦି ତୁନିହୋଇ ବସିଥାଏ । ସେର୍ଗେଇ ବ୍ରୁଝାକ୍ ସମସ୍ତଙ୍କ ପଛରେ କ୍ଲାସ୍‌ରୁ ବାହାରିବାକୁ ଟିକେ ଡେରି ଡେରି କରୁଥାଏ । ମନେ ମନେ ନିଜକୁ ଅତି ଦୋଷୀ ବୋଲି ଆଉ ବନ୍ଧୁକୁ ତା'ର କୌଣସି ପ୍ରକାରେ ସାହାଯ୍ୟ କରିପାରିଲା ନାହିଁ ବୋଲି ଭାବୁଥାଏ ।

ହେଡ୍ ମାଷ୍ଟର ଯେଫ୍ରେମ୍ ଭାସିଲିଯେଭିଚ୍ କମନ ରୁମ୍‌ର ଖୋଲା ଝରକାବାଟେ ମୁଣ୍ଡଟିକୁ କାଢ଼ି ପାଟିକରି ଡାକିଲେ :

"କୋର୍ଚ୍ଚାଗିନ୍‌କୁ ସାଙ୍ଗେ ସାଙ୍ଗେ ପଠାଅ ମୋ ପାଖକୁ !"

ହେଡ୍ ମାଷ୍ଟରଙ୍କର ଗମ୍ଭୀରିଆ ଘାଗଡ଼ା ଗଳାର ଡାକ ଶୁଣି ପାଭେଲ୍ ଧଡ଼୍‌ପଡ଼୍ ହୋଇ ଠିଆହୋଇ ଗଲା, ଦୁର୍‌ଦୁର୍ ଛାତିରେ ତାଙ୍କ ଆଦେଶ ପାଳନ କରି ଆଗେଇଗଲା ।

* * *

ରେଳ ଷ୍ଟେସନ୍‌ରେ ଥିବା ଜଳଖିଆ ଦୋକାନର ମାଲିକ – ମଧ୍ୟମବୟସୀ, ଶୁଖୁଟା ଲୋକଟାଏ । ତା'ର ନିଷ୍ପ୍ରଭ ବିବର୍ଣ୍ଣ ଆଖିରେ ସେ ପାଭେଲ୍ ଆଡ଼କୁ ଟିକେ କଣେଇ ଚାହିଁଦେଲା ।

"ତାକୁ କେତେ ବର୍ଷ ହବ ?"

"ବାର ।"

"ଆଚ୍ଛା, ଇଏ ହୋଇଯିବ ! ମାସକୁ ଆଠ ରୁବଲ ପାଇବ ଆଉ କାମକଲା ଦିନ

ଖାଇବାକୁ ପାଇବ । ଦିନେ ଛାଡ଼ି ଦିନେ, ଦିନକୁ ଚବିଶ ଘଣ୍ଟା ଖଟିବାକୁ ପଡ଼ିବ ! କିନ୍ତୁ ଦେଖ୍ ବାବା, ଗେରିଫୋରି ଯେମିତି ନ କରୁ ..."

"ନାଁ ... ନାଁ, ଆଜ୍ଞା, ସିଏ ଗେରିଗୁରି କରିବ ନାହିଁ, ମୁଁ ତା' ପାଇଁ ଦାୟୀ ରହିଲି", ଡରି ଡରି ମା' ତା'ର କହୁଥାଏ, ଲୋକଟା ମନରେ ବିଶ୍ୱାସ ଜନ୍ମାଇବା ପାଇଁ ।

"ତା'ହେଲେ ସିଏ ଆଜିଠୁ ଆରମ୍ଭ କରୁ", ମାଲିକ୍ ଆଦେଶ ଦେଲେ ଏବଂ କାଉଣ୍ଟରରେ ଥିବା ସ୍ତ୍ରୀଲୋକଟି ଆଡ଼କୁ ବୁଲିପଡ଼ି କହିଲେ :

"ଜିନା, ଏ ପିଲାକୁ ରୋଷେଇଘରକୁ ନେଇଯା' ଆଉ ଫ୍ରୋସ୍ୟାକୁ କହିଦେ, ଗ୍ରୀଶ୍କା ବଦଳରେ ଯା'କୁ କାମ କରାଇବାକୁ ।"

ଜଳଖିଆ ଦୋକାନରେ କାମ କରୁଥିବା ସ୍ତ୍ରୀଲୋକଟି ଯେଉଁ ଛୁରୀରେ ଘୁଷୁରି ଫଡ଼ିଆଟିକୁ ଟିକିଟିକି କରି କାଟୁଥିଲା, ସେଇଟା ତଳେ ଥୋଇଦେଇ ପାଭେଲ୍‌କୁ ଅନାଇ ମୁଣ୍ଡ ଟୁଙ୍ଗାରି ଠାରିଲା ଏବଂ ତାକୁ ବାଟ ଦେଖାଇ, ଗୋଟାଏ ବଡ଼ ହଲଘର ଭିତର ଦେଇ ବାସନମଜା ସ୍ଥାନକୁ ଫିଟିଥିବା ଗଳିଦରଜା ପାଖରେ ପହଁଚାଇଦେଲା । ପାଭେଲ୍ ତାକୁ ଅନୁସରଣ କଲା । ମା' ତା'ର ତା' ପଛେପଛେ ଧାଇଁଯାଇ କାନରେ ଫୁସ୍‌ଫୁସ୍ କରି କହିଲା :

"ପାଭ୍‌ଲୁଶ୍କା ମୋ ସୁନାଟି ପରା, ମନଦେଇ କାମ କରିବୁ... ପାରୁପର୍ଯ୍ୟନ୍ତ, କୋଉଠି ଯେମିତି ଛୋଟ ହୋଇ ନ ଯାଉଟି !"

କରୁଣ ଚାହାଣୀରେ ମା' ପାଭେଲ୍‌ର ଯିବା ବାଟକୁ ଚାହିଁରହିଲା, ତା'ପରେ ଫେରିଆସିଲା ।

ବାସନମଜା ଘରେ ପୂରାଦମ୍‌ରେ କାମ ଚାଲିଥାଏ । ଥାଳିଆ, କଣ୍ଟାଚାମଚ, ଛୁରୀସବୁ ଟେବୁଲ ଉପରେ ଗଦା ହୋଇଥାଏ । ମାଇପୀଲୋକ କେତୌଟି ସେଗୁଡ଼ିକୁ ଧୁଆଧୋଇ କରି ସେମାନଙ୍କ କାନ୍ଧରେ ପଡ଼ିଥିବା ତଉଲିଆରେ ପୋଛି ରଖୁଥାଆନ୍ତି ।

ପାଭେଲ୍‌ଠାରୁ ଟିକେ ବଡ଼ ପିଲାଟିଏ, ମୁଣ୍ଡରେ ତା'ର ଅଦା ରଙ୍ଗର ମେଞ୍ଚାଏ କୁଞ୍ଚୁକୁଞ୍ଚିଆ ବାଳ, ଏଡ଼େ ବଡ଼ ଦିଇଟା ସାମୋଭାର୍‌କୁ ମୋହୁଁଥାଏ ।

ସେ ଘରଟାସାରା ବାସନ ଧୁଆ ହେବା ପାଇଁ ବିରାଟ କୁଣ୍ଡଟାରେ ଫୁଟୁଥିବା ପାଣିର ବାମ୍ପରେ ଧୂଆଁ ଭର୍ତ୍ତି ହୋଇଯାଇଥାଏ । ପାଭେଲ୍ ପହିଲୁ ଧୂଆଁରେ ସେ ସ୍ତ୍ରୀଲୋକଗୁଡ଼ାଙ୍କର ମୁହଁ ଦେଖି ପାରୁ ନଥିଲା । କିଏ ଜଣେ ଆସି, ସିଏ କ'ଣ କରିବ, ସେକଥା କହିବ ବୋଲି ଅପେକ୍ଷା କରି ପାଭେଲ୍ ସେମିତି ଅନିଶ୍ଚିତ ଭାବରେ ଛିଡ଼ା ହୋଇଥାଏ ।

ବାସନ ମାଜୁଥିବା ସ୍ତ୍ରୀଲୋକଙ୍କ ଭିତରୁ ଜଣକର କାନ୍ଧ ହଲାଇଦେଇ ତାକୁ ସେଠାକୁ ଆଣିଥିବା ଜିନା କହିଲା :

"ହେ ଫ୍ରୋସ୍ୟା, ଗ୍ରୀଶ୍କା ଜାଗାରେ ତୋ ପାଇଁ ଗୋଟାଏ ନୂଆ ପିଲା ଆଣିଛି, କ'ଣ କରିବ ସବୁ ତାକୁ ବତା ।"

"ଏଠା କାମଦାମ ସବୁ ଦେଖାଶୁଣା କରେ ସିଏ", ଫ୍ରୋସ୍ୟା ବୋଲି ଯାହାକୁ

ସେ ଡାକୁଥିଲା, ସେଇ ସ୍ତ୍ରୀଲୋକଟିକୁ ଦେଖାଇଦେଇ ପାଭେଲ୍‌କୁ କହିଲା କିନା :

"ତୁ କ'ଣ କରିବୁ, ସେ ହିଁ ତୋତେ ବତାଇବ", ଏତିକି କହି ବୁଲିପଡ଼ି ସେ ଖିଆପିଆ ହେବା ଘରକୁ ଫେରିଗଲା ।

'ହଉ' ବୋଲି ଧୀର ସ୍ୱରରେ କହି ପାଭେଲ୍ ପ୍ରଶ୍ନବାଚକ ଆଖିରେ ଫ୍ରୋସ୍ୟା ଆଡ଼କୁ ଚାହିଁଲା । ନିଜ କପାଳରୁ ବୋହି ପଡ଼ୁଥିବା ଝାଳ ପୋଛି ପୋଛି, ଫ୍ରୋସ୍ୟା ତା'ର ଚାକୁରୁ ଚଳିପାଯାଏଁ କଡ଼ା ଚାହାଣୀଟାଏ ପକାଇଗଲା ଆଗ, ତା'ପରେ କହୁଣୀ ଉପରକୁ ଖସିଆସିଥିବା ଚା' ଜାମାର ଅସ୍ତିନ୍‌ଟା ଗୁଡ଼େଇନେଇ ଅତି ଗମ୍ଭୀର ଅଥଚ କଅଁଳ ସ୍ୱରରେ କହିଲା :

"ଏମିତି କିଛି କାମ ନୁହଁରେ ବାବୁ! ସବୁବେଳେ କିନ୍ତୁ ଲାଗିରହିବାକୁ ପଡ଼ିବ ତତେ । ସେଇ ଯେଉଁ ତମ୍ବା କୁଣ୍ଡଟା ଦେଖୁଛୁ, ସେଥିରେ ସଦାବେଳେ ପାଣି ଗରମ କରି ରଖିବାକୁ ପଡ଼ିବ—ସକାଳୁ ଉଠି ତାକୁ ଚଟେଇ ପାଣି ଫୁଟାଇବାକୁ ହେବ । ତା'ଛଡ଼ା କାଠ ଚିରିବାକୁ ପଡ଼ିବ, ସାମୋଭାର୍‌ଗୁଡ଼ାକୁ ଟିକେ ନଜର ରଖିବାକୁ ହେବ । ବେଳେବେଳେ ଛୁରୀ, କଣ୍ଟାଚାମଚ ତତେ ସଫା କରିବାକୁ ପଡ଼ିବ, ଆଉ ମଇଳା ପାଣିଗୁଡ଼ାକ ବାହାରକୁ ବୋହି ନେବାକୁ ହେବ । ବହୁତ କାମ ପଡ଼ିବରେ ଟୋକା ।"

କଥା କହିଲା ବେଳେ ତା'ର ଉଚ୍ଚାରଣର ପ୍ରକାର, କହିବା ଭଙ୍ଗୀ ଆଉ ଆରକ୍ତ ମୁହଁ, ଛୋଟ ଚେପ୍‌ଟା ନାକ—ସବୁ ମିଶି ପାଭେଲ୍‌କୁ କେମିତି ଭଲ ଲାଗିଲା ।

"ବେଶ୍ ଭଲ ମଣିଷଟିଏ ତ!" ମନେ ମନେ ସିଦ୍ଧାନ୍ତରେ ପହଞ୍ଚିଲା ସେ । ତା'ପରେ ନିଜର ଆଙ୍ଗୁଆଙ୍ଗୁଆ ଭାବ କଟାଇ ମୁହଁ ଖୋଲି ପଚାରିଲା :

"ଏବେ କ'ଣ କରିବି ମାଉସୀ ?"

ବାସନ ମଜାଳୀ ସ୍ତ୍ରୀଲୋକଗୁଡ଼ାକଙ୍କର ହୋ ହୋ ଛାତିଫଟା ହସରେ ତା' କଥା ଅଟକିଗଲା ।

"ହେଁ ହେଁ ! ଫ୍ରୋସ୍ୟାର ପୁତୁରାଟିଏ ଅଛିଲେ ... ।"

ଫ୍ରୋସ୍ୟା ବି ନିଜେ ଅନ୍ୟମାନଙ୍କଠାରୁ ଅଧିକ ମନଖୋଲା ହସ୍ ହସିଲା ।

ଧୂଆଁ କୁଣ୍ଡଳୀ ଭିତରେ ପାଭେଲ୍ ଆଦୌ ବାରିପାରି ନ ଥିଲା ଯେ, ଫ୍ରୋସ୍ୟା ତରୁଣୀଟିଏ । ଏପରିକି ତାକୁ ଅଠରରୁ ଅଧିକ ବୟସ ହେବ ନାହିଁ ।

ବଡ଼ ସରମରେ ପଡ଼ି ଏଥର ସେ ପୁଅପିଲାଟି ଆଡ଼କୁ ବୁଲି ପଚାରିଲା :

"କ'ଣ କରିବି ଯେ ଏବେ ?"

ଟୋକାଟା କିନ୍ତୁ କେବଳ ଦାନ୍ତ କିଲେଇଲା, କହିଲା, "ତୋ' ମାଉସୀକୁ ପଚାର, ସେଇ ସବୁ ବତେଇଦବ ଯେ, ମୁଁ ମୋର ଚାଲିଲି ।" ଏତିକି କହି ରୋଷେଇଘରର ଦୁଆରବାଟେ ଡିଆଁଟାଏ ମାରିଲା ସେ ।

ବାସନ ମଜାଳୀଙ୍କ ଭିତରୁ ମଧ୍ୟମବୟସୀ ସ୍ତ୍ରୀଲୋକଟିଏ କହିଲା ତାକୁ, "ଏଠିକି ଆ', କଣ୍ଟାଚାମଚଗୁଡ଼ାକ ସବୁ ପୋଛିପାଛି ଦେଲୁ । ତମ ହେଁ ହେଁ ବନ୍ଦକଲ ସବୁ",

ଅନ୍ୟମାନଙ୍କୁ ଚେତେଇଦେଇ କହିଲା ସେ । "କ'ଣ ଏମିତି ହସର କଥା ପିଲାଟା କହିଲା ଯେ ? ନେ, ନେ, ଏଇଟା ଧଅ ..." ପାଭେଲ୍‌କୁ ଗୋଟାଏ ବାସନ ପୋଛା ଚଉଲିଆ ଧରାଇଦେଲା ସେ । "ଗୋଟାଏ ମୁଣ୍ଡକୁ ଦାନ୍ତରେ ଚିପିଧରି ଆରପାଖଟାକୁ ଜୋର୍‌ରେ ଟାଣି ଧର । ଏଇ ନେ କଣ୍ଟାଚାମଚଟାଏ । ତାକୁ ଧରି ତଉଲିଆ ଉପରେ ଏମୁଣ୍ଡରୁ ସେମୁଣ୍ଡଯାଏଁ ଘଷିନେ । ଦେଖ୍, ଯେମିତି କଣ୍ଟା ଭିତରେ ଧୂଳିମଳି କିଛି ନ ରହେ । ଏଠି ସେ ବିଷୟରେ ଭାରୀ କଡ଼ା । ଗରାଖସବୁ କଣ୍ଟାଚାମଚକୁ ଆଗ ପରଖି ଦେଖନ୍ତି । ଧୂଳିଟିକେ ପାଇଲେ ବି, ଏମିତି ସବୁ ନବରଙ୍ଗ କାଢ଼ିବେ ଯେ, ମାଲିକାଣୀ ସେଇ ମୁହୂର୍ତ୍ତରେ ତୋତେ ନିକାଲି ଦବ ।"

"ମାଲିକାଣୀ ?" ଯେମିତି ତା' କଥାର ପ୍ରତିଧ୍ୱନିତ ହେଲା, "ମୁଁ ତ ଭାବିଲି, ଯିଏ ମୋତେ ରଖିଲେ, ସେ ହେଉଛନ୍ତି ମାଲିକ ବୋଲି ?"

ବାସନ ମଜାଳୀ ମାଇପୀଟି ହସିଲା ଟିକିଏ, "ମାଲିକଟା କିଛି ନୁହଁ ରେ ପିଲା ... କାଠଟାଏ, ଯେମିତି ଏ ଚଉକି ଟେବୁଲର ଗୋଡ଼ କି ହାତ । ମାଲିକାଣୀ ସତରେ ଅସଲ ଖାଉନ୍ଦ, ଆଜି ଏଠି ସିଏ ନାହିଁ ନା, ଏଠିତ କାମ କଲୁଣି – ଦେଖିବୁ ଦିନେଓଳିକରେ ।"

ବାସନମଜା ଘରର ଦୁଆରଟା ଖୋଲିଗଲା ଏବଂ ତିନି ଜଣ ପରଷୁଣିଆ ଟ୍ରେରେ ଗଦାଏ ଲେଖାଁ ଅଇଁଠାବାସନ ନେଇ ପଶି ଆସିଲେ ।

ତାଙ୍କ ଭିତରୁ ଜଣେ ବେଶ୍ ଚଉଡ଼ା କାନ୍ଧ, ଟେରା, ଚଉଖୁଣିଆ ମଣିଷଟାଏ କହିଲା :

"ଆଉ ଟିକେ ଫୁର୍ତ୍ତି ଫୁର୍ତ୍ତି ହାତ ଚଳାଅ ... ବାରଟା ଆସି ବାଜିବ, ତମେ ପଞ୍ଚାକ ଏଠି ବସି ଆଡ୍‌ଡ଼ା ମାରୁଛ ?"

ପାଭେଲ୍ ଆଡ଼କୁ ଚାହିଁ କହିଲା :

"ଏଇଟି କିଏ ?"

"ନୂଆଁ ପିଲାଟିଏ", ଫ୍ରୋସ୍ୟା ଉତ୍ତର ଦେଲା ।

"ଓଃ, ନୂଆ ପିଲା, ହଉ ଶୁଣ୍‌ରେ ଟୋକା ..."

ପାଭେଲ୍ କାନ୍ଧ ଉପରେ ତା'ର ଓଜନିଆ ହାତ ଦୁଇଟା ଚିପିଦେଇ, ତାକୁ ସାମୋଭାର୍ ଆଡ଼କୁ ପେଲିଦେଇ କହିଲା ସେ :

"ସବୁବେଳେ ଯେମିତି ସେଥିରେ ପାଣି ଫୁଟୁଥିବ ... ଦେଖ୍, ସେଥିରୁ ଗୋଟାଏ ସାମୋଭାର୍ ଲିଭିଗଲାଣି, ଆଉ ଗୋଟାଏ ଆସି ଲିଭିବା ଉପରେ । ଦେଖ୍, ଆଉ ଥରେ ଯେମିତି ଏମିତି ନହୁଏ । ନହେଲେ ମାରି ମାରି ତୋ ଦେହରୁ ଚମଡ଼ା ନିକାଳି ଦେବି ।"

ପଦେ ବି କିଛି ଉତ୍ତର ନ ଦେଇ ପାଭେଲ୍ ସାମୋଭାର୍ ଜଳାଇବା କାମରେ ଲାଗିଗଲା ।

ଏମିତି ତା'ର କଠିନ ପରିଶ୍ରମ ଆରମ୍ଭ ହେଲା । ସେଇ ପହିଲି ଦିନକ ଯେତେ କାମ କଲା, ଆଉ ଜୀବନ ସାରା ଏତେ କଷ୍ଟ କାମ କେବେ କରି ନଥିଲା ସେ । ସିଏ ହୃଦୟଙ୍ଗମ କଲା ଯେ, ଏଇଟା ତା'ର ଘର ନୁହଁ, ଯେଉଁଠି ସିଏ ତା'ର ମନଖୁସି ମା'କୁ· ନ ମାନିପାରେ । ଟେରା ପରଷୁଣୀ ତ ସଫା କହିଦେଇଥିଲା, "ଯେମିତି କୁହାଯିବ ସେମିତି କାମ ନ କଲେ, ସେଥିପାଇଁ ତାକୁ ଶାସ୍ତି ଭୋଗିବାକୁ ପଡ଼ିବ ।"

ନିଜ ଗୋଡ଼ର ଉଚ୍ଚା ବୁଟ୍ ମଧ୍ୟରୁ ଗୋଟାକୁ ପଙ୍ଖା ଭଳି ବ୍ୟବହାର କରି, ବିଞ୍ଚି ବିଞ୍ଚି ସେଥିରେ ସାମୋଭାର୍‌ର ଆଟିକା ପେଟରୁ ରଢ଼ ନିଆଁ ବାହାର କରିଦେଲା – ରଢ଼ ନିଆଁଗୁଡ଼ିକ ଉଡ଼ିବୁଲିଲା । ମଇଳା ପାଣି କୁଣ୍ଡଟାକୁ ଟେକିନେଇ, ଧାଇଁଯାଇ ଅଳିଆଗଦାରେ ଫୋପାଡ଼ି ଦେଇ ଆସିଲା । ବଏଲର୍ ଜାଳେଣିକାଠ ମୁହାଁଇଦେଲା । ସାମୋଭାର୍ ଝିଙ୍କାରେ ଓଦା ବାସନପୋଛା କନାଗୁଡ଼ାକୁ ଶୁଖେଇଦେଲା । ପଦେ କଥାରେ, ତାକୁ ଯାହା କୁହାଗଲା, ସବୁ କାମ ସେ କରିଦେଲା ।

ସେଦିନ ରାତି ଅଧରେ କ୍ଳାନ୍ତଶ୍ରାନ୍ତ ହୋଇ ଯେତେବେଳେ ରୋଷେଇଘର ଭିତରକୁ ପଶିଲା, ତା'ପଛରେ ଧଡ଼କିନି ବନ୍ଦ ହୋଇଯାଉଥିବା କବାଟକୁ ଗ୍ରହିଁ ଆନିସିୟା, ମଧ୍ୟମବୟସୀ ସେ ବାସନ ମଜାଳୀ ସ୍ତ୍ରୀଲୋକଟି କହିଲା :

"ଆରେ, ଦେଖ ଦେଖ, କେମିତିଆ ଅଦ୍ଭୁତ ପିଲାଟା । ପାଗଳଙ୍କ ଭଳିଆ କବାଟରେ ପିଟି ହୋଇଯାଉଛି ଆସି । ଆ...ରେ, ତାକୁ ତ ତା'ହେଲେ ସାବାଡ଼୍ କରିବା ପାଇଁ କାମରେ ଖଟା ହୋଇଛି ।"

"ବେଶ୍ କାମିକା ପିଲାଟିଏ, ତାକୁ ଆଉ ତାଗିଦା କରିବା ଦରକାର ନାହିଁ", ଫ୍ରୋସ୍ୟା କହିଲା ।

"ଦିନାକେତେ ଯାଉ, ଥମିଯିବ ଯେ । ସମସ୍ତେ ସେମିତି ପହିଲୁ ପହିଲୁ ଦେଖେଇ ହୋଇ ଲାଗିଯାଆନ୍ତି କାମରେ", ଏପରି ମତ ଦେଲା ଲୁଶା ।

ପୂରା ରାତିଟାଯାକ ପାଣିଫୁଟା ହେଉଥିବା ସାମୋଭାର୍‌କୁ ମୁହେଁଇ ମୁହେଁଇ, ସାରା ରାତି ସେମିତି ଗୋଡ଼େ ଗୋଡ଼େ ରହି ଭାଙ୍ଗି ପଡ଼ିଥିବା ପାଭେଲ୍, ତା' ଆରଦିନ ସକାଳ ସାତଟା ବେଳକୁ, ତା' ବଦଳିରେ କାମ କରିବାକୁ ଆସିଥିବା ପିଲାକୁ ସାମୋଭାର୍‌ର ଦାୟିତ୍ୱ ବଢ଼େଇଦେଲା । ତା'ର ବଦଳ ପିଲାଟି – ଫୁଲୁକା ଗାଲିଆ, କେମିତି ଛୋଟଲୋକି ଗ୍ରହାଣୀ ତା'ର । ସାମୋଭାର୍‌କୁ ସବୁ ନିରିଖି ନିରିଖି ଗ୍ରହିଁ ଦେଖିଲା, ତା'ପରେ ନିଜେ ଯେତେବେଳେ ସବୁ ଠିକ୍‌ଠାକ୍ ଅଛି ବୋଲି ନିଶ୍ଚିତ ହେଲା, ପକେଟ୍‌ରେ ହାତ ପୂରାଇ, ଦି' ଦାନ୍ତ ମଝିରେ ପିଚ୍‌କିନା ମେଞ୍ଚାଏ ଛେପ ତାଚ୍ଛଲ୍ୟପୂର୍ଣ୍ଣ ବଡ଼ିମା ଦେଖାଇ ବାହାରକୁ ଫୋପାଡ଼ିଲା ।

"ହେଁ ସିଙ୍ଘାଣିନାକା ଟୋକା, ଶୁଣ, କାଲି ସକାଳୁ ଠିକ୍ ଛଅଟା ବେଳକୁ କାମରେ ଆସି ହାଜର୍ ହୋଇଯିବୁ ।" ପାଭେଲ୍‌କୁ ତା'ର ବିବର୍ଣ୍ଣ ଆଖିରେ ଗ୍ରହିଁ ରୁଢ଼ ଗଳାରେ ହାଙ୍କିଲା ସେ ପିଲାଟା ।

"ଛଅଟାରେ କାହିଁକି ? କାମ ପାଳି ତ ସାତଟାରେ ହୁଏ ପରା । ନୁହଁ ?" ପାଭେଲ୍ ଜାଣିବାକୁ ଚାହିଁଲା ।

"ତୋର ସେଥିରେ ଯାଏଆସେ କ'ଣ ବେ ? ପାଳି ଯେତେବେଳେ ହଉ ପଛେ, ତୁ ଏଠି ଆସି ଠିକ୍ ଛ'ଟାରେ ପହଞ୍ଚିବୁ, ନହେଲେ ମାରି ମାରି ଛତୁ କରିଦେବି । ଆଜି ଆସି ପହଞ୍ଚୁ ନ ପହଞ୍ଚୁଣୁ ବେଶି ବଡ଼ିମା ବାହାର କରୁଛୁ ?"

ବାସନ ମଜାଳୀମାନଙ୍କ ଭିତରୁ ଯାହାଙ୍କର ପାଳି ସରିଯାଇଥିଲା, ସେମାନେ ବେଶ୍ ଆଗ୍ରହର ସହିତ ପିଲା ଦିଇଟାଙ୍କର କଥା କଟାକଟି ଶୁଣୁଥାନ୍ତି । ଆଉ ଟୋକାଟାର ଗର୍ଜନ ତର୍ଜନ ଆଉ ଧମକାଣ ସ୍ୱରରେ ପାଭେଲ୍ ଉତ୍ୟକ୍ତ ହୋଇଗଲା ।

ପାଦେ ଆଗେଇଯାଇ ସେ ଗୁଣ୍ଡା ଟୋକାକୁ ଗୋଟାଏ ମୁଖି କଷିଦେବାକୁ ଯାଉଁ ଯାଉଁ ହଠାତ୍ ଅଟକିଗଲା ସେ, ନୂଆ ମିଳିଥିବା ଏ ଚାକିରିଖଣ୍ଡକ ଚାଲିଯିବାର ଭୟରେ ।

ମୁହଁ ତା'ର ରାଗରେ ଲାଲ ପଡ଼ିଯାଇଥାଏ, କହିଲା, "ବେଶି ପାଟିଫାଟି କରନାଁ, ନହେଲେ ତୁ କ'ଣ ମାଡ଼ଦବୁ ବୋଲି ଧମକଉଛୁ ? ତୋଠୁଁ ଅଧିକ କଷିଦେବି ତୋତେ । କାଲି ସକାଳୁ ମୁଁ ଅଲବତ୍ ସାତଟାକୁ ଆସିବି । ଭାବିଛୁ, ତୋତେ ଏକା ମାରିଆସେ ନାଁ ? ମୋତେ ବି ମୁଖି ଚଳାଇ ଆସେ, ମୁଁ ... ।"

ରାଗରେ ପାଭେଲ୍‌ର ରୋମ ଟାଙ୍କୁରି ଉଠିଲା । ତା'ର ଏ ରୂପ ଦେଖି, ଡରିମରି ଶଙ୍କିଯାଇ ବିପକ୍ଷ ତା'ର ବଏଲର୍ ମୁଣ୍ଡକୁ ପଶିଗଲା । ଏମିତି ଟାଣୁଆ ଜବାବ ସେ ଆଶା କରି ନ ଥିଲା ତ !

"ଆଚ୍ଛା ଦେଖିବା ଯେ ..." ବିଡ୍ ବିଡ୍ କହୁଥାଏ ସେ ।

କାମର ପହିଲି ଦିନଟି କୌଣସି ଦୁର୍ଘଟଣା ନ ଘଟାଇ ସୁରୁଖୁରୁରେ କଟାଇଛି ବୋଲି ବେଶ୍ ଖୁସ୍ ମିଜାଜରେ, ସଚ୍ଚେଟ ଭାବରେ ଯେଉଁ ବିଶ୍ରାମ ଟିକକ ଅର୍ଜନ କରିଛି, ତାକୁ ଉପଭୋଗ କରିବ ବୋଲି ଘରକୁ ଶୀଘ୍ର ଶୀଘ୍ର ଫେରୁଥାଏ ପାଭେଲ୍ ।

ଏଥର ସିଏ ନିଜେ ବି ଜଣେ ଶ୍ରମିକ । କାମିକା ଲୋକ । ଅନ୍ୟ ଉପରେ ନିର୍ଭର କରି ଚଳୁଛି ବୋଲି କେହି ତାକୁ ଆଉ ଦୋଷ ଦେଇ ପାରିବେ ନାହିଁ ଏଣିକି ।

ସକାଳର ସୂର୍ଯ୍ୟ କରତ କଳର କୋଠାଗୁଡ଼ାକର ମଥାକୁ ଛୁଇଁ ଛୁଇଁ ଉପରକୁ ଉଠୁଥାଏ । ଆଉ ଟିକକ ପରେ, ଠିକ୍ ଲେଷିନ୍‌ସି ବଗିଚାର ପଛକଡ଼କୁ, ପାଭେଲ୍ ରହୁଥିବା ଛୋଟିଆ ଘରଟି ଦେଖାଯିବ ଏଥର ।

"ମା' ବୋଧେ, ଏଲନେ ଠିକ୍ ନିଦରୁ ଉଠୁଥିବ । ଆଉ ମୁଁ କାମ ସାରି ଘରକୁ ଫେରୁଛି", ଭାବୁଭାବୁ ଚଞ୍ଚଳ ଚଞ୍ଚଳ ପାଦ ପକାଉଥାଏ ପାଭେଲ୍, ମନକୁ ମନ ସିଟି ମାରି ମାରି ଚାଲୁଥାଏ ।

"ସ୍କୁଲରୁ ତଡ଼ାଖାଇ ବିଶେଷ କ୍ଷତି ହୋଇନି ତ । ସେ ବଦ୍‌ମାସ ଧର୍ମଯାଜକଟା ମୋତେ ଟିକେ ବି ଶାନ୍ତି ଦେଇ ନ ଥାନ୍ତା ଯେମିତି ହେଲେ । ଏଥର ସିଏ ଜାହାନ୍ନାମାକୁ ଯାଉ... ମୋର କ'ଣ ଅଛି ସେଥିରେ ? ଆଉ ସେ ଅଦାମୁଣ୍ଡିଆ ଟୋକାଟାର ମୁହଁରୁ

ପାଭେ, କୋଉଦିନ ହେଲେ ନିଶ୍ଚେ ମୁଁ ଓପାଡ଼ି ଆଣିବି", ତା' ଘରର ଫାଟକ ଖୋଲୁଖୋଲୁ ମନକୁ ମନ କହିଲା ପାଭେଲ୍ ।

ମା' ଚା'ର ଅଗଣାରେ ବସି ସାମୋଭାର୍ ଜାଳୁଥାଏ । ପୁଅ ଆସିବା ଜାଣି ଉତ୍କଣ୍ଠିତ ମନରେ ଚାହିଁ ପଚାରିଲା :

"କିରେ କେମିତି ଲାଗିଲା ?"

"ବଢ଼ିଆ ..."

ମା' କି'ଣ କହିବାକୁ ଯାଉଥିଲା, ଏତିକିବେଳେ ଖୋଲା ଝରକାବାଟେ ଭାଇ ଆର୍ତେମ୍‌ର ଓସାରିଆ ପିଠିଟା ତା' ନଜରରେ ପଡ଼ିଲା ।

"ଭାଇ ଘରକୁ ଫେରିଛନ୍ତି ?" ଚିନ୍ତିତ ମନରେ ପଚାରିଲା ସେ ।

"ହଁ, କାଲି ରାତିରେ । ଏଣିକି ସେ ଏଇଠି ରହି ରେଳବାଇ ୟାର୍ଡରେ କାମ କରିବ ।"

ଟିକେ ଦ୍ୱିଧାରେ ପାଭେଲ୍ ଆଗ ସାମନା ଦୁଆରଟା ଖୋଲିଲା ।

କବାଟ ଆଡ଼କୁ ପଛକରି ଟେବୁଲରେ ବସିଥିବା ଲୋକ ଜଣକ ପାଭେଲ୍ ଘର ଭିତରକୁ ପ୍ରବେଶ କଲା ମାତ୍ରେ ତାଙ୍କର ବିଶାଳ ଶରୀରକୁ ବୁଲାଇ ଗହଳିଆ କଳା ଭୂଲତା ଫାଙ୍କରେ କଠୋର ଆଖିରେ ଚାହିଁଲେ ।

"ଆରେ, ଆମ 'ତମାଖୁ ଚୋକା' ଫେରିଲା ଏଥର, ଆଉ କେମିତି ଚାଲିଛି ସବୁ ?"

ତା' ପରବର୍ତ୍ତୀ କଥାବାର୍ତ୍ତା ସବୁ କୁଆଡ଼ିକି ମୁହାଁଇବ, ସେଇକଥା ଭାବି ପାଭେଲ୍‌ର ଛାତି ଦାଉଁକିନା ପଡ଼ିଲା ।

ମନେ ମନେ ସେ ଭାବିଲା, "ଆର୍ତେମ୍ ନିଶ୍ଚେ ସବୁ କଥା ଜାଣି ସାରିଲେଣି । ଏଇନେ କିଛି ଗାଳି ବୃଷ୍ଟି ହୋଇଯିବ ଆଉ ମାଡ଼ ବି ବୋଧେ ହୋଇଯିବ ତା ସାଙ୍ଗେ ସାଙ୍ଗେ ।"

ଭାଇକୁ ଦେଖି ଭୟରେ ଶଙ୍କି ଯାଇ କେମିତି ତଟସ୍ଥ ହୋଇ ରହିଲା ପାଭେଲ୍ ।

ଆର୍ତେମ୍‌ର କିନ୍ତୁ ତାକୁ ମାରିବାକୁ ଆଦୌ ଇଚ୍ଛା ନ ଥାଏ । ଟେବୁଲ ଉପରେ କହୁଣୀ ଭରାଦେଇ ସେ ଗୋଟାଏ ଟୁଲ୍ ଉପରେ ବସିଥାଏ, ଆଉ ପାଭେଲ୍‌ର ମୁହଁକୁ ତାଚ୍ଛଲ୍ୟ ଏବଂ କୌତୁକମିଶା ଚାହାଣୀରେ ନିରିଖିଥାଏ ।

"ତା' ହେଲେ ବିଶ୍ୱବିଦ୍ୟାଳୟରୁ ଗ୍ରାଜୁଏଟ୍ ହୋଇଗଲୁ ତୁ... ଏଥର ମଇଳା ପାଣି କଢ଼ାକଢ଼ିରେ ଖୁବ୍ ବ୍ୟସ୍ତ, ନା ?"

ଚଟାଣରୁ ବାହାରିପଡ଼ିଥିବା ଗୋଟାଏ କଣ୍ଟା ଆଡ଼କୁ ମୁହଁ ପୋତି ଚାହିଁଥାଏ ପାଭେଲ୍ । ଆର୍ତେମ୍ ଟେବୁଲରୁ ଉଠି ରୋଷେଇଘରକୁ ଚାଲିଗଲା ।

"ଯା ହଉ, ରକ୍ଷା ପାଇଗଲି ... ଜଣାଯାଉଛି ଯେମିତି ମାଡ଼ପାଡ଼ କିଛି ହବ ନାହିଁ ।" ଆଶ୍ୱସ୍ତିର ନିଃଶ୍ୱାସ ପକାଇ ଭାବିଲା ପାଭେଲ୍ ।

ପରେ ଗ୍' ଖାଉଥିଲାବେଳେ ସ୍କୁଲ ଘଟଣା ବିଷୟରେ ପଚାରିଲା ଆର୍ଟେମ୍ । ଯାହା ଯାହା ଘଟିଥିଲା, ସବୁ ବର୍ଣ୍ଣନା କଲା ପାଭେଲ୍ ।

"ଏମିତି ଛତରାଟିଏ ହୋଇ ବଢ଼ିଲେ କ'ଣ ହବ ତୋର ଭବିଷ୍ୟତରେ ?" ମା ବିଷଣ୍ଣ ଭାବରେ କହିଲା । "କ'ଣ କରିବା ଏଇଟାକୁ ନେଇ ? ହେ ଭଗବାନ୍, ଏ ପିଲାଟା ଲାଗି କେତେ ଯେ ଭୋଗିବି ମୁଁ, ସେ କଥା ଭାବିଲେ..." ମା ଅଭିଯୋଗ ବାଢ଼ୁଥିଲା ।

ଆର୍ଟେମ୍ ତା'ର ଖାଲି କପ୍‌ଟାକୁ ଟେବୁଲ ସେକଡ଼କୁ ପେଲିଦେଇ ପାଭେଲ୍ ଆଡ଼କୁ ଅନାଇଲା :

"ହଉ ବାବା, ଏଥର ଶୁଣ, ଯାହା ହେବାର ତ ହୋଇଗଲାଣି, ତାକୁ ଆଉ ଫେରାଇ ହେବ ନାହିଁ । ଏଣିକି ଆଉ ମାଙ୍କଡ଼ାମୀ ନ କରି ନିଜ କାମ ମନଦେଇ ଠିକ୍ କରି କର । ନହେଲେ ଏ କାମରୁ ଯଦି ତଡ଼ାଖାଇ ଆସୁନା, ତୋତେ ଆଚ୍ଛାକରି ଥୋଇବି, ମନେ ରଖିଥା । ସଦାବେଳେ ତୋର କିଛି ନା କିଛି ଗୋଟାଏ ଗଣ୍ଡଗୋଳ ଲାଗିଥିବ । ମାକୁ ଏଥିପାଇଁ ଅନେକ କଷ୍ଟ ଦେଲୁଣି । ସେସବୁ ବନ୍ଦ କରିବାକୁ ହେବ । ବର୍ଷେ ଏଠି ମନଦେଇ କାମ କର, ମୁଁ ତୋତେ ତା'ପରେ ନେଇ ରେଳବାଇ ୟାର୍ଡରେ କାମ ଶିଖାଳୀ ଭାବରେ ଚେଷ୍ଟା କରି ଭର୍ତ୍ତି କରାଇଦେବି । ସାରା ଜୀବନ ଏଇ ମଇଳା ପାଣିରେ ଘାଣ୍ଟି ହୋଇ କିଛି ତ ହେବୁ ନାହିଁ । ତୋତେ କିଛି ଗୋଟାଏ ଧନ୍ଦା ଶିଖିବାକୁ ହେବ । ଏବେ ତ ତୁ ବକଟେନାକୁ ପିଲା । ବର୍ଷକ ପରେ ଦେଖେ କ'ଣ କରାଯାଇପାରେ । ସେତେବେଳକୁ ତୋତେ ବୋଧେ ଭର୍ତ୍ତି କରି ଦେବେ ସେମାନେ । ଏବେ ତ ମୁଁ ଏଇଠି କାମ କରିବି । ମା'କୁ ଆଉ ଏଣିକି ବାରଦୁଆରକୁ କାମ କରିବାକୁ ଯିବା ଦରକାର ନାହିଁ । ଯାବତ୍ ବାଜେ ଲୋକଙ୍କ ପାଖରେ ଢେର ଖଟିଲାଣି ସେ, ଆଉ ନୁହଁ... କିନ୍ତୁ ଦେଖ୍ ପାଭେଲ୍, ତୋତେ ମଣିଷ ହେବାକୁ ପଡ଼ିବ... ଯେମିତି ହେଲେ ।"

ସେ ଉଠି ଛିଡ଼ାହେଲା । ତା'ର ବିରାଟ ଶରୀର ଆଗରେ ଆଉ ସବୁ ଯେମିତି ବାମନ ଭଳି ଦିଶିଲେ । ଚଉକି ପଛରେ ଝୁଲୁଥିବା ଜ୍ୟାକେଟ୍‌ଟା ପିନ୍ଧିନେଇ ମାକୁ କହିଲା :

"ଘଣ୍ଟାକ ପାଇଁ ବାହାରକୁ ଯିବାକୁ ପଡ଼ିବ ମୋତେ ।" ଦୁଆର ମୁହଁରେ ଟିକେ ନଇଁପଡ଼ି ବାହାରକୁ ବାହାରିଗଲା ସେ । ଫାଟକ ପାଖକୁ ଯାଉଁଯାଉଁ ଝରକା ପାଖରେ ସେ ଭିତରକୁ ଚାହିଁ ପାଭେଲ୍‌କୁ ଡାକି କହିଲା, "ତୋ ପାଇଁ ହଳେ ବୁଟ୍‌ଜୋତା ଆଉ ଛୁରୀଟାଏ ଆଣିଛି । ମା' ସେସବୁ ତୋତେ ଦେବ ।"

* * *

ଷ୍ଟେସନ୍‌ର ଜଳଖିଆ ଦୋକାନ ଦିନରାତି ଖୋଲା ଥାଏ । ଛଅ ଆଡ଼ୁ ଛଅଟା ରେଳଲାଇନ୍ ଆସି ସେଠି ଜଙ୍କସନ୍‌ରେ ଏକାଠି ହୋଇଛି । ସଦାବେଳେ ଜଙ୍କସନ୍‌ଟି ଲୋକରେ ଭରପୂର, ଗହଳଚହଳ ଲାଗି ରହିଥାଏ । ରାତିରେ ଘଡ଼ିଏ କି ଦୁଇ ଘଡ଼ି ପାଇଁ

ଟ୍ରେନ୍ ଚଳାଚଳ ଯେତେବେଳେ ବନ୍ଦ ଥାଏ, ସେତିକିବେଳେ ଅପେକ୍ଷାକୃତ ଶାନ୍ତ ହୋଇଆସେ ଷ୍ଟେସନ୍‌ଟି । ଯୁଦ୍ଧକ୍ଷେତ୍ରରୁ ଆହତ ଓ ବିକଳାଙ୍ଗ ଲୋକଙ୍କୁ ବୋହିଆଣି ଶହ ଶହ ଟ୍ରେନ୍ ଅବିରାମ ଧାରାରେ ସେଇ ଷ୍ଟେସନ୍ ବାଟେ ଯାଏ, ଆଉ ଗଲାବେଳେ ସେଠୁ ଏକାଭଳି ପାଉଁଶିଆ ଓଭରକୋଟ୍ ପିନ୍ଧା ନୂଆ ନୂଆ ଲୋକଙ୍କୁ ନେଇଯାଏ ।

ପାଭେଲ୍‌ର ଦିଓଟି ବର୍ଷ ବିତିଗଲା ସେଇଠି କାମ କରି କରି । ଦିଓଟି ବର୍ଷ, ଯେଉଁଥିରେ ସେ ବାସନମଜାଘର ଆଉ ରୋଷେଇଘର ଛଡ଼ା ଦୁନିଆର ଆଉ କିଛି ଦେଖି ନାହିଁ । ବିରାଟ ଗୋଟାଏ ତଳୁଆ ରୋଷେଇଘରେ ଝାଳନାଳ ହୋଇ ଅନବରତ ଖଟୁଥିବା କୋଡ଼ିଏ ଜଣ ଲୋକ, ଜଳଖିଆ ଦୋକାନର ଖାଇବାଘର ଓ ରୋଷେଇଘର ଭିତରେ ଏପଟ ସେପଟ ହୋଇ ଧାଁଧପଡ଼ ଲଗାଇଥିବା ଦଶଜଣ ପରଷୁଣୀ ।

ଏତେବେଳକୁ ମାସିକ ଆଠ ରୁବଲ ବଦଳରେ ଦଶ ରୁବଲ ଲେଖାଏଁ ପାଉଥାଏ ପାଭେଲ୍ । ଏଇ ଦୁଇ ବର୍ଷ ଭିତରେ ସେ ବେଶ ଡେଙ୍ଗା ଆଉ ଚଉଡ଼ା ହୋଇଯାଇଥାଏ । ଆଉ ଏଥିଭିତରେ ତାକୁ ଅନେକ ଦୁର୍ଭୋଗ ଭୋଗିବାକୁ ପଡ଼ିଥାଏ । ଛଅମାସ ପାଇଁ ସେ ରୋଷେଇଘରର ଟହଲିଆ ଭାବରେ କାମ କରିଛି—ତା'ପରେ ତାକୁ ପୁଣି ଫେରିଯିବାକୁ ପଡ଼ିଛି ବାସନମଜା ଜାଗାକୁ, ତା'ଉପରେ ରୋଷଦୃଷ୍ଟି ପଡ଼ିଥିବା ସର୍ବଶକ୍ତିମାନ ପ୍ରଧାନ ରାନ୍ଧୁଣୀର ଆଦେଶରେ, 'ଅବାଗିଆ ପିଲାଟାକୁ ସବୁବେଳେ ମାର୍ ଧର୍ କଲେ, ତମ ଅଜ୍ଞାତରେ ସିଏ କେତେବେଳେ ତମ ଦେହରେ ଛୁରା ଭୂଷି ଦେଇପାରେ ! ସତରେ ପାଭେଲ୍‌ର ଯେଉଁ ରାଗି ମିଜାଜ, ସେ କୋଉକାଳୁ ତା'ର ଏ ଚାକିରିଟିକୁ ହରାଇ ସାରନ୍ତାଣି, ଯଦି କଠିନ ପରିଶ୍ରମ କରିବା ପାଇଁ ତା'ଠାରେ ପ୍ରବଳ ଶକ୍ତି ଟିକକ ନଥାନ୍ତା । ଚାକିରିଟି ହରାଇ ନାହିଁ, କାରଣ ଟିକେ ବି କ୍ଳାନ୍ତ ଶ୍ରାନ୍ତ ନ ହୋଇ ସେ ଯେକୌଣସି ଲୋକଠାରୁ କଠିନ କାମ କରିପାରେ ।

ସବୁଠାରୁ ଭିଡ଼ବେଳେ, ଟ୍ରେଭର୍ତି ଥାଳି ଆଉ ଥାଳିଆ ଧରି ଝଡ଼ ବେଗରେ ସେ ଉପରୁ ତଳ ରୋଷେଇଘର ଯାଏ ଯିବା ଆସିବା କରୁଥାଏ—ପୁଣି ଥର ଥରକେ ଦି'ତିନିଟା ଲେଖାଏଁ ପାହାଚ ଡେଇଁ ଡେଇଁ ।

ରାତିରେ ଯେତେବେଳେ ଜଳଖିଆ ଦୋକାନର ଦିଓଟିଯାକ ହଲ୍‌ଘରର ଗହଳି ଥମିଆସେ, ପରଷୁଣୀମାନେ ସମସ୍ତେ ରୋଷାଇ ଘର ସଂଲଗ୍ନ ଭଣ୍ଡାରଘରଟାରେ ଏକାଠି ଜମା ହୁଅନ୍ତି, ଆଉ ବେପରୁଆ ତାସ୍‌ମାଡ଼ ଆରମ୍ଭ ହୋଇଯାଏ । ପାଭେଲ୍ ଅନେକ ସମୟରେ ତାସ୍‌ଖେଳ ଟେବୁଲ ଉପରେ ବହୁତ ପଇସା ଜମା ହୋଇଥିବାର ଦେଖେ । ସେ ସେଥିରେ ଆଶ୍ଚର୍ଯ୍ୟ ହୁଏ ନାହିଁ । କାରଣ, ସେ ଜାଣିଥାଏ ଯେ, ଗୋଟାଏ ରୁବଲ କି ଅଧରୁବଲ ଲେଖାଏଁ ବକସିସ୍ ପାଇବା ପାଇଁ ଜଣେ ଜଣେ ପରଷୁଣୀର ଓଳିକରେ ପ୍ରାୟ ତିରିଶ କି ଚାଳିଶ ରୁବଲ ହୁଏ, ଆଉ ସେସବୁକୁ ସେ ଜୁଆ ଖେଳି ଅବା ମଦ ପିଇ ଉଡ଼ାଇ ଦିଅନ୍ତି । ପାଭେଲ୍ ସେମାନଙ୍କୁ ଘୃଣା କରେ ।

"ବାଜେ ଲୋକଗୁଡ଼ାକ !" ସେ ଭାବେ, "ଆର୍ତେମ୍ ଗୋଟାଏ ପହିଲାନମ୍ବର

ମେକାନିକ୍‌ଟାଏ, ସିଏ ପାଉଛି ମାସକୁ ଅଠସ୍ତରିଶିଟା ରୁବଲ ମୋଟେ ମୁଁ ପାଉଛି ଦଶ ରୁବଲ! ଏଗୁଡ଼ାକ କିଛି ନକରି ଖାଲି ଟ୍ରେ ଏପଟ ସେପଟ କରି ଦିନକୁ ଏତେ ଲେଖାଏଁ କଞ୍ଚା ପଇସା ପାଉଛନ୍ତି । ପୁଣି ତାକୁ ସବୁ ମଦ ଜୁଆରେ ଉଡ଼ାଇ ଦେଉଛନ୍ତି । ହେଃ ...”

ପାଭେଲ୍‌କୁ ଲାଗେ; ତା’ ମାଲିକ୍‌ମାନେ ଯେମିତି, ଏଗୁଡ଼ାକ ବି ତାଙ୍କ ସାଙ୍ଗସରିସା ସେମିତି ବାଜେ ଲୋକ, ଖରାପ ଲୋକ ଆଉ ତା’ର ଶତ୍ରୁ । “ଏଠି ପେଟ ଦେଖେଇ ପଡ଼ିଛନ୍ତି ଭିକାରୀଙ୍କ ଭଳିଆ, ଘୁଷୁରିଙ୍କ ଭଳି ଘୁଷୁରୁଛନ୍ତି ଆଉ ତାଙ୍କ ପିଲା ମାଇପଙ୍କ ଫୁଟାଣି ପୁଣି ସେଣେ କାହିଁରେ କେତେ! ସହରଟା ସାରା ଘୂରିବୁଲୁଥିବେ, ଧନୀଲୋକଙ୍କ ଭଳି ।”

ବେଳେବେଳେ ବେଶ୍ ଦାମିକା ଦାମିକା ପୋଷାକ ପିନ୍ଧି ତାଙ୍କ ପିଲାମାନେ ଆସନ୍ତି ଏଠିକି । ସେମିତି ଚେହେରା ବାଗେଇ, ଚହଟ ଚିକ୍‌କଣ ହୋଇ ତାଙ୍କ ସ୍ତ୍ରୀମାନେ ବି ଆସନ୍ତି । ବେଳେବେଳେ ତ ଲାଗେ, ହୋଟେଲ୍‌ରେ ଯାହାଙ୍କୁ ସବୁ ଏମାନେ ପରଷୁଛନ୍ତି, ତାଙ୍କଠୁଁ ଏ ପରଷୁଣୀଗୁଡ଼ାଙ୍କର ବେଶି ପଇସା ଅଛି । ରୋଷେଇଘର କି ଭଣ୍ଡାରଘରର ଅନ୍ଧାରିଆ କଣମାନଙ୍କରେ, ରାତିରେ ଯାହାସବୁ ଘଟେ, ତାକୁ ସବୁ ଦେଖିଲେ ଏବେ ଆଉ ପାଭେଲ୍ ଚମକି ଉଠୁ ନାହିଁ । ସିଏ ଭଲଭାବରେ ଜାଣିଲାଣି ଯେ, କୌଣସି ବାସନ ମଜାଳୀ କି ପରଷୁଣୀ ସ୍ତ୍ରୀଲୋକ, ଯଦି କେତୋଟି ରୁବଲ ବିନିମୟରେ ଏଠାର ମୁଖିଆ ମୁଖିଆ ଲୋକଙ୍କ ପାଖରେ ନିଜକୁ ବିକ୍ରୀ ନ କରନ୍ତି, ତେବେ ଏଠି ବେଶିଦିନ ଟିକ୍ଷି ପାରିବେ ନାହିଁ ।

ଜୀବନ ପ୍ରତି ଉଦଗ୍ର ଆବେଗ ନେଇ, ଗୋଟାଏ ଝଲକରେ ପାଭେଲ୍ ଜୀବନର ସେ ଅତଳାନ୍ତ ଗହ୍ୱରକୁ ଦେଖିଲା ... ଦେଖିଲା ସେ କୁତ୍ସିତ ଗହ୍ୱରର ପୂତିଗନ୍ଧମୟ ନରକକୁ, ନର୍ଦ୍ଦମାକୁ, ଯେଉଁ ନରକର ସେ ପଚାସଡ଼ା, ଘୃଣ୍ୟ ଆବର୍ଜନାର ଦୂଷିତ ବାୟୁ ତାକୁ ରୁଦ୍ଧଶ୍ୱାସ କରିଦେଲା ।

ରେଳବାଇ ୟାର୍ଡ୍‌ରେ ଶିକ୍ଷାନବିସ ଭାବରେ ତାକୁ ଆର୍ଟେମ୍ ଭର୍ତ୍ତି କରିପାରି ନ ଥାଏ, କାରଣ ପନ୍ଦର ବର୍ଷର ତଳକୁ କାହାକୁ ସେଠି ନିଅନ୍ତି ନାହିଁ । କିନ୍ତୁ ଧୂଆଁରେ କଳା କିଟିକିଟି ହୋଇଥିବା ଇଟାର ସେ ବିରାଟ କୋଠାଟା ପ୍ରତି ପାଭେଲ୍ ସତୃଷ୍ଣ ନୟନରେ ଗ୍ରହିଁଥାଏ, ଆଉ ଦିନ ଗଣୁଥାଏ, କେବେ ଏ ଜଳଖିଆ ଦୋକାନରୁ ତାକୁ ମୁକ୍ତି ମିଳିବ!

ଆର୍ଟେମ୍ ସହିତ ଦେଖା କରିବା ପାଇଁ ରେଳବାଇ ୟାର୍ଡକୁ ସେ ଅନେକ ସମୟରେ ଯାଏ, ତା’ ସାଙ୍ଗରେ ବୁଲିବୁଲି ରେଳଡବାଗୁଡ଼ାକ ଉପରକୁ ଚଢ଼େ । ଯେତେବେଳେ ପାରେ, ତାକୁ କାମରେ ସାହାଯ୍ୟ କରେ ।

ସେ ନିଜକୁ ଅଧିକ ନିଃସଂଗ ମଣିଲା, ଫ୍ରୋସ୍ୟା ସେଠାରୁ ଚାଲିଯିବା ପରେ । ମନଫୁଲାଣିଆ, ହସକୁଡ଼ୀ ଝିଅଟି ଯିବା ପରେ ପାଭେଲ୍ ଭଲଭାବରେ ବୁଝିପାରିଲା, ତା’ ସହିତ ପାଭେଲ୍‌ର ସତେ କେତେ ବନ୍ଧୁତ୍ୱ ଥିଲା । ଆଉ ସେ ବନ୍ଧୁତ୍ୱର ମୂଲ୍ୟ କେତେ!

ଏବେ, ସକାଳୁ ବାସନମଜା ଘର ଭିତରକୁ ପଶିଯାଇ ଯେତେବେଳେ ଶରଣାର୍ଥୀ ପାଲେକଗୁଡ଼ାଙ୍କର ଚେଁଚେଁୟା ସ୍ୱରରେ କଳିକଜିଆ ଶୁଣେ, ସେ ବିବ୍ରତ ବୋଧ କରେ, ଗୋଟାଏ ଭୟଙ୍କର ନିଃସଂଗତା, ତୀବ୍ର ଶୂନ୍ୟତା ତାକୁ ଗ୍ରାସ କରିବସେ ସେଇ ମୁହୂର୍ତ୍ତରେ ।

* * *

ରାତିରେ କାମ ଯେତେବେଳେ କୋହଳ ଥାଏ, ସେତେବେଳେ ଚୁଲିର ଆଖପାଖରେ ଘୁରିବୁଲି, ମଝିରେ ମଝିରେ ଖଣ୍ଡେ ଖଣ୍ଡେ କାଠ ଚୁଲି ଭିତରକୁ ପକେଇଦେଇ, ନିଆଁର ଶିଖାକୁ ଚାହିଁ ରହିରହି ସେ ପ୍ରୋସ୍ୟାର କଥା ଭାବେ । ଆଉ ତା' ମନରେ ଭାସିଉଠେ ଏବେ ଦେଖିଥିବା ଗୋଟାଏ ଦୃଶ୍ୟ ।

ଶନିବାର ଥାଏ ସେଦିନ । ରାତିର ଅବସର ସମୟ । ପାଭେଲ୍ ତଳକୁ, ରୋଷେଇଘରକୁ ଯିବାକୁ ଓହ୍ଲାଉଥାଏ ପାହାଚରେ । ହଠାତ୍ ଜାଳେଣୀକାଠ ଗଦାଟା ଉପରେ ଚଢ଼ିଯାଇ ଜୁଆଡ଼ିମାନେ ଯେଉଁଠି ବସି ଖେଳନ୍ତି, ସେଇ ଭଣ୍ଡାରଘରକୁ ଅନାଇଲା ସେ । କାହିଁକି କେଜାଣି ହଠାତ୍ ଇଚ୍ଛାହେଲା ତା'ର ସେମିତି ଉଣ୍ଟିବାକୁ ।

ଖେଳ ପୂରାଦମ୍‌ରେ ଚାଲିଥାଏ ।

ଜାଲିଭାନୋଭ୍ ଉତ୍ତେଜନାରେ ନାଲି ପଡ଼ିଯାଇଥାଏ । ପଇସାପତ୍ର ସବୁ ତା'ରି ପାଖରେ ଠୁଳ ହୋଇଥାଏ, ପାଣ୍ଠି ରଖିଥାଏ ସେ ।

ଠିକ୍ ଏତିକିବେଳେ ପାହାଚ ଉପରେ କାହାର ପାଦଶବ୍ଦ ଶୁଭିଲା । ପଛକୁ ବୁଲି ଚାହିଁଲା ପାଭେଲ୍ । ପ୍ରୋଖଶ୍‌କା ଓହ୍ଲେଇ ଆସୁଛି ତଳକୁ । ପାହାଚ ତଳକୁ ଚୁପ୍‌କିନି ଖସିଗଲା ପାଭେଲ୍, ସେ ରୋଷେଇଘରକୁ ଚାଲିଯାଉ ବୋଲି । ସେଠି ଅନ୍ଧାରିଆ ହୋଇଥାଏ, ପ୍ରୋଖଶ୍‌କା ତାକୁ ଦେଖିପାରିଲା ନାହିଁ ।

ପ୍ରୋଖଶ୍‌କା ପାହାଚର ମୋଡ଼ଟା ବୁଲିଯାଇଛି କି ନାହିଁ, ତା'ର ଚଉଡ଼ା ପିଠି, ବଡ଼ ମୁଣ୍ଡଟା ଦିଶିଲା ପାଭେଲ୍‌କୁ ।

ଏତିକିବେଳେ ଆଉ ଜଣେ କିଏ ହାଲୁକା ପାଦରେ ତରତର ହୋଇ ଆସୁଥାଏ ତା' ପଛରେ । ପାଭେଲ୍ ଚିହ୍ନାସ୍ୱର ଶୁଣିଲା :

"ପ୍ରୋଖଶ୍‌କା, ଶୁଣ୍ ।"

ପ୍ରୋଖଶ୍‌କା ଅଟକିଲା ଆଉ ବୁଲିପଡ଼ି ପାହାଚ ଉପରକୁ ଅନାଇଲା ।

"କ'ଣ ଦରକାର ତୋର", ଗାଉଁ ଗାଉଁ ହୋଇ ପଚାରିଲା ସେ ।

ପାଦଶବ୍ଦଗୁଡ଼ାକ ମିଳାଇଗଲା ଏବଂ ଏଥର ପ୍ରୋସ୍ୟା ଦିଶିଲା ।

ପରଷୁଣୀଟାର ବାହାକୁ ଧରିପକାଇ ରୁଦ୍ଧ ଗଳାରେ, ଭଙ୍ଗାସ୍ୱରରେ ପଚାରିଲା ସେ :

"ଲେଫଟ୍‌ନାଣ୍ଟ ଯେଉଁ ପଇସାତକ ଦେଇଗଲେ ତମକୁ, କାହିଁ ସେ ପଇସାତକ ପ୍ରୋଖଶ୍‌କା ?"

ଲୋକଟା ତା ହାତରୁ ତା'ର ବାହାକୁ ବାହାର କରିନେଲା ।

"କୋଉ ପଇସା ? ତୋତେ ପରା ଦେଲି ? ଦେଇନି ମଁ ?" ତା' ସ୍ୱର ତାକ୍ଷଣ ଆଉ ଭୟଙ୍କର ଶୁଭୁଥାଏ ।

"ସିଏ କିନ୍ତୁ ତମକୁ ତିନିଶହ ରୁବଲ ଦେଇଗଲେ", ଫ୍ରୋସ୍ୟା ଏଥର କାନ୍ଦି କାନ୍ଦି ହୋଇଉଠିଲା ।

"ତିନିଶହ ରୁବଲ ଦେଲା ସିଏ ... ନାଇଁ ?" ପ୍ରୋଖଶ୍‌କା ବିଦ୍ରୂପ କରି ପଗ୍ଭରିଲା । "ସବୁ ତୁ ନବୁ , ସବୁ ମାରିବାକୁ ଇଚ୍ଛାଟା , ନାଇଁ ? ଗୋଟାଏ ବାସନ ମଜାଳୀର ପୁଣି କେଡ଼େ ସଧ ରେ ? ଆକାଶରେ ଏକାଥରକେ ଉଡ଼ିବୁ ... ନାଇଁ ? ଆହା ଲୋ ମୋ ସୁନ୍ଦରୀ ? ତୋତେ ଯେଉଁ ପଗ୍ଭଶ ଦେଇଛି , ସେଇ ଢେର । ତୋଠୁଁ ସୁନ୍ଦରୀ ପୁଣି ପାଠୋଇମାନେ ବି ଏତେ ନିଅନ୍ତି ନାହିଁ । ଯେତିକି ପାଇଲୁ , ସେଥିପାଇଁ ମୋତେ ଧନ୍ୟବାଦ ଦବା କଥା । ରାତିକ ପାଇଁ ଏକାବେଳେକେ ପଗ୍ଭଶ ରୁବଲ ! ତୋତେ ଖୁବ୍ ହେଲେ ଆଉ ଦଶ କି ନହେଲେ କୋଡ଼ିଏ ଦେଇପାରେ । ବାସ ... ସେତିକି ... । ଆଉ, ଯଦି ବୋକାମି ନ କରୁ , ଆଉରି କିଛି ଅଧିକ ମିଳିବ ଏଣିକି , ମୁଁ ତୋତେ ସାହାଯ୍ୟ କରିବି ।"

ଏତିକି କହି ପ୍ରୋଖଶ୍‌କା ବୁଲିପଡ଼ିଲା ଏବଂ ରୋଷେଇଘର ଭିତରେ ଅଦୃଶ୍ୟ ହୋଇଗଲା ।

"ବଦ୍‌ମାସ , ଅପଦାର୍ଥ , କୁକୁର !" ବୋଲି ଚିତ୍କାର କରିଉଠିଲା ଫ୍ରୋସ୍ୟା । ତା'ପରେ କାଠଗଦାଟା ଉପରେ ଆଉଜିପଡ଼ି କାନ୍ଦି କାନ୍ଦି ହୋଇ କାନ୍ଦିଉଠିଲା , ପାହାଚତଳର ସେଇ ଅନ୍ଧାର ଭିତରେ ଛିଡ଼ା ହୋଇହୋଇ ।

ଫ୍ରୋସ୍ୟାକୁ କାଠଗଦାଟା ଦେହରେ କାନ୍ଦି କାନ୍ଦି ମୁଣ୍ଡ ପିଟିବାର ଦେଖି ପାଭେଲ୍‌ର ଛାତି ଭିତରଟା ଯେ ସେତେବେଳେ କ'ଣ ହୋଇଯାଉଥିଲା , ସେକଥା ବର୍ଣ୍ଣନା କରିହେବ ନାହିଁ । କିନ୍ତୁ ମନ କଥା ପାଭେଲ୍ ପ୍ରକାଶ କଲା ନାହିଁ । ତା'ର ଆଙ୍ଗୁଠିଗୁଡ଼ାକ କମ୍ପିଉଠି ଜାବୁଡ଼ି ଧରିଥାନ୍ତି ପାହାଚର ଲୁହା ରେଲିଂଟାକୁ ଜୋର୍‌ରେ ।

"ଯାକୁ ବି ତା'ହେଲେ ବିକିଦେଲେ ସେମାନେ ଅପଦାର୍ଥଗୁଡ଼ାକ ! ଓଃ ... ଫ୍ରୋସ୍ୟା ... ଫ୍ରୋସ୍ୟା..."

ପ୍ରୋଖଶ୍‌କା ପ୍ରତି ତା'ର ଘୃଣା ଆହୁରି ତୀବ୍ରତର ହେଲା । ତା'ର ସମସ୍ତ ପରିପାର୍ଶ୍ୱ ସେହି ମୁହୂର୍ତ୍ତରେ ତା' ପାଇଁ ଘୃଣ୍ୟ ହୋଇ ଉଠିଲା । ବିଦ୍ରୋହ କରିଉଠିଲା ମନଟା ତା'ର ସମସ୍ତ ପରିବେଶ ପ୍ରତି । "ଶକ୍ତି ଥାଆନ୍ତା କି , ବଦ୍‌ମାସଟାକୁ ପିଟିପିଟି ଏକାଥରକେ ମାରିଦିଅନ୍ତି । ମୁଁ ଆର୍ତେମ୍ ଭଳି ବଡ଼ ଆଉ ଶକ୍ତିଶାଳୀ ହେଲି ନାହିଁ କାହିଁକି ଭଲା ?"

ଚୁଲି ଭିତରର ନିଆଁ ମଥା ଟେକିଉଠି ନିଭିଗଲା । ନିଆଁର ଲହ ଲହ ଜିଭ ନୀଳାଭ ହୋଇଉଠି , ଲମ୍ବମାନ ସର୍ପିଳ ଗତିରେ ହଲି ହଲି ଉପରକୁ ଉଠିବାକୁ ଲାଗିଲା । ପାଭେଲ୍‌କୁ ଲାଗିଲା , ଯେମିତି ଗୋଟାଏ କୁତ୍ସିତା ଡାଆଣୀ ଜିଭ ଲହଲହ କରି ତାକୁ ବିଦ୍ରୂପ କରୁଛି , ପରିହାସ କରୁଛି !

ଘରଟା ସାରା ନିଃସ୍ତବ୍ଧ ହୋଇଯାଇଥାଏ, ନିଆଁ ଚଡ଼ ଚଡ଼ ହେଉଥାଏ ଆଉ ମଝିରେ ମଝିରେ ସାମୟିକ ବ୍ୟବଧାନରେ ରହି ରହି କଳରୁ ପାଣି ଝରୁଥାଏ ଗଳଗଳ ହୋଇ ।

ସର୍ବଶେଷ ହାଣ୍ଡିଟିଙ୍କ ଚିକ୍‌ଚିକ୍ ହେଲାପାଏଁ ମାଜିସାରି ଆଣି ରଖିଲା କିମ୍ମ୍‌କା । ରୋଷେଇଘରେ ଆଉ କେହି ନଥାନ୍ତି । ପାଚିଥିବା ପୂଜାରୀ ଆଉ ଟହଲିଆ ଦୁହେଁ ଶୋଇଯାଇଥାନ୍ତି ପାଖ ଘରଟାରେ । ରାତିର ଏଇ ତିନୋଟି ଘଣ୍ଟା ମଧ୍ୟରେ ରୋଷେଇଘର ଉପରେ ନିଃସ୍ତବ୍ଧତା ଘୋଟିଯାଏ । ଆଉ ଏହି ସମୟଟକ କିମ୍ମ୍‌କା ଉପର ମହଲରେ ପାଭେଲ୍ ସହିତ ବିତାଏ । ସେ ଦୁହିଁଙ୍କ ଭିତରେ ଗଢ଼ି ଉଠିଥାଏ ଅଖଣ୍ଡ ବନ୍ଧୁତା । ରୋଷେଇଘର ଟୋକା ଆଉ ଜଣେ ଚୁଲିଜଳା ଟହଲିଆ । କିମ୍ମ୍‌କା ଦେଖିଲା, ପାଭେଲ ଚୁଲି ଆଗଟାରେ ଟହଲ ମାରୁଛି । ପାଭେଲ୍ ଦେଖିଲା, ତା'ର ପରିଚିତ କଳା ଛାଇ କାଛରେ ଉକୁଟିଉଠିଲା । ମୁହଁ ନ ବୁଲାଇ ସେ କହିଲା :

"ବସ କିମ୍ମ୍‌କା !"

କାଠଗଦା ଉପରେ ଚଢ଼ିଗଲା ସେ, ଚିତ୍ ହୋଇ ଗଡ଼ିଗଲା ତା'ଉପରେ । ତା'ପରେ ନୀରବ ପାଭେଲ୍‌କୁ ଅନାଇଲା ।

"ନିଆଁକୁ ଅନାଇଁ ଅନାଇଁ ଭାଗ୍ୟଫଳ କଷୁଛୁ କିରେ ?" ହସିହସି କହିଲା ସେ ।

ଅଗ୍ନିଶିଖାର ଲହଲହ ଜିଭ ଉପରୁ ନିଜ ଆଖିକୁ ବିଚ୍ଛିନ୍ନ କରି ଆଣିଲା ପାଭେଲ୍ । ବିଷଣ୍ଣତାରେ ପୂରିରହିଥିବା ତା'ର ଆଖିଦିଓଟି ଏଥର କିମ୍ମ୍‌କା ଉପରେ ପଡ଼ିଲା । କିମ୍ମ୍‌କା ଏଥିପୂର୍ବରୁ ତା'ର ବନ୍ଧୁକୁ ଆଉ କେବେ ଏମିତି ବିଷଣ୍ଣ ହେବାର ଦେଖି ନ ଥିଲା ।

"ତୋର ଆଜି କ'ଣ ହୋଇଛି ରେ ପାଭେଲ୍ ?" ଟିକେ ରହି ପୁଣି ପଗ୍ଚରିଲା, "କ'ଣ କିଛି ଘଟିଛି ?"

ପାଭେଲ୍ ଉଠିପଡ଼ିଲା ଏବଂ କିମ୍ମ୍‌କା ପାଖରେ ଆସି ଲଗିକରି ବସିଲା ।

"ନାଁ, କିଛି ଘଟି ନାହିଁ", ଅନୁଚ୍ଚ ସ୍ୱରରେ କହିଲା ସେ । "କେବଳ ମୋତେ ଏ ଜାଗା ଭାରୀ ଅସହ୍ୟ ଲଗୁଛି ।" ଆଣ୍ଠୁ ଉପରେ ପଡ଼ିଥିବା ତା'ର ହାତଦୁଇଟି ମୁଠା ମୁଠା ହୋଇଆସିଲା ।

କହୁଣୀରେ ଭରା ଦେଇ, ତେରି ହୋଇ ରହି କିମ୍ମ୍‌କା ଜିଗର କରି ପଗ୍ଚରିଲା ଏଥର :

"କ'ଣ ତୋର ହୋଇଛି କିରେ ଆଜି ? କ'ଣ ହୋଇଛି ?"

"ଆଜି ... ଏ କାମ କଲା ଦିନୁଁ ଏମିତି ଲଗେ ... ଲଗିଆସୁଛି । ଦେଖିଲୁ ଏ ଜାଗାକୁ । ଆମେ ଗଧ ଭଳି ଖଟୁଛେ ଆଉ ତା' ବଦଳରେ ବାହାବା ନ ପାଇ ପାଉଛୁ ବିଧା ଗ୍ଚପୁଡ଼ା । ଯିଏ ହେଲେ ତୋତେ ମାରିପାରେ । ଜଣେ ହେଲେ କେହି ନାହିଁ, ଯିଏ ପିଠିରେ ପଡ଼ିବ ... ମାଲିକ ସିନା କେଇଟା ପଇସା ଦେଇ ଆମକୁ ରଖିଛି ତାଙ୍କ ପାଇଁ ଖଟେଇବାକୁ, ହେଲେ ଯାହା ଦେହରେ ଏଠି ବଳ ଅଛି ସିଏ ଆମକୁ ମାରିପାରିଲା । ଯେତେ ଧାଁଧପଡ଼ ହୋଇ ଧୂଳିମଳିରେ ଲେଟି କାମ କଲେ ବି ତ ଆଉ

ସମସ୍ତଙ୍କୁ ଖୁସି କରିପାରିବ ନାହିଁ ... ଯିଏ ଖୁସି ନ ହେଲା ସିଏ ଥୋଇଲା । ସବୁ କାମ ଠିକ୍ ଠିକ୍ କରିବାକୁ ଯେତେ ଚେଷ୍ଟା କର ପଛକେ, କେହି ଯେମିତି ଦୋଷ ବାଛିବେ ନାହିଁ । ଦେଖିବ କୋଉଁଠି କିଏ ଜଣେ ବାହାରିବ, ଯାହା କାମ ତମେ ଜଇଦି ସାରିପାରିନ, ଆଉ ସିଏ ଠିକ୍ ଧରିବ ତମ ବେକଷଣ୍ଟାକୁ ।”

“ହେଃ, ଏମିତି ପାଟି କରନାଁ ! କିଏ ବୁଆଡ଼ୁ ଆସୁଥିବ, ଶୁଣିବ କାଳେ !” ଡରିଯାଇ କହିଲା କିମ୍ବକା ।

ପାଭେଲ୍ ଉଠି ଛିଡ଼ାହେଲା ଭୁସ୍‌କିନା ।

“ଶୁଣନ୍ତୁ ... ମୁଁ ଯେମିତି ହେଲେ ଏ ଗ୍ଧକିରି ଛାଡ଼ିଦେବି । ଏମିତି ବଜ୍ଜାତ୍ ଜାଗାରେ ନେପ୍‌ଟେଇ କରି ପଡ଼ିବା ଅପେକ୍ଷା ରାସ୍ତାରେ ଯାଇଁ ବରଫ ସଫା କରିବି ପଛେ ଝାଡ଼ୁ ଧରି । ଜାଲିଯାତ୍ ଲୋକରେ ଭରପୂର ହୋଇଛି । ଏଇଟା ଗୋଟାଏ ଗୁହା । ଭାବିଛୁ ଥରେ, କେତେ କେତେ ପଇସା ସେମାନେ ପାଉଛନ୍ତି ! ଆମକୁ ଦେଖୁଛନ୍ତି ଯେମିତି ମୁଠାଏ ଧୂଳି କି ଅଳିଆ ମେଁଶ୍ୱଏ ! ଝିଅଗୁଡ଼ାକ ସାଙ୍ଗରେ ଯା'ଚ୍ଛାତା ବ୍ୟବହାର କରୁଛନ୍ତି । ଯେଉଁ ଝିଅ ଭଲ ଆଉ ତାଙ୍କ କଥାରେ ରାଜି ହେଉ ନାହାନ୍ତି, ତାଙ୍କୁ ସବୁ ଗୋଇଠା ମାରି ନିକାଲି ଦେଉଛନ୍ତି । ତାଙ୍କ ବଦଳରେ ପେଟବିକଳିଆ, ଶରଣାର୍ଥୀ, ଯାହାଙ୍କର ଆଉ କିଛି ଗତି ନାହିଁ, ତାଙ୍କୁଇ ସବୁ ଆଣି ରଖୁଛନ୍ତି ଭଲ ଭଲ ଝିଅଙ୍କ ଜାଗାରେ । ସେମାନେ ଏଠି ମାଟିକାମୁଡ଼ି ପଡ଼ିରହିଛନ୍ତି, ଆଉ ଯାହା ହେଉ ପଛକେ, ପେଟକୁ ମୁଠାଏ ଖାଇବାକୁ ପାଉଛନ୍ତି ବୋଲି । ଏତେ ଖରାପ ଅବସ୍ଥା ତାଙ୍କର ସବୁ ଯେ, ରୁଟି ଖଣ୍ଡକ ପାଇଁ ଯାହା ଇଚ୍ଛା କରିବେ ସେମାନେ ।”

ଏତେ ଗଭୀର ଆବେଗ ସହକାରେ ସେ କଥାଗୁଡ଼ାକ କହୁଥିଲା ଯେ, କିଏ କାଳେ କେଉଁଠି ଶୁଣିବ ବୋଲି ଭୟ ପାଇ କିମ୍ବକା ଡେଇଁପଡ଼ି ଉଠିଯାଇ ରୋଷେଇଘର ଆଡ଼କୁ ଖୋଲାଥିବା ଦୁଆରଟା ବନ୍ଦ କରିଦେଲା । ପାଭେଲ୍ ସେତେବେଳେ ତା'ର ଜଳୁଥିବା ଅନ୍ତରାତ୍ମାର ସମସ୍ତ ଚିନ୍ତା ଉଗାରି ପକାଉଥିଲା କଥାରେ କଥାରେ ।

“ଆଉ ତୁ, ତୋ ଉପରେ ଯେତେ ମାଡ଼ ହୁଏ, ସବୁ ତ ପିଠେଇ ସହିଯାଉଛୁ । କାହିଁ, କେବେ ତ ପଦେହେଲେ କିଛି କହୁନୁ ?”

ଟେବୁଲ କଡ଼ରେ ପଡ଼ିଥିବା ଖଣ୍ଡିଏ ଟୁଲ୍ ଉପରେ ସେ ବସିପଡ଼ିଲା । ଅବସାଦରେ ଭାଙ୍ଗିପଡ଼ି ନିଜ ହାତପାପୁଲି ଉପରେ ରଖିଲା କପାଳକୁ । ନିଆଁରେ କେଇଖଣ୍ଡ କାଠ ପକାଇଦେଇ କିମ୍ବକା ବି ତା' ପାଖରେ ଟେବୁଲ କଡ଼ ଟୁଲ୍‌ରେ ବସିଲା ।

“ଆଜି କିଛି ପଢ଼ିବା ନାହିଁ ?” ପାଭେଲ୍‌କୁ ପଚାରିଲା ସେ ।

“କିଛି ପଢ଼ିବାକୁ ନାହିଁ”, ପାଭେଲ୍ ଉତ୍ତର ଦେଲା, “ବହି ଦୋକାନଟା ବନ୍ଦ ହୋଇଗଲାଣି ।”

“ଆଜି କାହିଁକି ବନ୍ଦ ହୋଇଛି ?” ଆଶ୍ଚର୍ଯ୍ୟ ହୋଇ ପଚାରିଲା କିମ୍ବକା ।

"ପୁଲିସ୍‌ବାଲା ଧରି ନେଇଯାଇଛନ୍ତି ବହିଦୋକାନୀକୁ । କ'ଣ କୁଆଡ଼େ ପାଇଲେ ତା'ଠୁଁ", ପାଭେଲ୍ ଉତ୍ତର ଦେଲା ।

"ଧରିନେଇଗଲେ ? କାହିଁକି ?"

"କହୁଛନ୍ତି ତ ରାଜନୀତି ପାଇଁ ।"

ତା' କଥାର ଅର୍ଥ ବୁଝିନପାରି କ୍ଲିମ୍‌କା ପାଭେଲ୍‌କୁ ବଲବଲ କରି ଚାହିଁଲା କେବଳ ।

"ରାଜନୀତି ? କ'ଣ ସେଇଟା ?"

"କେଜାଣି କ'ଣ ? ଭଗବାନଙ୍କୁ ଜଣା । କହୁଛନ୍ତି ତ ଜାର୍ ବିରୁଦ୍ଧରେ ଗଲେ ରାଜନୀତି", କାନ୍ଧଟା ଟିକେ ଝାଙ୍କି ଦେଇ କହିଲା ପାଭେଲ୍ ।

ଚମକିପଡ଼ିଲା କ୍ଲିମ୍‌କା ।

"ଲୋକେ କ'ଣ, ଏମିତି କାମ କରନ୍ତି ?"

"ମୁଁ ଜାଣେନି", ପାଭେଲ୍ କହିଲା ।

କବାଟ ଖୋଲିଗଲା ଏବଂ ନିଦମଳମଳ ଫୁଲିଲା ଫୁଲିଲା ଆଖିରେ ଗ୍ଲାଶା ବାସନମଜା ଘରକୁ ପଶିଆସିଲା ।

"ତମେ ଦିଇଟା ଶୋଇନ କାହିଁକି ରେ ? ରେଳ ଆସିବାକୁ ଘଣ୍ଟାଏ ଅଛି, ଏତିକିବେଳେ ଟିକେ ଶୋଇଯିବା ବେଳ । ଯାଅ ଟିକେ ଶୋଇପଡ଼ । ପାଭେଲ୍ ଯା', ମୁଁ ଚୁଲିଟା ଦେଖୁଛି ବସି ।"

* * *

ଯେତେ ଚଞ୍ଚଳ କାମଟା ଛାଡ଼ିବ ବୋଲି ଆଶା କରିଥିଲା ପାଭେଲ୍ ତା'ଠାରୁ ଆହୁରି ଚଞ୍ଚଳ ତାକୁ କାମ ଛାଡ଼ିବାକୁ ପଡ଼ିଲା । ପୁଣି ଅକଳ୍ପନୀୟ ଭାବରେ ଛାଡ଼ିଲା ସେ ।

ଜାନୁଆରୀର କୁହୁଡ଼ିଘେରା ସେ ସକାଳଟାରେ, ତା' ପାଳି ସାରି ପାଭେଲ୍ ଘରକୁ ଯିବାକୁ ବାହାରିଛି, ଦେଖିଲା, ତା' ବଦଳରେ କାମ କଲାବାଲା ପିଲାଟାର ଦେଖା ନାହିଁ ସେଯାଏଁ । ପାଭେଲ୍ ମାଲିକାଣୀ ପାଖକୁ ଯାଇ ଜଣାଇଲା, ସେ ଯାଉଛି ବୋଲି । ଯାହା ହେବାର ହେଉ ପଛକେ ! ମାଲିକାଣୀ କିନ୍ତୁ କାନ ଦେଲା ନାହିଁ ତା' କଥାରେ । ପୂରା ଦିନେ ଆଉ ରାତିଏ ଖଟିଖଟି ଥକି ଯାଇଥିଲେ ବି ନାଧ୍ୟ ହୋଇ କାମ କଲା । ଆଉ କିଛି ଗତି ନଥିଲା । ସଞ୍ଜବେଳକୁ ଝୋଲମାରି ଯାଉଥାଏ ଦେହଟା । ରାତିକି ତାକୁ ପାଣି ଫୁଟେଇ ରଖିବାକୁ ହେବ, ରାତି ତିନିଟାର ରେଳ ପାଇଁ ।

ପାଭେଲ୍ କଳ ମୋଡ଼ିଲା । କଳରେ କିନ୍ତୁ ପାଣି ନ ଥାଏ । ପମ୍ପଟା ବୋଧହୁଏ କାମ କରୁ ନ ଥାଏ । କଳଟା ସେମିତି ଖୋଲରଖି ସେ ଅପେକ୍ଷା କରି କରି କାଠଗଦା ଉପରେ ଟିକେ ଗଡ଼ିପଡ଼ିଲା । କିନ୍ତୁ ଭୟଙ୍କର କ୍ଳାନ୍ତଶ୍ରାନ୍ତ ହୋଇପଡ଼ିଥିଲା ତ, ସାଙ୍ଗେ ସାଙ୍ଗେ ନିଘୋଡ଼ ନିଦରେ ଶୋଇପଡ଼ିଲା ।

କେତେ ମିନିଟ୍ ଯାଇଛି କି ନାହିଁ, କଳଟାରୁ ଖଳଖଳ ସୁ' ସୁ' ହୋଇ ପାଣି ଝରିଲା, ଆଉ ହଣ୍ଡାଟାରେ ଭର୍ତ୍ତି ହୋଇଗଲା । ହଣ୍ଡା ପୂରିଯାଇ ପାଣିଗୁଡ଼ାକ ବୋହି ବୋହି ବ୍ରାସ୍‌ନମଙ୍କା ଘରର ଟାଇଲଦିଆ ଚଟାଣ ଓଦା ହୋଇ ବୋହିବାକୁ ଲାଗିଲା । ସବୁଦିନ ପରି ସେତେବେଳେ ପୁଣି ସେଇଟା ନିକାଞ୍ଚନ ! କେହି ନ ଥାନ୍ତି ସେଠି । ଚଟାଣଟା ସାରା ପାଣିରେ ବୁଡ଼ି, ଶେଷକୁ ରେସ୍ତୋରାଁର ଖାଇବାଘରକୁ ପାଣି ପଶି ତିନ୍ତାଇବାକୁ ଲାଗିଲା – ପାଣି ସେମିତି ପଡ଼ୁଥାଏ ।

ଘୁମନ୍ତ ଯାତ୍ରୀମାନଙ୍କର ପେଡ଼ୀପୋଟଳା, ବାକ୍‌ସ, ବିଛଣାପତ୍ର ଚାରିକଡ଼େ ପାଣି ମଦାମଦା ହୋଇ ଜମିଲା । ସେସବୁ ତିନ୍ତିଗଲା । କେହି କିନ୍ତୁ ଲକ୍ଷ୍ୟ କରି ନ ଥାନ୍ତି ସେପର୍ଯ୍ୟନ୍ତ । ଚଟାଣରେ ଶେଯ ବିଛାଇ ଯାତ୍ରୀଟିଏ ଶୋଇଥିଲା । ପାଣି ବୋହିବୋହି ତାକୁ ତିନ୍ତାଇଦେଲା ମାତ୍ରେ ସିଏ ହାଉଳିଖାଇ ପାଟିକରି ଉଠିପଡ଼ିଲା । ଯିଏ ଯେଉଁଠି ଥିଲେ ଦଉଡ଼ାଦଉଡ଼ି କଲେ, ବିଛଣାପତ୍ର, ଗଣ୍ଠିଲି ବୁଜୁଳା ସମ୍ଭାଳିବା ପାଇଁ ଠେଲାପେଲା ହୋଇ ଧାଇଁଲେ । ହଟ୍ଟଗୋଳ ଆରମ୍ଭ ହୋଇଗଲା ।

ପାଣି ସେମିତି ଝରୁଥାଏ, ଆଉ ବହିଚାଲିଥାଏ ।

ପ୍ରୋଖଶ୍‌କା ଦ୍ୱିତୀୟ ହଲ୍‌ଘରର ଟେବୁଲ ସଫା କରୁଥିଲା । ହଠାତ୍ ଏ କୋଳାହଳ ଶୁଣି ଦଉଡ଼ିଆସିଲା ସେ । ପାଣିମଦା ଉପରେ ଡେଇଁ ଡେଇଁ, ଧଡ଼୍‌କିନା କବାଟଟା ପେଲିଦେଇ ଫିଟାଇଦେଲା । କବାଟ ସେପଟେ ଜମିରହିଥିବା ପାଣିତକ ଏଥର ପଶିଆସି ହଲ୍‌ରେ ପାଣି ଲହଡ଼ା ମାରିଲା ।

ପାଟିଗୋଳ ଆହୁରି ବଢ଼ି ଉଠିଲା । କାମ କରୁଥିବା ବାସନ ମଜାଳୀମାନେ ଧାଇଁ ଆସିଲେ । ନିଦ୍ରିତ ପାଭେଲ୍ ଉପରେ ମାଡ଼ିବସିଲା ପ୍ରୋଖଶ୍‌କା ।

ପିଲାଟାକୁ ବିମୂଢ଼, ସ୍ତବ୍ଧ କରିଦେଇ ତା' ମୁଣ୍ଡରେ, ଗାଲରେ, ପିଠିରେ ବିଧାଗୋଇଠା ବର୍ଷିଗଲା ଅବିଶ୍ରାନ୍ତ ଭାବରେ ।

ନିଦଟା ସେଯାଏଁ ପୂରାପୂରି ଛାଡ଼ି ନଥାଏ । କ'ଣ ଘଟିଯାଇଛି କିଛି ଧାରଣା କରିପାରୁ ନଥାଏ ସେ । କେବଳ ସାରାଦେହରୁ ନିଆଁ ହୁଳା ବାହାରିଯାଉଛି, ଆଖିକୁ ଝଲକା କରି ମାଡ଼ ବର୍ଷିଯାଉଛି । ଆଉ ସାରାଦେହ ବିନ୍ଧିଉଠୁଛି କଠିନ ଯନ୍ତ୍ରଣାରେ – ଏତିକି କେବଳ ଜାଣୁଥାଏ ସେ ।

ଏଭଳି ନିର୍ମମଭାବରେ ମାଡ଼ ଖାଇଥିଲା ସେଦିନ ଯେ, କୌଣସି ମତେ ନିଜକୁ ଘୋଷାରିଓଟାରି ଘରକୁ ଫେରିଲା ସେ ।

ତହିଁଆରଦିନ ସକାଳୁ ଗମ୍ଭୀର ମୁହଁରେ, ରାଗରେ ତମତମ ହୋଇ ଆର୍ଟେମ୍, କ'ଣ ଘଟିଲା ବୋଲି ଜାଣିବାକୁ ଚାହିଁଲା ଭାଇଠୁଁ ।

ପାଭେଲ୍ ତାକୁ ସବୁ କହିଲା ।

"କିଏ ତୋତେ ମାରିଲା ?" ରକ୍ଷଭାବରେ ପଚାରିଲା ଆର୍ଟେମ୍ ।

"ପ୍ରୋଖଶ୍‌କା ।"

"ଠିକ୍ ଅଛି, ତୁ ଚୁନି ହୋଇ ଶୋ ।"

ଆଉ ପଦେ କିଛି ନ କହି, ଆର୍ତେମ୍ ତା'ର ଜ୍ୟାକେଟ୍‌ଟା ଓଟାରିନେଇ ବାହାରକୁ ଚାଲିଗଲା ।

* * *

"ପରକ୍ଷୁଣୀ ପ୍ରୋଖୋର୍‌କୁ କୋଉଠି ପାଇବି ?" ଜଣେ ବାସନ ମଜାଳୀକୁ ପଚାରିଲା ସେ । ବାସନମଜା ଘରକୁ ଧସେଇ ପଶିଆସିଥିବା ଶ୍ରମିକ ପୋଷାକପିନ୍ଧା ଏ ଅପରିଚିତ ଲୋକଟିକୁ ଦଣ୍ଡେ ଚାହିଁଲା ଗ୍ଲାଶା ।

"ଏହିକ୍ଷଣି ଆସିଯିବ ଏଠିକି", ଉତ୍ତର ଦେଲା ସେ । ଦୁଆରକୁ ଆଉଜାଇଦେଲା ତା'ର ବିରାଟ ବପୁଟାକୁ । କହିଲା, "ଠିକ୍ ଅଛି, ମୁଁ ଅପେକ୍ଷା କରିବି ।"

ପ୍ରୋଖଶ୍‌କା ପର୍ବତ ପ୍ରମାଣରେ ଗୁଡ଼ାଏ ଥାଳି ଆଉ ଥାଳିଆ ଟ୍ରେରେ ଲଦି, କବାଟକୁ ଗୋଇଠାଟାଏ ପକାଇ ଫିଟାଇ ଦେଇ ପଶିଆସିଲା ବାସନମଜା ଘର ଭିତରକୁ ।

"ଏଇ ପ୍ରୋଖୋର୍", ଦେଖାଇଦେଲା ଗ୍ଲାଶା ।

ପାଦେ ଆଗେଇଯାଇ ଆର୍ତେମ୍ ପ୍ରୋଖଶ୍‌କାର କାନ୍ଧ ଉପରେ ତା' ନିଜର ଓଜନିଆ ହାତଟାଏ ରଖି, ସିଧାସଳଖ ତା'ର ଆଖିଦିଇଟାକୁ ଅନାଇଲା :

"ମୋ ଭାଇ ପାଭ୍‌କାକୁ କାହିଁକି ମାରିଲୁବେ ?"

ପ୍ରୋଖୋର୍ ତା'ର କାନ୍ଧଟାକୁ ହୁଗୁଳାଇ ନେବାକୁ ଚେଷ୍ଟା କଲା । ଏତିକିବେଳେ ଆର୍ତେମ୍‌ର ଗୋଟାଏ ନିର୍ଘାତିଆ ମୁଥ ମାରି ଚାକୁ ଲୋଟାଇଦେଲା ଭୂଇଁରେ – ଚଟାଣ ଉପରେ । ଉଠିବାକୁ ଚେଷ୍ଟା କଲା ସେ । ଏଥର ପ୍ରଥମ ଅପେକ୍ଷା ଆହୁରି ଭୟଙ୍କର ଆଉ ଗୋଟାଏ ମୁଥ ତାକୁ ପୁଣି ମାଟିକାମୁଡ଼େଇ ଦେଲା ।

ଭୀତତ୍ରସ୍ତ ବାସନ ମଜାଳୀମାନେ ଚାରିକଡ଼କୁ ଖେଳେଇ ହୋଇଗଲେ ।

ବୁଲିପଡ଼ି ବାହାରି ଚାଲିଗଲା ଆର୍ତେମ୍ । ପ୍ରୋଖୋର୍ ଚାରିକାତମାରି ପଡ଼ିଥିଲା ଭୂଇଁରେ । ବିଧାରେ ଛେଚରା ହୋଇଯାଇଥିବା ମୁହଁରୁ ତା'ର ଝର୍ ଝର୍ ରକ୍ତ ଝରୁଥିଲା ।

ସେଦିନ ସନ୍ଧ୍ୟାରେ ରେଳବାଇ ୟାର୍ଡରୁ ଆର୍ତେମ୍ ଘରକୁ ଫେରିଲା ନାହିଁ ।

ମା' ତା'ର ଜାଣିଲା ଯେ, ତାକୁ ପୁଲିସ୍‌ବାଲାଏ ଅଟକାଇଛନ୍ତି । ସେ ଗିରଫ ହୋଇଛି ।

ଛଅଦିନ ପରେ, ଅଧରାତିରେ ଘରକୁ ଫେରିଲା ସେ । ମା' ତା'ର ସେତେବେଳକୁ ଶୋଇପଡ଼ିଥାଏ । ସେ ପାଭେଲ୍ ପାଖକୁ ଗଲା । ପାଭେଲ୍ ବିଛଣା ଉପରେ ଉଠି ବସିଥାଏ ।

ବିଛଣାରେ ପାଭେଲ୍ ପାଖରେ ବସି ପଚାରିଲା, "କେମିତି ଲାଗୁଛି ରେ ? ଟିକେ ଭଲ ଲାଗୁନି ? ଆଉ କିଛି ହୋଇନି, ରକ୍ଷା ! କିଛି ଚିନ୍ତା କରନା । ତୁ ଇଲେକ୍‌ଟ୍ରିକ୍

ଷ୍ଟେସନ୍‌କୁ କାମ କରିବାକୁ ଯିବୁ – ମୁଁ ତାକୁ ତୋ କଥା କହିଛି । ଗୋଟାଏ କାମ ଭଳି କାମ ଶିଖିବୁ ସେଠି ।"

• 'ପାଭେଲ୍ ଦି'ହାତରେ ଆର୍ତେମ୍‌ର ଟାଣୁଆ ହାତକୁ ଜାବୁଡ଼ି ଧରିଲା ।

# ଦ୍ୱିତୀୟ ପରିଚ୍ଛେଦ

"ଜାର୍ କ୍ଷମତାଚ୍ୟୁତ !"

"ଜାର୍ ଆଉ ଗାଦିରେ ନାହିଁ !"

ବିରାଟ ବିସ୍ମୟକର ଏ ଖବର, ଗୋଟାଏ ଘୂର୍ଣ୍ଣିବାତ୍ୟା ଭଳି ମୁହୂର୍ତ୍ତକ ଭିତରେ ସାରା ସହରରେ ଖେଳିଗଲା ।

ସହରର ଅଧିବାସୀମାନେ କେହି ପ୍ରଥମେ ବିଶ୍ୱାସ କଲେ ନାହିଁ ସମ୍ବାଦଟାକୁ ।

ତା'ପରେ ଶୀତାର୍ତ୍ତ ଏକ ବତାସିଆ ରାତିରେ, ଗୋଟାଏ ଟ୍ରେନ୍ ଘୁଷୁରି ଘୁଷୁରି ଆସି ପହଞ୍ଚିଲା ଷ୍ଟେସନ୍‌ରେ । ଓହ୍ଲାଇଲେ ଦିଓଟି ଛାତ୍ର । ପିନ୍ଧିଥାନ୍ତି ସୈନିକର ପୋଷାକ – ବଡ଼ ବଡ଼ ଓଭରକୋଟ୍ । କାନ୍ଧରେ ଝୁଲୁଥାଏ ତାଙ୍କର ବନ୍ଧୁକ । ଆଉ ସାଙ୍ଗରେ ତାଙ୍କର ବାହୁରେ ଲାଲ ବାହୁବନ୍ଧନୀ ପିନ୍ଧିଥିବା ଗୋଟାଏ ସୈନ୍ୟବାହିନୀ ! ଖପ୍‌ଖାପ୍ ଡେଇଁପଡ଼ିଲେ ପ୍ଲାଟ୍‌ଫର୍ମ ଉପରକୁ । ଷ୍ଟେସନ୍‌ର ପୁଲିସ୍‌ବାଲାଗୁଡ଼ାକୁ, ପୁରୁଣା ବୁଢ଼ା କର୍ଣ୍ଣେଲ ଆଉ ପୁଲିସ୍ ଫୌଜର ଅଧିନାୟକଙ୍କୁ ଗିରଫ କରିନେଲେ । ସହରବାସୀ ଏଥର ବିଶ୍ୱାସ କଲେ ସମ୍ବାଦଟିକୁ । ସୁଅ ଭଳି ହଜାର ହଜାର ସଂଖ୍ୟାରେ ଲୋକ ମାଡ଼ିଆସିଲେ ସହରର ପ୍ରଧାନ ଛକକୁ ।

ଉଚ୍ଛଳ ଉଚ୍ଛ୍ୱାସରେ ସେମାନେ ନୂଆ କଥା ତିନୋଟି ଆକଣ୍ଠ ପିଇଗଲେ :

"ସମତା, ସ୍ୱାଧୀନତା, ଭ୍ରାତୃତ୍ୱ ... ।"

ତା' ପଛକୁ ଅନୁସରଣ କଲା କୋଳାହଳମୟ ବିକ୍ଷୁବ୍ଧ ଦିନଗୁଡ଼ିକ । ଉତ୍ତେଜନାରେ ଭରପୂର, ଉଲ୍ଲାସରେ ପରିପୂର୍ଣ୍ଣ ଦିନଗୁଡ଼ିକ । ନଇଁଆସିଲା ସ୍ତବ୍ଧତା । ଥମିଗଲା ସବୁ । ତା'ପରେ ମେନ୍‌ଶେଭିକ୍ ଏବଂ 'ବୁନ୍ଦ' ସଙ୍ଗଠନର ଅନୁରକ୍ତ ପୃଷ୍ଠପୋଷକଗଣ, ଯେଉଁଠି ନିଜର ଆଡ୍‌ଡ଼ା ଜମାଇଥିଲେ, ସେହି ଟାଉନ୍ ହଲ୍ ଉପରେ ଫର୍‌ଫର୍ ହୋଇ ଉଡ଼ିଲା ଲାଲ ପତାକା । ସୂଚାଇଦେଲା, ପରିବର୍ତ୍ତନ ଆସିଛି । ଆଉ ସବୁ ଯେମିତି ଥିଲା, ସେମିତି ରହିଲା ।

ଶୀତ ଶେଷ ହୋଇ ଆସିଲା ବେଳକୁ ସହରରେ ଆସି ରହିଲେ ଗୋଟାଏ ଅଶ୍ୱାରୋହୀ ବାହିନୀ । ପ୍ରତ୍ୟେକ ଦିନ ସକାଳୁ ସେମାନେ ଦଳ ଦଳ ହୋଇ ଖେଦିଯାଉଥିଲେ ରେଳଷ୍ଟେସନ୍‌ରୁ ଦକ୍ଷିଣ-ପଶ୍ଚିମ ସୀମାନ୍ତର ପଳାତକମାନଙ୍କୁ ଧରିବାପାଇଁ ।

ସୈନିକମାନେ ବେଶ୍ ହୃଷ୍ଟପୁଷ୍ଟ – ମୋଟାସୋଟା, ନାଲି ନାଲି ମୁହାଁ ବଡ଼ ବଡ଼ ଲୋକଗୁଡ଼ାକ । ସେମାନଙ୍କର ଅଧିକାଂଶ ଅଫିସର, ରାଜାରାଜୁଡ଼ା ପରିବାରର, ନହେଲେ ଧନୀଜମିଦାର ପରିବାରର । ସେମାନେ କାନ୍ଧରେ ସୁନାର ପଟି ଆଉ ଛାତିରେ ରୂପାଖ ଧଡ଼ି ଲଗାଇଥାନ୍ତି । ଠିକ୍ ଯେମିତି ଥିଲା ଜାର୍ ଅମଳରେ । ସତେ ଯେମିତି ବିପ୍ଳବ ବୋଲି କିଛି ଗୋଟାଏ କୋଉଠି ଘଟି ନ ଥାଏ ।

ନାଁ, ପାଭେଲ୍, କ୍ଲିମ୍କା, ସେର୍ଗେଇ ବ୍ରୁଝାକ୍ – ଏମାନଙ୍କ ପାଇଁ କିଛି ପରିବର୍ତ୍ତନ ହୋଇ ନଥିଲା । ଆଗଭଳି ମାଲିକମାନେ ଥିଲେ । ନଭେମ୍ବର ପର୍ଯ୍ୟନ୍ତ ଅସାଧାରଣ ବା ନୂଆ କିଛି ଘଟି ନଥାଏ । ନୂଆ ନୂଆ ଲୋକସବୁ ଷ୍ଟେସନ୍‌କୁ ଆସିବାକୁ ଲଗିଛନ୍ତି । ସେଇମାନେ ଯାହା କିଛି ଆଲୋଡ଼ନ ଆଣୁଥାଆନ୍ତି, ଗୃଞ୍ଜଲ୍ୟ ସୃଷ୍ଟି କରୁଥାନ୍ତି ସାଧାରଣ ଜୀବନ ଧାରାରେ । ସେମାନଙ୍କ କ୍ରମବର୍ଦ୍ଧିଷ୍ଣୁ ସଂଖ୍ୟା ମଧ୍ୟରୁ ଅଧିକାଂଶ ସୈନିକ । ତାଙ୍କର ପୁଣି ଗୋଟାଏ ବିଚିତ୍ର, ଅଦ୍ଭୁତ ନାଁ "ବଲ୍‌ଶେଭିକ୍" ।

ଏତେ ଲମ୍ବା, ଓଜନଦାର ଆଉ ପ୍ରତିଧ୍ୱନି ସୃଷ୍ଟିକାରୀ ଶବ୍ଦଟା କେଉଁଠୁ ଯେ ଆସିଲା, କାହାରିକୁ ମାଲୁମ ନ ଥାଏ ।

ପଳାତକମାନଙ୍କୁ ଅଟକାଇବା କ୍ରମଶଃ ଜଗୁଆଳୀ ବାହିନୀ ପକ୍ଷରେ କଷ୍ଟକର ହୋଇପଡ଼ିଲା । ଷ୍ଟେସନ୍ ଆଖପାଖରେ ବନ୍ଧୁକର ଆଓ୍ୱାଜ୍, କାଚର ଝଣତ୍‌କାର ବେଳକୁବେଳ ଅଧିକରୁ ଅଧିକ ଶୁଭିଲା । ଦଳକୁ ଦଳ ଲୋକ ଯୁଦ୍ଧକ୍ଷେତ୍ରରୁ ପଳାଇ ଆସୁଥାନ୍ତି – ବାଧା ପାଇଲା ମାତ୍ରେ ତାଙ୍କ ବାୟୋନେଟ୍ ଧରି ଯୁଦ୍ଧ କରୁଥାନ୍ତି ସେମାନେ । ଡିସେମ୍ବର ଆରମ୍ଭ ବେଳକୁ ସେମାନେ ଟ୍ରେନ୍‌ରେ ବୋଝାଇ ହୋଇ ଆସିବାକୁ ଲଗିଲେ ।

ଜଗୁଆଳୀମାନେ ଏଇ ସୈନିକମାନଙ୍କୁ ଅଟକାଇବା ପାଇଁ, ଗିରଫ କରିବା ପାଇଁ ସଦଳବଳେ ଆସି ପହଞ୍ଚିଗଲେ । କିନ୍ତୁ ଦେଖିଲେ, ସେମାନେ ସମ୍ମୁଖୀନ ହେଉଛନ୍ତି ମେସିନ୍‌ଗନ୍‌ର ଗୁଳିଗୋଳା ବର୍ଷଣର । ରେଲଡବାରୁ ଯେଉଁମାନେ ସବୁ ବାହାରିଲେ, ସେମାନେ ସମସ୍ତେ ପ୍ରାୟ ଆହତ ହୋଇ ମୃତ୍ୟୁପଥର ଯାତ୍ରୀ ହୋଇଥାନ୍ତି ।

ପାଉଁଶିଆ ରଙ୍ଗର ପୋଷାକପରିହିତ ସମ୍ମୁଖର ସୈନିକମାନେ, ଏ ପ୍ରହରୀମାନଙ୍କୁ ସହର ଭିତରକୁ ଘଉଡ଼ାଇ ନେଇଗଲେ । ତା'ପରେ ଷ୍ଟେସନ୍‌କୁ ଫେରିଆସିଲେ ନିଜର ଯାତ୍ରା ଅବ୍ୟାହତ ରଖିବାକୁ, ରେଲ ପରେ ରେଲ ବୋଝେଇ ହୋଇ ଗ୍ଲଲିଲେ ସେମାନେ ।

* * *

ଊଣେଇଶହ ଅଠର ମସିହାର ବସନ୍ତ କାଳ । ଦିନେ ତିନି ବନ୍ଧୁ ସେର୍ଗେଇ ବ୍ରୁଝାକ୍ ଘରେ ତାସ୍ ଖେଳି ସାରିଲା ପରେ, କୋର୍ଚ୍ଚଗିନ୍ ବଗିଚ୍ଚରେ ଘାସର ଗାଲିଚ୍ଚ ଉପରେ ଲୋଟାଇ ଦେଇଥିଲେ ନିଜକୁ ନିଜେ । କେମିତି ଅବସନ୍ନ ଓ ବିରକ୍ତି ଲଗୁଥିଲା ସେମାନଙ୍କୁ । ଗତାନୁଗତିକ ଯେତେ ବୃତ୍ତି ଥିଲା, ସବୁ କେମିତି ଅର୍ଥହୀନ, ବିରକ୍ତିକର ଲଗୁଥିଲା – ମ୍ଳାନ

ପଡ଼ିଆସିଥିଲା । ଦିନ ବିତାଇବା ଲାଗି ସେମାନେ ମୁଣ୍ଡ ଖେଳାଉଥିଲେ ଆଉ କିଛି ଉତ୍ତେଜନାପ୍ରଦ ଧନ୍ଦା ପାଇଁ । ଏତିକିବେଳେ ସେମାନଙ୍କ ପଛପଟେ ଘୋଡ଼ା ଟାପୁର ଶବ୍ଦ ଶୁଣିଲେ ଏବଂ ଦେଖିଲେ, ରାସ୍ତା ଉପରେ ଜଣେ ଘୋଡ଼ସବାର ଘୋଡ଼ା ଝପଟାଇ ଆସୁଛି । ଗୋଟାଏ କଦମ୍‌ରେ ରାସ୍ତା ଆଉ ନିଗ୍ର ବଗିଚ୍ଚ ବାଡ଼ ମଝିରେ ଥିବା ଗାତଟାକୁ ଡେଇଁଆସିଲା ସେ ଏବଂ ଘୋଡ଼ସବାର ଜଣକ ପାଭେଲ୍ ଓ କିମ୍‌କା ଆଡ଼କୁ ଚାବୁକ ହଲାଇ ଡାକିଲା ସେମାନଙ୍କୁ ।

"ଆରେ ହେ ପିଲାଏ ! ଇଆଡ଼କୁ ଟିକେ ଆସିଲ !"

ପାଭେଲ୍ ଓ କିମ୍‌କା ଝପଟାଏ ମାରି ବାଡ଼ ପାଖକୁ ଦଉଡ଼ିଲେ । ଧୂଳିରେ ପୋତିହୋଇ ପଡ଼ିଥିଲା ଅଶ୍ୱାରୋହୀ ଜଣକ । ପିନ୍ଧା ଟୋପି ଉପରେ ତା'ର ଇଞ୍ଚେ ବହଳର ଧୂଳି ବସିଥାଏ । ସେଇଟାକୁ ମୁହଁ ଉପରୁ ପିଠି ଆଉ ତା'ର ଖାକି ପୋଷାକ ଉପରକୁ ଠେଲିଦେଲା । ତା'ର ଓଜନିଆ ବେଲ୍‌ଟରେ ଗୋଟାଏ ପିସ୍ତଲ ଓ ଦୁଇଟା ଜର୍ମାନୀ ଗ୍ରେନେଡ୍ ଝୁଲୁଥାଏ ।

"ମୁନ୍ଦାଏ ପାଣି ମୋତେ ପିଇବାକୁ ଦେଇପାରିବ ପିଲାଏ ?" ଘୋଡ଼ସବାର ତାଙ୍କୁ ପଚାରିଲା । ପାଭେଲ୍ ସାଙ୍ଗେ ସାଙ୍ଗେ ଘରକୁ ଦଉଡ଼ିଲା ପାଣି ପାଇଁ । ଏତିକିବେଳେ ସେ ତାକୁ ଅନାଇରହିଥିବା ସେର୍ଗେଇକୁ ପଚାରିଲା :

"କହିଲ ବାବୁ, ତମ ଏ ସହରରେ, ଏଇନେ କାହା ଶାସନ ଚାଲିଛି ?"

ସେର୍ଗେଇ ଅଣନିଃଶ୍ୱାସୀ ହୋଇ ସମସ୍ତ ସ୍ଥାନୀୟ ସମ୍ବାଦ ତା'ପାଖରେ ବର୍ଣ୍ଣନା କରିଗଲା :

"ଗତ ଦି'ସପ୍ତାହ ହେଲା ଏଠି କାହାରି ହେଲେ ଶାସନ ଚଳୁ ନାହିଁ । ଗୃହରକ୍ଷୀମାନେ ବର୍ତ୍ତମାନ ଏଠି ସରକାର ଜାଣ ! ସହରସାରା ଲୋକେ ନିଜ ନିଜ ଭିତରେ ପାଳି କରି ରାତିସାରା ପହରା ଦେଉଛନ୍ତି । କିନ୍ତୁ ଆପଣ କିଏ ସେ ... ?" ସେର୍ଗେଇ ତାଙ୍କୁ ପଚାରିଲା ପ୍ରତିବଦଳରେ ।

ହସିହସି ଘୋଡ଼ସବାର କହିଲା :

"ଏତେ ଚଞ୍ଚଳ ସବୁ ଜାଣିପକେଇଲେ ତୁ ବୁଢ଼ା ହୋଇଯିବୁ ରେ !"

ପାଭେଲ୍ ତା' ଘରୁ ମଗ୍‌ରେ ମଗେ ପାଣି ଧରି ଦଉଡ଼ି ଦଉଡ଼ି ଆସିଲା ।

ତୃଷାର୍ତ୍ତ ଘୋଡ଼ସବାର ଏକା ଢୋକକେ ପାଣିତକ ପିଇଦେଇ ତା' ହାତକୁ ମଗ୍‌ଟା ବଢ଼ାଇଦେଲା । ତା'ପରେ ଲଗାମରେ ଗୋଟାଏ ଝିଙ୍କା ଦେଇ ପାଇନ୍ ବଣ ଆଡ଼କୁ ଝପଟାଇଦେଲା ଘୋଡ଼ାକୁ ।

"କିଏ ରେ ସିଏ ?" ପାଭେଲ୍ କିମ୍‌କାକୁ ପଚାରିଲା ।

"ମୁଁ କେମିତି ଜାଣିବି ?" କାନ୍ଧ ଝୁଲାଇ ଦେଇ ଉତ୍ତର ଦେଲା କିମ୍‌କା ।

"ଦେଖାଯାଉଛି, ପୁଣି ଶାସନର ପରିବର୍ତ୍ତନ ହେବ । ସେଇଥିପାଇଁ ଗତକାଲି ଲେଷ୍ଚିନ୍‌ସ୍କି ପରିବାର ପଳାଇଗଲେ ଏଠା ଛାଡ଼ି । ଧନୀମାନେ ଛାଡ଼ି ପଳାଇବା ଅର୍ଥ

ପାର୍ଟିଜାନ୍‌ମାନେ ଆସୁଛନ୍ତି ।" ସେର୍ଗେଇ ଘୋଷଣା କଲା, ରାଜନୈତିକ ପ୍ରଶ୍ନର ଗୋଟାଏ ଦୃଢ଼ ନିଷ୍ପତ୍ତିମୂଳକ ମୀମାଂସା କରି ।

ଯୁକ୍ତିଟା ଏତେ ନିର୍ଭରଯୋଗ୍ୟ ଯେ, ପାଭେଲ୍ ଓ କିମ୍କା ଉଭୟ ସଙ୍ଗେ ସଙ୍ଗେ ଏକମତ ହେଲେ ।

ସେମାନଙ୍କ ଆଲୋଚନା ସରିଛି କି ନାହିଁ, ପୁଣି ବଡ଼ରାସ୍ତାଟା ଉପରେ ଗୁଡ଼ାଏ ଘୋଡ଼ା ଟାପୁର ଶବ୍ଦ ଶୁଭିଲା ଓ ତିନିହେଁ ବାଡ଼ ପାଖକୁ ଧାଇଁଲେ ।

ଜଙ୍ଗଲରକ୍ଷୀର କୁଡ଼ିଆଟା ଦୂରରୁ ଝାପ୍‌ସା ଝାପ୍‌ସା ଦେଖାଯାଏ ଗଛଗହଳରେ । ସେମାନେ ଦେଖିଲେ ତା'ରି ପଛକଡ଼ରୁ, ଜଙ୍ଗଲ ଭିତରୁ ଅନେକ ଗାଡ଼ି ଓ ଲୋକସବୁ । ତା'ଛଡ଼ା ବଡ଼ରାସ୍ତା ପାଖ ହୋଇଗଲେଣି ପନ୍ଦର କି ତା'ଠାରୁ ଅଧିକ ଅଶ୍ୱାରୋହୀ— ସେମାନଙ୍କର ବନ୍ଧୁକ ଝୁଲୁଛି ଘୋଡ଼ାର ଜିନ୍ କଡ଼ରେ । ଅଶ୍ୱାରୋହୀମାନଙ୍କର ସବା ଆଗରେ ଅଛି ଜଣେ ବୟସ୍କ ଲୋକ । ପିନ୍ଧିଛି ଖାକି ଜ୍ୟାକେଟ୍, ଅଫିସର ପିନ୍ଧା ବେଲ୍‌ଟ ଲଗାଇଛି ଓ ଛାତିରେ ତା'ର ଝୁଲୁଛି ଫିଲ୍‌ଡଗ୍ଲାସ୍‌ଟିଏ । ତା' କଡ଼େ କଡ଼େ ଆସୁଛି ସେଇ ଲୋକଟି, ଯାହା ସାଙ୍ଗରେ ଏବେ କଥା କହିଲେ ଏ ପିଲାମାନେ । ବୟସ୍କ ଲୋକଟିର ଛାତିରେ ଗୋଟାଏ ନାଲିଫିତା ।

"କ'ଣ କହୁଥିଲି ତମକୁ ସବୁ?" ପାଭେଲ୍ ପଞ୍ଜରାରେ କହୁଣୀ ଢିରା ଦେଇ କହୁଥାଏ ସେର୍ଗେଇ, "ସେ ନାଲିଫିତା ପିନ୍ଧା ଲୋକଙ୍କୁ ଦେଖ । ଏମାନେ ଯଦି ପାର୍ଟିଜାନ୍ ନହୋଇଥାନ୍ତି ନା, ମୋ ନାଁରେ କୁତ୍ତା ପାଳିବ", ଖୁସିରେ ପ୍ରାୟ ରୁଦ୍ଧଶ୍ୱାସ ହୋଇ ସେ ବାଡ଼ଟାକୁ ଏକା ଖେପାକେ ଡେଇଁ ରାସ୍ତାରେ ହାଜର୍ ହୋଇଗଲା ।

ଆଉ ଦିହେଁ ତା' ପିଛା ଧରିଲେ ଏବଂ ତିନିହେଁଯାକ ରାସ୍ତାକଡ଼ରେ ଠିଆହୋଇ ଏକଲୟରେ ଚାହିଁଥାନ୍ତି ପାଖେଇ ଆସୁଥିବା ଅଶ୍ୱାରୋହୀ ଦଳଙ୍କୁ ।

ଅଶ୍ୱାରୋହୀମାନେ ଯେତେବେଳେ ଏକାବେଳେକେ ପାଖକୁ ଲାଗିଆସିଲେ, ଆଗରୁ ଦେଖାହୋଇଥିବା ଘୋଡ଼ସବାର ଜଣକ ଲେଷ୍ଟିନ୍‌ସ୍କି ଘରଟାକୁ ଚାବୁକରେ ଦେଖାଇ ପଚାରିଲା :

"ସେଠି କିଏ ରହନ୍ତି?"

ଅଶ୍ୱାରୋହୀର ସାଙ୍ଗେ ସାଙ୍ଗେ ଯିବା ପାଇଁ ଟାଉଟାଉ ପାଦ ପକାଉଥାଏ ପାଭେଲ୍ ।

"ଓକିଲ ଲେଷ୍ଟିନ୍‌ସ୍କି । କାଲି ସେମାନେ ପଳାଇଛନ୍ତି ଏଠୁ । ବୋଧହୁଏ ତମମାନଙ୍କ ଭୟରେ ।"

ବୟସ୍କ ଲୋକ ଜଣକ ହସି ହସି ପଚାରିଲେ ତାକୁ :

"ଆମେ ସବୁ କିଏ ବୋଲି ତମେ କେମିତି ଜାଣିଲ?"

"ହେଇ, ତାକୁଇ ଦେଖି..." ନାଲିଫିତାକୁ ଦେଖାଇଦେଇ କହିଲା ପାଭେଲ୍, "ଯେକୌଣସି ଲୋକ ତ କହିପାରିବ ।"

ସହରକୁ ପ୍ରବେଶ କରୁଥିବା ଫୌଜଙ୍କୁ ଦେଖିବାଲାଗି କୌତୂହଳରେ ଲୋକେ

ରାସ୍ତାସାରା ଛାଇଗଲେ । ଆମର ପୂର୍ବପରିଚିତ ତିନି କିଶୋର ବନ୍ଧୁ ମଧ୍ୟ ଥା'ନ୍ତି, ଧୂଳିଧୂସରିତ ଲାଲରକ୍ଷୀମାନେ ଆଗେଇ ଯାଉଥିବାର ଦେଖୁଥାଆନ୍ତି ଠିଆହୋଇ ରହି ।

ସବାଶେଷରେ ଯେତେବେଳେ ଫୌଜର ଏକମାତ୍ର ତୋପ ଓ ମେସିନ୍‌ଗନ୍ ବୋଝେଇ ଗାଡ଼ିଗୁଡ଼ିକ କଙ୍କରମୟ ରାସ୍ତା ଉପରେ ଗଡ଼ିଗଲା, କିଶୋର ତିନୋଟି ସେମାନଙ୍କ ପଛରେ ପଛରେ ଚାଲିଲେ । ଫୌଜଟି ସହରର କେନ୍ଦ୍ରସ୍ଥଳରେ ପହଞ୍ଚି ଛାଉଣୀ ପକାଇ ରହିବାର ଆୟୋଜନ ନ କରିବା ପର୍ଯ୍ୟନ୍ତ ସେମାନେ ଘରକୁ ଫେରିଲେ ନାହିଁ ।

ସେହିଦିନ ସନ୍ଧ୍ୟାରେ, ଲେଷ୍ଟିନ୍‌ସି ଘରର ପ୍ରଶସ୍ତ ବୈଠକଖାନାରେ କାରୁକାର୍ଯ୍ୟ ହୋଇଥିବା ବିରାଟ ଟେବୁଲ ଚାରିକଡ଼େ ଚାରିଜଣ ଲୋକ ବସିଥାନ୍ତି । ଫୌଜର କମାଣ୍ଡର କମ୍ରେଡ୍ ବୁଲ୍‌ଗାକୋଭ୍ ଜଣେ ବୟସ୍କ ବ୍ୟକ୍ତି, ଯାହାଙ୍କର ବାଳ ପାଚି ଆସିଲାଣି ଓ ୟୁନିଟ୍‌ର ଆଉ ତିନିଜଣ ପ୍ରଧାନ ବ୍ୟକ୍ତି ।

ବୁଲ୍‌ଗାକୋଭ୍ ଟେବୁଲ ଉପରେ ସେହି ଅଞ୍ଚଳର ମାନଚିତ୍ର ମେଲାଇଥାଆନ୍ତି ଏବଂ ମଝିରେ ମଝିରେ ତା' ଉପରେ ଆଙ୍ଗୁଳି ଚଳାଇ କ'ଣ ସବୁ ଦେଖାଇ ଦେଉଥାଆନ୍ତି । ପ୍ରଶସ୍ତ କାନ୍ଧ ଓ ପରିଷ୍କାର ଦାନ୍ତସଂପନ୍ନ ଜଣେ ବ୍ୟକ୍ତିଙ୍କୁ ସଂବୋଧନ କରି ସେ କହୁଥାନ୍ତି :

"କମ୍ରେଡ୍ ୟେର୍ମାଚେଙ୍କୋ! ଆପଣ ତା' ହେଲେ କହୁଛନ୍ତି, ଆମେ ଏଇଠି ସାମନା କରିବା ? ନାଁ ? ମୁଁ କିନ୍ତୁ ଭାବୁଛି, ସକାଳୁ ଏଠୁ ନିଶ୍ଚୟ ବାହାରିବା । ଆହୁରି ଭଲ ହେବ ଯଦି ରାତାରାତି ଯାଇପାରନ୍ତେ । କିନ୍ତୁ ସମସ୍ତଙ୍କର ଟିକେ ବିଶ୍ରାମ ଲୋଡ଼ା । ଆମ ଦାୟିତ୍ୱ ହେଉଛି, ଜର୍ମାନ୍‌ମାନେ ପହଞ୍ଚିବା ଆଗରୁ କାଳାଚିନ୍‌କୁ ଫେରିଯିବା । ଆମର ଯେତିକି ଶକ୍ତି ଅଛି, ସେଇଥିରେ ପ୍ରତିରୋଧ କରିବା ହାସ୍ୟାସ୍ପଦ – ମୋଟେ ତିରିଶ ରାଉଣ୍ଡ ଗୋଳା ସହିତ ଗୋଟିଏ ବୋଲି ତୋପ, ଦୁଇଶହ ପଦାତିକ ଓ ଷାଠିଏ ଜଣ ଘୋଡ଼ସବାର ! ପୁଣି ଜର୍ମାନ୍‌ମାନେ ଯେତେବେଳେ ଇସ୍ପାତର ସ୍ରୋତ ଭଳି ମାଡ଼ିଆସୁଛନ୍ତି, ଏ ଶକ୍ତି ବଡ଼ ପ୍ରବଳ ... ନୁହଁ ? ଆଉ କୌଣସି ଲାଲବାହିନୀ ସହିତ ମିଳିତ ନ ହେବା ପର୍ଯ୍ୟନ୍ତ ଆମେ ଯୁଦ୍ଧ କରିପାରିବା ନାହିଁ । ତା' ଛଡ଼ା କମ୍ରେଡ୍‌ମାନେ, ଆମର ମନେରଖିବା ଉଚିତ ଯେ, ରାସ୍ତାରେ ବିଭିନ୍ନ କିସମର ଅସଂଖ୍ୟ ପ୍ରତିବିପ୍ଳବୀଙ୍କର ସାମନା କରିବାକୁ ପଡ଼ିବ । ମୁଁ ପ୍ରସ୍ତାବ କରୁଛି, ସକାଳୁ ଷ୍ଟେସନ୍ ସେପଟ ରେଳବାଇ ପୋଲଟାକୁ ଉଡ଼ାଇଦେଇ ଆମେ ବାହାରିଯିବା – ତାକୁ ସଜାଡ଼ିବାକୁ ଜର୍ମାନ୍‌ମାନଙ୍କୁ ଦୁଇତିନି ଦିନ ଲାଗିବ । ଏଥିମଧ୍ୟରେ ସେମାନଙ୍କର ରେଳପଥରେ ଆଗେଇଯିବା ବ୍ୟାହତ ହେବ । କ'ଣ ଭାବୁଛ କମ୍ରେଡ୍‌ମାନେ ? ଆମକୁ ନିଶ୍ଚିତ ନିଷ୍ପତ୍ତି ନେବାକୁ ହେବ" ଟେବୁଲ ଚାରିକଡର ଅନ୍ୟମାନଙ୍କ ଉଦ୍ଦେଶ୍ୟରେ ପଚାରିଲେ ସେ ।

ସୁଜ୍‌କୋଭ ଟେବୁଲ ସେକଡ଼େ ଗୋଟିଏ କୋଣରେ ବୁଲ୍‌ଗାକୋଭ୍‌ଙ୍କ ଆଡ଼କୁ ମୁହଁ କରି ବସିଥିଲେ । ନିଜ ଓଠଟାକୁ ଟିକେ ଚାପିନେଇ ଆଖି ପକାଇଲେ ମାନଚିତ୍ର ଉପରକୁ । ତା'ପରେ ଚାହିଁଲେ ବୁଲ୍‌ଗାକୋଭ୍‌ଙ୍କୁ, "ମୁଁ ବୁଲ୍‌ଗାକୋଭଙ୍କ ସହିତ ଏକମତ ହେଉଛି", ଚୂଡ଼ାନ୍ତ ଭାବରେ ତାଙ୍କ କଥା ସେ କହିଲେ ।

ସେମାନଙ୍କ ମଧ୍ୟରେ ଯିଏ ସର୍ବକନିଷ୍ଠ ଓ ଶ୍ରମିକ ପୋଷାକ ପିନ୍ଧିଥିଲେ, ମୁଣ୍ଡ ଟଙ୍କାରି ସେ କହିଲେ :

"ବୂଲ୍‌ଗାକୋଭ୍ ଠିକ କହୁଛନ୍ତି ।"

ଦିନବେଳା ଯିଏ ପିଲାମାନଙ୍କ ସହିତ କଥାବାର୍ତ୍ତା କରିଥିଲେ, ସେଇ ୟେର୍ମାଚେଙ୍କୋ ମୁଣ୍ଡ ହଲାଇଲେ ନାସ୍ତିସୂଚକ ଭାବରେ :

"ତା'ହେଲେ ଏ ଫୌଜ ଆଣିବାର ମାନେ କ'ଣ ଅଛି ? ଜର୍ମାନ୍‌ମାନଙ୍କ ସହିତ ଯୁଦ୍ଧ ନ କରି ପଛଘୁଞ୍ଚା ଦେବାକୁ ? ମୋ ମତରେ, ଏଇଠି ସେମାନଙ୍କ ସାଙ୍ଗରେ ଯୁଦ୍ଧ କରିବା ଭଲ । ଛିଃ, ଖାଲି ପଛକୁ ପଛକୁ ହଟି ହଟି ମଣିଷ ଥକିଗଲାଣି । ଯଦି ମୋ କଥା ଶୁଣିବାକୁ ଗ୍ରହିଁ, ମୁଁ ଏଇଠି ତାଙ୍କ ସାଙ୍ଗେ ଲଢ଼ିବି । ହଁ, ଏଇଠି ... ଏଇଠି – ଏଥିରେ ତିଳେମାତ୍ର ଭୁଲ ନାହିଁ", ଧଡ଼୍‌କିନା ଚଉକିଟାକୁ ପଛକୁ ପେଲିଦେଇ ସେ ଉଠି ପଡ଼ିଲେ ଏବଂ ଘରଟାସାରା ଅସ୍ଥିର ଭାବରେ ପଦଚାରଣା କରିବାକୁ ଲାଗିଲେ ।

ବୂଲ୍‌ଗାକୋଭ୍ ନାସ୍ତିସୂଚକ ଚାହାଣୀରେ ଅନାଇଲେ ତାଙ୍କୁ ।

"ଆମର ଟିକେ ମୁଣ୍ଡ ଖର୍ଚ୍ଚ କରିବା ଉଚିତ ୟେର୍ମାଚେଙ୍କୋ ! ଯେଉଁ ଯୁଦ୍ଧର ପରିଣତି ନିଶ୍ଚିତ ଭାବରେ ପରାଜୟ ଓ ଧ୍ୱଂସ, ଜାଣୁଜାଣୁ ତା' ଭିତରକୁ ମୁଁ ମୋ ଲୋକଙ୍କୁ ଠେଲି ଦେଇପାରିବି ନାହିଁ । ତା' ଛଡ଼ା ଏଇଟା ନିହାତି ହାସ୍ୟାସ୍ପଦ କଥା ! ଆମମାନଙ୍କର ଠିକ୍ ପଛରେ ପୂରା ଗୋଟାଏ ଡିଭିଜନ ଅଛନ୍ତି । ତାଙ୍କ ନିକଟରେ ଓଜନଦାର କମାଣ, ସୁସଜ୍ଜିତ ଗାଡ଼ି ଅଛି । ସ୍କୁଲ ପିଲାଙ୍କର ବୀରତ୍ୱ ଦେଖାଇବାର କି ଶୁଣିବାର ବେଳ ଏ ନୁହେଁ, କମ୍ରେଡ୍ ୟେର୍ମାଚେଙ୍କୋ !"

ବୁଲିପଡ଼ି ଅନ୍ୟମାନଙ୍କୁ ଚାହିଁ ସେ କହିଗ୍ଲିଲେ, "ତା' ହେଲେ ଏହା ସିଦ୍ଧାନ୍ତ ହେଲା ଯେ, ଆମେ କାଲି ସକାଳୁ ଏଠା ଛାଡ଼ୁଛୁ ! ବର୍ତ୍ତମାନ ଦ୍ୱିତୀୟ ପ୍ରଶ୍ନ, ଯୋଗାଯୋଗ ସ୍ଥାପନ", ବୂଲ୍‌ଗାକୋଭ କହିଗ୍ଲିଲେ, "ଆମେ ଯେତେବେଳେ ସବା ପଛରେ ଯାଉଛେ, ଆମ କର୍ତ୍ତବ୍ୟ ହେଲା, ଜର୍ମାନ୍‌ମାନଙ୍କ ପଛରେ କାମଟାକୁ ସଂଗଠିତ କରିଯିବା । ଏଇଟା ଗୋଟାଏ ବଡ଼ ରେଳ ଜଙ୍କ୍‌ସନ୍ ଏବଂ ଏ ସହରରେ ଦୁଇଟା ଷ୍ଟେସନ୍ ଅଛି । ଆମେ ଦେଖିବା ଯେ, ଷ୍ଟେସନ୍‌ରେ କାମ ଗ୍ଲୁ ରଖିବା ପାଇଁ କୌଣସି ବିଶ୍ୱସ୍ତ କମ୍ରେଡ୍‌ଙ୍କୁ ଦାୟିତ୍ୱ ଦିଆଯିବ । ଏଇଠି ଆମକୁ ଠିକ୍ କରିବାକୁ ହେବ, କାମ ଗ୍ଲୁ ରଖିବା ପାଇଁ, କାହାକୁ ପଛରେ ଛାଡ଼ିଯିବା ? ତମମାନଙ୍କ ନଜରରେ କେହି ଅଛି ?"

"ନାବିକ ଫ୍ୟୋଦୋର୍ ଝୁଖ୍‌ରାଇ ରହିଲେ ଭଲ ହୁଅନ୍ତା ବୋଲି ମୁଁ ଭାବୁଛି", ୟେର୍ମାଚେଙ୍କୋ କହିଲେ ଟେବୁଲ ପାଖକୁ ଉଠିଆସି, "ପ୍ରଥମେ ସେ ଜଣେ ସ୍ଥାନୀୟ ଲୋକ, ଦ୍ୱିତୀୟରେ ସେ ମେକାନିକ୍ ଓ ଫିଟର । ଏଣୁ ଷ୍ଟେସନ୍‌ରେ ଗୋଟାଏ କାମ ଜୁଟାଇ ନେବା ତାଙ୍କ ପକ୍ଷରେ ସହଜ ହେବ । ଆମ ଦଳ ସହିତ ଏଯାଏଁ କେହି ଫ୍ୟୋଦୋର୍‌ଙ୍କୁ ଦେଖି ନାହାନ୍ତି, ସେ ରାତିକି ଆସି ପହଞ୍ଚିବେ । ତା'ଛଡ଼ା ସେ ବେଶ୍ ବୁଦ୍ଧିଆ ଆଉ ଠିକ୍ ଭାବରେ କାମ ଚଳାଇନେବେ । ମୋର ଧାରଣା, ଏ କାମ ପାଇଁ ସେଇ ହିଁ ସବୁଠାରୁ ଉପଯୁକ୍ତ ଲୋକ ।"

ବୁଲ୍‌ଗାକୋଭ୍‌ ସମ୍ମତିସୂଚକ ଭାବରେ ମୁଣ୍ଡ ଟୁଙ୍ଗାରିଲେ ।

"ମୁଁ ତମ ସହିତ ଏକମତ ୟେର୍ମାଚେଙ୍କୋ, କିନ୍ତୁ ତମମାନଙ୍କର କମ୍ରେଡ୍‌ମାନଙ୍କର କୌଣସି ଆପତ୍ତି ନାହିଁ ତ ?" ଅନ୍ୟମାନଙ୍କ ଉଦ୍ଦେଶ୍ୟରେ ପଚାରିଲେ ସେ । "କାହାରି ନାହିଁ ? ତା' ହେଲେ ଏ କଥାଟା ସ୍ଥିର ହୋଇଗଲା । ଆମେ ଝୁଝ୍‌ରାଲଙ୍କୁ କିଛି ଅର୍ଥ ଓ ତାଙ୍କ କାମ ପାଇଁ ଯେଉଁସବୁ କାଗଜପତ୍ର ଦରକାର ହେବ ତାହା ତଥା ପରିଚୟପତ୍ର ସହିତ ଏଠି ଛାଡ଼ିଦେଇଯିବା । ବର୍ତ୍ତମାନ କମ୍ରେଡ୍‌ଗଣ, ଏଥର ମୋ'ର ତୃତୀୟ ଓ ଶେଷ ପ୍ରଶ୍ନ । ଏଇ ସହରରେ ଗଚ୍ଛିତ ହୋଇ ରହିଥିବା ଅସ୍ତ୍ରଶସ୍ତ୍ର ସମ୍ପର୍କରେ ... ଅନେକ ବନ୍ଧୁକ ଏଠି ରହିଛି – ପାଖାପାଖି କୋଡ଼ିଏ ହଜାର ଖଣ୍ଡେ ହେବ । ଜାର୍‌ ସହିତ ଯୁଦ୍ଧ ହେଲା ଦିନୁଁ ଏଇଠି ଏମିତି ଜଣେ ରକ୍ଷୀର ଘରେ ଗଦା ହୋଇ ରହିଛି । କାହାରି ମନେ ନାହିଁ । ଏଠି ଏମିତ ରହିଯାଇଛି ବୋଲି ସମସ୍ତେ ଭୁଲିଯାଇଛନ୍ତି । ମୁଁ ସେଇ ରକ୍ଷୀଠାରୁ ଜାଣିଛି ଏ ଖବରଟା । ସେ ବିଚରା ଏ ଦାୟିତ୍ୱରୁ କୌଣସିମତେ ରକ୍ଷା ପାଇବାକୁ ଉଦ୍‌ବିଗ୍ନ । ନାଁ, ଆମେ କଦାପି ସେସବୁକୁ ଜର୍ମାନ୍‌ମାନଙ୍କ ପାଇଁ ଛାଡ଼ିଦେଇ ଯାଇପାରିବା ନାହିଁ । ମୋ ମତରେ, ସେଗୁଡ଼ାକୁ ଜଳାଇଦେବା ଉଚିତ ହେବ ଏବଂ ସଙ୍ଗେ ସଙ୍ଗେ ଜଳାଇବାକୁ ହେବ, ଯେପରିକି ସକାଳକୁ ଆଉ କିଛି ବାକି ନଥିବ । କେବଳ ଏତିକି ଅସୁବିଧା ଯେ, ଆଖପାଖର କୁଡ଼ିଆମାନଙ୍କୁ ନିଆଁ ବ୍ୟାପିଯାଇପାରେ । ସହରର ଉପକଣ୍ଠରେ ସେଠି, ସବୁଯାକ ଗରିବ ରକ୍ଷୀ ପୁଣି ରହନ୍ତି ।"

ସ୍କୁଜ୍‌କୋଭ୍‌ ନିଜ ଆସନରେ ଅସ୍ଥିର ହୋଇଉଠିଲେ । ବେଶ୍‌ ଟାଣୁଆ ମଣିଷଟିଏ ସେ – ବଳିଷ୍ଠ ବଳିଷ୍ଠ ଦେହ, ମୁହଁଯାକ ଦାଢ଼ି ଭର୍ତ୍ତି ହୋଇଛି । କୋଉକାଳୁଁ ଖୁର ବାଜି ନାହିଁ ସେଥିରେ ।

"ବନ୍ଧୁକଗୁଡ଼ାକ ଜାଳିଦେବା କାହିଁକି ? ତା' ଅପେକ୍ଷା ଏଠା ଲୋକଙ୍କ ଭିତରେ ବାଣ୍ଟି ଦେବା ନାହିଁ ?"

ବୁଲ୍‌ଗାକୋଭ୍‌ ଉତ୍ତର ଦେବା ପାଇଁ ତାଙ୍କୁ ଅନାଇଲେ :

"ତମେ କହୁଛ,, ବାଣ୍ଟି ଦେବା ସେଗୁଡ଼ାକୁ ନାଁ ?"

"ଚମତ୍କାର ... ଚମତ୍କାର ହେବ", ୟେର୍ମାଚେଙ୍କୋ ବେଶ୍‌ ଉତ୍ସାହର ସହିତ କହିଲେ । ଶ୍ରମିକମାନଙ୍କୁ, ଆଉ ଯିଏ ଚାହିଁବେ ତାଙ୍କୁ ଦେଇଦେବା ବନ୍ଧୁକଗୁଡ଼ାକ । ଜର୍ମାନ୍‌ମାନେ ଯେତେବେଳେ ଆସି ଜୀବନକୁ ସେମାନଙ୍କର ଅତିଷ୍ଠ କରିପକାଇବେ, ସେତେବେଳେ ଅନ୍ତତଃ, ପ୍ରତିଉତ୍ତର ଦେବା ପାଇଁ କିଛି ଥିବ ଏମାନଙ୍କ ହାତରେ । ଜର୍ମାନ୍‌ମାନେ ଅତି କଦର୍ଯ୍ୟ ବ୍ୟବହାର କରିବେ ନିଶ୍ଚୟ । ଆଉ ଅବସ୍ଥା ଯେତେବେଳେ ଅତି ଅସହ୍ୟ ହେବ, ଲୋକେ ହାତହତିଆର ଧରିପାରିବେ ତ ! ସ୍କୁଜ୍‌କୋଭ୍‌ ଠିକ୍‌ କହିଛନ୍ତି । ଗାଁମାନଙ୍କୁ କିଛି କିଛି ଦେଲେ ବି ମନ୍ଦ ହୁଅନ୍ତା ନାହିଁ । ଚାଷୀମାନେ ସେସବୁ ଲୁଚେଇ ରଖିବେ । ଜର୍ମାନ୍‌ମାନେ ଯେତେବେଳେ ଜବରଦସ୍ତ ଦଖଲ କରିବାକୁ ବସିବେ, ବନ୍ଧୁକଗୁଡ଼ାକ ବେଶ୍‌ କାମରେ ଲାଗିବ ।"

ବୁଲ୍‌ଗାକୋଭ୍ ହସିଲେ :

"ସେକଥା ଠିକ୍, କିନ୍ତୁ ଜର୍ମାନ୍‌ମାନେ ନିଶ୍ଚେ ଆଦେଶ ଦେବେ, ଯାହା ପାଖରେ ହାତହତିଆର ଅଛି ସେସବୁକୁ ଦେଇଦେବାକୁ, ଆଉ ସମସ୍ତେ ମାନିବେ ଆଦେଶକୁ ।"

"ସମସ୍ତେ କେବେହେଲେ ମାନିବେ ନାହିଁ! କେତେକ ନିଶ୍ଚୟ ମାନିନେବେ, କିନ୍ତୁ ଅନ୍ୟମାନେ ପ୍ରତ୍ୟାଖ୍ୟାନ କରିବେ", ୟେର୍ମାଚେଙ୍କୋ ପ୍ରତିବାଦ କଲେ ।

ଟେବୁଲକୁ ଘେରିଥିବା ଲୋକମାନଙ୍କ ଆଡ଼କୁ ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲେ ବୁଲ୍‌ଗାକୋଭ୍ । ୟେର୍ମାଚେଙ୍କୋ ଓ ପ୍ରୁଜ୍‌କୋଭ୍‌ଙ୍କୁ ସମର୍ଥନ କରି ତରୁଣ ଶ୍ରମିକ ଜଣକ କହିଲେ :

"ମୁଁ ବନ୍ଧୁକଗୁଡ଼ାକୁ ବାଣ୍ଟି ଦେବା ସପକ୍ଷରେ ।"

"ହଉ, ତା'ହେଲେ ସେଇଆ ହେଉ", ବୁଲ୍‌ଗାକୋଭ୍ ଏକମତ ହେଲେ । ଚଉକିରୁ ଉଠୁଉଠୁ କହିଲେ, "ବର୍ତ୍ତମାନ ପାଇଁ ଏତିକି । ସକାଳ ଯାଏ ବିଶ୍ରାମ ନିଆଯାଇପାରେ ବର୍ତ୍ତମାନ । ହଁ, ଝୁଖ୍‌ରାଇ ଆସିଲେ, ତାକୁ ମୋ ପାଖକୁ ପଠାଇଦେବେ, ମୁଁ ତା' ସହିତ କଥାବାର୍ତ୍ତା ହେବାକୁ ଚାହେଁ । ୟେର୍ମାଚେଙ୍କୋ, ତମେ ତା'ହେଲେ ଜଗୁଆଳି ପୋଷ୍ଟଗୁଡ଼ାକ ତଦାରଖ କରି ଆସିବ ।"

ଅନ୍ୟମାନେ ସମସ୍ତେ ବିଦାୟ ନେଇ ଚାଲିଗଲା ପରେ ବୁଲ୍‌ଗାକୋଭ୍ ବୈଠକଖାନା ସନ୍ନିକଟବର୍ତ୍ତୀ ମାଲିକଙ୍କର ଶୋଇବାଘରେ ନିଜର ବଡ଼ କୋଟ୍‌ଟାକୁ ମଶିଣା ଉପରେ ବିଛାଇଦେଇ ଶୋଇପଡ଼ିଲେ ।

* * *

ତହିଁଆରଦିନ ସକାଳୁ, ପାଭେଲ୍ ଇଲେକ୍‌ଟ୍ରିକ୍ ଷ୍ଟେସନ୍‌ରୁ ଘରକୁ ଫେରୁଥାଏ । ସେଠି ସେ ପ୍ରାୟ ବର୍ଷେ ହେବ ଇଂଜିନ୍‌ରେ କୋଇଲା ଭରୁଥିବା ଲୋକର ଟହଲିଆ ହିସାବରେ କାମ କରୁଥାଏ ।

ଘରକୁ ଫେରୁଫେରୁ ତାକୁ ଲାଗିଲା ଗୋଟାଏ ଅସ୍ୱାଭାବିକ ଘଟିଛି କିଛି । ସହରଟା ସାରା ଉତ୍ସାହରେ ଫାଟିପଡ଼ୁଛି, ମାତିଉଠିଛି । ସହର ଭିତରେ ଯାଉଁଯାଉଁ ସେ ଦେଖିଲା, ଜଣେ ଜଣେ ଲୋକ ଗୋଟାଏ କି ଦିଇଟା ଲେଖାଏଁ ବନ୍ଧୁକ, ଏପରିକି ତିନି ତିନିଟା ବନ୍ଧୁକ କାନ୍ଧେଇ ଚାଲିଛନ୍ତି । କ'ଣ କୁଆଡ଼େ ଘଟିଲା କିଛି ବୁଝି ନପାରି ସେ ଯେତେ ଶୀଘ୍ର ପାରେ ସିଧା ଦଉଡ଼ିଲା ଘରକୁ ।

ଲେଷ୍ଚିନ୍‌ସି ବଗିଚା ବାହାରେ ସେ ଗତକାଲି ଭେଟିଥିବା ତା'ର ପରିଚିତ ଲୋକମାନଙ୍କୁ ଭେଟିଲେ—ନିଜ ନିଜର ଘୋଡ଼ା ଚଢ଼ୁଛନ୍ତି ସେମାନେ ।

ପାଭେଲ୍ ଘର ଭିତରକୁ ଦଉଡ଼ିଯାଇ ତରତର ହୋଇ ମୁହଁ ହାତ ଧୋଇସାରି ଜାଣିଲା ଯେ, ଆର୍ତେମ୍ ସେଯାଏଁ କାମରୁ ଫେରି ନାହିଁ । ତା'ପରେ ସହରର ଆରପାରିରେ ରହୁଥିବା ସେର୍ଗେଇ ବ୍ରୁଜାକ୍‌କୁ ଦେଖାକରିବାକୁ ଦଉଡ଼ ଦେଲା ।

ସେର୍ଗେଇ ବାପା ଇଞ୍ଜିନ୍ ଗୃହକର ସହାୟକ କାମ କରୁଥାଏ । ତା'ର ନିଜର ଖଣ୍ଡେ ଜମି ଓ ଛୋଟିଆ ଘରଟିଏ ଥାଏ । ସେର୍ଗେଇ ବାହାରିଯାଇଥାଏ ସେତେବେଳକୁ । ତା'ର ମୋଟାସୋଟା ହୋଇ ଶୁକୁଟିମୁହାଁ ମା' ଚିଡ଼ିଲା ଆଖିରେ ଅନାଇଲା ତାକୁ – କହିଲା :

"କେଜାଣି, କୋଉ ଗାତରେ ପଶିବାକୁ ଯାଇଛି ସେ ! ଭୂତ ଲାଗିଲା ଭଳି ସକାଳୁ ଉଠି କୁଆଡ଼େ ଯେ ଗଲା । କହୁଥିଲା, କୋଉଠି କେଜାଣି, ସେମାନେ ସବୁ ବନ୍ଧୁକ ବାଣ୍ଟୁଛନ୍ତି । ସେଇଠି ଥିବ ବୋଧେ । ଚମେଗୁଡ଼ାକ ଏକାବେଳେକେ ବିଗିଡ଼ି ଗଲଣି ପରା । ଚମ ସିଙ୍ଘାଣିନାକା ବୀରମାନଙ୍କୁ ସବୁ ଦି' ଘ୍ରରିଟା କଷିକରି ବସିବା ଦରକାର । ଗାଲ ଚିପିଦେଲେ ଦୁଧ ବାହାରି ପଡ଼ିବ ଦଉଡ଼ିଲେ ବନ୍ଧୁକ ଆଣିବାକୁ । ଦେଖ୍, ତାକୁ ଯାଇଁ କହିଦେବୁ, ଘରେ ଯଦି ଗୋଟାଏ ଗୁଳିବି ଆଣି ପୂରେଇଛି ନା, ଜୀଅନ୍ତା ଛାଲ ଉତାରିଦେବି ତା' ଦିହରୁ । ଆ... ରେ... କ'ଣ କରି ପାଇଛି କି ସିଏ ମୋତେ ! ଯାହା ତାହା ଆଣି ଘରେ ପୂରେଇବ ଇଏ, ଆ' ବଳଦ ମୋତେ ବିନ୍ଧ କଥା ! ମୁଁ ଶେଷକୁ ଭୋଗିବି । ତୁ ବି ସେଇଠି କି ଯିବୁ କି, ଏଁ ?"

ସେର୍ଗେଇ ମା'ର ଗାଳିଗୁଡ଼ାକ ଶେଷ ହେବା ଆଗରୁ ପାଭେଲ୍ ଗଳିରୁ ବାହାରି ରାସ୍ତାରେ ଦଉଡ଼ୁଥିଲା ।

ବଡ଼ ରାସ୍ତାଟା ଉପରେ ଜଣେ ଦି' କାନ୍ଧରେ ଦିଇଟା ବନ୍ଧୁକ ପକେଇ ଯାଉଥିଲା । ପାଭେଲ୍ ତାକୁ ଆଗୁଳି ପଗ୍ଚରିଲା :

"ମଉସା, କୋଉଠୁ ପାଇଲ ଏ ବନ୍ଧୁକ ଦି'ଟା ?"

"ଭେର୍‌ଖୋଭିନା ଆରପଟେ ।"

ଯେତେ ଶୀଘ୍ର ପାରେ, ପାଭେଲ୍ ଦଉଡ଼ିବାକୁ ଲାଗିଲା । ଦିଇଟା ଗଳି ପାରିହୋଇଛି କି ନାହିଁ, ଗୋଟାଏ ପିଲା ଦିହରେ ଧକ୍‌କା ଲାଗିଗଲା ତା'ର । ପିଲଟା ଗୋଟାଏ ସଙ୍ଗିନ୍‌ଲଗା ଓଜନିଆ ବନ୍ଧୁକ କାନ୍ଧେଇ ଆଣୁଥିଲା । ତାକୁ ଅଟକାଇ ପାଭେଲ୍ ପଗ୍ଚରିଲା :

"ଏଇଟା କୋଉଠୁ ପାଇଲୁ ?"

"ସ୍କୁଲର ଠିକ୍ ସାମନାରେ ବିପ୍ଳବୀ ବାହିନୀ ସେଠି ବାଣ୍ଟୁଛନ୍ତି । ଆଉ କିଛୁ ନାହିଁ, ସବୁ ସରିଗଲଣି । ରାତିସାରା ତ ବାଣ୍ଟୁଛନ୍ତି, ଏବେ ଖାଲି ଖୋଳଗୁଡ଼ାକ ପଡ଼ିଛି । ଏଇଟା ମୋର ଦ୍ୱିତୀୟ", ଗର୍ବରେ ଘୋଷଣା କଲା ପିଲଟି । ଏ ଖବରରେ ପାଭେଲର ମନ ମରିଗଲା ।

"ଧେତ୍, ସେଠି କି ସିଧା ଯାଇଥିଲେ କେତେ ଭଲ ହୋଇଥାଆନ୍ତା, ନିଷ୍ଚେ ପାଇଥାଆନ୍ତି ! ଏବେ ତ ଡେରି ହୋଇଗଲାଣି", ମନ ଦୁଃଖରେ ଭାବିଲା ସେ ।

ହଠାତ୍ ତାକୁ ଗୋଟାଏ ବୁଦ୍ଧି ଦିଶିଗଲା । ଚର୍‌କି ଭଳି ଦି'ଘ୍ରରି ଘେରା ଘୂରିଯାଇ ସେ ପିଲଟାକୁ ଧରିଲା ଆଉ ତା'ହାତରୁ ବନ୍ଧୁକଟା ଛଡ଼େଇନେଲା ।

"ଗୋଟାଏ ତ ତୋ ପାଇଁ ଯଥେଷ୍ଟ, ଏଇଟା ମୋର ଏଣିକି", ସବୁପ୍ରକାର ବିରୋଧକୁ ବେଖାତିର କଲାଭଳି ସ୍ୱରଟା ତା'ର ।

ଦିନ ଦିପହରେ, ମୁକ୍ତ ଦିବାଲୋକରେ ଏ ଡକାଇତିରେ ତାତିଉଠି ପିଲଟା ରାଗରେ ପାଭେଲ୍ ଉପରକୁ କୁଦିପଡ଼ିଲା । ପାଭେଲ୍ କିନ୍ତୁ ପଛକୁ କୁଦିପଡ଼ି ସଙ୍ଗିନ୍ ମୁନ ତା' ଆଡ଼କୁ କରି ଦେଖାଇଲା ।

"ଚୁପକରି, ଯିବାବାଟ ଦେଖ୍, ନହେଲେ ଫୁଟେଇଦେବି !"

ଅତି ରାଗିଯାଇ ନିଃସହାୟ ରାଗରେ ପିଲଟା ଭୋ ଭୋ ହୋଇ କାନ୍ଦି ପକାଇଲା ଓ ଦଉଡ଼ି ପଳାଇ ଗଲାବେଳେ ଚଦି ଚଦି ଗଲା ପାଭେଲ୍‌କୁ ।

ନିଜ କାମରେ ଭାରୀ ଖୁସିଟାଏ ହୋଇ ପାଭେଲ୍ ଘରକୁ ପାଦ ପକାଇଲା । ବାଡ଼ଟାକୁ କୁଦିପଡ଼ି ଗୁହାଳ ଭିତରକୁ ଦଉଡ଼ିଗଲା । ଛାତତଳେ ସଙ୍ଗା ଉପରେ, ନିଜର ନବଲବ୍‌ଧ ଏ ବନ୍ଧୁକଟିକୁ ସାଇତି ଦେଲା । ତା'ପରେ ଖୁସି ମନରେ ସୁସୁରି ମାରିମାରି ଘର ଭିତରକୁ ପଶିଲା ।

* * *

ୟୁକ୍ରାଇନ୍‌ର ଗ୍ରୀଷ୍ମକାଳୀନ ସନ୍ଧ୍ୟା ଅତ୍ୟନ୍ତ ମନୋରମ, ବିଶେଷତଃ ଶେପେଟୋଭ୍‌କା ଭଳି ଛୋଟ ଛୋଟ ୟୁକ୍ରେନୀୟ ସହରଗୁଡ଼ିକ, ଯେଉଁଗୁଡ଼ିକୁ ବାହାରୁ ଦେଖିଲେ ଅଧିକ ଗାଁ ଭଳି ଦିଶେ ।

ସେଗୁଡ଼ିକର ସଂଧ୍ୟା, ସତରେ ହୃଦୟଗ୍ରାହୀ । ଶାନ୍ତ ମୋଲାୟମ ଖରାଦିନିଆ ରାତିଗୁଡ଼ିକ, ତରୁଣତରୁଣୀଙ୍କ ପକ୍ଷରେ ଲୋଭନୀୟ ହୋଇଉଠେ । ଦଳ ଦଳ ହୋଇ ଘରୁ ବାହାରି ଆସନ୍ତି ସେମାନେ, ଏ ସୁନ୍ଦର ରମଣୀୟ ସନ୍ଧ୍ୟାକୁ ଉପଭୋଗ କରିବା ପାଇଁ । ନ ହେଲେ ଯୋଡ଼ି ଯୋଡ଼ି ହୋଇ ଏହି ରାତିମାନଙ୍କରେ ସେମାନେ ଛୋଟ ଛୋଟ ବଗିଚାରେ, ରାସ୍ତାକଡ଼ର କାଠଗଦା ଉପରେ ଗଡ଼ୁଥାଆନ୍ତି । ସେମାନଙ୍କର ମନମତାଣିଆ ହସର ଝଙ୍କାର, ସଙ୍ଗୀତର ସ୍ୱର ସନ୍ଧ୍ୟାର ବିଜନତାକୁ ଭେଦକରି ପ୍ରତିଧ୍ୱନିତ ହୁଏ ।

ନାନାଜାତିର ଫୁଲର ମହକରେ ପବନ ଭାରାକ୍ରାନ୍ତ, ମନ୍ଥର ହୋଇ ଆସେ । ଆକାଶର ଅତଳ ଗଭୀରତା ଭିତରେ ଆଖିମିଟିକା ମାରୁଥାନ୍ତି, ଜୁଳୁଜୁଳୁ ହୋଇ, ଛୋଟ ଛୋଟ ତାରାଗୁଡ଼ାକ । ସ୍ୱରଗୁଡ଼ାକ କାହିଁ କୁଆଡ଼େ ଭାସିଯାଏ ଦୂରକୁ... ଦୂରକୁ... ଆହୁରି ଦୂରକୁ ।

ନିଜର ଆକର୍ଡିଆନ୍‌ଟିକୁ ପାଭେଲ୍ ପ୍ରାଣରୁ ବଳି ଭଲପାଏ । ଯନ୍ତ୍ରଟିକୁ ଅତି ଯତ୍ନରେ କୋଳରେ ଥୋଇ, ତା'ର ଛୋଟ ଛୋଟ କଅଁଳିଆ ଆଙ୍ଗୁଳିଗୁଡ଼ିକ ଯନ୍ତ୍ରର ଦୁଇଧାଡ଼ି ରିଡ୍ ଉପରେ ଉପର ତଳକୁ ତଳୁ ଉପରକୁ ଚଳାଇ ଆଣେ ମୋଲାୟମ ଭାବରେ—ଉଦାର ଓ ଅନୁଦାର ସ୍ୱରର ଝଙ୍କାର ଝରିଝରିଯାଏ ସେଥିରୁ ।

ଆକର୍ଡିଆନ୍‌ର ପର୍ଦାରୁ ଯେତେବେଳେ ମତୁଆଲା ସଙ୍ଗୀତର ମୂର୍ଚ୍ଛନା ଝରିଝରିଯାଏ,

ସାରା ଆକାଶ ବତାସକୁ ଉନ୍ମାଦ କରି ଦୋଳେ ନିଜର ଉଷ୍ଣ ସ୍ୱରଶୃଙ୍ଗାରର ତରଙ୍ଗରେ । କିଏ ବା ସେତେବେଳେ ତୂନୀ ହୋଇ ବସିରହି ପାରିବ ସେ ଆହ୍ୱାନକୁ ଏଡ଼ାଇ ଦେଇ ପାରିବ ? ନିଜେ ଜାଣିବା ଆଗରୁ ଚଞ୍ଚଳ ପାଦ ଡମର ସେ ଆହ୍ୱାନରେ ଚପଳ ହୋଇ ଉଠିବ । ଆଃ, ବଞ୍ଚିବା ସତେ କି ସୁଖକର !

ଏକ ମଧୁର କମନୀୟ ସନ୍ଧ୍ୟା । ପାଭେଲ୍‌ର ଘର ସାମନାରେ ଗଦାହୋଇ ଥିବା କାଠଗଡ଼ଗୁଡ଼ାକ ଆଖପାଖରେ ଜମା ହୋଇଛନ୍ତି ପଞ୍ଚାଏ. ତରୁଣତରୁଣୀ । ହସଖୁସିର କୋଳାହଳରେ ମୁଖରିତ ହୋଇଉଠିଛି ସ୍ଥାନଟା । ସବୁଠୁଁ ଖୁସି ଦେଖାଯାଉଛି ପାଭେଲ୍‌ର ପଡ଼ିଶାଘର ପଥୁରିଆର ଝିଅ ଗାଲେଚ୍‌କା । ତରୁଣମାନଙ୍କ ସାଙ୍ଗରେ ନାଚିକୁଦି ମନଫୁଲଣିଆ ହୋଇ ଗୀତ ଗାଇବାରେ ତା'ର ଅସୀମ ଆନନ୍ଦ । ସ୍ୱରଟି ତା'ର ପୁଣି ଗମ୍ଭୀର ଓ ମଖମଲ ଭଳି କୋମଳ, ଲଳିତ ।

ତାକୁ ଦେଖିଲେ ପାଭେଲ କେମିତି ଶଙ୍କିଯାଏ ଟିକେ । କାରଣ ଗାଲେଚକାର ଭାରୀ ଶାଣଦିଆ ମୁହଁ, ଯେଉଁଠି ଦେଖବ ପାଭେଲ୍ ପାଖରେ ଲାଗି ଥିର୍‌କିନା ବସିଯିବ ତା' ବେକ ସ୍କୁରିକଡ଼େ ହାତ ବୁଲାଇ ଆଣେ, ହସି ହସି ଲେଟିଯାଇ :

"ଆକର୍ଡିଆନ୍‌ଟାକୁ ତୁ କେଡ଼େ ସୁନ୍ଦର ବଜାଉ ରେ ପାଭେଲ୍", ସିଏ କହେ, "ଛୋଟ ଛୁଆଟାଏ ବୋଲି ତୁ ସିନା, ନହେଲେ ମୋତେ ତୋ ସାଙ୍ଗେ ଭାରୀ ସୁନ୍ଦର ମାନନ୍ତାରେ । ଯିଏ ଆକର୍ଡିଆନ୍ ବଜାଏ ନାଁ, ତା' ପାଇଁ ପରା ମୋ ମନ ଭିତରଟା କ'ଣ ହୋଇଯାଏ ରେ । ତରଳିଯାଏ ଏକାବେଳେକେ ମୁଁ ।"

ପାଭେଲ୍ ଲାଜରେ ରଙ୍ଗା ପଡ଼ିଯାଏ ଏକାବେଳେକେ । ଭାଗ୍ୟକୁ ସେତେବେଳକୁ ଅନ୍ଧାରିଆ ହୋଇ ଯାଇଥାଏ ବୋଲି କେହି ଦେଖିପାରନ୍ତି ନାହିଁ । କୌଣସି ମତେ କଡ଼େଇ କଡ଼େଇ ସେ ଚତୁରୀ ଗାଲେଚ୍‌କା ପାଖକୁ ଯେତେ ଘୁଞ୍ଚିଘୁଞ୍ଚି ଯାଏ ସେ ସେତିକି ଲାଗି ଲାଗି ଆସେ, ଜାବୁଡ଼ି ଧରେ ତାକୁ ।

"ହଇରେ, ତୁ ମୋ ପାଖରୁ ଖସିଯିବୁ ? ଏଁ ? ପଳେଇଯିବାକୁ ବସିଛୁ ନାଁ ?" ହସି ହସି କହେ ସେ, "ଭାରୀ ସୁନ୍ଦର ତୁ ।"

ତା'ର ଉଦ୍ଧତ ଉନ୍ନତ ସ୍ତନ ପାଭେଲ୍ କାନ୍ଧରେ ଚାପି ହୋଇଯାଏ । ନିଜ ଇଚ୍ଛା ବିରୁଦ୍ଧରେ ପାଭେଲ୍ ଅତି ଅଦ୍ଭୁତ ଭାବରେ ରୋମାଞ୍ଚିତ ହୋଇଉଠେ । ଅନ୍ୟମାନଙ୍କର ହସର ଝଙ୍କାରରେ ଗଳିର ନିତିଦିନିଆ ନିସ୍ତବ୍‌ଧତା ମିଳେଇ ଯାଏ ।

ତା' କାନ୍ଧକୁ ମୋଲାୟମ ଭାବରେ ଠେଲିଦେଇ ପାଭେଲ କହେ, "ଯା, ଯା ମୋ ପାଖରୁ ଘୁଞ୍ଚିଯା, ମୁଁ ବଜେଇ ପାରିବି ନାହିଁ ତୋ ପାଇଁ ।"

ଆଉ ଏଇଥିରେ ଟାହିଟାପରା, ହସର ରୋଳ ଅଜାଡ଼ି ହୋଇପଡ଼େ ଆହୁରି ଥରେ ।

ମାରୁସ୍ୟା ପାଭେଲ୍‌କୁ ସାହାଯ୍ୟ କରିବା ପାଇଁ ଆଗେଇଆସେ :

"କିଛି ବିଷାଦବୋଳା ରାଗିଣୀ ବଜା ପାଭେଲ୍, ଯାହା ହୃଦୟତନ୍ତ୍ରୀରେ ଗୁଞ୍ଜା ହୋଇ ରହିଯାଇଥିବ ।"

ଧୀରେ ଧୀରେ ଆକର୍ଡିଆନ୍ ବାଜିଉଠେ । ପାଭେଲ୍ କୋମଳ ଭାବରେ ଆକର୍ଡିଆନ୍‌ର ସ୍ୱରଗ୍ରନ୍ଥିଗୁଡ଼ାକ ଉପରେ ଆଙ୍ଗୁଠି ଚଳାଏ । ଅତି ପରିଚିତ ମନୋଜ୍ଞ ଏକ ମଧୁର ରାଗିଣୀ ପବନରେ ଭାସିବୁଲେ । ପହିଲେ ଗାଲେଚ୍‌କା ଯୋଗଦିଏ, ତା'ପରେ ମାରୁସ୍ୟା, ତା'ପରେ ଅନ୍ୟମାନେ :

ରାତି ପାହାନ୍ତାରୁ ନାଉରୀଏ ହେଲେ,
ନିଜ କୁଡ଼ିଆରେ ଠୁଳ,
ଆହା କି ସୁନ୍ଦର,
ଆହା କି ମଧୁର,
ଗୀତଟି ଆମର ଗାଇ ଉଠୁଥିଲେ,
ଦୁଃଖର ଗୀତ ଭଲ ।

ପବନରେ ପବନରେ, ତରୁଣ କଣ୍ଠର ଲହରୀ କାହିଁ ଦୂରକୁ ଦୂରକୁ, ବନାନୀ ଭିତରକୁ ଭାସିଯାଏ ।

"ପାଭ୍‌କା", ଆର୍ଟେମ୍ ଡାକିଲା ।

ପାଭେଲ୍ ଆକର୍ଡିଆନ୍ ବନ୍ଦ କରି ତା'ର ଫିତାଗୁଡ଼ାକ ବାନ୍ଧିଦିଏ ଗ୍ରିକଡ଼େ ।

"ମୁଁ ଯାଏ, ଡାକିଲେଣି ସେମାନେ ।"

"ଓଃ, କାହିଁକି ତରତର ହେଉଛୁ ? ଆଉ ଟିକେ ବଜା !" ମାରୁସ୍ୟା ତାକୁ ଫୁସୁଲେଇ ଫାସଲେଇ ଅଟକେଇଦେବାକୁ ବସେ ।

ପାଭେଲ୍ କିନ୍ତୁ ଯିବା ପାଇଁ ବଦ୍ଧପରିକର ।

"କାଲି ପଛେ ପୁଣି ଆସି ବଜାଇବି, ଆଜି କିନ୍ତୁ ଆଉ ନୁହେଁ, ମୋତେ ଯିବାକୁ ହେବ । ଆର୍ଟେମ୍ ଡାକିଲାଣି ପରା ।" ଏତିକି କହି ସେ ଗଳିଟାରେ ଦଉଡ଼ି ଦଉଡ଼ି ଆରପଟର ଛୋଟିଆ ଘର ଭିତରେ ପଶିଗଲା ।

ବଖରାଟିରେ ଆର୍ଟେମ୍ ଛଡ଼ା ଆଉ ଦୁଇଜଣ ଲୋକ ବସିଥିଲେ । ଜଣେ ଆର୍ଟେମ୍‌ର ସାଙ୍ଗ ରୋମାନ୍ ଆଉ ଜଣେ କିଏ ଅପରିଚିତ ଲୋକ । ସେମାନେ ଟେବୁଲକୁ ଘେରି ବସିଥାନ୍ତି ।

"ମୋତେ ଡାକିଲ ?" ପାଭେଲ୍ ପଚାରିଲା ।

ମୁଣ୍ଡ ଟୁଙ୍ଗାରି ତାକୁ ହଁ ଜଣାଇ ଆର୍ଟେମ୍ ଅପରିଚିତ ବ୍ୟକ୍ତିଙ୍କ ଆଡ଼କୁ ବୁଲିପଡ଼ି କହିଲା :

"ଏଇ ମୋ ସାନଭାଇ, ଯାହା କଥା ଆମେ କଥାବାର୍ତ୍ତା ହେଉଥିଲେ ।"

ଆଗନ୍ତୁକଟି ପାଭେଲ୍ ଆଡ଼କୁ ତାଙ୍କ ଶିରାଳିଆ ହାତଟି ବଢ଼ାଇଦେଲେ ।

"ଦେଖ ପାଭ୍‌କା, ତୁ ମୋତେ କହୁଥିଲୁ ନା' ବିଦ୍ୟୁତ୍ କେନ୍ଦ୍ରର ଇଲେକ୍‌ଟ୍ରିସିୟାନ୍

ଅସୁସ୍ଥ ବୋଲି ? ତୁ ଟିକେ କାଲି ପଗ୍ଭରି ବୁଝିବୁ, ତା' ଜାଗାରେ ସେମାନେ ଯଦି ଜଣେ ନୂଆ ଭଲ ଲୋକ ନେବେ ? ରଖିବେ ଯଦି ଆମକୁ ଆସି ଜଣାଇବୁ ।"

ଆଗନ୍ତୁକ ତାକୁ ବାଧାଦେଲେ :

"ସେକଥା କରିବା ଦରକାର ନାହିଁ, ମୁଁ ବରଂ ତା'ସାଙ୍ଗେ ଯାଇ ମାଲିକ୍ ସାଙ୍ଗରେ ନିଜେ କଥାବାର୍ତ୍ତା କରିବି ।"

"ସେମାନେ ନିଶ୍ଚେ ରଖିବେ। ଆଜି ତ ବିଦ୍ୟୁତ୍ କେନ୍ଦ୍ର ବନ୍ଦ ଥିଲା, ଷ୍ଟାନ୍‌କୋଭିଚ୍‌ର ଦେହ ଖରାପ ଅଛି ବୋଲି । ମାଲିକ୍ ଆଜି ଆସି ଦୁଇଥର ଖୋଜି ଦେଇ ଗଲେଣି । ଉଠପଡ଼ ହୋଇ ସେମାନେ ଲାଗିଛନ୍ତି କେହି ଜଣେ ଯଦି ତା' କାମ ତୁଲେଇ ଦେଇପାରିବ । ହେଲେ କେହି ମିଳିଲେ ନାହିଁ । କେବଳ ଯୋଗାଣିଆଟା ଉପରେ ଆସ୍ଥା ରଖି ମେସିନ୍‌ଟା ଗ୍ଭଲୁ କରିବାକୁ ଭରସା ପାଉ ନାହିଁ । ସେ ଇଲେକ୍‌ଟ୍ରିସିୟାନ୍‌କୁ ପୁଣି 'ଟାଇଫସ୍' ହୋଇଛି ।"

"ତା'ହେଲେ ତ ହେଲା", ଆଗନ୍ତୁକଟି କହିଲେ, "ମୁଁ ଆସି କାଲି ତୋତେ ଡାକିବି, ସାଙ୍ଗ ହୋଇ ସେଠିକି ଯିବା ।"

"ହଉ, ଭଲ ।"

ଅଜଣା ବ୍ୟକ୍ତିଟିର ପାଉଁଶିଆ ଆଖି ସହିତ ପାଭେଲ୍‌ର ଆଖି ଦୁଇଟି ମିଳିଗଲା । ସେ ତାକୁ ତନଖି ଦେଖୁଥିଲେ ଯେମିତି ନିରିଖି ନିରିଖି । ତାଙ୍କ ସ୍ଥିର, ଅବିଚଳିତ ଗ୍ଭହାଣୀରେ ପାଭେଲ୍ ଅପ୍ରତିଭ ହୋଇଗଲା କେମିତି । ଆଗନ୍ତୁକ ଗୋଟିଏ ପାଉଁଶିଆ କୁର୍ତ୍ତା ପିନ୍ଧିଥାନ୍ତି, ବେକରୁ ତଳ ପର୍ଯ୍ୟନ୍ତ ବୋତାମ ଦିଆହୋଇଥାଏ । ସ୍ପଷ୍ଟ ବାରି ହେଉଥାଏ ସେଇଟା ଛୋଟ ହେଉଛି ବୋଲି, କାରଣ ତାଙ୍କ ପ୍ରଶସ୍ତ ଚଉଡ଼ା ପିଠିରେ କେତେ ଜାଗାରେ ସିଲେଇ ଭିଡ଼ିହୋଇ ଦୁହିଁହୋଇ ଯାଇଥାଏ । ହୃଷ୍ଟପୁଷ୍ଟ ବଳଦର ବେକ ଭଳି ତାଙ୍କ ବେକରେ ମୁଣ୍ଡ ଓ କାନ୍ଧ ଯେମିତି ଖଞ୍ଜା ହୋଇଥାଏ । ତାଙ୍କର ସାରା ଅବୟବରୁ ବାରିହୋଇ ପଡ଼ୁଥାଏ ପୁରୁଣା ଓକ୍ ଗଛର ଗଣ୍ଡି ଭଳି ଦୁର୍ଦ୍ଧର୍ଷ ଶକ୍ତିମତ୍ତା ।

"ଆଚ୍ଛା ନମସ୍କାର ଝୁଖ୍‌ରାଇ । ତୋର ଶୁଭକାମନା କରୁଛି !" ଦୁଆର ଯାଏ ତାଙ୍କୁ ବାଟେଇ ଦେଇ ଆସିଲା ବେଳେ କହିଲା ଆର୍ଟେମ୍ । "କାଲି ମୋ ଭାଇ ସାଙ୍ଗରେ ଯାଇ କାମରେ ଲାଗିଯିବ, ଆଉ କ'ଣ ?"

* * *

ସୈନ୍ୟବାହିନୀ ଗ୍ଭଲିଯିବାର ତିନିଦିନ ପରେ ଜର୍ମାନ୍‌ମାନେ ସହରରେ ପ୍ରବେଶ କଲେ । ପରିତ୍ୟକ୍ତ ଷ୍ଟେସନ୍‌ଟାରେ ହଠାତ୍ ଗୋଟାଏ ରେଳଇଞ୍ଜିନ୍‌ର ତୀବ୍ର ହୁଇସିଲ ସେମାନଙ୍କର ଆଗମନର ସଂବାଦ ଘୋଷଣା କଲା ।

"ଜର୍ମାନ୍‌ମାନେ ଆସୁଛନ୍ତି !" ବିଜୁଳି ବେଗରେ ସାରା ସହରରେ ବ୍ୟାପିଗଲା କଥାଟା ।

ପିମ୍ପୁଡ଼ିମନ୍ଦା ଉପରେ ଗୋଡ଼ ପଡ଼ିଗଲେ ସେଗୁଡ଼ାକ ଯେମିତି କିଲବିଲ୍ ହୋଇଉଠନ୍ତି, ସାରା ସହର ସେମିତି ଅସ୍ତବ୍ୟସ୍ତ ହୋଇପଡ଼ିଲା ଏ ସଂବାଦରେ । କାରଣ ଜର୍ମାନ୍‌ମାନେ ଆସୁଥିବା ଖବରଟା ଜାଣିଥିଲେ ମଧ୍ୟ କେହି କଥାଟାକୁ ପୂରାପୂରି ବିଶ୍ୱାସ କରିପାରି ନ ଥିଲେ । ଆଉ ଏବେ ସେ ଭୀଷଣ ଜର୍ମାନ୍‌ଗୁଡ଼ାକ ଆଉ କେଉଁଠି ବାଟରେ ନାହାନ୍ତି, ଏକାବେଳେକେ ଆସି ସହର ମଝିରେ!

ସହର ସାରା ଚାଟି କବାଟ ପଡ଼ିଗଲା । କେହି ପଦାକୁ, ରାସ୍ତା ଉପରକୁ ବାହାରିବାକୁ ସାହସ କଲେ ନାହିଁ । ଯେମିତି ବାରିଚାଟି ଆଉ ଦାଣ୍ଡ କବାଟ ତାଙ୍କର ଗଡ଼କବାଟ ।

ରାଜ ରାସ୍ତାର ଦୁଇପଟେ ଜଣିକିଆ ଧାଡ଼ିରେ ମାର୍ଚିଂ କରି କରି ଜର୍ମାନ୍‌ମାନେ ଆସିଲେ । ପିନ୍ଧିଥାନ୍ତି ସେମାନେ ବାଇଗଣି ରଙ୍ଗର ସାମରିକ ପୋଷାକ । ବନ୍ଧୁକଗୁଡ଼ାକ ଟେକେଇ ଧରିଥାନ୍ତି ମାରିବା ଭଙ୍ଗୀରେ । ଓସାରିଆ ଛୁରୀ ଭଳି ସଙ୍ଗିନ୍‌ଗୁଡ଼ାକ ଲାଗିଥାଏ ବନ୍ଧୁକ ଅଗରେ । ଓଜନିଆ ଲୁହା ଟୋପି ପିନ୍ଧିଥାନ୍ତି ସେମାନେ । ପିଠିରେ ବଡ଼ ବଡ଼ ବୋଝ ବୋହିଥାନ୍ତି । ଅସରନ୍ତି ସୁଅ ଭଳି ଷ୍ଟେସନ୍‌ରୁ ସହରକୁ ମାଡ଼ିଆସୁଥାନ୍ତି ସେମାନେ । ଭାରୀ ସତର୍କଭାବରେ ଆସୁଥାନ୍ତି, ଯେମିତି ଯେକୌଣସି ମୂହୂର୍ତ୍ତରେ କୌଣସି ଆକ୍ରମଣକୁ ସାମନା କରିପାରିବେ । ଯଦିଓ କେହି ଜଣେ ହେଲେ ସେମାନଙ୍କୁ ଆକ୍ରମଣ କରିବା କଥା ସ୍ୱପ୍ନରେ ସୁଦ୍ଧା ଭାବୁ ନଥିଲେ ।

ସବାଆଗରେ ଚାଲୁଥାନ୍ତି ଦୁଇଜଣ ଅଫିସର । ହାତରେ ତାଙ୍କର 'ମାଉଜର' ବନ୍ଧୁକ । ରାସ୍ତା ମଝିରେ ଚାଲୁଥାଏ 'ଦୋଭାଷୀ', ଯିଏ ସବୁ ବୁଝାଇଦେବ । 'ହେଟ୍‌ମ୍ୟାନ୍' ଚାକିରିରେ ନିଯୁକ୍ତ ଜଣେ ସର୍ଜେଣ୍ଟ ମେଜର ସେ । ପିନ୍ଧିଥାନ୍ତି ୟୁକ୍ରେନୀୟ ନୀଳକୋଟ୍ ଆଉ ମୁଣ୍ଡରେ ତାଙ୍କର ପରଟୋପି ।

ଠିକ୍ ସହର ମଝିରେ, ଧାଡ଼ି ଧାଡ଼ି ହୋଇ ଛିଡ଼ା ହେଲେ ଜର୍ମାନ୍‌ମାନେ । ଡ୍ରମ ବାଜିଉଠିଲା ଘନଘନ ହୋଇ । ଟିକେ ଦୁଃସାହସୀ ଅଳ୍ପ କେତେଜଣ ସହରବାସୀ ଯାଇଁ ରୁଣ୍ଡ ହେଲେ ସେଠି ଟିକେ ଦୂରେଇ । 'ହେଟ୍‌ମ୍ୟାନ୍'ର ୟୁକ୍ରେନୀୟ ନୀଳକୋଟ୍ ପିନ୍ଧା ଲୋକଟା ଔଷଧ ଦୋକାନର ଉଚ୍ଚ ପିଣ୍ଡା ଉପରକୁ ଚଢ଼ିଯାଇଁ କମାଣ୍ଡାଣ୍ଟ ମେଜର କର୍ଫଙ୍କର ଘୋଷଣା ବଡ଼ପାଟିରେ ପଢ଼ି ଶୁଣାଇଲା :

(୧)

ଏତଦ୍ୱାରା ସମସ୍ତ ସହରବାସୀଙ୍କୁ ଆଦେଶ ଦିଆଯାଉଛି ଯେ, ସେମାନେ ସେମାନଙ୍କ ନିକଟରେ ଥିବା ଯେ କୌଣସି ଆଗ୍ନେୟାସ୍ତ୍ର ବା ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ବର୍ତ୍ତମାନଠାରୁ ଚବିଶ ଘଣ୍ଟା ମଧ୍ୟରେ ଦାଖଲ କରି ଯାଆନ୍ତୁ! ଏହି ଆଦେଶ ଲଙ୍ଘନ କଲେ ଗୁଳିକରି ମାରିଦିଆଯିବ!

, ସହରରେ ସାମରିକ ଆଇନ୍‌ଜାରି କରାଯାଉଛି ଓ କୌଣସି ସହରବାସୀ ରାତି ଆଠଟା ପରେ ଘରୁ ପଦାକୁ ବାହାରିବା ନିଷିଦ୍ଧ ।

ମେଜର କର୍ଫ, ସହରର ସାମରିକ ଆଇନ ପ୍ରଶାସକ ।

ପୂର୍ବରୁ ପୌର ଶାସନ ବିଭାଗର ଓ ବିପ୍ଳବ ପରେ ସୋଭିଏତ୍ ଶ୍ରମିକ ପ୍ରତିନିଧିମାନଙ୍କର ଦଖଲରେ ଥିବା କୋଠାଟିରେ ନିଜ ଆସ୍ଥାନ ଜମାଇଲେ । ପ୍ରବେଶ ପଥରେ ବିରାଟ ଗୋଟାଏ ଈଗଲ୍ ଚିହ୍ନ ଥିବା ପ୍ୟାରେଡ୍ ପାଇଁ ଉଦ୍ଦିଷ୍ଟ ଲୁହା ଶିରସ୍ତ୍ରାଣ ପିନ୍ଧା ଗୋଟାଏ ପ୍ରହରୀ ଜଗି ରହିଲା । କୋଠାଟିର ପଛପଟ ଅଗଣାଟି ଲୋକେ ଫେରାଇଦେବା ଅସ୍ତ୍ରଶସ୍ତ୍ରର ଭଣ୍ଡାର ରୂପେ ବ୍ୟବହୃତ ହେଲା ।

ଗୁଳି ଖାଇ ମରିବା ଭୟରେ ଲୋକେ ଦିନସାରା ଆଣି ଅସ୍ତ୍ରଶସ୍ତ୍ର ଦେଇଗଲେ । ବୟସ୍କ ଲୋକେ ଲୁଚିରହିଲେ । କେବଳ ପିଲାଏ ଓ ଯୁବକମାନେ ଆଣି ଦାଖଲ କଲେ ଅସ୍ତ୍ରଶସ୍ତ୍ରଗୁଡ଼ାକ । ଜର୍ମାନ୍‌ମାନେ କାହାରିକୁ ଅଟକାଇଲେ ନାହିଁ ।

ଯେଉଁମାନେ ନିଜେ ନିଜେ ଆସିବାକୁ ଚାହୁଁ ନଥାନ୍ତି ସେମାନେ ନିଜ ଘର ଆଗ ସାମନା ରାସ୍ତାରେ ରାତିରେ ଅସ୍ତ୍ରଶସ୍ତ୍ରସବୁ ଜମା କରିଦେଲେ । ସକାଳୁ ଜର୍ମାନ୍ ପହରାଦାରମାନେ ସେସବୁ ଗୋଟାଇ ଗୋଟାଇ ସାମରିକ ଗାଡ଼ିରେ ଲଦି କର୍ତ୍ତୃପକ୍ଷଙ୍କ ଆଗରେ ଦାଖଲ କଲେ ।

ଅପରାହ୍ନ ଗୋଟାଏ ବେଳକୁ ନିର୍ଦ୍ଦିଷ୍ଟ ସମୟ ଅତିବାହିତ ହୋଇଯିବା ପରେ ଜର୍ମାନ୍ ସୈନିକମାନେ ଲୁଣ୍ଠନ ମାଲର ହିସାବ ନେଲେ । ଚଉଦ ହଜାର ବନ୍ଧୁକ । ଅର୍ଥାତ୍ ଆଉ ଛ'ହଜାର ଫେରାଇ ନାହାନ୍ତି । ଘର ଘର ଏଥର ଟିକିନିଖି ଖାନ୍‌ତଲାସି ଆରମ୍ଭ କଲେ ସେମାନେ । ସେଥିରେ ବି ବିଶେଷ କିଛି ଫଳ ମିଳିଲା ନାହିଁ ।

ତା' ଆରଦିନ, ବଡ଼ିଭୋରରୁ ଦୁଇଜଣ ରେଳବାଇ ଲୋକ, ଯାହାଙ୍କ ଘରୁ ଲୁଚ୍ଚାହୋଇଥିବା ବନ୍ଧୁକର ସନ୍ଧାନ ମିଳିଲା, ସେମାନଙ୍କୁ ସହର ବାହାରେ ଇହୁଦୀଙ୍କର ମଶାଣିରେ ଗୁଳିକରି ମାରିଦିଆହେଲା ।

* * *

ସାମରିକ କର୍ତ୍ତୃପକ୍ଷଙ୍କ ଘୋଷଣା ଶୁଣିବା ସାଙ୍ଗେ ସାଙ୍ଗେ ଆର୍ଟେମ୍ ଘରକୁ ଦୌଡ଼ିଆସିଲା ତରତର ହୋଇ । ଅଗଣାରେ ପାଭେଲ୍‌କୁ ଦେଖିବା ମାତ୍ରେ ତା' କାନ୍ଧରେ ହାତ ରଖି ଶାନ୍ତ, ଅଥଚ ଦୃଢ଼ଭାବରେ ପଚାରିଲା :

"ତୁ ଘରକୁ କୌଣସି ଅସ୍ତ୍ରଶସ୍ତ୍ର ଆଣିଚୁ କିରେ ?"

ବନ୍ଧୁକଟା ବିଷୟରେ କିଛି ନ କହିବାକୁ ଭାବିଥିଲା ପାଭେଲ୍ , କିନ୍ତୁ ଭାଇ ଆଗରେ ହଠାତ୍ ମିଛ କହି ନ ପାରି ସବୁ ଖୋଲଖୋଲି ଭାବରେ କହିଦେଲା ।

ଦୁହେଁ ଏକାଠି ମିଶି ଗୁହାକ ଭିତରକୁ ଗଲେ । ସଙ୍ଗ ଉପରେ ଲୁଗ୍ରହୋଇଥିବା ଜାଗାରୁ ରାଇଫଲ୍‌ଟିକୁ କାଢ଼ିଲା ଆର୍ତେମ୍ । ସେଥିରୁ ସଙ୍ଗିନ୍‌ଟା କାଢ଼ି ବାହାରକଲା , ତା'ପରେ ବନ୍ଧୁକଟାକୁ ବ୍ୟାରେଲ ଆଡ଼ୁ ଧରି ନିଜର ସମସ୍ତ ବଳ ଖଟାଇ ହଲାଇ ହଲାଇ ବାଡ଼ର ଖୁଣ୍ଟ ଦେହରେ ପିଟିଦେଲା । ବନ୍ଧୁକର ତଳିଟା ଭାଙ୍ଗି ଚୂନ୍‌ଚୂନା ହୋଇଗଲା । ବନ୍ଧୁକଟାର ଆଉ ଯେତେକ ଅଂଶ ବାକୀ ରହିଲା , ସେତକ ବଗିଗ୍ଚ ଡିଆଁରି ଆରପଟରେ ଅରମା ବୁଦା ଭିତରକୁ ଫିଙ୍ଗି ଦେଲା । ପାଇଖାନା ଗାତ ଭିତରକୁ ସଙ୍ଗିନ୍‌ଟାକୁ ପକେଇଦେଲା ଆର୍ତେମ୍ ।

ଫୋପଡ଼ା ଫିଙ୍ଗା ସାରି ଆର୍ତେମ୍ ତା' ଭାଇ ଆଡ଼କୁ ବୁଲିପଡ଼ି କହିଲା :

"ତୁ କ'ଣ ଆହୁରି ପିଲା ହୋଇଯାଉଛୁ ପାଭ୍‌କା , ବନ୍ଧୁକ ଧରି ଖେଳିବା କଥା ତୋର ନୁହଁ ବୋଲି ଜାଣିନୁ ? ଘରକୁ ତୋର ଏସବୁ ଜିନିଷ ଆଣିବା ଉଚିତ ନୁହେଁ । ଆଜିକାଲି ଦିନ ଯେମିତି ହୋଇଛି , ଏଇଥି ପାଇଁ କେତେବେଳେ ତୋ ଜୀବନଟା ଗ୍ଲଲିଯିବ । ଆଉ ଦେଖ୍ , ବେଶି ଗ୍ଲଲୁଗିରି ଦେଖାଇ ଏସବୁ ଆଣିବୁ ନାହିଁ । ଏମିତି ସବୁ ଘରକୁ ଆଣିଲେ , ସିଏ ତ ତୋତେ ପିଲା ବୋଲି ଛାଡ଼ିବେ ନାହିଁ , ମୋତେ ଗୁଳି କରିଦେବେ । ବଡ଼ ଭୟଙ୍କର ସମୟ ଇଏ , ବୁଝିରଖିଥା ।"

ପାଭେଲ୍ ରାଣପକାଇ ଏକଥା ଆଉ କରିବ ନାହିଁ ବୋଲି ଜବାବ ଦେଲା ।

ଦୁଇ ଭାଇଯାକ ଅଗଣା ଟପି ଘରକୁ ଆସିଛନ୍ତି କି ନାହିଁ , ଲେଷିନ୍‌ସି ଫାଟକ ଆଗରେ ଗୋଟାଏ ଘୋଡ଼ାଗାଡ଼ି ଅଟକିଲା ଆଉ ସେଥିରୁ ଓକିଲ , ତାଙ୍କ ସ୍ତ୍ରୀ , ଦି'ପିଲା ନେଲୀ ଓ ଭିକ୍‌ଟର ଓହ୍ଲେଇପଡ଼ିଲେ ।

"ଆଚ୍ଛା , ତା'ହେଲେ ଏ ସୁନ୍ଦରିଆ ଚଢ଼େଇସବୁ ତାଙ୍କ ବସାକୁ ଫେରିଲେ ଏଥର !" ରାଗରେ ବିଡ୍ ବିଡ୍ ହୋଇ ମନକୁ କହିଲା ଆର୍ତେମ୍ , "ତା'ହେଲେ ଖେଳ ଆରମ୍ଭ ହେଲା ଏଥର ! ଏଗୁଡ଼ାକୁ ମାରିପକା !" କହି କହି ଘରେ ପଶିଲା ସେ ।

ସେ ଦିନଟା ସାରା ପାଭେଲ୍ ମନଦୁଃଖରେ ତା'ର ବନ୍ଧୁକଟା କଥା ଭାବିଲା କେବଳ । ଇତ୍ୟବସରରେ ତା ସାଙ୍ଗ ସେର୍ଗେଇ ଗୋଟାଏ ପୁରୁଣା , ପରିତ୍ୟକ୍ତ ଗୁହାଳରେ ଝାଳନାଳ ହୋଇ ଲାଗିଥାଏ , କାନ୍ଥକୁ ଲାଗି ଭୂଇଁରେ ଗୋଟାଏ ଗାତ ଖୋଳିବା ପାଇଁ । ଶେଷରେ ଗାତଟା ଖୋଳି ସାରିଲା ସେ । ତା'ଭିତରେ ତିନୋଟିଯାକ ନୂଆ ବନ୍ଧୁକକୁ ରଖିଲା । ସେର୍ଗେଇ ଭାରୀ ସାବଧାନତା ସହକାରେ ଅଖାରେ ଗୁଡ଼େଇ ରଖିଲା । ଲାଲ ଫୌଜ ଅସ୍ତ୍ରଶସ୍ତ୍ର ବାଣ୍ଟୁଥିଲା ବେଳେ ସେଗୁଡ଼ିକ ଆଣିଥିଲା ସେ । ଜର୍ମାନ୍‌ମାନଙ୍କୁ ତାକୁ ଦେଇଦେବାକୁ ତା'ର ଜମାରୁ ଇଚ୍ଛା ନ ଥିଲା । ଏଣୁ ସାରାରାତି ଖଟି ସେ ଚେଷ୍ଟା କରୁଥିଲା ସେତକ କେମିତି ନିରାପଦରେ ରଖିବ ।

ଗାତରେ ରଖିସାରି ମାଟି ଚଲେଇ ଦେଲା ତା' ଉପରେ ଚଟାଣ ସାଙ୍ଗରେ ସମତୁଲ

କରି । ଇଆଡ଼ୁ ସିଆଡ଼ୁ ଗୁଡ଼ାଏ ଅଳିଆ ଗୋଟାଇ ଆଣି ଲଦିଲା ତା' ଉପରେ । ସବାଶେଷରେ ନିଜ କାମକୁ ପରୀକ୍ଷା କରି ଦେଖିଲା ତନ୍ନତନ୍ନ କରି, ସବୁ ଠିକ୍‌ଠାକ୍ ଅଛି କି ନାହିଁ । ତା'ପରେ ମୁଣ୍ଡରୁ ଟୋପିଟି କାଢ଼ି କପାଳରୁ ଝାଳ ପୋଛିଲା ସେ ।

"ଏବେ ଖୋଜନ୍ତୁ, ସେମାନେ ଆସି ପାଇଲେ ବି ଜାଣି ପାରିବେ ନାହିଁ, କିଏ ରଖିଛି ଏଠି । କାରଣ ଗୁହାଳଟା ତ କାହାରି ନୁହଁ ।"

* * *

ମାସେ ହେଲା ବିଜୁଳି କେନ୍ଦ୍ରରେ କାମ କଲା ଭିତରେ, ଗମ୍ଭୀର ମୁହାଁ ସେ ଇଲେକ୍‌ଟ୍ରିସିୟାନ୍‌ଙ୍କ ସହିତ ପାଭେଲ୍‌ର ବେଶ୍ ପ୍ରଗାଢ଼ ବନ୍ଧୁତା ଜମିଯାଇଥାଏ । ତାଙ୍କ ଯୋଗାଣିଆର ସହକାରୀଭାବରେ କାମ କରୁଥିବା ପାଭେଲ୍‌କୁ ଡାଇନାମୋ କେମିତି ତିଆରି ହୋଇଛି, ଆଉ କେମିତି ଚାଲେ, ସବୁ ଦେଖାଇ ଶିଖାଇ ଦେଉଥାଏ ଝୁଖ୍‌ରାଇ ।

ପ୍ରତିଭାଦୀପ୍ତ ପାଭେଲ୍ ପ୍ରତି ନାବିକଟିର ମମତା ଆସିଯାଇଥାଏ କେମିତି । ଛୁଟି ଦିନମାନଙ୍କରେ ସେ ପ୍ରାୟ ଆର୍ଟେମ୍‌କୁ ଦେଖାକରିବାକୁ ଆସେ । ମାଆଙ୍କ ମୁହଁରୁ ଘରର ହାନିଲାଭ, ସୁଖଦୁଃଖ, ଝଞ୍ଜାଳର କଥାସବୁ ବେଶ ମନଦେଇ ଶୁଣେ । ବିଶେଷ ମନଯୋଗ ଦେଇ ଶୁଣେ, ଯେତେବେଳେ ମାଆ ଗପନ୍ତି ସାନ ପୁଅର ନାନାପ୍ରକାର ଦୁଷ୍ଟାମିର କାହାଣୀ । ଗମ୍ଭୀର ପ୍ରକୃତିର ଆଉ ଚିନ୍ତାଶୀଳ ଝୁଖ୍‌ରାଇର ମାରିୟା ୟାକୋଭ୍‌ଲେଭ୍‌ନାଙ୍କ ଉପରେ ଭାରୀ ପ୍ରଭାବ । ଝୁଖ୍‌ରାଇ ମେଳରେ ଥିଲା ବେଳେ ସେ ପାସୋରି ଯାଆନ୍ତି ତାଙ୍କ ଅଭାବ, ଦୁଃଖ ଦୁର୍ଦ୍ଦଶା । କେମିତି ଉଲ୍ଲସିତ ହୋଇଉଠନ୍ତି ସେଇ କେତୋଟି ମୁହୂର୍ତ୍ତ !

ବିଜୁଳି କେନ୍ଦ୍ର ଅଗଣାରେ ପାହାଡ଼ ଭଳି ଜାଳେଣୀକାଠ ଗଦା ହୋଇଥାଏ । ତା'ର ଭିତର ଦେଇ ଯାଉଯାଉ ଦିନେ ହଠାତ୍ ଝୁଖ୍‌ରାଇ ହସି ହସି ପାଭେଲ୍‌କୁ ପଚାରିଲା :

"କିରେ ମାଆ କହନ୍ତି, ତୋର ତ ସଦାବେଳେ କୁଆଡ଼େ କିଛି ଗୋଟାଏ ଗଣ୍ଡଗୋଳ କରିବାରେ ମନ ? ମାଆ ତ କହନ୍ତି, ସିଏ ଗୋଟାଏ ଲଢ଼ୁଆ ଗଣ୍ଡା ଭଳି ଦୁଷ୍ଟ ।" ତା'ପରେ ପସନ୍ଦ କଲାଭଳି ସ୍ୱରରେ କହିଲା, "ଦେଖ୍ ଲଢ଼ୁଆ ହେବାଟା ମନ୍ଦ ନୁହଁ, ମାତ୍ର ସେଥିପାଇଁ ଜାଣିବା ଦରକାର, କାହା ସହିତ ଓ କାହିଁକି ଲଢ଼େଇ କରିବ ।"

ଝୁଖ୍‌ରାଇ ଥଟାରେ କି ଭଲରେ କହୁଛି, ଜାଣିପାରୁ ନ ଥାଏ ପାଭେଲ୍ ।

"ମୁଁ ତ କେବେହେଲେ ଅଯଥାରେ ଲଢ଼ାଇ କରେ ନାହିଁ", ସିଏ ପ୍ରତ୍ୟୁତ୍ତର ଦେଲା, "ମୁଁ ସଦାବେଳେ ସତ୍ୟ ଆଉ ନ୍ୟାୟ ପାଇଁ ଲଢ଼େଇ କରେ ।"

ଅତି ଅପ୍ରତ୍ୟାଶିତ ଭାବରେ ଝୁଖ୍‌ରାଇ ହଠାତ୍ ପଚାରିଲା :

"କ'ଣ ମୁଁ ତୋତେ ଠିକ୍ ଭାବରେ ଯୁଦ୍ଧ କେମିତି କରିବାକୁ ହୁଏ ଶିଖାଇ ଦେବି ? ଶିଖିବୁ ?"

"ଠିକ୍ ଭାବରେ ମାନେ ?" ଆଶ୍ଚର୍ଯ୍ୟ ହୋଇ ତା' ମୁହଁକୁ ଅନାଇ ପ୍ରଶ୍ନକଲା ପାଭେଲ୍ ।

"ଶିଖିଲ ବେଳେ ଜାଣିବୁ ନାହିଁ ବଳେ ।"

ତା'ପରେ ପାଭେଲ୍‌କୁ ସଂକ୍ଷିପ୍ତ ଭାବରେ ମୁଷ୍ଟିଯୁଦ୍ଧ ବିଷୟରେ ପ୍ରାରମ୍ଭିକ ବକ୍ତୃତାଟିଏ ଦେଇ ଝୁଖ୍‌ରାଇ ।

ପାଭେଲ୍ କିନ୍ତୁ ଏତେ ସହଜରେ ଶିଖିପାରିଲା ନାହିଁ ମୁଷ୍ଟିଯୁଦ୍ଧ । ଥରକୁ ଥର ସେ ଭୂଇଁରେ ଲେଟି ଯାଉଥାଏ , ଝୁଖ୍‌ରାଇ ମୁଷ୍ଟିରୁ ଗୋଟିଏ ଗୋଟିଏ ମୁଞ୍ଚି ପାଇ । କିନ୍ତୁ ନିଜକୁ ବେଶ୍ ଟାଣୁଆ ଓ ଅଧ୍ୟବସାୟୀ ଛାତ୍ର ବୋଲି ପ୍ରମାଣ କଲା ସେ ନିଜକୁ । ଶେଷରେ କିନ୍ତୁ ମୁଷ୍ଟିଯୁଦ୍ଧରେ ଦଖଲ ଆସିଗଲା ତା'ର ।

ବେଶ୍ ଗରମ ଦିନଟା । କ୍ଲିମ୍‌କା ଘରୁ ଫେରିଆସି , କିଛି ଗୋଟାଏ ମନଖୁସି କାମ କରିବାକୁ ଖୁଜବୁଜ୍ କରୁଥାଏ ପାଭେଲର ମନ । ତା'ପରେ ଠିକ୍ କଲା ତା'ର ପ୍ରିୟ ସ୍ଥାନରେ ଚଢ଼ିବ – ଘର ପଛପଟେ ବଗିଚା କଣରେ , ଗୋଟାଏ ଗୁହାଳ ଘର ଛାତ ଉପରେ । ପଛ ଅଗଣା ଟପି ସେ ବଗିଚା ଭିତରକୁ ଗଲା , ତା'ପରେ କାଠକୁଟା ଗଦା ଉପରେ ଚଢ଼ି , ଛାତ ଉପରକୁ ଚଢ଼ିଗଲା । ଚେରୀ ଗଛର ଗହଳିଆ ଡାଳପତ୍ର ଠେଲିପେଲି , ଠିକ୍ ମଝାନ ଉପରେ ଖରା ପୋଇଁବାକୁ ଚିତ୍ ହୋଇ ଶୋଇପଡ଼ିଲା ।

ଘରଟାର ଗୋଟାଏ ଅଂଶ ଲେଷିନ୍‌ସିଙ୍କ ବଗିଚାର ଭିତରକୁ କେନା ହୋଇ ପଶିଯାଇଥାଏ । ଛାତ ଶେଷମୁଣ୍ଡରୁ ପୂରା ବଗିଚାଟା , ଆଉ ଘରର କିଛି ଅଂଶ ଦେଖାଯାଏ । ଛାତ ଶେଷମୁଣ୍ଡରେ ଟିକେ ମୁଣ୍ଡଟେକି ଚାହିଁଲା ପାଭେଲ୍ । ତାକୁ ଅଗଣାର ଗୋଟାଏ ପାଖ ଆଉ ସେଠି ଛିଡ଼ା ହୋଇଥିବା ଘୋଡ଼ାଗାଡ଼ିଟାଏ ଦେଖାଗଲା । ଲେଷିନ୍‌ସିଙ୍କ ଘରେ ରହୁଥିବା ଜର୍ମାନ୍ ଲେଫଟ୍‌ନାଣ୍ଟର କୁର୍ତ୍ତା ପୋଷାକ ଆଦିକୁ ଝାଡ଼ିଝୁଡ଼ି ସଫା କରୁଥାଏ ତା'ର ଦେହଲଗା ଚାକରଟା ।

ପଡ଼ିଆ ଆଡ଼କୁ ମୁହିଁ ରଖିଥିବା ଫାଟକ ପାଖରେ ଅନେକ ଥର ଲେଫଟ୍‌ନାଣ୍ଟକୁ ଦେଖିଛି ପାଭେଲ୍ । ଚେପ୍‌ଟାନାକା , ଚଉଖୁଣ୍ଟିଆ , ଊଣ୍ଡ ମୁହଁର ଲୋକଟା । ନାକତଳେ ଅଧା ପ୍ରଜାପତିଆ ନିଶଦଳେ ଚାପିହୋଇ ରହିଛି । ତା'ର ଫ୍ରେମ୍ ଚଷମା , ଚକଚକିଆ ଟୋପିଟାଏ ପିନ୍ଧିଥାଏ ସେ । ପାଭେଲ୍ ମଧ୍ୟ ଜାଣିଥାଏ ଯେ , ସେ କଡ଼ପଟିଆ ବଖରାରେ ରୁହେ । ସେଇ ବଖରାର ଝରକାଟା ବଗିଚା ଆଡ଼କୁ ରହିଛି , ଆଉ ସେଇଟା ଛାତ ଉପରୁ ଦେଖାଯାଏ ।

ଲେଫଟନାଣ୍ଟ ଟେବୁଲରେ କ'ଣ ଲେଖୁଥିଲା ସେଇ ମୁହୂର୍ତ୍ତରେ । ସେ ଯାହା ଲେଖୁଥିଲା ସବୁ ଗୋଟେଇ ଗାଟେଇ ଧରି ବଖରା ବାହାରକୁ ବାହାରିଗଲା । କାଗଜତକ ଚାକରକୁ ଦେଇ , ବଗିଚା ଭିତରେ ପଡ଼ିଥିବା ରାସ୍ତାରେ ଫାଟକ ଆଡ଼କୁ ଆସିଲା । ଗ୍ରୀଷ୍ମନିବାସ ଭିତରେ ଥିବା କାହା ସହିତ କ'ଣ କଥାବାର୍ତ୍ତା କଲା । ଟିକିଏ ପରେ ନେଲୀ ଲେଷିନ୍‌ସାୟା ବାହାରି ଆସିଲା । ତା' ବାହାରେ ବାହୁ ଛନ୍ଦି ଦୁହେଁ ଫାଟକରୁ ବାହାରି ରାସ୍ତାକୁ ଗଲେ ।

ନିଜର ସୁବିଧାଜନକ ସ୍ଥାନରେ ଥାଇ ପାଭେଲ୍ ଏସବୁ ଘଟଣା ଦେଖୁଥାଏ । ତା'

ଆଖିପତା କେମିତି ନଇଁ ନଇଁ ଆସିଲା ନିଦରେ, ଆଖିପତା ବୁଜିଦେବାକୁ ଯାଉଛି, ଦେଖିଲା ଲୁକିରିଆଟା ଲେଫଟ୍‌ନାଣ୍ଟର ବଖରା ଭିତରକୁ ପଶିଲା, ଗୋଟାଏ ପୋଷାକ ଲଟକାଇଦେଲା, ବଗିଚା ଆଡ଼କୁ ଝରକାଟା ଖୋଲିଦେଲା ଓ ଘରର କବାଟ ବନ୍ଦ କରି ବାହାରିଗଲା । ତା' ପରମୁହୂର୍ତ୍ତରେ ପାଭେଲ୍ ତାକୁ ଦେଖିଲା, ଦୂରରେ ଘୋଡ଼ାଶାଳ ପାଖରେ ସେ ଛିଡ଼ାହୋଇଛି ।

ଖୋଲା ଝରକାବାଟେ ପାଭେଲ୍ ଘରଭିତରଟା ଟିକିନିଖି ଦେଖିପାରୁଥାଏ । ଟେବୁଲ ଉପରେ ବେଲ୍ଟ ଓ କିଛି ଉଜ୍ଜ୍ୱଳ ଚିକିଚିକିଆ ଜିନିଷ ଥୁଆ ହୋଇଛି ।

ଦୁର୍ଦ୍ଦମନୀୟ କୌତୂହଳରେ ଆକୃଷ୍ଟ ହୋଇ ପାଭେଲ୍ ନିଃଶବ୍ଦରେ ଚେରୀ ଗଛ ଉପରେ ଚଢ଼ି ଲେଖିନ୍‌ସି ବଗିଚା ଭିତରକୁ ଡେଇଁ ପଡ଼ିଲା । ନଇଁ ନଇଁ ବଗିଚା ଅତିକ୍ରମ କରି ଝରକା ଭିତରକୁ ଉହୁଙ୍କି ଚାହିଁଲା । ତା' ଆଗରେ ଟେବୁଲ ଉପରେ ବେଲ୍ଟ ଓ କାନ୍ଧପଟିରେ ଲାଗିଥିବା ଚମତ୍କାର ଗୋଟାଏ ବାରଗୁଳିବିଶିଷ୍ଟ 'ମ୍ୟାନ୍‌ଲିଚର' ପିସ୍ତଲ୍ ଥୁଆହୋଇଥାଏ ।

- ପାଭେଲର ନିଃଶ୍ୱାସ ବନ୍ଦ ହୋଇଆସିଲା । ଦଣ୍ଡକ ପାଇଁ ସେ ଦ୍ୱିଧାରେ ପଡ଼ିଲା, ମାତ୍ର ତା'ର ବେପରୁଆ ଦୁର୍ଦ୍ଦାନ୍ତ ସାହସ ହିଁ ଜୟୀ ହେଲା । ସେ ପିସ୍ତଲ୍ ଖୋଳଟାକୁ ଆଣିଲା, ସେଥିରୁ ନୀଳ ଇସ୍ପାତର ନୂଆ ରିଭଲଭରଟାକୁ ଟାଣିଆଣି ଭୂଇଁକୁ ଡେଇଁପଡ଼ିଲା । ବିଜୁଳି ବେଗରେ ଚାରିଆଡ଼କୁ ଥରେ ଚାହିଁଦେଇ ପକେଟ୍‌ରେ ପୂରାଇଦେଲା ସେଇଟାକୁ । ତା'ପରେ ଦ୍ରୁତ ଗତିରେ ବଗିଚା ଅତିକ୍ରମ କରି ଚେରୀ ଗଛ ପାଖରେ ପହଞ୍ଚିଲା । ମାଙ୍କଡ଼ ଭଳି କ୍ଷିପ୍ରଗତିରେ ଛାତ ଉପରେ ଚଢ଼ିଗଲା ଓ ପଛକୁ ଫେରି ଚାହିଁଲା । ଟହଲିଆ ସେତେବେଳେ ଯାଏ ଚାକର ସାଙ୍ଗରେ ଖୁସି ମନରେ ଗପ କରୁଥାଏ । ବଗିଚାଟା ଜନଶୂନ୍ୟ ଓ ନିଃଶବ୍ଦ ଥାଏ । ଆରପଟକୁ ଓହ୍ଲେଇ ଯାଇ ପାଭେଲ୍ ଘର ଆଡ଼କୁ ଦଉଡ଼ି ଚାଲିଗଲା ।

ମା' ରୋଷେଇଘରେ ରାନ୍ଧିବାରେ ବ୍ୟସ୍ତ ଥାନ୍ତି । ପାଭେଲ୍‌କୁ ଦେଖି ନାହାନ୍ତି ସେ ।

ଟ୍ରଙ୍କ୍ ପଛରେ ପଡ଼ିଥିବା ଛିଣ୍ଡା କନାଖଣ୍ଡେ ଗୋଟାଇ, ପକେଟ୍‌ରେ ପୂରାଇ ତୁନି ତୁନି ମା'ର ଅଜାଣତରେ ବାହାରିଗଲା ସେ । ଅଗଣା ଟପି ବାଡ଼ ଡେଇଁ ଜଙ୍ଗଲ ଆଡ଼କୁ ପଡ଼ିଥିବା ରାସ୍ତାରେ ମୁହାଁଇଲା । ଓଜନିଆ ପିସ୍ତଲ୍‌ଟା ପକେଟ୍‌ରେ ଏପଟ ସେପଟ ବାଜୁଥାଏ । ସେଇଟାକୁ ପକେଟ୍ ଭିତରେ ମୁଠାଇ ଧରି, ଯେତେ ଜୋର୍‌ରେ ପାରେ ଜଙ୍ଗଲ ଭିତରେ ଭଙ୍ଗାରୁଜା ହୋଇ ପରିତ୍ୟକ୍ତ ଇଟାଭାଟି ଆଡ଼କୁ ଦଉଡ଼ିଲା ସେ ।

ପାଦ ତା'ର ମାଟି ଛୁଉଁଥାଏ କି ନଥାଏ, କାନରେ ସାଇଁ ସାଇଁ ବାଜୁଥାଏ ପବନ ।

ପରିତ୍ୟକ୍ତ ଇଟାଭାଟି ପୂରାପୂରି ନିସ୍ତବ୍ଧ ଥାଏ । ଅତି ଦାରୁଣ ସେ ଦୃଶ୍ୟ । ଛାତି ଦବି ଯାଉଥାଏ । କାଠର ଛାତଟା ଭାଙ୍ଗି ରୁଜି ଯାଇ ଏଠିସେଠି ପଡ଼ିଛି – ପାହାଡ଼ ପ୍ରମାଣର ଭଙ୍ଗା ଇଟା ଆଉ ଭଙ୍ଗା ଟାଟିଗୁଡ଼ାକ ଛିନ୍ନଛତ୍ର ହୋଇ ପଡ଼ିଛି ଏଠିସେଠି । ଅନାବନା ଗଛଗୁଡ଼ାକ ବଢ଼ିଯାଇ ମାଡ଼ିବସିଛନ୍ତି ଜାଗାଟାକୁ । ପାଭେଲ ଆଉ ତା'ର

ସାଙ୍ଗ ଦି'ଜଣ ସେଠିକି ବେଳେବେଳେ ଖେଳିବାକୁ ଆସନ୍ତି । ଏମାନଙ୍କ ବ୍ୟତୀତ ସେ ଜାଗାଟାକୁ ଆଉ କେହି ଆସନ୍ତି ନାହିଁ, ଭୁଲରେ ସୁଦ୍ଧା । ଅପହୃତ ଧନକୁ ତା'ର ନିରାପଦରେ ଲୁଚ୍ଚାଇ ରଖିପାରିବା ପାଇଁ ସ୍ଥାନସବୁ ଠଉରେଇଥାଏ ପାଭେଲ୍ ।

ଘରିଆଡ଼କୁ ସତର୍କ ଦୃଷ୍ଟି ବୁଲାଇଆଣି ପାଭେଲ୍ ଗୋଟାଏ ଚୁଲିର ଗାତ ଭିତରକୁ ପଶିଗଲା । କେହି ଆଖିରେ ପଡ଼ିଲେ ନାହିଁ ତା'ର । ଆଖପାଖରେ କେହି ନ ଥିଲେ । କେବଳ ପାଇନ୍‌ଗଛର ମର୍ମର ଧ୍ୱନି ଶୁଭୁଥିଲା । ରାସ୍ତା ଉପରୁ ଧୀର ପବନ ଧୂଳି ଉଡ଼ାଇ ନେଉଥିଲା । ପବନରେ ଝୁଣାର ବାସନା ପୂରି ରହିଥିଲା ।

କନାରେ ଗୁଡ଼ାହୋଇଥିବା ପିସ୍ତଲ୍‌ଟାକୁ ପାଭେଲ୍ ଚୁଲି ଗାତ ଭିତରେ ଗୋଟାଏ କୋଣରେ ରଖିଲା । ତା' ଉପରେ ଛୋଟ ଛୋଟ ପୁରୁଣା ଇଟାର ଗୋଟାଏ ପିରାମିଡ୍ ଗଢ଼ିଦେଲା । ବାହାରି ଆସି ପୁରୁଣା ଭାଟିଟାର ମୁହଁକୁ ଇଟାରେ ବନ୍ଦ କରିଦେଲା । ଜାଗାଟାକୁ ସଠିକଭାବରେ ଠଉରେଇ ନେଇ ମନେରଖିଲା, ଧୀରେ ଧୀରେ ଘର ଆଡ଼କୁ ପାଦ ବଢ଼େଇଲା ।

ତାକୁ ଲାଗୁଥାଏ, ତା' ପାଦତଳେ ଆଣ୍ଠୁ ଦିଇଟା ଥରି ଯାଉଛି ଯେମିତି ।

"କ'ଣ ହବ ଏବେ ?" ଭାବୁଥାଏ ସେ । ଛାତି ତା'ର ଅଶୁଭ ଆଶଙ୍କାରେ ଥରିଉଠୁଥାଏ ।

ଘରକୁ ନଯିବ ବୋଲି ସେ ବିଦ୍ୟୁତ୍ କେନ୍ଦ୍ରରେ ଯାଇ ପହଞ୍ଚିଲା ଠିକ୍ ସମୟର ଅନେକ ଆଗରୁ । ଜଗୁଆଳୀଠାରୁ ଚାବି ନେଲା । ପାଓ୍ୱାର ହାଉସ୍‌ର ଚଉଡ଼ା ଦରଜା ଖୋଲିଲା । ପୋଡ଼ା ପାଉଁଶଗୁଡ଼ାକ ଚୁଲି ଭିତରୁ କାଢ଼ୁ କାଢ଼ୁ, ବଏଲର୍‌ରେ ପମ୍ପ ମାରି ପାଣି ପୂରାଉ ପୂରାଉ ସେ ଭାବି ଚାଲିଥାଏ, "ଏବେ ଲେଷିନ୍‌ସିଙ୍କ ଘରେ କ'ଣ ଘଟୁଥିବ ?"

ପ୍ରାୟ ଏଗାରଟା ବେଳକୁ ଝୁଖ୍‌ରାଇ ଆସି ତାକୁ ବାହାରକୁ ଡାକିଲା ।

"ତମ ଘର କାହିଁକି ଆଜି ଖାନ୍‌ତଲାସ ହେଉଥିଲା ?" ଅନୁଚ୍ଚ ସ୍ୱରରେ ପଚାରିଲା ସେ ।

"ଖାନ୍‌ତଲାସ ?" ଚମକିପଡ଼ି ପାଭେଲ୍ ପଚାରିଲା ।

"ମୋତେ ତ କାହିଁକି କଥାଟା ଭଲ ଦେଖାଯାଉ ନାହିଁ । ତୁ ଜମା କିଛି ଜାଣିନୁ ଖାନ୍‌ତଲାସ କଥା, କ'ଣ ସେମାନେ ଖୋଜୁଥିଲେ ?"

ସେମାନେ ଯାହା ଖୋଜୁଥିଲେ ପାଭେଲ୍ ଭଲଭାବରେ ଜାଣିଥିଲା । କିନ୍ତୁ ପିସ୍ତଲ୍ ଚୋରୀର କାହାଣୀଟା ଝୁଖ୍‌ରାଇକୁ କହିବାକୁ ସାହସ କୁଳାଇଲା ନାହିଁ ତା'ର । ଗୋଟାପଣେ ଥରିଯାଇ ସେ ପଚାରିଲା :

"ସେମାନେ କ'ଣ ଆର୍ଟେମ୍‌କୁ ଗିରଫ କରିଛନ୍ତି ?"

"ନାଁ, କେହି ଗିରଫ ହୋଇ ନାହାନ୍ତି, କିନ୍ତୁ ସେମାନେ ଘର ସାରା ସବୁତକ ଜିନିଷପତ୍ର ଓଲଟପାଲଟ କରି ଛିନ୍‌ଛତ୍ର କରିଦେଇ ଯାଇଛନ୍ତି ।"

କଥାଟା ଶୁଣିଲା ପରେ ପାଭେଲ୍ ଟିକେ ଆଶ୍ୱସ୍ତ ହେଲା, ଯଦିଓ ତା'ର ଆଶଙ୍କା ପୂରାପୂରି କମି ନଥିଲା । ନିଜ ନିଜ ଚିନ୍ତାରେ ବୁଡ଼ିରହି. ଝୁଖରାଇ ଓ ସେ ଦୁହେଁ କିଛି

ସମୟ ପାଇଁ ନୀରବରେ ସେମିତି ଛିଡ଼ାହୋଇ ରହିଲେ ସେଇଠି । ଦୁହିଁଙ୍କ ଭିତରୁ ଜଣେ ଜାଣିଥିଲା ଯେ, ଖାନତଲାସ କାହିଁକି ହୋଇଛି, ଏଣୁ ପରିଣତି ବିଷୟରେ ଆଶଙ୍କିତ ଥିଲା । ଅପର ଜଣକ କିଛି ଜାଣି ନ ଥିଲା, ଏଣୁ ସେ ସତର୍କ ହୋଇ ଉଠୁଥିଲା ।

"ସେମାନେ କେମିତି ହେଲେ ମୋ ବିଷୟରେ ଜାଣି ସାରିଲେଣି ? ଆର୍ତେମ୍ ନିଜେ ତ ମୋ ବିଷୟରେ କିଛି ଜାଣି ନାହିଁ । କିନ୍ତୁ ତଥାପି ସେମାନେ ତା' ଘରଟାକୁ ଖାନତଲାସ କଲେ କାହିଁକି ? ଆହୁରି ଅଧିକ ସତର୍କ ହେବା ଦରକାର", ଝୁଖ୍‌ରାଇ ମନେ ମନେ ଚିନ୍ତା କରୁଥିଲା ।

କେହି କାହାକୁ ଆଉ ପଦେ ହେଲେ କଥା ନ କହି ଯେଝା କାମ ଉପରକୁ ଫେରିଆସିଲେ ।

ତେଣେ ଲେଷିନ୍‌ସ୍କି ଘରଟା ଉଠୁଥିଲା ପଡ଼ୁଥିଲା । ଲେଫଟ୍‌ନାଣ୍ଟ ଫେରିଆସି ନିଜ ପିସ୍ତଲ୍ ନପାଇ ରାଗରେ ଆଗ ତା' ପାଖଲଗା ଟହଲିଆକୁ ପଚାରିଲା ଓ ଟହଲିଆ ଖୋଜିସାରି କହିଲା ଯେ, ପିସ୍ତଲ୍‌ଟା ଚୋରି ହୋଇ ଯାଇଛି ନିଶ୍ଚୟ । ମୁହଁରୁ ଏତକ ବାହାରିଛି କି ନାହିଁ, ଉତ୍ତ୍ୟକ୍ତ ହୋଇଯାଇ ତା' ମୁହଁରେ ଶକ୍ତ ଗୋଟାଏ ମୁଷି ବସାଇଲା ଲେଫଟ୍‌ନାଣ୍ଟ । ମାଡ଼ଟା ସମ୍ଭାଳି ନ ପାରି ପଡ଼ି ଯାଉଁଯାଉଁ କୌଣସି ମତେ ସମ୍ଭାଳି ନେଇ ଆଟେନ୍‌ସନ୍ ହୋଇ ସେ ଛିଡ଼ାହେଲା, ଅତି କରୁଣ ଭାବରେ ଆଖି ମିଟିମିଟି କରି ପରବର୍ତ୍ତୀ କାଳରେ ଆଉ କ'ଣ ଘଟିବ, ସେଥି ପାଇଁ ପ୍ରସ୍ତୁତ ହୋଇ ।

ଓକିଲଙ୍କଠାରୁ କୈଫିୟତ୍ ତଲବ୍ ହେବାରୁ, ସେ ଆସି ପ୍ରଥମେ ଚୋର ଉଦ୍ଦେଶ୍ୟରେ ପାଟିକରି କମ୍ପାଇଲା ଜାଗାଟାକୁ । ତା' ପରେ ଅତି ନମ୍ରତାର ସହିତ ତା' ଘରେ ଏମିତି ଘଟଣାଟାଏ ଘଟିଯାଇଛି ବୋଲି କ୍ଷମା ମାଗିଲା ଲେଫଟ୍‌ନାଣ୍ଟ ନିକଟରେ ।

ଭିକ୍‌ଟର ଲେଷିନ୍‌ସ୍କି ହିଁ ପହିଲେ କହିଥିଲା ଯେ, ପଡ଼ିଶାଘର ଲୋକ ଭିତରୁ କେହି ଚୋରି କରିଥିବେ, ବିଶେଷକରି ସେ ବଦ୍‌ମାସ ଟୋକା ପାଭେଲ୍ କୋର୍ଚ୍ଚାଗିନ୍ ଚୋରାଇ ନେଇପାରିଥାଏ ପିସ୍ତଲ୍‌ଟାକୁ । ବାପା ତା'ର ସାଙ୍ଗେସାଙ୍ଗେ ଆସି ପୁଅର ଏ ଅନୁମାନଟା ଲେଫଟ୍‌ନାଣ୍ଟକୁ ଜଣାଇଦେଲା ଓ ଲେଫଟ୍‌ଣାଣ୍ଟ ସଙ୍ଗେ ସଙ୍ଗେ ଖାନତଲାସ ପାଇଁ ଆଦେଶ ଦେଇଦେଲା ।

ଖାନତଲାସଟା ନିଷ୍ଫଳ ହେଲା ଏବଂ ପିସ୍ତଲ୍ ଚୋରୀର ଏ କାହାଣୀ ପାଭେଲ୍‌ର ଆଖି ଖୋଲି ଦେଇଗଲା ଯେ, ଏପରି ଦୁଃସାହସିକ ବିପଜ୍ଜନକ ଉଦ୍ୟମ ବି ବେଳେବେଳେ ସଫଳ ହୋଇପାରେ !

# ତୃତୀୟ ପରିଚ୍ଛେଦ

ତୋନ୍ୟା ଭାରାକ୍ରାନ୍ତ ମନରେ ଖୋଲା ଝରକା ପାଖରେ ଛିଡ଼ା ହୋଇ ଆଖି ବୁଲାଇ ଆଣୁଥିଲା ତା'ର ଅତି ପରିଚିତ ବଗିଚାଟି ଉପରେ । ଧୀରେ ଧୀରେ ଆପଣାର ରାଜକୀୟ ଗାମ୍ଭୀର୍ଯ୍ୟ ନେଇ ଛିଡ଼ା ହୋଇଛନ୍ତି ବଡ଼ ବଡ଼ ପପ୍‌ଲର ଗଛଗୁଡ଼ାକ । ଧୀର ପବନରେ

ଗଛର ପତ୍ରଗୁଡ଼ାକ ଧୀରେ ଧୀରେ ଦୋହଲି ଉଠୁଥିଲ । ତା'ର ସାରା ପିଲଦିନ ବିତାଇଥିବା ଏଇ ଜାଗାକୁ ଛାଡ଼ିବାର ଯେ ପୂରା ବର୍ଷେ ଏଥିମଧ୍ୟରେ ବିତିଯାଇଥିଲ, ଏକଥା ଜମାରୁ ବିଶ୍ୱାସ କରିପାରୁ ନଥିଲ ଟୋନ୍ୟା । ପୂରା ବର୍ଷେ! ତାକୁ ଲଗୁଛି, ଏନ୍ତ ଯେମିତି ସେ ଗଲକାଲି ଘର ଛାଡ଼ିଥିଲ ଆଉ ସକାଳ ଟ୍ରେନ୍‌ରେ ଫେରିଛି ।

ନା଼ଃ, କିଛି ବଦଳି ନାହିଁ । ସବୁ ସେମିତି ଅଛି । ରାସ୍‌ବେରୀ ଗଛଗୁଡ଼ାକ ସେମିତି ଆଗଭଳି ଯତ୍ନର ସହିତ ସମତୁଲ ହୋଇ କଟାହୋଇଛି । ମା'ଙ୍କର ଅତି ପ୍ରିୟ ପାନ୍‌ସୀ ଫୁଲ ଧାଡ଼ି ଧାଡ଼ି ହୋଇ ସେମିତି ଜ୍ୟାମିତିକ ସରଳ ରେଖାରେ ରାସ୍ତାର ଦୁଇଧାରରେ ଲଗା ହୋଇଛି । ବଗିଚ୍ଚର ପ୍ରତ୍ୟେକଟି ଜିନିଷ ଅତି ପରିଚ୍ଛନ୍ନ ଓ ପରିପାଟୀର ସହିତ ରହିଛି, ବଗିଚ୍ଚର ଯତ୍ନନେବାର ବାହୁଲ୍ୟ ଓ ବୈଶିଷ୍ଟ୍ୟର ଅତିବେଶି ପରିଚୟ ଦେଇ । ପରିଷ୍କାର ପରିଚ୍ଛନ୍ନ, ସିଧା ସିଧା ରାସ୍ତାଗୁଡ଼ାକର ଏ ଦୃଶ୍ୟ କେମିତି ବିରକ୍ତିକର ଲଗୁଥିଲ ଟୋନ୍ୟାକୁ ।

ଟିକିଏ ଆଗରୁ ପଢ଼ୁଥିବା ଉପନ୍ୟାସଟାକୁ ଉଠାଇ ନେଲ ସେ । ବାରଣ୍ଡା ଆଡ଼କୁ ଥିବା ଦରଜା ଖୋଲିଲ, ପାହାଚ ପରେ ପାହାଚ ଓହ୍ଲାଇ ବଗିଚ୍ଚରେ ପହଞ୍ଚିଲ । ଛୋଟ ସ୍ପ୍ରିଂ ଦିଆ ଫାଟକଟିକୁ ଖୋଲି ସେ ଧୀରେ ଧୀରେ ଆଗେଇଲ ଷ୍ଟେସନ୍ ପାଣିପମ୍ପ ଘର ପାଖ ଗଡ଼ିଆ ନିକଟକୁ ।

ଛୋଟ କାଠ ପୋଲଟିକୁ ଅତିକ୍ରମ କରି ସେ ସରିସରି ହୋଇ ଗଛ ଲଗାହୋଇଥିବା ରାସ୍ତା ଉପରକୁ ଆସିଲ । ଡାହାଣପଟେ ଗଡ଼ିଆଟି, ଚ୍ଚରିପଟେ ତା'ର ଉଇଲୋ ଓ ଆଲ୍‌ଡର ଗଛ ଛାଇ ହୋଇଯାଇଛି, ବାଁ ପଟେ ଆରମ୍ଭ ହୋଇଛି ଜଙ୍ଗଲ ।

ପୁରୁଣା ପଥର ଖଣି ପାଖ ଗଡ଼ିଆ ଆଡ଼କୁ ମୁହାଁଉଥାଏ ସେ । ଏତିକିବେଳେ ହଠାତ୍ ପାଣି ଉପରେ ସାଇଁକିନା ପଡ଼ିଲ ଗୋଟାଏ ବନ୍‌ଶୀଛଡ଼ । ଶବ୍ଦରେ ଟିକିଏ ଅଟକିଗଲ ସେ ।

ବଙ୍କା ଉଇଲୋ ଗଛଟାର ଗଣ୍ଡି ଉପରେ ନଇଁପଡ଼ି, ଡାଳପତ୍ର ଆଡ଼େଇଦେଇ, ଚ୍ଚହିଁଲ ସେ—ଆଣ୍ଠୁ ଉପରକୁ ପ୍ୟାଣ୍ଟ ଗୋଡ଼ ଟେକିଦେଇ ଖାଲି ପାଦରେ ଖରାରେ ସିଝି ସିଝି ଟୋକାଟାଏ ବସିଛି । ପାଖରେ ତା'ର ଗୋଟାଏ ଜଙ୍କ୍‌ଲଗା ଟିଣଡବାରେ ଜିଆଗୁଡ଼ାକ । ଟୋକାଟା ନିଜ କାମରେ ଏତେ ମଜ୍ଜିଯାଇଥିଲ ଯେ, ଟୋନ୍ୟାର ଉପସ୍ଥିତି ଜାଣିପାରିଲ ନାହିଁ ।

"ଏଠି ମାଛ ଧରିବାକୁ ବସିଛୁ? ଧରିପାରିବୁ ବୋଲି ଭାବିଛୁ?"

ପାଭେଲ୍ ରାଗରେ ତମତମ ହୋଇ କଡ଼ ବୁଲେଇ ଅନାଇଲ ।

କୁଜରେ ଛିଡ଼ା ହୋଇଛି ଝିଅଟିଏ । ଦେହରେ ତା'ର ଧଳା ବ୍ଲାଉଜ୍—ନାବିକମାନଙ୍କ ଭଳି, ନୀଳ ରଙ୍ଗର କାନ୍ଧପଟି, ଈଷତ୍ ପାଉଁଶିଆ ବର୍ଣ୍ଣର ସାର୍ଟ । ପାଣି ଉପରକୁ ନଇଁପଡ଼ିଛି ସେ ଗୋଟାଏ ଉଇଲୋ ଶାଖାକୁ ଧରି । ରଙ୍ଗ ଧଡ଼ିଇଗା ଛୋଟ ଛୋଟ ମୋଜାଦିଓଟି ତା'ର ଖରାଖିଆ ବଳିଲ ବଳିଲ ଗୋଡ଼ ଉପରେ ଜଡ଼ିଯାଇଛି ଏକାବେଳେକେ । ବାଦାମୀ ବହଳ କେଶଗୁଚ୍ଛର ସୁନ୍ଦର ବଢ଼ ଖୋସାଟିଏ ।

ନିଜ ଅଲକ୍ଷ୍ୟରେ ତା' ହାତଟା ଥରିଗଲା ଟିକେ । ଫଳରେ ବନ୍‌ଶୀଛଡ଼ଟା ଦୋହଲିଯାଇ ଡୋରଟା ଚହଲିଗଲା ଓ ତେରେଣ୍ଡାଟା ପାଣିରେ ଟୁବକିନା ବୁଡ଼ିଯାଇ ପାଦରେ ଚିକ୍‌କଣ ଆସ୍ତରଣ ଉପରେ ଛୋଟ ଛୋଟ ଭଉଁରୀ ଖେଳାଇଦେଲା ।

"ହେଇ ଦେଖ୍ ଦେଖ୍, ଖାଇଲା, ଖାଇଲା ମାଛଟା ।"

ନିଜକୁ ସ୍ଥିର ନ ରଖିପାରି ସେ ଜୋର୍‌ରେ ଝିଙ୍କିନେଲା ବନ୍‌ଶୀଟାକୁ । ବନ୍‌ଶୀ କଣ୍ଟା ଗୁଣ୍ଡାହୋଇ ଭିଡ଼ିମୋଡ଼ି ହେଉଥିବା ଜିଆଟା ସହିତ ପାଣି ଉପରକୁ ଉଠିଆସିଲା ।

"ଆଉ ମାଛ ଧରିହବ ନାହିଁ! ଧେତ୍‌ତେରି... ଏଇଟା ଗୋଟାଏ ଏଠିକି କାହିଁକି ଆସିଲା ?" ଉତ୍ତେଜିତ ହୋଇ ଭାବୁଥିଲା ପାଭେଲ୍ ଓ ନିଜର ମାନସିକ ଅସ୍ୱସ୍ତିକୁ ଘୋଡ଼ାଇବା ପାଇଁ ଦୂରକୁ ଫୋପାଡ଼ିଲା ଡୋରକୁ, ଯେଉଁଠିକି ଫିଙ୍ଗିବା ତା'ର ଉଚିତ ନଥିଲା । କାରଣ ସେଠି ପାଣି ଭିତରର ନଟାରେ ଲାଖିଯିବ କଣ୍ଟାଟା ।

ସେ ବୁଝିପାରିଲା, କ'ଣ ହେଲା ବୋଲି ଏବଂ ପଛକୁ ନ ବୁଲି ଫିସ୍‌ଫିସ୍ କରି କୂଳରେ, ତା' ପଛପଟେ ବସିଥିବା ଝିଅଟି ଉଦ୍ଦେଶ୍ୟରେ କହିଲା :

"ହେଃ, ଚୁପ୍‌ ହୋଇ ବସିପାରୁନୁଁ ? ସବୁ ମାଛ ତ ହୁରୁଡ଼ିଯିବେ ତୋ ପାଟିରେ ।"

ଉପରୁ ବିଦ୍ରୂପ କରି ଝିଅଟି କହିଲା ଯାକୁ ଚିହାଇ :

"ତୋ ଚେହେରାରେ ତ ଆଗ ମାଛଗୁଡ଼ାକ ହୁରୁଡ଼ି ପଳେଇଲେଣି ! ଆରେ, ଏ ଖରାବେଳେ କୋଉ ଭଲଲୋକ ଭଲା ବନ୍‌ଶୀରେ ମାଛ ମାରିବାକୁ ବସେ ?"

ପାରୁପର୍ଯ୍ୟନ୍ତ ଚେଷ୍ଟା କରି ପାଭେଲ୍ ସଞ୍ଜତ ଓ ଭଦ୍ର ବ୍ୟବହାର କରୁଥିଲା ତା' ପ୍ରତି । କିନ୍ତୁ ଏତକ ଅତିବେଶି ହୋଇଗଲା । ସେ ଉଠି ଛିଡ଼ାହେଲା, ଟୋପିଟାକୁ ଆଖି ଉପରକୁ ଟେକିଦେଲା — ସେ ଉତ୍ତ୍ୟକ୍ତ ହୋଇଗଲେ ସାଧାରଣତଃ ଯେମିତି କରେ ।

"ଏଠୁ ଦୟାକରି ଗ୍ଲଲିଗଲେ ତମେ ଭାରୀ ଭଲ କରନ୍ତ !" ଦାନ୍ତରେ ଦାନ୍ତ ଚିପି କହିଲା ସେ, ତା'ର ସବୁଠାରୁ ଭଦ୍ର ଭାଷାତକ ବ୍ୟବହାର କରି ।

ତୋନ୍ୟାର ଆଖିଯୋଡ଼ିକରେ ହସ ପୂର୍ଣ୍ଣ ହୋଇଗଲା ଯେମିତି ଓ କୁଞ୍ଚିତ ହୋଇଗଲା ଈଷତ୍ ଭାବରେ । ସେ କହି ଉଠିଲା :

"ଆଚ୍ଛା ? ମୁଁ କ'ଣ ସତରେ ତୋତେ ବାଧା ଦେଉଛି ?"

ତା' କଥାରେ ଆଉ ସେ ବିଦ୍ରୂପ ନଥିଲା । ବରଂ ନରମ, ବନ୍ଧୁତ୍ୱପୂର୍ଣ୍ଣ ଓ ଆପୋଷର ଭାଷା ଥିଲା ତା'ର କଣ୍ଠରେ । ହଠାତ୍ ଆସି ପହଞ୍ଚିଥିବା ଏହି କିଶୋରୀଟି ପ୍ରତି ସତରେ କଠୋର ବ୍ୟବହାର କରିବାକୁ ପାଭେଲ୍ ସିଦ୍ଧାନ୍ତ କରିସାରିଥିଲେ ମଧ୍ୟ, ତା' କଥାରେ ନିରସ୍ତ ହୋଇଗଲା ।

"ବସି ଦେଖିବୁ ଯଦି ଦେଖ, ତୋ ଇଚ୍ଛା ହେଲେ ମୋର ସେଥିରେ କ'ଣ ଅଛି ?" କୁଣ୍ଠାର ସହିତ କହିଲା ପାଭେଲ୍ ଓ ଯାଇଁ ନିଜର ବନ୍‌ଶୀ ପାଖରେ ବସି ପଡ଼ିଲା । ସେଠି ଇଟାରେ ଲଗିଯାଇଥିଲା କଣ୍ଟାଟା ଆଉ ସେତେବେଳକୁ ପୂରା ତଳକୁ ଲଟା ଚେର ପାଖକୁ ଯାଇସାରିବଣି ଚଳେଚଳେ । ଝିଙ୍କି ଆଣିବାକୁ ସାହସ କୁଳାଉ ନଥାଏ ତା'ର । ସତରେ

ଯଦି ଲାଖିଯାଇଥାଏ, ଆଉ ଛଡ଼େଇ ପାରିବ ନାହିଁ ସେଥିରୁ । ଆଉ ଏ ଝିଅଟା ନିଶ୍ଚୟ ହୋ ହୋ ହୋଇ ହସିବ । ଝିଅଟା କେମିତି ଏଠୁ ଯାଆନ୍ତା କି ବୋଲି ଇଚ୍ଛା କରୁଥାଏ ସେ ।

ଅନ୍ଧ ନଈଁ ଆସିଥିବା ଉଇଲୋ ଗଛର ଡାଳ ଉପରେ ଡୋନ୍ୟା କିନ୍ତୁ ଆରାମରେ ଆଉଜି ବସି ରହିଲା । ଆଣ୍ଠୁ ଉପରେ ବହିଟି ତା'ର ଥୁଆ ହୋଇଥାଏ । ଖରାଖିଆ, କଳା ଆଖିଆ ବେହୁଦା ଟୋକାଟାକୁ ସେ ନିରିଖେଇ ଚାହିଁ ରହିଥାଏ । ଟୋକାଟା ତା ପ୍ରତି ବଡ଼ ଅଭଦ୍ର ବ୍ୟବହାର ଦେଖାଇଛି ଏବଂ ଜାଣିଶୁଣି ତାକୁ ବେଖାତିର କରୁଛି ।

ସ୍ୱଚ୍ଛ, ସ୍ଥିର ଜଳର ଆସ୍ତରଣ ଉପରେ ଝିଅଟିର ମୁହଁ ଦର୍ପଣ ଭଳି ପ୍ରତିବିମ୍ବିତ ହୋଇଥିବାର ଦେଖିଲା ପାଭେଲ୍ । ଜଣାଯାଉଥାଏ, ଯେମିତି ନିଜ ବହିରେ ଏକାବେଳେକେ ମଜ୍ଜି ଯାଇଛି ସେ । ଏତିକିବେଳେ ଅତି ସାବଧାନତା ସହକାରେ ବନ୍‌ଶୀ କଣ୍ଟାକୁ ଟାଣିଦେଲା ପାଭେଲ୍ । କଣ୍ଟାଟା ପାଣି ଭିତରେ ଲାଖିଯାଇ ବନ୍‌ଶୀ ଡୋରଟା ଲାଖି ହୋଇଗଲା ଭିଡ଼ିହୋଇ ।

"ହେଚ୍, ଡୋରଟା ଏଥର ଲାଖିଯାଇଛି !", ହଠାତ୍ ତା'ର ମନେ ହେଲା ଏବଂ ସେହି ମୁହୂର୍ତ୍ତରେ ନିଜ ଆଖିକୋଣରେ ସେ ଚାହିଁ ଦେଖିଲା, ପାଣି ଭିତରୁ ହସହସ ମୁହଁରେ ଝିଅଟି ଚାହିଁରହିଛି ତାଆରି ଆଡ଼କୁ ।

ଠିକ୍ ସେତିକିବେଳକୁ ପାଣିପମ୍ପ ଘର ପାଖରେ ଥିବା ପୋଲ ଉପର ଦେଇ ଦୁଇଜଣ ଯୁବକ ଆସୁଥିଲେ । ଦୁହେଁ ଉଚ୍ଚ ବିଦ୍ୟାଳୟର ସପ୍ତମ ଶ୍ରେଣୀ ଛାତ୍ର । ସେଥିରୁ ଜଣେ ରେଳବାଇ ୟାର୍ଡର ଚିଫ୍ ଇଞ୍ଜିନିୟରଙ୍କର ପୁଅ । ସତର ବର୍ଷ ବୟସ ତାକୁ । ନାଁ ସୁଖାର୍କୋ ଅଭଦ୍ର ଗୁଣ୍ଡା ପ୍ରକୃତିର ପିଲାଟା, ଚିକ୍‌ଚିକିଆ ବାଳ, ମୁହଁସାରା ବ୍ରଣରେ ଭର୍ତ୍ତି । ସ୍କୁଲରେ ସାଙ୍ଗ ପିଲାଏ ଥଟ୍ଟାରେ ନାଁ ଦେଇଥାନ୍ତି, 'ପୋକରାମୁହାଁ ଶୁର୍କା' ବୋଲି । ଗୋଟାଏ ସୁନ୍ଦରିଆ ବନ୍‌ଶୀଛଡ଼ ଆଉ ଡୋର ହାତରେ ଧରିଥାଏ ସେ । ମୁହଁରେ ଗୋଟାଏ ଅଧାଜଳା ସିଗାରେଟ୍ ଲାଗିଥାଏ ତା'ର । ତା' ସାଙ୍ଗରେ ଥାଏ ଭିକ୍‌ଟର ଲେଷିନ୍‌ସ୍କି ଡେଙ୍ଗାହୋଇ ମାଇଚିଆ ଟୋକାଟାଏ ।

"ଏ ଟୋକୀଖଣ୍ଡକ ବଢ଼ିଆ ମାଲ୍ ହୋଇଛି, ବୁଝିଲୁ ? ଏ ଖଣ୍ଡମଣ୍ଡଳରେ ଯା ଭଳିଆ ଆଉ ଜଣେ କେହି ନାହିଁ ପରା !" ସୁଖାର୍କୋ ତା' ସାଙ୍ଗ ଉପରେ ଢଳିପଡ଼ି, ଇଙ୍ଗିତ ଦେଇ ଆଖି ମାରି ମାରି କହୁଥାଏ ତାକୁ :

"ତୋ ରାଣ ଖାଇ କହୁଛି ରେ, ଟୋକୀଖଣ୍ଡକ ଖାଲି ପେରେମରେ ଉବୁଟୁବୁ ହେଉଛି ପରା ! କିଏଭ୍‌ରେ ଷଷ୍ଠ ଶ୍ରେଣୀରେ ପଢ଼ୁଛି ସିଏ । ଏଠିକି ଆସିଛି ବାପା ପାଖରେ ଗ୍ରୀଷ୍ମ ଛୁଟି ବିତାଇବ ବୋଲି । ତା'ବାପା ଏଠି ଜଙ୍ଗଲ ହାକିମ ଅଛି । ମୋ ଭଉଣୀ ଲିଜା ତାକୁ ଜାଣିଛି ମ । ଆରେ ବୁଝିଲୁ ନାଁ, ମୁଁ ପରା ଥରେ ଏକାବେଳେକେ ମଜ୍ଜି ଯାଇ ତାକୁ ଖଣ୍ଡେ ଚିଠି ଲେଖିଥିଲି ରେ : 'ତୋ ପ୍ରେମରେ ମୁଁ ପାଗଳ, ତୋ ପାଇଁ ମୁଁ ପାଗଳ ହୋଇଯିବି, ତୁ ସବୁ ଜାଣିଛୁ, ରାତି ରାତି ଜାଗି ଜାଗି କମ୍ପିତ ହୃଦୟରେ

ତୋର ଉତ୍ତରକୁ ଅପେକ୍ଷା କରିଛି', ଏପରି କି ନାଦ୍‌ସନ୍‌ରୁ ଖୋଜି ଖୋଜି, ବାଛିବାଛି ଦି'ଗ୍ରରିପଦ କବିତା ବି ଲେଖି ପକାଇଥିଲି ସେଥିରେ ।"

"ଆଚ୍ଛା ? କ'ଣ ହେଲା ତା'ପରେ ?" କୌତୂହଳରେ ପଗ୍ଚରିଲା ଭିକ୍‌ଟର ।

"ଆରେ ଯାଃ, କାହିଁକି ଆଉ ପଗ୍ଚରୁଛୁ ? ଭୟଙ୍କର ଭାବରେ ରାଗିଗଲା ତ ଟୋକୀଟା । କହିଲା, 'ଏମିତି ସବୁ ବାଜେ ଚିଠି ଲେଖି କାଗଜ ନଷ୍ଟ କରିବା ଉଚିତ ନୁହଁ'", କେମିତି ବିତ୍‌ବିତ୍ ହୋଇ ଦବିଗଲା ଗଳାରେ କହିଲା ସୁଖାର୍କୋ, "କିନ୍ତୁ ସେଥିରେ କ'ଣ ହେଲା ମୁଁ ଜାଣିଛି ଭଲକରି । ପହିଲୁ ପହିଲୁ ଏମିତି ସବୁ ହୁଏ । ମୁଁ ପରା ଏଥିରେ ପୁରୁଣା ମୂଷା ! ମୋତେ ସତରେ ଏମିତି ହୃଦୟ, ପ୍ରେମ, ରୋମାନ୍‌ସ, ଦୀର୍ଘଶ୍ୱାସ, ବୟସ—ଏସବୁ ବାଜେ କଥାରେ ଭାରୀ ଚିଡ଼ିମାଡ଼େ । ସବୁଠୁ ସୁବିଧା କଥା ହେଲା, ସନ୍ଧବେଳକୁ ମରାମତି ମିସ୍ତ୍ରୀଙ୍କ ବ୍ୟାରାକ୍ ଆଡ଼କୁ ଯାଅ, ତିନି ରୁବଲ ପକେଇଦିଅ—ମୁହଁ ଓଦା କରିଦେବା ପାଇଁ ବେଶ୍ ସୁନ୍ଦରିଆ ମାଇ୍ ମିଳିଯିବ । ଆଉ ଏସବୁ ବାଜେକଥା ବି ଉଠିବ ନାହିଁ । ମୁଁ ସେଇଠିକି ବାଗେଇଯାଏ ଭାଲ୍‌କା ତିଖୋନୋଭ୍ ସାଙ୍ଗରେ । ତୁ ଜାଣିଛୁ ନା ତାକୁ ? ରେଳବାଇ ଫୋରମ୍ୟାନ୍ ମଁ ସିଏ ?"

ବିରକ୍ତିରେ ମୁହଁ ବୁଲାଇନେଲା ଭିକ୍‌ଟର ।

"ତୁ କ'ଣ ଏମିତି ସବୁ ବାଜେ ଜାଗାରେ ଯାଇଁ ପଶୁ ଶୁରା ?"

ସିଗାରେଟ୍‌ଟାକୁ ଟିକେ ଦାନ୍ତେଇ ଦେଇ, ଛେପ ପକେଇସାରି ମୁହଁ ଛିଆଡ଼ି ଶୁରା କହିଲା :

"ଏମିତି ଆଉ ଭଦ୍ରଲୋକୀ ଦେଖାନା ମଁ—ତମେ ଯୋଉଠିକି ଯାଅ, ସେକଥା ଆମକୁ ବି ଜଣାଅଛି ।"

ତାକୁ ବାଧାଦେଇ ଭିକ୍‌ଟର କହିଲା :

"ଆଚ୍ଛା ହଉ, ତୋର ଏ ବଢ଼ିଆ ମାଇ୍ ସାଙ୍ଗରେ ମୋତେ ଟିକେ ଚିହ୍ନା କରେଇଦେବୁ ?"

"ନିଶ୍ଚୟ, ଗ୍ଚଲ୍ ଗ୍ଚଲ୍, ଜଲ୍‌ଦି ଗ୍ଚଲ୍, ନ ହେଲେ ଖସିଯିବ ଆମଠୁ । ଗତକାଲି ସିଏ ନିଜେ ଯାଇଥିଲା ବନ୍‌ଶୀ ପକାଇବା ପାଇଁ ।"

ଦୁଇ ବନ୍ଧୁ ତୋନ୍ୟା ପାଖରେ ପହଞ୍ଚିଲେ । ସୁଖାର୍କୋ ମୁହଁରୁ ସିଗାରେଟ୍‌ଟା କାଢ଼ି ତୋନ୍ୟାକୁ ବେଶ୍ ଗୋଟାଏ ବୀରତ୍ୱପୂର୍ଣ୍ଣ ଅଭିବାଦନ ଜଣାଇଲା ମୁଣ୍ଡ ନୁଆଁଇ ।

"କେମିତି ଅଛନ୍ତି ଶ୍ରୀମତୀ ତୁମାନୋଭା ? ଆପଣ ବି କ'ଣ ବନ୍‌ଶୀ ପକାଇବାକୁ ଆସିଛନ୍ତି ?"

"ନା, ମୁଁ କେବଳ ବସି ବସି ଦେଖୁଥିଲି", ତୋନ୍ୟା ଉତ୍ତର ଦେଲା ।

"ତମ ଦୁହିଁଙ୍କର ବୋଧହୁଏ ଚିହ୍ନାପରିଚୟ ନାହିଁ ?" ତରବର ହୋଇ ସୁଖାର୍କୋ କହିଲା ଭିକ୍‌ଟର ବାହାକୁ ଧରି, "ଇଏ ହେଉଛନ୍ତି ମୋ ବନ୍ଧୁ ଭିକ୍‌ଟର ଲେଷିନ୍‌ସି ।"

ଲାଜରେ ରଙ୍ଗା ପଡ଼ିଯାଇ ଭିକ୍‌ଟର ତୋନ୍ୟା ଆଡ଼କୁ ନିଜ ହାତ ବଢ଼ାଇଦେଲା କରମର୍ଦ୍ଦନ ପାଇଁ ।

କଥାବାର୍ତ୍ତା ଗଳ୍ପ ରଖିବା ପାଇଁ ସୁଖାର୍କୋ ପୁଣି ପଗ୍ଧରି ଉଠିଲା, "ଆପଣ ଆଜି କାହିଁକି ମାଛ ମାରୁ ନାହାନ୍ତି ?"

"ମୋ ବନ୍‌ଶୀଛଡ଼ ଆଣିବାକୁ ଭୁଲିଯାଇଛି ।"

"ମୁଁ ଆଉ ଗୋଟାଏ ନେଇଆସିବି ଯାଉଛି, ସେତେବେଳଯାଏ ଆପଣ ମୋ ଛଡ଼ଟା ଧରି ମାଛ ଧରୁଥାନ୍ତୁ, ମୁଁ ଏଇ ମିନିଟକ ଭିତରେ ଫେରିଆସିବି ।"

ଭିକ୍‌ଟରର ସହିତ ଝିଅଟିର ପରିଚୟ କରାଇଦେବାର ପ୍ରତିଶ୍ରୁତି ସେ ରକ୍ଷାକରିଛି, ଆଉ ଏବେ ସେ ଗ୍ଧହୁଁଥିଲା, ଦୁହେଁ କେମିତି ଏକାଟିଆ ରହନ୍ତୁ ।

"ନାଁ, ମୁଁ ମାଛ ଧରିବି ନାହିଁ—ଜଣେ ବସି ମାଛ ଧରୁଛି, ଆମେ ଖାଲି ତାକୁ ବାଧାଦେବା ସାର ହେବ", ତୋନ୍ୟା କହିଲା ।

"କାହାକୁ ବାଧା ଦେବୁ ? ଓଃ ତାକୁ ?" ସୁଖାର୍କୋ ପଗ୍ଧରିଲା । ପ୍ରଥମକରି ପାଭେଲ୍‌କୁ ଦେଖିଲା ସେ ଗୋଟାଏ ବୁଦା ଉହାଡ଼ରେ ବସିଥିବାର । "ଆଚ୍ଛା, ଆଚ୍ଛା, ମୁଁ ଦି'ଧକ୍‌କାରେ ତାକୁ ଏଠୁ ଚଡ଼ିଦେଉଛି ।"

ତୋନ୍ୟା ଅଟକାଇବା ଆଗରୁ ସେ ପାଭେଲ୍ ବସିଥିବା ସ୍ଥାନରେ ପହଞ୍ଚିଯାଇଥିଲା ।

"ଏଃ, ତୋ ବନ୍‌ଶୀ ଉଠାଇ ଏଠୁ ପଳା", ପାଭେଲ୍‌କୁ କହିଲା ସୁଖାର୍କୋ । ତଥାପି ପାଭେଲ୍ ନିଶ୍ଚିନ୍ତ ମନରେ ବନ୍‌ଶୀ ପକାଇବାରେ ଲାଗିଥିବା ଦେଖି, ପୁଣି କହିଲା, "ଏଃ ଯାଉଛୁ ନାଁ ଏଠୁଁ, ଯା, ପଳା ଜଲଦି କହୁଛି !"

ପାଭେଲ୍ ଉପରକୁ ଗ୍ଧହିଁଦେଲା । ସୁଖାର୍କୋ ଉପରେ ଯାଇ ପଡ଼ିଲା ତା ଦୃଷ୍ଟି ଏବଂ ସେ ଦୃଷ୍ଟିରେ ଫୁଟି ଉଠୁଥିଲା ଏକ ଅଶୁଭର ସୂଚନା ।

"ଚୁପ୍‌କର ! ନିଜକୁ ତୁ କ'ଣ ବୋଲି ଭାବିଛୁ କି ?"

"କ'ଣ କହିଲୁ ?" ଗର୍ଜନ କରିଉଠିଲା ସୁଖାର୍କୋ । "ତୁ ପୁଣି ଜବାବ୍ ଦେଉଛୁ ବସି, ଏଡ଼େ ଦିମାକ୍ ତୋର ? ବଜ୍ଜାତ୍ କୋଉଠିକାର ଯାଉଛୁ ନାଁ ଏଠୁ ?" କହି ସେ ପାଭେଲ୍ ଜିଆ ରଖାହୋଇଥିବା ପାତ୍ରକୁ ଜୋରରେ ଗୋଇଠାଏ କଷିଦେଲା । ପୋଖରୀ ଭିତରେ ପଡ଼ିଲା ସେଇଟା । ଉପରକୁ ଉଡ଼ିଯାଇ ତୋନ୍ୟା ମୁହଁରେ ପାଣି ମେଞ୍ଚାଟାଏ ଛିଟିକି ପଡ଼ିଲା ।

"ତମକୁ ଟିକେ ଲାଜ ନାହିଁ ସୁଖାର୍କୋ ?" ତୋନ୍ୟା ପାଟି କରିଉଠିଲା ।

ଛିଡ଼ା ହୋଇଗଲା ପାଭେଲ । ସିଏ ଜାଣିଥିଲା ଯେ, ଆଁର୍ତେମ୍ ପେଉଁ ରେଳବାଇ ୟାର୍ଡରେ କାମ କରେ, ସୁଖାର୍କୋ ତା'ର ମୁଖ୍ୟ କର୍ତ୍ତାଙ୍କ ପୁଅ । ଏ ଲେଗ୍ଧ ଫାମ୍ପସା ମୋଟାଟାକୁ ମାରିଲେ, ସେ ଯାଇ ତା' ବାପା ଆଗରେ ବଖାଣିବ, ଆଉ ଆର୍ତେମ୍ ବିପଦରେ ପଡ଼ିବ । ଏକଥା ଭାବି ପାଭେଲ୍ ନିଜକୁ ରୋକିନେଲା, ନହେଲେ ସେଇଠି ସାଙ୍ଗେ ସାଙ୍ଗେ ନିଷ୍ପତ୍ତି ହୋଇ ଯାଇଥାନ୍ତା କଥାଟାର ।

ଆଉ ମୁହୂର୍ତ୍ତକରେ ପାଭେଲ୍ ତାକୁ ମାଡ଼ ଚଢ଼େଇବ ବୋଲି ଜାଣି ସୁଖାର୍କୋ ଆଗକୁ ମାଡ଼ିଯାଇ, ପାଭେଲ୍ ଛାତିରେ ଦି'ହାତ ଦେଇ ପେଲିଦେଲା ଜୋରରେ । ପୋଖରୀ

ଦାଢ଼ଟାରେ ଛିଡ଼ା ହୋଇଥିଲା ପାଭେଲ୍ । ସେ ଭୟଙ୍କର ଭାବରେ ଟଳଟଳ ହୋଇ ପଡ଼ିଯାଇଥାନ୍ତା । ବିକଳରେ ହାତ ଦି'ଟାକୁ ହଲାଇ ହଲାଇ କୌଣସିମତେ ଅଟକିଗଲା ସେଥିରୁ ।

ସୁଖାର୍କୋ ପାଭେଲ୍‌ଠାରୁ ଦୁଇବର୍ଷ ବଡ଼ ଆଉ ଲଫଙ୍ଗା, ବଜାରୀ, ଗଣ୍ଡଗୋଳିଆ ବୋଲି ତା'ର ବେଶ୍ ଖ୍ୟାତି ଥାଏ ।

ଛାତିରେ ବିଧାଟା ବାଜି ପାଭେଲ୍‌କୁ ରଙ୍ଗା ପକେଇଦେଲା । ନାଲି ପଡ଼ିଗଲା ତା'ର ଦେହ ମୁହଁ ।

"ଏଇଆ ତେବେ ଦରକାର ତୋର, ହଉ ସମ୍ଭାଳ ଏଥର", କହି ହାତ ବୁଲାଇ, ସୁଖାର୍କୋ ମୁହଁକୁ ଏକ ମୁଥି କଷି ଦେଲା ପାଭେଲ୍ । ନିଜକୁ ସମ୍ଭାଳି ଉଠିବା ଆଗରୁ ତା' ସୁଲ ଜାମା କଲର୍‌କୁ ଧରିଲା । ପାଭେଲ୍ ଭୁଷିମାରି ତାକୁ ପାଣି ଭିତରକୁ ଘୋଷାରିନେଲା ।

ପୋଖରୀରେ ଆଣ୍ଠୁଏ ପାଣିରେ ସୁଖାର୍କୋର ପାଲିଶ୍‌କରା ଜୋତା, ଇସ୍ତ୍ରୀକରା ପ୍ୟାଣ୍ଟ ଓଦା ହୋଇଗଲା । ପାଭେଲ୍‌ର ଶକ୍ତ ମୁଠା ଭିତରୁ ନିଜକୁ ରକ୍ଷା କରିବା ପାଇଁ ପ୍ରାଣପଣେ ଚେଷ୍ଟା କରୁଥାଏ ସେ । ନିଜ ଉଦ୍ଦେଶ୍ୟ ସଫଳ ହୋଇସାରିବା ପରେ ପାଭେଲ୍ ଡେଇଁପଡ଼ି କୂଳକୁ ଉଠିଆସିଲା । ଉତ୍ତ୍ୟକ୍ତ ସୁଖାର୍କୋ ତା' ପଛରେ ଗୋଡ଼ାଇଆସିଲା ଜୋର୍‌ରେ, ଯେମିତି ତାକୁ ମାରି ଚିକିଟିକି କରିଦେବ ।

ନିଜ ପ୍ରତିଦ୍ୱନ୍ଦ୍ୱୀକୁ ସାମନା କରିବା ପାଇଁ ବୁଲିପଡ଼ିଲା ବେଳକୁ ପାଭେଲ୍‌ର ମନେ ପଡ଼ିଗଲା :

"ଭାରା ରଖିବ ବାଁ ପାଦ ଉପରେ, ଡାହାଣ ଗୋଡ଼କୁ ଦୃଢ଼ ରଖିବ । ଡାହାଣ ଆଣ୍ଠୁ ବଙ୍କେଇଦେବ । ନିଜ ଦେହର ସମସ୍ତ ଭାରା ତମ ମୁଷ୍ଟିରେ ରଖି ଉପରକୁ ଆଘାତ କରିବ — ଚିବୁକରେ ଠିକ୍ ।"

"ଦୁମ୍ !"

ପାଭେଲ୍‌ର ପ୍ରଥମ ଘୁଷିରେ ସୁଖାର୍କୋର ଦାନ୍ତଗୁଡ଼ାକ କଡ଼୍ କଡ଼ ଡାକିଉଠିଲା । ଚେଁ ଚେଁ ଚିତ୍କାର କରି ଉଠିଲା ସେ । ନିଜ ଓଠ ଓ ଜିଭରେ ଦାରୁଣ ଯନ୍ତ୍ରଣା ହେଉଥିଲା, କାରଣ ଦି'ଧାଡ଼ିଯାକ ଦାନ୍ତ ମଝିରେ ଜିଭଟା ଜୋରରେ ଚିପି ହୋଇଯାଇଥିଲା । ନିଜ ହାତ ଦୁଇଟାକୁ ଜୋରରେ ହଲାଇ ଉନ୍ମାଦ ଭାବରେ ନିଜକୁ ରକ୍ଷା କରିବା ପାଇଁ ଚେଷ୍ଟା କଲା ସୁଖାର୍କୋ, ମାତ୍ର ପାଣିରେ ଭୁଷ୍‌କିନା ପଡ଼ିଲା ଯାଇଁ ।

କୂଳ ଉପରେ ହସି ହସି ଲୋଟିଯାଉଥାଏ ତୋନ୍ୟା ।

ତାଳି ମାରିମାରି ସେ ଚିତ୍କାର କରି କହୁଥାଏ, "ସାବାସ୍, ସାବାସ୍ ବଢ଼ିଆ ହୋଇଛି !"

ଲଖିଯାଇଥିବା ବନ୍‌ଶୀ କଣ୍ଟାକୁ ଏତେ ଜୋରରେ ଗୋଟାଏ ଝିଙ୍କା ଦେଲା ପାଭେଲ୍

ଯେ, ତୋରଟା ଛିଣ୍ଡି ଗଲା ଛଡ଼ ମୁହଁରୁ । ସେ କୂଳ ଉପରକୁ ଉଠି, ରାସ୍ତା ଧରିଲା ଏକମୁହାଁ ହୋଇ ।

ଯାଉଁଯାଉଁ ପଛରୁ ଶୁଣିଲା, ଭିକ୍ଟର ତୋନ୍ୟାକୁ କହୁଛି :

"ଇଏ ପାଭେଲ୍ କୋର୍ଚ୍ଚଗିନ୍ । ତା' ଭଳିଆ ଗୁଣ୍ଡାଟାଏ ଆଉ ସଂସାରରେ କେଉଁଠି ନଥିବେ ।"

* * *

ଷ୍ଟେସନ୍‌ରେ ବିକ୍ଷୋଭ ଜମାଟବାନ୍ଧି ଆସୁଥାଏ । ଜନରବ ହେଉଥାଏ ଯେ, ରେଳବାଇ ଶ୍ରମିକମାନେ ସବୁ 'କାମଛାଡ଼' ଧର୍ମଘଟ କରିବେ । ପରବର୍ତ୍ତୀ ବଡ଼ବଡ଼ ଷ୍ଟେସନ୍‌ରେ ଶ୍ରମିକମାନେ କିଛି ଗୋଟାଏ ବଡ଼ ଧରଣର ଆରମ୍ଭ କରିଦେଲେଣି । ଇସ୍ତାହାର ସବୁ ନିଜ ସାଙ୍ଗରେ ବହନ କରି ଯିବାଆସିବା କରୁଛନ୍ତି ବୋଲି ସନ୍ଦେହ କରି, ଦୁଇଜଣ ରେଳଇଞ୍ଜିନ୍ ଡ୍ରାଇଭରଙ୍କୁ ଗିରଫ କରିଥାନ୍ତି ଜର୍ମାନ୍‌ମାନେ । ଶ୍ରମିକମାନଙ୍କ ମଧ୍ୟରୁ ଯେଉଁମାନଙ୍କର ଗାଁଗହଳ ସହିତ ଯୋଗାଯୋଗ ଥାଏ, ତାଙ୍କ ଭିତରେ ଆନ୍ଦୋଳନଟା ଆହୁରି ପ୍ରବଳ ହେଉଥାଏ, କାରଣ ବିତାଡ଼ିତ ଜମିଦାରମାନଙ୍କୁ ସେମାନଙ୍କ ଜମିଦାରିକୁ ଫେରାଇ ଅଣାଯାଇ, ଜମିସବୁ ଦଖଲ ଦିଆଯାଉଥାଏ ।

ହେଟ୍‌ମ୍ୟାନ୍ ପ୍ରହରୀମାନଙ୍କର ଗ୍ରବୁକମାଡ଼ରେ କୃଷକମାନଙ୍କର ପିଠି ଫାଟି ରକ୍ତାକ୍ତ ହୋଇଉଠୁଥାଏ । ସେ ଶାସନ ଇଲକାରେ ଅତି ଦ୍ରୁତଭାବରେ ପାର୍ଟିଜାନ୍ ବା ଗେରିଲା ଆନ୍ଦୋଳନ ଜୋରଦାର ହେଉଥାଏ । ବଲ୍‌ଶେଭିକ୍‌ମାନେ ଡଜନରୁ ଅଧିକ ଗେରିଲା ବାହିନୀ ସଂଗଠିତ କରିସାରିଥାଆନ୍ତି ।

ଏ ଦିନମାନଙ୍କରେ ଝୁଖ୍‌ରାଇକୁ ଦଣ୍ଡେ ବି ଫୁରୁସତ ମିଳୁନଥାଏ । ସହରରେ ରହିଥିବା ସମୟତକ ଭିତରେ ସେ ଅତି ଚତୁରତାର ସହିତ ସଂଗଠନ ଆଗେଇ ନେଇଥାଏ । ଅନେକ ରେଳବିଭାଗୀ ଶ୍ରମିକଙ୍କ ସହିତ ବନ୍ଧୁତା ଓ ଯୋଗାଯୋଗ ରଖିଥାଏ । ତରୁଣମାନଙ୍କର ବହୁ ସଭାସମିତିରେ ଯୋଗ ଦେଉଥାଏ, କରତକଳ ଶ୍ରମିକ ଓ ରେଳବାଇ ୟାର୍ଡ ଶ୍ରମିକମାନଙ୍କର ଏକ ଦୃଢ଼ ଶକ୍ତିଶାଳୀ ଗୋଷ୍ଠୀ ଗଢ଼ିତୋଳିଥାଏ ସେ । ଆର୍ଟେମ୍‌ର ମତିଗତି ଠଉରେଇବା ପାଇଁ ଚେଷ୍ଟା କରି, ତାକୁ ଦିନେ ବଲ୍‌ଶେଭିକ୍ ଦଳ ଏବଂ ତା'ର ସଂଗଠନର କାରଣ ଓ ଆଦର୍ଶ ସମ୍ପର୍କରେ ପଚାରିଥିଲା ଝୁଖ୍‌ରାଇ ।

"ମୁଁ ଏ ପାର୍ଟିଫାର୍ଟି କଥା ବିଶେଷ କିଛି ଜାଣେ ନାହିଁ ଫ୍ୟୋଦୋର୍ । କିନ୍ତୁ ଯଦି ସାହାଯ୍ୟ ଦରକାର ହୁଏ, ତମେ ମୋ ଉପରେ ନିର୍ଭର କରିପାର", ବିଶାଳକାୟ ଆର୍ଟେମ୍ ଜବାବ ଦେଇଥିଲା ।

ଫ୍ୟୋଦୋର୍ ସତରେ ଆଶ୍ୱସ୍ତ ହୋଇଥିଲା । କାରଣ ସେ ଭଲଭାବରେ ବୁଝିଥିଲା ଯେ, ଆର୍ଟେମ୍ ସଚ୍ଚୋଟ ଓ ନିଜ ଜବାବ ସେ ନିଶ୍ଚୟ ରକ୍ଷାକରିବ । ଆଉ ପାର୍ଟି

ବିଷୟରେ ସେ ନିଜେ ସେତେଦୂର ଯାଏଁ ସଚେତନ ହୋଇ ନାହିଁ ଏ ପର୍ଯ୍ୟନ୍ତ । "ସେଥିରେ କିଛି ଯାଏ ଆସେ ନାହିଁ, ବର୍ତ୍ତମାନ ଭଳି ଘଡ଼ିସନ୍ଧି ବେଳେ ସେ ଛାଏଁ ଛାଏଁ ଶିଖିବ", ମନେ ମନେ ଭାବିଲା ଫ୍ୟୋଦୋର୍ ।

ବିଦ୍ୟୁତ୍ କେନ୍ଦ୍ର ଛାଡ଼ି ଫ୍ୟୋଦୋର୍ ରେଳବାଇ ୟାର୍ଡରେ କାମ କରିବାକୁ ଚାଲିଆସିଲା । ସେଠି ତା' କାମ ଚାଲୁରଖିବା ସୁଗମ ହେବ । ବିଦ୍ୟୁତ୍ କେନ୍ଦ୍ରରେ ରହିବା ଫଳରେ ରେଳବାଇ ସହିତ ଯୋଗାଯୋଗ ବିଚ୍ଛିନ୍ନ ହୋଇଯାଉଥିଲା ।

ରେଳରେ ଯାତ୍ରୀ ଚଳାଚଳ କ୍ରମଶଃ ଅତିମାତ୍ରାରେ ବଢ଼ିଯାଉଥାଏ । ହଜାର ହଜାର ଗାଡ଼ି ଲୁଟିମାଲ୍ ଜର୍ମାନୀକୁ ଜାହାଜରେ ଚାଲାଣ କରିଦେବା ପାଇଁ, ୟୁକ୍ରାଇନ୍‌ରୁ ପଠାଉଥାଆନ୍ତି ଜର୍ମାନ୍‌ମାନେ—ଯଅ, ସକା, ଗହମ ଆଉ ଗୋରୁଗାଈ ...।

* * *

ଷ୍ଟେସନ୍‌ର ଟେଲିଗ୍ରାଫ୍ କରିବାବାଲା ପୋନୋମାରେଙ୍କୋକୁ ଦିନେ ଗିରଫ କଲେ ହେଟ୍‌ମ୍ୟାନ୍ ପ୍ରହରୀମାନେ । ତାଙ୍କୁ ଜଗୁଆଳି ଘର ଭିତରକୁ ନେଇ ପଶୁ ଭଳି ନିର୍ମମଭାବରେ ପ୍ରହାର କଲେ । ସେଇ ସମ୍ଭବତଃ ଆର୍ଟେମ୍‌ର ବନ୍ଧୁ ରୋମାନ୍ ସିଦୋରେଙ୍କୋଙ୍କ ନାଁ ସେମାନଙ୍କୁ ବତାଇ ଦେଇଥିଲେ ।

ଦୁଇଜଣ ଜର୍ମାନ୍, ଜଣେ ହେଟ୍‌ମ୍ୟାନ୍ ପ୍ରହରୀ ଓ ଷ୍ଟେସନ୍ ଅଧ୍ୟକ୍ଷଙ୍କର ସହକାରୀ—ଏମାନେ ଆସି କାମ ଚାଲିଥିବା ସମୟରେ ରୋମାନ୍‌କୁ ଖୋଜିଲେ । ସହକାରୀ ଅଧ୍ୟକ୍ଷ ରୋମାନ୍ କାମ କରୁଥିବା ସିଟ୍‌କୁ ସିଧାସଳଖ ଚାଲିଯାଇ, ପଦେ କଥାବି ନକହି ତାଙ୍କର ଘୋଡ଼ାଚାବୁକରେ ତା' ମୁହଁରେ ପ୍ରହାର କଷିଦେଇଗଲେ ।

"ଆ, ଆ, ବେ କୁତୀକା ବଚ୍ଚ କୋଉଠିକାର", କହିଲା ସହକାରୀ ଅଧ୍ୟକ୍ଷ, "ଯାହା ଯାହା ସବୁ କହିଛୁ, ସବୁ କହିଦେଇ ଯା", ଅଶ୍ଳୀଳ ଭାବରେ ହସି ହସି ସେ ରୋମାନ୍‌ର ବାହା ମୂଳକୁ ଧରି ଝିଙ୍କି ଦେଲା ଅତି ଜୋରରେ, "ଆ, ତୋତେ ଶିଖାଇଦେଉଛି, ବୁଲି ବୁଲି କେମିତି ଆନ୍ଦୋଳନ କରିବାକୁ ହୁଏ ସବୁ !"

ତା'ର ଠିକ୍ ପାଖରେ ସଣ୍ଡୁଆସୀ ଧରି କାମ କରୁଥିଲା ଆର୍ଟେମ୍ । ନିଜର ଉହାଟାକୁ ଫୋପାଡ଼ିଦେଇ ସହକାରୀ ସାମରିକ ଅଧ୍ୟକ୍ଷ ସାମନାରେ ଆସି ଛିଡ଼ାହେଲା । ବିଶାଳବପୁ ତା'ର ଉତ୍ତେଜନାରେ ଥରିଯାଉଥାଏ ।

"ଛାଡ଼୍, ଛାଡ଼୍ ତାକୁ, ବେଧୁଆ", ନିଜର ବର୍ଦ୍ଧିଷ୍ଣୁ କ୍ରୋଧକୁ କୌଣସିମତେ ସଙ୍କୁଚିତ କରିବାକୁ ପ୍ରବଳ ଯତ୍ନ କରି ଅତି ରୁକ୍ଷ ସ୍ୱରରେ କହିଲା ଆର୍ଟେମ୍ ।

ସହକାରୀ ସାମରିକ ଅଧ୍ୟକ୍ଷ ପଛକୁ ଘୁଞ୍ଚି ଯାଉଯାଉ ନିଜର ପିସ୍ତଲ୍ ଖୋଳରୁ ପିସ୍ତଲ୍‌ଟା କାଢ଼ିଲା । ଜର୍ମାନ୍‌ମାନଙ୍କ ମଧ୍ୟରୁ ଜଣେ, ଗୋଟାଏ ଗୋଡ଼ ଛୋଟା

ଷ୍ଟେକଟୋର, ନିଜର ଓଜନଦାରିଆ ଚଉଡ଼ା ସଙ୍ଗିନ୍‌ଧାରୀ ବନ୍ଧୁକଟାକୁ କାନ୍ଧରୁ କାଢ଼ି, ଜୋରରେ ଖଟ୍‌କରି ଶବ୍ଦ କରି ବୋଲ୍ଟ ଫିଟାଇଲା ।

"ଛିଡ଼ା ହୋ ସେଇଠି!" ସେ ଗର୍ଜନ କରି ଉଠିଲା, ଆଉ ପାଦେ ବି ଆଗେଇଲେ ଗୁଳି କରିବାକୁ ପ୍ରସ୍ତୁତ ହୋଇ ।

ଦୀର୍ଘକାୟ ଶକ୍ତିଶାଳୀ ମିସ୍ତ୍ରୀ ବାମନ ଭଳି ସୈନିକଟି ଆଗରେ ଅସହାୟ ହୋଇ ଛିଡ଼ା ହୋଇ ରହିଲା । କିଛି କରିପାରିଲା ନାହିଁ ସେ ।

ରୋମାନ୍ ଓ ଆର୍ତେମ୍ ଉଭୟଙ୍କୁ ଗିରଫ କରାହେଲା । ଆର୍ତେମ୍‌କୁ ଘଣ୍ଟାଏ ପରେ ଛାଡ଼ିଦେଲେ । ରୋମାନ୍‌କୁ କିନ୍ତୁ ତଳ ମହଲର ଗୋଟାଏ ଗୋଦାମ ଘରେ ତାଲା ଠୁଙ୍କି ରଖିଲେ ।

ଗିରଫ ହେବାର ମାତ୍ର ଦଶ ମିନିଟ୍ ପରେ, ଜଣେ ହେଲେ ବି ଶ୍ରମିକ କାମ କଲେ ନାହିଁ । ରେଳବାଇ ୟାର୍ଡର ଶ୍ରମିକମାନେ ଷ୍ଟେସନ୍ ପାର୍କରେ ସମବେତ ହେଲେ, ସେମାନଙ୍କ ସହିତ ସେଠାରେ ଯୋଗ ଦେଲେ ଯୋଗାଣ ଘରର ଓ ସୁଇଚ୍ ଘରର ଶ୍ରମିକମାନେ । ଉତ୍ତେଜନାରେ ଫାଟିପଡ଼ୁଥାନ୍ତି ସେମାନେ । ଜଣେ କିଏ ରୋମାନ୍ ଓ ପୋନୋମାରେଙ୍କୋର ଖଲାସ ପାଇଁ ଲିଖିତ ଦାବିପତ୍ର ଚିଠା କରିଦେଲା ।

କ୍ରୋଧ ଓ ଉତ୍ତେଜନା ଆହୁରି ବୃଦ୍ଧି ପାଇଲା, ଯେତେବେଳେ ଦଳେ ପ୍ରହରୀଙ୍କ ସାଙ୍ଗରେ ସହକାରୀ ସାମରିକ ଅଧ୍ୟକ୍ଷ ପିସ୍ତଲ୍ ନଚାଇ ନଚାଇ ପାର୍କ ଭିତରେ ଧସେଇ ପଶିଗଲା ଓ ଚିତ୍କାର କଲା :

"ଯାଅ, ସମସ୍ତେ କାମକୁ ଯାଅ, ନ ହେଲେ ଏଇଠୁ ଏ ଜାଗା ଉପରୁ ତମ ସମସ୍ତଙ୍କୁ ଗୋଟି ଗୋଟି କରି ଗିରଫ କରିବୁ, ଧାଡ଼ିବାନ୍ଧି ଗୋଟା କେତେକୁ କାନ୍ଥ ପାଖରେ ଛିଡ଼ା କରେଇଦେଇ ଗୁଳି ଚଳେଇଦେବୁ ।"

କ୍ରୋଧୋନ୍ମତ୍ତ ଶ୍ରମିକମାନେ ଇଞ୍ଜିନ୍‌ର ଶବ୍ଦଭଳି ତା'ର ଜବାବ ଏଡ଼େ ତୀବ୍ରଭାବରେ ଦେଲେ ଯେ, ସେଇଥିରେ ସେ ଷ୍ଟେସନ୍ ଭିତରେ ଯାଇଁ ଲୁଚିଗଲା । ଇତ୍ୟବସରରେ, ସାମରିକ ଅଧ୍ୟକ୍ଷ ଜର୍ମାନ୍ ସୈନିକବାହିନୀ ଆସିବାକୁ ସହରକୁ ଖବର ପଠାଇଦେଇଥାଏ । ଟ୍ରକ୍ ଟ୍ରକ୍ ହୋଇ ଜର୍ମାନ୍ ସୈନ୍ୟ ଷ୍ଟେସନ୍‌କୁ ପଡ଼ିଥିବା ରାସ୍ତାରେ ଧାଇଁ ଆସୁଥାନ୍ତି ସେତେବେଳକୁ ।

ଶ୍ରମିକମାନେ ଛତ୍ରଭଙ୍ଗ ଦେଇ ଯେଝା ଘରକୁ ଚାଲିଗଲେ । ଜଣେ କେହିହେଲେ ସୁଦ୍ଧା, ଏପରିକି ଷ୍ଟେସନ୍ ମାଷ୍ଟର ମଧ୍ୟ କାମରେ ଯୋଗଦେଲେ ନାହିଁ । ଝୁଖ୍‌ରାଇର କାମର ପରିଣତି ଅନୁଭୂତ ହେଉଥିଲା ଧୀରେ ଧୀରେ । ଷ୍ଟେସନ୍‌ର ଶ୍ରମିକମାନଙ୍କର ଗଣ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା, ଇଏ ହେଲା ପ୍ରଥମ ଥର ପାଇଁ ।

ଜର୍ମାନ୍‌ମାନେ ଗୋଟାଏ ଓଜନଦାର ମେସିନ୍‌ଗନ୍ ଆଣି ପ୍ଲାଟ୍‌ଫର୍ମ ଉପରେ ଥୋଇଲେ । ସତେ ଯେମିତି ସେଇଟା ଏଇ ମୁହୂର୍ତ୍ତରେ ଲକ୍ଷ୍ୟ ଭେଦ କରିବ—ଶିକାରକୁ ଲକ୍ଷ୍ୟ କରି ରହିଛି । ତା' ପାଖକୁ ଲାଗି ଗୋଟାଏ ଜର୍ମାନ୍ ସୈନିକ ବସିରହିଲା, ହାତଟା ତା'ର ଠିକ୍ ଟ୍ରିଗାର ଉପରେ ଥୋଇ ।

ଷ୍ଟେସନ୍‌ଟା ଜନଶୂନ୍ୟ ହେବାକୁ ଲାଗିଲା ।

ରାତିକି ଗିରଫଦାରୀ ଆରମ୍ଭ ହୋଇଗଲା । ଗିରଫ ହେବା ଲୋକଙ୍କ ଭିତରେ ଆର୍ତେମ୍ ବି ଥିଲା । ସେ ଦିନ ରାତିରେ ଘରକୁ ନ ଫେରି ଝୁଖ୍‌ରାଇ ସେଥିରୁ ବର୍ତ୍ତିଗଲା ।

ଗିରଫ ହୋଇଥିବା ସମସ୍ତଙ୍କୁ ଏକାଠି ଗୋଠ କରି ଗୋଟାଏ ମାଲଗୋଦାମ ଭିତରେ ଖୁନ୍ଦି ଦିଆହେଲା ଓ କୁହାଗଲା, ତମେ କାମକୁ ଯାଅ, ନଚେତ୍ ତମମାନଙ୍କର ସାମରିକ ବିଗ୍ଭର କରାହେବ ।

ସେତେବେଳକୁ ପ୍ରକୃତରେ ରେଳବାଇ ଲାଇନ୍‌ସାରା, ସବୁଠାରେ ରେଳବାଇ ଶ୍ରମିକମାନେ ଧର୍ମଘଟ କରିଥାଆନ୍ତି । ଗୋଟାଏ ପୂରାଦିନ ଓ ରାତି ଧରି ଗୋଟାଏ ବି ସୂଦ୍ଧା ଟ୍ରେନ୍ ଯାଇ ନ ଥାଏ । ପ୍ରାୟ ଶହେ କୋଡ଼ିଏ କିଲୋମିଟର ଦୂରରେ ବିରାଟ ଗୋଟାଏ ଗେରିଲା ବାହିନୀ ସହିତ ବିରାଟ ଯୁଦ୍ଧ ହୋଇ ଯାଇଥାଏ । ସେମାନେ ରେଳଲାଇନ୍ ଓ ପୋଲ ସବୁକୁ ଉଡ଼ାଇ ଦେଇଥାଆନ୍ତି ।

ରାତିକି କୌଣସିମତେ ଗୋଟାଏ ଜର୍ମାନୀ ସୈନ୍ୟ ବୁହା ଟ୍ରେନ୍ ଘୋଷାରି ଓଟାରି ହୋଇ ଷ୍ଟେସନ୍‌ରେ ପଶିଲା । କିନ୍ତୁ ଇଞ୍ଜିନ୍‌ଗ୍ଭଳକ, ତା'ର ସହାୟକ ଓ ଫୋରମ୍ୟାନ୍ ତିନିହେଁ, ଯିଏ ଯୁଆଡ଼େ ଗ୍ଭଲିଯିବାରୁ ସେଇଠି ଅଟକି ରହିଲା । ଷ୍ଟେସନ୍‌ରେ ଆହୁରି ଦୁଇଟା ଟ୍ରେନ୍ ଅଟକି ରହିଥାଏ, ଛାଡ଼ିପାରୁ ନ ଥାଏ ।

ମାଲଗୋଦାମଟାର ଓଜନିଆ ଦୁଆରଟା ଖୋଲିଗଲା ଓ ଭିତରକୁ ପଶିଲେ ଷ୍ଟେସନ୍‌ର ସାମରିକ ଅଧ୍ୟକ୍ଷ, ଜଣେ ଜର୍ମାନ୍ ଲେଫଟ୍‌ନାଣ୍ଟ, ତା' ସହକାରୀ ଏବଂ ଆଉ ଦଳେ ଜର୍ମାନ୍ ।

"କୋର୍ଗିନ୍, ପୋଲିଚୋଉସ୍କି, ବ୍ରୁଝାକ୍", ସାମରିକ ଅଧ୍ୟକ୍ଷର ସହକାରୀ ଡାକିଗଲା, "ତମେ ତିନିହେଁ ଗୋଟାଏ ଗାଡ଼ି ତୁରନ୍ତ ଷ୍ଟେସନ୍‌ରୁ ବାହାର କରିବ, ତାକୁ ଚଳାଇବ । ମନାକଲେ, ତମ ତିନିଜଣଙ୍କୁ ସାଙ୍ଗେସାଙ୍ଗେ ଗୁଳିରେ ଉଡ଼ାଇ ଦିଆଯିବ । କ'ଣ କହୁଛ ତମେ ?"

ରାଗରେ ତମତମ ହୋଇ, କୌଣସି ମତେ ରାଜିହେଲେ ତିନିଜଣଯାକ । ସେମାନଙ୍କୁ ଗାର୍ଡମାନଙ୍କ ସହିତ ରେଳ ପାଖକୁ ପଠାଗଲା । ସହକାରୀ ଅଧ୍ୟକ୍ଷ ସେତେବେଳକୁ ଅନ୍ୟ ରେଳ ପାଇଁ ଆଉ ତିନିଜଣ ଇଞ୍ଜିନ୍‌ଗ୍ଭଳକ, ସହକାରୀ ଓ ଫୋରମ୍ୟାନ୍‌ଙ୍କ ନାଁ ପଢ଼ୁଥାନ୍ତି ।

* * *

କ୍ରୋଧରେ ଉନ୍ମତ୍ତ ଇଞ୍ଜିନ୍‌ଟା ଫୁତ୍‌କାରରେ ନିଆଁ ଝୁଲ ଚତୁର୍ଦ୍ଦିଗରେ ବିଛାଇ ଗର୍ଜନ କରି ଉଠିଲା ଘାଉଁ ଘାଉଁ ହୋଇ । ଭାରୀ ଭାରୀ ନିଃଶ୍ୱାସ ଛାଡ଼ି, କ୍ଲାନ୍ତିରେ ଘର୍ଘର ଶବ୍ଦ କରି, ଲାଇନ୍ ଉପରେ ରାତିର ଛାତି ଚିରି, ସମ୍ମୁଖର ଘନୀଭୂତ ଅନ୍ଧାର ଭିତରକୁ ମାଡ଼ି

ଗଲିଲ । ଆର୍ତେମ୍ ନିଆଁ କୁଣ୍ଡରେ କୋଇଲା ପକାଇ, ଦୁଆରଟାକୁ ଜୋର୍‌ରେ ଗୋଟାଏ ଗୋଇଠା ମାରି, ଯନ୍ତ୍ରବାକ୍‌ସ ଉପରେ ଚେପ୍‌ଟା ମୁହାଁ କେଟଲୀରୁ ଚଳଚଳ କରି ପାଣି ପିଇଗଲା । ତା'ପରେ ବୃଦ୍ଧ ଇଞ୍ଜିନ୍‌ଚାଳକ ପୋଲିତୋଭ୍‌ସି ଆଡ଼କୁ ମୁହିଁ ବୁଲାଇଲା ।

"କ'ଣ କହୁଛ ଅଜା ? ଶେଷକୁ କ'ଣ ଆମେ ନେବା ଏଇଟାକୁ ?"

ଓହଳି ପଡ଼ିଥିବା ଭ୍ରୂଲତା ତଳୁ ପୋଲିତୋଭ୍‌ସିର ଆଖି ଦିଇଟା ଉତ୍ତେଜନାରେ ମିଟ୍ ମିଟ୍ କରି ଉଠିଲା ।

"ନବାକୁ ତ ବାଧ୍ୟ, ନ ହେଲେ ପଛଆଡ଼େ ତମର ସଙ୍ଗିନ୍ ରହିଛି ।"

ବାକ୍‌ସଟା ଉପରେ ବସିଥିବା ଜର୍ମାନ୍ ସୈନିକ ଆଡ଼କୁ କଣେଇ ଚାହିଁ ବ୍ରୁଝାକ୍ ପ୍ରସ୍ତାବ ଦେଲା :

"କାହିଁକି ? ସବୁ ଶେଷ କରିଦେଇ ଖସିଗଲେ ?"

"ମୁଁ ବି ସେଇଆ ଭାବୁଛି", ଆର୍ତେମ୍ କହିଲା ବିଡ଼ିବିଡ଼ି ହୋଇ, "ଏ ଶାଗୁଣାଟା ଆମ ପଛରେ ଲାଗି ନ ଥାନ୍ତା କି ?"

"ହୁଁ, ସେଇଆ ଠିକ୍", ବ୍ରୁଝାକ୍ କିଛି ମତାମତ ନଦେଇ ଝରକାରେ ବାହାରକୁ ମୁହିଁ ବଢ଼ାଇ ଦେଖୁଦେଖୁ କହିଲା ।

ପୋଲିତୋଭ୍‌ସି ଆର୍ତେମ୍ ପାଖକୁ ଲାଗିଆସିଲା ।

"ଟ୍ରେନ୍‌ଟାକୁ ଆମେ ଆଉ ଆଗେଇ ନେଇପାରିବା ନାହିଁ, ବୁଝିଲୁ ?" ଫୁସ୍‌ଫୁସ୍ କରି କହିଲା ସେ, "ଆଗରେ ଯୁଦ୍ଧ ଲାଗିଛି । ଆମ ଲୋକେ ରେଳରାସ୍ତା ଉଡ଼ାଇଦେଇଛନ୍ତି, ଆଉ ଆମେ ଏଠି ଶଳା କୁକୁରିଗୁଡ଼ାଙ୍କୁ ବୋହିନେଇ ଯାଉଛୁ, ଆମରି ଲୋକଙ୍କୁ ଗୁଳି କରି ଶୁଆଇଦେବାକୁ ! ବୁଝିଲୁ ପୁଅ, ଜାର୍ ସମୟରେ ବି ଧର୍ମଘଟ ହୋଇଥିଲା ବେଳେ ମୁଁ ଇଞ୍ଜିନ୍ ଚଳାଇ ନାହିଁ, ଆଉ ଏଇନେ ବି ଚଳାଇବି ନାହିଁ । ତା' ମୁଁ କଦାପି କରିବି ନାହିଁ ! ଆମ ନିଜ ଲୋକଙ୍କୁ ମରାଇ ସାରା ଜୀବନ କଳଙ୍କରେ ଭାଗୀ ହୋଇ ରହିବା ! ଅନ୍ୟ ଇଞ୍ଜିନ୍‌ଚାଳକ ଦଳ ପଳେଇଲେ । ନୁହଁ ? ସେମାନେ ତ ତାଙ୍କ ଜୀବନକୁ ବିପନ୍ନ କରିଛନ୍ତି, କିନ୍ତୁ ଗାଡ଼ି ଚଳାଇ ନାହାନ୍ତି । ଆମେ କଦାପି ଟ୍ରେନ୍‌ଟାକୁ ଆଉ ଆଗକୁ ନେବା ନାହିଁ, କ'ଣ ଭାବୁଛୁ ?"

"ତୁମେ ଠିକ୍ କହୁଛ ଅଜା । ତା' ବିଷୟରେ କିନ୍ତୁ କ'ଣ କରିବା କହିଲ ?" ସୈନିକଟା ଆଡ଼କୁ ଆଖିଠାରି କହିଲା ସେ ।

ଇଞ୍ଜିନ୍‌ଚାଳକ ରାଗରେ ଉଳୁଟିଗଲା । ଖଣ୍ଡେ କପଡ଼ା ଉଠେଇ ନେଇ, ନିଜ କପାଳରୁ ବହିଆସୁଥିବା ଝାଳ ପୋଛିଲା ସେ । ତା'ପରେ ରାଗରେ ଲାଲ୍‌ଲାଲ୍ ଡିମାଡ଼ିମା ଆଖି କାଢ଼ି ଚାହିଁଲା, ସତେ ଯେମିତି ତା' ଭିତରେ ଆଉଟୁପାଉଟୁ ହେଉଥିବା ପ୍ରଶ୍ନର ଉତ୍ତରଟା ଆଖି ଭିତରୁ ବାହାରି ଆସିବ । ତା'ପରେ ଉତ୍କଟ ହତାଶାରେ ଗାଳିଦେବାକୁ ଲାଗିଲା ।

ଆର୍ତେମ୍ ଆହୁରି ଥରେ ପାଣି ପିଇଲା । ଦି'ଜଣଯାକ ଏକା କଥା ଭାବୁଥାନ୍ତି । କିନ୍ତୁ ଏ ଭୟଙ୍କର ନୀରବତାକୁ ଭାଙ୍ଗିବାକୁ କାହାରି ସାହସ ଆସୁ ନଥାଏ ।

ଆର୍ତେମ୍‌ର ମନେପଡ଼ିଲା ଝୁଖ୍‌ରାଇର ପ୍ରଶ୍ନ, "ଆଚ୍ଛା ଭାଇ, ବଲ୍‌ଶେଭିକ୍ ଦଳ ବିଷୟରେ ଆଉ କମ୍ୟୁନିଷ୍ଟ ଆଦର୍ଶ ବିଷୟରେ ତମର ଧାରଣା କ'ଣ ?"

ଆଉ ତା'ର ନିଜର ଉତ୍ତର, "ମୁଁ ସବୁବେଳେ ପ୍ରସ୍ତୁତ ଅଛି ସାହାଯ୍ୟ କରିବାକୁ । ତମେ ମୋ ଉପରେ ନିର୍ଭର କରିପାର ... ।"

"ଯା' ହଉ, ବେଶ୍ ସାହାଯ୍ୟ କରୁଛି ମୁଁ", ମନେ ମନେ ଭାବିଲା ସେ, "ନିଜ ଲୋକଙ୍କୁ ମାରିବା ପାଇଁ ଗୋଟାଏ ସାମରିକ ଅଭିଯାନକୁ ବୋହିନେଉଛି ... ।"

ଯନ୍ତ୍ରବାକ୍ସ ଉପରେ ପୋଲିତୋଭ୍‌ସି ଆର୍ତେମ୍ ପାଖକୁ ନଇଁପଡ଼ି କର୍କଶ ଗଳାରେ କହିଲା, "ସେ ଲୋକଟାକୁ ଶେଷ କରିଦେବାକୁ ହେବ, ବୁଝିଲୁ ?"

ଆର୍ତେମ୍ ଚମକିପଡ଼ିଲା । ନିଜର ଥର ଥର ଦାନ୍ତ ଚିପିଚିପି ପୋଲିତୋଭ୍‌ସି ପୁଣି କହିଲା :

"ତା' ଛଡ଼ା ଆଉ କୌଣସି ଉପାୟ ନାହିଁ । ଠିକ୍ ମୁଣ୍ଡ ଉପରେ ପାହାରେ ଦେଇ, ତାକୁ ଶେଷ କରିଦେଇ ନିଆଁକୁଣ୍ଡ ଭିତରକୁ ପକେଇଦେବାକୁ ହେବ । ତା'ପରେ ଘୋଡ଼ଣୀଟା ଘୁରିଦେଇ କିଳିଣୀ ଦେଇଦେବାକୁ ହେବ, ଏବଂ ଧୂଆଁ ବନ୍ଦ କରିଦେଇ ଦଉଡ଼ିବାକୁ ହେବ, ବୁଝିଲୁ ?"

କାନ୍ଧ ଉପରୁ ଭାରୀ ବୋଝଟାଏ ଓହ୍ଲାଇପଡ଼ିଲା ଭଳି ଲାଗିଲା ଆର୍ତେମ୍‌କୁ, କହିଲା :

"ଠିକ୍ କଥା !"

ବ୍ରୁଝାକ୍ ଆଡ଼କୁ ନଇଁପଡ଼ି ତାଙ୍କର ସିଦ୍ଧାନ୍ତ ଜଣାଇଦେଲା ତାକୁ ।

ବ୍ରୁଝାକ୍ ହଠାତ୍ କୌଣସି ଉତ୍ତର ଦେଲା ନାହିଁ । ସେମାନେ ଗୋଟାଏ ଭୟଙ୍କର ଝୁଙ୍କି ନେଉଛନ୍ତି । ପ୍ରତ୍ୟେକଙ୍କର ପରିବାର ଅଛି । ପୋଷ୍ୟ ଅଛନ୍ତି । ପୋଲିତୋଭ୍‌ସିର ସବୁଠାରୁ ବଡ଼ । ନ'ଟା ତୁଣ୍ଡରେ ଆହାର ଦେବାକୁ ପଡ଼େ ତାକୁ । କିନ୍ତୁ ତିନିହେଁ ଜାଣନ୍ତି ଯେ, ରେଳଟାକୁ କୌଣସି ମତେ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ପାରିବେ ନାହିଁ ।

"ଠିକ୍ ଅଛି, ମୁଁ ତମ ସାଙ୍ଗରେ ଏକହେଲେ ତାକୁ କିଏ ..." ସେ ବାକ୍ୟଟାକୁ ସମ୍ପୂର୍ଣ୍ଣ କଲା ନାହିଁ, କଥାର ଅର୍ଥ ଆର୍ତେମ୍ ଭଲଭାବେ ବୁଝିପାରୁଥିଲା ।

ଆର୍ତେମ୍ ପୋଲିତୋଭ୍‌ସି ଆଡ଼କୁ ବୁଲିପଡ଼ିଲା । ପୋଲିତୋଭ୍‌ସି ଘୋଡ଼ଣୀଟାରେ କ'ଣ ଦେଖୁଥାଏ । ଆର୍ତେମ୍, ବ୍ରୁଝାକ୍ ରାଜିଥିବା କଥା ମୁଣ୍ଡ ଟୁଙ୍ଗାରି ଜଣାଇଦେଲା । ତା'ପରେ, ଏପର୍ଯ୍ୟନ୍ତ ସ୍ଥିର ନ ହୋଇଥିବା ଓ ଘାଣ୍ଟିଚକଟି ହେଉଥିବା ପ୍ରଶ୍ନ ପଚାରିବା ପାଇଁ ବୁଢ଼ା ପାଖକୁ ଲାଗିଆସିଲା :

"କିନ୍ତୁ କେମିତି ?"

ପୋଲିତୋଭ୍‌ସି ଆର୍ତେମ୍ ଆଡ଼କୁ ଚାହିଁଲା ।

"ତୁ ଆରମ୍ଭ କର, ସବୁଠୁଁ ଜୋରଦାର ତୁ, ଶାବଳରେ ଆଗେ ଛଟୁ କରିଦେବୁ ତା' ମୁଣ୍ଡକୁ । ସବୁ ଖତମ ହୋଇଯିବ", ବୁଢ଼ା ଭୟଙ୍କର ଉତ୍ତ୍ୟକ୍ତ ହୋଇଉଠୁଥିଲା ।

ଆର୍ତେମ୍ ଭୟରେ ପଛଘୁଞ୍ଚା ଦେଲା ।

"ନାଁ ନାଁ, ମୋ ଦେଇ ତା' ହୋଇ ପାରିବ ନାହିଁ । ଭଲ କରି ଭାବିଲ ଦେଖି, ତା'ର ବା ଏଥିରେ ଦୋଷ କ'ଣ ? ସିଏ ବି ଆମରି ଭଳି ସଙ୍ଗିନ୍ ମୁନ ଦେଖାହୋଇ ଏ କାମରେ ଲାଗିବାକୁ ବାଧ୍ୟ ହୋଇଛି ।"

"ତା'ର କିଛି ଦୋଷ ନାହିଁ । ତୁ ପୁଣି କହୁଛୁ ଏ କଥା ? ଆମେ କ'ଣ ଏଇ କାମ କରିବା ପାଇଁ ଗଢ଼ା ହୋଇଥିଲୁ ? କିନ୍ତୁ ଭୁଲିଯାଆନା, ଗୋଟାଏ ସାମରିକ ଅଭିଯାନକୁ ଆମେ ବହିନେଉଛେ—ଏଇ ଯେଉଁ ନିରୀହ ନିର୍ଦ୍ଦୋଷଗୁଡ଼ାକ ଆମ ଦଳର ବିପ୍ଳବୀଙ୍କୁ ଗୁଳି କରି ମାରିବେ । ତା'ହେଲେ କ'ଣ ସେଇ ବିପ୍ଳବୀଙ୍କର ଦୋଷ ଏସବୁ ? ନାଇଁରେ ପୁଅ, ଦେହରେ ସିନା ତୋର ଗୋଟାଏ ବଳଦର ବଳ, ହେଲେ ବୁଦ୍ଧି ତା' ତୁଳନାରେ କିଛି ନାହିଁ ।"

ପୋଲିତୋଭ୍ସିର ଆଖି ଦୁଇଟା ଝଲସିଉଠିଲା ।

"ଆଚ୍ଛା ହଉ ହଉ", ଆର୍ତେମ୍‌ର ସ୍ୱର ଥରି ଉଠିଲା । ସେ ଶାବଳଟା ଧରିଲା ହାତରେ । ପୋଲିତୋଭ୍ସି କିନ୍ତୁ ଫୁସ୍ ଫୁସ୍ କରି କହିଲା ତାକୁ :

"ନାଇଁ ମୁଁ କହୁଛି, ତା' ହେଲେ ଆହୁରି ନିଶ୍ଚିନ୍ତ ହେବି, ତୁ ଗଇଁତିଟାକୁ ଧରି କୋଇଲା ଗଦା ଉପରକୁ ଚଢ଼ିଯାଇ, କୋଇଲା ପକଉଥା' । ଦରକାର ପଡ଼ିଲେ, ସେଇ ଗଇଁତିରେ ପାହାରେ ଦେବୁ, ମୁଁ ପେଖନା କରୁଛି କୋଇଲା କାଢ଼ୁଛି ବୋଲି ।"

ଏସବୁ ଶୁଣିଲା ବ୍ରୁଝାକ୍ । ମୁଣ୍ଡ ଟୁଙ୍ଗାରିଲା ସମ୍ମତିରେ, "ବୁଢ଼ା ଯାହା କହୁଛି, ଠିକ୍ କହୁଛି", କହିଲା ସେ ଏବଂ ଘୋଡ଼ଣୀ ପାଖରେ ଯାଇ ନିଜ ଜାଗା ଆଦରିନେଲା ।

ଜର୍ମାନ୍ ସୈନିକଟି ଲାଇଫିତା ଥିବା ସାମରିକ ଟୋପିକୁ ଆଖି ଉପରକୁ ନୁଆଇଁଆଣି, ନିଆଁକୁଣ୍ଡର ଦାଢ଼ରେ ବସି, ଦି'ଗୋଡ଼ ଭିତରେ ରାଇଫଲଟା ଧରିରଖି ଚୁରଟ୍ ଟାଣୁଥିଲା । ମଝିରେ ମଝିରେ ଇଞ୍ଜିନ୍‌ଚାଳକ ଦଳଙ୍କ ଆଡ଼କୁ କଣେଇ କଣେଇ ଚାହିଁଦେଉଥାଏ ସେମାନେ କାମ କରୁଛନ୍ତି କି ନାହିଁ ବୋଲି ।

ଆର୍ତେମ୍ ଯେତେବେଳେ କୋଇଲା ପକାଇବା ଜାଗା ଉପରକୁ ଚଢ଼ିଗଲା, ସନ୍ତ୍ରୀ ତା'ଆଡ଼କୁ ବିଶେଷ ଦୃଷ୍ଟି ଦେଲା ନାହିଁ । ପୋଲିତୋଭ୍ସି ଛଳନା କରି ବଡ଼ ବଡ଼ ମୁଣ୍ଡା କୋଇଲା ନିଆଁ କୁଣ୍ଡରେ ପକାଇବାକୁ, ନିଆଁକୁଣ୍ଡ କଡ଼ରୁ କୋଇଲା ନେବାକୁ ଜର୍ମାନ୍ ସୈନିକକୁ ଟିକେ ଘୁଞ୍ଚି ବସିବାକୁ ଠାରରେ କହିଲା । ବିନା ଦ୍ୱିଧାରେ ସେ ଇଞ୍ଜିନ୍‌ର ଦ୍ୱାର ଆଡ଼କୁ ଘୁଞ୍ଚିଯାଇ ଛିଡ଼ାହେଲା ।

ହଠାତ୍ ଶାବଳର ଗୋଟାଏ ପାହାରରେ ଜର୍ମାନ୍ ସୈନିକଟାର ଖପୁରିଟା ଚୂନ୍‌ଭୂତ ହୋଇଗଲା । ଆର୍ତେମ୍ ଓ ବ୍ରୁଝାକ୍ ସେଥିରେ ଚମକିପଡ଼ି ଡେଇଁଉଠିଲେ, ସତେ ଯେମିତି ତାଙ୍କ ଦେହରେ କିଏ ଖଣ୍ଡେ ତାତିଲା ଲୁହା ମାଡ଼ିଦେଲା ହଠାତ୍ ।

ଝୁଲିପଡ଼ି, ସୈନିକଟାର ଦେହ ଗାଡ଼ି ଦୁଆରଆଡ଼କୁ ଗଡ଼ିଗଲା । ମାଟିଆ ସାମରିକ ଟୋପି ଭିତରୁ ପିଚ୍ ପିଚ୍ ହୋଇ ରକ୍ତ ବୋହିବାକୁ ଲାଗିଲା । ରାଇଫଲଟା ନିଆଁକୁଣ୍ଡ ମୁହଁର ଲୁହା ଅଂଶଟାରେ ଯାଇ ବାଜିଲା ଝଣତ୍କାର କରି ।

"ଏଇଥର ହୋଇଛି", ଫୁସ୍‌ଫୁସ୍ କରି ପୋଲିତୋଭ୍‌ସି କହିଲା ଶାବଳଟା ପକାଉ ପକାଉ । "ଆଉ ପଛକୁ ଫେରିବାର କଥା ନୁହଁ ।" ତା'ର ସାରା ମୁହଁଟା ବିବର୍ଣ୍ଣ ହୋଇ ବଙ୍କେଇ ହୋଇଯାଉଥିଲା କେମିତି, କଥାଟା କହୁକହୁ ।

ତା'ର କଣ୍ଠରୁଦ୍ଧ ହୋଇଆସିଲା ଏ ଭୟଙ୍କର, ବିଷାଦକର ନୀରବତାକୁ ଭାଙ୍ଗିବା ପାଇଁ । ଚିତ୍କାର କରି ଉଠିଲା ସେ । ଚିତ୍କାରଟା ତିନିଜଣଙ୍କ ପାଖକୁ ଫେରିଆସିଲା ପୁଣି ।

"ଯାଅ, ଶୀଘ୍ର ଶୀଘ୍ର ଘୋଡ଼ଣୀଟା ଫିଟାଅ", ସେ ପାଟିକରି କହିଲା ।

ଦଶଟି ମାତ୍ର ମିନିଟ୍ ଲାଗିଲା ସବୁକାମ ସାରିବାକୁ । ନିୟନ୍ତ୍ରଣରୁ ବାହାରିଯାଇ, ରେଳଗାଡ଼ିଟାର ଗତି ଧୀରେ ଧୀରେ ମନ୍ଥର ହେବାକୁ ଲାଗିଲା ।

ଚତୁର୍ଦ୍ଦିଗରେ ନୀରନ୍ଧ୍ର ଅନ୍ଧକାର ଭିତରେ, ଜମାଟବନ୍ଧା ଅନ୍ଧାରର ପ୍ରତିମୂର୍ତ୍ତି ଭଳି ଦିଶୁଥିଲେ ରାସ୍ତା କଡ଼ର ଗଛଗୁଡ଼ାକ । ଚଳମାନ ରେଳ ଇଞ୍ଜିନ୍‌ର ଆଲୋକର ପରିଧି ଭିତରକୁ ସେ ମୂର୍ତ୍ତିଗୁଡ଼ାକ କ୍ଷଣକେ ଲମ୍ଫ ଦେଇ, ପରମୁହୂର୍ତ୍ତରେ ପୁଣି ପଶ୍ଚାଦ୍‌ଭାଗର କଳା ଅନ୍ଧାର ଭିତରକୁ ଝାମ୍ପମାରି ଲୁଚିଯାଉଥାନ୍ତି । ସେ ଜମାଟବନ୍ଧା ଅନ୍ଧାରର ଦୁର୍ଭେଦ୍ୟ କାଳିମାକୁ ଭେଦ କରିବାକୁ ଇଞ୍ଜିନ୍‌ର ଆଲୋକ ବୃଥା ଚେଷ୍ଟା କରି ବ୍ୟର୍ଥ ହେଉଥାଏ ଡଜନେ ମିଟର ଆଗକୁ ମାତ୍ର କ୍ଷଣକ ପାଇଁ ଆଲୋକିତ କରି ଲୁଚିଯାଉଥାଏ ।

ଧୀରେ ଧୀରେ ତା'ର ସଞ୍ଚିତ ଶକ୍ତି ନିଃଶେଷ ହୋଇ ଆସିଲା ଭଳି ରେଳ ଇଞ୍ଜିନ୍‌ର ନିଃଶ୍ୱାସ କ୍ରମଶଃ ରୁଦ୍ଧ ହୋଇଆସି ଗତି ମନ୍ଥର ହୋଇଆସିଲା ।

"ଡେଇଁ ପଡ଼ ପୁଅ, ଡେଇଁ ପଡ଼", ପଛରୁ ଆର୍ତେମ୍ ଶୁଣିଲା ପୋଲିତୋଭ୍‌ସିର ସ୍ୱର ଓ ସେ ଧରିଥିବା ବାଡ଼ା ଦୁଇଟାକୁ ଛାଡ଼ିଦେଲା । ରେଳର ଗତିବେଗ ଛିଞ୍ଚାଡ଼ିଦେଲା ତା'ର ବଳିଷ୍ଠ ଦେହଟାକୁ, ତାକୁ ଗଡ଼ାଇନେଲା ପଛକୁ, ଚଳୁ ଉପରକୁ ଲହଡ଼ି ଭଳି – ତା'ର ପାଦତଳ ଭୂଇଁ ସ୍ପର୍ଶ କରିବା ପର୍ଯ୍ୟନ୍ତ । ପାହୁଣ୍ଡେ ଦି'ପାହୁଣ୍ଡ ଆଗକୁ ଦୌଡ଼ିଯାଇ ଗଡ଼ିପଡ଼ିଲା ସେ ।

ଆଉ ଦିଓଟି ଛାଇ ମଧ୍ୟ ବାହାରିଲେ ଏକା ସାଙ୍ଗରେ ଇଞ୍ଜିନ୍‌ର ଉଭୟ ପଟୁ ।

* * *

ବୃଝାକ୍ ପରିବାରରେ ଗୋଟାଏ ବିଷାଦର କାଳିମା ବୋଳି ହୋଇଯାଇଥିଲା । ସେର୍ଗେଇର ମା ଆଣ୍ଟୋନିନା ଭାସିଲିୟେଭ୍‌ନା ଏଇ ଚାରିଦିନ ଭିତରେ କଣ୍ଟା ହୋଇ ଯାଇଥିଲା, କାନ୍ଦି କାନ୍ଦି ଝୁରି ଝୁରି । ସ୍ୱାମୀଙ୍କର କୌଣସି ଖବର ନାହିଁ । ଏତିକି ଯାହା କେବଳ ଜାଣିଥିଲା ଯେ, ଜର୍ମାନ୍‌ମାନେ ତାଙ୍କୁ ବାଧ୍ୟ କରିଥିଲେ, କୋର୍ଚ୍ଚାଗିନ୍ ଓ ପୋଲିତୋଭ୍‌ସିଙ୍କ ସାଙ୍ଗରେ ମିଶି ଗୋଟାଏ ଇଞ୍ଜିନ୍ ଚଳାଇ ନେଇଯିବା ପାଇଁ । ଗତକାଲି ତିନିଜଣ ହେଟ୍‌ମ୍ୟାନ୍ ପ୍ରହରୀ ଆସି ଅତି କର୍କଶ, ଅଶ୍ଳୀଳ ଭାବରେ ପଚାରୁଥିଲେ ତା'କଥା ।

ସେମାନଙ୍କ କଥାରୁ ଯାହା ଅନୁମାନ କଲା ସେ, କ'ଣ ଗୋଟାଏ ଘଟିଛି ଏବଂ ବିବ୍ରତ ହୋଇଉଠି, ସେମାନେ ଗୁଲିଯିବା ସାଙ୍ଗେ ସାଙ୍ଗେ ମୁଣ୍ଡରେ ରୁମାଲଟା ଗୁଡ଼େଇଦେଇ ସେ ବାହାରିଲା ମାରିୟା ୟାକୋଭ୍‌ଲେଭ୍‌ନାଙ୍କ ଘରକୁ, ସେଠୁ ଯଦି କିଛି ସମ୍ବାଦ ମିଳିପାରେ ।

ବଡ଼ ଝିଅ ଭାଲ୍ୟା ରୋଷେଇଘର ସଳାଡ଼ୁ ସଳାଡ଼ୁ ତାକୁ ବାହାରିଯିବାର ଦେଖିଥିଲା ।

"କୁଆଡ଼େ ଯାଉଛୁ କି ମା ?" ଝିଅ ପଗ୍ଚରିଲା ।

"କୋଶ୍‌ଗିନ୍‌ଙ୍କ ଘରକୁ", ଲୁହ ଛଳଛଳ ଆଖିରେ ଝିଅକୁ ଅନେଇ କହିଲା ଆନ୍ତୋନିନା ଭାସିଲିୟେଭ୍‌ନା, "ସେମାନେ ଅବା ଯଦି ତୋ ବାପା ଖବର କିଛି ଜାଣିଥିବେ । ସେର୍ଗେଇ ଫେରିଲେ ତାକୁ କହିବୁ ଷ୍ଟେସନ୍‌କୁ ଯାଇ ପୋଲିତୋଭ୍‌ସିଙ୍କୁ ଦେଖା କରିବ ।"

ମା' ବେକ ଗ୍ଚରିପଟେ ହାତ ଛନ୍ଦି ଆଣିଲା ଭାଲ୍ୟା । "ତୁ କାହିଁକି ବ୍ୟସ୍ତ ହେଉଛୁ ମା ?" ଦୁଆର ଆଡ଼କୁ ଯାଉ ଯାଉ କହିଲା ଭାଲ୍ୟା ।

* * *

ସବୁଦିନ ଭଳି ଆନ୍ତୋନିନା ଭାସିଲିୟେଭ୍‌ନାଙ୍କୁ ଆଦରରେ ପାଛୋଟିନେଲେ ମାରିୟା ୟାକୋଭ୍‌ଲେଭ୍‌ନା । ଉଭୟେ ଭାବିଥିଲେ, ଅପର ଜଣକ କିଛି ଜାଣିଥିବ ଅବା କହିବ । ସେମାନେ କଥାବାର୍ତ୍ତା କରିବାକୁ ଆରମ୍ଭ କଲା ପରେ ଦୁହିଁଙ୍କର ଆଶା ଉଭେଇଗଲା ।

ରାତିରେ କୋଶ୍‌ଗିନ୍‌ଙ୍କ ଘର ବି ଖାନ୍‌ତଲାସ ହୋଇଛି । ସୈନିକମାନେ ଆର୍ତେମ୍‌କୁ ଖୋଜୁଥିଲେ । ପୁଅ ଫେରିଲା ମାତ୍ରେ କମାଣ୍ଡରଙ୍କୁ ଖବର ଦେବା ପାଇଁ ଗଲାବେଳକୁ କହିଗଲେ ମାରିୟା ୟାକୋଭ୍‌ଲେଭ୍‌ନାଙ୍କୁ ।

ସୈନ୍ୟଗୁଡ଼ାକର ଆସିବା ଦେଖି, ପାଭେଲ୍‌ର ମା' ଏକାବେଳେକେ ଡରିଯାଇଥାଏ । ତାକୁ କିଛି ବୁଦ୍ଧି ବାଟ ଦିଶୁ ନ ଥାଏ । ଘରେ ଏକୁଟିଆ ଥାଏ ସେ । କାରଣ, ପାଭେଲ୍ ବିଦ୍ୟୁତ୍ କେନ୍ଦ୍ରରେ ରାତିବେଳା କାମ କରେ ।

ସକାଳୁ କାମରୁ ଘରକୁ ଫେରିଆସି ମାଆଠୁ ଯେତେବେଳେ ଏ ଖବରସବୁ ଶୁଣିଲା ଯେ, ଖାନ୍‌ତଲାସ ହୋଇଛି, ଭାରୀ ବିଚଳିତ ହୋଇପଡ଼ିଲା ପାଭେଲ୍ । ତା ଭାଇର ନିରାପତ୍ତାର କଥା ଭାବି ସେ ଆଶଙ୍କା କରୁଥିଲା । ଦି'ଭାଇଙ୍କ ଚରିତ୍ରରେ ଯେତେ ପ୍ରଭେଦ ଥିଲେ ସୁଦ୍ଧା ଓ ଆର୍ତେମ୍ ଟିକେ ଟାଣୁଆ ଥିଲେ ହେଁ ଦୁହିଁଙ୍କର ହୃଦୟର ସଂପର୍କ ଥିଲା ଅତି ନିବିଡ଼ । ଦୁହେଁ ପରସ୍ପର ପ୍ରତି ଭୟଙ୍କର ଅନୁରକ୍ତ ଥିଲେ । ଏ ସ୍ନେହ ଉପରଠାଉରିଆ କି ଲୋକଦେଖାଣିଆ ନୁହେଁ । ମାତ୍ର ପାଭେଲ୍ ଜାଣିଥିଲା ଯେ, ତା'ଭାଇ ପାଇଁ ସବୁକିଛି ତ୍ୟାଗ ସେ ସ୍ୱୀକାର କରିପାରିବ ।

ବିଶ୍ରାମ କଥା ଭୁଲିଯାଇ ପାଭେଲ୍ ଷ୍ଟେସନ୍‌କୁ ଦଉଡ଼ିଲା ଝୁଖ୍‌ରାଇକୁ ଖୋଜିବାକୁ । ତାକୁ ପାଇଲା ନାହିଁ । ଆଉ ଯେଉଁ ଶ୍ରମିକମାନଙ୍କୁ ଜାଣିଥିଲା, ସେମାନେ ବି ଗାଏବ ହୋଇଥିବା ଲୋକମାନଙ୍କର କିଛି ଖବର ଦେଇପାରିଲେ ନାହିଁ । ପୋଲିତୋଭ୍‌ସିଙ୍କ ଘରେ ମଧ୍ୟ କେହି କିଛି ଜାଣି ନ ଥିଲେ ଏ ବିଷୟରେ । ତାଙ୍କ ପୁଅ ବୋରିସ୍‌କୁ ଅଗଣାରେ ଭେଟିଲା ପାଭେଲ୍ । ତା'ଠୁ ଶୁଣିଲା, ତାଙ୍କ ଘରେ ବି ସେ ରାତିରେ ଖାନ୍‌ତଲାସ ହୋଇଛି । ସୈନିକମାନେ ତା' ବାପାଙ୍କୁ ଖୋଜୁଥିଲେ ।

ପାଭେଲ୍ ମା ପାଖକୁ ଫେରିଆସିଲା, କିଛି ଖୋଜଖବର ନ ପାଇ । କ୍ଲାନ୍ତଶ୍ରାନ୍ତ ହୋଇ ସେ ନିଜକୁ ବିଛଣାରେ ଲେଟାଇଦେଲା, ଆଉ ସଙ୍ଗେ ସଙ୍ଗେ ଶୋଇପଡ଼ିଲା ଗଭୀର ନିଦରେ ।

* * *

କବାଟ କେହି ବାଡ଼େଇବାରୁ ଭାଲ୍ୟା କବାଟ ପାଖକୁ ଆସିଲା ।

"କିଏ ? କିଏ ଡାକୁଛ ?" ଦୁଆରର ଛିଟିକିଣି ଖୋଲୁଖୋଲୁ ପଗ୍ଚରିଲା ସେ ।

ଅଡ଼ୁଆଚଡ଼ୁଆ ମୁଣ୍ଡର ବାଳ । ଗାଜର ଭଳି ଲୋହିତ ମୁଣ୍ଡଟା । କ୍ଲିମ୍‌କା ମାର୍‌ଚେଙ୍କୋ ଖୋଲା ଦୁଆର ମୁହଁରେ ଛିଡ଼ା ହୋଇଥିଲା । ନିଶ୍ଚୟ ଦୌଡ଼ି ଦୌଡ଼ି ଆସୁଥିଲା, କାରଣ ସିଏ ଧଇଁସଇଁ ହୋଇଯାଇଥିଲା ଓ ଶ୍ରାନ୍ତିରେ ତା'ର ମୁହଁ ଲାଲ ପଡ଼ିଯାଇଥିଲା ।

"ତୋ ମା' ଘରେ ଅଛନ୍ତି ?"

"ନାଁ, ବାହାରକୁ ଯାଇଛି ।"

"କୋଉଠିକି ?"

"କୋର୍ଚ୍‌ଗିନ୍‌ଙ୍କ ଘରକୁ ବୋଲି ତ କହିଗଲା ।" କ୍ଲିମ୍‌କା ଦୌଡ଼ିଯିବାକୁ ବାହାରିଲା ବେଳକୁ ତା' ଜାମାଟାକୁ ଧରିପକେଇଲା ଭାଲ୍ୟା ।

ଦ୍ୱିଧାରେ ତାକୁ ଅନାଇଲା କ୍ଲିମ୍‌କା ।

"ତାଙ୍କ ସାଙ୍ଗରେ ମୋର ଦେଖାକରିବା ଜରୁରୀ ଦରକାର", କହିଲା ସେ ।

"କ'ଣ ହୋଇଛି ? କହ !" ଭାଲ୍ୟା ତାକୁ ଯିବାକୁ ଛାଡ଼ି ନ ଦେଇ ପଗ୍ଚରିଲା, "ହେ ନାଲିମୁଣ୍ଡିଆ ଭାଲୁ, ମୋତେ କାହିଁକି ଭଲା ସନ୍ଦେହରେ ରଖୁଛୁ, କହ ମୋତେ !"

ଝୁଖ୍‌ରାଇ ତାକୁ ଅତି ସତର୍କ କରିଦେଇ କହିଥିଲା, ଚିଠିଟା କେବଳ ଆନ୍ତୋନିନା ଭାସିଲିୟେଭ୍‌ନାଙ୍କ ଛଡ଼ା ଆଉ କାହା ହାତରେ ନ ଦେବା ପାଇଁ । ଝୁଖ୍‌ରାଇର ସମସ୍ତ ସତର୍କବାରଣ ଭୁଲିଗଲା କ୍ଲିମ୍‌କା । ପକେଟ୍‌ରୁ ଲେଗ୍‌କୋଗ୍ଚ ମାଟିଆ କାଗଜଖଣ୍ଡେ ବାହାର କରି ତା' ହାତକୁ ବଢ଼େଇଦେଲା । ସେର୍ଗେଇର ସୁନ୍ଦରୀ, ଲୋଭନୀୟ କେଶସମ୍ପନ୍ନ ଭଉଣୀକୁ ସେ ଜମା ମନା କରିପାରିଲା ନାହିଁ । ସତ କହିଲେ, ତା'ପାଇଁ କ୍ଲିମ୍‌କା

ହୃଦୟର କେଉଁ କୋଣରେ ଟିକିଏ ଦରଦ ଥିଲା । କିନ୍ତୁ ଏତେ ଲାଜକୁଳା ଯେ, ସେ ଏ କଥାଟାକୁ ପ୍ରକାଶ କରିପାରେନା । ଝିଅଟି ତରତର ହୋଇ ଆଖି ବୁଲେଇ ଆଣିଲା କାଗଜଖଣ୍ଡକ ଉପରେ ।

"ପ୍ରିୟ ତୋନ୍ୟା ! ବ୍ୟସ୍ତ ହେବ ନାହିଁ । ଖବରସବୁ ଭଲ । ସେମାନେ ନିରାପଦରେ, କୁଶଳରେ ଅଛନ୍ତି । ଶୀଘ୍ର ଆଉ ଅଧିକ ଖବର ପାଇବ । ଅନ୍ୟମାନେ ସମସ୍ତେ ଜାଣନ୍ତୁ ଯେ, ସବୁ ଖବର ଠିକ୍ ଅଛି ଏବଂ ସେମାନେ ବ୍ୟସ୍ତ ହେବାର କିଛି କାରଣ ନାହିଁ । ଚିଠିଟା ଚିରିଦେବ ।

ଜାଖାର୍ ।"

ଭାଲ୍ୟା କୁଣ୍ଢାଇ ପକାଇଲା କିମ୍କାକୁ ।

"ଆରେ, କୁନି ଭାଲୁ, ତୁ ଯାକୁ କୋଉଠୁ ପାଇଲୁ ? କିଏ ତୋତେ ଦେଲା ଯାକୁ ?"

କିମ୍କାକୁ ସେ ଏତେ ଜୋରରେ ହଲେଇଦେଲା ଯେ, ତା'ର ମତିଭ୍ରମ ଘଟିଗଲା । କିଛି ଠିକ୍ କରିପାରିଲା ନାହିଁ ସେ ଏବଂ ତା'ର ଦ୍ୱିତୀୟ ଭୁଲଟି କରିବସିଲା ନିଜର ଅଜାଣତରେ ।

"ଷ୍ଟେସନ୍ ଆରପାରିରେ, ମୋତେ ଝୁଖ୍‌ରାଇ ଦେଲା ଏଖଣିକ ।"

ତା'ପରେ ତା'ର ହଠାତ୍ ମନେ ପଡ଼ିଲା ଯେ, ଏକଥା କହିଦେବା ତା'ର ଉଚିତ ହୋଇ ନାହିଁ, ତେଣୁ କହିଲା :

"କିନ୍ତୁ ଏଇଟାକୁ ତୋ ମା' ଛଡ଼ା ଆଉ କାହାକୁ ଦେବାକୁ ମନା କରିଛି ସେ ।"

"ଠିକ୍ ଅଛି । ମୁଁ ଏକଥା ଆଉ କାହାକୁ କହିବି ନାହିଁ । ଏବେ ଛୋଟ ଭାଲୁଟିଏ ଭଳି ଇସରପସର ହୋଇ ପାରେଇ୍ ଘରକୁ ଧାଇଁଯା, ସେଇଠି ମା'କୁ ପାଇବୁ", କହି ଥିରିକିନା କିମ୍କାକୁ ପଛରୁ ପେଲିଦେଲା ।

ମୁହୂର୍ତ୍ତକ ଭିତରେ କିମ୍କାର ଲାଲ ମୁଣ୍ଡଟି ବଗିଚ୍ଚ ଫାଟକ ବାହାରେ ଲୁଚିଗଲା ।

ରେଳବାଇର ତିନିଜଣଯାକ ଲୋକଙ୍କ ଭିତରୁ ଜଣେହେଲେ କେହି ଘରକୁ ଫେରିଲେ ନାହିଁ । ସନ୍ତବୁଡ଼କୁ ଝୁଖ୍‌ରାଇ କୋର୍ଗିନ୍‌ଙ୍କ ଘରକୁ ଆସି ରେଳରେ ଯାହା ଯାହା ସବୁ ଘଟିଥିଲା, ମାରିଯା ଯାକୋଭ୍‌ଲେଭ୍‌ନାଙ୍କ ଆଗରେ କହିଲା । ପାରୁପର୍ଯ୍ୟନ୍ତ ଚେଷ୍ଟା କଲା, ଭୀତତ୍ରସ୍ତା ମା' ମନକୁ ଶାନ୍ତ କରାଇବା ପାଇଁ ଏବଂ ତାଙ୍କ ମନରେ ପ୍ରତ୍ୟୟ ଆଣିଦେଲା ଯେ, ତିନିହେଁଯାକ ବୁଢ଼ାକୁ୍ ମଉସାଙ୍କ ସାଙ୍ଗରେ ନିରାପଦରେ ଅଛନ୍ତି ଗୋଟାଏ ଦୂର ଗାଁରେ, ତାଙ୍କ ଘରକୁ ଆଉ ଏବେ ସେମାନେ ଫେରିପାରିବେ ନାହିଁ । ହେଲେ ଜର୍ମାନ୍‌ମାନେ ମହାସଙ୍କଟରେ ପଡ଼ିଲେଣି ଏବଂ ପରିସ୍ଥିତି ଯେକୌଣସି ମୁହୂର୍ତ୍ତରେ ବଦଳି ଯାଇପାରେ ।

ତିନିଜଣଯାକ ଅଦୃଶ୍ୟ ହୋଇଯାଇଥିବାରୁ ସେମାନଙ୍କର ପରିବାର ଆଗ ଅପେକ୍ଷା ଅଧିକ ନିକଟତର ହୋଇଗଲେ ପରସ୍ପରର । ସେମାନଙ୍କ ପାଖରୁ ଯେଉଁ ଚିଠିଗୁଡ଼ିକ ଆସେ ଅକାଳେ ସକାଳେ, ସମସ୍ତେ କୋଟିନିଧି ପାଇଲା ଭଳି ତାକୁ ଆନନ୍ଦରେ ପଢ଼ନ୍ତି । ସେମାନଙ୍କ ଅନୁପସ୍ଥିତିରେ ଘର କିନ୍ତୁ ଫାଙ୍କାଫାଙ୍କା, ନିଛାଟିଆ ଲାଗୁଥିଲା କେମିତି ।

ଦିନେ ଝୁଖ୍‌ରାଇ ପୋଲିତୋଭ୍‌ସିଙ୍କ ସ୍ତ୍ରୀଙ୍କୁ ଦେଖାକରିବାକୁ, ସତେ ଯେମିତି ସେ ବାଟରେ ଯାଉଁ ଯାଉଁ ପଶି ଆସିଛି । ଆସିଲାବେଳେ ତାଙ୍କୁ କିଛି ଅର୍ଥ ଦେଇଆସିଲା ସେ ।

"ଘରଖର୍ଚ୍ଚ ଚଳାଇବାକୁ ତମ ସ୍ୱାମୀ ଏତକ ପଠାଇଛନ୍ତି", କହିଲା ସେ, "ଦେଖ ଯେମିତି ଏକଥା କାହାରି ଆଗରେ ନକୁହ ।"

କୃତଜ୍ଞତାରେ ଅଧୀରା ହୋଇ ବୁଢ଼ୀ ତା' ହାତକୁ ମୁଠାଇ ଧରିଲା ।

"ତୁମକୁ ଅଶେଷ ଧନ୍ୟବାଦ ବାପ, ଯା'ହଉ ଆମର ଭାରୀ ଦରକାର ଥିଲା ଏ ଅସମୟରେ, ପିଲାଙ୍କ ମୁହଁରେ ଦିଇଟା ଅଧାର ଦେବାକୁ ବି କିଛି ନ ଥିଲା ।"

ବୁଲ୍‌ଗାକୋଭ୍ ଦେଇଯାଇଥିବା ପାଣ୍ଠିରୁ ଅର୍ଥ ଆସୁଥିଲା ।

"ଆଚ୍ଛା ଆଚ୍ଛା ଦେଖେଁ ଆଉ କ'ଣ ହେଉଛି", ମନକୁମନ କହି ଝୁଖ୍‌ରାଇ ଷ୍ଟେସନ୍ ବାଟ ଧରିଲା । "ଗୁଳିଗୋଳାର ଧମକରେ ଏ ଧର୍ମଘଟ ଭାଙ୍ଗିଯାଇ ସୁଦ୍ଧା, ଶ୍ରମିକମାନେ ତାଙ୍କ କାମରେ ଯୋଗଦେଲେ ସୁଦ୍ଧା ଯେଉଁ ନିଆଁ ଜଳିଲାଣି, ଆଉ ତାହା ଲିଭିବ ନାହିଁ, ଏ ନିଆଁ ଲିଭିବାର ନୁହେଁ । ଆଉ ସେ ତିନିଜଣ ... ଯଥାର୍ଥରେ ଶକ୍ତିଶାଳୀ । ପ୍ରକୃତ ସର୍ବହରା ଏମାନେ ।"

* * *

ଭୋରୋବ୍ୟୋଭା ବାଲ୍‌କା ଗାଁ ମୁଣ୍ଡର ଛୋଟ କମ୍ମାର ଶାଳଟିଏ ଗାଁ ଦାଣ୍ଡକୁ ମୁହଁ କରିଛି । ତା'ର ଧୂଆଁବୋଳା କଳା ଅଳନ୍ଧୁଲଗା ଦୁଆର । ପୋଲିତୋଭ୍‌ସି ଜଳନ୍ତା ଶାଳଟା ଆଡ଼କୁ ମୁହଁକରି ଛିଡ଼ା ହୋଇଥିଲେ । ନିଆଁ ଧାସରେ ଆଖିପତା କୁଞ୍ଚିତ ହୋଇଆସିଛି, ଲମ୍ବାବେଣ୍ଟର ସଣ୍ଡୁଆସୀଟାରେ ଓଲଟାଉଥିଲେ ଖଣ୍ଡେ ପାଚିଲା ଲାଲ ଟହଟହ ଲୁହାକୁ ।

ସାମନାରେ କଡ଼ିରୁ ଝୁଲୁଥିବା ଭାଟିଟାକୁ ଚଳାଉଥିଲା ଆର୍ଟେମ୍ ।

"କାମିକା ଲୋକ ହୋଇଥିଲେ, ଦକ୍ଷ ହୋଇଥିଲେ ଆଜିକାଲି ଦିନରେ ଗାଁ ଗହଳିରେ କେବେ ଅସୁବିଧାରେ ପଡ଼ିବ ନାହିଁ କେହି—ଯାହାକୁ ଯେତେ କାମ ଦରକାର ମିଳିବ", ବୁଢ଼ା ଇଞ୍ଜିନ୍‌ଗ୍ୱଲକ, ଦାଢ଼ୀ ଗହଳରୁ ତା'ର ଖୁସି ପ୍ରକଟ କରି କହିଲା, "ସପ୍ତାହେ କି ଦି' ସପ୍ତାହ ଏମିତି କରିଗଲେ, ଆମେ ଘରକୁ ଅଟା, କିଛି ମାଂସ ପଠାଇପାରିବା, ଆମ ଲୋକଙ୍କ ପାଇଁ, ବୁଝିଲୁ ପୁଅ ? ଚାଷୀମାନେ କମାରକୁ ଭାରୀ ମାନନ୍ତି । ଦେଖିବୁ, ଆମେ ପରା ପୁଞ୍ଜିପତିଙ୍କ ଭଳି ଖାଇପିଇ ମଉଜରେ ଚଳିବା । ଢାଖାର୍‌ର ହାବଭାବ ଆମଠୁ ଟିକେ ଅଲଗା । ଗ୍ରଷୀଙ୍କ ସାଙ୍ଗରେ ତା'ର ଭାରୀ ଭାବ । ଆଉ ତା'ର ସେ ମଉସାଟା ଜରିଆରେ ତା'ର ଚେର ଏକାବେଳେକେ ଭୂଇଁରେ ଲାଗିଛି । ତାକୁ ବି ଏଥିପାଇଁ ନିନ୍ଦିବି ନାହିଁ ... ହେଲେ କହିଲୁ, ତୋ ମୋ କଥା ଆର୍ଟେମ୍ ଆମର ନାଁ ଅଛି ହଳ ନାଁ ଅଛି ମଇ । ଆମର ଅଛି ଟାଣୁଆ ପିଠିଟାଏ, ଆଉ ଗୋଟାଏ ଲେଖାଁ

ବଲୁଆ ବାହା । ଯାହାକୁ କହନ୍ତି ସର୍ବହରା ଏକାବେଳକେ ! ହାଃ ହାଃ, ବୁଢ଼ା ଢାଖାର୍‌ର କିନ୍ତୁ ଦି' ନାହାରେ ଗୋଡ଼, ଦି' ଆଡ଼େ ଭାଗ ହୋଇଛି । ସେ ସେପଟେ ରେଲଇଞ୍ଜିନ୍, ଏପଟେ ଗାଁରେ–ଦି'ଠେଇଁ କାମ ।"

ଲାଲ ଟହଟହ ଲୁହାଟାକୁ ସଣ୍ଡୁଆସୀରେ ଘୁଞ୍ଚାଇ ସେ ଆଗ ଅପେକ୍ଷା ଆହୁରି ଗମ୍ଭୀର ହୋଇ କହିଲା ଗୁରୁତ୍ୱ ଦେଇ ।

"ଆମ କଥା ବିଗ୍ଭରିଲେ, ଅବସ୍ଥାଟା ଭଲ ନୁହଁ, ବୁଝିଲୁ ବାପ ? ଏ ଜର୍ମାନ୍‌ଗୁଡ଼ାକ ଯଦି ଶୀଘ୍ର ଶେଷ ନହୁଅନ୍ତି ନାଁ, ଆମକୁ ଯେକାତେରିନୋସ୍ଲାଭ୍‌ଲ କି ରୋଷ୍ଟୋଭ୍‌କୁ ଖସିଯିବାକୁ ହବ, ନ ହେଲେ କୋଉଦିନ ଆମେ ଜାଣିବା ଆଗରୁ ଫଶିଯିବା, ନିଜକୁ ଦେଖିବା ଝୁଲୁଛୁ, ମାଟି ଆଉ ଆକାଶ ମଝିରେ ।"

"ଯାହା କହିଲ, ଠିକ୍ କଥା !", ଆର୍ତେମ୍ ଗୁଣୁଗୁଣୁ ହୋଇ କହିଲା ।

"ସିଆଡ଼େ, ଘରେ ସମସ୍ତେ କେମିତି କ'ଣ କରୁଛନ୍ତି, ଜାଣିବାକୁ ଭାରୀ ଇଚ୍ଛା ହେଲାଣି । ଜର୍ମାନ୍‌ମାନେ ତାଙ୍କୁ କ'ଣ ଛାଡ଼ିଦେଇଥିବେ ? ମୋର ତ କାହିଁକି ବିଶ୍ୱାସ ହେଉ ନାହିଁ ।"

"ଯାହା କହିଲ ମଉସା, ଭାରୀ ମୁସିଲ ଅବସ୍ଥା । ଘରକୁ ଫେରିବା କଥା, ଆମକୁ ଏକାବେଳେକେ ଭୁଲିଯିବାକୁ ହେବ ।"

ଭାଟି ଭିତରୁ ଦାଉଦାଉ ହୋଇ ତାତିଥିବା ନୀଳ ଲୁହାଟାକୁ ଟାଣିଆଣିଲା ଇଞ୍ଜିନ୍‌ଗ୍ଭଳକ, ଦକ୍ଷ କୌଶଳର ସହିତ ନେଇ ତାକୁ ଥୋଇଲା ନେହି ଉପରେ ।

"ଏଥର ୟା'ଉପରେ ପାହାର ପକା ପୁଅ !"

ଆର୍ତେମ୍ ପ୍ରକାଣ୍ଡ ହାତୁଡ଼ିଟାକୁ ମୁଣ୍ଡ ଉପରକୁ ଟେକି, ପାହାର ପରେ ପାହାର ପକାଇବାକୁ ଲାଗିଲା । ଲାଲ୍‌ଲାଲ୍ ନିଆଁଝୁଲର ଝରଣା ଗ୍ଭରିଆଡ଼େ ବିଞ୍ଚିହୋଇଗଲା । କମାରଶାଳର ସବୁଠାରୁ ଅନ୍ଧାରିଆ କୋଣ ବି ମୁହୂର୍ତ୍ତକ ପାଇଁ ସେଇ ଉଜ୍ଜ୍ୱଳ ଝୁଲିଙ୍ଗର ଆଲୋକରେ ଆଲୋକିତ ହୋଇଗଲା ।

ତାତିଲା ଲୁହାଟା ପିଟାଖାଉଥିବା ଅବସ୍ଥାରେ ପୋଲିତୋଭ୍‌ସି ତାକୁ ଏପଟ ସେପଟ ଓଲଟାଉଥାଏ ସଣ୍ଡୁଆସୀରେ ଧରି । ଟାଣ ପାହାରରେ ଲୁହାଖଣ୍ଡକ ଅତି ବାଧ୍ୟ ଭଳି ଓସାରିଆ ହେବାକୁ ଲାଗିଲା, ସତେ ଯେମିତି ମହମ ମେଣ୍ଡାଏ ।

କମାରଶାଳ ଖୋଲା ଦୁଆରବାଟେ ଅନ୍ଧକାର ରାତ୍ରିର ଉତପ୍ତ ଦୀର୍ଘଶ୍ୱାସ ପଶିଆସୁଥାଏ ।

* * *

ଚଳଆଡ଼କୁ ବିରାଟ ହ୍ରଦ । କଳା କିଟିକିଟି ପାଣି, ଗ୍ଭରିଆଡ଼କୁ ବିସ୍ତୃତ ଭାବେ ବ୍ୟାପିଛି । ହ୍ରଦ ଗ୍ଭରିକଡ଼େ ଘେରି ରହିଛନ୍ତି ପାଇନ୍ ଗଛଗୁଡ଼ାକ, ପବନରେ ମୃଦୁମନ୍ଥର ଭାବରେ ମୁଣ୍ଡ ହଲାଉଛନ୍ତି ।

"ସତେ ଯେମିତି ଏମାନଙ୍କର ଜୀବନ ଅଛି", ଟୋନ୍ୟା ଭାବୁଥିଲା, ସେଇ ପାଇନ୍ ଗଛଗୁଡ଼ାକ ଆଡ଼େ ଚାହିଁଚାହିଁ । ହ୍ରଦଟିର କଙ୍କରମୟ କୂଳରେ, ଗୋଟାଏ ଗଡ଼ାଣିଆ ଜାଗାରେ ଘାସର ଗାଲିଚ୍ଛ ଉପରେ ନିଜକୁ ଲେଟାଇ ଦେଇଥିଲା ଟୋନ୍ୟା । ସେ ଶୋଇଥିବା ଗଡ଼ାଣିଆ ଜାଗାଟିର ଅନେକ ଉପରେ ସେ ଗହ୍ୱର ସୀମାନ୍ତରୁ ଆରମ୍ଭ ହୋଇଛି ଜଙ୍ଗଲ ଏବଂ ତା'ର ଠିକ୍ ପାଦଦେଶରେ ପଥର ଚଟାଣର ଶେଷରେ ହ୍ରଦ । ହ୍ରଦର ଉପରେ ଜାକିଜୁକି ହୋଇ ଠିଆ ହୋଇଥିବା ପାହାଡ଼ର ନାସିଗୁଡ଼ିକର କଳା ଛାଇ, ହ୍ରଦ ଉପରେ ପ୍ରତିଫଳିତ ହୋଇ ହ୍ରଦର କଳା ପାଣି ହୋଇଉଠୁଛି ଆହୁରି କଳା, ଆହୁରି ଗଭୀର ।

ଷ୍ଟେସନ୍‌ଠାରୁ ଅନତିଦୂରରେ ଥିବା ପଥରଖଣି, ଟୋନ୍ୟାର ଅତି ପ୍ରିୟ ସ୍ଥଳୀ । ପରିତ୍ୟକ୍ତ ପଥରଖଣିଗୁଡ଼ାକରୁ ଝରଣା ବହିଆସି ଏବେ ସେଠି ତିନୋଟି ହ୍ରଦ ସୃଷ୍ଟି ହୋଇଯାଇଛି । କୂଳ ଯେଉଁ ପାଣି ସହିତ ମିଶିଯାଇଛି, ସେଇ ମୁହାଣରୁ ପାଣି ଚଚ୍‌ଚଚ୍ ଶବ୍ଦରେ ଚକିତ ହୋଇ ମୁଣ୍ଡ ଟେକି ଚାହିଁଲା ଟୋନ୍ୟା । ତା' ଆଗରେ ଥିବା ତାଳପତ୍ର ଆଡ଼େଇ ମୁହଁ ଗଳେଇ ସେ ଚାହିଁଲା ଶବ୍ଦ ଆସୁଥିବା ଦିଗକୁ : ଖରାସିଝା ନରମ ତମ୍ବାଳିଆ ଦେହଟାଏ କୂଳରୁ ପହଁରି ଯାଉଥିଲା ଭିତରକୁ । ଜୋରରେ ଜୋରରେ ହାତ ଚଳାଇ ପହଁରୁଥିବା ବ୍ୟକ୍ତିର ତମ୍ବାଟିଆ ପିଠି, କଳା ମୁଣ୍ଡ ଟୋନ୍ୟା ଆଖିରେ ପଡ଼ିଲା । ଜଳହସ୍ତୀ ଭଳି ପାଣି କାଟି କାଟି ଚଞ୍ଚଳ ଗତିରେ ଆଗେଇ ଯାଉଥିଲା ସେ । ହାତ ଚଳାଇ ଓଲଟି ଯାଉଥାଏ, ବୁଡ଼ମାରୁଥାଏ, ପାଣି ଭିତରକୁ ପୁଣି ଉଠିଆସୁଥାଏ । ତା'ପରେ ଚିତିପହଁରା ଦେଇ ଭାସିଭାସି ଯାଉଥାଏ ଉଜ୍ଜ୍ୱଳ ଚିକ୍‌ଚିକିଆ ଖରାତେଜ ଭିତରେ । ଦେହ ଟିକେ ବଙ୍କେଇ ଦେଇଥାଏ । ହାତ ପ୍ରସାରିତ କରିଥାଏ ତା' ଆଡ଼କୁ । ଗଛର ଶାଖାଟାକୁ ଛାଡ଼ିଦେଲା ଟୋନ୍ୟା । ନିଜ ସ୍ଥାନକୁ ଫେରିଗଲା ସେଇଟା । "ଏମିତି ଲୁଚି ଲୁଚି ଦେଖିବା ଶୋଭନୀୟ ନୁହେଁ", ଛାଁକୁ ଛାଁ ମୁରୁକି ହସିଲା ସେ ଓ ନିଜର ବହି ଭିତରେ ବୁଡ଼ିଗଲା ।

ଲେଭିନ୍‌ସ୍କି ତାକୁ ଦେଇଥିବା ବହିରେ ଏପରି ନିମଗ୍ନ ହୋଇଯାଇଥିଲା ଯେ, କିଏ ଜଣେ ପାଇନ୍ ବଣ ଓ ଗହ୍ୱର ମଝିରେ ଥାଇ ପରସ୍ପରକୁ ବିଚ୍ଛିନ୍ନ କରୁଥିବା କଳାମୁଗୁନି ପଥର ଚଟାଣ ଉପରେ ଚଢ଼ି ଚଢ଼ି ଆସୁଥିବାର ଲକ୍ଷ୍ୟ କରିପାରିଲା ନାହିଁ ସେ । ହଠାତ୍ ଆଗନ୍ତୁକର ଅସାବଧାନତା ବଶତଃ ଗୋଟାଏ ବାଲିଗରଡ଼ା ଗଡ଼ିଗଡ଼ି ଆସି ତା' ବହି ଉପରେ ପଡ଼ିବାରୁ ସେ ବୁଲିପଡ଼ି ଚାହିଁ ଦେଖିଲା, ତା' ଆଗରେ ଛିଡ଼ା ହୋଇଛି ପାଭେଲ୍ କୋର୍ଚାଗିନ୍ । ପାଭେଲ୍ ମଧ୍ୟ ଏପରି ଅପ୍ରତ୍ୟାଶିତ ଭାବରେ ହାବୁଡ଼ିଯାଇ, ଅପ୍ରତିଭ ହୋଇଯାଇ ଫେରିବାକୁ ବସିଲା ।

ତା'ର ଓଦାସରସର ମୁଣ୍ଡକୁ ଦେଖି ଟୋନ୍ୟା ଭାବିଲା, "ଯାକୁଇ ନିଶ୍ଚୟ ମୁଁ ପାଣିରେ ପହଁରୁଥିବାର ଦେଖିଥିଲି ।"

"ତମେ କ'ଣ ଡରିଗଲକି ? ତମେ ଏଠି ଅଛ ବୋଲି ମୁଁ ଜାଣି ନ ଥିଲି", ଆବୁଡ଼ାଖାବୁଡ଼ା ପଥୁରିଆ ଧାରଟାରେ ହାତ ରଖି ପାଭେଲ୍ ପଚାରିଲା । ଟୋନ୍ୟାକୁ ଚିହ୍ନି ସାରିଥିଲା ସେ ।

"ନାଁ ନାଁ ଆଦୌ ନୁହେଁ, ମୋର କୌଣସି କାମରେ ତମେ କିଛି ବାଧା ଦେଇନ, ତମେ ବରଂ ରହୁନ – କିଛି ସମୟ ଗପସପ କରିବା, ତମକୁ ଯଦି ଅବଶ୍ୟ ଭଲ ଲଗୁଥାଏ ।"

ବିସ୍ମୟରେ ତୋନ୍ୟାକୁ ଗ୍ୱହିଁଲ ପାଭେଲ୍ ।

"କ'ଣ ଗପସପ କରିବା ଆମେ ? କେଉଁ ବିଷୟରେ ?"

ତୋନ୍ୟା ହସିଲ ।

"ତମେ ଏଇଠି ବସିପଡ଼ୁନ କାହିଁକି ? ଏଇ ଯେମିତି ଧର ... ତମ ନାଁ କ'ଣ ?" ପଥର ଖଣ୍ଡିଏ ଦେଖାଇ କହିଲ ତୋନ୍ୟା ।

"ପାଭ୍‌କା କୋର୍ଚ୍‌ଗିନ୍ ।"

"ମୋ ନାଁ ତୋନ୍ୟା । ତା'ହେଲେ ଆମେ ପରସ୍ପରର ପରିଚିତ ହୋଇଗଲେ ।"

ଅପ୍ରତିଭ ହୋଇ ନିଜର ଟୋପିଟାକୁ ଏପଟସେପଟ ମୋଡ଼ାମୋଡ଼ି କଲ ପାଭେଲ୍ ।

ନୀରବତା ଭଙ୍ଗକରି ତୋନ୍ୟା ପଗ୍ୱରିଲ :

"ତମକୁ ତା' ହେଲେ ପାଭ୍‌କା ଡାକନ୍ତି ? ନାଁ, ପାଭ୍‌କା କାହିଁକି ଡାକନ୍ତି ? ଭଲ ଶୁଭୁନି ଏ ନାଁଟା, ପାଭେଲ୍ ଡାକିଲେ ତ ଭଲ ହୁଅନ୍ତା, ନାଁ ? ମୁଁ ତା'ହେଲେ ତମକୁ ପାଭେଲ୍ ବୋଲି ଡାକିବି, ବୁଝିଲ ? ଆଚ୍ଛା, ତମେ କ'ଣ ଏଠିକି ସଦାବେଳେ ଆସ ?" 'ପହଁରିବାକୁ' ବୋଲି ସେ କହିବାକୁ ଗ୍ୱହୁଁଥିଲ, ମାତ୍ର ତାକୁ ପହଁରାବେଳେ ଦେଖିଛି ବୋଲି ସ୍ୱୀକାର କରିବାକୁ ପ୍ରସ୍ତୁତ ନ ଥିଲ ସେ । ତେଣୁ କହିଲ, 'ବୁଲବୁଲି କରିବାକୁ' ।

"ନାଁ ସଦାବେଳେ ନୁହେଁ, ଯେତେବେଳେ ଟିକିଏ ଅବସର ପାଏ ଗ୍ୱଲିଆସେ", ପାଭେଲ୍ ଉତ୍ତର ଦେଲ ।

"ତମେ ତା' ହେଲେ କୋଉଠି ଗୋଟାଏ କାମ କର ନାଁ ?" ତୋନ୍ୟା ପୁନର୍ବାର ପ୍ରଶ୍ନ କଲ ତାକୁ ।

"ବିଜୁଳି କେନ୍ଦ୍ରରେ କୋଇଲ ଯୋଗାଣିଆ ଭାବରେ ।"

"ଆଚ୍ଛା, ମୋତେ କହିଲ ଦେଖି, ତମେ ଏମିତି ଚମତ୍କାର ମୁଷ୍ଟିଯୁଦ୍ଧ କେଉଁଠୁ ଶିଖିଲ ?"

"ମୋ ଲଢ଼େଇ ଶିକ୍ଷାରେ ତମର ଯାଏ ଆସେ କ'ଣ ?" ନିଜ ଅଲକ୍ଷରେ ଚିଡ଼ିଉଠିଲ ପାଭେଲ୍ ।

ତା'ର ପ୍ରଶ୍ନରେ ପାଭେଲ୍ ବିରକ୍ତ ଥିବାର ଦେଖି, ତରତର ହୋଇ ତୋନ୍ୟା କହିଲ :

"ଦେଖ କୋର୍ଚ୍‌ଗିନ୍, ତମେ ରାଗ ନାଇ ମଁ । ମୁଁ ଖାଲି ଏମିତି ଜାଣିବାକୁ ପଗ୍ୱରୁଥିଲି ନାଁ । ଓଃ କି ଚମତ୍କାର ମୁଥି ଗୋଟାଏ ଗୋଟାଏ ବସାଉଥିଲ ତମେ ! ଆଃ, ଏତେ ନିର୍ଦ୍ଦୟ ନାଁ ତମେ ?" ଛାତିଫଟା ହସରେ ଫାଟିପଡ଼ିଲ ସେ ।

"ତା' ପାଇଁ ଭାରୀ ଦୁଃଖ ଲଗୁଛି, ନାହିଁ ?" ପାଭେଲ୍ ପଗ୍ୱରିଲ ।

"ମୋଟେ ନୁହଁ, ମୁଁ ବରଂ ଖୁସି ଯେ, ସୁଖାକୋ ଉଚିତ ଶିକ୍ଷା ପାଇଛି । ମୋତେ ତ ସେଦିନ ଭାରୀ ଖୁସି ଲାଗିଲା । ମୁଁ ଶୁଣିଛି ଯେ, ତମେ କୁଆଡ଼େ ସଦାବେଳେ ଏମିତି ମରାମରି କର ।"

"କିଏ କହିଲା ?" ପାଭେଲ୍ କାନଡେରି ପଚାରିଲା ।

"କାହିଁକି ? ଭିକ୍‌ଟର ଲେଷ୍ଟିନ୍‌ସ୍କି ତ ଡକେଇ ବକେଇ କହୁଛି ଯେ, ତମେ ଏକାବେଳେକେ ପେସାଦାର ମାରଧର୍ କଲାବାଲା ।"

ପାଭେଲ୍ ଲାଲ ପଡ଼ିଗଲା ।

"ଭିକ୍‌ଟରଟା ବଦ୍ମାଶ୍, ମାଇଚିଆଟାଏ । ତା' ଭାଗ୍ୟ ଭଲ, ତାକୁ ସେଦିନ ହୋଇ ନାହିଁ ଦିଇଟା । ମୋ ବିଷୟରେ ସିଏ ଯାହା ସେଦିନ କହିଲା, ମୁଁ ସବୁ ଶୁଣିଛି, କିନ୍ତୁ ଅଯଥାରେ ହାତ ଦେବି ନାହିଁ ବୋଲି ଛାଡ଼ିଦେଲି ତାକୁ ।"

"ଏମିତି କୁହ ନାହିଁ ପାଭେଲ୍ ! ଏଗୁଡ଼ାକ ଭଲକଥା ନୁହଁ", ତାକୁ ବାଧାଦେଇ ତୋନ୍ୟା କହିଲା ।

ପାଭେଲ୍‌ର ଲୋମ ଟାଙ୍କୁରି ଉଠିଲା ।

"ଏ ମେଁଚଡ଼ୀଟା ସାଙ୍ଗରେ କାହିଁକି କଥାବାର୍ତ୍ତା ଆରମ୍ଭ କଲିଭଲା? ଏବେ ମୋତେ ଆଦେଶ ଦେଲାଣି ଆସି । ପହିଲେ କହିଲା, ପାଭ୍‌କା ଡାକ ତାକୁ ଭଲ ଲାଗୁ ନାହିଁ, ଏବେ ମୋ କଥାରେ ଭଲମନ୍ଦ ବାରିଲାଣି", ମନକୁ ମନ ଭାବିଲା ପାଭେଲ୍ ।

"ଲେଷ୍ଟିନ୍‌ସ୍କି ବିରୁଦ୍ଧରେ ତମର କ'ଣ ଅଛି ?" ତୋନ୍ୟା ପଚାରିଲା ।

"ସେଇଟା ମାଇଗୁଲିଆ, ନାକକାନ୍ଦୁରା ... ଏଯାଏ ମା' କୋଳ ଛାଡ଼ି ନାହିଁ ଯେମିତି । ଏମିତି ଲୋକ ଦେଖିଲେ, ମୋ ହାତ କୁଣ୍ଡେଇ ହୁଏ । ଖାଲି ସଦାବେଳେ ତା'ର ଇଚ୍ଛା ତମକୁ ସେ ମାଡ଼ିମକଚି ଆଗେଇଯିବ ... କେବଳ ଧନୀ ବୋଲି । ମୁଁ କିନ୍ତୁ ତା' ଧନକୁ ଖାତିର କରେ ନାଁ । ମୋତେ ଖାଲି ସେ ଥରେ ଛୁଉଁ ନାଁ, ତା' ମଜା ଛଡ଼େଇଦେବି । ତାକୁ ଦେବି ପାନେ ସେଇଦିନ ସେମିତି ଲୋକଙ୍କୁ ଖାଲି ମୁହଁରେ ମୁଥି ଦରକାର", ଉତ୍ତ୍ୟକ୍ତ ହୋଇ ପାଭେଲ୍ କହିଚାଲିଲା ।

ଲେଷ୍ଟିନ୍‌ସ୍କିର କଥା ଉଠେଇ ଥିବାରୁ ତୋନ୍ୟା ପଶ୍ଚାତାପ କଲା ମନେ ମନେ । ସେ ଜାଣିଲା ଯେ, ଚହଟଚିକ୍‌କଣ ସ୍କୁଲପିଲା ଲେଷ୍ଟିନ୍‌ସ୍କି ଉପରେ ପାଭେଲ୍‌ର ବହୁତ ପୁରୁଣା ରାଗ ଅଭିମାନ ଲୁଚେଇବାର ଅଛି । କଥାବାର୍ତ୍ତାର ମୋଡ଼ ଘୁରେଇବାର ଅଭିପ୍ରାୟରେ ସେ ପାଭେଲ୍‌କୁ ତା'ର ପରିବାର ଓ ତା'ର କାମ ବିଷୟରେ ପଚାରିବାକୁ ଆରମ୍ଭ କଲା ।

ପାଭେଲ୍ ଝିଅଟିର ସବୁ ପ୍ରଶ୍ନର ଉତ୍ତର ବିସ୍ତୃତ ଭାବରେ ଦେଇ ଚାଲିଲା, କିଛି ନ ବିଚାରି । ଭୁଲିଗଲା ଯେ, ତା'ର ଏବେ ଯିବା ଦରକାର ଓ ସେ ଯିବାକୁ ଚାହୁଁଥିଲା କିଛି ସମୟ ଆଗରୁ ।

"ସ୍କୁଲପଢ଼ା କାହିଁକି ତମେ ଶେଷ କଲ ନାହିଁ ?" ତୋନ୍ୟା ପଚାରିଲା ।

"ମୋତେ ତଡ଼ିଦେଲେ ସ୍କୁଲରୁ ।"

"କାହିଁକି ?"

ପାଭେଲ୍ ଲଜରେ ରଙ୍ଗା ପଡ଼ିଗଲା ।

"ଧର୍ମଯାଜକଙ୍କର ମଇଦା ଚକଟା ଉପରେ ମୁଁ ତମାଖୁ ଗୁଣ୍ଡ ବିଞ୍ଚିଥିଲି । ସେଇଟା ଛୋଟଲୋକଟାଏ ... ସେ ଧର୍ମଯାଜକଟା ତମକୁ ଜକେଇ ଜକେଇ ପ୍ରାଣାନ୍ତକ କରିଦେବ ।"

ପାଭେଲ୍ ତା'ର ସମସ୍ତ କାହାଣୀ କହିଗଲା ।

ଗଭୀର ମନୋନିବେଶ ସହକାରେ ତୋନ୍ୟା ଶୁଣୁଥିଲା ତା'ର କାହାଣୀ । ପହିଲୁ ପହିଲୁ ଯେଉଁ ଲଜ ଲଜ ଲାଗୁଥିଲା ପାଭେଲ୍‌କୁ, ଏତେବେଳକୁ ସେସବୁ ତୁଆଡ଼େ ଉଭେଇ ଗଲଣି ଏବଂ ବହୁକାଳରୁ ପରିଚିତ ଭଳି ତୋନ୍ୟା ସହିତ ଗପୁଥିଲା ସେ । ଆଉ ସବୁ ଆଜେବାଜେ କଥା ସହିତ ତା' ବଡ଼ ଭାଇ ଯେ କେଉଁଠି ଲୁଚିଯାଇଛି ସେକଥା ମଧ୍ୟ କହିଲା ପାଭେଲ୍ । ସେ ଖାଇ ଉପରେ ବସିବସି ଗପସପ ହେଉ ହେଉ ଯେ ଘଣ୍ଟା ଘଣ୍ଟା ବିତିଯାଇଛି, ଏକଥା ଦୁଇଜଣଙ୍କ ଭିତରୁ କାହାରି ଖିଆଲ ନାହିଁ । ଶେଷକୁ ପାଭେଲ୍ ଚୁଷକିନି ଉଠି ଛିଡ଼ାହେଲା ।

"ଆରେ, ମୋର କାମକୁ ଯିବାବେଳ ଗଡ଼ିଗଲାଣି ! ଏଠି ବସି ବସି ବାତଫୁରୁସି ମାରୁଛ କ'ଣ ? ମୁଁ ଏତେବେଳକୁ ସେଠି ବଏଲର୍‌ରେ ଜାଳେଣୀ ଦିଅନ୍ତିଣି ଆସି । ଦାନିଲୋ କିଛି ଗୋଟାଏ କାଣ୍ଡ ଭିଆଇବ ଆଜି ନିଶ୍ଚେ ।" ତାକୁ ଭାରୀ ଖରାପ ଲାଗୁଥିଲା ଡେରି ହୋଇଯିବାରୁ, ଏଣୁ ସେମିତି ଅସ୍ୱସ୍ତିକର ମନରେ ସେ କହିଲା :

"ହଉ ନମସ୍କାର, ମୋତେ ଏବେ କୌଣସିମତେ ଦୌଡ଼ିବାକୁ ହେବ ।"

ନିଜ କୁର୍ତ୍ତାକୁ ଟାଣିଦେଇ ଠିକ୍ କରି ତୋନ୍ୟା ବି ଉଠିପଡ଼ିଲା ।

"ମୁଁ ବି ଯିବି, ଚାଲ ସାଙ୍ଗ ହୋଇ ଯିବା ।"

"ନାଁ ନାଁ, ତା' ହୋଇପାରିବ ନାହିଁ, ମୋତେ ଦୌଡ଼ିବାକୁ ହେବ ।"

"ଠିକ୍ ଅଛି, ମୁଁ ବି ତମ ସାଙ୍ଗେ ଦୌଡ଼ିବି, ଦେଖିବା କିଏ ସେଠି ଯାଇ ଆଗ ପହଞ୍ଚିବ ।"

ତାଚ୍ଛଲ୍ୟପୂର୍ଣ୍ଣ ଚାହାଣୀରେ ତାକୁ ଚାହିଁଲା ପାଭେଲ୍ ।

"ମୋ ସାଙ୍ଗେ ଦୌଡ଼ିବ ? ମୋଟେ ପାରିବ ନାହିଁ ।"

"ହଉ ଦେଖାଯିବ ସେକଥା । ଏଠୁ ଆଗ ଯିବା ଚାଲ ।"

ପଥର କୁଦଟାକୁ ଏକାଡ଼ିଆଁକେ ଟପି ପାଭେଲ୍ ଗୋଟାଏ ହାତ ତୋନ୍ୟା ଆଡ଼କୁ ବଢ଼ାଇଦେଲା । ତା'ପରେ ଦୁହେଁ ହାତ ଧରାଧରି ହୋଇ ଡେଇଁ ଡେଇଁ ଚାଲିଲେ ଜଙ୍ଗଲ ଭିତରୁ, ତା'ପରେ ବିସ୍ତୃତ ସମତଳ ପଡ଼ିଆ ଭିତର ଦେଇ ଷ୍ଟେସନ୍ ଆଡ଼କୁ ।

ଅଧବାଟରେ ତୋନ୍ୟା ଛିଡ଼ା ହୋଇପଡ଼ିଲା ।

"ବର୍ତ୍ତମାନ ଆମେ ଦୌଡ଼ିବା, ଏକ ... ଦୁଇ ... ତିନ୍ ... ଦୌଡ଼ ! ଚେଷ୍ଟାକର ମୋତେ ଧରିବାକୁ !" ଏକ ଘୂର୍ଣ୍ଣିବାତ୍ୟା ଭଳି ସେ ଛୁଟିଲା ରାସ୍ତାରେ, ତା' ଜୋତାର ତଳିଟା ଝଲସି ଯାଉଥାଏ, ନୀଳ କୁର୍ତ୍ତାଟା ପବନରେ ଫର ଫର ଉଡ଼ୁଥାଏ ପଛକୁ ।

ପାଭେଲ୍ ଦୌଡ଼ିବାକୁ ଆରମ୍ଭ କଲା ତା'ପରେ ।

"ଦୁଇ ଖେପାରେ ତାକୁ ଧରିବି", ତା'ର ଉତ୍କଟ ଦୂର୍ଦ୍ଧା ପଛରେ ଧାଇଁ ଧାଇଁ ଭାବୁଥାଏ ପାଭେଲ୍ । ମାତ୍ର ଗଳିର ଶେଷମୁଣ୍ଡରେ, ଷ୍ଟେସନ୍ ପାଖାପାଖି ହେଲାବେଳକୁ ତାକୁ ଧରିଲା ପାଭେଲ୍ ।

ଶେଷରେ ଗୋଟାଏ ଖେପାମାରି, ଝୁଙ୍କିଯାଇ ତା'ର ଦି'କାନ୍ଧକୁ ବଙ୍କୁଆ ହାତରେ ଧରିନେଲା ଜୋର୍‌ରେ ।

ଧଇଁ ସଇଁ ହୋଇ ସେ ପାଟିକରି ଉଠିଲା ଖୁସିରେ :

"ହେଲା ଏଥର ! ହେଇ ଧରିଛି ଚମକୁ ।"

"ହେଃ, ଛାଡ଼ ଛାଡ଼, କାଟୁଛି ମୋତେ", ତୋନ୍ୟା ବାଧା ଦେଇ କହିଲା ।

ଧଇଁ ସଇଁ ହୋଇ ଦୁହେଁ ଛିଡ଼ାହେଲେ ସେଇଠି । ଧମନୀର ସ୍ପନ୍ଦନ ତାଙ୍କର ଦ୍ରୁତତର ହେଉଥାଏ । ଏତେ ଜୋରରେ ଦୌଡ଼ିସାରିଲା ପରେ, ଥକ୍‌କି ଯାଇ, ଗୋଟାଏ ଆବେଗମୟ ମୁହୂର୍ତ୍ତରେ, ଆନନ୍ଦ ଉତ୍ତେଜନା ଓ ନିବିଡ଼ତମ ଅନ୍ତରଙ୍ଗତା ଭିତରେ ତୋନ୍ୟା ଥରି ଥରି, ହାଲୁକା ଭାବରେ ଢଳିପଡ଼ିଲା ପାଭେଲ୍ ଉପରକୁ । ସେଇ ମୁହୂର୍ତ୍ତଟିକର ମାଧୁରିମା ତୋନ୍ୟା କାଳ କାଳ ପାଇଁ ପୋଛି ପାରିବ ନାହିଁ ମନରୁ ।

ତା'ପାଖରୁ ନିଜକୁ ଅଲଗା କରି ଆଣୁଆଣୁ ତୋନ୍ୟା କହିଲା :

"ମୋତେ ଯା ଆଗରୁ କେହି କେବେ ଟପି ନଥିଲେ ।"

ଏଚିକିରେ ପରସ୍ପରଠାରୁ ବିଦାୟ ନେଲେ ଉଭୟ । ନିଜର ଟୋପି ହଲାଇ ହଲାଇ, ବିଦାୟ ଜଣାଇ ପାଭେଲ୍ ସହର ଆଡ଼କୁ ଦୌଡ଼ିଲା ।

ବଏଲର୍‌ର ଦୁଆରମୁହଁ ଠେଲି ପଶିଲାବେଳକୁ ଦାନିଲୋ ବଏଲର୍‌ର ଚୁଲି ଜଳାଇବାରେ ବ୍ୟସ୍ତ ଥାଏ ।

"ଆଉ ଟିକେ ଡେରି କଲୁ ନାହିଁ ?" ଗାଉଁ ଗାଉଁ ହୋଇ କହିଲା ସେ, "ତୋ ପାଇଁ, ତୋ କାମତକ କରିଦେବି ବୋଲି ଭାବୁଛୁ ?"

ସହକର୍ମୀର ମନ ବହଲେଇବା ପାଇଁ ତା' ପିଠି ଥାପୁଡ଼େଇଲା ପାଭେଲ୍ ।

"ଆରେ ବୁଢ଼ା ! ଆଖିପିଛୁଳାକେ ଏଇନେ ପୂରାଦମ୍‌ରେ ନିଆଁ ଜଳେଇବା ବଏଲର ରେ, କାହିଁକି ବ୍ୟସ୍ତ ହେଉଛୁ ?" ଖୁସ୍ ମିଜାଜ୍‌ରେ ଏତକ କହି ସେ ଜାଳେଣୀ ମୁହାଁଇବାରେ ଲାଗିଗଲା ନିଜେ ନିଜେ ।

ଅଧରାତି ବେଳକୁ, ଦାନିଲୋ କାଠଗଦା ଉପରେ ଗଁରିକାତ୍ ମାରି ପଡ଼ି ଘୁଙ୍ଗୁଡ଼ି ମାରୁଥାଏ । ପାଭେଲ୍ ଇଞ୍ଜିନ୍‌ରେ ତେଲ ଦେବା କାମ ସାରି ଛିଡ଼ାକନାରେ ହାତ ପୋଛାପୋଛି କରି ଦେଲା । ତା'ପରେ, 'ଜୁସେପେ ଗାରିବଲ୍‌ଡି' ବହିର ବାଷଠି ଭାଗ ବହିଖଣ୍ଡକ ଯନ୍ତ୍ରବାକ୍‌ସଟାରୁ ଓଟାରିଆଣି ନେପୋଲିଟାନ୍ 'ଲାଲ୍‌କୁର୍ତ୍ତା' ଦଳର ପ୍ରସିଦ୍ଧ ଅଧିନାୟକ ଗାରିବଲ୍‌ଡିଙ୍କର ରୋମାଞ୍ଚକର ବୀରତ୍ୱପୂର୍ଣ୍ଣ କାହାଣୀ ଭିତରେ ମଜ୍ଜିଗଲା ।

"ତା'ର କମନୀୟ ନୀଳ ଚକ୍ଷୁତାରକା ଦିଓଟିରେ ନାରୀଟି ଡିଉକ୍ ଆଡ଼କୁ ଗ୍ରହିଁଲା ..."

"ତା'ର ଆଖିଦିଓଟି ବି ନୀଳ", ପାଭେଲ୍ ଭାବିଲା, "ଏବଂ ସିଏ ଟିକେ

ଅନ୍ୟଧରଣର । ଧନୀମାନଙ୍କ ଭଳି ଆଦୌ ନୁହଁ, ଭାରୀ ଜୋର୍‌ରେ ପବନ ପରି ଦୌଡ଼ିପାରେ ।”

ତୋନ୍ୟା ସହିତ ଦିନଟିସାରା ତା’ର ଘଟିଥିବା ସମସ୍ତ ଘଟଣାକୁ ଦୋହରେଇ ଦୋହରେଇ ଭାବୁଭାବୁ ସେ ଏବେ ଆତ୍ମହରା ହୋଇଯାଇଥିଲା ଯେ, ଅତ୍ୟଧିକ ଉତ୍ତାପର ଚାପରେ, ଗର୍ଜନ କରି ଉଠୁଥିବା ଇଞ୍ଜିନ୍‌ର ଚିତ୍କାର ଶୁଣିପାରିଲା ନାହିଁ । ଫଳରେ, ଶୂନ୍ୟରେ ବିରାଟ ଚକଗୁଡ଼ାକ ଉନ୍ମତ୍ତ ଭାବରେ ଘୂରିବାକୁ ଲାଗିଲେ ଭୟଙ୍କର ଶବ୍ଦ କରି, ସତେକି କଂକ୍ରିଟ୍ ଛାତଟା ଧସିପଡ଼ିବ ଏଇ ମୁହୂର୍ତ୍ତରେ ।

ଚାପମାନ ଯନ୍ତ୍ରକୁ ଚାହିଁଲା ପାଭେଲ୍ । ଲାଲ୍ ସତର୍କ ଚିହ୍ନର କେତେ ଗିରା ଉପରେ ଅଛି ଯାଇ କଣ୍ଟାଟା !

“ଧେତ୍‌ରେ”, ପାଭେଲ୍ ଉପରକୁ ଚଢ଼ି ନିରାପତ୍ତା ଭଲଭ୍‌କୁ ଶୀଘ୍ର ଶୀଘ୍ର ଦୁଇଥର ଘୂରାଇଦେଲା । ନିଷ୍କାସନ ନଳୀଟା ବାଟରେ ଗୁଡ଼ାଏ ବାଷ୍ପ ଭୁସ୍‌ଭୁସ୍ ହୋଇ ବାହାରିଗଲା ବଏଲର୍ ଘର ବାହାରେ ଥିବା ନଈଟା ଭିତରକୁ । ଗୋଟାଏ ଲିଭର ଟାଣିଆଣି, ପାଭେଲ୍ ବେଲ୍‌ଟଟାକୁ ପମ୍ପ ଦେହରେ ଯୋଖିଦେଲା ।

ଦାନିଲେ ଆଡ଼କୁ କଣେଇ ଚାହିଁଲା ସେ । ଆଁ କରିଛି ସେ ନିଦରେ, ନାକରୁ ଭୟଙ୍କର ସ୍ୱର ବାହାରୁଛି ।

ଅଧମିନିଟକ ପରେ ଚାପମାନ ଯନ୍ତ୍ରର କଣ୍ଟା ସାଧାରଣ ଅବସ୍ଥାକୁ ଫେରିଆସିଲା ।

* * *

ପାଭେଲ୍ ନିକଟରୁ ବିଦାୟ ନେଇ ଘର ଆଡ଼କୁ ଯାଉଯାଉ ତୋନ୍ୟା ଭାବି ଚାଲିଥାଏ । ଗଭୀର କଳା ଆଖିର ଏ ତରୁଣ ସହିତ ତା’ର ଏ ଅପ୍ରତ୍ୟାଶିତ ମିଳନର କାହାଣୀଟା କାହିଁକି କେଜାଣି ଭାରୀ ଭଲ ଲାଗୁଥାଏ ତାକୁ । ଉତ୍‌ଫୁଲ୍ଲିତ ହୋଇଉଠୁଥାଏ ସେ ଛାଁକୁ ଛାଁ ।

“ଇସ୍, କି ତେଜ ତା’ର, କେତେ ଶକ୍ତି ! ଯାହା ଗୁଣ୍ଡା ବୋଲି, ତା’ ବିଷୟରେ ଭାବିଥିଲି ନା, ଆଦୌ ସେମିତି ନୁହଁ । ସେ ଯାହା ହେଉପଛେ, ସେ ଛତରା ସ୍କୁଲଟୋକାଙ୍କ ପରି ମୋତେ ନୁହେଁ ।”

ପାଭେଲ୍ ଅନ୍ୟ ଏକ ଉପାଦାନରେ ଗଢ଼ା । ତୋନ୍ୟାର ସମ୍ପୂର୍ଣ୍ଣ ଏକ ଅପରିଚିତ ପରିବେଶ ଭିତରୁ ବାହାରିଛି ସେ ।

“ତାକୁ କିନ୍ତୁ ବାଗକୁ ଅଣାଯାଇପାରେ । ଭାରୀ ବଢ଼ିଆ ସାଙ୍ଗଟିଏ ହୁଅନ୍ତା ।” ଭାବିଲା ସେ ।

ଘରପାଖରେ ପହଞ୍ଚି ସେ ଲିଜା ସୁଖାର୍କୋ, ନେଲୀ ଓ ଭିକ୍‌ଟର ଲେଷ୍ଚିନ୍‌ସ୍କି ହେରିକାଙ୍କୁ ବଗିଚା ଭିତରେ ଦେଖିଲା । ଭିକ୍‌ଟର ବସି କ’ଣ ପଢ଼ୁଥିଲା । ସେମାନେ ନିଶ୍ଚିତଭାବରେ ତାକୁ ଅପେକ୍ଷା କରିଛନ୍ତି ।

ପରସ୍ପରକୁ ଅଭିବାଦନ ଜଣାଇବା ପରେ ସେ ଗୋଟିଏ ବେଞ୍ଚରେ ଯାଇଁ ବସିଲା । ଆଉଜେବାଜେ ଖାପଛଡ଼ା ଗପସପ ମଝିରେ ଭିକ୍ଟର ଆସି ତା' ପାଖରେ ବସିପଡ଼ି ପଚାରିଲା :

"ମୁଁ ତମକୁ ଯେଉଁ ଉପନ୍ୟାସଟି ଦେଇଥିଲି, ପଢ଼ିଲଣି ?"

"ଉପନ୍ୟାସ ?" ତୋନ୍ୟା ଚମକି ପଡ଼ିଲା, "ଓଃ, ମୁଁ..." ସେ ପ୍ରାୟ କହି ଆସୁଥିଲା ସେ ବହିଖଣ୍ଡକ ସେ ହ୍ରଦକୂଳରେ ଛାଡ଼ି ଦେଇଆସିଛି ।

"ପ୍ରେମକାହାଣୀ ତମକୁ ଭଲ ଲାଗିଲା ?" ପ୍ରଶ୍ନବାଚକ ଆଖିରେ ତାକୁ ଚାହିଁଲା ଭିକ୍ଟର । ମୁହୂର୍ତ୍ତକ ପାଇଁ ନିଜ ଭାବନାରେ ବୁଡ଼ି ଯାଇଥିଲା ତୋନ୍ୟା । ତା'ପରେ ଧୀରେ ଧୀରେ ଜୋତା ଅଗରେ ବାଲିରେ ଗୋଟାଏ ଅଖାଡ଼ୁଆ ଚିତ୍ର ଆଙ୍କୁଆଙ୍କୁ ମୁଣ୍ଡଟେକି ଭିକ୍ଟର ଆଡ଼କୁ ଚାହିଁଲା ।

"ନାଁ, ମୁଁ ତା'ଠାରୁ ଆହୁରି ଲୋଭନୀୟ ହୃଦୟଗ୍ରାହୀ ପ୍ରେମ କାହାଣୀଟାଏ ଆରମ୍ଭ କରିଛି ।"

"ସତେ ? କାହା ଲେଖା ?" ଚିଡ଼ିଉଠି ବିରକ୍ତିରେ ନିଜ ସ୍ୱରକୁ ଟିକେ ଉମେଇଦେଇ ଭିକ୍ଟର ପଚାରିଲା ।

ଉଜ୍ଜ୍ୱଳ ହସହସ ଆଖିରେ ତା' ଆଡ଼କୁ ଚାହିଁଲା ତୋନ୍ୟା :

"ଲେଖକ କେହି ନାହାନ୍ତି ତା'ର ।"

"ତୋନ୍ୟା, ତୋ ସାଙ୍ଗମାନଙ୍କୁ ଡାକ, ଆ, ଚା'ଜଳଖିଆ ବଢ଼ା ହେଲଣି", ଅଳିନ୍ଦ ଉପରୁ ତୋନ୍ୟାର ମା ଡାକିଲେ ।

ଝିଅ ଦି'ଜଣଙ୍କୁ ହାତଧରି ଟାଣି ଚୋନ୍ୟା ଘରଭିତରକୁ ନେଇଗଲା । ତାଙ୍କୁ ଅନୁସରଣ କରୁକରୁ ଭିକ୍ଟର ଭାବୁଥିଲା ତୋନ୍ୟାର କଥାର ଅର୍ଥ କ'ଣ ହୋଇପାରେ । ବୁଝି ନପାରି ଯେମିତି ଗୋଲକଧନ୍ଦାରେ ପଡ଼ିଲା ସେ ।

* * *

ନୂଆ ଏକ ଅନନୁଭୂତ ଅନୁଭୂତି । ଅଜ୍ଞାତରେ ପାଭେଲ୍‌ର ମନକୁ ଆଚ୍ଛନ୍ନ କରିଥାଏ । ବିଚଳିତ ହୋଇ ଉଠୁଥାଏ ମନ ତା'ର । ଅସ୍ଥିର ହୋଇ ଉଠୁଥାଏ ସେ । ଅବୁଝା ଏକ ଅଜ୍ଞାତ ଅନୁଭୂତି, ବେପରୁଆ ବିଦ୍ରୋହୀ ମନ ଅସ୍ଥିର ହୋଇ ଉଠୁଥାଏ ।

ତୋନ୍ୟାର ବାପା ଜଙ୍ଗଲର ମୁଖ୍ୟ କର୍ମକର୍ତ୍ତା । ପାଭେଲ୍‌କୁ ଯେତେଦୂର ଜଣା, ଓକିଲ ଲେଷ୍ଟିନ୍‌ସ୍କିଙ୍କର ପ୍ରାୟ ସମାସନ୍ଧ ଶ୍ରେଣୀର ସେମାନେ ।

ପାଭେଲ୍ ବଢ଼ିଥାଏ ଦାରିଦ୍ର୍ୟ ଏବଂ ଅନଟନ ଭିତରେ । ଥିଲାବାଲା ଲୋକଙ୍କ ପ୍ରତି ତା'ର ସହଜାତ ବିତୃଷ୍ଣା । ସ୍ୱାଭାବିକଭାବରେ, ଏଣୁ ତୋନ୍ୟା ପ୍ରତି ତା'ର ଧାରଣା ଭିତରେ ପୂରି ରହିଥିଲା ଆଶଙ୍କା ଏବଂ ଭୁଲଧାରଣା । ତୋନ୍ୟା ତା ଶ୍ରେଣୀର ଲୋକ

ନୁହେଁ । ରାଜମିସ୍ତୀର ଝିଅ ଗାଲେଚ୍‌କାକୁ ଯେତେ ସହଜରେ ବୁଝିହୁଏ ସେମିତି ସେ ନୁହେଁ । ତୋନ୍ୟା ସହିତ ମିଳାମିଶା କଲାବେଳେ ସେ ସଦାବେଳେ ଜଗିରହିଥାଏ – ତା' ଭଳି ଜଣେ ସାଧାରଣ କୋଇଲା ଯୋଗାଣିଆ ଟୋକା ପ୍ରତି ସୁନ୍ଦରୀ, ଶିକ୍ଷିତା, ବଡ଼ଘରର ଝିଅ, ସ୍ୱାଭାବିକଭାବରେ ଯେଉଁ ବିଦ୍ରୂପ ବ୍ୟଙ୍ଗ କରିବ, ତାକୁ ପ୍ରତ୍ୟୁତ୍ତର ଦେବାକୁ ।

ପୂରା ସପ୍ତାହେ ଧରି ତାକୁ ଦେଖି ନଥିଲା ପାଭେଲ୍, ଏବଂ ଆଜି ସ୍ଥିର କରିଥିଲା ହ୍ରଦ ପାଖକୁ ଯିବାକୁ । ଜାଣିଶୁଣି ସେ ତା' ଘର ଦେଇ ଯେଉଁ ବାଟ ଯାଇଛି, ସେଇବାଟେ ଗଲା । କାଳେ ତା' ସହିତ ଦେଖାହେବ, ଏଇ ଇଚ୍ଛାରେ । ଧୀରେ ଧୀରେ ଯେତେବେଳେ ତାଙ୍କ ଘରର ବାଡ଼ ଦେଇ ଆଗଉଛି ବଗିଚ୍ଚର ଶେଷ ସୀମାନ୍ତରେ, ତା'ର ପରିଚିତ ଜାହାଜୀ ନୀଳ ରଙ୍ଗର ବ୍ଲାଉଜ୍‌ଟି ଦେଖାଗଲା । ଖଣ୍ଡେ ପାଇନ୍ ଗଛର ରାଣ୍ଡା ଉପରୁ ଗୋଟାଇନେଇ ସେ ତା' ଉପରକୁ ଫୋପାଡ଼ିଦେଲା ଜୋରରେ ।

ବୁଲିପଡ଼ି ତାକୁ ଦେଖିଲା ତୋନ୍ୟା ଏବଂ ବାଡ଼ପାଖକୁ ଦୌଡ଼ିଆସି, ଗଭୀର ଆନ୍ତରିକତାପୂର୍ଣ୍ଣ ହସ ହସି ହାତ ବଢ଼ାଇଦେଲା ।

"ସବାଶେଷରେ, ତା'ହେଲେ ତମେ ଆସିଲ ।"

ସ୍ୱରରେ ତା'ର ଉଚ୍ଛଳ ଆନନ୍ଦ । "ଏ କେତେଦିନ କ'ଣ କରୁଥିଲ ତମେ ? ମୁଁ ହ୍ରଦ ତୁଠକୁ ଯାଇଥିଲି, ଛାଡ଼ିଆସିଥିବା ବହିଟା ଆଣିବାକୁ । ଭାବିଥିଲି ତମେ ବି ସେଠି ଥିବ ବୋଲି । ତମେ ଭିତରକୁ ଆସିବ ନାହିଁ ନାଁ କ'ଣ ?"

ପାଭେଲ୍ ମୁଣ୍ଡ ହଲାଇଲା :

"ନାଁ ।"

"କାହିଁକି ?" ଆଶ୍ଚର୍ଯ୍ୟରେ ତା'ର ଆଖିପତା ଟେକି ହୋଇଗଲା ଉପରକୁ ।

"ତମ ବାପାଙ୍କୁ ହୁଏତ ଭଲ ଲାଗିବ ନାହିଁ ନିଶ୍ଚେ, ମୋ ଭଳି ଗୋଟାଏ ଅଭେକାକୁ ବଗିଚ୍ଚ ଭିତରକୁ ପୂରେଇଲେ, ତମେ ତାଙ୍କଠୁ ନିଶ୍ଚେ ଗାଳି ଖାଇବ ।"

"କ'ଣ ବାଜେକଥା ବକୁଚ, ପାଭେଲ୍ ?" ତୋନ୍ୟା ରାଗରେ କହିଲା, "ଆସ ଜଲଦି ଭିତରକୁ, ମୋ ବାପା କଦାପି କିଛି କହିବେ ନାହିଁ । ଦେଖିବ ନାହିଁ ତମେ ନିଜେ, ଆସ ଏବେ ଭିତରକୁ ।"

ତା' ପାଇଁ ଫାଟକଟା ଖୋଲିବାକୁ ଦୌଡ଼ିଗଲା ତୋନ୍ୟା । ପାଭେଲ୍ ଦ୍ୱିଧାଗ୍ରସ୍ତ ମନରେ ଅନୁସରଣ କଲା ତାକୁ ।

"ତମକୁ ବହି ଭଲ ଲାଗେ ?" ସେମାନେ ଗୋଟାଏ ବଗିଚ୍ଚ ଟେବୁଲ ପାଖରେ ବସୁ ବସୁ ପଚାରିଲା ତୋନ୍ୟା ।

"ଭାରୀ ଭଲ ଲାଗେ", ଆଗ୍ରହରେ କହିଲା ପାଭେଲ୍ ।

"କୋଉ ବହି ତମକୁ ସବୁଠୁ ବେଶି ଭଲ ଲାଗେ ?"

କିଛି ସମୟ ପାଇଁ ଏ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ହତ୍‌ବତ୍‌ହୋଇଗଲା ପାଭେଲ୍ । ତା'ପରେ କହିଲା, "ଜିଜେପି ଗାରିବଲ୍‌ଡି ।"

"କୁସେପେ ଗାରିବଲ୍ଡି", ତାକୁ ସଂଶୋଧନ କରି ତୋନ୍ୟା କହିଲା । "ତାହେଲେ ତମକୁ ସେ ବହିଟା ବିଶେଷ ଭଲ ଲାଗେ ନାଁ ?"

"ହଁ, ଅଠଷଠି ଭାଗଯାକ ସବୁ ମୁଁ ସାରିଲିଣି । ପ୍ରତ୍ୟେକ ହପ୍ତା ଦରମା ପାଇଲା ଦିନ ମୁଁ ସେଥିରୁ ପାଞ୍ଚଖଣ୍ଡ ବହି କିଣେ । କି ମହାନ୍ ଲୋକ ସିଏ !" ପାଭେଲ୍ କହୁଥାଏ ଉତ୍ସାହିତ ହୋଇ । "ଜଣେ ପ୍ରକୃତ ବୀର, ମୁଁ ତାଙ୍କୁ ସେଇଆ ହିଁ ଜାଣେ, କେତେ ଯୁଦ୍ଧ ସେ ନ ଲଢ଼ିଛନ୍ତି ଆଉ ସବୁଥିରେ ଜିତିଛନ୍ତି । ସାରା ପୃଥିବୀ ଘୂରିଛନ୍ତି । ଆଜି ଯଦି ସେ ବଞ୍ଚିଥାଆନ୍ତେ ନାଁ, ମୁଁ ତାଙ୍କ ସହିତ ଯୋଗ ଦିଅନ୍ତି, ଋଣ ଅଛି, ନିଶ୍ଚେ ଯୋଗଦିଅନ୍ତି । ସିଏ ପରା ତରୁଣ ଶ୍ରମିକମାନଙ୍କୁ ନିଜ ଦଳକୁ ନିଅନ୍ତି, ସମସ୍ତେ ମିଶି ଏକତ୍ରିତ ଭାବରେ ଜନସାଧାରଣଙ୍କ ପାଇଁ ସଂଗ୍ରାମ କରନ୍ତି ।"

"ଆମ ଲାଇବ୍ରେରୀଟା ଦେଖିବ କି ?" ତା' ହାତ ଧରି ଟାଣି ତୋନ୍ୟା ପଚାରିଲା ।

"ନାଁ ନାଁ, ଘର ଭିତରକୁ ଜମା ଯିବି ନାହିଁ ମୁଁ", ପାଭେଲ୍ ବାଧାଦେଲା ।

"କାହିଁକି ତମର ଏତେ ଜିଦ୍ ଯେ, ସେଠି ଏମିତି ଡରିବାର କ'ଣ ଅଛି ?"

ପାଭେଲ୍ ତା'ର ଖାଲିଗୋଡ଼କୁ କଣେଇ ଚାହିଁଲା ଟିକେ, ଭାରୀ ମଇଳା ହୋଇଛି । ତା'ପରେ ମୁଣ୍ଡ ପଛପଟ କୁଣ୍ଡେଇ କୁଣ୍ଡେଇ କହିଲା :

"ତମ ବାପା କି ମା ମୋତେ ତଡ଼ିଦେବେ ନାହିଁ ? ସତ କହୁଛ ?"

"ଏମିତି କଥା ଯଦି ଆଉ କହ ନାଁ, ମୁଁ ସତରେ ତମ ଉପରେ ରାଗିଯିବି", ତୋନ୍ୟା ରାଗିଯାଇ କହିଲା ।

"ଦେଖ, ଲେଷିନ୍‌ସ୍କି ଆମ ଭଳି ଲୋକଙ୍କୁ ତାଙ୍କ ଘରେ ପୂରାନ୍ତି ନାହିଁ । ବାହାରେ ବାହାରେ ଯାହା କଥାବାର୍ତ୍ତା ସାରିଦିଅନ୍ତି । ଥରେ, କ'ଣ ଗୋଟାଏ କାମ ପାଇଁ ତାଙ୍କ ଘରକୁ ଯାଇଥିଲି ଯେ, ନେଲୀ ତାଙ୍କ ଘର ଭିତରକୁ ସୁଦ୍ଧା ପୂରାଇଦେଲା ନାହିଁ । ତାଙ୍କ ଗାଲିଚ୍ଚ କି ଆଉ ସବୁ କ'ଣ ଖରାପ ହୋଇଯିବ ବୋଲି ଡରିଲା ବୋଧହୁଏ", ଅତି ସନ୍ତର୍ପଣରେ କହିଲା ପାଭେଲ୍ ।

"ଆସ, ଆସ", ତା' କାନ୍ଧକୁ ଧରି ଝିଙ୍କିଲା ତୋନ୍ୟା । ତା' ପରେ ଅତି ଆଦରରେ ପଛଆଡ଼ୁ ପେଲିଦେଲା ଟିକେ ବାରଣ୍ଡା ଆଡ଼କୁ ।

ଖାଇବା ଘର ଭିତର ଦେଇ ତାକୁ ବିରାଟ ଗୋଟାଏ ଓକ୍‌ପଟାର ବହି ଆଲମାରି ଥିବା ଘର ଭିତରକୁ ନେଇଗଲା ସେ । ଆଲମାରି କବାଟ ଫିଟାଇଲା ମାତ୍ରେ ପାଭେଲ୍ ଦେଖିଲା ଶହ ଶହ ବହି, ଥାକମରା ହୋଇ ସଜା ହୋଇ ଥୁଆହୋଇଛି । ଏତେ ବହି ଏକାବେଳେକେ ସେ ଜୀବନରେ କେବେ ଦେଖି ନ ଥିଲା ।

"ଏବେ ତମକୁ ଗୋଟାଏ ବଢ଼ିଆ ବହି ଦେବି ପଢ଼ିବାକୁ, କିନ୍ତୁ ତମକୁ କଥା ଦେବାକୁ ହେବ ଯେ, ବରାବର ଏମିତି ବହି ନେବାକୁ ଆସିବ ତମେ, ଆସିବ ନାଁ ?"

ଖୁସିରେ ମୁଣ୍ଡ ଟୁଙ୍ଗାରିଲା ପାଭେଲ୍ । "ବହି ମୋତେ ଭାରୀ ଭଲ ଲାଗେ ।"

ହସଖୁସିରେ କେତୋଟି ଘଣ୍ଟା ବିତାଇଲେ ସେମାନେ ସେଦିନ । ତୋନ୍ୟା ନିଜ ମା'ଙ୍କ

ସହିତ ପରିଚୟ କରାଇଦେଲା ପାଭେଲ୍‌ର । ପାଭେଲ୍ ଯେତେ ଭୟଙ୍କର ଭାବୁଥିଲା, ସେପରି କିଛି ଘଟିଲା ନାହିଁ ଆଦୌ । ସତରେ କହିବାକୁ ଗଲେ, ତୋନ୍ୟାର ମା' ତାକୁ ଭାରୀ ଭଲ ଲାଗିଲେ ।

ପାଭେଲ୍‌କୁ ନିଜ କୋଠରୀକୁ ନେଇଯାଇ ତାକୁ ନିଜର ବହିସବୁ ଦେଖାଇଲା ତୋନ୍ୟା ।

ଡ୍ରେସିଂ ଟେବୁଲ ଉପରେ ଛୋଟ ଦର୍ପଣଟିଏ ଥୁଆହୋଇଥାଏ । ତୋନ୍ୟା ପାଭେଲ୍‌କୁ ଦର୍ପଣ ନିକଟକୁ ନେଇଯାଇ, ମୁରୁକି ହସି କହିଲା :

"ତମ ବାଳଗୁଡ଼ାକୁ ଏମିତି ଅଲରାବଲରା କରିଛ କାହିଁକି ? କେବେ କ'ଣ ବାଳ କାଟ ନାହିଁ କି ମୁଣ୍ଡ କୁଣ୍ଡାଅ ନାହିଁ ?"

"ବେଶି ବଢ଼ିଗଲେ ପୂରାପୂରି କାଟିଦିଏ, ଲଣ୍ଡା ହୋଇଯାଏ ବିଲକୁଲ । ଆଉ କ'ଣ କରିବି ଯେ ଏ ବାଳଗୁଡ଼ାକ ନେଇ ?" ଟିକେ ଅପ୍ରତିଭ ଭାବରେ କହିଲା ପାଭେଲ୍ ।

ହସିଉଠିଲା ତୋନ୍ୟା, ଟେବୁଲ ଉପରୁ ପାନିଆଟାଏ ଉଠାଇ ତା'ର ଅମାନିଆ ଅଲରା ବାଳରେ ଦୁଇତିନି ଥର ଏପଟ ସେପଟ ଚଳାଇ ଆଣି କେମିତି ଦିଶିଲା ବୋଲି ନିରିଖି ଦେଖି କହିଲା :

"ଏଇ ବେଶ୍ ହୋଇଛି, ଭଲ ଦିଶୁଛି ଏମିତି । ବାଳଗୁଡ଼ିକ ସୁନ୍ଦର କରି କାଟିବା ଉଚିତ । ବାୟା ଅଲେକାଙ୍କ ପରି ଏମିତି କ'ଣ ବୁଲିବ ମ ।"

ତା'ର ରଙ୍ଗ ଛାଡ଼ିଆସୁଥିବା ମାଟିଆ କୁର୍ତ୍ତାଟାକୁ ଆଉ ଲେପ୍‌କୋପ୍ ମଇଳା ଟ୍ରାଉଜରଟାକୁ ତୋନ୍ୟା ଖୁଣ୍ଟେଇ ଖୁଣ୍ଟେଇ ନିରିଖି ଦେଖିଲା, କିନ୍ତୁ କିଛି ଟିପ୍‌ପଣୀ କଲା ନାହିଁ ।

ତା'ର ଚାହାଣୀର ଅର୍ଥ ବୁଝିପାରି ନିଜର ମଇଳା ମଳିଛିଆ ପୋଷାକ ପାଇଁ ଲଜ୍ଜିତ ହେଲା ପାଭେଲ୍ ।

ପରସ୍ପରଠୁ ବିଦାୟ ମାଗି ଆସିଲା ବେଳେ ଆଉ ଥରେ ଆସିବା ପାଇଁ ଆମନ୍ତ୍ରଣ ଜଣାଇଲା ତୋନ୍ୟା । ପ୍ରତିଶ୍ରୁତି ଆଦାୟ କଲା, ଯେମିତି ହେଲେ ଦି'ଦିନ ଭିତରେ ଆସି ତା' ସାଙ୍ଗେ ମାଛ ଧରିବା ପାଇଁ ଯିବାକୁ ।

ଆସିଲାବେଳକୁ ପାଭେଲ୍ ସହଜଭାବରେ ଝରକାବାଟେ ଡେଇଁ ବାହାରି ଆସିଲା, ଆଉ ସବୁ ଘରକୁ ଯାଇ ତୋନ୍ୟାର ମା'ଙ୍କୁ ଭେଟି ବିଦାୟ ମାଗିବା କଥା ଭାବିଲା ନାହିଁ ଆଦୌ ।

* * *

ଆର୍ତେମ୍ ଗଲାପରେ କୋର୍ଚ୍ଚାଗିନ୍ ପରିବାରର ଅସ୍ୱଚ୍ଛଳତା ଆହୁରି ବଢ଼ିଗଲା । ପାଭେଲ୍ ଯେତିକି ମଜୁରି ପାଏ, ସେଥିରେ କୁଳାଇଲା ନାହିଁ ।

ମାରିୟା ୟାକୋଭ୍‌ଲେଭ୍‌ନା ପାଭେଲ୍‌କୁ କହିଲେ ଆଗଭଳି ପୁଣି କାମଟିଏ

ଧରିବାକୁ । ବିଶେଷକରି ଲେଷ୍ଟିନ୍‌ସି ଘର ଯେତେବେଳେ ରାନ୍ଧୁଣୀ ଜଣେ ଖୋଜୁଛନ୍ତି । ପାଭେଲ୍ କିନ୍ତୁ ସେଥିରେ ରାଜି ହେଉ ନ ଥାଏ, ବିରୋଧ କରୁଥାଏ ସେ କଥାର ।

"ନାହିଁ ମାଁ, ତା' ହୋଇପାରିବ ନାହିଁ, ମୁଁ ଆଉ ଗୋଟାଏ ଅଧିକା କାମ ଧରିନେବି । କରତକଳରେ ଜଣେ ଲୋକ ଖୋଜୁଛନ୍ତି, କାଠଗଡ଼ଗୁଡ଼ାକୁ ଭାଡ଼ିକରି ରଖିବା ପାଇଁ ଅଧାଦିନ ସେଇଠି କାମ କଲେ ଆମର ଢେର ହେବ । ତୁ ଆଉ କାମ କରିପାରିବୁ ନାହିଁ । ନ ହେଲେ, ଆର୍ଟେମ୍ ଆସି ମୋ ଉପରେ ଚିଡ଼ିବ, ଚଳାଇ ନ ପାରି ତୋତେ ପୁଣି କାମକୁ ପଠାଇଲି ବୋଲି ।"

ମାଆ ତାକୁ ବୁଝାଇବାକୁ ଚେଷ୍ଟା କଲେ । ପାଭେଲ୍ କିନ୍ତୁ ନିଜ କଥାରେ ଅଟଳ ରହିଲା ।

ତା'ପରଦିନଠାରୁ କରତକଳରେ କାଠଗଦା କରିବା କାମରେ ଲାଗିଗଲା ପାଭେଲ୍ । ସଦ୍ୟ ଚିରାହୋଇଥିବା କାଠଗୁଡ଼ାକୁ ଧାଡ଼ି ଧାଡ଼ି କରି ଥୋଇ ଶୁଖାଇବାକୁ ହୁଏ ସେଇ କାମରେ । ଆଗରୁ ଜଣାଶୁଣା ଅନେକ ତରୁଣଙ୍କୁ ଭେଟିଲା ସେଠି । ତା'ର ପିଲାଦିନର ସ୍କୁଲ ସାଙ୍ଗ ମିଶା ଲେଭ୍‌ଚୁକୋଭ୍ ଏବଂ ଭାନ୍ୟା କୁଲେଶୋଭ୍‌ଙ୍କ ସାଥିରେ । ମିଶା ଓ ସେ ଦୁହେଁ ଏକାଠି ମିଶି କାମ କଲେ । ଦିନ ମଜୁରି ନ କରି ଠିକା କାମ ଅନୁଯାୟୀ ମଜୁରିରେ ବେଶ୍ ଦି'ପଇସା ପାଇଲେ ସେମାନେ । ଦିନସାରା କରତକଳ କାମ କରେ, ସନ୍ଧ୍ୟାରେ ବିଜୁଳି କେନ୍ଦ୍ରରେ ନିଜ ଚାକିରିକୁ ଯାଏ ପାଭେଲ୍ ।

ଦଶମ ଦିନ ସନ୍ଧ୍ୟାରେ ରୋଜଗାର କରିଥିବା ପଇସାତକ ଆଣି ମାଆକୁ ଦେଲା ପାଭେଲ୍ । ପଇସାତକ ଦେଇସାରି, କ'ଣ କହିବ ବୋଲି ଭାରୀ ଛକପକ ହେଉଥାଏ ସେ । ଶେଷକୁ ଥାଥା ମାମା ହୋଇ ଲାଜରେ ମୁହଁ ରଙ୍ଗା କରି କହିଲା :

"ଏ ମାଆ ମାଁ, କ'ଣ କଥାଟା କି, ବୁଝିଲୁ ? ମୋତେ ଗୋଟାଏ ସାଟିନ୍ ଜାମା ନେଳୀ ରଙ୍ଗର, ଏଇ ଗତ ବର୍ଷ ଯେମିତି ଗୋଟାଏ ଥିଲା ମାଁ, ତୋର ମନେ ନାହିଁ ? କିଣିଦେବୁ । ସେଥିରେ, ଏଥିରୁ ଅଧାଅଧି ପଇସା ଖର୍ଚ୍ଚ ହୋଇଯିବ । ହେଲେ ଚିନ୍ତା କର ନାହିଁ, ମୁଁ ଆହୁରି ରୋଜଗାର କରିବି । ମୋର ଏ ଜାମାଟା ଭାରୀ କୋତରା ହୋଇଗଲାଣି", କହିଲା ସେ, ସତେ ଯେମିତି ନିଜର ଏ ଅନୁରୋଧ ପାଇଁ ସେ କ୍ଷମା ମାଗୁଛି ।

"ମଅ ! ଏଇକଥା ପାଇଁ ଅଳି ? ନିଶ୍ଚେ କିଣିଦେବି । ଆଜି କନା କିଣି ଆଣିବି ରେ ପାଭ୍‌ଲୁଶା, ଆଜି ଆଣିବି । କାଲିକି ସିଲେଇ କରିଦେବି । ସତରେ ତ ତୋର ଗୋଟାଏ ନୂଆ ଜାମା ଦରକାର ।"

ମମତାବୋଳା ଗୃହାଣୀ ତାଙ୍କର ବୋଳି ହୋଇଗଲା ପୁଅର ଦେହସାରା ।

ଭଣ୍ଡାରୀ ଦୋକାନ ଦୁଆର ପାଖରେ ଥମିଗଲା ପାଭେଲ୍ । ପକେଟ୍‌ରେ ହାତ ପୂରାଇ ରୁବଲଟାକୁ ଛୁଇଁ ଦେଖିଲା, ତା'ପରେ ପଶିଲା ଭିତରକୁ ।

ବେଶ୍ ଫିଟ୍‌ଫାଟ ନାପିତ ଟୋକାଟି ତାକୁ ଦେଖିଲା । ତା'ପରେ ଗୋଟାଏ ଖାଲି ଥିବା ଚଉକିରେ ବସିବା ପାଇଁ ଠାରିଦେଲା ।

ନରମ ଗଦିପକା ଚଉକିରେ ବସିଲା ପାଭେଲ୍ । ଆଗରେ ଥିବା ଦର୍ପଣରେ ଗ୍ରହିଁଲା, ଆଗରେ ତା'ର ଗୋଟାଏ ବିବ୍ରତ, ବିକ୍ଷୁବ୍‌ଧ ମୁହଁ ।

"ଛୋଟ ଛୋଟ କରିଦେବି ?" ନାପିତ ପଗ୍ଚରିଲା ।

"ଏଁ ? ହଁ, ନାଁ ନାଁ, ଆଚ୍ଛା ଦେଖ, ମୋର ଗୋଟାଏ ଭଲ ବାଳକଟା ଦରକାର ବୁଝିଲ ? କ'ଣ ତାକୁ ତମେ କୁହଟି ?" ଅଟକି ଅଟକି ଥଙ୍ଗ ଥଙ୍ଗ ହୋଇ, ହତାଶରେ ହାତ ହଲାଇ, ଅଙ୍ଗଭଙ୍ଗୀ କରି ନାପିତକୁ ବୁଝାଇବାକୁ ଚେଷ୍ଟା କଲା ପାଭେଲ୍ ।

"ବୁଝିଲି, ବୁଝିଲି", ନାପିତ କହିଲା ।

ପ୍ରାୟ ପନ୍ଦର ମିନିଟ୍ ପରେ ଝାଳନାଳ ଆଣ୍ଠିଏ ହୋଇ, ସଇଁ ସଇଁ ହୋଇ, ସେ ଯନ୍ତ୍ରଣାରୁ ମୁକ୍ତି ପାଇ ବାହାରିଲା ପାଭେଲ୍ । ବାଳଗୁଡ଼ିକ ତା'ର ସୁନ୍ଦର ହୋଇ କଟା ହୋଇ କୁଣ୍ଡିଆ ହୋଇଥାଏ । ତା'ର ଅଖାଡୁଆ ଅଇରାବଇରା ବାଳଗୁଡ଼ାକୁ ବାଗକୁ ଆଣିବାକୁ ନାପିତକୁ ବହେ ପରିଶ୍ରମ କରିବାକୁ ପଡ଼ିଛି । ସବାଶେଷକୁ ପାଣି ଓ ପାନିଆର ଛିଡାପଟ ହେଲା ଓ ତା'ର କୁଞ୍ଚିକୁଞ୍ଚିଆ ହୋଇ ଜଟଭଳି ଟାଣ ହୋଇଆସିଥିବା ବାଳଗୁଡ଼ାକ ଏବେ ସଜାସଜି ହୋଇ ଯଥା ସ୍ଥାନରେ ରହିଥାନ୍ତି ।

ରାସ୍ତା ଉପରକୁ ବାହାରି ପାଭେଲ୍ ଗୋଟାଏ ସ୍ୱସ୍ତିର ନିଃଶ୍ୱାସ ଛାଡ଼ିଲା । ଓଃ ! ଆଖି ଉପରକୁ ଟୋପିଟାକୁ ଟାଣିଆଣିଲା ଟିକିଏ ।

"ମାଆ ମୋତେ ଦେଖିଲା ମାତ୍ରେ କ'ଣ କହିବ କେଜାଣି ?" ଭାବିଲା ସେ ।

* * *

ପାଭେଲ ନିଜ ପ୍ରତିଶ୍ରୁତି ରକ୍ଷା ନକରି ମାଛ ଧରିବା ପାଇଁ ନ ଯିବାରୁ କ୍ରମଶଃ ବିବ୍ରତ ହୋଇଉଠିଲା ତୋନ୍ୟା ।

ଚିଡ଼ିଉଠି ଭାବିଲା, "ଆରେ, ଏ କୋଇଲା ଯୋଗାଣିଆ ପିଲାଟାର ଆଦୌ ବିଗ୍ଚର ବୋଲି ଗୋଟାଏ ଜିନିଷ କିଛି ନାହିଁ !" କିନ୍ତୁ ଯେତେବେଳେ ବହୁଦିନ ଗଡ଼ିଗଲେ ବି ପାଭେଲ୍ ଗଲା ନାହିଁ, ତୋନ୍ୟା ସତରେ ଚିନ୍ତିତ ହୋଇଉଠିଲା, ତା'ର ବନ୍ଧୁତା ପାଇଁ ଝୁରିହେଲା ମନେ ମନେ ।

ଦିନେ କୁଆଡ଼େ ବୁଲି ବାହାରିଛି, ହଠାତ୍ ମାଆ ତା' ବଖରା ଭିତରକୁ ପଶିଆସି କହିଲେ, "ତୋତେ କିଏ ଜଣେ ଖୋଜୁଛି ଲେ ତୋନ୍ୟା, ତାକୁ ଭିତରକୁ ଡାକିଦେବି ?"

ଦୁଆର ମୁହଁରେ ଦେଖାଗଲା ପାଭେଲ୍ । ଏତେ ବଦଳିଯାଇଛି ଏଥି ମଧ୍ୟରେ ଯେ, ତୋନ୍ୟା ପହିଲେ ଚିହ୍ନିପାରିଲା ନାହିଁ ତାକୁ ।

ପୂରାପୂରି ନୂଆ ନୀଳ ସାଟିନ୍ କୁର୍ତ୍ତା ଓ କଳା ଟ୍ରାଉଜର ପିନ୍ଧିଥାଏ ସେ । ବୁଟ୍‌ହଳକ ପାଲିଶ୍ ହୋଇ ଝକ୍‌ଝକ୍ ଦିଶୁଥାଏ । ତୋନ୍ୟା ଦେଖିଲା, ଠିଆ ଠିଆ ବାଳଗୁଡ଼ାକ ସୁସଜ୍ଜିତ ହୋଇଛି କୁଣ୍ଡା ହୋଇ ।

ପୁରୁଣା ସେ ମଇଳାକୋଚରା କୋଇଲା ଯୋଗାଣିଆ ତରୁଣର ରୂପାନ୍ତର ଘଟିଥାଏ ଯେମିତି !

ତୋନ୍ୟା ନିଜର ବିସ୍ମୟଟାକୁ ପ୍ରାୟ ପ୍ରକାଶ କରିଦେବାକୁ ଯାଉଥିଲା, ତା'ପରେ ନିଜକୁ ରୋକିନେଲା, କାଳେ ସେ ଲଜ୍ଜିତ, ଅପ୍ରତିଭ ହୋଇଉଠିବ ବୋଲି । ଆଗଭଳି ଅସ୍ୱସ୍ତି କିନ୍ତୁ ଯାଇ ନ ଥିଲା ପାଭେଲ୍‌ର । ତେଣୁ ତା'ର ଚେହେରାର ଆମୂଳ ଏ ପରିବର୍ତ୍ତନ, ସତେ ଯେମିତି ସେ ଲକ୍ଷ୍ୟ କରି ନାହିଁ ଆଦୌ, ସେମିତି ଛଳନା କରି ତାକୁ ଗାଳି ଦେବାକୁ ଆରମ୍ଭ କରିଦେଲା ସାଙ୍ଗେ ସାଙ୍ଗେ :

"ମାଛ ଧରିବା ପାଇଁ ଆସିଲ ନାହିଁ କାହିଁକି ? ଲାଜ ଲାଗୁ ନାହିଁ ଟିକେ ? ଏମିତି ସବୁ ଜବାବ୍ ରଖନ୍ତି ଲୋକେ ଜବାବ୍ ଦେଇ ?"

"ଏ ଦିନାକେତେ ଧରି ମୋତେ କରତକଳରେ କାମ କରିବାକୁ ପଡ଼ୁଛି, ଆଦୌ ବାହାରି ପାରୁ ନ ଥିଲି ।"

ନୂଆ ଜାମା ଓ ଟ୍ରାଉଜର ହଳକ କିଣିବା ପାଇଁ ଏଇ କେତେ ଦିନ ଧରି ଯେ ତାକୁ ପ୍ରାଣମୂର୍ଚ୍ଛା ଖଟିବାକୁ ପଡ଼ିଛି, ଏକଥା ପ୍ରକାଶ କରିପାରିଲା ନାହିଁ ସେ ତୋନ୍ୟା ଆଗରେ ।

ତୋନ୍ୟା କିନ୍ତୁ ଛାଆଁକୁ ଛାଆଁ ଜାଣିନେଲା ସତ କଥାଟା, ଆଉ ଜାଣିବା ମାତ୍ରେ ତା'ର ରାଗ କୁଆଡ଼େ ଉଭେଇଗଲା ।

"ଚାଲ ଯିବା, ସେ ପୋଖରୀ କୂଳରେ ଟିକେ ବୁଲିଆସିବା", ପ୍ରସ୍ତାବ ଦେଲା ସେ ଏବଂ ଦୁହେଁ ବଗିଚା ବାଟଦେଇ ରାସ୍ତା ଉପରକୁ ଆସିଲେ ।

ଖଣ୍ଡେବାଟ ଗଲାପରେ ପାଭେଲ୍ ତୋନ୍ୟା ଆଗରେ ବଖାଣୁଥିଲା ଲେଫଟ୍‌ନାଣ୍ଟର ରିଭଲଭର ଚୋରୀ କରିବା କଥା । ଅନ୍ତରଙ୍ଗ ବନ୍ଧୁ ଭାବରେ ତା'ର ଏ ଗୋପନତମ କଥାଟି କହିସାରି, ପ୍ରତିଶ୍ରୁତି ଦେଇଥାଏ, ଏଇ କେଇଦିନ ଭିତରେ ଶୀଘ୍ର ଯିବେ ସେମାନେ ଜଙ୍ଗଲ ଭିତରକୁ ଗୁଳି ମାରିବା ପାଇଁ ।

"କିନ୍ତୁ ଦେଖ, ମୋତେ ଆଉ ଧରା ପକାଇଦେବ ନାହିଁଟି ?"

"କେବେହେଲେ ଧରା ପକେଇବି ନାହିଁ", ରାଣ ପକାଇଲା ତୋନ୍ୟା ।

# ଚତୁର୍ଥ ପରିଚ୍ଛେଦ

ସାରା ୟୁକ୍ରାଇନ୍‌ରେ ନିର୍ମମ, ଭୟଙ୍କର ଭାବରେ ଶ୍ରେଣୀ ସଂଗ୍ରାମର ନିଆଁ ଜଳିଉଠିଥାଏ । ଦିନକୁ ଦିନ ଅଧିକରୁ ଅଧିକ ଲୋକ ସେ ନିଆଁରେ ଝାସ ଦେଇ ଅସ୍ତ୍ର

ଧରୁଥାନ୍ତି ସଂଘର୍ଷ ପାଇଁ, ଆଉ ପ୍ରତ୍ୟେକଟି ସଂଘର୍ଷରୁ ଜନ୍ମ ନେଉଥାନ୍ତି ନୂଆ ନୂଆ ଯୋଦ୍ଧା ।

ଶାନ୍ତି ଓ ନୀରବତାର ସେ ସୁଦିନଗୁଡ଼ିକ କାହିଁ କୁଆଡ଼େ ଉଭେଇଗଲା ସମ୍ମାନିତ ନାଗରିକମାନଙ୍କ ଜୀବନରୁ ।

ଗୁଳିଗୋଳା, କମାଣର ଆଗ୍ନେୟ ଝଡ଼ରେ ଗୋଟାକୁ ଗୋଟା ଛୋଟ ଛୋଟ ଭଗ୍ନପ୍ରାୟ ଘରଗୁଡ଼ିକ ଥରିବାକୁ ଲାଗିଲା । ସମ୍ମାନିତ ନାଗରିକମାନେ କାହିଁ କୁଆଡ଼େ ଲୁଚିଲେ ଯାଇ, ଘର ଆଟୁରେ ନ ହେଲେ ପଛପଟର ଗହ୍ୱରଗୁଡ଼ିକ ଭିତରେ ।

ହିମବାହର ପ୍ରବଳ ସ୍ରୋତ ଭଳି ନାନା ଢଙ୍ଗର, ନାନା ରୂପର ଦଳକୁ ଦଳ ଅତ୍ୟାଚାରୀ, ଲୁଣ୍ଠନକାରୀ ଦସ୍ୟୁ ଚତୁର୍ଦ୍ଦିଗରେ ବ୍ୟାପିଯିବାକୁ ଲାଗିଲେ—ପେଟ୍‌ଲ୍ୟୁରା ଦସ୍ୟୁ ଲୁଣ୍ଠନକାରୀର ଦଳସବୁ ସ୍ଥାନ ପରେ ସ୍ଥାନ ଦଖଲ କରିଗଲେ । ଛୋଟ ବଡ଼ ସର୍ଦ୍ଦାର, ସାମନ୍ତମାନଙ୍କ ନେତୃତ୍ୱରେ ଯେତେ ସବୁ ବିଭିନ୍ନ ପ୍ରକାରର ଡକାଇତ ଖେଳାଇ ହୋଇଗଲେ, ଛାଇଗଲେ ୟୁକ୍ରାଇନ୍‌ର ସରକାର ଶାସିତ ଅଞ୍ଚଳସାରା ।

ଜାର ଅମଳର ଭୂତପୂର୍ବ ସାମରିକ ଅଫିସରମାନେ ୟୁକ୍ରାଇନ୍ ସୋସାଲିଷ୍ଟ ରିଭଲ୍ୟୁସନାରି ଦଳର ଲୋକେ ଦକ୍ଷିଣ ଓ ବାମ ଉଭୟପକ୍ଷୀ ଯେକୌଣସି ହତାଶ ଲୋକ, ଯିଏ ଦଳେ ଡଣ୍ଡିକଟାଙ୍କୁ ପୋଷିପାରିଲା କି ହାତ କରିପାରିଲା, ସମସ୍ତେ ନିଜନିଜକୁ ଆତାମାନ୍ ସର୍ବେସର୍ବା ବୋଲି ଘୋଷଣା କରି ପେଟ୍‌ଲ୍ୟୁରାର ପୀତ ଓ ନୀଳ ପତାକା ଉଡ଼ାଇବାକୁ ଲାଗିଲେ—ସେମାନଙ୍କ ଅଧିକାରକୁ ଆସିଥିବା ବା ଶକ୍ତିରେ ଥିବା ଅଞ୍ଚଳମାନଙ୍କରେ ନିଜର କର୍ତ୍ତୃତ୍ୱ ଜାହିର କରି ।

'କୁଲକ୍' ଓ ଗାଲିସିନ୍ ଫୌଜଙ୍କ ଦ୍ୱାରା ଅଧ୍ୟୁଷିତ ଆତାମାନ୍ କୋନୋଭାଲେଟ୍ସ ଅବରୋଧ ବାହିନୀର ଏହିସବୁ ବାରମିଶା ଡକାଇତ ଦଳଙ୍କୁ ନେଇ "ପ୍ରଧାନ ଆତାମାନ୍" ନିଜର ସୈନ୍ୟବାହିନୀ ଓ ଫୌଜ ଗଠନ କରିବାକୁ ଲାଗିଲା । ଯେତେବେଳେ ବିପ୍ଲବୀ ଲାଲ୍‌ଫୌଜ ସୋସାଲିଷ୍ଟ ରିଭଲ୍ୟୁସନାରି ଓ କୁଲକ୍‌ମାନଙ୍କୁ ନିର୍ଘାତ କଠୋରଭାବରେ ଦମନ କରିବାକୁ ଆସିଲେ, ସେତେବେଳେ ସହସ୍ର ସହସ୍ର ଅଶ୍ୱଖୁରାର ଟାପୁରେ, ଯାନ୍ତ୍ରିକ କମାଣବାହୀ ଶକଟ ଚକ୍ରର ଘର୍ଘର ନାଦରେ ସାରା ପୃଥିବୀ ଥରଥର ହୋଇ କମ୍ପି ଉଠିଲା ।

ଉଣେଇଶ ଶହ ଉଣେଇଶ ମସିହାର ସେହି ବିକ୍ଷୁବ୍ଧ ଏପ୍ରିଲ୍‌ରେ ସାଧାରଣ ଭଦ୍ର ଗୃହସ୍ଥ ତଟସ୍ଥ, ଭୟଭୀତ ହୋଇ ଭାରୀ ନିଦ ମଳ ମଳ ଆଖିରେ ସକାଳୁ ନିଜ ଘରର ଝରକାଟି ଅଳ୍ପ ଖୋଲି ଛନଛନ ହୋଇ ଉଁକି ଦେଉଥାଏ ଆଉ ପଡ଼ୋଶୀକୁ ଅଭିବାଦନ କରିସାରି ଉଦ୍‌ବେଗ ପ୍ରକାଶ କରି ପଚାରିଉଠେ :

"ଆଭ୍‌ତୋନୋମ୍ ପେଟ୍ରୋଭିଚ୍, ତମେ ଜାଣିଛ କି ଆଜି କିଏ ଅଛି କ୍ଷମତାରେ ?"

ଆଭ୍‌ତୋନୋମ୍ ପେଟ୍ରୋଭିଚ୍ ଟ୍ରାଉଜର ଭିଡ଼ିଭାଡ଼ି ହୋଇ ଭୟରେ କନକନ ହୋଇ ଚାରିଆଡ଼କୁ ଆଖି ବୁଲାଇଆଣି କୁହେ :

"ନାହିଁ, ଆଫାନାସ୍ କିରିଲୋଭିଚ୍, ମୁଁ କହିପାରିବି ନାହିଁ ସେକଥା । ଗଲା

ରାତିରେ କିନ୍ତୁ କେହି ସହରକୁ ଆସିଛି, ଆଉ ଟିକେ ଗଲେ ଜଣାପଡ଼ିଯିବ ଯେ ବଳେ, କିଏ ସିଏ । ଯଦି ଇହୁଦୀଙ୍କୁ ଲୁଟପାଟ କରିବାକୁ ଆରମ୍ଭ କରନ୍ତି, ଜାଣିବା ଯେ ସେମାନେ ପେଟ୍‌ଲ୍ୟୁରା ଲୋକେ, ଆଉ ଯଦି ସେମାନେ 'କମ୍ରେଡ୍' ହୋଇଥିବେ ନାଁ, ସେମାନଙ୍କ କଥାବାର୍ତ୍ତାରୁ ତ ଚଟ୍‌କିନା ବାରି ହୋଇଯିବ । ମୁଁ ପରା ଖାଲି ଅନେଇ ବସିଛି, ଜାଣିଲୁ ମାତ୍ରେ କାହାରି ହେଲେ ଫଟୋ ଯାଇଁ ଟାଙ୍ଗିବି କାନ୍ଥରେ । ନ ହେଲେ ବୁଝୁନ, ସେ ଆମ ପଡ଼ିଶା ଗେରାସିମ୍ ଲେଓନ୍ତିଯେଭିଚ୍‌ଙ୍କ ଭଳି ଅବସ୍ଥାରେ ପଡ଼ିବ ମିଛରେ । ଦେଖୁନ ? ବିଚରା ନ ଜାଣି, ନ କରି ଯାଇଁ ଲେନିନ୍‌ଙ୍କ ଚିତ୍ରଟାଏ ଟଙ୍ଗାଇ ଦେଇଛି କି ନାହିଁ, ତିନିଟା ଲୋକ ତ ଲୁଣ୍ଠ୍‌ଭାଷ ହୋଇ ପଶିଆସିଲେ—ପେଟ୍‌ଲ୍ୟୁରା ଲୋକଗୁଡ଼ାକ ! ଚିତ୍ରଟା ଉପରେ ଆଖି ପଡ଼ିଲା ମାତ୍ରେ ତା ଉପରକୁ କୁଦିଆସିଲେ, ଆଉ ବସେଇ ଦେଇଗଲେ କଷି କଷି କୋଡ଼ିଏ ପାହାର । କହୁଥାନ୍ତି: 'କମ୍ୟୁନିଷ୍ଟ କୁରା କୋଉଠିକାର । ତୋ ଛାଲ ଉତାରି ଦେବୁ!' ଯେତେ ପ୍ରକାରେ ବୁଝାଇବାକୁ ଚେଷ୍ଟା କଲା ସେ, ଯେତେ ବଡ଼ପାଟିରେ କାନ୍ଦବୋବାଳି ପକେଇଲା ପଛେ, ଆଉ କ'ଣ ଛାଡ଼ିଲେ ?"

ଦଳେ ସଶସ୍ତ୍ର ଲୋକ ରାସ୍ତାରେ ଆସିବାରେ ଜାଣିଲେ, ଲୋକେ କବାଟ ଝରକା କିଳିଦେଇ, ଲୁଚିଯାଆନ୍ତି ଯେଝା ଜାଗାରେ । ଆପେ ବଞ୍ଚିଲେ ବାପର ନାଁ !

ଶ୍ରମିକମାନେ ପେଟ୍‌ଲ୍ୟୁରାର ଡକାଇତଙ୍କର ହଳଦିଆ-ନୀଳ ପତାକାକୁ ଘୃଣା ଚକ୍ଷୁରେ ଦେଖୁଥାନ୍ତି ମନ ଭିତରେ । ଶକ୍ତିଶାଳୀ ୟୁକ୍ରେନୀୟ ବୁର୍ଜୁଆଙ୍କର ହଠକାରିତା ସମ୍ମୁଖରେ ସେମାନେ ଶକ୍ତିହୀନ ଥାଆନ୍ତି, କିନ୍ତୁ ତାଙ୍କର ଶକ୍ତି ଜାଗ୍ରତ ହୁଏ ଯେତେବେଳେ, ଦଳକୁ ଦଳ ଫୌଜ ଆସି ଘେରିଆଡ଼ୁ ହଳଦୀ-ନୀଳ ପତାକା ଉପରେ ଝାମ୍ପି ପଡ଼ି ଭୀଷଣ ଯୁଦ୍ଧ କରନ୍ତି ଓ ସେମାନଙ୍କୁ ପଛକୁ ପଛକୁ ପେଲି ପଶିଆସୁଥାନ୍ତି ସହର ଭିତରକୁ । ଦିନେ କି ଦୁଇଦିନ ପାଇଁ ଶ୍ରମିକମାନଙ୍କର ଇପ୍‌ସିତ ପ୍ରିୟ ପତାକାଟି ଟାଉନ୍ ହଲ୍ ଉପରେ ଫରଫର ଉଡ଼େ । ମାତ୍ର ତା'ପରେ ସେମାନେ ଆଗେଇ ଚାଲନ୍ତି ଏବଂ ଯେଉଁ ତିମିରକୁ ସେଇ ତିମିର ମାଡ଼ିଆସେ ପୁଣି ।

ଏବେ ସହରଟି ଟ୍ରାନ୍‌ସନୀପର ବାହିନୀର "ଆଶା ଓ ଗର୍ବ"ର ଅଧିନାୟକ କର୍ଣ୍ଣେଲ ଗୋଲୁବ୍‌ଙ୍କ ଅଧୀନରେ ।

ଦିନକ ଆଗରୁ, ସେ ଓ ତାଙ୍କ ଦଳର ଦୁଇ ସହସ୍ର ଡଣ୍ଡିକଟା ଦଳ ବିଜୟ ଦର୍ପରେ ସହରରେ ପ୍ରବେଶ କରିଥାଆନ୍ତି । ପ୍ରକାଣ୍ଡ ଗୋଟାଏ କଳା ରଙ୍ଗର ଘୋଡ଼ା ଉପରେ ବସି ସୈନ୍ୟବାହିନୀର ଆଗରେ ଚାଲିଥାଏ ପ୍ୟାନ୍ କର୍ଣ୍ଣେଲ ତାଙ୍କର । ତାକୁ ନାଁ ଦେଇଥାନ୍ତି ପ୍ୟାନ୍ ବୋଲି । ଏପ୍ରିଲ୍ ମାସର ପ୍ରଚଣ୍ଡ ଖରାରେ ବି ପିନ୍ଧିଥାଏ ଗୋଟାଏ କକେସୀୟ ବୁର୍କା । ମେଣ୍ଢା ଚମରେ ତିଆରି ଜାପୋରୋଝସି କସାକ୍ ଟୋପି, ସେଥିରେ ରାସ୍ପବେରୀ କୋଳି ରଙ୍ଗର ଲାଲ ମୁକୁଟ ଚିହ୍ନ ଥାଏ । ଚେର୍କେସା ବି ପିନ୍ଧିଥାଏ । ଆଉ ଯଥା ଯଥା ସ୍ଥାନରେ ଝୁଲୁଥାଏ ଅସ୍ତ୍ରଶସ୍ତ୍ରସବୁ—ପିଟା ରୂପାର ବେଣ୍ଟଲଗା ଖଣ୍ଡା ଓ ଛୁରୀ । ଦି'ଦାନ୍ତ ମଝିରେ ଚିପିଧରିଥାଏ ବଙ୍କା ପାଇପ୍‌ଟାଏ ।

ପ୍ୟାନ୍ କର୍ଣ୍ଣେଇ ଗୋଲୁବ୍ ବେଶ୍ ସୁନ୍ଦର ଚେହେରାର ଲୋକଟିଏ । ଟଣା ଟଣା କଳା ଭୁଲତା, ପାଉଁଶିଆ ଲୋଥା ଦେହର ବର୍ଣ୍ଣଟା । ସେଥିରେ ପୁଣି ଅନବରତ ମଦ ପିଇବା ଫଳରେ, କେମିତି ଗୋଟାଏ ସବୁଜିଆ ପଡ଼ିଯାଇଛି ।

ବିପ୍ଳବ ପୂର୍ବରୁ ଏଇ ପ୍ୟାନ୍ କର୍ଣ୍ଣେଇ ଥିଲା ଗୋଟାଏ ଚିନିବିଶୋଧନ କାରଖାନାର ଗାଜର ଫାର୍ମରେ । କୃଷିବିଜ୍ଞାନୀ ସେ ଥିଲା । କିନ୍ତୁ ଆତାମାନ୍‌ଙ୍କ ତୁଳନାରେ ସେଇଟା ଗୋଟାଏ ମାମ୍ବା ଧରଣର ପେଶା ଥିଲା । ତେଣୁ ସାରା ଦେଶରେ ଏହି ପଙ୍କିଳ କାଳିମାର ସ୍ରୋତ ଖେଳିଗଲା ବେଳେ, କୃଷିବିଜ୍ଞାନୀ ହଠାତ୍ ପ୍ୟାନ୍ କର୍ଣ୍ଣେଇ ଗୋଲୁବ୍ ରୂପରେ ଆବିର୍ଭୂତ ହେଲେ ।

ନବ ଆଗନ୍ତୁକମାନଙ୍କୁ ସଂବର୍ଦ୍ଧନା ଜଣାଇବା ଉଦ୍ଦେଶ୍ୟରେ, ସହରର ଏକମାତ୍ର ରଙ୍ଗାଳୟରେ ମହା ସମାରୋହ ଆରମ୍ଭ ହୋଇଗଲା । ପେଟ୍‌ଲ୍ୟୁରା ବୁଦ୍ଧିଜୀବୀ ଗୋଷ୍ଠୀର ବଛା ବଛା 'ଫୁଲ' ଆସି ଠୁଳ ହେଲେ । ୟୁକ୍ରେନୀୟ ଶିକ୍ଷକବୃନ୍ଦ, ଯାଜକଙ୍କର ଦି'ଝିଅ– ସୁନ୍ଦରୀ ଆନ୍ୟା ଓ ତା'ଠାରୁ ଭଉଣୀ ଡିନା, ଟିକେ ସାମାଜିକ ଚଳଣି ଦୃଷ୍ଟିରୁ ନିମ୍ନସ୍ତରର ସ୍ତ୍ରୀଲୋକେ, କାଉଣ୍ଟ ପୋଟୋତ୍‌ସ୍କିଙ୍କର ଘରର ପୂର୍ବତନ ଅଧିବାସୀମାନେ, ନିଜକୁ "ସ୍ୱାଧୀନ କସାକ୍" ବୋଲଉଥିବା ୟୁକ୍ରେନୀୟ ସୋସାଲିଷ୍ଟ ରିଭଲ୍ୟୁସନାରିଙ୍କର ସନ୍ଦେଶବାହୀ ଅଳ୍ପ କେତେଜଣ ମଧ୍ୟବିର, ଏମାନେ ସମସ୍ତେ ଆସି ଜମାହେଲେ ସଂବର୍ଦ୍ଧନାରେ ।

ରଙ୍ଗାଳୟ ପୂର୍ଣ୍ଣ । ତିଳ ଧାରଣ ପାଇଁ ଆଉ ସ୍ଥାନ ରହିଲା ନାହିଁ । ସୁନ୍ଦର ସୁନ୍ଦର ଫୁଲପକା, ଜରିଲଗା, ନାନା ରଙ୍ଗବେରଙ୍ଗୀ ଚିତ୍ରିତ ୟୁକ୍ରାଇନ୍‌ର ଜାତୀୟ ପୋଷାକ ପିନ୍ଧି ଆସିଥିବା ନାରୀ, ଧର୍ମଯାଜକଙ୍କର ଦୁଇ ଝିଅ ଏବଂ ଶିକ୍ଷୟିତ୍ରୀମାନଙ୍କ ଗ୍ରରିପଟେ ଜୋତା ମଚ୍‌ମଚ୍ କରି ଘୂରିବାକୁ ଲାଗିଲେ, ଗୋଇଠିକି ଗୋଇଠି ବଜାଇ, ଜାପୋରୋଝିୟେ କସାକ୍‌ମାନଙ୍କ ପ୍ରାଚୀନ ପଟ୍ଟଚିତ୍ରର ଅବିକଳ ନକଲ ଭଳି ହୋଇଥିବା ଅଫିସରମାନେ ।

ଉଚ୍ଚସ୍ୱରରେ ସାମରିକ ବ୍ୟାଣ୍ଡ ବାଜିଉଠିଲା । ମଞ୍ଚ ଉପରେ ଧାଁଦଉଡ଼ ଗ୍ରଲିଥାଏ । 'ନାଜାର୍ ସ୍ତୋଦୋଲି' ଅଭିନୟର ପ୍ରସ୍ତୁତି, ଯାହା ସେଦିନ ସନ୍ଧ୍ୟାରେ ଅଭିନୀତ ହେବାର ଥାଏ ।

ବିଜୁଳି ସରବରାହ ନଥାଏ ଏବଂ ଏକଥା ପ୍ୟାନ୍ କର୍ଣ୍ଣେଇଙ୍କୁ ଯଥା ସମୟରେ ଜଣାଇଦେଲେ ତାଙ୍କର ସହକାରୀ ସବ୍‌ଲେଫଟ୍‌ନାଣ୍ଟ ପୋଲ୍ୟାନ୍‌ସ୍କେଭ୍ । ପୋଲ୍ୟାନ୍‌ସ୍କେଭ୍ ଏବେ ତାଙ୍କ ନାଁକୁ ନିପଟ ୟୁକ୍ରେନୀୟ ଢଙ୍ଗରେ ବଦଳାଇ ଦେଇଥାନ୍ତି ଖୋରୁନ୍‌ଝି ପାଲ୍ୟାନିହା ଭାବରେ । ସେଦିନ ସନ୍ଧ୍ୟାକୁ ନିଜ ଉପସ୍ଥିତି ଦେଇ ଧନ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଇଥିବା କର୍ଣ୍ଣେଇ ପୋଲ୍ୟାନ୍‌ସ୍କେଭ୍‌ଙ୍କଠାରୁ ସବୁ ଶୁଣି ସ୍ୱାଭାବିକ ଔଦ୍ଧତ୍ୟରେ ସହଜଭାବରେ କହିଲେ :

"ଦେଖ, ଯେମିତି ହେଲେ ବିଜୁଳି ଯେପରି ଗ୍ରଲେ, ଯେଉଁଠୁ ହେଲେ ଜଣେ ବିଜୁଳି ମିସ୍ତ୍ରୀ ଖୋଜିଆଣି ବିଜୁଳି କେନ୍ଦ୍ର ଗ୍ରଲୁକରାଅ– ତମେ ମର କି ବଞ୍ଚ ।"

"ତାହାହିଁ ହେବ ପ୍ୟାନ୍ କର୍ଣ୍ଣେଲ ।"

ଖୋଜ୍ଜନ୍ଝି ପାଲ୍ୟାନିସ୍କା ଅଳ୍ପ ଚେଷ୍ଟାରେ ଆଦୌ ନ ମରି ବିଜୁଳି ମିସ୍ତ୍ରୀ ପାଇଗଲେ । ଦି' ଘଣ୍ଟା ଭିତରେ ପାଭେଲ୍ ଓ ଆଉ ଦୁଇଜଣ ଶ୍ରମିକଙ୍କୁ ସଶସ୍ତ୍ର ପ୍ରହରୀଙ୍କ ସହିତ ବିଦ୍ୟୁତ୍ କେନ୍ଦ୍ରକୁ ପଠାଗଲା ।

"ସାତଟା ଭିତରେ ଯଦି ଆଲୁଅ ନ ଜଳେ, ମୁଁ ତମ ତିନିଙ୍କୁ ଟାଙ୍ଗି ଦେବି ।" ଛାତର ଗୋଟାଏ ଲୁହା କଡ଼ିକୁ ଦେଖାଇ କଠୋର ଭାବରେ କହିଲା ପାଲ୍ୟାନିସ୍କା ।

ଅବସ୍ଥାର ଏପରି ଭୟାବହ ରୂପର ଆଶଙ୍କା ବେଶ୍ ଫଳିଲା, ନିର୍ଦ୍ଧାରିତ ସମୟରେ ଆଲୁଅ ଜଳିଉଠିଲା ।

ସନ୍ଧ୍ୟା ଆସରଟା ଠିକ୍ ଜମି ଆସିଲା ବେଳକୁ ପ୍ୟାନ୍ କର୍ଣ୍ଣେଲ ଓ ତାଙ୍କ ପ୍ରେୟସୀଙ୍କ ସାଙ୍ଗରେ, ସେ ଯେଉଁଘରେ ରହୁଥାନ୍ତି, ସେ ଘରମାଲିକ ମଦଦୋକାନୀର ଥାକୁଲୁଥୁଲୁ ସୁନେଲୀ ବାଳର ଝିଅ ଆସି ପହଞ୍ଚିଲେ ।

ଥିଲାବାଲା ବାପ ତା'ର । ସେଥିପାଇଁ ଝିଅକୁ ସହର ସ୍କୁଲରେ ପାଠ ପଢ଼ାଇଥାଏ ।

ସମ୍ମାନିତ ଅତିଥିଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ଆସନରେ ଦୁହେଁ ବସିସାରିଲା ପରେ ପ୍ୟାନ୍ କର୍ଣ୍ଣେଲ ଇସାରା ଦେଲେ । ତାଙ୍କ ଇସାରା ପାଇଲା ମାତ୍ରେ ପରଦାଟା ଏତେ ଶୀଘ୍ର ଉଠିଲା ଯେ, ଲୋକେ ମଞ୍ଚ ଉପରୁ ଭିତରକୁ ତରବରରେ ପଶିଯାଉଥିବା ନିର୍ଦ୍ଦେଶକଙ୍କୁ ବି ଦେଖି ପକେଇଲେ ।

ଅଭିନୟ ଗ୍ଲଲିଥିବା ସମୟରେ, ଅଫିସର ଆଉ ତାଙ୍କର ପ୍ରେୟସୀମାନେ ଜଳଖିଆ ଦୋକାନର କାଉଣ୍ଟରରେ ସର୍ବମୟ କର୍ତ୍ତା ପାଲ୍ୟାନିସ୍କା ଯୋଗାଣ କରିଥିବା ଘରରନ୍ଧା କଡ଼ାମଦ, ସାମୋଗୋନ୍ ଆଉ ଦୋକାନୀମାନଙ୍କଠାରୁ ଜବରଦସ୍ତି ଆଣିଥିବା ମିଠା, ଅନ୍ୟାନ୍ୟ ଜଳଖିଆରେ ସମୟ ବିତାଇ ଦେଉଥାନ୍ତି । ଅଭିନୟ ସରିଲାବେଳକୁ ସେମାନେ ସମସ୍ତେ ପ୍ରାୟ ଅଣାୟତ୍ତ ହୋଇ ଉଠିଲେଣି ।

ଶେଷ ଦୃଶ୍ୟ ପରେ ପରେ ପାଲ୍ୟାନିସ୍କା ରଙ୍ଗମଞ୍ଚ ଉପରକୁ ଲମ୍ଫ ଦେଇ ଉଠିପଡ଼ିଲା । ଅତି ନାଟକୀୟ ଢଙ୍ଗରେ ବାହା ହଲାଇ ହଲାଇ ସେ ଆରମ୍ଭ କଲା :

"ଭଦ୍ର ମହୋଦୟା ଓ ମହୋଦୟଗଣ, ଆଉ ଟିକେ ପରେ ନୃତ୍ୟ ଆରମ୍ଭ ହେବ ।"

କରତାଳି ଧ୍ୱନି ଓ ଆନନ୍ଦର ଉଚ୍ଛ୍ୱାସରେ ଭରିଗଲା ଘରଟା ସାରା ଏବଂ ଦେଖଣାହାରୀମାନେ ସମସ୍ତେ ଅଗଣାକୁ ଉଠିଗଲେ । ଏହି ଅବସରରେ ପେଟ୍‌ଲ୍ୟୁରା ସୈନିକମାନେ ଚଉକିସବୁ କାଢ଼ି ନେଇ ନାଚ ପାଇଁ ହଲ୍‌ଟିକୁ ପରିଷ୍କାର କରିଦେବେ ବୋଲି ।

ଅଧଘଣ୍ଟାକ ପରେ ଥିଏଟର ହଲ୍‌ଟି ଉନ୍ମାଦ ନୃତ୍ୟ ଦୃଶ୍ୟରେ ପୂରିଗଲା ।

ପେଟ୍‌ଲ୍ୟୁରା ଅଫିସରମାନେ ସମସ୍ତ ଲଜ୍ଜସରମ, ବାଧାବନ୍ଧନ ଫିଙ୍ଗି ଦେଇ ଉତ୍ତାପରେ ଭରପୂର ସ୍ଥାନୀୟ ତରୁଣୀମାନଙ୍କ ସହିତ ଉନ୍ମତ୍ତ ନୃତ୍ୟ ଆରମ୍ଭ କରିଦେଲେ । ଭାରୀ ବୁଟ୍‌ର ଶବ୍ଦରେ ଥିଏଟର ଘରଟା ସାରା ଦୁଲ୍‌ଦୁଲ୍ ହୋଇ କମ୍ପି ଉଠିଲା ।

ଇତ୍ୟବସରରେ, ଅଟାକଳ ଆଡ଼ୁ ଦଳେ ଅଶ୍ୱାରୋହୀ ସଶସ୍ତ୍ର ସୈନିକ ସହରଆଡ଼କୁ ଆସୁଥିଲେ ।

ସହର ସୀମାନ୍ତରେ ଥିବା ପେଟ୍ଲ୍ୟୁରା ପ୍ରହରୀମାନେ, ଆଗନ୍ତୁକ ସୈନିକମାନଙ୍କର କମାଣ ଗର୍ଜନରେ ଆତଙ୍କିତ ହୋଇ ସତର୍କ, ସଜାଗ ହୋଇଉଠିଲେ । ରାତ୍ରିର ନିର୍ଜନତା ଭେଦକରି ସେମାନଙ୍କ ପୋଷାକ ସହ ଥିବା ବେଲ୍ଟ, ଅସ୍ତ୍ରଶସ୍ତ୍ର ଝନତ୍କାର କରିଉଠିଲା ।

ଅନ୍ଧକାର ଭେଦକରି ଶୁଭିଲା ସେମାନଙ୍କର ତୀକ୍ଷ୍ଣ ଆହ୍ୱାନ :

"କିଏ ସେ ଆସୁଛ ? ଛିଡ଼ାହୁଅ !"

ଦୁଇଟି କଳା କଳା ରୂପ, ଏଥର ଅନ୍ଧାର ଭିତରୁ ସ୍ପଷ୍ଟ ହୋଇଉଠିଲା । ସେଥି ମଧ୍ୟରୁ ଜଣେ ଆଗେଇ ଆସି କର୍କଶ ସ୍ୱରରେ ଚିହ୍ନାର କରି କହିଲା :

"ଆତାମାନ୍ ପାଭ୍ଲ୍ୟୁକ୍ ଓ ତାଙ୍କର ବାହିନୀ, ତମେ କିଏ ? ଗୋଲୁବ୍‌ର ଲୋକ ?"

"ହଁ, ଠିକ୍ କଥା", ପାଦେ ଦି'ପାଦ ଆଗେଇ ଆସିଥିବା ଅଫିସର ଜଣକ ଜବାବ ଦେଲା ।

"ମୋ ଲୋକଙ୍କୁ କେଉଁଠି ରଖିବି ?" ପାଭ୍ଲ୍ୟୁକ୍ ପଚାରିଲା ।

"ମୁଁ ସାଙ୍ଗେ ସାଙ୍ଗେ ହେଡ୍‌କ୍ୱାର୍ଟରସ୍‌କୁ ଫୋନ୍ କରି ବୁଝିଦେଉଛି", କହି ଅଫିସର ଜଣକ ରାସ୍ତାକଡ଼ର ଗୋଟିଏ ଛୋଟିଆ କୁଡ଼ିଆ ଭିତରକୁ ପଶିଗଲା ।

ମିନିଟକ ପରେ ସେ ବାହାରି ଆସିଲା ଓ ଆଦେଶ ଦେବାକୁ ଆରମ୍ଭ କଲା :

"ରାସ୍ତା ଉପରୁ ମେସିନ୍‌ଗନ୍ ଘୁଞ୍ଚାଇନିଅ ! ମାନ୍ୟବର ଆତାମାନ୍‌ଙ୍କୁ ଯିବାକୁ ଦିଅ !"

ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ ହୋଇଥିବା ଥିଏଟର ଘର ଆଗରେ, ପାଭ୍ଲ୍ୟୁକ୍ ଘୋଡ଼ାର ଲଗାମ ଟାଣି ଅଟକାଇଲେ । ଅନେକ ଲୋକ ରୁଣ୍ଡ ହୋଇଥାଆନ୍ତି ବାହାରେ, ଖୋଲା ଜାଗାରେ ।

ତାଙ୍କ କଡ଼େ କଡ଼େ ଘୋଡ଼ାରେ ଯାଉଥିବା କପ୍ତାନଙ୍କ ଆଡ଼କୁ ବୁଲିପଡ଼ି କହିଲେ :

"ଏଠି ଗୋଟାଏ କିଛି ମଉଜ ମଜଲିସ୍ ଚାଲିଲା ଭଳି ଦେଖାଯାଉଛି । ଗୁକ୍‌ମାଚ୍, ଚାଲ ଏଠି ଓହ୍ଲାଇ ଆମେ ବି ଯୋଗଦେବା ଏଥିରେ । ଆମ ପାଇଁ ବି ହଲେ ମାଇକିନା ଯୋଗାଡ଼ କରିବା । ଯାହା ଦେଖୁଛି, ଏ ଜାଗାଟାରେ ଏକାବେଳେକେ ଛାଇ ହୋଇଯାଇଛନ୍ତି । ହେ, ସ୍ନାଇଡ଼ଝକୋ", ପାଟିକରି ଡାକିଲେ ସେ । "ତୁ ନେଇଯା, ସହର ଲୋକଙ୍କ ସାଙ୍ଗରେ ଏମାନଙ୍କୁ ରଖ, ଆମେ ଏଇଠି ଟିକେ ଅଟକିବୁ । ଦେହରକ୍ଷୀ ! ଆଯ ମୋ ପଛେ ପଛେ ।" କହି ସେ ତାଙ୍କ ଘୋଡ଼ାଟା ପିଠିରୁ ଡେଇଁ ପଡ଼ିଲେ ଜୋରରେ ।

ଥିଏଟରର ପ୍ରବେଶପଥରେ ପାଭ୍ଲ୍ୟୁକ୍‌ଙ୍କୁ ବାଧା ଦେଲେ ଦୁଇଜଣ ସଶସ୍ତ୍ର ପେଟ୍ଲ୍ୟୁରା ସୈନିକ ।

"ଟିକେଟ୍ ?"

ସେମାନଙ୍କୁ ଘୃଣାପୂର୍ଣ୍ଣ ଆଖିରେ ଚାହିଁଲା ପାଭ୍ଲ୍ୟୁକ୍ ଓ ସେଥିଭିତରୁ ଜଣକୁ କାନ୍ଧରେ

ପେଲିଦେଲା । ତାଙ୍କ ସାଙ୍ଗରେ ଥିବା ଡର୍ଜନେ ଖଣ୍ଡେ ଲୋକ ତାଙ୍କ ଅନୁସରଣ କରି ପଶିଗଲେ ଭିତରକୁ । ଘୋଡ଼ାଗୁଡ଼ାକ ବାହାରେ, ବାଡ଼କୁ ଲାଗି ବନ୍ଧା ହୋଇଥାନ୍ତି ।

ହଲ୍ ଭିତରେ ନୂତନ ଆଗନ୍ତୁକମାନେ ସାଙ୍ଗେ ସାଙ୍ଗେ ବାରି ହୋଇ ପଡ଼ିଲେ । ବିଶେଷ କରି ପାଭ୍‌ଲ୍ୟୁକ୍‌ଙ୍କର ବିଶାଳ ବପୁ, ବାରି ହୋଇ ପଡ଼ୁଥାଏ ସମସ୍ତଙ୍କଠାରୁ । ଭଲକନାରେ ତିଆରି ଅଫିସରପିନ୍ଧା କୋଟ୍, ଗାର୍ଡମାନଙ୍କ ତିଆରି ନୀଳ ବ୍ରିଚେସ୍ ଓ ଗୋଟାଏ ପରଟୋପି ପିନ୍ଧିଥାଏ ସେ । କାନ୍ଧରୁ ଗୋଟାଏ ଫିତାରେ 'ମାଉଜର' ବନ୍ଧୁକ ଝୁଲୁଥାଏ ଏବଂ ପକେଟ୍‌ରୁ ବାହାରି ଦିଶୁଥାଏ ଗୋଟାଏ ହ୍ୟାଣ୍ଡ ଗ୍ରେନେଡ୍ ।

ନୃତ୍ୟରତ ହଲ୍‌ର ଲୋକମାନଙ୍କ ଭିତରେ, ଏପଟରୁ ସେପଟ ଗୋଟାଏ ପ୍ରଶ୍ନ ଫୁସ୍‌ଫୁସ ହୋଇ ଖେଳିଗଲା ସେହି ମୁହୂର୍ତ୍ତରେ :

"କିଏ ଇଏ ?"

ଗୋଲୁବ୍‌ଙ୍କର ଠିକ୍ ତଳପ୍ୟାହ୍ୟା ଅଫିସର ଗୋଟାଏ ଉନ୍ମତ୍ତ ନୃତ୍ୟ ପ୍ରଦର୍ଶନ କରୁଥାନ୍ତି ସେତେବେଳେ ।

ତାଙ୍କ ସହିତ ସହଯୋଗିତା କରୁଥାଏ ଯାଜକଙ୍କର ବଡ଼ ଝିଅ । ସେ ଏତେ ଜୋରରେ ଘୂରିଯାଉଥାଏ ଯେ, ତା'ର ସ୍କାର୍ଟ ବହୁ ଉପରକୁ ଉଠିଯାଉଥାଏ । ଫଳରେ, ଭିତରେ ପିନ୍ଧା ସିଲ୍‌କ ପେଟିକୋଟ୍ ସ୍ପଷ୍ଟ ହୋଇ ଉଠୁଥାଏ, ଲୋଭାତୁର ହୋଇ ଗ୍ରହିଁ ରହିଥିବା ଉଲ୍ଲସିତ ଲୋକମାନଙ୍କ ଆଖିରେ ।

ଲୋକମାନଙ୍କୁ ଠେଲିପେଲି ପାଭ୍‌ଲ୍ୟୁକ୍ ସିଧାସଳଖ ଯାଇ ପହଞ୍ଚିଲା ନାଚ ଚାଲିଥିବା ସ୍ଥାନରେ ।

ନୃତ୍ୟରତା ଝିଅଟାର ଜଙ୍ଘଆଡ଼କୁ ଜଳିଲା ଜଳିଲା ଆଖିରେ ଅନାଇଲା ପାଭ୍‌ଲ୍ୟୁକ୍ । ତା'ର ଶୁଖିଲା ଓଠ ଉପରେ, ଥରେ ଦୁଇଥର ଜିଭଟାକୁ ବୁଲାଇଆଣିଲା ଏବଂ ସିଧା ଯନ୍ତ୍ର ସଙ୍ଗୀତ ବାଜୁଥିବା ମଞ୍ଚ ଉପରକୁ ଚଢ଼ିଯାଇ ଛିଡ଼ାହେଲା । ହାତରେ ଧରିଥିବା ଘୋଡ଼ା ଚାବୁକଟାକୁ ଥରେ ଦୁଇଥର ସାଇଁସାଇଁ କରି ହଲାଇଦେଇ କହିଲା :

"ବନ୍ଦକର, ଆମକୁ ହୋପାକ୍ ନୃତ୍ୟ କରିବାକୁ ଦିଅ !"

ଯନ୍ତ୍ର ସଙ୍ଗୀତ ପରିଚାଳକ ଆଦେଶକୁ ଉପେକ୍ଷା କରି ବଜାଇ ଚାଲିଲା ।

ପାଭ୍‌ଲ୍ୟୁକ୍‌ର ହାତ ଜୋରରେ ସଞ୍ଚାଳିତ ହେଲା ଏବଂ ପରିଚାଳକଙ୍କର ପିଠିରେ ଦୁଇ ଚାବୁକ ବସିଗଲା ସାଇଁ ସାଇଁ କରି । ପରିଚାଳକ ବିଲୁଡ଼ି ମାରିଲା ପରି ପ୍ରାଣବିକଳରେ ମଞ୍ଚ ଉପରୁ ଡେଇଁ ପଳେଇ ଆସିଲେ ତଳକୁ । ଯନ୍ତ୍ର ସଙ୍ଗୀତ ଛାଁକୁ ଛାଁ ବନ୍ଦ ହୋଇଗଲା । ହଲ୍‌ଟା ସାରା ନୀରବତା ଖେଳିଗଲା ମୁହୂର୍ତ୍ତକ ଭିତରେ ।

ରାଗରେ ଲାଲ ପଡ଼ିଯାଇ, ଭୟଙ୍କର ଭାବରେ ଉତ୍ତ୍ୟକ୍ତ ହୋଇ ମଦଦୋକାନୀର ଝିଅ ଗୋଲୁବ୍‌ଙ୍କ ପାଖରେ ବସିପଡ଼ି, ତାଙ୍କ କହୁଣୀ ଧରି ହଲାଇଦେଇ ଚିତ୍କାର କରି ସେ କହିଲା :

"କି ଅସମ୍ଭବ ଧୃଷ୍ଟତା ! ଯା'ଇଚ୍ଛା ତା' କରିଯିବ ଲୋକଟା ? ତମେ ତାକୁ କିଛି କହିବ ନାହିଁ ?"

ଗୋଲୁବ୍ ଡେଇଁପଡ଼ି ଛିଡ଼ାହେଲା । ଗୋଟାଏ ଚଉକିକୁ ଗୋଇଠା ମାରି ଓଲଟାଇଦେଲା । ତା'ପରେ ତିନିପାଦ ଆଗେଇଯାଇ ପାଭ୍ଲ୍ୟୁକ୍‌ର ସାମନାସାମନି ହୋଇ ଛିଡ଼ାହେଲା । ନୂତନ ଆଗନ୍ତୁକକୁ ଚିହ୍ନିନେଲା ସେ ସଙ୍ଗେ ସଙ୍ଗେ । ଏଠାକାର ସ୍ଥାନୀୟ ଶାସନ ଦଖଲ କରିବାରେ ତା'ର ପ୍ରତିଦ୍ୱନ୍ଦୀ ଏ ପାଭ୍ଲ୍ୟୁକ୍ ସହିତ ତା'ର ଅନେକ ବେଳୁ ବୁଝାମଣା ହେବାର ଅଛି ।

ମାତ୍ର ସପ୍ତାହକ ତଳେ, ପାଭ୍ଲ୍ୟୁକ୍ ତା' ସାଙ୍ଗରେ ଗୋଟାଏ ହୀନ ଚକ୍ରାନ୍ତ କରିଛି । ଗୋଟାଏ ଲାଲଫୌଜ ସହିତ ଘମାଘୋଟ ଲଢ଼େଇ ଲାଗିଥିବା ସମୟରେ ଯେଉଁମାନେ ବି ଗୋଲୁବ୍‌ର ଫୌଜକୁ ଏକାଧିକ ବାର ଧ୍ୱସ୍ତବିଧ୍ୱସ୍ତ କରିସାରିଲେଣି, ପାଭ୍ଲ୍ୟୁକ୍ ସେ ବଲ୍‌ଶେଭିକ୍ ଫୌଜକୁ ପଛପଟୁ ଆକ୍ରମଣ କରିବା ପରିବର୍ତ୍ତେ ଲାଲଫୌଜର ଛୋଟ ଛୋଟ ଦଳଙ୍କୁ ଅତିକ୍ରମ କରି ଗୋଟାଏ ସହର ଭିତରକୁ ପଶିଯାଇ, ବେଶ୍ ଚମତ୍କାର ଭାବରେ ଲୁଟ୍‌କରିଛି ସହରଟାକୁ । ଅବଶ୍ୟ ଜଣେ ପେଟ୍‌ଲ୍ୟୁରା ଲୋକ ଭାବରେ ସେ ଜଗିଛି, ଯେପରି ଇହୁଦୀମାନେ ହିଁ କେବଳ ଏଲୁଟର ଶିକାର ହୁଅନ୍ତି । ଇତ୍ୟବସରରେ, ଲାଲଫୌଜ ଗୋଲୁବ୍‌ର ଦକ୍ଷିଣପଟଟାକୁ ବିଧ୍ୱସ୍ତ କରି ଆଗେଇ ଗ୍ଲଲିଗଲେ ।

ଆଉ ଏବେ ସେଇ ବଦ୍‌ମାସ ଅଶ୍ୱାରୋହୀ କପ୍ତାନ ଏଠିକି ପଶିଆସିଛି । ପୁଣି ତା'ର ଏହି ଧୃଷ୍ଟତା ଯେ, ପ୍ୟାନ୍ କର୍ଣ୍ଣେଲଙ୍କର ଆଖି ଆଗରେ ତାଙ୍କର ନିଜର ବାଦ୍ୟ ପରିଗ୍ଲଳକକୁ ମାରିବା ... ନା, ଢେର ହୋଇଗଲାଣି । ଗୋଲୁବ୍ ଜାଣି ସାରିଥିଲା ଯେ, ସେ ଏ ଅନୁପ୍ରବେଶକାରୀ ବଜାତ୍‌କୁ ଯଦି ଠିକଣା ଜବାବ ନ ଦିଏ, ତେବେ ଆଉ ତା'ର ଓ ତା'ର ଫୌଜର କୌଣସି ସମ୍ମାନ ରହିବ ନାହିଁ ଏଠି ।

ପରସ୍ପରର ମୁହାଁମୁହିଁ ହୋଇ, ଦିହେଁ ଦିହିଁକୁ ଜଳିଲା ଜଳିଲା ଆଖିରେ ଅନାଇ ଅନାଇ କେତୋଟି ସେକେଣ୍ଡ ବିତିଗଲା ।

ତରବାରିର ମୁଠିକୁ ଗୋଟିଏ ହାତରେ ଧରି ଅନ୍ୟ ହାତଟିକୁ ରିଭଲଭର ଉପରେ ରଖି ଗୋଲୁବ୍ ଚିତ୍‌କାର କରି ଉଠିଲା :

"ଅପଦାର୍ଥ ! ତୋର ଏତେ ସାହସ, ମୋ ଲୋକଙ୍କ ଦେହରେ ହାତ ଦେଲୁ ?"

ପାଭ୍ଲ୍ୟୁକ୍‌ର ହାତ, କାନ୍ଧରେ ଝୁଲୁଥିବା 'ମାଉଜର' ପିସ୍ତଲକୁ ମୁଠାଇ ଧରିଲା ।

"ପ୍ୟାନ୍ ଗୋଲୁବ୍ ! ଚୁପ୍ ହୋଇ ବସ୍, ନହେଲେ ତୋତେ ବି ହୋଇଯିବ । ମୋ କାମରେ ହାତ ଦେବାକୁ ଆଗେଇ ଆ ନା ... କହୁଛି, ନ ହେଲେ ମୁଁ ବି ମୋ ଦେଖିଲା କାମ କରିବି ।"

ଗୋଲୁବ୍‌ର ସହିବାର ସୀମା ଅତିକ୍ରମ କଲା କଥାଗୁଡ଼ାକ ।

"ଏମାନଙ୍କୁ ବାହାରେ ଫୋପାଡ଼ି ଦିଅ, ଆଉ ପ୍ରତ୍ୟେକଙ୍କୁ ପଚିଶ ବେତ ଲେଖାଏଁ ଦିଅ !" ସେ ଚିତ୍‌କାର କରି ଉଠିଲା ।

ଦଳେ ତାହାଙ୍କ କୁକୁର ଭଳି ଅଫିସରମାନେ ପାଭ୍‌ଲ୍ୟୁକ୍ ଏବଂ ତା'ର ଲୋକମାନଙ୍କ ଉପରେ ଝାମ୍ପି ପଡ଼ିଲେ ।

ବିଜୁଳି ବଲ୍‌ବଟାଏ ଚଟାଣରେ ପଡ଼ି ଫାଟିଗଲା ଭଳି ଢୋ କରି ଶବ୍ଦ ହେଲା ଏବଂ ଦି'ଦଳ ଲଢ଼ୁଆ କୁକୁର ଭଳି ଯୁଝିଲା ଲୋକେ ହଲ୍‌ଟା ସାରା ବିଞ୍ଛେଇ ହୋଇପଡ଼ିଲେ । ଉନ୍ମତ୍ତ ଯୁଦ୍ଧରେ, ସେମାନେ ପରସ୍ପର ଉପରେ ଲଦିହୋଇ ପଡ଼ିଲେ ଓ ପରସ୍ପରର ବେକ ଚିପିବାରେ, ବାଳ ଝିଙ୍କାଝିଙ୍କି କରିବାରେ ଲାଗିଯାଇ ଗଡ଼ାପଡ଼ା ହେଲେ । ପଙ୍କରେ ଲାଖିଯାଇଥିବା ଘୁଷୁରି ଭଳି ଚିହାର କରି ସ୍ତ୍ରୀଲୋକଗୁଡ଼ାକ ଛିନ୍ନଛତ୍ର ହୋଇ ଯୁଆଡ଼େ ସିଆଡ଼େ ଯୁଯୁତ୍ସୁଙ୍କ ପାଖରୁ ଅପସରିଗଲେ ।

କେତୋଟି ମାତ୍ର ମିନିଟ୍ ପରେ, ପାଭ୍‌ଲ୍ୟୁକ୍ ଏବଂ ତାଙ୍କର ଅନୁଚରମାନେ ହାରିଯାଇ ନିରସ୍ତ୍ର ହୋଇଗଲେ । ସେମାନଙ୍କୁ ହଲ୍ ବାହାରକୁ ଘୋଷାରି ନେଇ ରାସ୍ତା ଉପରେ ଫୋପାଡ଼ି ଦିଆଗଲା ।

ମାଡ଼ଗୋଳ ଭିତରେ ପାଭ୍‌ଲ୍ୟୁକ୍‌ର ପରଟୋପି କୁଆଡ଼େ ହଜିଲା । ମୁହଁ ତା'ର ଖଣ୍ଡିଆଖାବରା ହୋଇଗଲା । ତା'ର ଅସ୍ତ୍ରଶସ୍ତ୍ର ସବୁ ଛଡ଼େଇ ନେଇଗଲେ । ଏବେ ସେ ନିଜକୁ ନିଜେ ରାଗରେ ଜଳିଗଲା । ସେ ଏବଂ ତା'ର ଅନୁଚରମାନେ ଘୋଡ଼ା ଉପରେ ବସି, ରାସ୍ତା ଉପରେ ଘୋଡ଼ା ଝପଟାଇଦେଲେ ।

ସନ୍ଧ୍ୟା ମଉଜଟା ପାଣିଫାଟିଗଲା । ଏସବୁ ଘଟିଯିବା ପରେ ଆଉ ମଉଜ ମଜଲିସ୍ କରିବାକୁ କାହା ମନ ଡାକୁ ନ ଥାଏ । ତରୁଣୀମାନେ ନୃତ୍ୟ କରିବାକୁ ନାରାଜ ହୋଇ ଘରକୁ ଫେରିବାକୁ ଜିଦ୍ ଧରିଲେ । ଗୋଲୁବ୍ କିନ୍ତୁ ନଛୋଡ଼୍‌ବନ୍ଧା ।

"ପ୍ରହରୀ ରଖ ଦୁଆର ମୁହଁରେ, କେହି ହଲ୍ ଛାଡ଼ି ବାହାରକୁ ଯାଇ ପାରିବେ ନାହିଁ ।"

ପାଲ୍ୟାନିସ୍ତା ତୁରନ୍ତ ଆଦେଶ ପାଳନ କରିବା ପାଇଁ ଦୌଡ଼ିଲା ।

"ଭଦ୍ର ମହୋଦୟା ଓ ମହୋଦୟଗଣ, ନାଚ ସକାଳ ହେବା ପର୍ଯ୍ୟନ୍ତ ଗ୍ଲଲୁରହିବ ।" ବାଧାବିରୋଧ ଯେତେ କଲେ ସୁଦ୍ଧା, ସେସବୁକୁ କାନ ନ ଦେଇ ଦୃଢ଼ ଭାବରେ ଘୋଷଣା କଲା ଗୋଲୁବ୍, "ଏବଂ ମୁଁ ନିଜେ ପ୍ରଥମ ନାଚରେ ଅଂଶଗ୍ରହଣ କରିବି ।"

ସାଙ୍ଗେ ସାଙ୍ଗେ ଯନ୍ତ୍ରସଙ୍ଗୀତ ତାଳେ ତାଳେ ବାଜିଉଠିଲା । ତା' ସତ୍ତ୍ୱେ ମଧ୍ୟ ସେଦିନ ରାତିର ଆନନ୍ଦ ଉଲ୍ଲାସ ଆଉ ରହିଲା ନାହିଁ ।

ଧର୍ମଯାଜକର ସେହି ଝିଅ ସହିତ ନାଚହଲ୍‌ରେ ଗୋଲୁବ୍ ଥରୁଟିଏ ବୁଲିଛି କି ନାହିଁ, ଜଗୁଆଳ ପ୍ରହରୀମାନେ ହଲ୍ ଭିତରକୁ ପାଟିକରି ପଶିଲେ :

"ପାଭ୍‌ଲ୍ୟୁକ୍ ଥିଏଟର ଘେରାଉ କରିଛି !"

ସେହି ମୁହୂର୍ତ୍ତରେ ରାସ୍ତା ଆଡ଼କୁ ଥିବା ଝରକାର କାଚ ଝଣଝଣ ହୋଇ ଭାଙ୍ଗିଗଲା

ଏବଂ ସେହିବାଟେ ମେସିନ୍‌ଗନ୍‌ର ଚେପ୍‌ଟାମୁହାଁ ଅଗ୍ରଭାଗ ଭିତରକୁ ପଶିଆସିଲା । ଯେ ମୁହଁଟା ହଲ୍‌ର ଏପଟୁ ସେପଟ ଘୂରିବୁଲିଲା, ସତେ ଯେମିତି ଗ୍ରରିଆଡ଼େ ଖେଳାଇ ହୋଇ ରହିଥିବା ଲୋକଙ୍କୁ ଏକାଠି କରୁଛି, ହଲ୍ ମଝିରେ ସଇତାନ୍ ନିଜେ ଅଙ୍ଗୁଳି ନିର୍ଦ୍ଦେଶ ଦେଇ ।

ପାଲ୍ୟାନିସ୍କା ସେଇ ମୁହୂର୍ତ୍ତରେ ଛାତରୁ ଝୁଲୁଥିବା ହଜାରେ ପାଓ୍ୱାରର ବଲ୍‌ବଟାକୁ ଗୁଳିକଲା ଓ ସେଇଟା ଗୋଟାଏ ବୋମା ଭଳି ଫାଟି ଚୂନ୍‌ଚୂନା ହୋଇ ଚୂନା କାଚଗୁଡ଼ାକ ହଲ୍‌ସାରା ବିଛାଇ ହୋଇଗଲା ।

ସାରା ହଲ୍‌ଟା ନୀରନ୍ଧ୍ର ଅନ୍ଧକାରରେ ବୁଡ଼ିଗଲା । କେହିଜଣେ ବାହାର ଅଗଣାରୁ ଚିତ୍କାର କଲା :

"ସମସ୍ତେ ବାହାରିଆସ ବାହାରକୁ ।" ପରେ ପରେ ଭୟଙ୍କର ଗାଳିଗୁଳିଜ ଗ୍ରଲିଲା ।

ସ୍ତ୍ରୀଲୋକମାନଙ୍କର ଭୟାତୁର ଆର୍ତ୍ତଚିତ୍କାର ଓ କ'ଣ କରିବେ କିଛି ବୁଦ୍ଧି ବାଟ ନ ପାଇ ଇତଃସ୍ତତଃ ହୋଇ ଯାଇଥିବା ନିଜର ଅଫିସରମାନଙ୍କୁ ଏକତ୍ରିତ କରିବା ପାଇଁ ଗୋଲୁବ୍‌ର ଉଚ୍ଚକଣ୍ଠ ଆଦେଶ, ବାହାର ପ୍ରାଙ୍ଗଣରୁ ଗୁଳିଗୁଳାର ଆଓ୍ୱାଜ ଓ ଚିତ୍କାର ସବୁ ମିଶି ଏକ ଭୟଙ୍କର ଅବର୍ଣ୍ଣନୀୟ ପରିବେଶ ସୃଷ୍ଟିହେଲା । ପାଲ୍ୟାନିସ୍କା ସେଇ ଭୟାତୁର ପରିବେଶ ଭିତରୁ କେତେବେଳେ ଗୋଟାଏ ପଛବାଟ ଦେଇ, ଏକ ନିର୍ଜନ ରାସ୍ତାକୁ ବାହାରିଯାଇଛି, କେହି ତାହା ଲକ୍ଷ୍ୟ କରି ନାହାନ୍ତି । ତା'ର ପ୍ରାଣପଣେ ସମସ୍ତ ଶକ୍ତି ଦେଇ ସେ ଦୌଡ଼ିଲା, ଗୋଲୁବ୍‌ର ପ୍ରଧାନ ସୈନ୍ୟ ଛାଉଣୀକୁ ।

ଅଧଘଣ୍ଟାକ ପରେ, ସହରରେ ପୂରାଦମ୍‌ରେ ଏକ ଯୁଦ୍ଧ ଗ୍ରଲିଲା । ଧାରାବାହିକ ବନ୍ଧୁକ ଶବ୍ଦ ଓ ମଝିରେ ମଝିରେ କମାଣ ଗର୍ଜ୍ଜନ, ରାତିର ନିସ୍ତବ୍ଧତା ଭଙ୍ଗକଲା । ସମ୍ପୂର୍ଣ୍ଣଭାବରେ ଚକିତ, ସ୍ତବ୍ଧ ହୋଇ ସହରବାସୀ ଉଷ୍ମ ବିଛଣା ଛାଡ଼ି ଝରକା ଫାଙ୍କବାଟେ କାନ ଡେରିଲେ ।

ସବାଶେଷରେ, ଗୁଳିଗୁଳାର ଆଓ୍ୱାଜ ଥମିଲା । କେବଳ କେଉଁ ଦୂରରେ ଗୋଟାଏ ଏକାକୀ କୁକୁର ଭୁକିଲା ଭଳି ମଝିରେ ମଝିରେ ରହି ରହି ଗୋଟାଏ ମେସିନ୍‌ଗନ୍‌ର ଶବ୍ଦ ଶୁଭୁଥାଏ, କାହିଁ କେଉଁଠୁ ।

ଦିଗ୍‌ବଳୟରେ ପ୍ରଭାତର ଆଲୋକ ଦେଖାଯିବା ସଙ୍ଗେସଙ୍ଗେ ଯୁଦ୍ଧ ପୂରାପୂରି ବନ୍ଦ ହୋଇଗଲା ... ।

* * *

କାନକୁ କାନ ହୋଇ କଥା ବ୍ୟାପି ଗ୍ରଲିଲା ଯେ, ସାରା ସହର ହଣାହଣିରେ ଟକମକ ହୋଇ ଫୁଟୁଛି । ସହରରେ ବ୍ୟାପୁଥିବା ହଣାହଣିର ଏଇ ଖବର ଶେଷରେ ଯାଇଁ ପହଞ୍ଚିଲା, ନଈଆଡ଼କୁ ତୀଖ ହୋଇ ପଶିଯାଇଥିବା ମଇଳା ଅସନା ନାସିଟା ଉପରେ ଗଢ଼ିଉଠିଥିବା ଛୋଟ ଛୋଟ ନୁଆଁଣିଆ ଇହୁଦୀ କୁଡ଼ିଆଗୁଡ଼ିକରେ, ଯେଉଁଥିରେ ସବୁ ଭଙ୍ଗାରୁଜା ଝରକାଗୁଡ଼ାକ କୌଣସିମତେ ଲଟକି ରହିଛି, ଏହିସବୁ ଜନାକୀର୍ଣ୍ଣ ଖୋଲା କୁଡ଼ିଆ,

ଯାହାକୁ ସବୁ ନାଁକୁ ମାତ୍ର ଘର ବୋଲି କୁହାଯାଏ, ସେଇଥିରେ ଗରୀବ ଇହୁଦୀମାନେ ବାସ କରନ୍ତି ।

ସେର୍ଗେଇ ବ୍ଲୁଖାକ୍ ବର୍ଷେ ହେଲା ଯେଉଁ ଛାପାଖାନାରେ କାମ କରୁଥିଲା, ତା'ର କମ୍ପୋଜିଟର ଓ ଅନ୍ୟ ଶ୍ରମିକମାନେ ସମସ୍ତେ ଇହୁଦୀ । ସେର୍ଗେଇ ଓ ସେମାନଙ୍କ ଭିତରେ ଗଢ଼ିଉଠିଥାଏ ନିବିଡ଼ ବନ୍ଧୁତ୍ୱ । ସେମାନେ ଆପଣାର ଛୋଟଲୋକ ମାଲିକ ବ୍ଲୁମ୍‌ଷ୍ଟେନ୍ ବିରୁଦ୍ଧରେ, ଗୋଟାଏ ପରିବାରର ଲୋକ ଭଳି ଏକତାବଦ୍ଧ ହୋଇ ଦୃଢ଼ ହୋଇ ଛିଡ଼ା ହୋଇଥାଆନ୍ତି । ଛାପାଖାନାର ମାଲିକ ଓ ଶ୍ରମିକମାନଙ୍କ ମଧ୍ୟରେ ଲାଗିଥାଏ ଏକ ଧାରାବାହିକ ସଂଗ୍ରାମ । ବ୍ଲୁମ୍‌ଷ୍ଟେନ୍ ଚାହୁଁଥାଏ ଅଧିକ ମାରି ନେଇ ଶ୍ରମିକମାନଙ୍କ ଅଳ୍ପ ଦେବାକୁ । ଶ୍ରମିକମାନେ ବହୁବାର ଧର୍ମଘଟ କରିଥାନ୍ତି ଓ ଛାପାଖାନା ଦୁଇ ତିନି ସପ୍ତାହ ଧରି ବନ୍ଦ ହୋଇଥାଏ । ଚଉଦ ଜଣ ଶ୍ରମିକ କାମ କରୁଥାନ୍ତି ସେଠାରେ । ସର୍ବକନିଷ୍ଠ ସେର୍ଗେଇ ଦିନରେ ବାରଘଣ୍ଟା ଧରି ଗୋଟାଏ ହ୍ୟାଣ୍ଡ ପ୍ରେସ୍‌ରେ ହ୍ୟାଣ୍ଡଲ ଘୂରାଏ ।

ଆଜି ଛାପାଖାନାର ଶ୍ରମିକମାନଙ୍କ ଭିତରେ ଭୟଙ୍କର ଅସ୍ଥିରତା ଲକ୍ଷ୍ୟ କଲା ସେର୍ଗେଇ । ଗତ କେଇ ମାସର ଗଣ୍ଡଗୋଳ ଭିତରେ, ଛାପାଖାନାରେ କେବଳ 'ପ୍ରଧାନ ଆଟାମାନ୍'ଙ୍କର ସାମୟିକ ଘୋଷଣାପତ୍ରଗୁଡ଼ିକ ବ୍ୟତୀତ ଆଉ ଅଧିକ କାମ କିଛି ପ୍ରାୟ ହେଉ ନ ଥାଏ ।

ମେଣ୍ଡେଲ ବୋଲି ଜଣେ କ୍ଷୟରୋଗଗ୍ରସ୍ତ କମ୍ପୋଜିଟର ସେର୍ଗେଇକୁ ଗୋଟାଏ କୋଣକୁ ଡାକିନେଇ ପଚାରିଲା :

"ଗୋଟାଏ ହାଣକାଟ ଚାଲିବ । ତୁ କ'ଣ ଶୁଣିଛୁ କିରେ କୋଉଠୁ ଏ ବିଷୟରେ ?" ଦୁଃଖପୂର୍ଣ୍ଣ ଆଖିରେ ଚାହିଁ ପଚାରିଲା ସେ ।

ଆଶ୍ଚର୍ଯ୍ୟ ହୋଇ ତାକୁ ଚାହିଁଲା ସେର୍ଗେଇ ।

"ନାଁ, ମୋତେ ତ ଆଦୌ ଜଣା ନାହିଁ କିଛି ।"

ମେଣ୍ଡେଲ ତା'ର ଟାଆଁସିଆ କହରା ହାତଟାକୁ ସେର୍ଗେଇ କାନ୍ଧ ଉପରେ ପକାଇ ଆଶ୍ୱାସନା ଦେଲାଭଳି ସ୍ୱରରେ କହିଲା :

"ଗୋଟାଏ ହାଣକାଟ ହେବ ନିଶ୍ଚୟ । ଏଥିରେ ସନ୍ଦେହ ନାହିଁ । ଇହୁଦୀମାନେ ବି ନିଶ୍ଚେ ମାଡ଼ ଖାଇବେ । ସେକଥା ମୁଁ ପଚାରୁନାହିଁ । ମୁଁ ଜାଣିବାକୁ ଚାହୁଁଛି ଯେ, ଆମର ଏ କମ୍ରେଡ୍‌ମାନଙ୍କର ଏ ଦୁଃସମୟରେ ତୁ ତାଙ୍କୁ ସାହାଯ୍ୟ କରିବୁ ଆଉ ତାଙ୍କ ପକ୍ଷ ନେଇ ଛିଡ଼ାହେବୁ କି ନାହିଁ ?"

"ନିଶ୍ଚୟ ଏଥିରେ ସନ୍ଦେହ ନାହିଁ—କିନ୍ତୁ ମୁଁ ପାରିଲେ ସିନା ? ମୁଁ କ'ଣ କରିପାରିବି କହିଲୁ ମେଣ୍ଡେଲ ?"

କମ୍ପୋଜିଟରମାନେ ସମସ୍ତେ ତାଙ୍କର କଥାବାର୍ତ୍ତା ଶୁଣୁଥାଆନ୍ତି ।

"ତୁ ଭଲ ପିଲାଟିଏ ସେରୋଝା ଆଉ ଆମେସବୁ ତୋତେ ବିଶ୍ୱାସ କରୁ ।

ଆଉ ଯାହା ହେଉ ନାଁ କାହିଁକି, ତୋ ବାପା ଆମରିମାନଙ୍କ ଭଳି ଜଣେ ଶ୍ରମିକ । ତୁ ଏବେ ଘରକୁ ଦଉଡ଼ିଯା' ଆଉ ବାପାଙ୍କୁ ତୋର ପଚାରିଆସିବୁ, ସିଏ ଏ ବୁଢ଼ାବୁଢ଼ୀଙ୍କ ଭିତରୁ କେତେଜଣଙ୍କୁ ନେଇ ଘରଭିତରେ ଲୁଚେଇ ରଖିବା ପାଇଁ ରାଜି ହେବେ କି ନାହିଁ ? ତା'ପରେ ଆମେ ବିଚାର କରିବା, କାହାକୁ କାହାକୁ ନେଇ ସେଠି ରଖିବା । ସେଠାରେ ତୋର ଆଉ ପାଖପଡ଼ିଶାଙ୍କୁ, ତୋ ଲୋକମାନଙ୍କୁ ପଚାର, ସେଥିଭିତରୁ ଆଉ କେହି ଏ କାମ କରିବାକୁ ରାଜି ଅଛନ୍ତି ନାଁ ନାହିଁ । ଏବେ କିଛି ଦିନ ପାଇଁ, ଅନ୍ତତଃ ଲୁଷୀୟମାନେ ଏ ଡକାଇତଗୁଡ଼ାଙ୍କ କବଳରୁ ରକ୍ଷା ପାଇଯିବେ । ଯା, ଯା ଦୌଡ଼ ସେର୍‌ୟୋଝା, ଆଉ ଡେରି କରିବାକୁ ବେଳ ନାହିଁ, ଚାଲୁ ତୁ ।"

"ତମେ ମୋ ଉପରେ ନିର୍ଭର କରିପାର ମେଣ୍ଡେଲ, ସେଠି ଯାଇଁ ମୁଁ ପାଭ୍‌କା ଆଉ କ୍ଲିମ୍‌କାଙ୍କୁ ବି କହିବି । ସେମାନେ ବି ଏଥିରୁ କେଇଜଣଙ୍କୁ ଆଶ୍ରା ଦେଇ ପାରନ୍ତି ।"

"ଟିକେ ରହ ରହ, ଶୁଣ", ଚାଲିଯିବାକୁ ବସିଥିବା ସେର୍ଗେଇକୁ ଉତ୍ସୁକତାର ସହିତ ଅଟକାଇ ପଚାରିଲା ମେଣ୍ଡେଲ :

"କିଏ, କିଏ ସେ ପାଭ୍‌କା ଆଉ କ୍ଲିମ୍‌କା ? ତୁ କ'ଣ ସେମାନଙ୍କୁ ଭଲକରି ଜାଣୁ ?"

ଦୃଢ଼ତା ସହକାରେ ସମ୍ମତି ଜଣାଇ ମୁଣ୍ଡ ହଲାଇଲା ସେର୍ଗେଇ । କହିଲା :

"ନିଶ୍ଚୟ, ସେମାନେ ମୋର ବଡ଼ ସାଙ୍ଗ । ପାଭ୍‌କା କୋର୍ଚ୍ଚାଗିନ୍‌ର ଭାଇ ଜଣେ ମେକାନିକ୍ ।"

"ଓହୋ, କୋର୍ଚ୍ଚାଗିନ୍ ! ମୁଁ ତାକୁ ଜାଣେ । ଆମେ ଦୁହେଁ ଏକାଘରେ ରହୁଥିଲୁ । ହଁ ହଁ, ତୁ କୋର୍ଚ୍ଚାଗିନ୍‌ଙ୍କ ଘରେ କହିପାରୁ", ନିର୍ଭରତାର ସହିତ କହିଲା ମେଣ୍ଡେଲ । "ହଉ ତୁ ଏଥର ଯା, ଆଉ ଯେତେ ଶୀଘ୍ର ପାରୁ, ଉତ୍ତର ଜଣା ଆସିକରି ।"

ରାସ୍ତାରେ ଅଦୃଶ୍ୟ ହୋଇଗଲା ସେର୍ଗେଇ ।

ଗୋଲୁବ୍‌ର ଲୋକ ଓ ପାଭ୍‌ଲ୍ୟୁକ୍ ବାହିନୀ ଭିତରେ ଯୁଦ୍ଧ ଲାଗିଯିବାର ମାତ୍ର ତିନିଦିନ ପରେ ସାଂପ୍ରଦାୟିକ ସଂଘର୍ଷ ଆରମ୍ଭ ହୋଇଗଲା ।

ଶେପେଟୋଭ୍‌କାରୁ ପରାଜିତ ଓ ବିତାଡ଼ିତ ହୋଇ ପାଭ୍‌ଲ୍ୟୁକ୍ ଆଖପାଖ ଅଞ୍ଚଳକୁ ସାଫ୍ କରିଦେଇ, ଲୋକଙ୍କୁ ଘଉଡ଼େଇ, ଗୋଟିଏ ଛୋଟ ସହର ଦଖଲ କରିଦେଇଥିଲା । ଶେପେଟୋଭ୍‌କାରେ ସେ ରାତ୍ରର ଖଣ୍ଡଯୁଦ୍ଧ ଫଳରେ ପାଭ୍‌ଲ୍ୟୁକ୍‌କୁ ନିଜର କୋଡ଼ିଏ ପୁରିକି ଲୋକଙ୍କୁ ହରାଇବାକୁ ପଡ଼ିଥିଲା । ଗୋଲୁବ୍ ଦଳର ବି ସମାନସଂଖ୍ୟକ ହାନି ହୋଇଥିଲା ।

ବିଶେଷ କିଛି ଉତ୍ସବ ନ କରାହୋଇ, ମୃତ ଶରୀରଗୁଡ଼ିକୁ ଶଗଡ଼ରେ କବରଖାନାକୁ ବୋହିନେଇ କବର ଦିଆହୋଇଗଲା । କାରଣ ସମଗ୍ର ଘଟଣାଟାରେ ଗର୍ବ କଲା ଭଳି କି ବାହାଦୁରୀ ଦେଖାଇଲା ଭଳି କିଛି ନ ଥିଲା । ଅତି ଘୃଣ୍ୟ ଲଜ୍ଜାକର ଉପାୟରେ ଦୁଇଜଣ ଆଟାମାନ୍ ପରସ୍ପରର ତଣ୍ଟି କାଟିଥିଲେ, ଲଢ଼େଇ କରୁଥିଲେ ଏବଂ ସେଥିପାଇଁ ଗହଳ ଚହଳ ଭିତରେ ସଂସାର କରିବାରେ କୌଣସି ଅର୍ଥ ନଥିଲା । ଏକଥା ସତ୍ୟ ଯେ,

ପାଲ୍ୟାନିସ୍କା ଏଥିରୁ ଏକ ବିରାଟ ଫାଇଦା ଉଠାଇ ପାଭ୍‌ଲ୍ୟୁକ୍‌କୁ ଗୋଟାଏ ଅଲ ଦଳିଆ ଡକାଇତ ବୋଲି ଘୋଷଣା କରାଇବାର ଇଚ୍ଛାରେ ଥିଲା । ମାତ୍ର ଫାଦର ଭାସିଲି ନେତୃତ୍ୱରେ ସୋସାଲିଷ୍ଟ ରିଭଲ୍ୟୁସନାରିମାନେ ଏହାର ବିରୋଧ କଲେ ।

ଏ ଅହେତୁକ ଯୁଦ୍ଧ ଓ ଲୋକକ୍ଷୟ ଗୋଲୁବ୍ ବାହିନୀର ଲୋକମାନଙ୍କୁ ବିକ୍ଷୁବ୍ଧ କଲା । ବିଶେଷକରି ଶୃଙ୍ଖଳ୍ୟ ଦେଖାଦେଲା ଦେହରକ୍ଷୀ ଦଳଙ୍କ ଭିତରେ, ଯେଉଁମାନଙ୍କ ଭିତରୁ ଅଧିକ କ୍ଷୟକ୍ଷତି ଘଟିଥିଲା : ସେମାନଙ୍କ ଭିତରେ ଦେଖାଦେଇଥିବା ଏହି ଅଶାନ୍ତି ଓ ବିକ୍ଷୋଭକୁ ଦମନ କରି, ନୂଆ ଉନ୍ମାଦନା ଆଣିଦେବା ପାଇଁ, ପାଲ୍ୟାନିସ୍କା ଏକ ସାଂପ୍ରଦାୟିକ ସଂଘର୍ଷ କରିବାର ପ୍ରସ୍ତାବ ଦେଲା । ଗୋଲୁବ୍ ଆଗରେ ଏ ପ୍ରସ୍ତାବ ପେଶ୍‌କରି ସେ ଜଣାଇଲା ଯେ, ଏହା ଲୋକମାନଙ୍କ ପାଇଁ "ସାମାନ୍ୟ ଭିନ୍ନ" ମନୋଭାବ ଆଣିବ । ଦଳ ଭିତରେ ଦେଖାଦେଇଥିବା ଅଶାନ୍ତିକୁ ଦୂର କରି ସେମାନଙ୍କୁ କାମ ଦେବା ପାଇଁ ଏହା ଆବଶ୍ୟକ ବୋଲି ଗୋଲୁବ୍ ଆଗରେ ଯୁକ୍ତି ବାଢ଼ିଲା ସେ । ମଦ ଦୋକାନୀର ଝିଅ ସହିତ ନିଜ ବାହାଘରର ପ୍ରାକ୍‌କାଳରେ, ଆଉ କୌଣସି ଗଣ୍ଡଗୋଳ ଭିଆଇ ସହରର ଶାନ୍ତିଭଙ୍ଗ କରିବାକୁ କର୍ଣ୍ଣେଲର ଇଚ୍ଛା ନ ଥିଲେ ସୁଦ୍ଧା, ଏ ଯୁକ୍ତିକୁ ମାନିନେଇ ସର୍ବଶେଷରେ ସେ ସମ୍ମତି ଦେଲା ।

ଆଉ ଏକ କାରଣରୁ ମଧ୍ୟ ପ୍ୟାନ୍ କର୍ଣ୍ଣେଲ ଏହାକୁ ବିରୋଧ କରୁଥିଲା, ତା'ର ସୋସାଲିଷ୍ଟ ରିଭଲ୍ୟୁସନାରି ଦଳରେ ନୂତନ ପ୍ରବେଶ ଯୋଗୁଁ । ତା'ର ଶତ୍ରୁମାନେ ତାକୁ ସାଂପ୍ରଦାୟିକ ସଂଘର୍ଷ ଲଗାଇଲାବାଲା ବୋଲି ଆଖ୍ୟା ଦେଇ, ମଙ୍ଗମୋଡ଼ି କଥାଟାକୁ ନେଇ ନିଃସନ୍ଦେହରେ "ମୁଖ୍ୟ ଆତାମାନ୍‌ଙ୍କ" ଆଗରେ ତା' ନାଁରେ ଲଗେଇ କୁଟେଇ କହିପାରନ୍ତି । ଗୋଲୁବ୍ 'ମୁଖ୍ୟ'ଙ୍କ ଉପରେ ବିଶେଷ ଯେ ନିର୍ଭରଶୀଳ ତା' ନୁହେଁ, କାରଣ ସେ ନିଜ ବାହୁବଳରେ ବଳୀୟାନ୍ ହୋଇଛି । ପୁଣି ସିଏ ଯେ କିପରି ତାଙ୍କ ଅଧୀନରେ କାମ କରେ, ସେକଥା ବି 'ମୁଖ୍ୟ' ଭଲଭାବେ ଜାଣନ୍ତି । ଅଫିସ୍ ଖର୍ଚ୍ଚ ଚଳାଇବା ପାଇଁ ବହୁବାର ସେ, ତଥାକଥିତ ଅସୁଲ୍‌ରୁ ଅର୍ଥ ମାଗିଛନ୍ତି । ଆଉ ଏ ହାଣକାଟ ଲଗାଇଲାବାଲା ଭାବରେ ଖ୍ୟାତି ଓ ପୂର୍ବ ରେକର୍ଡ ଗୋଲୁବ୍‌ର ଅନେକ ଆଗରୁ ଅଛି । ଆଉ ଅଧିକ କ'ଣ ବଢ଼ିଯିବ ଏତିକିରେ ?

ବଡ଼ିସକାଳୁ ସାଂପ୍ରଦାୟିକ ସଂଘର୍ଷ ଆରମ୍ଭ ହୋଇଗଲା ।

ଧୂଆଁଳିଆ କୁହୁଡ଼ି ଭିତରେ ବୁଡ଼ିରହିଥାଏ ସାରା ସହରଟି / କୁହୁଡ଼ି ଛାଡ଼ି ନ ଥାଏ । ଇହୁଦୀମାନଙ୍କର ଅଧାପଚରିଆ ଘରର ଘ୍ରିକଡ଼ରେ ଖଣ୍ଡେ ଓଦାକନା ଭଳି ଗୁରେଇ ହୋଇ ରହିଥିବା ସରୁ ସରୁ ରାସ୍ତାଗୁଡ଼ିକ ସେଯାଏ ନିସ୍ତବ୍ଧ, ମୃତବତ୍ ଥାଏ । ଝରକା କବାଟସବୁ ଫିଟି ନ ଥାଏ । ଶୀତ ପାଇଁ ମୋଟା ପରଦାରେ ଢାଙ୍କି ହୋଇ ରହିଥାଏ ଘରର ଝରକାଗୁଡ଼ିକ ।

ବାହାରକୁ ଦେଖାଯାଉଥାଏ, ଯେମିତି ଘରଗୁଡ଼ିକ ପାହାନ୍ତ ପହରର ନିଘୋଡ଼ ନିଦରେ, ନିଶ୍ଚିନ୍ତଭାବରେ ଶୋଇଯାଇଛନ୍ତି । ମାତ୍ର ଘର ଭିତରେ ଆଖିର ପଲକ ବି ପଡ଼ୁ

ନ ଥାଏ । ସାରା ପରିବାର ଲୁଗାପଟା ପିନ୍ଧି ଗୋଟିଏ ବଖରାରେ ରୁଣ୍ଡ ହୋଇଥାନ୍ତି, ଆଉ ଏ ଭୟଙ୍କର ବିପଦ ପାଇଁ ନିଜକୁ ପ୍ରସ୍ତୁତ କରୁଥାନ୍ତି । ଛୋଟ ଛୋଟ କୋଡ଼ଛୁଆମାନେ, କ'ଣ ଘଟିବାକୁ ଯାଉଛି, ଯେଉଁମାନେ ଜାଣି ପାରୁ ନ ଥାନ୍ତି, ସେଇମାନେ ହିଁ କେବଳ ନିଜ ନିଜର ମାଆ କୋଳରେ ଶୋଇଥାଆନ୍ତି ।

ସାଲେମିଗା ଗୋଲୁବ୍‌ଙ୍କର ଦେହରକ୍ଷୀ, କଳା ମଚ୍‌ମଚ୍‌ ହୋଇ ଜିପ୍‌ସି ଚେହେରାର ଲୋକଟାଏ, ଗାଲ ଉପରେ ତା'ର ଗୋଟାଏ ବଡ଼ ଛୁରୀ-କଟା ଦାଗ । ସିଏ ସେଦିନ ସକାଳୁ ଉଠିପଡ଼ି ଲାଗିଥାଏ ଗୋଲୁବ୍‌ର ସହକାରୀ ପାଲ୍ୟାନିସ୍ତାକୁ ନିଦରୁ ଉଠାଇବା ପାଇଁ ।

ପାଲ୍ୟାନିସ୍ତା ଅତି ଦୁଃଖରେ ନିଦରୁ ଉଠିଲା । ଭାରି କଷ୍ଟରେ ତା'ର ନିଦ ଭାଙ୍ଗିଲା ସେଦିନ । କାରଣ ସେପର୍ଯ୍ୟନ୍ତ ଗତରାତିର ଦୁଃସ୍ୱପ୍ନରୁ ପୂରାପୂରି ମୁକୁଳି ନ ଥାଏ ସେ । ସାରାରାତି ସେଇ ଭୟଙ୍କର ସ୍ୱପ୍ନ ତାକୁ ଆଚ୍ଛନ୍ନ କରି ରଖିଥିଲା । ଏଯାଏଁ ରାତିର ସେ ଭୟଙ୍କର, କଦାକାର ଭୂତ ତାକୁ ଗ୍ରାସ କରିଥାଏ । ତା'ର ଘଣ୍ଟିକାରେ ଓହଳିପଡ଼ି ଦାନ୍ତ ଲଗାଇ ଦେଇଥାଏ ରକ୍ତ ଶୋଷିବ ବୋଲି । ଶେଷକୁ ସେ କଷ୍ଟରେ ଉଠି ଛିନଛତ୍ର ହୋଇଯାଉଥିବା ମୁଣ୍ଡ ଟେକି ଚାହିଁଲା ଓ ଦେଖିଲା, ସାଲେମିଗା ତା' ଉପରକୁ ଝୁଙ୍କିପଡ଼ିଛି ।

"ଏଃ, ଉଠିପଡ଼ ଶୀଘ୍ର—କାମରେ ଲାଗିଯିବା ପାଇଁ ବେଳ ଗଡ଼ିଗଲାଣି", ସାଲେମିଗା ତା' ବାହା ଧରି ଝାଙ୍କି ଦେଇ କହୁଥିଲା ।

ଝାଙ୍କ ଖାଇ ପାଲ୍ୟାନିସ୍ତା ଏଥର ପୂରାପୂରି ଆଖି ଫିଟାଇ ଚାହିଁଲା । ତା'ର ନିଦ ବିଲକୁଲ ଛାଡ଼ିଗଲା । ଉଠି ବସିଲା ସେ । କଷ୍ଟରେ ମୁହଁକୁ ବିକୃତ କରି ମୁହଁ ଭିତରେ ଜମିଯାଇଥିବା ଆମ୍ବିଳା ଲାଳଗୁଡ଼ାକ ପିଚ୍‌ କରି କାଢ଼ି ପକାଇଲା ।

"କି କାମ ?" ଫାଙ୍କା ଆଖିରେ ସାଲେମିଗା ଆଡ଼କୁ ଅନାଇ ପଚାରିଲା ସେ ।

"ତମେ ବୋଧହୁଏ ଏତେ ଶୀଘ୍ର ଭୁଲିଯାଇନ । ଆମକୁ ପରା ଆଜି ଇହୁଦୀଗୁଡ଼ାଙ୍କୁ ମୂଳୋତ୍ପାଟନ କରିବାକୁ ହେବ !"

ପାଲ୍ୟାନିସ୍ତାର ମନେ ପଡ଼ିଗଲା । ସତକୁ ସତ ସେ ଭୁଲିଯାଇଥାଏ ସବୁକଥା । ପ୍ୟାନ୍‌ କର୍ଣ୍ଣେଲ ତା'ର ପ୍ରେମିକା ସହିତ ଯେଉଁ ଖମାରରେ ତାଙ୍କ ଚଣ୍ଡିଗ୍ରମୁଣ୍ଡାଙ୍କ ସହିତ ମଜଲିସ୍‌ କରିବା ପାଇଁ ରହିଛନ୍ତି, ସେଠି ଗଲାରାତିରେ ଯେଉଁ ମଦ ପିଆ ହୋଇଥିଲା, ସେତକ ଅନେକ ବେଶି ହୋଇଯାଇ ଥିଲା ।

ଯେଉଁ ସମୟତକ ଏଇ ଇହୁଦୀ ହତ୍ୟା ଚାଲିବ, ସେତକ ସମୟ ଗୋଲୁବ୍‌ ସହର ବାହାରେ ରହିବାକୁ ସୁବିଧା ମନେ କରିଛି । କାରଣ ପରେ ଦରକାର ପଡ଼ିଲେ, ଏ ସମସ୍ତ ଘଟଣାକୁ ତା'ର ଅନୁପସ୍ଥିତିରେ ଗୋଟାଏ ଭ୍ରାନ୍ତି ବା ଅବୁଝାମଣାରୁ ଘଟିଯାଇଛି ବୋଲି ଘାଲୁକରି ଦିଆଯାଇ ପାରିବ ଏବଂ ଏହି ଅବସରରେ ପାଲ୍ୟାନିସ୍ତା ସବୁ କାମ ଭଲଭାବରେ କରିବା ପାଇଁ ଚମତ୍କାର ସୁଯୋଗ ପାଇଯିବ ମଧ୍ୟ । ହଁ, ଯଦି କୌଣସି କଥାର 'ମୋଡ଼ ଘୁରାଇବା' ଦରକାର ପଡ଼େ ବା ଅନ୍ୟ କୁଆଡ଼ିକି କଥାର ଗତି ବଦଳାଇବାରେ ପାଲ୍ୟାନିସ୍ତା ସତରେ ପାରଗ ।

ପାଇ୍ୟାନିସ୍ତା ନିଜ ମୁଣ୍ଡ ଉପରେ ଆଞ୍ଜୁଳାଏ ପାଣି ପକେଇଲା, ଟିକେ ପ୍ରକୃତିସ୍ଥ ହେଲା ଏବଂ ପରେ ପରେ ଅର୍ଡର ଦେଇ ଦେଇ ହେଡ୍‌କ୍ୱାର୍ଟରସ୍ ସାରା ଘୂରିଲା ।

ଖହେ ଜଣ ଦେହରକ୍ଷୀ ଘୋଡ଼ା ଲଗାମ ଧରିସାରିଥିଲେ । ସମ୍ଭବ ଅସମ୍ଭବ ଜଟିଳ ପରିସ୍ଥିତିକୁ ରୋକିବା ପାଇଁ ଦୂରଦୃଷ୍ଟିସମ୍ପନ୍ନ ପାଇ୍ୟାନିସ୍ତା ଖାସ୍ ସହର ଓ ଶ୍ରମିକ କଲୋନୀ ଏବଂ ରେଲଷ୍ଟେସନ୍ ମଧ୍ୟସ୍ଥଳରେ ଛୋଟ ଛୋଟ ଦଳରେ ଫୌଜ ମୁତୟିନ୍ କରିବା ପାଇଁ ଆଦେଶ ଦେଲା ।

ଲେଷିନ୍‌ସ୍କି ବଗିଚ୍ଚରେ ରାଜରାସ୍ତାକୁ ମୁହଁକରି ଗୋଟାଏ ମେସିନ୍‌ଗନ୍ ରଖାଗଲା, ଯଦି ଶ୍ରମିକମାନେ ଏଥିରେ ମୁଣ୍ଡ ପୂରାଇ ହସ୍ତକ୍ଷେପ କରିବାକୁ ଆଗେଇ ଆସନ୍ତି, ସେମାନଙ୍କୁ ଗୁଳିରେ ଉତ୍ତର ଦେବା ପାଇଁ ।

ପ୍ରସ୍ତୁତିପର୍ବ ସମ୍ପୂର୍ଣ୍ଣ ଶେଷହେଲା ପରେ, ସାଲେମିଗା ଓ ରକ୍ଷୀ ଘୋଡ଼ା ପିଠିକୁ ଢ଼ୁଦିପଡ଼ିଲେ ।

ଠିକ୍ ବାହାରି ଯାଉଛନ୍ତି, ଏହି ସମୟରେ ପାଇ୍ୟାନିସ୍ତା କହିଲା :

"ହେଃ, ଟିକେ ରହ ରହ, ମୁଁ ଭୁଲି ଯାଇଥିଲି ଗୋଟାଏ କଥା । ଯା'ଯା ଦିଇଟା ଗାଡ଼ି ଆଣିବା ବନ୍ଦୋବସ୍ତ କର । ଗୋଲୁବ୍‌ର ବାହାଘର, ଉପହାରସବୁ ସହରରୁ ଲଦି ଆଣିବା ନାହିଁ ? ହାଃ, ହାଃ, ହାଃ, ପ୍ରଥମେ ଯେତେ ଜିନିଷ ମିଳିବ ସବୁ ପ୍ରଧାନ ଅଧ୍ୟକ୍ଷଙ୍କର, ଆଉ ପ୍ରଥମ ଯେଉଁ ଝିଅ ମିଳିବ, ତାଙ୍କ ରକ୍ଷୀ, ଅର୍ଥାତ୍ ମୋ ପାଇଁ– ବୁଝିଲୁ ରେ ବୋକା ? ଯା–ଜଲଦି କର ।"

ସାଲେମିଗା ପ୍ରତି ସେ ପଛକଥା ପଦକ କହିଲା । ସାଲେମିଗା କାହାଳିଆ ବୋକା ବୋକା ଆଖିରେ ତାକୁ ଅନାଇଲା ।

"ସମସ୍ତଙ୍କ ପାଇଁ ଢେର ମିଳିବ ।"

ତା'ପରେ ରାଜରାସ୍ତାରେ ସେମାନେ ଘୋଡ଼ା ଝପଟାଇଦେଲେ ଇତଃସ୍ତତଃ ହୋଇ, ରାସ୍ତାରେ ଯାଉଥିବା ଘୋଡ଼ାସବାରମାନଙ୍କୁ ନେତୃତ୍ୱ ଦେଇ ।

ଗୋଟାଏ ଜଙ୍କ୍‌ଲଗା ନାମଫଳକରେ 'ଫ୍ରୁକ୍‌ସ ଟ୍ରେପର' ବୋଲି ଲେଖାଥିବା ଏକ ଦୋତାଲା ଘର ଆଗରେ ନିଜ ଘୋଡ଼ା ଲଗାମ ଟାଣି ପାଇ୍ୟାନିସ୍ତା ଅଟକିଲାବେଳକୁ କୁହୁଡ଼ି ଉଭେଇଗଲାଣି ଆକାଶରୁ ।

ତା'ର ସବୁଗୋଡ଼ିଆ ଧୂସର ଘୋଡ଼ାଟା ବିବ୍ରତ ହୋଇ ଆବୁଡ଼ା ଖାବୁଡ଼ା ପଥର ଉପରେ ଖୁରା ବାଡ଼େଇଲା ।

"ଆଚ୍ଛା, ଏଥର ଭଗବାନ୍‌ଙ୍କ ଆଶୀର୍ବାଦରେ ଆମେ ଏଇଠୁ ଆରମ୍ଭ କରିବା" ବୋଲି କହି, ପାଇ୍ୟାନିସ୍ତା ଘୋଡ଼ା ପିଠିରୁ ତଳକୁ ଡେଇଁପଡ଼ିଲା ।

ତା' ଚାରିପଟେ ଘେରିରହିଥିବା ଲୋକମାନଙ୍କୁ କହିଲା, "ଏଥର ଓହ୍ଲାଅ ସମସ୍ତେ, ଖେଳ ଆରମ୍ଭ ହେଉଛି । ମୁଁ ଚାହୁଁଛି, ବର୍ତ୍ତମାନ ଯେମିତି କେହି ମୁଣ୍ଡ ନଫଟାଅ, କାରଣ ସେଥିପାଇଁ ଢେର ସମୟ ମିଳିବ । ଆଉ ଯଦି ଝିଅ ମିଳନ୍ତି, ତେବେ ଧୈର୍ଯ୍ୟ ଧରି ସନ୍ଧ୍ୟାଯାଏ ଅପେକ୍ଷା କର ।"

ଜଣେ ତା'ର ଦାନ୍ତ ଦେଖାଇ ପ୍ରତିବାଦ କଲା :

"ଆଚ୍ଛା, ପ୍ୟାନ୍ ଖୋରୁନ୍ଝ୍, ଯଦି କେହି ନିଜ ନିଜ ଭିତରେ ରାଜିଖୁସି ହୋଇଯାଆନ୍ତି ?"

ସମସ୍ତେ ବଡ଼ପାଟିରେ ହସିଉଠିଲେ ଘରିଆଡ଼୍ । ଯେଉଁ ଲୋକଟା ବେଶ୍ ଗ୍ରାମକିରେ କଥାଟା କହିଲା, ତାକୁ ସପ୍ରଶଂସ ଆଖିରେ ଚାହିଁଲା ପାଲ୍ୟାନିଚ୍ଚା ।

"ଆରେ ସିଏ ତ ଅଲଗା କଥା । କାହା ସାଙ୍ଗେ ଯଦି ରାଜିଖୁସି ହୋଇଯିବ, ତମେ ତମ କାମ କରିବ, ସେଥିପାଇଁ କେହି ବାଧା ଦେବ ନାହିଁ କି ନିଷେଧ କରିବ ନାହିଁ ।"

ଦୋକାନଟାର ବନ୍ଦ କବାଟ ନିକଟକୁ ଯାଇ ପାଲ୍ୟାନିଚ୍ଚା ଗୋଟାଏ ଗୋଇଠା ପକାଇଲା ଜୋରରେ । ମାତ୍ର ଟାଣୁଆ ଓକ୍‌ପଟା ସେଥିରେ ଝୁକିଲା ନାହିଁ ।

ଶୁଭାରମ୍ଭ ପାଇଁ ନିଶ୍ଚିତଭାବରେ ଏଇଟା ଗୋଟାଏ ଭଲ ଜାଗା ନୁହଁ । ପାଲ୍ୟାନିଚ୍ଚା ଘରର କୋଣକୁ ବୁଲିଯାଇ ଫୁକ୍‌ସଙ୍କର ଘରକୁ ଯାଇଥିବା କବାଟ ଆଡ଼କୁ ମୁହାଁଇଲା, ହାତରେ ଗ୍ରବୁକଟା ଧରି । ସାଲୋମିଗା ତାକୁ ଅନୁସରଣ କଲା ।

ଘରଭିତରେ ଥିବା ଲୋକମାନେ ଘୋଡ଼ାଟାପୁ ଶୁଣିଥିଲେ ବାହାର ରାସ୍ତା ଉପରେ । ଯେତେବେଳେ ତାଙ୍କ ଦୋକାନ ସାମନାରେ ଘୋଡ଼ାଟାପୁ ବନ୍ଦ ହେଲା ଓ ଲୋକମାନଙ୍କର କଥାବାର୍ତ୍ତାସବୁ କାନ୍ଥ ପାରିହୋଇ ଶୁଭିଲା, ସେମାନଙ୍କର ହୃତ୍‌ସ୍ପନ୍ଦନ ସତେକି ବନ୍ଦ ହୋଇଯିବା ଭଳି ହେଲା ଏବଂ ଭୟରେ ସେମାନେ ଜଡ଼ ପାଲଟିଗଲେ ।

ବିତ୍ତବାନ ଫୁକ୍‌ସ ଦିନକ ଆଗରୁ ନିଜ ସ୍ତ୍ରୀ ଓ ଝିଅମାନଙ୍କୁ ଧରି ସହର ଛାଡ଼ିଯାଇଥିଲେ ଓ ଜିନିଷପତ୍ର ଓ ସମ୍ପତ୍ତି ଦେଖାଶୁଣା କରିବାକୁ ତାଙ୍କର ଚାକରାଣୀ ରୀଭା, ଊଣେଇଶ ବର୍ଷ ବୟସର ଗୋଟିଏ ଭଦ୍ର, ଲଜ୍ଜକୁଳୀ ଝିଅଟିକୁ ଛାଡ଼ିଯାଇଥିଲେ । ଏକାଟିଆ ଘରେ ରହିବାକୁ ତାକୁ ଭୟ ଲଗିବାରୁ ତା'ର ବୁଢ଼ା ବାପା ମା'ଙ୍କୁ ବି ଏଠିକି ଆଣି ରଖିବାକୁ ସେ କହିଥିଲେ, ସେମାନେ ଫେରିବା ପର୍ଯ୍ୟନ୍ତ ।

ରୀଭା ଶାନ୍ତଭାବରେ ପ୍ରତିବାଦ କରିବାରୁ ଚତୁର ବ୍ୟବସାୟୀ ତାକୁ ଆଶ୍ୱାସନା ଦେଇଥିଲେ ଯେ, ଯେତେଦୂର ସମ୍ଭବ ଏ ହତ୍ୟାଲୀଳା, ଲୁଟପାଟ ହେବ ନାହିଁ । କାରଣ ଭିକାରୀମାନଙ୍କଠାରୁ ସେମାନେ ପାଇବେ କ'ଣ ? ଏବଂ ଫେରିଆସିଲେ, ତାକୁ ଖଣ୍ଡେ ଭଲ ପୋଷାକ ପାଇଁ କନା ଦେବେ ବୋଲି କଥା ଦେଇଥିଲେ ।

ସେମାନେ ତିନିହେଁ ଭୟରେ ଥରିଥରି ଅପେକ୍ଷା କରୁଥିଲେ ଆଉ ଏ ନୈରାଶ୍ୟ ଭିତରେ ଆଶା କରୁଥିଲେ, କେତେବେଳେ ସେମାନେ ଘୋଡ଼ାରେ ବସି ଚାଲିଯିବେ । ଭାବୁଥିଲେ ଯେ, ସେମାନଙ୍କର ବୋଧହୁଏ ଭୁଲ ହୋଇଯାଇଛି ବା ସେମାନେ ଭୁଲ ଶୁଣିଛନ୍ତି—ଘୋଡ଼ାଗୁଡ଼ାକ ତାଙ୍କ ଘର ଆଗରେ ରଖାଗଲେ ଭ୍ରମରେ । ମାତ୍ର ତାଙ୍କର ଆଶା ଧୂଳିସାତ୍ ହୋଇଗଲା, ଦୋକାନ ଦୁଆରେ ଧକ୍‌କା ଶୁଣିଲା ପରେ ।

ବୃଦ୍ଧ, ରୁପାଭଳି ପାଚିଲା ବାଳ ମୁଣ୍ଡରେ, ସେହି ପୈଶାଖ ଦୁଆରମୁହଁରେ

ଛିଡ଼ାହୋଇଥିଲା । ନୀଳ ଆଖି ତା'ର, ଭୀତତ୍ରସ୍ତ ଛୁଆଟିର ଆଖିଭଳି ବିସ୍ଫାରିତ ଏବଂ ସେ ମୁହୂର୍ତ୍ତରେ ଅତି ଦୃଢ଼ ଭଗବାନ୍ ବିଶ୍ୱାସୀ ଭଳି ସେ ସର୍ବଶକ୍ତିମାନ ଜେହୋଭାଙ୍କୁ ପ୍ରାର୍ଥନା କରି ଚାଲିଥିଲା ହୃଦୟର ସମସ୍ତ ଆବେଗ ଦେଇ । ଏ ଭୟଙ୍କର ଦୁର୍ଭାଗ୍ୟରୁ ଘରକୁ ରକ୍ଷା କରିବା ପାଇଁ ସେ ଭଗବାନ୍‌ଙ୍କୁ ଡାକୁଥିଲା ଏବଂ ତା'ର ପ୍ରାର୍ଥନାର ଗୁଣୁଗୁଣୁ ସ୍ୱର ଫଳରେ ନିକଟରେ ଛିଡ଼ାହୋଇଥିବା ବୃଦ୍ଧା, ଆଗେଇ ଆସୁଥିବା ପଦଧ୍ୱନିକୁ କିଛି ସମୟ ପାଇଁ ଶୁଣିପାରିଲା ନାହିଁ ।

ରାସ୍ତା ଯାଇ ଏକକଣିକିଆ ଶେଷମୁଣ୍ଡ କୋଠରୀରେ, ଓକ୍‌ର ଥାକ ପଛପଟେ ଲୁଚିଯାଇଥିଲା ।

ଦୁଆର ଉପରେ ଗୋଟାଏ ପ୍ରଚଣ୍ଡ ଆଘାତର ଶବ୍ଦରେ ବୃଦ୍ଧାଙ୍କର ଦେହ ଭୟରେ ଥରିଗଲା ।

"କବାଟ ଖୋଲ!" ଆଗ ଅପେକ୍ଷା ଆହୁରି ଜୋର୍‌ରେ ଗୋଟାଏ ଧକ୍‌କା ପୁଣି ପଡ଼ିଲା ଦୁଆର ଉପରେ । ତା'ପରେ ଉତ୍ତ୍ୟକ୍ତ, ଉତ୍ତେଜିତ ଗାଳି ଶୁଭିଲା ।

ଭିତରେ ଥିବା ଲୋକମାନେ କିନ୍ତୁ ଭୟରେ ଜଡ଼ ପାଲଟିଯାଇ କବାଟ ଖୋଲିବାକୁ ହାତ ବି ଟେକିପାରୁ ନ ଥିଲେ ।

ବନ୍ଧୁକ ପଛରେ ଗୋଟାକୁ ଗୋଟା ଢିଅ କବାଟ ଉପରେ ପଡ଼ିବାକୁ ଲାଗିଲା, କବାଟଟା ଭାଙ୍ଗିଯିବା ପର୍ଯ୍ୟନ୍ତ । ଗୋଟାକ ପରେ ଗୋଟାଏ ବୋଲ୍‌ଟ ଖସିପଡ଼ି ଭଙ୍ଗାରୁଜା ଦୁଆରଟା ଶବ୍ଦ କରି ଖୋଲିଗଲା ଧଡ଼ାସ୍‌କିନା ।

ସଶସ୍ତ୍ର ସୈନ୍ୟଦଳ ଘର ଭିତରକୁ ପଶିଗଲେ ଏଥର । ପ୍ରତି କୋଣ ଅନୁକୋଣ ଖୋଜିଗଲେ ଚନ୍ନତନ୍ନ କରି । ବନ୍ଧୁକ ପଛର ଗୋଟାଏ ଜୋର୍ ଧକ୍‌କାରେ ଭିତରପଟୁ ଦୋକାନଆଡ଼କୁ ଥିବା କବାଟଟା ଖୋଲିଗଲା । ଆଗ କବାଟଟା ଭିତରପଟୁ କିଳିଦେଲେ ସେମାନେ ।

ଲୁଟତରାଜ ଆରମ୍ଭ ହେଲା ।

ଗାଡ଼ିଗୁଡ଼ାକରେ ପର୍ବତ ପ୍ରମାଣରେ ଲୁଗା ଜୋତା ଏବଂ ଅନ୍ୟାନ୍ୟ ଲୁଟମାଲ ଲଦାହେଲା ଆସି । ସାଲୋମିଗା ସେସବୁ ନେଇ ଗୋଲୁବ୍ ରହିବା ଜାଗାକୁ ଆଗେଇଲା । ସେ ଫେରିଲା ବେଳକୁ ଘର ଭିତରୁ ଗୋଟାଏ ଭୀତିବିହ୍ୱଳ ଚିତ୍କାର ଶୁଣିଲା ।

ନିଜ ଲୋକମାନଙ୍କୁ ଦୋକାନ ଲୁଟ କରିବାକୁ ଛାଡ଼ିଦେଇ, ପାଲ୍ୟାନିସ୍ତା ମାଲିକର ଘର ଭିତରକୁ ପଶିଯାଇ ବୁଢ଼ାବୁଢ଼ୀ ଦିହିଁଙ୍କୁ ଓ ଝିଅକୁ ସେଠାରେ ଛିଡ଼ା ହୋଇଥିବାର ଦେଖିଲା । ତା'ର କଟାସ ଭଳି ଜ୍ୱଳନ୍ତ ଆଖିରେ ତାଙ୍କ ଆଡ଼କୁ ଚାହିଁ ବୁଢ଼ାବୁଢ଼ୀକୁ ଜୋରରେ ଚଟକଣି ବଜାଇ ପାଟିକରି କହିଲା :

"ନିକଲ୍ ଏଠୁ!"

ବାପା କି ମା' ଘୁଞ୍ଚିଲେ ବି ନାହିଁ ।

ପାଲ୍ୟାନିସ୍ତା ପାଦେ ଆଗେଇ ଯାଇ ଧୀରେ ଧୀରେ ନିଜର ଚାବୁକ କାଢ଼ିଲା ।

"ମା , ଲୋ !" ବୋଲି ଝିଅଟା ହୃଦୟବିଦାରକ ଚିତ୍କାର କଲା ।

ଏହି ଚିତ୍କାର ସାଲେମିଗାକୁ ଶୁଭିଥିଲା ।

ତା'ର ଚିତ୍କାରରେ ଦଉଡ଼ି ଆସିଥିବା ତା' ଲୋକମାନଙ୍କ ଆଡ଼କୁ ବୁଲିପଡ଼ି ପାଲ୍ୟାନିସ୍କା କହିଲା :

"ଏ ବୁଢ଼ାଟାଙ୍କୁ ନେଇ ବାହାରେ ଟେକି ଫୋପାଡ଼ି ଦିଅ !" ବୁଢ଼ାବୁଢ଼ୀ ଦିହିଁଙ୍କୁ ଦେଖାଇ ଗର୍ଜନ କରି ଉଠିଲା ସେ । ସେ କାମ ସରିଲା ପରେ , ସେତେବେଳକୁ ସେଠି ଆସି ପହଞ୍ଚିଯାଇଥିବା ସାଲେମିଗାକୁ ସେ କହିଲା :

"ମୁଁ ଏ ଟୋକୀ ସାଙ୍ଗରେ ଟିକେ କାମଦାମ ସାରେଁ , ତୁ ସେ ଯାଏଁ ଦୁଆର ଜଗିଥା ।"

ଝିଅଟି ଆହୁରି ଥରେ ବିକଳ ଚିତ୍କାର କଲା । ବୃଦ୍ଧ ପେଁଶାଖ ସେ ଘରର ଦୁଆର ମୁହଁକୁ ଦୌଡ଼ିଯାଉଥିଲା , ମାତ୍ର ଛାତିରେ ଖୁବ୍ ଜୋରରେ ଗୋଟାଏ ଧକ୍କା ଖାଇ କାନ୍ଥରେ ବାଜି ତଳେ ଗଡ଼ିଗଲା , ଯନ୍ତ୍ରଣାରେ ପାଟି କରିଉଠି । ଶାନ୍ତ ଓ ନମ୍ର ଟୋଇବା ଏଥର ସାଲେମିଗା ଉପରକୁ ଝାମ୍ପି ପଡ଼ିଲା , ମାଈ ହେଟାବାଘ ନିଜ ଛୁଆକୁ ରକ୍ଷା କରିବା ପାଇଁ ଝାମ୍ପି ପଡ଼ିଲା ଭଳି ।

"ମୋତେ ଛାଡ଼ , ମୋ ଝିଅକୁ ତମେସବୁ କ'ଣ କରୁଛ ?"

କବାଟ ପାଖକୁ ଯିବା ପାଇଁ ପ୍ରାଣାନ୍ତକ ଉଦ୍ୟମ କରି ଧସ୍ତାଧସ୍ତି ଲଗାଇଥିଲା , ଆଉ ସାଲେମିଗା ଯେତେ ଚେଷ୍ଟା କଲେ ବି ନିଜ କୋଟ୍‌ରୁ ତା'ର ଦୃଢ଼ମୁଷ୍ଟିକୁ ଛଡ଼ାଇପାରୁ ନଥିଲା ।

ଧକ୍କାର ଯନ୍ତ୍ରଣା ଟିକେ କମିଲା ପରେ , ପେଁଶାଖ ଏଥର ଟୋଇବାକୁ ସାହାଯ୍ୟ କରିବା ପାଇଁ ଆଗେଇଆସିଲା ।

"ଆମକୁ ସେଠିକି ଛାଡ଼ିଦିଅ ! ଆମକୁ ସେଠିକି ଛାଡ଼ିଦିଅ ... ଇଲୋ ମୋ ଝିଅ ଲୋ ! "

ଧସ୍ତାଧସ୍ତି ଲଗାଇ ବୁଢ଼ାବୁଢ଼ୀ ଦି'ଜଣ ସାଲେମିଗାକୁ କୌଣସିମତେ କବାଟ ଆଗରୁ ଠେଲିଦେଲେ । ଏଥିରେ ଉତ୍ୟକ୍ତ ହୋଇଯାଇ ନିଜ କମରପଟିରୁ ପିସ୍ତଲଟା କାଢ଼ି , ତା'ର ଲୁହାବେଣ୍ଟରେ ବୃଦ୍ଧ ପେଁଶାଖ ମୁଣ୍ଡରେ କଷିକରି ପାହାରେ ବସାଇଲା ସାଲେମିଗା । ପେଁଶାଖ ଭୂଇଁରେ ଲୋଟିପଡ଼ିଲା ।

ଘରଭିତରେ ଆର୍ତ୍ତଚିତ୍କାର କରୁଥିଲା ରୀଭା ।

ଦୁଃଖ , ଅପମାନଜର୍ଜରିତ ଟୋଇବାକୁ ସେଠୁ ଘୋଷାରି ନିଆଗଲା । ଗଳିସାରା ତା'ର ଆର୍ତ୍ତ , ତ୍ରସ୍ତ , ବିକଳ ଚିତ୍କାର ସାହାଯ୍ୟ ପାଇଁ , ତ୍ରାହି ପାଇଁ ବାରମ୍ବାର ପ୍ରତିଧ୍ୱନିତ ହେବାକୁ ଲାଗିଲା ।

ମାତ୍ର ଘରଭିତର ବେଶ ନିସ୍ତବ୍ଧ ଥିଲା ।

ପାଲ୍ୟାନିସ୍କା ଘର ଭିତରୁ ବାହାରକୁ ଆସିଲା । କବାଟର କଡ଼ାରେ ସେପର୍ଯ୍ୟନ୍ତ ହାତ ପକାଇ ଛିଡ଼ାହୋଇଥିବା ସାଲୋମିଗା ଆଡ଼କୁ ନ ଚାହିଁ, ସେ କହିଲା :

"ଯାଇ କିଛି ଲାଭ ନାହିଁ । ତାକୁ ଗୋଟାଏ ତକିଆ ଉପରେ ଚାପି ଧରିଲାକ୍ଷଣି ତା'ର ବାକ୍ଷରୁଦ୍ଧ ହୋଇଗଲା ।" ପୈଶାଖର ଦେହଟାକୁ ଡେଇଁ ଯାଉ ଯାଉ ଗୋଡ଼ ତା'ର, ମୁଣ୍ଡା ମୁଣ୍ଡା ତାଜା ଲାଲ୍ ରକ୍ତରେ ଗୋଳେଇ ହୋଇଗଲା ।

"ଅଶୁଭ ଆରମ୍ଭ", ବିଡ଼୍ ବିଡ଼୍ କରି କହି ବାହାରକୁ ବାହାରିଗଲା ସେ ।

ପଛରେ, ଚଟାଣ ଓ ପାହାଚ ଉପରେ ରକ୍ତାକ୍ତ ପଦଚିହ୍ନ ରଖି ରଖି ନୀରବରେ ଅନ୍ୟମାନେ ସମସ୍ତେ ତାକୁ ଅନୁସରଣ କଲେ ।

ସହରସାରା ପୂରାଦମ୍‌ରେ ଲୁଟତରାଜ ମାତ୍ର ମରାମରି ଆରମ୍ଭ ହୋଇଗଲା । ଲୁଟିକରି ଆଣିଥିବା ମାଲ୍‌ର ଭାଗବଣ୍ଟରା ପାଇଁ ମଧ୍ୟ ଭୟଙ୍କର ଦଙ୍ଗା ଆରମ୍ଭ ହୋଇଗଲା ସୈନ୍ୟ ଦଳ ଭିତରେ । ଏଠି ସେଠି ବନ୍ଧୁକ ଚମକିବାକୁ ଲାଗିଲା । ବିଧା, ଗୋଇଠା, ମୁଥିର ସ୍ରୁଅ ଅବାଧରେ ଚାଲିଲା । ମଦ ଦୋକାନରୁ ୨୫ ଗ୍ୟାଲନ୍ ବିଅର ପିମ୍ପା ରାସ୍ତାକୁ ଗଡ଼ାଇଦିଆଗଲା ।

ତା'ପରେ ଲୁଣ୍ଠନକାରୀମାନେ ଇହୁଦୀମାନଙ୍କର ଘର ଭିତରକୁ ପଶିବାକୁ ଆରମ୍ଭ କଲେ ।

ବାଧା ଦେବାକୁ କେହି ନ ଥିଲେ । ଅବାଧଭାବରେ ସେମାନେ ପଶିବାକୁ ଲାଗିଲେ ଘର ଭିତରେ । କୋଠରୀରୁ କୋଠରୀ, କୋଣ ଅନୁକୋଣ ଯାହା ଯେଉଁଠି ପାଇଲେ ନେଲେ, ଜିନିଷପତ୍ର ଛିନ୍‌ଛତ୍ର କରି ଓଲଟପାଲଟ କରି ଗଡ଼େଇଦେଲେ । ଲୁଟମାଲ୍ ବୋହିନେଲା ପରେ, ଘରଭିତରେ ପଛରେ ଛାଡ଼ିଗଲେ, ଖିନ୍‌ଭିନ୍ କରି ପକାଇଯାଇଥିବା ଗଦା ଗଦା ପିନ୍ଧାଲୁଗା, ଦୁହିଁ ହୋଇ ଛିଣ୍ଡାଛିଣ୍ଡି ହୋଇଯାଇଥିବା ଗଦିର ପର ଆଉ ତକିଆଗୁଡ଼ାକ ।

ପ୍ରଥମ ଦିନ କେବଳ ରୀଭା ଓ ତା'ର ବାପା—ଦୁଇଜଣଙ୍କର ମାତ୍ର ପ୍ରାଣଗଲା । କିନ୍ତୁ ତା' ପରଦିନ ରାତି, ବହି ଆଣିଲା ଅମାନୁଷିକ ହତ୍ୟାର ବିଭୀଷିକା ।

ସନ୍ଧ୍ୟାବେଳକୁ ଲୁଣ୍ଠନକାରୀ ଦଳ ମଦ ପିଇ ନିଶାରେ ଟୁଳଟୁଳ ହୋଇଥାନ୍ତି । ଉନ୍ମତ୍ତ ପେଟ୍‌ଲ୍ୟୁରା ଲୋକେ ରାତିର ଅନ୍ଧାରକୁ ହିଁ ଅପେକ୍ଷା କରିଥାଆନ୍ତି ।

ନିଜ ଭିତରର ଶେଷ ବାଧାଟିକକ ସେମାନଙ୍କ ଭିତରୁ ଅନ୍ଧକାରର କାଳିମା ଭିତରେ ଉଭେଇଗଲା । ରାତିର କଳା ଅନ୍ଧାର ଭିତରେ ଜଣେ ମଣିଷକୁ ନିଃଶେଷ କରିଦେବା ସହଜ । ଏପରିକି ଶୃଗାଳ ମଧ୍ୟ ରାତିର କାଳିମାକୁ ଅପେକ୍ଷା କରିଥାଏ ।

ଏହି ଦୁଇଟି ବିଭୀଷିକାମୟ ଭୟଙ୍କର ରାତିକୁ ଓ ତିନୋଟି ଦିନକୁ ଖୁବ୍ ଅଳ୍ପଲୋକ ମନରୁ ପୋଛି ଦେଇପାରିବେ । କେତେ ଅଗଣିତ, ଅସଂଖ୍ୟ ଜୀବନକୁ ସେମାନେ ପଦଘାତରେ ଚକଟି ମଛି ଦେଇ ନିଷ୍ପେଷିତ କରିଦେଇଗଲେ । ରକ୍ତରେ ବୋଳା ସେହି କେତୋଟି ଦିନ ଭିତରେ କେତେ ଯେ ଜୀବନ ଅକାଳରେ ମିଳେଇଗଲେ, କେତେ ଯେ

ଯୁବକଙ୍କର ମସ୍ତକର କାକକୃଷ୍ଣ କେଶରାଶି ଏହି ନିଦାରୁଣ ଯନ୍ତ୍ରଣାରେ ତୁଷାର ଶୁଭ୍ରରେ ପରିଣତ ହୋଇଗଲା ସେଇ ଦିନମାନଙ୍କରେ ! କେତେ ଯେ ଆଖିର ବିକଳ ଉତପ୍ତ ଅଶ୍ରୁ ଅକାରଣରେ ଝରିଗଲା ! କିଏ ରଖିଛି ତା'ର ହିସାବ ? ଲାଞ୍ଛନା , ଲଜ୍ଜା , ଅପମାନ , ମର୍ମାନ୍ତିକ ଦାରୁଣ ବେଦନାକୁ ସଂବଳ କରି ଚିରଦିନ ପାଇଁ ଯେଉଁମାନେ ଆଉ କେବେ ଫେରିବେ ନାହିଁ , ସେହି ନିଜର ପ୍ରିୟ ପରିଜନଙ୍କର ମୃତ୍ୟୁରେ ଶୋକାତୁର , ବ୍ୟଥାବିହ୍ୱଳ ଜୀବନ ନେଇ ଯେଉଁମାନେ ନିର୍ଲ୍ଲଜ ହୋଇ ବଞ୍ଚିରହିଲେ , କିଏ ସେମାନଙ୍କୁ କହିବ ଭାଗ୍ୟବାନ୍ ବୋଲି ? ଅଣଓସାରିଆ ଅନ୍ଧକାରମୟ ଗଳିରେ ପଡ଼ିରହିଲା ଯନ୍ତ୍ରଣାକାତର ବିକୃତ ମୁହଁ , ଅତ୍ୟାଚାରରେ କ୍ଷତବିକ୍ଷତ , ଲୁଣ୍ଠିତ , ଦୀର୍ଣ୍ଣବିଦୀର୍ଣ୍ଣ ଅନେକ ଅନେକ ତରୁଣୀଙ୍କର ମୃତଶବ ... ।

କେବଳ ନଈବନ୍ଧ ଉପରେ , ନାଉମ୍ କମାର ବାସ କରୁଥିବା ଘରୁ ତା'ର ତରୁଣୀ ନବବିବାହିତା ସ୍ତ୍ରୀ ସାର୍‌ରା ଉପରକୁ ଆଖି ପକାଇ ଝାମ୍ପିପଡ଼ି ଶୃଗାଳଗୁଡ଼ାକ ଉପଯୁକ୍ତ ଶିକ୍ଷା ପାଇଗଲେ । ନାଉମ୍ ଭୀଷଣ ପ୍ରତିରୋଧ କଲା । ଚବିଶ ବର୍ଷ ବୟସର ସମର୍ଥ ଶକ୍ତିଶାଳୀ ଯୁଆନ୍ ନାଉମ୍ , ବଳିଷ୍ଠ ବଳିଲା ଦେହ , ବଡ଼ ହାତୁଡ଼ିରେ ଲୁହାକୁ ପିଟି ପିଟି ସିଧା କରୁଥିବା ଲୁହା ଭଳି ଟାଣୁଆ ବାହୁ ତା'ର । ନିଜ ସ୍ତ୍ରୀର ଇଜ୍ଜତ୍ ବଞ୍ଚାଇବା ପାଇଁ ଆଗେଇ ଆସିଲା ସେ ।

ଖୁବ୍ ସଂକ୍ଷିପ୍ତ ମାତ୍ର ଭୟଙ୍କର ଦ୍ୱନ୍ଦ୍ୱଯୁଦ୍ଧରେ ଦିଇ ଦିଇଟା ପେଟ୍‌ଲ୍ୟୁରା ଲୋକଙ୍କର ଖପୁରି ପଚା କମଳାଲେମ୍ବୁ ଭଳି ଛତୁହୋଇଗଲା । ପ୍ରଚଣ୍ଡ ଉତ୍ତେଜନା ଏବଂ ହତାଶା ଭିତରେ ନିଜର ଓ ସ୍ତ୍ରୀର ଜୀବନ ପାଇଁ ଭୟଙ୍କର ସଂଗ୍ରାମ କଲା ନାଉମ୍ କମାର । ଅନେକ ବେଳଯାଏ ନଈବନ୍ଧ ଉପରୁ ଫମ୍ପା ବନ୍ଧୁକ ଆଓ୍ୱାଜ ଶୁଭୁଥାଏ । ବିପଦର ଆଶଙ୍କା ଦେଖି ଧାଇଁ ଆସୁଥାନ୍ତି ଡାକୁଦଳମାନେ । ଗୋଟିଏ ମାତ୍ର ଗୁଳି ବାକୀ ରଖି ନାଉମ୍ ନିଷ୍ଠୁରଣ ଭାବରେ ନିଜ ସ୍ତ୍ରୀକୁ ଗୁଳି କରିଦେଲା ଏବଂ ନିଜ ପାଇଁ ମୃତ୍ୟୁକୁ ଆହ୍ୱାନ କରିବା ପାଇଁ , ବାୟୋନେଟ୍ ହାତରେ ଧାଇଁ ଆସିଲା ବାହାରକୁ । ସୈନ୍ୟମାନଙ୍କ ବନ୍ଧୁକରୁ ନିର୍ଗତ , ଗୁଳିର ଗୋଟାଏ ତୀବ୍ର ଝଡ଼ରେ ବକ୍ଷ ତା'ର ବିଦୀର୍ଣ୍ଣ ହେଲା ଓ ନିଜର ଦାଣ୍ଡଦୁଆର ମୁହଁରେ , ମାଟିରେ ଲେଟିଗଲା ତା'ର ରକ୍ତାକ୍ତ ଶକ୍ତିଶାଳୀ ଶରୀର ।

ହୃଷ୍ଟପୁଷ୍ଟ ଘୋଡ଼ା ଯୋଗୁ ହୋଇଥିବା ଆଖପାଖ ଗାଁଗୁଡ଼ିକର ଖାନଦାନିଆ ଚାଷୀମାନେ ଭଲ ଖାଦ୍ୟ ଖାଉଥିବା ଘୋଡ଼ାଗୁଡ଼ିକ ଦ୍ୱାରା ଟଣା ଗାଡ଼ିରେ ସହରକୁ ଆସି ନିଜ ଖୁସି ଅନୁସାରେ ଜିନିଷପତ୍ର ବୋଝେଇ କରି ନେଉଥିଲେ । ଗୋଲୁବ୍ ବାହିନୀରେ କାମ କରୁଥିବା ସେମାନଙ୍କ ପୁଅ ଓ ଆତ୍ମୀୟସ୍ୱଜନମାନେ ଗାଡ଼ିଗୁଡ଼ିକୁ ପହରା ଦେଇ ନେଇଯାଉଥିଲେ ତରତର ହୋଇ , ଯେମିତି ଆଉ ଥରେ ଦୁଇଥର ସେମାନେ ସହରକୁ ଆସିବେ ।

ସେରୋ୍ୟାଝା ବ୍ରୁଝାକ୍ ବାପାଙ୍କ ସହିତ ମିଶି ତାଙ୍କ ଛାପାଖାନାର ସାଥୀମାନଙ୍କୁ ଆଟୁ ଓ ଅନ୍ଧାରୁଆ କୋଣରେ ଲୁଚାଇ ରଖିଥିଲା । ସେ ମଧ୍ୟ ଘରକୁ ଯିବା ରାସ୍ତାରେ

ବଗିଗ୍ରଟି ପାର ହେବା ବେଳେ ଖୁବ୍ ଜୋର୍‌ରେ ହାତ ହଲେଇ ହଲେଇ ଗୋଟିଏ ଲମ୍ବା ସିଆଁସିଈଁ ହୋଇଥିବା କୋଟ୍ ପିନ୍ଧା ଲୋକକୁ ଦୌଡ଼ିବାର ଦେଖିଲା ।

ସେ ଜଣେ ବୃଦ୍ଧ ଇହୁଦୀ, ଚନ୍ଦାମୁଣ୍ଡିଆ । ସେ ଭୟବିହ୍ୱଳିତ ମନରେ ଧଇଁସଇଁ ହୋଇ ମଇଳା ଭଳି ଯାଉଥିବା ବେଳେ ତାଙ୍କ ପିଛା ଧରିଥାଏ ଗୋଟାଏ କଷରା ଘୋଡ଼ା ଚଢ଼ିଥିବା ପେଟ୍‌ଲ୍ୟୁରା ଲୋକ । ଦୁହିଁଙ୍କ ଭିତରେ ଦୂରତା କମିଆସିଲା ଏବଂ ଘୋଡ଼ସବାରଟି ଜିନ୍ ଉପରୁ ନଇଁପଡ଼ି ବୁଢ଼ାଟିକୁ ଦି'ଖଣ୍ଡ କରିଦେବାକୁ ଉଦ୍ୟତ ହେଲା । ବୁଢ଼ାଟି ପଛପଟୁ ନିକଟରେ ଘୋଡ଼ାଟାପୁ ଶବ୍ଦ ଶୁଣି ଆକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ ହାତରେ ବାଟ ଓଗାଳିଲା । ଏତିକିବେଳେ ସେରୋଝା ରାସ୍ତା ଉପରକୁ ଝାମ୍ପି ପଡ଼ି ଘୋଡ଼ା ଆଗରେ ଛିଡ଼ା ହୋଇ କହିଲା, "ବନ୍ଦକର, ଡାକୁ, କୁକୁର !"

ମାତ୍ର ଘୋଡ଼ସବାର ଉଞ୍ଚେଇଥିବା ଖଣ୍ଡାଟିକୁ ନ ଅଟକାଇ ସେହି ତରୁଣର ଶିର ଆଡ଼େ ତାକ୍ଷଣ ଖଣ୍ଡା ଚଳାଇଦେଲା ।

# ପଞ୍ଚମ ପରିଚ୍ଛେଦ

"ମୁଖ୍ୟ ଆତାମାନ୍" ପେଟ୍‌ଲ୍ୟୁରା ସୈନ୍ୟ ୟୁନିଟ୍‌ଗୁଡ଼ିକ ଉପରେ ଲାଲଫୌଜ ଖୁବ୍ ଚାପ ଦେଉଥାନ୍ତି ଏବଂ ଗୋଲୁବ୍‌ର ସୈନ୍ୟବାହିନୀକୁ ସମ୍ମୁଖ ଯୁଦ୍ଧକ୍ଷେତ୍ରକୁ ଡକା ଯାଇଥାଏ । କେବଳ ଏକ ଛୋଟ ସୈନ୍ୟଦଳ ଓ କମାଣ୍ଡାଣ୍ଟଙ୍କ ଲୋକ କେତେକ ସହରରେ ଥାଆନ୍ତି ।

ଲୋକେ ବିଚଳିତ । ଅଳ୍ପକାଳ ଯୁଦ୍ଧ ବିରତିର ସୁଯୋଗ ଘେନି ସହରର ଇହୁଦୀ ବାସିନ୍ଦାମାନେ ନିଜ ନିଜ ନିହତ ଆତ୍ମୀୟସ୍ୱଜନଙ୍କୁ କବର ଦେଉଥାନ୍ତି, ଆଉ ଇହୁଦୀ କୁଟୀରଗୁଡ଼ିକରେ ସ୍ୱାଭାବିକ ଜୀବନଯାତ୍ରା ଫେରିଆସୁଥାଏ ।

ନିଥର ସନ୍ଧ୍ୟାଗୁଡ଼ିକରେ ଦୂରରୁ ଅସ୍ପଷ୍ଟ ଗୋଳମାଳର ସଙ୍କେତ ଶୁଭୁଥାଏ । ହୁଏତ ଅଦୂରରେ କେଉଁଠି ଯୁଦ୍ଧ ଲାଗିଥାଏ ।

ଷ୍ଟେସନ୍‌ରେ ରେଳବାଇ କର୍ମଚାରୀମାନେ ଆପଣାର କାମ ଛାଡ଼ି କାମ ସନ୍ଧାନରେ ଗାଁଗହଳରେ ବୁଲୁଥାନ୍ତି ।

ଜିମ୍‌ନାସିଅମ୍ ବନ୍ଦ ହୋଇଯାଇଥାଏ ।

ସହରରେ ସାମରିକ ଆଇନ ଜାରି କରାଯାଇଥାଏ ।

କଳା ବିଭତ୍ସ ରାତି ।

ଏସବୁ ରାତିରେ ଆଖି କିଟିକିଟିଆ ଅନ୍ଧାର ଭେଦ କରିପାରେନା । ମଣିଷ ଅଣ୍ଟାଳି ଅଣ୍ଟାଳି ଚାଲେ ଆଶଙ୍କାକୁଳିତ ହୋଇ, କେତେବେଳେ ଖାଇଖମା ନାଳିନର୍ଦ୍ଦମାରେ ପଡ଼ିଯିବ ଆଉ ଅଣ୍ଟାବେକ ଭାଙ୍ଗି ବସିବ ବୋଲି ।

ସମ୍ମାନାସ୍ପଦ ନାଗରିକ ଜାଣେ ଯେ, ଏପରି ସମୟରେ ଅନ୍ଧାରରେ ଘରଭିତରେ ଚୁପ୍ ହୋଇ ବସିରହିବା ନିରାପଦ । ସେ ଘରେ ବତି ଜଳାଏ ନାହିଁ, କାରଣ ବତି ଜଳିଲେ କାଳେ ଅବାଞ୍ଛିତ ଲୋକ ଆକୃଷ୍ଟ ହେବେ । ବରଂ ଅନ୍ଧାର ଭଲ, ଅଧିକ ନିରାପଦ । ଅବଶ୍ୟ ଅନେକ ଅସ୍ଥିର ଲୋକ ଥାଆନ୍ତି । ଇଚ୍ଛା ହେଲେ ସେମାନେ ବାହାରକୁ ଯାଆନ୍ତି । କିନ୍ତୁ ଏସବୁ ସମ୍ମାନାସ୍ପଦ ଲୋକଙ୍କ କାମ ନୁହଁ । ସେ କାହିଁକି ବାହାରକୁ ଯାଇ ବିପଦରେ ପଡ଼ିବ ଭଲା ।

ଏମିତି ଏକ କାଳରାତ୍ରି, ତେବେ ବି ଜଣେ ଲୋକ ବାହାରେ ବୁଲୁଛି ।

କୋର୍ଚ୍ଚାଗିନ୍‌ଙ୍କ ଦୁଆରେ ପହଞ୍ଚି ସେ ଝରକାରେ ଟିପାମାରିଲା । କୌଣସି ଉତ୍ତର ମିଳିଲା ନାହିଁ, ତେଣୁ ସେ ପୁଣି ଟିପାମାରିଲା ଜୋରରେ ଲଗାଲଗ ।

ପାଭେଲ୍ ଦେଖୁଥାଏ ଏକ ଦୁଃସ୍ୱପ୍ନ । ଏକ ଅଦ୍ଭୁତ ଜୀବ, ମଣିଷ ନୁହେଁ, ତା'ରି ଆଡ଼କୁ ମେସିନ୍‌ଗନ୍ ମୁହାଁଇ ଧରିଥାଏ । ପାଭେଲ୍ ଧାଇଁ ପଳେଇବାକୁ ଇଚ୍ଛା କରୁଥାଏ, କିନ୍ତୁ ଯିବ କୁଆଡ଼େ ? ମେସିନ୍‌ଗନ୍‌ଟି ଘୋର ଗର୍ଜନ କରିଉଠିଲା ।

ତା'ର ନିଦ ଭାଙ୍ଗିଗଲା । ସେ ଶୁଣିଲା, ଝରକା ଖଡ଼ଖଡ଼ ହେଉଛି । ଜଣେ କିଏ ଟିପାମାରୁଛି ଝରକାରେ ।

ପାଭେଲ୍ ବିଛଣାରୁ ଡେଇଁପଡ଼ି ଝରକା ଆଡ଼କୁ ଚିହିଁକି ଗଲା । ସେ ଗୋଟାଏ କେବଳ ଅନ୍ଧାର ଭିତରେ ଛାଇଟାଏ ଦେଖିଲା ।

ଘରେ ସେ ଏକୁଟିଆ । ମା ଯାଇଛନ୍ତି ବଡ଼ ଭଉଣୀ ଘରକୁ । ଭଉଣୀର ସ୍ୱାମୀ ଚିନି କାରଖାନାରେ ଜଣେ ମେକାନିକ୍ । ଆର୍ଟେମ୍ ନିକଟସ୍ଥ ଗାଁରେ କମାର କାମ କରୁଛି, ପେଟ ପୋଷିବା ପାଇଁ ।

ତେବେ ଯେ ଆର୍ଟେମ୍ ହୋଇପାରେ । ପାଭେଲ୍ ଝରକା ଖୋଲିବା ପାଇଁ ନିଷ୍ପତ୍ତି ନେଲା । ଅନ୍ଧାରରେ କହିଲା :

"କିଏସେ ତମେ ?"

ଝରକା ସେପଟେ ଲୋକଟିର ଅଙ୍ଗସଞ୍ଚାଳନା ଦେଖିଲା ସେ । ରୁଦ୍ଧ କଣ୍ଠରେ ଉତ୍ତର ଆସିଲା :

"ମୁଁ, ହଁ, ମୁଁ ଝୁଖ୍‌ରାଇ ।"

ଝରକାବନ୍ଧ ଉପରେ ଦୁଇଟି ହାତ ଥାପି ଫ୍ୟୋଦୋର୍ ମୁଣ୍ଡକୁ ପାଭେଲ୍‌ର ମୁହଁ ସିଧା କରି ସେପଟେ ଛିଡ଼ାହେଲା ।

ଫୁସ୍‌ଫୁସ୍ କରି ଝୁଖ୍‌ରାଇ କହିଲା :

"ତମ ସଙ୍ଗରେ ରାତିଟି ରହିବି । କ'ଣ ସାଥୀ କିଛି ବାରଣ ଅଛି ?"

ଆନ୍ତରିକତା ସହିତ ପାଭେଲ୍ ଉତ୍ତର ଦେଲା :

"ନା, ନା ଆଦୌ ନାହିଁ । ତମକୁ ସବୁବେଳେ ଅଭ୍ୟର୍ଥନା କରିବାକୁ ମୁଁ ପ୍ରସ୍ତୁତ । ଆସ ଝରକା ଡେଇଁ ଭିତରକୁ ।"

ଝରକା ଫାଙ୍କ ଦେଇ ଝୁଖ୍‌ରାଇର ବଡ଼ ବପୁଟା ପ୍ରବେଶ କଲା ଘରଭିତରେ ।

ସେ ଝରକାଟି ବନ୍ଦ କଲା, କିନ୍ତୁ ଝରକା ପାଖରୁ ହଠାତ୍ ଘୁଞ୍ଚିଲା ନାହିଁ ।

ସେ ଆଗ୍ରହ ସହକାରେ ଶୁଣୁଥିଲା । ଯେତେବେଳେ ଖଣ୍ଡେ ବଉଦ କାଟି ଚନ୍ଦ୍ର ବାହାରିଲା ସେତେବେଳେ ରାସ୍ତା ଦେଖାଗଲା । ରାସ୍ତାଟିକୁ ଯତ୍ନରେ ନିରିଖି ସେ ପାଭେଲ୍ ଆଡ଼କୁ ମୁହଁେଇଲା ।

"ତମ ମା'ଙ୍କୁ ଉଠାଇବା ନାହିଁ ? କ'ଣ ଉଠାଇବା ?"

ପାଭେଲ୍ ତାଙ୍କୁ କହିଲା ଯେ, ତା' ଛଡ଼ା ଘରେ ଆଉ କେହି ନାହାନ୍ତି । ନାବିକଟି ଆଶ୍ୱସ୍ତ ହୋଇ ବଡ଼ପାଟିରେ ଆରମ୍ଭ କଲା :

"ସେଇ ଗଳାକଟାଗୁଡ଼ାକ ମୋ ପିଛା ଧରିଛନ୍ତିରେ ବନ୍ଧୁ । ଷ୍ଟେସନ୍‌ରେ ଯାହା ଘଟିଲା ତା ପରଠାରୁ ସେମାନେ ମୋତେ ନିକାଶ କରିଦବାକୁ ବାହାରିଛନ୍ତି । ଆଉ ଯଦି କିଛି ସମୟ ଆମ ଲୋକେ ଟାଣପଣ ଧରିଥାନ୍ତେ ତେବେ ହତ୍ୟାଇାରୀ ଗୁଳିଇ ବେଳେ ସେମାନଙ୍କୁ ଆମେ ବେଶ ପାନେ ଦେଇଥାନ୍ତୁ । କିନ୍ତୁ ଆମେ ଲୋକେ ନିଆଁକୁ ଡେଇଁବା ଲାଗି ପ୍ରସ୍ତୁତ ନ ଥିଲେ । ତେଣୁ କିଛି ହୋଇପାରିଲା ନାହିଁ । ଏବେ ସେମାନେ ମୋର ସନ୍ଧାନରେ ଲାଗିଛନ୍ତି । ଦୁଇଥର ସେମାନଙ୍କ ହାବୁଡ଼ରେ ମୁଁ ପଡ଼ିଲିଣି । ଆଜି ମୁଁ ଆଖିପିଛୁଳାକେ ବର୍ତ୍ତିଗଲି । ପଛବାଟ ଦେଇ ମୁଁ ଘରକୁ ଯାଉଥିଲି । ଦେଖିଲି, ଗୋଟାଏ ଗଛଗଣ୍ଡି ସେପଟୁ ବାୟୋନେଟ୍ ଉଞ୍ଚା ହୋଇଛି ମୋତେ ଲକ୍ଷ୍ୟ କରି । ମୁଁ ତହୁଁ ସେ ବାଟ ଛାଡ଼ି ତମ ଘରଆଡ଼େ ମୁହାଁଇଲି । ତମର ଯଦି କିଛି ଆପତ୍ତି ନ ଥାଏ ତେବେ ମୁଁ କିଛି ଦିନ ରହିଯା'ନ୍ତି ବନ୍ଧୁ ତମ ଘରେ ।"

ଝୁଖ୍‌ରାଇ ଏବେବି ଧଇଁସଇଁ ହୋଇ କାଦୁଅମଖା ବୁଟ୍ ଜୋତା ଗୋଡ଼ରୁ କାଢ଼ିବାକୁ ଲାଗିଗଲେ ।

ସେ ଆସିଥିବାରୁ ପାଭେଲ୍ ଖୁସି । ଏବେ ବିଜୁଳି କେନ୍ଦ୍ର ଘୂଲୁ ନ ଥାଏ, ଆଉ ପାଭେଲ୍‌କୁ ଘରେ ଏକୁଟିଆ ଭଲ ଲାଗୁ ନ ଥାଏ ।

ଶୋଇବାକୁ ଗଲେ ସେମାନେ । ପାଭେଲ୍‌କୁ ସଙ୍ଗେ ସଙ୍ଗେ ନିଦ ଘୋଟିଆସିଲା । ଫ୍ୟୋଦୋର୍ କିନ୍ତୁ ବହୁ ସମୟ ଚେଇଁ ରହି ଧୂଆଁ ଟାଣିବାରେ ଲାଗିଲା । ତା'ପରେ ସେ ହଠାତ୍ ଉଠିପଡ଼ି ଖାଲିପାଦରେ ଟିପେଇ ଟିପେଇ ଝରକା ପାଖକୁ ଯାଇଁ ରାସ୍ତାକୁ ଦୀର୍ଘ ସମୟ ଅନେଇଲା । ଶେଷରେ କ୍ଳାନ୍ତଶ୍ରାନ୍ତ ହୋଇ ଶୋଇପଡ଼ିଲା ଗଭୀର ନିଦ୍ରାରେ, କିନ୍ତୁ ହାତ ତା'ର ଥିଲା ତକିଆତଳେ ସେ ରଖିଥିବା ଭାରୀ କୋଲ୍ଟ ବନ୍ଧୁକ ଉପରେ ।

* * *

ସେଦିନ ରାତିରେ ଝୁଖ୍‌ରାଇଙ୍କ ଅପ୍ରତ୍ୟାଶିତ ଆଗମନ ଏବଂ ତା' ସହିତ ଆଠଦିନ କାଳ ରହଣି ପାଭେଲ୍‌ର ସମଗ୍ର ଜୀବନକୁ ବଦଳେଇଦେଲା । ନାବିକଠାରୁ ସେ ଜାଣିଲା, ଯାହା ତା' ନିକଟରେ ଅଜ୍ଞାତ ଥିଲା । ସେ ସବୁକଥା ତା'ର ଅନ୍ତରର ଗଭୀରତମ ପ୍ରଦେଶକୁ ଆଲୋଡ଼ିତ କଲା ।



ଲୁଟିବାକୁ ଆସିଥିବା ଏହି ସମୟତକରେ ମିଳୁଥିବା ବାଧ୍ୟତାମୂଳକ ଅବସରକୁ ଝୁଖ୍‌ରାଇ ବ୍ୟବହାର କଲା । ପାଭେଲ୍‌ର ମନ ଭିତରେ ଅତି ସାର୍ଥକ ଭାବରେ ସମଗ୍ର ଅଞ୍ଚଳକୁ ବିଧ୍ୱସ୍ତ କରୁଥିବା ୟୁକ୍ରେନୀୟ ଜାତୀୟତାବାଦୀମାନଙ୍କ ବିରୁଦ୍ଧରେ ଥିବା ତା'ର ସଞ୍ଚିତ ସମସ୍ତ ଘୃଣା, କ୍ରୋଧ ଓ ବିରୋଧ ଭାବ ଆଣିଦେଲା ।

ଝୁଖ୍‌ରାଇ ତା'ର ସମସ୍ତ କଥା ଅତି ସରଳ ବୋଧଗମ୍ୟ, ଓଜନଦାର ଭାଷାରେ କହୁଥିଲା । ତା'ର ନିର୍ଦ୍ଧାରିତ ପନ୍ଥା ପାଭେଲ୍ ସମ୍ମୁଖରେ ଅତି ସ୍ପଷ୍ଟଭାବରେ ଉପସ୍ଥାପିତ ହେଉଥିଲା ବୋଲି ବୁଝିପାରୁଥିଲା ସେ । ବିପରୀତ ପକ୍ଷରେ ପାଭେଲ୍ ମଧ୍ୟ ଜାଣିପାରିଲା ଯେ, ରାଜନୈତିକ ଦଳ ବୋଲି ବଡ଼ ବଡ଼ ନାଁରେ : 'ସୋସାଲିଷ୍ଟ-ରିଭଲ୍ୟୁସନାରି, ସୋସିଆଲ୍ ଡେମୋକ୍ରାଟ୍, ପୋଲାଣ୍ଡୀୟ ସୋସାଲିଷ୍ଟ ଇତ୍ୟାଦି ଯେତେ ସବୁ ଅଛି, ସେସବୁ ଶ୍ରମିକମାନଙ୍କର ପ୍ରଥମ ଶ୍ରେଣୀର ଭୟଙ୍କର ଶତ୍ରୁ ଏବଂ ଏକମାତ୍ର ବିପ୍ଳବୀ ଦଳ ହେଉଛି ବଲ୍‌ଶେଭିକ୍ ଦଳ, ଯିଏକି ଧନୀଙ୍କ ବିରୁଦ୍ଧରେ ଅବିଶ୍ରାନ୍ତ ସଂଗ୍ରାମ ଚଳାଇଛି ।

ଆଗରୁ, ଏସବୁ ବିଷୟରେ ପାଭେଲ୍ ଭାରୀ ଗଣ୍ଡଗୋଳିଆରେ ପଡ଼ୁଥିଲା । କିଛି ବୁଝିପାରୁ ନଥିଲା ।

ଏହିପରି ଭାବରେ, ଏ ଟାଣୁଆ ବଲ୍‌ଟିକ୍ ଜାହାଜୀ, ଯିଏକି ସମୁଦ୍ରର ବହୁଝଡ଼ରେ

କ୍ଷତବିକ୍ଷତ ହୋଇଛି ଏବଂ ଯିଏ ୧୯୧୫ ମସିହାରୁ ରସିଆନ୍ ସୋସାଲିଷ୍ଟ ଡେମୋକ୍ରାଟିକ୍ ଲେବର ପାର୍ଟି (ବୋଲ୍‌ଶେଭିକ୍) ଦଳର ଜଣେ ସକ୍ରିୟ ସଭ୍ୟ, ସେ ପାଭେଲ୍‌କୁ ଜୀବନର ଏହି ସମସ୍ତ ଅତି ନିଦାରୁଣ ସତ୍ୟର କଥା ଜଣାଇଲା । ତରୁଣ କୋଇଲା ଯୋଗାଣିଆ ମନ୍ତ୍ରମୁଗ୍ଧ ହୋଇ ଶୁଣିଗଲା ତା'ଠାରୁ । ସେ କହୁଥିଲା :

"ମୁଁ ପିଲାବେଳେ ତୋ'ରି ଭଳି ଥିଲି ରେ ସାଙ୍ଗ । ପୁରୁଣାକୁ ଗୋଇଠା ମାରି ଅତିକ୍ରମ କରିଯିବା ପାଇଁ ସବୁବେଳେ ଆଗ୍ରହୀ ମୁଁ । ସେ ଶକ୍ତି କେମିତି ଖଟେଇବି, କିଛି ବୁଝିପାରୁ ନ ଥିଲି ଖାଲି । ମୁଁ ବି ଦାରିଦ୍ର୍ୟ ଭିତରେ ବଢ଼ିଛି । ବେଳେ ବେଳେ ସହରର ବଡ଼ଲୋକଗୁଡ଼ାଙ୍କର, ସେ ମୋଟାସୋଟା, ଫାମ୍ପସା ପିଲାମାନଙ୍କୁ ଦେଖିଲା ମାତ୍ରେ ନାହି ଚମକୁଥିଲା ମୋର । ଅନେକ ସମୟରେ ତାଙ୍କୁ ଜୋର୍‌ରେ ମାଡ଼ ଚଢ଼ାଉଥିଲି । ଦିନେ ବାପାଙ୍କଠୁଁ ଭୟଙ୍କର ମାଡ଼ ଖାଇ ସେସବୁ ବନ୍ଦ ହେଲା । ଏକାଟିଆ ଯେତେ ଚେଷ୍ଟା କଲେ ସୁଦ୍ଧା ତମେ କୌଣସି ପରିବର୍ତ୍ତନ କରିପାରିବ ନାହିଁ । ଶ୍ରମିକମାନଙ୍କ ପାଇଁ ସଂଗ୍ରାମ କରିବା ସକାଶେ ଯାହା ଦରକାର ସବୁ ତୋଠି ଅଛି ପାଭ୍‌ଲୁଶା । କେବଳ ତୁ ଛୋଟ ଆଉ ଶ୍ରେଣୀ ସଂଗ୍ରାମ କଥା ବିଶେଷ କିଛି ଜାଣିନୁଁ ଏଯାଏଁ । ତୁ ଅନେକ କାମ କରିବୁ, ମୁଁ ଜାଣିଛି । ଆଉ ସେଇଥି ପାଇଁ ତୋତେ ମୁଁ ଠିକଣା ବାଟରେ ନେଇଯିବି । ଚୁପ୍‌ଚାପ୍ ହୋଇ ଯେଉଁମାନେ ହଲିଲା ପାଣିକି ଗୋଡ଼ ବଢ଼ାନ୍ତି ନାହିଁ, ତାଙ୍କୁ ଦେଖିଲେ ମୋ ହାଡ଼ ଚିଡ଼େ । ସାରା ଦୁନିଆରେ ଆଜି ବିପ୍ଳବର ନିଆଁ ଜଳିଉଠିଛି । କ୍ରୀତଦାସମାନେ ଜାଗି ଉଠିଲେଣି । ପୁରୁଣା ପୋଚରା ଜୀବନକୁ ଫୋପାଡ଼ି ଦେବାକୁ ହେବ । ମାତ୍ର ସେ କାମ କରିବା ପାଇଁ, ଆମର ଲୋଡ଼ା ଜୋରଦାର ଲୋକ । ମୁରୁକୁଟିଆ ନୁହନ୍ତି, ଯେଉଁମାନେ ସଂଗ୍ରାମ ଆରମ୍ଭ ହେଲା ବେଳେ ଅସର୍ପା ଭଳି ଘୁଷୁରି ଘୁଷୁରି ଯାଇଁ ଫାଟରେ ଲୁଚିବେ । ଆମର ଲୋଡ଼ା ସେହିମାନେ, ଯେଉଁମାନଙ୍କର ଶକ୍ତିସାମର୍ଥ୍ୟ ଅଛି, ଆଉ ହସିହସି ଯିଏ ନିର୍ମମ ନିଦାରୁଣ ଆଘାତ ଦେଇପାରିବେ ।"

ତା'ର ବନ୍ଧମୁଷ୍ଟି ମେଜ ଉପରେ ଆଘାତ କଲା ।

ଉତ୍ତେଜିତ ହୋଇ ସେ ଉଠିପଡ଼ିଲା ଓ ଘରଟାସାରା ଏକଡ଼ ସେକଡ଼ ଘୂରିବୁଲିଲା, ପକେଟ୍ ଭିତରେ ହାତ ପୂରାଇ ।

ନିଜର ଏ ବାଧ୍ୟତାମୂଳକ ଭାବରେ ବସିରହିବା ତାକୁ ବିଷାଦଗ୍ରସ୍ତ କଲା । ସହରରେ ରହିଯାଇଛି ଏଭଳି ଭାବରେ 'ବୋଲି ଗଭୀର ଅନୁଶୋଚନା କଲା ସେ ଏବଂ ଆଉ ଅଧିକ ସମୟ ଏପରିଭାବରେ ବସିରହିବା ନିରର୍ଥକ ଭାବି ସମ୍ମୁଖ ସମରକୁ କୌଣସିମତେ ଯାଇଁ, ଲାଲଫୌଜଙ୍କୁ ଭେଟିବା ପାଇଁ ଦୃଢ଼ଭାବରେ ସିଦ୍ଧାନ୍ତ କଲା ମନକୁ ମନ ।

ସହରରେ ଆଉ ନବେଜଣ ପାର୍ଟି ସଭ୍ୟ ରହିବେ, କାମ ଆଗେଇନେବା ପାଇଁ ।

"ମୁଁ ନ ଥିଲେ ମଧ୍ୟ ସେମାନେ କାମ ଚଳାଇନେବେ । ମୁଁ ଆଉ ଅଧିକ ସମୟ ଏମିତି ବେକାର ହୋଇ ବସି ରହିପାରିବି ନାହିଁ । ଏଇଭଳି ଭାବରେ ଦଶ ଦଶଟା ମାସ ବ୍ୟର୍ଥ କରିଣି ମୁଁ ବସି ବସି ଏ ସହରରେ", ବିରକ୍ତ ହୋଇ ମନକୁମନ ଭାବିଲା ଝୁଖ୍‌ରାଇ ।

"ତମେ ପ୍ରକୃତରେ କ'ଣ ?" ଥରେ ତାକୁ ପଗ୍ଚରିଥିଲା ପାଭେଲ୍ ।

ଉଠିପଡ଼ି ନିଜ ହାତକୁ ପକେଟ୍‌ରେ ପୂରାଇଲା ଝୁଖ୍‌ରାଇ । ପ୍ରଥମେ ସେ ପ୍ରଶ୍ନଟାର ଅର୍ଥ ବୁଝିପାରିଲା ନାହିଁ ।

"ତୁମେ କ'ଣ ଜାଣ ନାହିଁ ?"

"ତୁମେ ଜଣେ ବଲ୍‌ଶେଭିକ୍ ବା କମ୍ୟୁନିଷ୍ଟ", ଅନୁଚ୍ଚ ସ୍ୱରରେ କହିଲା ପାଭେଲ୍ ।

ଟାଇଟ୍ ହେଉଥିବା ଗାରିଗାରିକା ପୋଷାକ ଉପରେ, ଛାତିରେ ଗପୁଡ଼ା ମାରି ମାରି ହୋ ହୋ ହୋଇ ହସିଉଠିଲା ଝୁଖ୍‌ରାଇ ।

"ଠିକ୍ କହିଛୁ ସାଙ୍ଗ । ବଲ୍‌ଶେଭିକ୍ ଆଉ କମ୍ୟୁନିଷ୍ଟ—ଏକା କଥା । ସେମାନେ ଏକ ଓ ଅଭିନ୍ନ !" ତା'ପରେ ହଠାତ୍ ସେ ଗମ୍ଭୀର ହୋଇଉଠି କହିଲା, "ଏବେ ତୁ ଏତିକି ବୁଝିଲୁଣି । ମନେରଖ, ଏକଥା କାହା ଆଗରେ ବା କେଉଁଠି ହେଲେ ପ୍ରକାଶ କରିବୁ ନାହିଁ, ମୋତେ ଯଦି ନ ମରାଇବାକୁ ଗ୍ଚହୁଁଛୁ । ବୁଝିଲୁ ?"

"ବୁଝିଲି ମୁଁ", ପାଭେଲ୍ ଦୃଢ଼ଭାବରେ କହିଲା ।

ଅଗଣାରୁ ପାଟିସ୍ୱର ଶୁଣାଗଲା ଏବଂ ଆଗରୁ କିଛି ଖଡ଼ଖାଡ଼ ନ ହୋଇ, କବାଟଟା ବାହାରପଟୁ ଠେଲି ହୋଇ ମେଲ ହୋଇଗଲା । ଝୁଖ୍‌ରାଇ ହାତ ପକେଟ୍ ଭିତରକୁ ପଶିଯାଇଥିଲା, ମାତ୍ର ପରମୁହୂର୍ତ୍ତରେ ବାହାରିଆସିଲା, ଯେତେବେଳେ ସେର୍ଗେଇ ବ୍ରୁଝାକ୍ ରୋଗା ଓ ଶେଥା ହୋଇଯାଇଛି, ମୁଣ୍ଡରେ ଗୋଟାଏ ବ୍ୟାଣ୍ଡେଜ୍ ବାନ୍ଧି ଘର ଭିତରକୁ ପଶିଲା—ପଛରେ ତା'ର ଭାଲ୍ୟା ଓ କ୍ଲିମ୍‌କା ।

"କିରେ, ବୁଢ଼ା ?" ସେର୍ଗେଇ ପାଭେଲ୍ ହାତକୁ ଦୋହଲାଇ ଦେଇ କହିଲା, "ଭାବିଲୁ, ତୋ ସାଙ୍ଗେ ଦେଖା କରି ଆସୁଁ—ଆମେ ତିନି ଜଣଯାକ । ଭାଲ୍ୟା ମୋତେ ଏକାଟିଆ ଛାଡ଼ି ଦେଉ ନ ଥିଲା । ଆଉ କ୍ଲିମ୍‌କା ତାକୁ ଏକାଟିଆ ଛାଡ଼ିବାକୁ ନାରାଜ । ନାଲିମୁଣ୍ଡିଆ ହେଲେ କ'ଣ ହବ, ତା' କାମ ସିଏ ଠିକ୍ ଜାଣେ ।"

ଖେଳିବା ଭଙ୍ଗୀରେ, ହାତଟାକୁ ପାଟିରେ ବାଡ଼େଇ ବାଡ଼େଇ ପାଟିକଲା ଭାଲ୍ୟା :

"ଗୋଟାଏ ଗପପେଡ଼ିଟାଏ ତ ! ଆଜି କ'ଣ କ୍ଲିମ୍‌କାକୁ ଛାଡ଼ିବ ନାଁ ଶାନ୍ତି ଦବ ସିଏ ?"

କ୍ଲିମ୍‌କା, ତା'ର ଧଳା ଧଳା ଦାନ୍ତ ନିକୁଟି ଭଲପଣିଆ ଦେଖାଇ ହସିଲା ।

"ଏ ରୋଗୀକୁ ଧରି କ'ଣ କରିବୁ ? ଦେଖୁନୁଁ ତା'ର ଦହି ଚହଲିଯାଇଛି, ମୁଣ୍ଡ ଫାଟିଯାଇଁ ।"

ସମସ୍ତେ ହସିଲେ ।

ଏପର୍ଯ୍ୟନ୍ତ ଖଣ୍ଡା ଆଘାତର କଷ୍ଟ କମିନଥିଲା । ସେର୍ଗେଇ ପାଭେଲ୍‌ର ବିଛଣା ଉପରେ ବସିପଡ଼ିଲା ଓ ସଙ୍ଗେ ସଙ୍ଗେ ସେମାନେ ଗପସପରେ ମାତିଗଲେ । ଝୁଖ୍‌ରାଇକୁ ସେ କହିଲା, ପେଟ୍‌ଲ୍ୟୁରା ଡକାଏତଟା ସହିତ ତା'ର ସଂଘର୍ଷର କାହାଣୀ । ସଦାସର୍ବଦା

ହର୍ଷୋତ୍‌ଫୁଲ୍ଲ, ଖୁସ ମିଜାଜରେ ଥିବା ସେର୍ଗେଇ ଭାରୀ ନୀରବ ଓ ବିଷାଦାଚ୍ଛନ୍ନ ହୋଇ ଯାଇଛି ।

ତିନିଜଣଯାକଙ୍କୁ ଜାଣିଥିଲା ଝୁଖ୍‌ରାଇ । କାରଣ ସେର୍ଗେଇଙ୍କ ଘରକୁ ଅନେକ ଥର ଯାଇଛି ସେ । ଏ ପିଲାଗୁଡ଼ିକ ତାକୁ ଭାରୀ ଭଲ ଲାଗେ । ସଂଘର୍ଷର ଭଉଁରୀରେ ଏପର୍ଯ୍ୟନ୍ତ ପଡ଼ି ନାହାନ୍ତି ଏମାନେ, ମାତ୍ର ନିଜ ଶ୍ରେଣୀର ଆଶା ଏମାନଙ୍କ ଭିତରେ ଅତି ସ୍ପଷ୍ଟଭାବରେ ପ୍ରତିଫଳିତ ହେଉଛି । ନିଜ ଘରେ କିଭଳି ଇହୁଦୀ ଲୋକମାନଙ୍କୁ ଆଶ୍ରୟ ଦେଲେ, ସେମାନଙ୍କୁ ହତ୍ୟାରୁ ରକ୍ଷା କରିବାକୁ, ତା'ର ବିବରଣୀ ଅତି ଆଗ୍ରହ ସହକାରେ ପିଲାଙ୍କ ମୁହଁରୁ ଶୁଣିଲା ସେ । ସେଦିନ ସନ୍ଧ୍ୟାରେ ବଲ୍‌ଶେଭିକ୍‌ଙ୍କ ବିଷୟରେ ଆହୁରି ଅନେକ କଥା ସେ ପିଲାମାନଙ୍କ ଆଗରେ କହିଲା । କହିଲା ଲେନିନ୍‌ଙ୍କ ବିଷୟରେ, ଆଉ ଯାହା ସବୁ ଘଟୁଛି, ସେସବୁ ବୁଝିବାରେ, ଜାଣିବାରେ ପିଲାମାନଙ୍କୁ ସାହାଯ୍ୟ କଲା ।

ଅନେକ ଡେରିରେ ପାଭେଲ୍‌ର ଅତିଥିମାନେ ଫେରିଲେ ସେଦିନ ରାତିରେ ।

ପ୍ରତ୍ୟେକ ଦିନ ସନ୍ଧ୍ୟାରେ ଝୁଖ୍‌ରାଇ ବାହାରକୁ ଯାଏ ଓ ଅନେକ ରାତିରେ ଫେରେ । ସହର ଛାଡ଼ିବା ଆଗରୁ ସହରରେ ଯେଉଁ କମ୍ରେଡ୍‌ମାନେ ରହିବେ ଓ ସେମାନଙ୍କୁ ଯେଉଁସବୁ କାମ କରିବାକୁ ହେବ, ସେ ବିଷୟରେ ତାକୁ ଆଲୋଚନା କରିବାକୁ ହେବ ସେମାନଙ୍କ ସହିତ ।

ସେହିଦିନ ରାତିରେ ଝୁଖ୍‌ରାଇ ଆଉ ଫେରିଲା ନାହିଁ । ସକାଳୁ ଉଠି ପାଭେଲ୍ ଦେଖିଲା, ତା'ର ବିଛଣା ଖାଲି ପଡ଼ିଛି । ସେଥିରେ ରାତିରେ କେହି ଶୋଇ ନାହାନ୍ତି ।

ମନରେ ଆଶଙ୍କା ଓ ଉଦ୍‌ବେଗ ଧରି ପାଭେଲ୍ ଶୀଘ୍ର ଶୀଘ୍ର ଲୁଗା ପିନ୍ଧି ବାହାରକୁ ବାହାରିପଡ଼ିଲା । ଦୁଆରମୁହଁରେ ତାଲା ପକେଇ, ଚାବି ଯଥାସ୍ଥାନରେ ରଖି ସେ ପ୍ରଥମେ ଗଲା କ୍ଲିମ୍‌କା ଘରକୁ, କାଳେ ସିଏ ଯଦି କିଛି ଜାଣିଥିବ ଫ୍ୟୋଦୋର୍ ବିଷୟରେ । କ୍ଲିମ୍‌କାର ମା, ଯାହାଙ୍କର ଚଉଡ଼ା ମୁହଁ, ମୁହଁରେ ବସନ୍ତ ଦାଗ, ହୃଷ୍ଟପୁଷ୍ଟ ସ୍ତ୍ରୀଲୋକ ଜଣେ । ବାସନ ମାଜୁଥିଲେ ସେ । ଫ୍ୟୋଦୋର୍ କୋଉଠି ଅଛନ୍ତି ଜାଣିଛ ବୋଲି ପାଭେଲ୍ ପ୍ରଶ୍ନର ଉତ୍ତରରେ ଚିଡ଼ିଯାଇ ସେ କହିଲେ:

"ମୋର କ'ଣ ଆଉ କିଛି କାମ ନାହିଁ, ଖାଲି ତୋ ଫ୍ୟୋଦୋର୍ କୁଆଡ଼େ ଗଲା କି ନ ଗଲା ଅନେଇ ବସିଥିବି ? ତା'ରି ପାଇଁ ଯେତେସବୁ... ଗାତକୁ ଯାଉ ନାହିଁ ସେଇଟା ? ଜୋକୁଇଖା ଘରଟାକୁ ଓଲଟପାଲଟ କରିଦେଇଛନ୍ତି ! ତା' ସାଙ୍ଗେ ତୋର କି କାମରେ ? ଆଚ୍ଛା ପିଲାଗୁଡ଼ାଏ ! ତୁ କି କ୍ଲିମ୍‌କା କି ଆଉ ଯିଏ ଥରେ ଯଦି ତା' କଥା ଉଠେଇଛ ନା଼ ... ଦେଖିବ ପୁଣି ... ।"

ରାଗରେ ତମ ତମ ହୋଇ ସେ ତାଙ୍କ ବାସନମଜା କୁଣ୍ଡ ପାଖକୁ ଫେରିଗଲେ ।

କ୍ଲିମ୍‌କାର ମା' ଭାରୀ ବଦରାଗୀ ଆଉ ଭାରୀ ଖରାପ ତୁଣ୍ଡ ତାଙ୍କର । ମୁହଁକୁ ଯାହା ଆସେ କହିଯାଆନ୍ତି ।

କିମ୍ଭକା ଘରୁ ଫେରି ପାଭେଲ୍ ସେର୍ଗେଇ ଘରକୁ ଯାଇ ତା'ର ଆଶଙ୍କାର କଥା କହିଲା :

"କିନ୍ତୁ ତୁ ଏମିତି ବିବ୍ରତ ହୋଇ ପଡ଼ୁଛୁ କାହିଁକି ? ସିଏ ହୁଏତ କୌଣସି ବନ୍ଧୁଘରେ ରହିଯାଇ ପାରିଥାଆନ୍ତି ।" ଭାଲ୍ୟା କହିଲା । କିନ୍ତୁ କଥାରେ ତା'ର ଆତ୍ମପ୍ରତ୍ୟୟ ନ ଥିଲା ।

ପାଭେଲ୍ ସେଠାରୁ ଯାଇ ଅଧିକ ସମୟ ବ୍ରୁଝାକ୍‌ଙ୍କ ଘରେ ମଧ୍ୟ ଅପେକ୍ଷା କଲା ନାହିଁ । ସେମାନେ ତାକୁ ଖାଇକରି ଯିବାକୁ ଯେତେକରି କହିଲେ ମଧ୍ୟ ମନା କରି ପାଭେଲ୍ ଫେରିଆସିଲା ।

ଝୁଖ୍‌ରାଇକୁ ଫେରିଆସିଥିବାର ଦେଖିବ ବୋଲି ଆଶା କରି ସେ ଘର ଆଡ଼କୁ ମୁହାଁଇଲା ।

ଦୁଆରମୁହଁରେ ତାଲାଟା ସେମିତି ଲଟକୁଛି । ପାଭେଲ୍ ଘର ଦୁଆରମୁହଁରେ କିଛି ସମୟ ଛିଡ଼ା ହୋଇ ରହିଲା ଭାରାକ୍ରାନ୍ତ ହୃଦୟରେ । ଫାଙ୍କା ଘରଟା ଭିତରକୁ ପଶିବାକୁ ମନ ଡାକୁ ନ ଥିଲା ତା'ର ।

ଗଭୀର ଚିନ୍ତାରେ ନିମଗ୍ନ ହୋଇ କେତୋଟି ମିନିଟ୍ ପର୍ଯ୍ୟନ୍ତ ଘର ଅଗଣାରେ ଛିଡ଼ା ହୋଇ ରହିଲା ସେ । ତା'ପରେ ହଠାତ୍ କି ଏକ ଭାବ ଆବେଗରେ ଟାଣିହୋଇଗଲା ଗୁହାଳ ଆଡ଼କୁ । ଛାତ ଉପରକୁ ଚଢ଼ିଯାଇ, ବୁଢ଼ିଆଣୀ ଜାଲସବୁ ହାତରେ ସଫା କରି କରି ଗୁରୁଣ୍ଡି ଗୁରୁଣ୍ଡି ସେ ଯାଇଁ ପହଞ୍ଚିଲା ପିସ୍ତଲ୍ ଲୁଗ୍ଭଇଥିବା ଜାଗାରେ ଠିକ୍ । କଳା କନାରେ ଗୁଡ଼ାହୋଇଥିବା ଓଜନଦାର 'ମ୍ୟାନ୍‌ଲିଚର' ପିସ୍ତଲ୍‌ଟାକୁ କାଢ଼ିଆଣିଲା, ଲୁଗ୍ଭ ହୋଇଥିବା ସ୍ଥାନରୁ ।

ସେଠାରୁ ବାହାରି ଷ୍ଟେସନ୍ ଆଡ଼କୁ ଗଲା ସେ । ପକେଟ୍‌ରୁ ଓଜନିଆ ପିସ୍ତଲ୍‌ଟା ଓହ୍ଲାଇ ଦେଉଥିବାରୁ ମନ ଭିତରେ ଅପୂର୍ବ ଏକ ଉନ୍ମାଦନା ଖେଳିଯାଉଥାଏ ତା'ର ।

ମାତ୍ର ଝୁଖ୍‌ରାଇର କୌଣସି ଖବର ଷ୍ଟେସନ୍‌ରେ ମଧ୍ୟ ମିଳିଲା ନାହିଁ । ଫେରିବା ବାଟରେ ଏବେ କିଛି ଦିନ ହେଲା ଅତି ପରିଚିତ ହୋଇଯାଇଥିବା ଜଙ୍ଗଲକର୍ତ୍ତାଙ୍କର ବଗିଚ୍ଭ ପାଖରେ ପାଦ ଅଟକିଗଲା ତା'ର । ମନରେ ଏକ କ୍ଷୀଣ ଆଶା ରଖି ସେ ଝରକାବାଟେ ଭୁଁକିମାରିଲା, କାଳେ କାହାକୁ ଦେଖିବ ବୋଲି । ମାତ୍ର ସାରା ଘରଟା ବଗିଚ୍ଭ ଭଳି ଶୂନ୍ୟ ଓ ନିର୍ଜୀବ ଜଣାଯାଉଥିଲା । ବଗିଚ୍ଭଟାକୁ ଅତିକ୍ରମ କରି ଯାଉ ଯାଉ ପଚ୍ଚିତ ଶୁଷ୍କ ଝରା ପତ୍ରରେ ପୋତି ହୋଇଯାଇଥିବା ବଗିଚ୍ଭ ରାସ୍ତାଟାକୁ ବି ଦେଖିଲା । ସମସ୍ତ ସ୍ଥାନଟା ପରିତ୍ୟକ୍ତ, ଅବହେଳିତ ଜଣାଯାଉଥିଲା । କେହି ଯେମିତି ଅନେକ ଦିନ ଧରି ଏଠିକି ଆସି ନାହିଁ, ପରିଷ୍କାର କରି ନାହିଁ । ବିରାଟ ଘରଟାର ମରଣଭଳି ଏକାନ୍ତ ନିର୍ଜନ ରୂପ ପାଭେଲ୍‌କୁ ଆହୁରି ଅଧିକ ଦୁଃଖରେ ଆଚ୍ଛନ୍ନ କରିଦେଲା ।

ଶେଷ ଥର ପାଇଁ ତୋନ୍ୟାକୁ ସେ ଦେଖିଥିଲା ମାସକ ତଳେ, ଯେଉଁଦିନ ଶେଷ ଥର ପାଇଁ ତା' ସହିତ ଭୟଙ୍କର କଳି ଲାଗିଯାଇଥିଲା ପାଭେଲ୍‌ର, ଅତି ଅସ୍ୱାଭାବିକ ଭାବରେ ।

ପକେଟ୍‌ରେ ହାତ ପୂରାଇ ଧୀରେ ଧୀରେ ସହର ଆଡ଼କୁ ଫେରୁଫେରୁ ପାଭେଲ୍ ଭାବୁଥିଲା, ତୋନ୍ୟା ସହିତ ଘଟିଥିବା ବବାଦର କଥା ।

ଅକସ୍ମାତ୍ ତା' ସହିତ ଭେଟ ହୋଇଥିଲା ତୋନ୍ୟାର ଏବଂ ତୋନ୍ୟା ତାଙ୍କ ଘରକୁ ଆସିବାକୁ ଆମନ୍ତ୍ରଣ ଜଣାଇଥିଲା ତାକୁ ।

"ବାପା ଓ ମା' ଗୋଟିଏ ଜନ୍ମଦିନ ଉତ୍ସବରେ ଯୋଗଦେବା ପାଇଁ ବଇଣିନ୍‌ସିକୁ ଯାଇଛନ୍ତି । ମୁଁ ବିଲ୍‌କୁଲ୍ ଏକୁଟିଆ ଥିବି । ତମେ ଆସିବ ପାରିବୁଣା ? ମୋ ପାଖେ ଗୋଟାଏ ବଢ଼ିଆ ବହି ଅଛି, ପଢ଼ନ୍ତେ ! ଲିଓନିଦ୍ ଆନ୍ଦ୍ରେୟେଭ୍‌ଙ୍କର "ସାଶ୍‌କା ଝିଗୁଲେଭ୍" । ଥରେ ପଢ଼ି ସାରିଲିଣି ମୁଁ । ହେଲେ ତମ ସାଙ୍ଗେ ଆଉରି ଥରେ ପଢ଼ିବି । ଭାରୀ ମଜାରେ କଟନ୍ତା ସନ୍ଧ୍ୟାଟା । ଆସିବ ତମେ ?"

ତା'ର ବଡ଼ ବଡ଼ ପୋଟଳଚିରା ଆଖି ଦୁଇଟାରେ ବ୍ୟଗ୍ର ଆଶା ନେଇ ସେ ଅନାଇଥିଲା ପାଭେଲ୍‌କୁ । ମୁଣ୍ଡରେ ପିନ୍ଧିଥିଲା ଧଳା ଟୋପି, ତା'ର ବାଦାମୀ ଗହଳିଆ କେଶରାଶି ଉପରେ ।

"ମୁଁ ଆସିବି ।"

ସେମାନେ ପରସ୍ପରଠାରୁ ବିଦା ହୋଇଥିଲେ ।

ପାଭେଲ୍ ତା'ର ମେସିନ୍ ପାଖକୁ ଧାଇଁଥିଲା ଲୋଭନୀୟ ସୁନ୍ଦର ସନ୍ଧ୍ୟାଟା ସାରା ଯେ ସେ ତୋନ୍ୟା ସହିତ ବିତାଇବ, ଏହି ମଧୁର ଚିନ୍ତାରେ । ସେଦିନ ଚୁଲୀଣାର ନିଆଁଟା ତାକୁ ଅଧିକ ଉଜ୍ଜ୍ୱଳ ଲାଗୁଥିଲା, ଅନ୍ୟ ଦିନମାନଙ୍କଠାରୁ ସୁନ୍ଦର ଭାବରେ କାଠଗୁଡ଼ାକ ଜଳିଲାବେଳେ ଚଡ଼୍‌ଚଡ଼୍ ହୋଇ ଫୁଟୁଛନ୍ତି ଆଜି ।

ପ୍ରଧାନ ପ୍ରବେଶ ପଥର ବିରାଟ କବାଟଟା ଖଡ଼୍‌ଖଡ଼୍ କଲା ପରେ, ଯେଉଁ ତୋନ୍ୟା କବାଟ ଫିଟାଇଲା, ସେ ସକାଳର ଆବେଗମୟ ତୋନ୍ୟା ନୁହଁ । କେମିତି ଖାପଛଡ଼ା ଲାଗୁଥିଲା ।

"ଆଜି ଅନେକ ଅତିଥି ଆସିଯାଇଛନ୍ତି । ତାଙ୍କୁ ସବୁ ଆଶା କରୁ ନ ଥିଲି ମୁଁ । କିନ୍ତୁ ତମେ ବି ଆସ", କହିଲା ତୋନ୍ୟା ।

ପାଭେଲ୍ ଫେରିଯିବା ଅଭିପ୍ରାୟରେ କବାଟ ପାଖକୁ ଫେରିଲା ।

"ଆସ, ସେମାନେ ତମକୁ ଜାଣିଲେ ସେମାନଙ୍କର ଭଲ ହେବ", ତା'ର ବାହାକୁ ଟାଣିଧରି କହିଲା ତୋନ୍ୟା । ତା'ପରେ ତା'ର ଅଣ୍ଟା ଗଳିପଟେ ହାତ ବେଢ଼ାଇ ଡାଇନିଙ୍ଗ୍‌ରୁମ୍ ଦେଇ ନିଜ ବଖରାକୁ ନେଇଗଲା ତାକୁ ।

ସେଠି ପହଞ୍ଚିଲାବେଳକୁ ଆଉ କେତେଜଣ ତରୁଣ ତରୁଣୀ ବସିଥିଲେ । ସେମାନେ ହସିଲେ ।

"ତମମାନଙ୍କ ସହିତ ମୋର ବନ୍ଧୁ ପାଭେଲ୍ କୋର୍ଚ୍ଚଗିନ୍‌କୁ ପରିଚିତ କରାଇଦେଉଛି ।"

ଘର ମଝିରେ ପଡ଼ିଥିବା ଟେବୁଲକୁ ଘେରି ଆଉ ତିନିଜଣ ବସିଥିଲେ । ଲିଜା ସୁଖାର୍କୋ ସୁନ୍ଦର, ଶ୍ୟାମଳବର୍ଣ୍ଣର, ଜିମ୍‌ନାସିଅମ୍ ଛାତ୍ରୀ । ଛୋଟ ମୁହଁ ତା'ର । ଆଉ

ଜଣେ ତରୁଣ ଭଲ କାରିଗର ଦ୍ୱାରା ତିଆରି କଳା ଜ୍ୟାକେଟ୍ ପିନ୍ଧିଥିଲେ । ମସୃଣବାଳ ତା'ର ତେଲରେ ଚିକ୍‌ଚିକ୍ କରୁଥାଏ । ପାଉଁଶିଆ ଆଖିରେ ତା'ର ଫାଙ୍କା ଚାହାଣୀ ଦେଇ ବସିଥିଲ । ଏ ଦୁହିଁଙ୍କ ମଝିରେ ଥିଲ ପିଲଛିଆ ସୁଇ ଜ୍ୟାକେଟ୍ ପିନ୍ଧା ଭିକ୍‌ଟର ଲେଷିନ୍‌ସ୍କି । ତୋନ୍ୟା ଘର କବାଟ ଫିଟାଇଲ ବେଳେ, ତାକୁ ହିଁ ପ୍ରଥମେ ଦେଖିଥିଲ ପାଭେଲ୍ । ଲେଷିନ୍‌ସ୍କି ମଧ୍ୟ କୋର୍ଚ୍ଚାଗିନ୍‌କୁ ଚିହ୍ନି ପାରିଥିଲ ଏବଂ ସୁନ୍ଦର ଅଙ୍କା ହେଲ ଭଳି ଭ୍ରୂଲତା ବିସ୍ମୟରେ ବିସ୍ତାରିତ ହୋଇଉଠିଥିଲ ।

କେତୋଟି ମୁହୂର୍ତ୍ତ ପର୍ଯ୍ୟନ୍ତ ପାଭେଲ୍ ଦୁଆରମୁହଁରେ ନିଶ୍ଚଳ ହୋଇ ଛିଡ଼ାହୋଇ ରହିଲ । ଆଖିରେ ତା'ର ଭିକ୍‌ଟର ପ୍ରତି ସ୍ପଷ୍ଟ ଶତ୍ରୁତାର ଚାହାଣୀ ।

ଏ ଅସ୍ୱସ୍ତିକର ନୀରବତା ଭଙ୍ଗ କରିବା ପାଇଁ ତୋନ୍ୟା ତୁରନ୍ତ ପାଭେଲ୍‌କୁ ଡାକିଲ ଭିତରକୁ ଆସିବା ପାଇଁ ଓ ଲିଜା ଆଡ଼କୁ ବୁଲିପଡ଼ିଲ, ତାକୁ ପରିଚିତ କରାଇଦେବା ପାଇଁ ।

ନବାଗନ୍ତୁକକୁ ଆଗ୍ରହ ଓ ମନଯୋଗ ସହକାରେ ଲକ୍ଷ୍ୟ କରୁଥିବା ଲିଜା ସୁଖାର୍କୋ ନିଜ ଆସନରୁ ଉଠିପଡ଼ିଲ ।

ପାଭେଲ୍ କିନ୍ତୁ ଅତି ଦ୍ରୁତପଦରେ ବୁଲିପଡ଼ି ଅନ୍ଧାରଘେରା ଡାଇନିଙ୍ଗ୍‌ରୁମ୍ ବାଟ ଦେଇ ଦାଣ୍ଡ ଦୁଆରମୁହଁ ପାଖକୁ ଚାଲିଆସିଲ । ସିଏ ପ୍ରାୟ ବାରଣ୍ଡା ଟପିସାରିଲଣି, ଏହି ସମୟରେ ତୋନ୍ୟା ପଛରୁ ଆସି ତାକୁ କାନ୍ଧରୁ ଧରିପକାଇଲ ।

"କାହିଁକି ଦୌଡ଼ିପଳାଉଛ ? ମୁଁ ବିଶେଷକରି ଚାହୁଁଥିଲି, ସେମାନେ ତମକୁ ଜାଣନ୍ତୁ ବୋଲି !"

ନିଜ କାନ୍ଧରୁ ତା'ର ହାତ ଛଡ଼େଇଦେଇ ଅତି ତୀବ୍ରଭାବରେ ପାଭେଲ୍ କହିଲ :

"ସେ କଣ୍ଢେଇଟା ଆଗରେ ଗୋଟାଏ ଦୃଶ୍ୟ ହେବାକୁ ମୁଁ ଚାହେଁ ନାହିଁ । ମୁଁ ସେମାନଙ୍କ ଭିତରୁ ଜଣେ ନୁହଁ । ତମେ ସେମାନଙ୍କୁ ଭଲ ପାଇପାର, ମାତ୍ର ମୁଁ ସେମାନଙ୍କୁ ଘୃଣା କରେ । ସେମାନେ ତମ ବନ୍ଧୁ ବୋଲି ଜାଣିଥିଲେ ମୁଁ କଦାପି ଆସିନଥାନ୍ତି ।"

ନିଜର ବଢ଼ିଆସୁଥିବା ରାଗକୁ ଚାପିରଖି ତୋନ୍ୟା ତା' କଥାରେ ବାଧାଦେଇ କହିଲ :

"ମୋତେ ଏମିତି କହିବାର କି ଅଧିକାର ତମର ଅଛି ? ମୁଁ ତ ତମକୁ ପଚାରୁ ନାହିଁ, ତମର ସବୁ ବନ୍ଧୁ କେଉଁମାନେ ବୋଲି, କିଏ କିଏ ସବୁ ତମ ପାଖକୁ ଆସନ୍ତି ବୋଲି ?"

"ତମେ କାହାକୁ ଦେଖା କର କି ନକର, ସେଥିରେ ମୋର କିଛି ଯାଏ ଆସେ ନାହିଁ । କେବଳ ମୁଁ ଏତିକି ଜାଣେ ଯେ, ଆଉ କେବେହେଲେ ମୁଁ ଏଠିକି ଆସିବି ନାହିଁ ।"



ଆଗ ପାହାଚକୁ ଓହ୍ଲାଉ ଓହ୍ଲାଉ ପାଭେଲ୍ କହିଲା ତାକୁ ଓ ବଗିଚା ଫାଟକ ପାଖକୁ ଦୌଡ଼ି ଦୌଡ଼ି ଚାଲିଗଲା ।

ସେହିଦିନଠାରୁ ପାଭେଲ୍ ତୋନ୍ୟାକୁ ଆଉ ଭେଟି ନାହିଁ । ଇହୁଦୀଙ୍କ ବିରୁଦ୍ଧରେ ଚାଲିଥିବା ଏ ହାଣକାଟ ବେଳେ ସେ ଓ ତା'ସାଙ୍ଗର ବିଜୁଳି କାରିଗର ପାଓ୍ୱାର ଷ୍ଟେସନ୍‌ରେ ଅନେକ ଇହୁଦୀ ପରିବାରଙ୍କୁ ଲୁଚାଇ ରଖିବା ଭିତରେ, ସେ ଭୁଲିଯାଇଥିଲା କାଲିର କଥା ଏବଂ ଆଜି ସତକୁ ସତ ଚାହୁଁଥିଲା ତାକୁ ଆଉ ଥରେ ଦେଖିବାକୁ ।

ଝୁଖ୍‌ରାଇ ଏଭଳି ଅନ୍ତର୍ଦ୍ଧାନ ହେବା ଓ ଘରେ କେହି ନାହାନ୍ତି, ଏକଥା ଭାବି ପାଭେଲ୍‌ର ମନ ବିଷାଦାଚ୍ଛନ୍ନ ହୋଇଉଠିଲା । ସମ୍ମୁଖରେ ତା'ର ଆଗକୁ ଆଗକୁ ଲମ୍ବିଯାଇଥିଲା ମାଟିଆ ରାସ୍ତାଟା । ଗତ ବସନ୍ତ ସମୟର କାଦୁଅ, ଏପର୍ଯ୍ୟନ୍ତ ରାସ୍ତାରୁ ଶୁଖି ଯାଇ ନାହିଁ । ରାସ୍ତା ଉପରେ ଅଜସ୍ର ଖାଇରେ ପଙ୍କ ପୂରିରହିଛି । ଆଗରେ ରାସ୍ତା ଉପରକୁ ମୁହଁ କରି ଗୋଟାଏ ମଇଳା, ଜରାଜୀର୍ଣ୍ଣ ଘରପାଖରୁ ରାସ୍ତାଟା ବଙ୍କେଇ ଯାଇଛି ।

* * *

ଛକର ବିପରୀତ ପାଖରେ ଗୋଟିଏ ଭଙ୍ଗା ଖୁଣ୍ଟ କଡ଼ରେ ଜରାଜୀର୍ଣ୍ଣ କବାଟ, ଯେଉଁଥିରେ 'ଝରଣା ଜଳ'ର ମାର୍କା ମରାଯାଇଛି, ତା'ରି ନିକଟରେ ଭିକ୍ଟର ଲେଭିନ୍‌ସି ସେତେବେଳେ ଲିଜା ପାଖରୁ ବିଦାୟ ମାଗୁଥିଲା ।

କଥା କହୁ କହୁ ସେ ଲିଜାର ଦୁଇ ହାତକୁ ଧରିଥିଲା ଓ ପ୍ରଶ୍ନବାଚକ ଚାହାଣୀରେ ତା'ଆଖିରେ ଆଖି ମିଳାଇ ରଖିଥିଲା ।

"ତମେ ଆସିବ ? ମୋତେ ଠକିଦେବ ନାହିଁ ତ ?"

"ନିଶ୍ଚୟ ଆସିବି, ତମେ ମୋ ପାଇଁ ନିଶ୍ଚେ ଅପେକ୍ଷା କରିଥିବ", ଲିଜା କହିଲା ଗେହ୍ଲେଇ ହୋଇ ।

ବିଦାୟ ନେଇ ନିଜର କୁହୁଡ଼ିଘେରା ସୁନ୍ଦର ଆଖିରେ ଭିକ୍ଟରକୁ ଚାହିଁ ଟିକେ ହସିଦେଲା ପ୍ରତିଶ୍ରୁତି ଦେବା ଭଙ୍ଗୀରେ ।

ରାସ୍ତାର ଆଉ ଟିକିଏ ଭିତରକୁ ଲିଜା ଦେଖିଲା, ଦୁଇଜଣ ଲୋକ ଗୋଟାଏ ପଛପଟ କୋଣରୁ ବାହାରି ରାସ୍ତା ଉପରକୁ ଆସିଲେ । ସେଥିରୁ ଜଣେ ହୃଷ୍ଟପୁଷ୍ଟ, ଚଉଡ଼ା ଛାତିବାଲା ଲୋକ, ଶ୍ରମିକ ପୋଷାକ ପିନ୍ଧିଛି । ବୋତାମ ଦିଆହୋଇ ନ ଥିବା ଜ୍ୟାକେଟ୍ ଭିତରୁ ଦିଶୁଛି ଭିତରେ ପିନ୍ଧିଥିବା ଗାରିଗାରିକା ଗେଞ୍ଜି । ଗୋଟାଏ କଳା ଟୋପି କପାଳ ଉପରକୁ ଟାଣିଦେଇଛି ସେ । ପାଦରେ ତା'ର ବାଦାମୀ, ନୁଆଁଣିଆଁ ଅଗ ଥିବା ଜୋତା । ଆଖିତଳକୁ ତା'ର ଗୋଟାଏ ନୀଳ ରଙ୍ଗର ଦାଗ ଅଛି ।

ଲୋକଜଣକ ଅତି ଦ୍ରୁତ ପଦକ୍ଷେପରେ ଝୁଲିଝୁଲି ଚାଲିଛି । ତା'ର ତିନିପାଦ ପଛକୁ ଏ ଲୋକଟିର ପିଠିରେ ବାୟୋନେଟ୍ ଲଗାଇଧରି ଚାଲିଛି ଜଣେ ପେଟ୍‌ଲ୍ୟୁରା ସୈନିକ । ପିନ୍ଧିଛି ଧୂସର କୋଟ୍‌ଟାଏ । ଦୁଇଟା କାର୍ଟ୍ରିଜ୍ ଥଳି ଝୁଲୁଛି ତା'ର କମରପଟିରୁ । ତା'ର ମଇଳା ମେଣ୍ଢାଚମଡ଼ା ଟୋପି ଭିତରୁ ଆଖିଦିଇଟା ବନ୍ଦୀର ମୁଣ୍ଡ ପଛପଟକୁ ଲକ୍ଷ୍ୟ କରିଛି । କହରା, ତମାଖୁଧୂଆଁ ପରି କଳା ହୋଇଯାଇଥିବା ନିଶ ଦି'ପଟ ମୁହଁର ଦୁଇକଡ଼କୁ ଝୁଲିପଡ଼ିଛି ତା'ର ।

ଗତି ଟିକିଏ କୋହଳ କରି ଲିଜା ରାସ୍ତା ଅତିକ୍ରମ କରି ଆରପଟକୁ ଗଲା । ଠିକ୍ ସେତିକିବେଳକୁ ତା' ପଛରୁ ପାଭେଲ୍ ରାଜରାସ୍ତା ଉପରକୁ ଆସିଲା ଗଳିରୁ ବାହାରି ।

ପୁରୁଣା ଘରଟାକୁ ଟପି ଡାହାଣ ଆଡ଼କୁ ମୋଡ଼ ଭାଙ୍ଗି ଯିବା ବେଳକୁ ସିଏ ମଧ୍ୟ ତା' ଆଡ଼କୁ ଆସୁଥିବା ଦୁଇଜଣଯାକ ଲୋକଙ୍କୁ ଦେଖିଲା ।

ଯାଉଁ ଯାଉଁ ପାଭେଲ୍ ମୁହୂର୍ତ୍ତେ ଠିଆ ହୋଇଗଲା ସ୍ଥିରହୋଇ, ସତେ ଯେମିତି ମାଟିରେ ତା'ର ଚେର ଲାଗିଯାଇଛି । ବନ୍ଦୀ ଜଣକ ଝୁଖ୍‌ରାଇ !

"ଓଃ, ଏଇଥି ପାଇଁ ତା' ହେଲେ ସେ ଫେରି ନାହିଁ !" ମନେ ମନେ ଭାବିଲା ପାଭେଲ୍ । ଝୁଖ୍‌ରାଇ ନିକଟରୁ ଆହୁରି ନିକଟତର ହେଉଛି । ପାଭେଲ୍‌ର ଛାତିର ସ୍ପନ୍ଦନ ବଢ଼ିବାକୁ ଲାଗିଲା, ସତେକି ଛାତିଟା ଫାଟିଯିବ । ଉନ୍ମାଦ ଭଳି ତା'ର ମନର

ଭାବନାଗୁଡ଼ାକ ଓଲଟପାଲଟ ହୋଇଗଲା ଓ ଅତି ଦ୍ରୁତଭାବରେ କ'ଣ ବୋଲି କ'ଣ ଭାବିବାକୁ ଲାଗିଲା । ତା' ସଙ୍ଗେ ସଙ୍ଗେ ମନ ତା'ର ଘଟଣାକୁ ବିସ୍ତୃତଭାବରେ ଜାଣିବା ପାଇଁ ଚେଷ୍ଟା କଲା । ଆଉ ଅଧିକ ଚିନ୍ତା କରିବାକୁ ବା ସ୍ଥିର କରି ଜାଣିବାକୁ ସମୟ ନାହିଁ । ପଚରା ଉଚରା କରିବାର ବେଳ ନାହିଁ । ଗୋଟିଏ କଥା ଅତିମାତ୍ରାରେ ସତ୍ୟ ଯେ ଝୁଖ୍‌ରାଇ ଧରାପଡ଼ିଛି ।

ବିସ୍ମୟ ବିହ୍ୱଳିତ ହୋଇ ପାଭେଲ୍ ଦେଖୁଥାଏ ସେ ଦୁଇଜଣଙ୍କୁ ଆଗେଇ ଆସୁଥିବାର ।

"କ'ଣ କରିବାକୁ ହେବ ?"

ଶେଷ ମୁହୂର୍ତ୍ତରେ ତା'ର ମନେ ପଡ଼ିଲା ଯେ, ପକେଟ୍‌ରେ ତା'ର ରିଭଲଭର ଅଛି । ସେମାନେ ତାକୁ ଅତିକ୍ରମ କଲାପରେ ରାଇଫଲଧାରୀ ଲୋକଟାକୁ ପଛଆଡ଼ୁ ଗୁଳି କରିବ ଏବଂ ଫ୍ୟୋଦୋର୍ ମୁକ୍ତ ହୋଇଯିବ । ମୁହୂର୍ତ୍ତକରେ ଏହି ସିଦ୍ଧାନ୍ତରେ ପହଞ୍ଚିଲା ପରେ ତା' ମନ ପରିଷ୍କାର ହୋଇଗଲା । ମାତ୍ର ଗତକାଲି ଫ୍ୟୋଦୋର୍ ତାକୁ କହିଥିଲା, "ଏଥି ପାଇଁ ଆମକୁ ଦରକାର ଶକ୍ତିଶାଳୀ ଲୋକ... ।"

ପାଭେଲ୍ ପଛପଟକୁ ଆଖି ବୁଲାଇ ଆଣିଲା । ସହରକୁ ପଡ଼ିଥିବା ରାସ୍ତା ସମ୍ପୂର୍ଣ୍ଣ ନିର୍ଜନ । କେହି ଜଣେହେଲେ ଆଖିରେ ପଡ଼ୁ ନାହାନ୍ତି । ଆଗରେ ଫିକା ରଙ୍ଗର କୋଟ୍‌ଟିଏ ପିନ୍ଧି ଜଣେ ସ୍ତ୍ରୀଲୋକ ଜୋର୍‌ରେ ଜୋର୍‌ରେ ରାସ୍ତା ଅତିକ୍ରମ କରିଯାଉଛି । ସିଏ ଏଥିରେ ହସ୍ତକ୍ଷେପ କରିବ ନାହିଁ । ଦୋମୁହାଁଣି ଛକ ଉପରୁ ଲମ୍ବିଯାଇଥିବା ଅନ୍ୟ ରାସ୍ତାଟା ତାକୁ ଦିଶୁ ନଥାଏ । ଅନେକ ଦୂରରେ ଷ୍ଟେସନ୍ ଆଡ଼କୁ ଯାଇଥିବା ରାସ୍ତାରେ କେବଳ କେତେଜଣ ଲୋକ ଦେଖାଯାଉଥାନ୍ତି ।

ପାଭେଲ୍ ରାସ୍ତାର କଡ଼କୁ ଘୁଞ୍ଚିଗଲା । ଝୁଖ୍‌ରାଇ ତାକୁ ଦେଖିପାରିଲା । ସେମାନଙ୍କ ଭିତରେ ବ୍ୟବଧାନ ମାତ୍ର କେଇ ହାତ ।

ଆଖିକୋଣରେ ତାକୁ ଚାହୁଁଥିଲା ଝୁଖ୍‌ରାଇ । ତା'ର ଆଖିପତା ଟିକିଏ ଥରିଉଠିଲା । ହଠାତ୍ ଦେଖାହେବାର ଆକସ୍ମିକତା ଫଳରେ ତା'ର ଗତି ଟିକିଏ ମନ୍ଥର ହୋଇଗଲା । ତା' ପିଠିରେ ଲାଗିଥିବା ବାୟୋନେଟ୍ କେଞ୍ଚି ହୋଇଗଲା ।

"ହେଃ, ଠିକ୍ ବାଟରେ ଚାଲ, ନହେଲେ ଯା ମୁନର ମଜା ଚାଖିବୁ ଏଇନେ", ଜଗୁଆଳି ଜଣକ ବଗଡ଼ା ଗଳାରେ ଚିତ୍କାର କରି କହିଲା ।

ଝୁଖ୍‌ରାଇ ଜୋର୍ ଜୋର୍‌ରେ ପାଦ ପକାଇଲା । ବୋଧହୁଏ ପାଭେଲ୍ ସହିତ କଥା କହିବାକୁ ସେ ଚାହୁଁଥିଲା, ମାତ୍ର ସେଥିରୁ ନିରସ୍ତ ହେଲା । ଅଭିବାଦନ ଜଣାଇବା ଭଙ୍ଗୀରେ କେବଳ ହାତ ହଲାଇଦେଲା ଟିକିଏ ।

କାଳେ କହରା ନିଶବାଲା ସୈନିକର ଦୃଷ୍ଟି ଆକର୍ଷଣ କରିପାରେ ଭାବି ପାଭେଲ୍ ଆରକଡ଼କୁ ବୁଲିପଡ଼ିଲା, ଝୁଖ୍‌ରାଇ ତାକୁ ଟପିଗଲା ପରେ ପରେ । ସତେ ଯେମିତି ଏ ସବୁ ଯାହା ଘଟୁଛି ସେଥିପ୍ରତି ତା'ର କୌଣସି ନଜର ନାହିଁ ।

ତା' ମୁଣ୍ଡ କିନ୍ତୁ ସେତେବେଳେ ଅତି ଉଦ୍ବେଗରେ, ଏଇ ଚିନ୍ତାରେ ଓଲଟପାଲଟ

ହୋଇଯାଉଥିଲା ଯେ, ଯଦି ଗୁଳିଟା ତା' ଦେହରେ ନ ବାଜି ଭୂଇଁରେ ଝୁଣ୍ଟୁରାଇ ଦେହରେ ବାଜେ ?..

ମାତ୍ର ଚିନ୍ତା କରିବାକୁ ସମୟ ନଥିଲା... ।

କହରା ନିଶୁଆ ସୈନିକଟି ତା' ମୁହାଁମୁହିଁ ହେଲାକ୍ଷଣି ପାଭେଲ୍ ତା' ଉପରକୁ ଝାମ୍ପିପଡ଼ି ଗୋଟିଏ ଧକ୍କା ଦେଇ ବନ୍ଧୁକଟାକୁ ଧରି ପକାଇଲା ଓ ବନ୍ଧୁକର ନଳୀକୁ ତଳକୁ କରି ଧରିଲା ଜୋର୍‌ରେ ।

ସଙ୍ଗିନ୍‌ଟା ଠନ୍ ଠନ୍ ହୋଇ ରାସ୍ତାର ଚଟାଣରେ ବାଜିଲା ।

ଅଚାନକ ଆକ୍ରମଣରେ ଅପ୍ରସ୍ତୁତ ସୈନିକ ମୁହୂର୍ତ୍ତକ ପାଇଁ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲା । ତା'ପରେ ଜୋରରେ ନିଜ ଆଡ଼କୁ ବନ୍ଧୁକଟାକୁ ଟାଣିବାକୁ ଲାଗିଲା ତା'ର ସମସ୍ତ ଶକ୍ତି ଦେଇ । ନିଜର ସାରା ଦେହର ଭାରା ଦେଇ ପାଭେଲ୍ ତାକୁ ଭିଡ଼ିଧରି ନ ଛାଡ଼ିବାକୁ ଚେଷ୍ଟା କଲା । ଭିଡ଼ାଓଟରାରେ ଗୁଳିଟାଏ ଫୁଟିଗଲା । ଗୁଳିଟା ପଥରଖଣ୍ଡକ ଦେହରେ ବାଜି ସାଇଁକିନା ଯାଇ ଗୋଟାଏ ନାଳି ଭିତରେ ପଡ଼ିଲା ।

ଗୁଳିର ଶବ୍ଦରେ ଝୁଣ୍ଟୁରାଇ କଡ଼େଇଗଲା ଓ ବୁଲିପଡ଼ିଲା । ପାଭେଲ୍ ହାତରୁ ବନ୍ଧୁକଟାକୁ ଝିଙ୍କି ନେବାକୁ ସୈନିକଟି ଭୟଙ୍କର ଚେଷ୍ଟା କରୁଥାଏ । ପାଭେଲ୍ ହାତ ମୋଡ଼ିହୋଇ କଡ଼୍ କଡ଼୍ ଡାକିଲାଣି ସେତେବେଳକୁ ତଥାପି ସେ ତା' ହାତମୁଠା କୋହଳ କରୁ ନ ଥାଏ । ତା' ପରେ ଗୋଟାଏ ଧକ୍କାରେ ଉତ୍ୟକ୍ତ ପେଟ୍‌ଲ୍ୟୁରା ସୈନିକ ପାଭେଲ୍‌କୁ ତଳେ ପକେଇଦେଲା, କିନ୍ତୁ ପାଭେଲ୍ ହାତମୁଠାରୁ ବନ୍ଧୁକଟା ମୁକୁଳାଇ ଆଣିପାରିଲା ନାହିଁ । ତଳେ ପଡ଼ି ପାଭେଲ୍ ସୈନିକଟିକୁ ମଧ୍ୟ ତଳେ ପକାଇଦେଲା, ନିଜଆଡ଼କୁ ଓଟାରିନେଇ । ଏ ଘଡ଼ିସନ୍ଧିବେଳେ ତା'ର ପ୍ରଧାନ କାମ ଥାଏ, କିପରି ନିଜ ମୁଠାରୁ ବନ୍ଧୁକଟି ଖସି ନ ଯାଏ ।

ଦି' ପାହୁଣ୍ଡରେ ଝୁଣ୍ଟୁରାଇ ସେ ଦିହିଙ୍କ କଡ଼ରେ ପହଞ୍ଚିଗଲା । ତା'ର ଲୌହମୁଷ୍ଟି ପବନରେ ଚମକି ଉଠିଲା ଏବଂ ସୈନିକଟିର ମୁଣ୍ଡରେ ଯାଇ ବସିଲା । ମୁହୂର୍ତ୍ତକ ପରେ ପେଟ୍‌ଲ୍ୟୁରା ଲୋକଟି ପାଭେଲ୍ କଡ଼ରେ ଟଳିପଡ଼ିଲା ଏବଂ ପରେ ପରେ ଦୁଇଟି ମାତ୍ର ବଜ୍ରମୁଷ୍ଟିରେ ତା'ର ଦେହ ବଙ୍କେଇ ଯାଇ, ଶୀତଳ ହୋଇ ରାସ୍ତାକଡ଼ ନର୍ଦ୍ଦମାରେ ଲେଟିପଡ଼ିଲା ।

ମୁଷ୍ଟି ଦେଇଥିବା ସେହି ଲୌହହସ୍ତ ପାଭେଲ୍‌କୁ ଭୂଇଁଉପରୁ ଉଠାଇ ପାଦରେ ଠିଆ କରାଇଦେଲା ।

* * *

ଦୋମୁହାଁଣି ଛକ ଉପରୁ ଭିକ୍‌ଟର ସେତେବେଳକୁ ଶହେ ପାଦ ଆଗେଇଛି କି ନାହିଁ, ଗୋଟିଏ ମଧୁର ପ୍ରେମ ସଙ୍ଗୀତର ସ୍ୱରରେ ସିଟି ମାରି ମାରି । ଲିଜାକୁ ଭେଟିଲା ପରେ, ମନ ତା'ର ଆକାଶରେ ଉଡ଼ୁଛି କି ବୁଡ଼ୁଛି ଭାବି ଭାବି ସେ ଯାଉଛି । କାଲି ପରିତ୍ୟକ୍ତ କାରଖାନାଟାରେ କେମିତି ନିଶ୍ଚେ ଯାଇ ତାକୁ ଦେଖା କରି ପ୍ରତିଶ୍ରୁତି ରକ୍ଷା କରିବ ।

ଜିମ୍‌ନାସିଅମ୍ ତରୁଣତରୁଣୀଙ୍କ ଭିତରୁ ଲିଜା ସୁଖାର୍କୋ ନିଜ ପ୍ରେମ ବ୍ୟାପାରରେ ଅତ୍ୟନ୍ତ ସାହସୀ ଓ ଆଗୁଆ ବୋଲି ପ୍ରସିଦ୍ଧ ଅଛି ।

ବଦ୍‌ମାସ, ଛତରା ସେମ୍ୟୋନ୍ ଜାଲିଭାନୋଭ୍ ଥରେ ଘୋଷଣା କରିଦେଇଥିଲା ଯେ, ଲିଜା ତା' ନିକଟରେ ନିଜକୁ ସମର୍ପଣ କରିଛି । ସେମ୍ୟୋନ୍‌କୁ ଭିକ୍‌ଟର ପୂରା ବିଶ୍ୱାସ ନ କଲେ ମଧ୍ୟ ଲିଜା ତା ପାଖରେ ଛଳନା କରିଥିବ ବୋଲି ସେ ଭାବିଲା । କାଲି ସେ ଜାଣିପାରିବ, ଜାଲିଭାନୋଭ୍ ସତ କହିଛି କି ନାହିଁ ବୋଲି ।

"ସିଏ ସତରେ ଆସିଲେ ମୁଁ ମୋଟେ ଲଜ୍ଜ କରିବି ନାହିଁ । ସିଏ ତ ଚୁମା ଖାଇବାକୁ ବାଧା ଦେଉ ନାହିଁ । ଆଉ ଯଦି ସେମ୍ୟୋନ୍ ସତ କହୁଥାଏ ..." ଏଇଠି ଠିକ୍ ତା'ର ଭାବନା ବାଧା ପାଇଲା, ଯେତେବେଳେ ତାକୁ ରାସ୍ତାକଡ଼କୁ ଘୁଞ୍ଚିଯିବାକୁ ପଡ଼ିଲା ଦୁଇଜଣ ପେଟ୍‌ଲ୍ୟୁରା ସୈନିକଙ୍କୁ ବାଟ ଛାଡ଼ିଦେବାକୁ । ସେଥିରୁ ଜଣେ ଲଞ୍ଜକଟା ଘୋଡ଼ାରେ ବସି କ୍ୟାନ୍‌ଭାସ୍ ବାଲ୍‌ଟିଟାଏ ଝୁଲେଇଛି, ନିଶ୍ଚିତ ଭାବରେ ଘୋଡ଼ାକୁ ପାଣି ପିଆଇବ ବାଟରେ ସେ । ଆରଜଣକ ଛୋଟ ଜ୍ୟାକେଟ୍ ସାଙ୍ଗକୁ ଢିଲା ନୀଳ ପ୍ୟାଣ୍ଟ ପିନ୍ଧିଛି ଓ ତା'କଡ଼େ କଡ଼େ ଚାଲିଛି । ହାତ ତା'ର ଘୋଡ଼ସବାରର ଜଙ୍ଘ ଉପରେ ପଡ଼ିଛି ଏବଂ ତାକୁ କ'ଣ ଗୋଟାଏ ମଜା କାହାଣୀ କହୁଛି ସେ ।

ତାଙ୍କୁ ବାଟ ଛାଡ଼ିଦେଇ ଆଗେଇଛି କି ନାହିଁ, ହଠାତ୍ ରାସ୍ତା ଉପରୁ କେଉଁଠୁ ଗୋଟାଏ ଗୁଳି ଫୁଟିବାର ଶବ୍ଦରେ ଚମକି ଅଟକି ଛିଡ଼ାହେଲା ସେ । ବୁଲିପଡ଼ି ସେ ଦେଖିଲା, ଘୋଡ଼ସବାର ତା' ଘୋଡ଼ାକୁ ଚାବୁକ ମାରି ଝପଟାଇଲା ଓ ଅନ୍ୟ ଜଣକ ଦୌଡ଼ିବାକୁ ଆରମ୍ଭ କଲା ତା' ପଛରେ, ହାତରେ ଖୋଲା ଖଣ୍ଡାଟାକୁ ଧରି ।

ଭିକ୍‌ଟର ମଧ୍ୟ ତାଙ୍କ ପଛେ ପଛେ ଦୌଡ଼ିଲା । ସିଏ ରାଜରାସ୍ତା ଉପରେ ପହଞ୍ଚିଛି କି ନାହିଁ ଆଉ ଗୋଟାଏ ଗୁଳି ଫୁଟିଲା ଏବଂ ବୁଲଣିର କୋଣରୁ ଘୋଡ଼ସବାର ଜଣକ ଉନ୍ମାଦ ଭଳି କଦମ୍ ପକାଇ ଘୋଡ଼ାକୁ ଦୌଡ଼ାଉଛି । ଘୋଡ଼ାକୁ ନିଜ ଗୋଇଠିରେ କେଞ୍ଚି ଲଗିଛି ଓ କ୍ୟାନ୍‌ଭାସ୍ ବାଲ୍‌ଟିରେ ପିଟି ଲଗିଛି ସେ । ତା'ପରେ, ପ୍ରଥମ ଫାଟକ ପାଖରେ ଚଳକୁ ଡେଇଁପଡ଼ି ଚିତ୍କାର କରିବାକୁ ଆରମ୍ଭ କଲା :

"ଅସ୍ତ୍ର ଧର ! ଅସ୍ତ୍ର ଧର ! ଆମର ଜଣେ ସୈନିକକୁ ସେମାନେ ମାରି ପକେଇଛନ୍ତି !"

ମିନିଟକ ପରେ ଅଗଣାରୁ ବାହାରକୁ ଝପଟି ଆସିଲେ ସେମାନେ, ଦୌଡ଼ୁ ଦୌଡ଼ୁ ନିଜର ରାଇଫଲର ବୋଲ୍‌ଟ କଡ଼୍‌କଡ଼୍ କରି ଫିଟାଇ ଫିଟାଇ ।

ଭିକ୍‌ଟରକୁ ଗିରଫ କଲେ ସେମାନେ ।

ଅନେକ ଲୋକ ସେତେବେଳକୁ ଜମିଗଲେଣି ରାସ୍ତା ଉପରେ । ସେମାନଙ୍କ ଭିତରେ ଲିଜା, ଯାହାଙ୍କୁ ସାକ୍ଷୀ ହିସାବରେ ଅଟକାଯାଇଛି ।

ଲିଜା ଉଭୟରେ ଘଟଣାସ୍ଥଳରେ ଆଗରୁ ଜଗିଥିଲା ଓ ସେ ତେଣୁ ଝୁଖ୍‌ରାଇ ଓ କୋର୍ଚ୍ଚାଗିନ୍ ପଳେଇଗଲା ବେଳେ ସ୍ପଷ୍ଟଭାବରେ ଦୁଇଜଣଙ୍କୁ ଦେଖିଛି । ଅତି ବିସ୍ମିତ ହୋଇ

ସେ ବୁଝିପାରୁଥିଲା ଯେ, ଯେଉଁ ତରୁଣଟି ପେଟ୍‌ଲ୍ୟୁରା ସୈନିକକୁ ଆକ୍ରମଣ କରିଥିଲା, ତାକୁହିଁ ତୋନ୍ୟା ପରିଚିତ କରାଇଦେବାକୁ ଚାହୁଁଥିଲା ଲିଜା ସହିତ ।

ଘୋଡ଼ସବାରମାନେ କଦମ୍ ପକାଇ ରାସ୍ତା ଉପରକୁ ଆସିଲାବେଳକୁ ସେ ଦୁହେଁ ଗୋଟାଏ ବାଡ଼କୁ ଡ଼ିଆମାରି ଡେଇଁ, ବଗିଚାଟାଏ ଭିତରେ ପଶିଯାଇଥିଲେ । ଝୁଖ୍‌ରାଇକୁ ଗୋଟାଏ ବନ୍ଧୁକ ହାତରେ ଧରି ଦୌଡ଼ୁଥିବାର ଦେଖି ଓ ମୁମୂର୍ଷୁ ସୈନିକଟି ଛିଡ଼ାହେବା ପାଇଁ ପ୍ରାଣାନ୍ତକ ଉଦ୍ୟମ କରୁଥିବାର ଦେଖି, ଘୋଡ଼ସବାର ବାଡ଼ ଆଡ଼କୁ ଦୌଡ଼ାଇଲା ଘୋଡ଼ାକୁ ଚାବୁକ ଲଗାଇ ।

ଝୁଖ୍‌ରାଇ ବୁଲିପଡ଼ିଲା ଏବଂ ନିଜ ହାତରେ ବନ୍ଧୁକ ଟେକି ଗୋଡ଼ାଉଥିବା ସୈନିକକୁ ଲକ୍ଷ୍ୟ କରି ଥରେ ଫୁଟାଇଲା । ଝପଟି ଆସୁଥିବା ସୈନିକ ବୁଲିପଡ଼ି ଯଥାଶୀଘ୍ର ପଳାଇଲା ।

ନିଜର ବିଦୀର୍ଣ୍ଣ ଓଠରେ ଯଥାସାଧ୍ୟ ଚେଷ୍ଟା କରି, ପଡ଼ିଥିବା ସୈନିକ ଜଣକ ଏବେ ସାରା ଘଟଣାଟା ବର୍ଣ୍ଣନା କରୁଥିଲା ।

"ବୋକା, ଗଧ! ତୋ ଆଖି ସାମନାରୁ ଗୋଟାଏ କଇଦୀକୁ ଛାଡ଼ିଦେଲୁ ତୁ? ଏବେ ତୁ ତ ନିଜେ ପଚିଶ ପାହାର ମାଡ଼ ଖାଇବୁ ନିଶ୍ଚେ ।"

"ନିଜେ ଭାରୀ ବୁଦ୍ଧିଆ ନା ? ଆଖି ଆଗରୁ ଛାଡ଼ିଦେଲ? କିରେ, ମୁଁ କିମିତି ଜାଣନ୍ତି, ସେ ଆଉ ବେଧୁଆଟା ପାଗଳ ଭଳିଆ ମୋ ଉପରକୁ କୁଦିପଡ଼ିବ?" ରାଗିଯାଇ କହିଲା ସୈନିକଟି ।

ଲିଜାକୁ ମଧ୍ୟ ନାନା ପ୍ରଶ୍ନ ପଚାରିଲେ ସେମାନେ । ସିଏ ବି ଜଣାଥିଲି କହିବା କଥାକୁ ବଖାଣିଲା । ମାତ୍ର ସିଏ ଆକ୍ରମଣକାରୀକୁ ଯେ ଜାଣେ, ଏକଥା ନ କହି ଛାଡ଼ିଗଲା । ସେ ଯାହା ହେଉ, ସମସ୍ତଙ୍କୁ କମାଣ୍ଡାଣ୍ଟଙ୍କ ଅଫିସ୍‌କୁ ନିଆଗଲା ଓ ସନ୍ଧ୍ୟା ପର୍ଯ୍ୟନ୍ତ ଛାଡ଼ ପାଇଲେ ନାହିଁ ସେମାନେ ।

ଲିଜାକୁ ନିଜେ ନେଇ ଘରେ ପହଞ୍ଚାଇ ଦେଇ ଆସିବାକୁ କହିଲେ କମାଣ୍ଡାଣ୍ଟ । ମାତ୍ର ଲିଜା ମନାକଲା । ତାଙ୍କ ମୁହଁରୁ ଭୋଦ୍‌କାର ଉଗ୍ର ଗନ୍ଧ ବାହାରୁଥିଲା । ଲୋକଟା ଭଲଲୋକ ଭଳି ଜଣାଯାଉନଥିଲା । ଭିକ୍‌ଟର ଲିଜାକୁ ନେଇ ଘରେ ପହଞ୍ଚାଇଲା ।

ଷ୍ଟେସନ୍‌ରୁ ଅନେକ ଦୂର ସେ ଜାଗା ଓ ଏତକ ବାଟ ହାତରେ ହାତ ଛନ୍ଦି ଯିବା ସମ୍ଭବ ହେବାରୁ ଭିକ୍‌ଟର ମନେମନେ ସାରା ଘଟଣା ପ୍ରତି କୃତଜ୍ଞତା ଜଣାଉଥିଲା ।

ତାଙ୍କ ଘର ପାଖାପାଖି ହେଲାବେଳକୁ ଲିଜା ପଚାରିଲା, "ତମର କୌଣସି ଧାରଣା ଅଛି, ସେ ବନ୍ଦୀଜଣକୁ କିଏ ମୁକୁଳାଇଲା ବୋଲି?"

"ନା, ମୁଁ କେମିତି ଜାଣିବି? ମୁଁ ଜାଣେ ନା ।"

"ମନେ ଅଛି ନା, ଦିନେ ସନ୍ଧ୍ୟାରେ, ତୋନ୍ୟା ଆମକୁ ସବୁ ଜଣେ ତରୁଣ ସହିତ ପରିଚିତ କରାଇ ଦେବାକୁ ଚାହୁଁଥିଲା ।"

ଭିକ୍‌ଟର ଅଟକିଗଲା ।

"ପାଭେଲ୍ କୋର୍ଚ୍ଚାଗିନ୍?" ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିଲା ସେ ।

"ହଁ, ମୋର ମନେ ପଡ଼ୁଛି, ତା' ନାଁ କୋଗ୍‌ଗିନ୍ – ମନେ ଅଛି ନା, କେମିତି ହାସ୍ୟକର ଭାବରେ ବାହାରି ଗ୍ଲଲିଗଲା ସେ ସେଦିନ? ସେଇ ସିଏ ।"

ସ୍ତମ୍ଭୀଭୂତ ହୋଇଗଲା ଭିକ୍‌ଟର ।

"ତମେ ନିଶ୍ଚିତ?" ଲିଜାକୁ ପଗ୍ଲରିଲା ସେ ।

"ହଁ, ମୁଁ ଅତି ସ୍ପଷ୍ଟଭାବରେ ତା' ମୁହଁକୁ ମନେ ରଖିଛି ।"

"ତା'ହେଲେ, ସେକଥା କମାଣ୍ଡାଣ୍ଟକୁ କାହିଁକି କହିଲ ନାହିଁ ତମେ?"

ଲିଜା ରାଗରେ ଦୃଢ଼ ହୋଇଗଲା – କହିଲା :

"ମୁଁ ଏତେ ଖରାପ କାମ କରିପାରେ ବୋଲି ତମେ ଭାବିପାରିଲ କେମିତି?"

"ଖରାପ କାମ? ଯିଏ ରକ୍ଷୀକୁ ଆକ୍ରମଣ କଲା, ତା' ନାଁ କହିଦେବାଟାକୁ ତମେ ଖରାପ କାମ ବୋଲି ବିଗ୍ଲରୁଛ?"

"ଆଉ କ'ଣ ତମେ ଏଇଟାକୁ ଭାରୀ ସମ୍ମାନଜନକ କାମ ବୋଲି ବିଗ୍ଲର କର? ସେମାନେ ଯାହାସବୁ କରିଛନ୍ତି, ସେକଥା ସବୁ ବୋଧହୁଏ ଭୁଲିଯାଇଛ ତମେ । କେତେ ଜଣ ନିରାଶ୍ରୟ, ହତଭାଗ୍ୟ, ପିତୃମାତୃହୀନ ଇହୁଦୀ ପିଲା ଜିମ୍‌ନାସିଅମ୍‌ରେ ଆଶ୍ରୟ ନେଇଛନ୍ତି, ସେ ବିଷୟରେ କିଛି ଧାରଣା ଅଛି ତମର? ତଥାପି ତମେ ଗ୍ଲହୁଁଛ, ମୁଁ କୋଗ୍‌ଗିନ୍‌ର ନାଁ ତାଙ୍କୁ କହିଦିଏ ବୋଲି? ମୁଁ ଅତ୍ୟନ୍ତ ଦୁଃଖିତ, ତମଠାରୁ ଏମିତି ବ୍ୟବହାର ମୁଁ ଆଶା କରି ନ ଥିଲି ।"

ଲିଜାର ଉତ୍ତରରେ ଅତ୍ୟନ୍ତ ବିସ୍ମିତ ହେଲା ଲେଷ୍ଟିନ୍‌ସି । ମାତ୍ର କଳି ଲଗାଇଲେ ଲିଜା ସହିତ କରିଥିବା ସମସ୍ତ ଯୋଜନା ପଣ୍ଡ ହୋଇଯିବ ବୋଲି ସେ କଥା ବାଆଁରେଇ ଦେଇ ଅନ୍ୟ କଥା ପକାଇଲା ।

"ତମେ ଏମିତି ରାଗିଯାଉଛ କାହିଁକି ଲିଜା? ମୁଁ କେବଳ ମଜା କରୁଥିଲି ତମେ ଏତେ ସିଧାସଳଖ ବୋଲି ମୋର ଧାରଣା ନ ଥିଲା ।"

"ଥଟ୍ଟା ହେଲେ ବି, ଏଇଟା ଅତ୍ୟନ୍ତ ନୀଚଧରଣର ଥଟ୍ଟା", ଲିଜା ରୋକ୍‌ଠୋକ୍ ଜବାବ ଦେଲା ।

ସୁଖାର୍କୋଙ୍କର ଘର ବାହାରୁ ତାକୁ ବିଦାୟ ସମ୍ଭାଷଣ ଜଣାଇଲା ପରେ ଭିକ୍‌ଟର ପଗ୍ଲରିଲା :

"ତା' ହେଲେ ତମେ ଆସୁଛ ତ ଲିଜା?"

"କେଜାଣି? ଠିକ୍ ଭାବେ କହିପାରୁନି" ବୋଲି ଶୁଖିଲା ଉତ୍ତରଟିଏ ଦେଲା ଲିଜା ।

ସହରକୁ ଫେରିଲାବେଳେ, ସାରା ଘଟଣାଟାକୁ ଓଲଟାଇ ଚିନ୍ତା କଲା ଭିକ୍‌ଟର, "ସେ ଯାହା ହେଉ, ଶ୍ରୀମତୀ! ତମେ କଥାଟାକୁ ଖରାପ କାମ ବୋଲି ଭାବିଲେ ମଧ୍ୟ ମୁଁ ଅଲଗା ଦୃଷ୍ଟିରୁ ବିଗ୍ଲର କରୁଛି । ଅବଶ୍ୟ କିଏ କାହାକୁ ମୁକୁଳାଇଲା, ସେଥିରେ ମୋର କିଛି ଯାଏ ଆସେ ନାହିଁ", ଭାବିଲା ସେ ।

ପୁରାତନ ପୋଲଣ୍ଡୀୟ ସାମନ୍ତ ପରିବାରର ଶେଷ ସନ୍ତକ, ଲେଷ୍ଟିନ୍‌ସି ପାଇଁ ଉଭୟ

ପଟରୁ ଘୃଣାର କାରଣ ଥିଲା । ସେମାନେ କେବଳ ଗୋଟିଏ ସରକାରକୁ ମାନନ୍ତି ମନେମନେ । ତାହା ହେଉଛି ପୋଲଣ୍ଡର ଭଦ୍ର ସରକାର, ରଜେଚ୍ ପୋସ୍‌ପୋଲିଟାକୁ ଏବଂ ସେମାନେ ଅତିଶୀଘ୍ର ପୋଲଣ୍ଡ ବାହିନୀ ନେଇ ଆସୁଛନ୍ତି । ମାତ୍ର ଅପଦାର୍ଥ କୋର୍ଗିନ୍ ଦାଉରୁ ମୁକ୍ତି ପାଇବା ପାଇଁ ଏଇଟା ଗୋଟାଏ ପ୍ରକୃଷ୍ଟ ସୁଯୋଗ । ଯାହାକୁ ହାତଛଡ଼ା କରିବାର ନୁହେଁ । ସେମାନେ ନିଶ୍ଚୟ ତା' ବେକ ମୋଡ଼ି ଛାଡ଼ିବେ ।

ତାଙ୍କ ପରିବାର ଭିତରୁ କେବଳ ଭିକ୍‌ଟର ହିଁ ସହରରେ ରହିଥିଲା । ସେ ତା'ର ଗୋଟିଏ ମାଉସୀ ଘରେ ରହୁଥାଏ । ମଉସା, ଚିନି କାରଖାନାର ଜଣେ ସହକାରୀ ଡିରେକ୍ଟର । ଲେଷ୍ଟିନ୍‌ସ୍କି ପରିବାର କିଛି କାଳ ପାଇଁ ଓ୍ୱାର୍ସାରେ ଥିଲେ । ସେଠି ବାପା ତା'ର – ସିଗିଜ୍‌ମୁନ୍ଦ ଲେଷ୍ଟିନ୍‌ସ୍କି କ'ଣ ଗୋଟାଏ ବଡ଼ କାମ କରୁଥିଲେ ।

କମାଣ୍ଡାଣ୍ଟଙ୍କ ଅଫିସ୍‌କୁ ଯାଇ ଭିକ୍‌ଟର ଖୋଲା ଦୁଆର ବାଟେ ଭିତରକୁ ପଶିଲା ।

ଅଳ୍ପ କିଛି ସମୟ ପରେ, ଗ୍ରିଜିଣ ପେଟ୍‌ଲ୍ୟୁରା ଲୋକଙ୍କ ସାଙ୍ଗରେ କୋର୍ଗିନ୍‌ଙ୍କ ଘର ଆଡ଼କୁ ତାକୁ ଯିବାର ଦେଖାଗଲା ।

"ହେଇ, ସେ ଘରଟା", ଗୋଟାଏ ଆଲୋକିତ ଝରକା ଆଡ଼କୁ ହାତ ବଢ଼ାଇ ଧୀର ଗଳାରେ କହିଲା ଭିକ୍‌ଟର, "ମୁଁ ଏବେ ଯାଇପାରେ କି ?" ପଗ୍ଭରିଲା ଖୋରୁନ୍‌ଝିଙ୍କୁ ।

"ନିଶ୍ଚୟ, ଏବେ ଆମେ ଆମ କାମ କରିବୁ । ତମର ଖବର ପାଇଁ ଧନ୍ୟବାଦ୍ ।"

ଭିକ୍‌ଟର ଯଥାଶୀଘ୍ର ପଳାଇଲା ସେଠାରୁ ।

* * *

ଶେଷ ପାହାର ମାଡ଼ରେ ପାଭେଲ୍ ଅତି କଷ୍ଟରେ ଯାଇ ଅନ୍ଧାର ଘରଟା ଭିତରେ ଛିଞ୍ଚାଡ଼ି ହୋଇ ପଡ଼ିଲା । ତା'ର ଖୋଲା ବାହା ଆରପଟ କାନ୍ଥରେ ବାଡ଼େଇ ହୋଇଗଲା ଜୋର୍‌ରେ । ଅନ୍ଧାରରେ ଦରାଣ୍ଡି ଦରାଣ୍ଡି, ଖଟଭଳି ଉଚ୍ଚା ଜାଗାଟାଏ ପାଇ ତା'ରି ଉପରେ କ୍ଷତାକ୍ତ ମନ ଓ ଦେହ ନେଇ ବସିଲା ପାଭେଲ୍ ।

ଗିରଫଦାରୀଟା ଅତି ଆଶ୍ଚର୍ଯ୍ୟଜନକ ଭାବରେ ଘଟିଲା । ପେଟ୍‌ଲ୍ୟୁରା ଲୋକେ, ତା' କଥା ଜାଣିଲେ କେମିତି ? କେହି ଯେ ତାକୁ ଦେଖିପାରି ନାହାନ୍ତି, ଏ ବିଷୟରେ ସେ ସମ୍ପୂର୍ଣ୍ଣ ନିଶ୍ଚିତ ଥିଲା । ଯା ପରେ କ'ଣ ହେବ ? ଝୁଖ୍‌ରାଇ ବା କେଉଁଠି ବର୍ତ୍ତମାନ ?

କ୍ଲିମ୍‌କା ଘରେ ଜାହାଜୀ ଝୁଖ୍‌ରାଇକୁ ଛାଡ଼ିଥିଲା ସେ । ସେଠାରୁ ସେର୍ଗେଇ ଘରକୁ ଗଲା ସେ ଓ ଝୁଖ୍‌ରାଇ ସେଠି ଅପେକ୍ଷା କଲା ରାତି ପର୍ଯ୍ୟନ୍ତ । କାରଣ ରାତିର ଅନ୍ଧକାରରେ ହିଁ କେବଳ ସେ ସହର ବାହାରକୁ ଖସିଯାଇ ପାରିବ ।

"ଯା ହେଉ, କାଉ ବସାରେ ପିସ୍ତଲ୍‌ଟାକୁ ରଖିଦେଇ ଭଲ କାମ କରିଛି ମୁଁ– ନହେଲେ ସେଇଟା ଯଦି ମୋ ପାଖରୁ ପାଇଥାନ୍ତେ ନାଁ ସବୁତକ ମୋ ଉପରେ

ପଡ଼ିଥାଆନ୍ତା । ମାତ୍ର କେମିତି ଜାଣିଲେ ସେମାନେ ?" ତାକୁ ବିବ୍ରତ କରୁଥିବା ଏ ପ୍ରଶ୍ନର କୌଣସି ଉତ୍ତର ବା କୂଳକିନାରା ପାଉ ନ ଥିଲା ସେ ।

ସାରା ଘରଟାକୁ ଛିନ୍‌ଛତ୍ର କରି, ଓଲଟପାଲଟ କରି ପ୍ରତ୍ୟେକ ଗଳିକନ୍ଦିରେ ଖୋଜାଖୋଜି କଲେ ମଧ୍ୟ ପେଟ୍‌ଲ୍ୟୁରା ଲୋକେ ବେଶି କିଛି ପାଇଲେ ନାହିଁ ସେଠୁଁ । ନିଜର ଭଲ ସ୍ୟୁଟ୍‌ଟି ଓ ଆକର୍ଡିଆନ୍‌ଟିକୁ ଆର୍ଟେମ୍ ଗାଁକୁ ନେଇଯାଇଥିଲା । ମା' ଗୋଟାଏ ଟ୍ରଙ୍କ୍ ନେଇଯାଇଥିଲେ ସାଥିରେ । ତେଣୁ ତାଙ୍କ ପାଇଁ ଲୁଟି କରିବା ସକାଶେ ଆଉ ଅଛି କ'ଣ ବାକୀ ଥିଲା ।

ବନ୍ଦୀଶାଳାକୁ ଯିବାବେଳର କାହାଣୀ ପାଭେଲ୍ ତା'ର ଜୀବନସାରା କେବେହେଁ ଭୁଲିପାରିବ ନାହିଁ । କଳା କିଟିକିଟି ଅନ୍ଧାର ରାତି । ଆକାଶଟା ସାରା ଛାଇଯାଇଛି ମେଘରେ । ଅନ୍ଧ ଭଳି ଥରି ଥରି ଚାଲୁଥାଏ ସେ, ପ୍ରହରୀଙ୍କଠୁ ମରଣାନ୍ତକ ଗୋଇଠା ବିଧା ଖାଇଖାଇ ।

ଆର ବଖରାକୁ ଯାଇଥିବା କବାଟ ସେପଟୁ କଥାବାର୍ତ୍ତା ଶୁଭୁଥାଏ ତାକୁ । କମାଣ୍ଡାଣ୍ଡର ଜଗୁଆଳିଙ୍କ ବଖରା ସେଇଟା । କବାଟ ଆରପଟୁ ଗୋଟାଏ ଉଜ୍ଜ୍ୱଳ ଆଲୋକର କ୍ଷୀଣରେଖା ଦେଖାଗଲା । ପାଭେଲ୍ ଉଠିପଡ଼ିଲା, ଘରଟାସାରା ବୁଲିବାକୁ ଲାଗିଲା ଓ ପଛପଟ କାନ୍ଥ ଦରାଣ୍ଡିଲା । ଖଟଭଳି ଭାଡ଼ିଟା ଆରପଟେ ଗୋଟାଏ ନିବୁଜ ରେଲିଂଲଗା ଝରକା । ରେଲିଂଗୁଡ଼ାକୁ ପରୀକ୍ଷା କଲା ହାତରେ । ହଲାଇ ହେଉ ନାହିଁ, ବାଙ୍କୁ ନାହିଁ ଟିକେ ସୁଦ୍ଧା । ଘରଟା ନିଶ୍ଚିତ ଭାବରେ ଆଗରୁ ଗୋଟାଏ ଭଣ୍ଡାର ଘର ଭାବରେ ବ୍ୟବହୃତ ହେଉଥିଲା ।

ବନ୍ଦ କବାଟ ପାଖକୁ ଗଲା ସେ ଓ ମୁହୂର୍ତ୍ତେକ ପାଇଁ କାନ ଡେରି ଶୁଣିଲା । ତା'ପରେ ଧୀରେ ଧୀରେ କବାଟର କିଳିଣିରେ ହାତମାରି ତାକୁ ଘୂରାଇଲା । କବାଟଟା କେଁକିନି ହେଲା ଓ ପାଭେଲ୍ ଅଣନିଃଶ୍ୱାସୀ ହୋଇ ଚେଷ୍ଟା କରିବାକୁ ଲାଗିଲା ।

କବାଟର ଯେଉଁ ଫେଣାକ ତା' ଆଖି ଆଗରେ ମେଲା ହୋଇଗଲା, ସେଇବାଟରେ ଚାହିଁ ସେ ଦେଖିଲା, ଗୋଟାଏ ଖଟିଆ ଆରପଟୁ ବଙ୍କା ଆଙ୍ଗୁଠିଆ ଅଟଅଳ ପାଦଯୋଡ଼ାଏ । ଆଉ ଟିକେ ପେଲିଦେବାରୁ କବାଟଟା ଆହୁରି ଜୋରରେ ଶବ୍ଦ କରି ଉଠିଲା । ନିଦ ମଳମଳ ଆଖିରେ ଗୋଟାଏ ବିକୃତ ମୁହଁ ଖଟ ଉପରୁ ଉଠିପଡ଼ିଲା ଓ ପାଞ୍ଚ ଆଙ୍ଗୁଠିଯାକକୁ ଜୋର୍‌ରେ ମୁଣ୍ଡ ଉପରେ ଘଷି ଘଷି ଅଶ୍ରାବ୍ୟ ଭାଷାରେ ଗାଳିଦେବାକୁ ଲାଗିଲା । ଅଶ୍ଳୀଳ ଗାଳି ଶେଷ ହେଲା ପରେ, ସେ ଲୋକଟା ଖଟ ମୁଣ୍ଡରେ ଥୁଆହୋଇଥିବା ବନ୍ଧୁକଟାକୁ ହାତ ବଢ଼ାଇ କହିଲା :

"କବାଟ ବନ୍ଦ କରି ଦେ, ନହେଲେ ଆଉ ଥରେ ଯଦି ଏଠି ଏମିତି ତୋତେ ଅନାଇବାର ଦେଖେ, ତେବେ ମୁଣ୍ଡ ଛଟୁ କରିଦେବି ... ।"

କବାଟ ବନ୍ଦ କରିଦେଲା ପାଭେଲ୍ । ଆରଘରୁ ଗୋଟାଏ ହସର ଝଙ୍କାର ଭାସିଆସିଲା ।

ସେଦିନ ରାତିରେ ଅନେକ ଚିନ୍ତା କଲା ପାଭେଲ୍ । ସଂଗ୍ରାମରେ ସହଯୋଗ

ପାଇବା ପାଇଁ ତା'ର ଏ ପ୍ରାଥମିକ ପ୍ରଚେଷ୍ଟା ଅତି ନିଦାରୁଣ ଭାବରେ ଏହି ପରି ଶେଷ ହେବାକୁ ଯାଉଛି । ପ୍ରଥମ ପଦକ୍ଷେପରେ ହିଁ ସେ ବନ୍ଦୀ ହେଲା ଏବଂ ଏବେ ସେ ଗୋଟାଏ ମୂଷା ଭଳି ବନ୍ଦୀ ହୋଇ ରହିଛି ।

ସେମିତି ବସିରହି ଛାଇଛାଇଆ ନିଦ ଲାଗିଆସିଲା ତା' ଆଖିକୁ । ଅଧା ନିଦରେ ଅଧା ଜାଗରଣ ଭିତରେ ପ୍ରାଣଦେଇ ଭଲ ପାଉଥିବା ତା' ମାଆର ବକ୍ର କୁଞ୍ଚିତ ଦେହର ପ୍ରତିଛବି ତା'ର ଆଖି ସାମନାରେ ଭାସିଉଠିଲା । ସେ ଭାବିଲା, "ସେ ନାହିଁ ଭଲ ହୋଇଛି, ନ ହେଲେ ଆହୁରି ବେଶି ଦୁଃଖ ଲାଗିଥାଆନ୍ତା ।"

ମେଜିଆ ଉପରେ ଝରକା ଦେଇ ଝଲସି ଉଠିଲା ଧୂସର ଆଲୋକର ଟେନାଟିଏ । ଅନ୍ଧକାର ଧୀରେ ଧୀରେ ଅପସରି ଯାଉଥିଲା, ଭୋର ହୋଇ ଆସୁଥିଲା ।

# ଷଷ୍ଠ ପରିଚ୍ଛେଦ

ବିରାଟକାୟ ଘରଟାର ସବୁଗୁଡ଼ିକ ଝରକାରେ ପରଦା ପଡ଼ିଥିଲା । କେବଳ ମାତ୍ର ଗୋଟିଏ ଝରକାବାଟେ କ୍ଷୀଣ ଆଲୋକରେଖା ବାହାରକୁ ଦିଶୁଥିଲା । ରାତିଟା ପାଇଁ ବାହାରେ ବନ୍ଧା ହୋଇ ରହିଥିବା ପୋଷା କୁକୁରଟା ତା'ର ଘାଘଡ଼ା ଗଳାରେ ଭୁକିଉଠିଲା ଜୋର୍‌ରେ ।

ନିଦବାଉଳାରେ ତୋନ୍ୟା ଶୁଣିଲା, ମା' କାହା ସାଙ୍ଗେ ଅନୁଚ୍ଚ ଗଳାରେ କଥା କହୁଥାନ୍ତି :

"ନାଁ, ସିଏ ଏଯାଏଁ ଶୋଇ ନ ଥିବ, ଆସୁନ୍ତୁ ଲିଜା ।"

ବାନ୍ଧବୀର ମୃଦୁ ପଦଶବ୍ଦ ଓ ସେ ଆସୁଥିବାର ଉନ୍ମାଦନା ତା'ର ଛାଇ ନିଦକୁ ଭାଙ୍ଗି ଦେଲା । ତୋନ୍ୟାର ମୁହଁରେ ଉଦ୍‌ବେଗର ହସ ଫୁଟି ଉଠିଲା ।

"ଓଃ ଲିଜା, ତୁ ଆସିଛୁ, କେତେ ଖୁସି ଲାଗୁଛି ମୋତେ ! କାଲିଠାରୁ ବାପାଙ୍କର ବିପଦ କଟିଗଲା, ଆଜି ଦିନସାରା ଟିକିଏ ନିଶ୍ଚିନ୍ତରେ ଶୋଇଛନ୍ତି ସେ । ଅନେକ ବିନିଦ୍ର ରାତି ବିତାଇଲା ପରେ, ମା ଓ ମୁଁ ମଧ୍ୟ ଆଜି ଟିକିଏ ବିଶ୍ରାମ କରିବାର ସୁଯୋଗ ପାଇଛୁ । ଛାଡ଼, ମୋତେ ଆଗ ସବୁ ଖବର କହିବୁଟି !"

ନିଜ ସାଙ୍ଗକୁ ତା' ପାଖକୁ ଘୋଷାରି ନେଲା ତୋନ୍ୟା ।

"ଓଃ, ଅନେକ, ଅନେକ ଖବର ଅଛି, ହେଲେ ସେଥିରୁ କେତେକ ଖବର କେବଳ ତୋ'ରି କାନ ପାଇଁ—ଆଉ କେହି ଶୁଣିବା ଭଳି ନୁହଁ ।" ୟେକାଟେରିନା ମିଖାଇଲୋଭ୍‌ନାଙ୍କ ଆଡ଼କୁ ଈଷତ୍ ବକ୍ର ଚତୁର ଚାହାଣୀ ହାଣି କହିଲା ଲିଜା ।

ତୋନ୍ୟାର ମା' ମଧ୍ୟ ମୁରୁକି ହସିଲେ ଟିକିଏ । ଛତିଶ ବର୍ଷ ବୟସର ଗଭୀର ମାତୃତ୍ୱସମ୍ପନ୍ନ ମହିଳା ସେ । ହେଲେ ଅତି କଞ୍ଚା ବୟସର ତରୁଣୀର ଚଞ୍ଚଳତା ତାଙ୍କ

ଅଙ୍ଗରେ । ସୁନ୍ଦର ନ ହେଲେ ବ ପାଉଁଶିଆ ଆଖି ଦିଓଟି, ମୁହ ତାଙ୍କର କମନୀୟ ଓ ମଧୁର ।

"ମୁଁ ବାବା ଯିବି ଚାଲି ଏଠୁ ଆଉ ଟିକିଏ ଗଲେ, ହେଲେ ତୁ ଆଗ ସବୁ ଖବର କହିଲୁ ଦେଖି, ଯାହା ତୋ ସାଙ୍ଗ ଛଡ଼ା, ଆମେମାନେ ବି ଶୁଣିପାରିବୁ ।"

ପରିହାସ ଛଳରେ କହି ଚଉକିଟାକୁ ବିଛଣା ନିକଟକୁ ଟାଣିଆଣିଲେ ସେ ।

"ହଉ, ଆରମ୍ଭରୁ କୁହେ ଯେ, ଆମେସବୁ ସ୍କୁଲପଢ଼ା ଶେଷ କଲୁ । ସପ୍ତମ ଶ୍ରେଣୀରେ ପଢ଼ୁଥିବା ସମସ୍ତଙ୍କୁ ଗ୍ରାଜୁଏସନ୍ ସାର୍ଟିଫିକେଟ୍ ଦେବାର ସ୍ଥିର କଲା ବୋର୍ଡ । ମୁଁ ଭାରୀ ଖୁସି, କାରଣ ଏ ବୀଜଗଣିତ ଓ ଜ୍ୟାମିତି ତ ଆଉ ଘୋଷିବାକୁ ପଡ଼ିବ ନାହିଁ ବାବା । ଏମିତି ବାଜେ ଲାଗେ ମୋତେ ଏ ଦୁଇଟା ପାଠ! କାହାର ବା କ'ଣ ହବ ତାକୁ ପଢ଼ି ? ପୁଅପିଲାମାନେ ତାଙ୍କର ଆଉ ବେଶି ପଢ଼ାପଢ଼ି କରିପାରନ୍ତି ହୁଏତ – ମାତ୍ର କୋଉଠି ଯେ ଏ ଯୁଦ୍ଧ ଗଣ୍ଡଗୋଳ ଭିତରେ ପଢ଼ିବେ ଯାଇଁ କେହି ଠିକ୍ କରି ନାହାନ୍ତି ଏଯାଏଁ । ଅତି ଭୟଙ୍କର ଯୁଦ୍ଧ ଲାଗିଛି, ବାଜେ ସମୟ ... ଆଉ ଆମ କଥା ... ଆମେସବୁ ବାହାସାହା ହେବୁ ଏବଂ ପତ୍ନୀ ହେଲେ, ବୀଜଗଣିତର କି ଦରକାର ଆସିବ ?" ଲିଜା ହସିଲା ।

ଝିଅମାନଙ୍କ ସହିତ କିଛି ସମୟ କଟାଇ ଯେକାତେରିନା ମିଖାଇଲୋଭ୍ନା ତାଙ୍କ ନିଜ ଶୋଇବା ଘରକୁ ଚାଲିଗଲେ ।

ଲିଜା ଏଥର ତୋନ୍ୟା ପାଖକୁ ଲାଗିଆସିଲା ଓ ତା ଚାରିପଟେ ବାହୁଛନ୍ଦି ଫୁସ୍‌ଫୁସ୍ ହୋଇ ଛକ ଉପରେ ଘଟିଥିବା ସାରା ଘଟଣାର ଟିକିନିଖି ବିବରଣୀ ଦେଲା ।

"ତୁ ଭାବିପାରୁଛୁ ନାଁ, କେମିତି ଆଶ୍ଚର୍ଯ୍ୟ ହୋଇଗଲି ମୁଁ ଦଉଡ଼ି ପଳାଇଯାଉଥିବା ଯୁବକକୁ ଚିହ୍ନି ପାରିଲା ମାତ୍ରେ ? ଜାଣି ପାରୁଛୁ କିଏ ସେ ?"

ଅତି ଆଗ୍ରହ ସହକାରେ ଶୁଣୁଶୁଣୁ ତୋନ୍ୟା ନିଜ କାନ୍ଧ ହଲାଇ ନାହିଁ କଲା ।

"କୋଶ୍‌ଗିନ୍", ଲିଜା ଅଣନିଃଶ୍ୱାସୀ ହୋଇ କହିଉଠିଲା ।

"କୋଶ୍‌ଗିନ୍ ?",

ନିଜ କଥାର ପ୍ରଭାବରେ ମୁଗ୍ଧ ହୋଇ ଏ ସଂକ୍ରାନ୍ତରେ ଭିକ୍‌ଟର ସହିତ ହୋଇଥିବା ତା'ର କଳିର ସମସ୍ତ ଘଟଣା ମଧ୍ୟ ବର୍ଣ୍ଣନା କଲା ।

ନିଜ କଥାରେ ବୁଡ଼ିରହି ଲିଜା ଲକ୍ଷ୍ୟ କରିପାରିଲା ନାହିଁ, ତୋନ୍ୟାର ମୁହଁ ବିବର୍ଣ୍ଣ ହୋଇଗଲା ଏକଥା ଶୁଣିଲା ମାତ୍ରେ ଓ ବିଚଳିତ ହୋଇ ନିଜ ପିନ୍ଧା ନାଇଟ ବ୍ଲାଉଜ୍‌କୁ ଆଙ୍ଗୁଠିରେ ଖୁଣ୍ଟିବାକୁ ଲାଗିଲା ସେ । ଲିଜା ଜାଣିପାରିଲା ନାହିଁ, ଉଦ୍‌ବେଗ ଓ ଆଶଙ୍କାରେ ତୋନ୍ୟାର ଛାତି ଭିତରଟା କ'ଣ ହୋଇଯାଉଛି! ଆହୁରି ମଧ୍ୟ ସେ ଲକ୍ଷ୍ୟ କରିପାରିଲା ନାହିଁ, ତା'ର ଗହଳ ଭ୍ରୂଲତାଘେରା ଆଖିଦିଓଟି କିଭଳି ଥରି ଥରି ଉଠୁଛି ।

ଲିଜା କହୁଥିବା ମଦ୍ୟପ ଖୋର୍ଲୁନ୍‌ଝିର କାହାଣୀ ପ୍ରତି କର୍ଣ୍ଣପାତ କରୁ ନ ଥିଲା ତୋନ୍ୟା । କେବଳ ଗୋଟିଏ ଚିନ୍ତା ସେହି ମୁହୂର୍ତ୍ତରେ ତାକୁ ବିଚଳିତ କରୁଥାଏ, "ଭିକ୍‌ଟର

ଲେଷିନ୍‌ସି ଜାଣିଛି, କିଏ ସୈନିକକୁ ଆକ୍ରମଣ କରୁଥିଲା ବୋଲି । ଓଃ, କାହିଁକି ତାକୁ କହିଦେଲୁ ଲିଜା ?"

ଆଉ ନିଜର ଅଜାଣତରେ କଥାଟା ବାହାରିପଡ଼ିଲା ତା' ମୁହଁରୁ ।

"କ'ଣ କହିଲୁ ?" ଲିଜା ପହିଲେ ତା' କଥାଟା ବୁଝି ନ ପାରି ପଗ୍ଭରିଲା ।

"ପାଭ୍‌ଲୁଶା କଥା ତୁ କାହିଁକି କହିଦେଲୁ ଲେଷିନ୍‌ସିକୁ, ମାନେ ମୁଁ କୋର୍ଗ୍‌ଗିନ୍ କଥା କହୁଛି । ସିଏ ନିଶ୍ଚୟ ବିଶ୍ୱାସଘାତକତା କରିବ କୋର୍ଗ୍‌ଗିନ୍ ପ୍ରତି ... ।"

"କଦାପି ନୁହେଁ", ଲିଜା ବାଧାଦେଲା, "ମୁଁ ଭାବିପାରୁ ନାହିଁ, ଏମିତି କାମ ସିଏ କରିପାରିବ ବୋଲି, କାହିଁକି ଏମିତି କରିବ ଭଲା ସିଏ ?"

ଉତ୍ତେଜିତ ହୋଇ ଉଠିପଡ଼ିଲା ତୋନ୍ୟା ଓ ଏତେ ଜୋର୍‌ରେ ଆଣ୍ଠୁ ଦୁଇଟା ତା'ର ବାଡ଼େଇ ହୋଇଗଲା ଯେ ଟାକୁ କାଟିଲା ।

"ତୁ ବୁଝିପାରିବୁ ନାହିଁ ଲିଜା ! ସିଏ ଓ କୋର୍ଗ୍‌ଗିନ୍ ଦୁହେଁ ଦୁହିଁଙ୍କର ଶତ୍ରୁ ଏବଂ ତା'ଛଡ଼ା ଆଉରି ବି ଅନେକ କଥା ଅଛି ... ତୁ ଭିକ୍‌ଟରକୁ ପାଭ୍‌ଲୁଶା କଥା କହିଦେଇ ଭାରୀ ଭୁଲ କରିଛୁ ।"

ବର୍ତ୍ତମାନ ମାତ୍ର ତୋନ୍ୟାର ଉତ୍ତେଜନା ଲକ୍ଷ୍ୟ କରିପାରିଲା ଲିଜା ଏବଂ କୋର୍ଗ୍‌ଗିନ୍ ନାଁର ପ୍ରଥମ ଅଂଶକୁ ଯେପରି ଉଚ୍ଚାରଣ କରୁଥିଲା ତୋନ୍ୟା ସେଥିରେ ଅସ୍ପଷ୍ଟଭାବରେ ତା'ର ମନରେ ଥିବା ସନ୍ଦେହ ଆହୁରି ଦୃଢ଼ୀଭୂତ ହେଲା ।

ନିଜକୁ ଦୋଷୀ ବୋଲି ବିଗ୍ଭର ନ କରି ରହିପାରିଲା ନାହିଁ ଓ ସେଥିପାଇଁ ଅସୁବିଧାରେ ପଡ଼ି ନୀରବ ହୋଇଗଲା ଲିଜା ।

"ତା'ହେଲେ ଏକଥା ସତ ! ଆଶ୍ଚର୍ଯ୍ୟ କଥା, ତୋନ୍ୟା ଜଣେ ସାଧାରଣ ଶ୍ରମିକର ପ୍ରେମରେ ପଡ଼ିଛି !" ଭାବିଲା ସେ । ଏ ବିଷୟରେ ଅନେକ କଥା କହିବାକୁ ଗ୍ଭହୁଁଥିଲେ ମଧ୍ୟ, ନିଜ ବାନ୍ଧବୀର କଥା ଭାବି ସେଥିରୁ ନିବୃତ୍ତ ହେଲା ଲିଜା । ନିଜ ଦୋଷକୁ କୌଣସିମତେ ସ୍ୱୀକାର କରି ତ୍ରାହି ପାଇବାକୁ ଭାବି ଭାବି, ତୋନ୍ୟାର ଦୁଇ ହାତକୁ ଆବେଗରେ ଗ୍ଭପି ଧରିଲା ସେ ।

"ତୁ କ'ଣ ସତରେ ଭାରୀ ବିବ୍ରତ, ତୋନ୍ୟା ?"

"ନାଁ, ମୁଁ ଯାହା ଭାବୁଛି, ବୋଧହୁଏ ଭିକ୍‌ଟର ତା' ଅପେକ୍ଷା ଆହୁରି ଅଧିକ ସମ୍ମାନଜନକ ହୋଇଥିବ", ତୋନ୍ୟା ଅନ୍ୟମନସ୍କଭାବରେ ଉତ୍ତର ଦେଲା ।

ସେମାନଙ୍କର ଜଣେ ସ୍କୁଲ ସାଙ୍ଗ ଦେମ୍ୟାନୋଭ୍ ଆସି ପହଞ୍ଚିବାରୁ ହଠାତ୍ ବୃଦ୍ଧି ପାଇଥିବା ଏ ଅସ୍ୱସ୍ତିକର ନୀରବତାର ସମାପ୍ତି ଘଟିଲା ।

ନିଜର ବନ୍ଧୁମାନଙ୍କୁ ବିଦାୟ ଦେଇ ତୋନ୍ୟା ଅଧା ଫାଟକକୁ ଆଉଜି, ସହରକୁ ଲମ୍ବି ଯାଇଥିବା କଳା କଳା ସରୁ ରାସ୍ତାକୁ ଅନେକ ସମୟ ଧରି ଗ୍ଭହିଁ ରହିଲା । କାଲୁଆ ଓଦା ପବନ ମୁହଁରେ ତା'ର ପିଟିହେଉଥାଏ ଆସି । ପବନରେ ବହିଆସୁଥିବା ଓଦାଳିଆ ବସନ୍ତର ଭିଜାମାଟି ମୁହଁରେ ବୋଳି ହୋଇ ଯାଉଥାଏ ଯେମିତି । ଅଦୂରରେ ସହରର

ଘରମାନଙ୍କର ଝରକାଗୁଡ଼ିକରୁ ନିସ୍ତ୍ରଭ ଇଇ ଆଲୋକସବୁ ଆଖିମିଟିକା ମାରୁଥାଏ । ସେଇଠାରେ ସେହି ସହରର କୌଣସି ଏକ ଛାତତଳେ ରହିଛି ତା'ର ବିଦ୍ରୋହୀ ବନ୍ଧୁ ପାଭେଲ୍ । ଆସନ୍ନ ବିପଦର କୌଣସି ଧାରଣା ହୁଏତ ନାହିଁ ତା'ର ମନରେ— ହୁଏତ ସେ ତୋନ୍ୟାକୁ ଭୁଲିଗଲଣି ଏଥିଭିତରେ । ଶେଷ ଦେଖା ହୋଇଥିବା ଦିନଠାରୁ କେତେଦିନ ବିତିଗଲଣି ! ସେତେବେଳେ ସେ ହୁଏତ ଭୁଲ କରିଥିଲ, ମାତ୍ର ସେସବୁ କୋଉଦିନଠାରୁ ପାସୋର ଗଲଣି ! କାଲି, ଆଗାମୀକାଲି ସେ ତାକୁ ନିଶ୍ଚୟ ସାକ୍ଷାତ୍ କରିବ । ତାଙ୍କର ବନ୍ଧୁତ୍ୱ ନିବିଡ଼, ଗଭୀର ବନ୍ଧୁତ୍ୱ ଚିରଦିନ ପାଇଁ ଅମ୍ଳାନ ରହିବ । ତାଙ୍କର ବନ୍ଧୁତ୍ୱ ସେ ପୁଣି ଫେରିଆସିବ, ଏ ସମ୍ପର୍କରେ ତୋନ୍ୟା ମନରେ ତିଳେମାତ୍ର ସନ୍ଦେହ ନ ଥିଲ । କେବଳ ଏଇ ଭୟଙ୍କର ଦୁର୍ଯୋଗପୂର୍ଣ୍ଣ ରାତିଟା ତା'ସହିତ ବିଶ୍ୱାସଘାତକତା ନ କରନ୍ତା କି ! ଏଇ କଳା ରାତି, ଛାତିରେ ବହିଆଣିଛି ହୁଏତ ଅପରିସୀମ ଦୁର୍ଯୋଗ ... । ଗୋଟାଏ ଶିହରଣ ଖେଳିଗଲ ତୋନ୍ୟାର ସାରାଦେହରେ ।

ରାସ୍ତାଟା ଉପରେ ଶେଷଥର ପାଇଁ ଆଖି ବୁଲଇଆଣି ତୋନ୍ୟା ଘର ଭିତରକୁ ପଶିଲ । "ଏ ରାତି ଯଦି ତା' ସହିତ ବିଶ୍ୱାସଘାତକତା ନ କରନ୍ତା !" ନିଦରେ ଆଖିପତା ବୁଜି ହୋଇଆସିଲ ପର୍ଯ୍ୟନ୍ତ, ଏଇ ପଦକ ଭାବିଚାଲିଥାଏ ସେ ।

ଅନ୍ୟ ସମସ୍ତେ ଉଠିଲ ଆଗରୁ, ସେଦିନ ସକାଳୁ ତୋନ୍ୟା ସହଳ ସହଳ ଉଠିପଡ଼ିଲ ଓ ଚଟାପଟ ପୋଷାକପତ୍ର ପିନ୍ଧିନେଲ । ଚୁପ୍‌ଚାପ ବାହାରକୁ ବାହାରି ଆସିଲ ସାବଧାନ ହୋଇ, ଯେମିତି ପରିବାରର ଆଉ କାହା ନିଦ ଭାଙ୍ଗି ନ ଯାଏ । ବିରାଟ ପୋଷା କୁକୁର ଟ୍ରେସର୍ ବେକରୁ ଶିକୁଳି ଖୋଲିଦେଲ ଓ ତାକୁ ସାଥିରେ ଧରି ସହର ଆଡ଼କୁ ଚାଲିଲ । କୋର୍ଚ୍ଚାଗିନ୍‌ଙ୍କ ଘର ଆଗରେ ମୁହୂର୍ତ୍ତକ ପାଇଁ ଦ୍ୱିଧାଗ୍ରସ୍ତ ହୋଇ ଛିଡ଼ାହୋଇ ରହିଲ ଓ ତା'ପରେ ଫାଟକ ଠେଲି ଅଗଣା ଭିତରକୁ ପଶିଲ । ଆଗରେ ଲାଞ୍ଜ ହଲଇ ଟ୍ରେସର୍ ପଶିଯାଉଥାଏ ଭିତରକୁ ... ।

ସେଇଦିନ ବଡ଼ିଭୋରରୁ ଆର୍ଟେମ୍ ଫେରିଥାଏ ଗାଁରୁ । ଯେଉଁ କମାର ପାଖରେ କାମ କରୁଥାଏ, ସେଇ ତା' ଶଗଡ଼ରେ ସହରଯାଏ ନେଇଆସିଥାଏ । ଘରେ ପହଞ୍ଚି ଅଟା ବସ୍ତାଟା କାନ୍ଧରୁ ଓହ୍ଲାଇଲ ଆର୍ଟେମ୍, ଅଗଣା ଭିତରକୁ ପଶିଲ । ପଛରେ ତା'ର ସେ କମାରଟି ପଶୁଥାଏ, ବାକିସବୁ ଜିନିଷପତ୍ର ଧରି । ଖୋଲ କବାଟ ବାହାରେ ଅଟା ବସ୍ତାଟାକୁ ତଳେ ଫୋପାଡ଼ି ଦେଇ, ଆର୍ଟେମ୍ ପାଟିକରି ଡାକିଲ :

"ପାଭେଲ୍ !"

କୌଣସି ଉତ୍ତର ପାଇଲ ନାହିଁ ସେ ।

"ସେଠି କ'ଣ ହଉଛି, ଚାଲୁନ୍ତୁ ଭିତରକୁ ଯିବା", ପାଖକୁ ଲଗି ଆସି କମାରଟି କହିଲ ।

ନିଜର ଜିନିଷପତ୍ର ରୋଷେଇଘରେ ରଖି ଆର୍ଟେମ୍ ପାଖ ବଖରାରେ ପଶିଲ । ଆଖି ଆଗରେ ଘରଭିତରର ଦୃଶ୍ୟ ଦେଖି ସ୍ତମ୍ଭୀଭୂତ ହୋଇଗଲ ସେ । ସାରା ଘରଟାକୁ କିଏ ଛିନ୍ନଛତ୍ର କରିଦେଇଛି । ପୁରୁଣା ଲୁଗାଗୁଡ଼ାକ ଚଟାଣରେ ଏଠିସେଠି ପଡ଼ିଛି ।

"ଏସବୁ କ'ଣ ହୋଇଛି ?" କିଛି ବୁଝି ନ ପାରି ନିଜ ମନକୁ ମନ ବିଡ଼୍‌ ବିଡ଼୍‌ ହୋଇ କହିଲା ଆର୍ତେମ୍‌ ।

"କିଛି ଗୋଟାଏ ଗଣ୍ଡଗୋଳ ହୋଇଛି ନିଶ୍ଚୟ", କମାର ଜଣକ ସମ୍ମତି ଜଣାଇଲା ।

"କିନ୍ତୁ ପିଲାଟା ଗଲା କୁଆଡ଼େ ?" ଆର୍ତେମ୍‌ କ୍ରମଶଃ ଉତ୍ୟକ୍ତ ହେଉଥିଲା । ମାତ୍ର ସାରାଘରଟା ମୃତବତ୍‌ ନିଶ୍ଚଳ ନିଶ୍ଚୁପ ଥିଲା ।

ତାକୁ ବିଦାୟ ମାଗି କମାର ଜଣକ ବାହାରିଗଲା ଏଥର ।

ଅଗଣାକୁ ବାହାରି ଚାରିଆଡ଼କୁ ଆଖି ବୁଲାଇଲା ଆର୍ତେମ୍‌ ।

"ମୁଁ ତ ମୁଣ୍ଡ ଗଣ୍ଡି କିଛି ବୁଝିପାରୁ ନାହିଁ ଯା'ର ! ଘରଟାସାରା କବାଟଗୁଡ଼ାକ ମେଲା ହୋଇ ରହିଛି, ଅଥଚ ପାଭ୍‌କା ନାହିଁ ।"

ପରେ ପରେ ତା'ର ପଛପଟୁ ପାଦଶବ୍ଦ ଶୁଣିଲା ସେ । ବୁଲିପଡ଼ି ସେ ଦେଖିଲା, ଗୋଟାଏ ବିରାଟ କୁକୁର କାନ ଠିଆକରି, ତା' ଆଗରେ ଠିଆହୋଇଛି । ଝିଅଟିଏ ଫାଟକ ଫିଟାଇ ଘର ଆଡ଼କୁ ଆସୁଛି ।

"ମୁଁ ପାଭେଲ୍‌ କୋର୍ଚ୍‌ଗିନ୍‌କୁ ଦେଖାକରିବାକୁ ଚାହେଁ", ଆର୍ତେମ୍‌ ଉପରେ ଆଖି ବୁଲାଇଆଣି ଧୀର ଗଳାରେ କହିଲା ଝିଅଟି ।

"ମୁଁ ମଧ୍ୟ ଖୋଜୁଛି ତାକୁ । ମାତ୍ର ଭଗବାନ ଜାଣନ୍ତି, କୁଆଡ଼େ ଗଲା ସିଏ । ଏଠି ଆସି ପହଞ୍ଚିଲା ବେଳକୁ ଘରଟା ଏମିତି ଖୋଲା ଥିଲା । ପାଭ୍‌କାକୁ କୋଉଠୁ ହେଲେ ପାଉ ନାହିଁ । ତମେ ବି ତାକୁ ଖୋଜୁଛ ତା'ହେଲେ ?" ଝିଅଟିକୁ ପଚାରିଲା ସେ ।

ଯାର ଉତ୍ତର ଦେଲା ଝିଅଟି ଆଉ ଗୋଟିଏ ପ୍ରଶ୍ନରେ :

"ଆପଣ କ'ଣ କୋର୍ଚ୍‌ଗିନ୍‌ର ଭାଇ ଆର୍ତେମ୍‌ ?"

"ହଁ, କିନ୍ତୁ କାହିଁକି ?"

ଏ ପ୍ରଶ୍ନର କୌଣସି ଉତ୍ତର ନ ଦେଇ, ଆତଙ୍କଗ୍ରସ୍ତ ଆଖିରେ ଖୋଲା କବାଟ ଆଡ଼କୁ ଚାହିଁଲା ଝିଅଟି । "ମୁଁ ହତଭାଗୀ ଭଲା କାଲି ରାତିରେ କାହିଁକି ନ ଆସିଲି ?" ଭାବୁଥାଏ ସେ, "ଓଃ, ସେକଥା ନ ହୋଇଥାଉ, ନ ହୋଇଥାଉ..." ତା'ର ଛାତି ଆହୁରି ଥରିଗଲା ଏଇକଥା ଭାବୁଭାବୁ ।

"ଆପଣ ପଶିଲା ବେଳକୁ ଦେଖିଲେ, ଦୁଆର ଏମିତି ଖୋଲା ଥିଲା ଓ ପାଭେଲ୍‌ ନାହିଁ ?" ଆର୍ତେମ୍‌କୁ ପଚାରିଲା ସେ ଏବଂ ଆର୍ତେମ୍‌ ବିସ୍ମିତ ହୋଇ ଅନାଇଥାଏ ତାକୁ ।

"ତମେ କିନ୍ତୁ ପାଭେଲ୍‌କୁ କାହିଁକି ଖୋଜୁଛ, ମୁଁ ଜାଣିପାରେ କି ?"

ତୋନ୍ୟା ତା' ନିକଟକୁ ଘୁଞ୍ଚିଆସି, ଚାରିଆଡ଼କୁ ଆଖି ବୁଲାଇ ଆଣି କହିଲା :

"ଠିକ୍‌ ଜାଣେ ନାହିଁ, ମାତ୍ର ଏତିକି ମୁଁ କହିପାରେ, ପାଭେଲ୍‌ ଘରେ ନାହିଁ, ତେବେ ନିଶ୍ଚୟ ଗିରଫ ହୋଇଥିବ ।"

ଏଥର ଶଙ୍କିତ ହୋଇ ଚାହିଁ, ଆର୍ତେମ୍‌ ପଚାରିଲା, "ଗିରଫ ହୋଇଥିବ ? କାହିଁକି କିନ୍ତୁ ?"

"ଗ୍ରଲଗ୍ଳ ଭିତରକୁ ଯିବା", ତୋନ୍ୟା କହିଲା ।

ତୋନ୍ୟା ଯାହା ଜାଣିଥିଲା, ସେସବୁ କହିଲାବେଳେ ଆର୍ତେମ୍ ନୀରବରେ ମନଦେଇ ଶୁଣୁଥାଏ । ମାତ୍ର କଥା ସରିଲାବେଳକୁ ସେ ହତାଶ ହୋଇଯାଇଥାଏ ।

"ଧେତ୍‌ତେରୀ, ଯେତେ ସବୁ... ସତେ ଯେମିତି ଯା' ଛଡ଼ା ଆଉ କିଛି ନ ଥିଲା..." ବିଷଣ୍ଣ ହୋଇ ସେ ମନକୁ ମନ କହିଲା, "ତା'ହେଲେ ଏବେ ବୁଝିପାରୁଛି, କାହିଁକି ସବୁ ଜିନିଷପତ୍ର ଏମିତି ଛିନ୍‌ଛତ୍ର ହୋଇ ପଡ଼ିଛି । ଏ ଟୋକାର କ'ଣ ପଡ଼ିଥିଲା, ଏସବୁ କାମରେ ମିଶିବାକୁ ? କୋଉଠୁ ଏବେ ପାଇବି ମୁଁ ତାକୁ ? ଆଉ... ତମେ କିଏ କହିଲ ?"

"ମୁଁ ଜଙ୍ଗଲ ଅଫିସର ତୁମାନୋଭ୍‌ଙ୍କ ଝିଅ । ମୁଁ ପାଭେଲ୍‌ର ଜଣେ ବନ୍ଧୁ ।"

"ଓଃ..." ଖାପଛଡ଼ା ଭାବରେ କହିଲା ଆର୍ତେମ୍, "ମୁଁ ତା'ପାଇଁ ଖାଇବାକୁ ଅଟା ଆଣିଥିଲି, ଆଉ ଏଠି ଏମିତି..."

ନୀରବରେ ତୋନ୍ୟା ଓ ଆର୍ତେମ୍ ପରସ୍ପରକୁ ଗ୍ରହିଁଲେ ।

"ମୁଁ ଏବେ ଯାଏଁ", କଅଁଳ ସ୍ୱରରେ କହିଲା ତୋନ୍ୟା ଯିବାକୁ ପ୍ରସ୍ତୁତ ହେଉହେଉ । "ମୁଁ ଭାବୁଛି, ଆପଣ ତାକୁ ପାଇବେ, ମୁଁ ପୁଣି ପରେ ଆସିବି ।"

ତା' କଥାରେ ନୀରବରେ ମୁଣ୍ଡ ଟଙ୍ଗାରିଲା ଆର୍ତେମ୍ ।



* * *

ଶୀତୁଆ ନିଦରୁ ଉଠି, ଗୋଟାଏ ଶୀର୍ଣ୍ଣ ମାଛି ଝରକା କଡ଼ରେ ଗୁଣୁଗୁଣୁ କରୁଥାଏ । ପୁରୁଣାକାଳିଆ ଗୋଟାଏ ଢ୍ରୋଚ୍‌ର ଗୋଟାଏ କୋଣରେ କୃଶକ ତରୁଣୀଟିଏ ବସିଥାଏ ନିଜ ଜଙ୍ଘ ଉପରେ କହୁଣୀ ଭାରା ଦେଇ । ଦୃଷ୍ଟି ତା'ର ନିବଦ୍ଧ ଥାଏ ମଇଳା ଚଟାଣ ଉପରେ ।

ପାଟିକଣରେ ଲଖିରଖିଥିବା ସିଗାରେଟ୍‌ଟାକୁ ଗ୍ରେବାଉ ଗ୍ରେବାଉ ଫର୍ଦେ କାଗଜ ଉପରେ କ'ଣସବୁ ଲେଖାଲେଖି ସାରି ମନକୁ ମନ ନିଜ କାମରେ ଖୁସି ହୋଇ ଶେଷରେ ଲେଖାଥିବା 'ଶେପେତୋଭ୍‌କା ସହରର କମାଣ୍ଡାଣ୍ଟ ଖୋରୁନ୍‌ଝି' ଉପରେ ଦସ୍ତଖତ୍‌ଟାଏ କରିସାରିଲା ବେଳକୁ ଘୋଡ଼ା ଖୁରାର ଝଣଝଣ ଶବ୍ଦ ହେବାରୁ ଆଖିଟେକି ଗ୍ରହିଁଲା ।

ଆଗରେ ତା'ର ବ୍ୟାଣ୍ଡେଜବନ୍ଧା ବାହୁ ନେଇ ଛିଡ଼ା ହୋଇଥିଲା ସାଲେମିଗା ।

"କି ହୋ, ଇଏ କ'ଣ ହେଲା ତମର, କେମିତି ହେଲା ?" ତାକୁ ଅଭିବାଦନ ଜଣାଇଲା କମାଣ୍ଡାଣ୍ଟ ।

"ଶୁଭ ସୂଚନା ନୁହଁ । ଜଣେ ବୋଗୁନେଟ୍ * ସୈନ୍ୟ ଦ୍ୱାରା ମୋ ହାତର ହାଡ଼ ଭାଙ୍ଗି ଚୁନାଚୁନା ହୋଇଯାଇଛି ଏକାବେଳେକେ ।"

---

* ବୋଗୁନେଟ୍ – ୧୭ଶ ଶତାବ୍ଦୀରେ ୟୁକ୍ରାଇନ୍‌ର ଜନସାଧାରଣଙ୍କ ମୁକ୍ତି ଯୁଦ୍ଧର ନାୟକ ବୋଗୁନ୍‌ଙ୍କ ନାମରେ ନାମିତ ଲାଲ ସେନାର ରେଜିମେଣ୍ଟର ଯୋଦ୍ଧା – ସଂପାଦକ ।

ସେଠାରେ ଉପସ୍ଥିତ ଥିବା ସ୍ତ୍ରୀଲୋକଟିର ଉପସ୍ଥିତିକୁ ଅଗ୍ରାହ୍ୟ କରି ସାଲେମିଗା ଭୟଙ୍କର ଗାଳି ଦେଇ ଗ୍ରଲିଲ୍ ।

"ଆଉ ତମେ ... ଏଠି ଆଉ କ'ଣ କରୁଛ ? ଖାଇପିଇ ଆରାମ କରୁଛ ?"

"ଆରାମ ? ଆରାମ ତ ଆମକୁ ମିଳିବ ଆରପୁରରେ ଯାଇଁ ! ସେମାନେ ଆମ ଉପରେ ଭୟଙ୍କର ଗ୍ରପ ଦେଲେଣି ।"

ସ୍ତ୍ରୀଲୋକଟି ଆଡ଼କୁ ମୁଣ୍ଡ ହଲାଇ ଦେଖାଇଦେଇ, କମାଣ୍ଡାଣ୍ଟ ତାକୁ ବାଧା ଦେଲା ।

"ପରେ କଥାବାର୍ତ୍ତା ହେବ। ।"

ସାଲେମିଗା ଗୋଟାଏ ଟୁଲ୍ ଉପରେ ଜୋର୍‌ରେ ବସିପଡ଼ି ମୁଣ୍ଡରୁ ଟୋପି କାଢ଼ିଲା । ଟୋପିଟାରେ ୟୁକ୍ରେନୀୟ ଜାତୀୟ ପ୍ରଜାତନ୍ତ୍ରର ସଙ୍କେତ ଥାଇ ଗୋଟାଏ ଏନାମେଲକରା ପଦକ ଲାଗିଥିଲା ।

"ଗୋଲୁବ୍ ମୋତେ ପଠାଇଲା", ସେ ଅନୁଚ୍ଚ ଗଳାରେ ଆରମ୍ଭ କଲା, "ଏଠିକି ଅତିଶୀଘ୍ର ଗୋଟାଏ ରେଗୁଲର୍ ବାହିନୀକୁ ବଦଳି କରାହେବ । ସାଧାରଣ ଭାବରେ ସହରରେ କିଛି କାମ ହେବ । ଆଉ ମୋ ଦାୟିତ୍ୱ ହେଲା ପଥ ପରିଷ୍କାର କରିବା । 'ଚିଫ୍' ନିଜେ ମଧ୍ୟ ଏଠିକି ଆସିପାରନ୍ତି, କୌଣସି ବିଦେଶୀ ସମ୍ମାନିତ ଲୋକଙ୍କୁ ସାଙ୍ଗରେ ନେଇ । ଆଉ କୌଣସି ଅନ୍ୟଧରଣର କଥା କହିବା ଉଚିତ ନୁହେଁ ଏଠି ନାଁ । ତମେ କ'ଣ ଲେଖୁଛ ବସି ?"

ପାଟିର ଗୋଟିଏ କଣରୁ ଆର କଣକୁ ସିଗାରେଟ୍‌ଟାକୁ ଅପସରେଇ ଆଣିଲା କମାଣ୍ଡାଣ୍ଟ ।

"ଏଠି ଗୋଟାଏ ଅତି ବଜ୍ଜାତ୍ ପିଲାଟାଏ ପାଇଛି ମୁଁ । ଝୁଖ୍‌ରାଇ ବୋଲି ଲୋକଟାକୁ ମନେ ଅଛି ନାଁ ? ସେଇ ଯିଏ ରେଳବାଇ ଲୋକଙ୍କୁ ମତେଇଥିଲା ଆମ ବିରୁଦ୍ଧରେ ? ସେଇ ଧରାପଡ଼ିଥିଲା ଷ୍ଟେସନ୍ ପାଖରେ ।"

"ସେ ଧରାପଡ଼ିଥିଲା ? ସତେ ? ତା'ପରେ କ'ଣ ହେଲା ?" ପାଖକୁ ନିଜ ଟୁଲ୍ ଘୋଷାରି ଆଣି ପଗ୍ରରିଲା ସାଲେମିଗା ।

"ସେ ବୋକା ଷ୍ଟେସନ୍ କମାଣ୍ଡାଣ୍ଟ ଓମେଲ୍‌ଚେଙ୍କୋ ତାକୁ ଗୋଟାଏ କସାକ୍ ଜଗୁଆଳି ସାଙ୍ଗେ ପଠାଉଥିଲା । ଆଉ ଏଇ ଯେଉଁ ଟୋକାକୁ ଧରିଛି ମୁଁ, ସେଇ ଟୋକା ସମସ୍ତଙ୍କ ଆଖି ଆଗରେ, ମୁକ୍ତ ଦିବାଲୋକରେ ବନ୍ଦୀଟାକୁ ଛଡ଼େଇନେଲା ତା' ପାଖରୁ । ନିରସ୍ତ୍ର ହୋଇ କସାକ୍‌ଟା ଦାନ୍ତ ନିକୁଟି ପଡ଼ିରହିଲା ସେମିତି ବନ୍ଦୀ ପଳେଇଲା ପରେ ସିଟିମାରିବାକୁ । ଝୁଖ୍‌ରାଇ ପଳେଇଲା, ହେଲେ ଆମେ ସେ ଟୋକାଟାକୁ ଧରିଛୁ । ସେଇକଥା ସବୁ ବିସ୍ତୃତଭାବରେ ଏଇ କାଗଜରେ ପାଇବ", ଲେଖା କାଗଜ ଫର୍ଦଗୁଡ଼ାକ ସାଲେମିଗା ଆଡ଼କୁ ବଢ଼େଇଦେଇ କହିଲା କମାଣ୍ଡାଣ୍ଟ ।

ନିଜ ବାଁ ହାତରେ ଧରି, ପୃଷ୍ଠା ପରେ ପୃଷ୍ଠା ଓଲଟାଇ ପଢ଼ିଗଲା ସାଲେମିଗା । ପଢ଼ିସାରିଲା ପରେ କମାଣ୍ଡାଣ୍ଟ ଆଡ଼କୁ ଅନେଇଲା ସେ ।

"ତମେ ତା'ଠୁ କିଛି ପାଇଲଣି ?"

ବିବ୍ରତ ହୋଇ ନିଜ ଟୋପି ଅଗଟାକୁ ଟାଣୁଟାଣୁ କହିଲା କମାଣ୍ଡାଣ୍ଟ :

"ଗଲା ପାଞ୍ଚଦିନ ଧରି ଲାଗିଛି ତା' ସାଙ୍ଗରେ । ହେଲେ, ସେଇ ଗୋଟାଏ କଥା ଘୋଷୁଛି ସେ, 'ମୁ କିଛି ଜାଣେ ନାହିଁ କି ତାକୁ ମୁଁ ଲୁଚାଇ ନାହିଁ ।' ଇହାପ ବଜ୍ଜାତ୍ ଟୋକା । ଦେଖ ହୋ, ଜଗୁଆଳିଟା ଚିହ୍ନୁଛି ତାକୁ । ଦେଖିଲା ମାତ୍ରେ ଜଗୁଆଳିଟା ତାକୁ ମାରିବାକୁ ବସିଲା ଏକାବେଳେକେ । ବହୁ କଷ୍ଟରେ ତା'ଠାରୁ ଛଡ଼େଇଛି ତାକୁ । ତା'ର ବି ରାଗିବାର କାରଣ ଅଛି । ଓମେଲ୍‌ଚେଙ୍କୋ ବନ୍ଦୀଟାକୁ ଛାଡ଼ିଦେଇଛି ବୋଲି ଷ୍ଟେସନ୍‌ରେ ତାକୁ ଛାଞ୍ଚୁଣୀମୁଠାରେ ପଚିଶ ପାହାର ବସେଇଛି କଷି କଷି । ଆଉ ତାକୁ ରଖିବାର କୌଣସି କାରଣ ମୁଁ ଦେଖୁ ନାହିଁ । ସେଇଥି ପାଇଁ ଏଇଟା ମୁଁ ହେଡ୍‌କ୍ୱାର୍ଟରସ୍‌କୁ ପଠାଉଛି, ତାକୁ ଶେଷ କରିଦେବା ପାଇଁ ଅନୁମତି ମାଗି ।"

ପିକଦାନୀରେ ଘୃଣାଜର୍ଜରିତ ହୋଇ ଛେପ ପକାଇଲା ସାଲେମିଗା ।

"ମୁଁ ଦେଖିଲେ, ନିଶ୍ଚୟ ମାନିଯାଆନ୍ତା ଟୋକାଟା । ତମେ ଜେରା କରିବା ବାଟ ତ ଜାଣି ନାହଁ ... ଆଉ ! ଗୋଟାଏ ଧର୍ମଶାସ୍ତ୍ରର ଛାତ୍ର କୋଉଠି କମାଣ୍ଡାଣ୍ଟ ହୋଇଛି ଦେଖିଛ, ତମେ ଦଣ୍ଡା ଧରି ଚେଷ୍ଟା କରିଛ ?"

ରାଗରେ ପାଚିଗଲା କମାଣ୍ଡାଣ୍ଟ :

"ତମେ ଅନେକ ବଡ଼ବଡ଼ କଥା କହୁଛ ! ତମ ଟାହି ରଖ ତମେ ! ମୁଁ ଏଠାର କମାଣ୍ଡାଣ୍ଟ, ଆଉ ମୋ କାମରେ ତମକୁ ହସ୍ତକ୍ଷେପ କରିବାକୁ ଦେବି ନାହିଁ ମୁଁ ।"

ରାଗରେ ତମତମ ହୋଇଥିବା କମାଣ୍ଡାଣ୍ଟକୁ ଗ୍ରହିଁ ହସରେ ଫାଟି ପଡ଼ିଲା ସାଲେମିଗା ।

"ହାଃ, ହାଃ, ହାଃ, ନିଜେ ନିଜେ ଆଉ ଏତେ ବେଶି ଫୁଲିଯାଅ ନାହିଁ, ହେ ଧର୍ମଯାଜକ ପୁତ୍ର, ଫାଟିଯିବଟି ! ତମ ସମସ୍ୟା ତମର ରଖ ହୋ । ମୋର ସେଥିରେ ଯାଏ ଆସେ କେତେ ? ତା' ଅପେକ୍ଷା ଗୋଟାଏ ଲୋକ ପଠାଇଲ, କେଉଠୁ ଦି' ବୋତଲ 'ସାମୋଗୋନ୍' ଆଣିବ ।"

କମାଣ୍ଡାଣ୍ଟ କହିଲା :

"ସେକଥା ହବ ।"

"ଆଉ ଏ ବିଷୟରେ ..." ସାଲେମିଗା କାଗଜଟାକୁ ଦି' ଆଙ୍ଗୁଠି ଆଗରେ ଧରି କହିଲା, "ଯଦି ତାକୁ ସାବାଡ଼୍ କରିବାକୁ ଗ୍ରହୁଁଛ, ତେବେ ତାକୁ ଷୋହଳ ବର୍ଷ ବୋଲି କାଟି ଅଠର ବର୍ଷ ବୋଲି ଲେଖ । ଛଅଟାର ଆଗରେ ଆଉ ଗୋଟାଏ ମୁଣ୍ଡୁଳା ବୁଲାଇ ଆଠ କରିଦିଅ ତାକୁ, ନହେଲେ ସେମାନେ ତମ କଥାରେ ସମ୍ମତି ନ ଦେଇପାରନ୍ତି ।"

* * *

ସେମାନେ ତିନିହେଁ ଭଣ୍ଡାରଘରଟା ଭିତରେ ଥିଲେ । ଗୋଟାଏ ଦାଢ଼ିଆ ବୁଢ଼ା କୁର୍ତ୍ତା ପିନ୍ଧିଛି, ଖଟିଆରେ ତା' କଡ଼ରେ ପଡ଼ିଥିଲା । ଗୋଡ଼ ଫରକଟେଇ ପଡ଼ିଥିବାରୁ

ଲିଲେନ୍ ଟ୍ରାଉଜର ତା'ର ଗୋଡ଼ ଉପରକୁ ଉଠିଆସିଥିଲା । ପେଟ୍‌ଲ୍ୟୁରା ଲୋକଙ୍କର ଘୋଡ଼ା ତା' ଜିମ୍ମା ଥିଲା ଓ ଅସ୍ତାବଲରୁ ତା' ମିଳିଲା ନାହିଁ । ତେଣୁ ତାକୁ ଗିରଫ କରାଯାଇଥିଲା । ଆଉ ଜଣେ ବୟସ୍କା ସ୍ତ୍ରୀଲୋକ, ଛୋଟ ଛୋଟ ଆଖି ତା'ର, ଗୋଜିଆ ଚିବୁକ, ଚଟାଣରେ ବସିଥିଲା । ସିଏ 'ସାମୋଗୋନ୍' ମଦ ବିକି ଚଳେ । ଗୋଟାଏ ଘଣ୍ଟା ଆଉ କ'ଣ ସବୁ ଦାମିକା ଜିନିଷ ଚୋରି କରିଛି ବୋଲି ତାକୁ ଧରିଆଣିଛନ୍ତି । ଝରକାତଳକୁ ଠିକ୍ ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ିଥାଏ କୋର୍ଚ୍‌ଗିନ୍ । ମୁଣ୍ଡ ତା'ର ଥୋଇଥାଏ ଲେଚିକୋଚି ହୋଇଥିବା ଟୋପିଟା ଉପରେ ।

* * *

ମୁଣ୍ଡରେ ଗୋଟାଏ ଘୁସୁଣୀ ଭଳି ରୁମାଲ ବାନ୍ଧିଥିବା ତରୁଣୀ ସେଇ ଘର ଭିତରକୁ ପଶିଲା । ଆତଙ୍କରେ ବିସ୍ତାରିତ ହୋଇଛି ତା' ଆଖିଦିଇଟା ।

ଗୋଟିଏ କି ଦିଓଟି ମୁହୂର୍ତ୍ତ ପର୍ଯ୍ୟନ୍ତ ଥକ୍କା ମାରି ଛିଡ଼ାହେଲା ସେ ଏବଂ ତା'ପରେ 'ସାମୋଗୋନ୍' ବିକାଳୀ ସ୍ତ୍ରୀଲୋକଟି ପାଖରେ ବସିପଡ଼ିଲା ।

"କ'ଣ କିଲୋ ବାରବୁଲୀ ବିଟପୀ ଧରାପଡ଼ିଲୁ ?" 'ସାମୋଗୋନ୍' ବିକାଳୀ ତରବର ହୋଇ ପଚାରିଲା ଆଗନ୍ତୁକାକୁ, ଖୋଜିଲା ଖୋଜିଲା ଆଖିରେ ଚାହିଁ ।

କୌଣସି ଉତ୍ତର ମିଳିଲା ନାହିଁ, ହେଲେ 'ସାମୋଗୋନ୍' ବିକାଳୀ ସ୍ତ୍ରୀଲୋକଟି ନଛୋଡ଼ବନ୍ଦା ।

"ତୋତେ କାହିଁକି ଆଣିଛନ୍ତି କିଲୋ ସେମାନେ ? 'ସାମୋଗୋନ୍' ପାଇଁ ନୁହଁ ତ ? ଏ ?"

ସୁନ୍ଦର ଝିଅଟି ଛିଡ଼ା ହୋଇପଡ଼ିଲା ଓ ନଛୋଡ଼ବନ୍ଦା ବୁଢ଼ୀକୁ ଅନାଇଲା ।

"ନାଁ, ମୋ ଭାଇ ପାଇଁ", ଧୀରସ୍ୱରରେ କହିଲା ସେ ।

"କିଏ ସିଏ ?" ବୁଢ଼ୀ ପୁଣି ପଚାରିଲା ଓ ବୃଦ୍ଧଟି ଏଥର କହିଉଠିଲା :

"କାହିଁକି ଲଗିଛୁ ତା' ସାଙ୍ଗରେ, ତା'ର ମନଦୁଃଖ ମନରେ ମାରିବ ନାଁ ତୋ' ସାଙ୍ଗରେ ଏମିତି ଚବରଚବର ଲଗେଇବ ।"

ଚଞ୍ଚଳ ଖଟିଆ ଆଡ଼କୁ ବୁଲିପଡ଼ିଲା ବୁଢ଼ୀ ଓ କହିଲା :

"ତୁ କିଏ ରେ, ମୋତେ କ'ଣ କରିବି କି ନ କରିବି ବତାଇଲାବାଲା ? ମୁଁ ତୋ ସାଙ୍ଗେ କଥା କହୁ ନାହିଁ ... କହୁଛି ?"

ବୁଢ଼ା ଛେପ ପକାଇଲା ।

"ତାକୁ ଏକୁଟିଆ ଛାଡ଼୍, ମୁଁ କହୁଛି ତୋତେ ।"

ଭଣ୍ଡାର ଘରଟା ଭିତରେ ପୁଣି ନୀରବତା ଫେରିଆସିଲା । କୃଷକ ତରୁଣୀଟି ଗୋଟାଏ ଶାଲ୍ ବିଛାଇ ବାହାରେ ମୁଣ୍ଡ ଦେଇ ଗଡ଼ିଗଲା ତଳେ ।

'ସାମୋଗୋନ୍' ବିକାଳୀ ସ୍ତ୍ରୀଲୋକଟି ଖାଇବାକୁ ଆରମ୍ଭ କଲା । ବୁଢ଼ା ଏଥର

ଉଠିବସିଲା, ଚଟାଣକୁ ପାଦ ଓହ୍ଲାଇଲା, ଗୋଟାଏ ସିଗାରେଟ୍ ବଳିଲା ଓ ସେଥିରେ ନିଆଁ ଧରାଇଲା । ଧୂଆଁର ମେଘ ଘରଟାସାରା ଛାଇଗଲା ।

"ଏମିତି ଧୂଆଁରେ କିଏ ଟିକେ ଶାନ୍ତିରେ ଖାଇବ ଲୋ ମା ?" ରାଗରେ ଗରର୍ ଗରର୍ ହୋଇ ସ୍ତ୍ରୀଲୋକଟି କହିଲା ତା' ପାଟି ବୁଲାଉ ବୁଲାଉ, "ଘରଟା ସାରା ଧୂଆଁରେ ଭର୍ତ୍ତି କରିଦେଲାଣି ଏକାବେଳେକେ ।"

ବୃଦ୍ଧ ଏଥର କଥା ଓଲଟାଇଲା, ଦାନ୍ତ ନିକୁଟି ଟାପରା କଲା, "କ'ଣ ଓଜନ କମିଯିବ ତୋର ଏଁ ? ଏତେ ଚଞ୍ଚଳ ଏ କବାଟ ଆରପଟକୁ ଯାଉନୁ ତୁ । ଏ ପୁଅଟିକୁ କ'ଣ ଟିକେ ନ ଦେଇ ନିଜେ ସବୁଯାକ ଗିଳିଯାଉଛୁ କାହିଁକି ?"

ସ୍ତ୍ରୀଲୋକଟି ରାଗିଯାଇ ମୁହଁ ଛିଞ୍ଚାଡ଼ିଲା । "ମୁଁ କ'ଣ ଯାଚି ନାହିଁ ? ହେଲେ ସିଏ ପରା କିଛି ଖାଇବ ନାହିଁ ବୋଲି ମନା କରୁଛି । ତୁ ଆଉ ମୋତେ ସେ ପାଠ ଶିଖାନା, ତୋ ବେପାର କ'ଣ ମୁଁ ଖାଉଛି ବସି ?"

ଝିଅଟି ଏଥର 'ସାମୋଗୋନ୍' ବୁଢ଼ୀ ଆଡ଼କୁ ବୁଲିପଡ଼ି କୋର୍ଶଗିନ୍‌କୁ ଦେଖାଇ ପଗ୍ଚାରିଲା :

"ସିଏ କାହିଁକି ଏଠି ଅଛନ୍ତି ?"

ପ୍ରଶ୍ନଟା ତାକୁଇ ପଚରା ଯାଇଥିବାରୁ ବୃଦ୍ଧାର ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା ଏବଂ ସେ ତୁରନ୍ତ ଉତ୍ତର ଦେଲା:

"ଏଇଠାର ଟୋକାଟା କୋର୍ଶଗିନ୍‌ଙ୍କର ସାନ ପୁଅ । ମା' ତାଆର ରାନ୍ଧୁଣୀ ।" ତା'ପରେ ଝିଅଟି ଆଡ଼କୁ ଝୁଙ୍କି ଯାଇ ତା' କାନରେ ଫୁସ୍‌ଫୁସ୍ କରି କହିଲା :

"ସିଏ ଜଣେ ବଲ୍‌ଶେଭିକ୍‌କୁ ମୁକୁଳାଇଦେଇଛି ପରା ! ଜଣେ ଜାହାଜୀ ମ... ମୋ ପଡ଼ିଶା ଜୋକୁଲିଖା ସାଙ୍ଗରେ ରହୁଥିଲା ପରା ।"

ତରୁଣୀଟିର ମନେ ପଡ଼ିଲା, ସିଏ ଶୁଣିଥିବା କଥାପଦକ : "ମୁଁ ଏଇଟାକୁ ହେଡ୍‌କ୍ୱାର୍ଟରସ୍‌କୁ ପଠାଉଛି, ତାକୁ ଶେଷ କରିଦେବା ପାଇଁ ଅନୁମତି ଆଣିବା ସକାଶେ ।"

* * *

ଗୋଟାକ ପରେ ଗୋଟାଏ ଫୌଜୀ ରେଳ ଗାଡ଼ି ଜଙ୍କ୍‌ସନ୍‌ରେ ଆସି ଅଟକିଲା ଓ ବିଶୃଙ୍ଖଳ ଭାବରେ ଧାରାବାହିକ ସୈନ୍ୟବାହିନୀର ଲୋକେ ଗହଳିକରି ଓହ୍ଲାଇଲେ ସେଥିରୁ ସବୁ । ଅସ୍ତ୍ରଶସ୍ତ୍ର ବହିଆଣୁଥିବା ରେଳ 'ଜାପୋରୋଝେଟ୍‌ସ' ଗ୍ରରିଟି ବଗି ଲଗିଥାଏ ସେଥିରେ । କଡ଼ଗୁଡ଼ାକ ଇସ୍ପାତର ଗୋବ ବସିଥାଏ । ତାହା ଯାଇଁ ରହିଲା ଗୋଟାଏ କଡ଼ିକିଆ ଲାଇନ୍‌ରେ । ବନ୍ଧୁକସବୁ ଓହ୍ଲାହେଲା ଓ ଘୋଡ଼ାଗୁଡ଼ାକୁ ବନ୍ଦ ବାକ୍ସ ଡବାର ତଳକୁ ଅଣାହେଲା । ସେଇଠି ଘୋଡ଼ାଗୁଡ଼ାକ ପିଠିରେ ଜିନ୍ ଭିଡ଼ାହେଲା ଓ ଘୋଡ଼ସବାରମାନେ ପଦାତିକ ସୈନ୍ୟବାହିନୀ ଲୋକଙ୍କର ଗହଳି ଭେଦକରି ଘୋଡ଼ା

ଝପଟାଇ ଗ୍ଭଲିଲେ ଷ୍ଟେସନ୍‌ୟାର୍ଡ ଆଡ଼କୁ, ଯେଉଁଠି ଘୋଡ଼ସବାର ବାହିନୀମାନେ ଧାଡ଼ିବାନ୍ଧି ଠିଆ ହେଉଥାଆନ୍ତି ।

ଅଫିସରମାନେ ଧାଁଧପଡ଼ କରୁଥାଆନ୍ତି ନିଜ ନିଜର ୟୁନିଟ୍‌ର ନମ୍ବରସବୁ ଡାକହାକ କରି ।

ସମୁଦାୟ ଷ୍ଟେସନ୍‌ଟା ଗୋଟାଏ ମହୁଫେଣା ଭଳି ଗୁଞ୍ଜନ କରି ଉଠିଲା । ପରେ ପରେ ସେଇ ଜନଗହଳି ରୂପାନ୍ତରିତ ହେଲା ଏକ ଶୃଙ୍ଖଳିତ ଧାଡ଼ିବନ୍ଧା ସେନାବାହିନୀରେ ଓ ସଶସ୍ତ୍ରବାହିନୀର ଗୋଟିଏ ଶେଷହୀନ ସୁଅ ଗଡ଼ିଗ୍ଭଲିଲା ସହର ଅଭିମୁଖରେ । ସନ୍ଧ୍ୟା ଅତିବାହିତ ହେବାର ଅନେକ ପରେ ମଧ୍ୟ ରାଜରାସ୍ତା ଉପରେ କମାଣବାହିନୀର କମାଣବାହୀ ଶଗଡ଼ସବୁର କେଁକଟର ଶବ୍ଦ ଶୁଭୁଥାଏ । ସବାଶେଷରେ, ଏହି ଶୋଭାଯାତ୍ରା ଶେଷ ହେଲା ହେଡ୍‌କ୍ୱାର୍ଟରସ୍ କମ୍ପାନିର ଶହେ କୋଡ଼ିଏ ଜଣଙ୍କର ଘାଘଡ଼ା କଣ୍ଠର ସମ୍ମିଳିତ ସ୍ୱରଲହରୀରେ :

"କାହାର ଏ ସ୍ୱର ?
କାହାର ଏ ଶବ୍ଦ ?
ଏହା ପେଟ୍‌ଲ୍ୟୁରା ବାହିନୀର,
ପେଟ୍‌ଲ୍ୟୁରା ବାହିନୀ
ଆସିଛନ୍ତି ସହରକୁ ... ।"

ପାଭେଲ୍ କୋର୍ଚ୍ଚାଗିନ୍ ଉଠି ଛିଡ଼ାହେଲା ଝରକାବାଟେ ଗ୍ଭହିଁବାକୁ । ଗୋଧୂଳି ବେଳେ, ରାସ୍ତା ଉପରେ ଚକର ଘର୍ଘର ରବ, ବହୁ ପଦପାତର ସମ୍ମିଳିତ ଶବ୍ଦ, ବେସୁରା ଗୀତ, ସବୁ ସେ ଶୁଣିପାରିଥିଲା ।

ତା'ପଛରୁ ଗୋଟିଏ କୋମଳ ସ୍ୱର କହିଉଠିଲା :

"ସହରକୁ ଫୌଜ ଆସିଛନ୍ତି ।"

କୋର୍ଚ୍ଚାଗିନ୍ ବୁଲିପଡ଼ି ଗ୍ଭହିଁଲା ।

ଆଗଦିନ ଅଣାହୋଇଥିବା ଝିଅଟି ଏକଥା କହିଥିଲା ।

ତା' କାହାଣୀ ସେ ଶୁଣିସାରିଥିଲା ସେତେବେଳକୁ । 'ସାମୋଗୋନ୍' ସ୍ତ୍ରୀଲୋକଟି କଥା ଆଦାୟ କରିଥିଲା ତା' ପାଖରୁ । ସହରରୁ ସାତ କୋଶ ଦୂର ଗାଁଟିରେ ତା' ଘର । ସେଠି ତା'ର ବଡ଼ଭାଇ ଗ୍ରୀଟ୍‌ସୋ, ଯିଏ ଏବେ ଲାଲ୍‌ଫୌଜରେ ଯୋଗ ଦେଇଛି, ଗୋଟାଏ ଦରିଦ୍ର କୃଷକ ସମିତିର ନେତୃତ୍ୱ କରୁଥିଲା, ସୋଭିଏତ୍ ଲୋକେ କ୍ଷମତାରେ ଥିଲାବେଳେ ।

ଲାଲଫୌଜ ଗଲାବେଳେ, ଗ୍ରୀଟ୍‌ସୋ ମଧ୍ୟ ନିଜ ଦେହରେ ଏକ ମେସିନ୍‌ଗନ୍ ବେଲ୍ଟ ବାନ୍ଧି ସେମାନଙ୍କ ସାଥିରେ ବାହାରିଗଲା । ଏବେ ତା'ର ସାରା ପରିବାର ଉପରେ ଏମାନେ ଧାରାବାହିକ ଭାବରେ ଆକ୍ରମଣ କରୁଛନ୍ତି । ତାଙ୍କର ଏକମାତ୍ର ଘୋଡ଼ାଟିକୁ ଛଡ଼ାଇ ନେଇଛନ୍ତି । ବାପାକୁ କେଇଦିନ ହେଲା ବାନ୍ଧି ନେଇଥିଲେ ଓ ସେ ବଡ଼ ଦୁଃସମୟରେ କାଲି

କାଟୁଛନ୍ତି । ଗାଁ ମୁଖିଆ ଯିଏ ଗ୍ରୀଚ୍‌ସ୍କୋ ଥିଲାବେଳେ ମୁହଁବୁଜି ଦବିଯାଇ ରହିଥିଲା । ଏବେ ନାନା ପ୍ରକାର ବାଦ ସାଧୁଛି । ଅଜଣା ଲୋକଗୁଡ଼ାଙ୍କୁ ରହିବା ପାଇଁ ତାଙ୍କ ଘରକୁ ନେଇ ଆସୁଛି । ପରିବାରଟା ସାରା ନିରାଶ୍ରୟ, ନିଃସହାୟ ହୋଇ ଅଛନ୍ତି । ତା' ଆଗଦିନ କମାଣ୍ଡାଣ୍ଟ ତାଙ୍କ ଗାଁକୁ ଯାଇଥିଲା ବେଳେ ଗାଁ ମୁଖିଆ ତାକୁ ଏ ଝିଅଟି ପାଖକୁ ନେଇ ଯାଇଥିଲା । ଝିଅଟି ତା' କଥାରେ ରାଜି ନ ହେବାରୁ ତା' ପରଦିନ ସକାଳୁ ତାକୁ ଏଠିକି ବାନ୍ଧି ଆଣିଛନ୍ତି, "ଜେରା କରିବେ" ବୋଲି ।

କୋର୍ଗିନ୍ ଆଖିକୁ ନିଦ ଆସୁ ନ ଥାଏ । ଯେତେ ଚେଷ୍ଟା କଲେ ମଧ୍ୟ ସେ ଆରାମ ପାଉ ନ ଥାଏ ମନରେ । ମନ ଭିତରେ ତା'ର କେବଳ ଏକମାତ୍ର ଭାବନା ଘୁରେଇ ତୁରେଇ ହେଉଥାଏ, "ଏହା ପରେ କ'ଣ ହେବ ?"

କ୍ଷତାକ୍ତ ଦେହ ତା'ର କଷ୍ଟରେ ବିନ୍ଧିଉଠୁଥାଏ, କାରଣ ଜଗୁଆଳିଟା ତାକୁ ପଶୁ ଭଳି ବାଡ଼େଇଥାଏ ।

ମନଭିତରେ ଖେଳିଯାଉଥିବା ଚିନ୍ତା ଭାବନାଗୁଡ଼ାକୁ ଦୂରେଇ ଦେବା ପାଇଁ ସ୍ତ୍ରୀଲୋକ ଦୁହିଁଙ୍କର ଫୁସ୍‌ଫୁସ୍ କଥାକୁ କାନ ଡେରିଲା ସେ ।

ଅସ୍ପଷ୍ଟ ସ୍ୱରରେ ଝିଅଟି ବଖାଣୁଥାଏ, କେମିତି କମାଣ୍ଡାଣ୍ଟ ତାକୁ ହଇରାଣ କଲା, ତା'ପରେ ଧମକଚମକ ଦେଲା, ବୁଝାଇଲା ... ତଥାପି ନ ମାନିବାରୁ, ରାଜି ନ ହୋଇ ପ୍ରତିବାଦ କରିବାରୁ ରାଗିଯାଇ ତାକୁ କହିଲା, "ତୋତେ ଗୋଟାଏ ନିବୁଜ ଘରେ ତାଲା ପକେଇ ରଖିବି, ସେଇଠି ଶୁଖିଶୁଖି ମରିବୁ ।"

ବନ୍ଦୀଶାଳ କୋଠରୀର ଚାରିକୋଣରେ ଅନ୍ଧାର ଜମାଟ ବାନ୍ଧିଲାଣି । ଆହୁରି ଗୋଟାଏ ଭୟଙ୍କର, ବିଶ୍ରାନ୍ତିପୂର୍ଣ୍ଣ କଦାକାର ରାତ୍ରି ଆଗକୁ ଅଛି । ପୂରା ଗୋଟାଏ ରାତି ! ବନ୍ଦୀଶାଳରେ ରହିବାର ସାତଟି ରାତି ମାତ୍ର ବିତିଥିଲେ ମଧ୍ୟ ପାଭେଲ୍‌କୁ ଲାଗୁଥିଲା, ସତେ ଯେମିତି ମାସ ମାସ ଧରି ସେ ଏଇଠି ଅଛି । କର୍କଶ ଟାଣୁଆ ଚଟାଣଟା । ତା' ଦେହରେ ତୀବ୍ର ଯନ୍ତ୍ରଣା ସଞ୍ଚାରିତ ହେଲା । ଏବେ ସେ ଭଣ୍ଡାରଘରେ ସେମାନେ ତିନିଜଣ ଥିଲେ । 'ସାମୋଗୋନ୍' ସ୍ତ୍ରୀଲୋକଟିକୁ ଖୋରୁନ୍‌ଜି ଛାଡ଼ିଦେଇଥିଲା, କିଛି ଭୋଦ୍‌କା ଆଣି ଯୋଗାଇବା ପାଇଁ । ବୁଢ଼ା ଜେଜେ ଖଟିଆ ଉପରେ ଶୋଇ ନିଦରେ ଘୁଙ୍ଘୁଡ଼ି ମାରୁଥାନ୍ତି, ସତେ ଯେମିତି ସିଏ ତାଙ୍କ ରୁଷୀୟ ଷ୍ଟୋଭ୍ ଉପରେ ଶୋଇଛନ୍ତି । ନିଜର ଏ ଦୁର୍ଭାଗ୍ୟକୁ ସେ ଅତି ନୀରବ ଧୈର୍ଯ୍ୟର ସହିତ ମାନିନେଇ ସାରାରାତି ଅବିଚ୍ଛିନ୍ନ ଗାଢ଼ ନିଦରେ ଶୋଇଯାନ୍ତି । ଖ୍ରୀଷ୍ଟିନା ଓ ପାଭେଲ୍ ଚଟାଣରେ ଗଡ଼ୁଥାଆନ୍ତି, ପ୍ରାୟ ପାଖକୁ ପାଖ ଲଗାଲଗି ହୋଇ । ଗଲାକାଲି ଝରକାବାଟେ ସେର୍ଗେଇକୁ ଦେଖିଥିଲା ପାଭେଲ୍ । ସିଏ ଅନେକ ସମୟ ଧରି ରାସ୍ତାଟାରେ ଛିଡ଼ା ହୋଇଥିଲା, ଘରର ଝରକାଗୁଡ଼ାକୁ ଦୁଃଖପୂର୍ଣ୍ଣ ଚାହାଣୀରେ ଅନାଇଁ ଅନାଇଁ ।

"ସିଏ ବୋଧହୁଏ ଜାଣିଛି, ମୁଁ ଏଠି ଅଛି ବୋଲି", ପାଭେଲ୍ ଭାବିଲା ।

ଲଗିଲଗି ତିନିଦିନ ଧରି, କିଏ ଜଣେ ତା ପାଇଁ ଖଟା କଳାରୁଟି ଆଣିଦେଉଛି ।

ଝିଏ ଆଣିଦେଉଛି ବୋଲି ଜଗୁଆଳିମାନେ କହୁ ନାହାନ୍ତି । ଆଉ ଗଲା ଦୁଇଦିନ ଧରି ଅନବରତ ଜେରା କରୁଛି କମାଣ୍ଡାଣ୍ଟ । କିନ୍ତୁ ଏସବୁର ଅର୍ଥ କ'ଣ ?

ଜେରାରେ ସେ କିଛି ବୋଲି କିଛି କହି ନାହିଁ । ବରଂ ସବୁ ଅସ୍ୱୀକାର କରିଛି । କାହିଁକି ବା ସିଏ ନୀରବ ରହୁଛି, ସେକଥା ସେ ନିଜେ ବି କହିପାରିବ ନାହିଁ। ସେ ସାହସୀ ଓ ଶକ୍ତିଶାଳୀ ହେବାକୁ ଇଚ୍ଛା କରିଥିଲା, ବହିରେ ପଢ଼ିଥିବା ଲୋକମାନଙ୍କ ଭଳି । ମାତ୍ର ସେଦିନ ରାତିରେ ତାକୁ ବନ୍ଦୀଶାଳକୁ ନେଲା ବେଳେ ଜଣେ ସନ୍ତ୍ରୀ କହିଲା, "ତାକୁ ବନ୍ଦୀଶାଳକୁ ନେଇ ଲାଭ କ'ଣ ପ୍ୟାନ୍ ଖୋରୁନ୍‌ଜି ? ପିଠିରେ ଗୋଟିଏ ବୁଲେଟ୍‌ରେ ସବୁ ଠିକ୍ ହୋଇଯିବ", ସିଏ ଡରିଗଲା । ଷୋହଳ ବର୍ଷ ବୟସରେ ମରିଯିବାର ଭାବନା ସତରେ ଭୟପ୍ରଦ । ମୃତ୍ୟୁ ସବୁର ସମାପ୍ତି ଘଟାଏ !

ଖ୍ରୀଷ୍ଟିନା ମଧ୍ୟ ଭାବୁଥାଏ । ଏ ତରୁଣଟି ଅପେକ୍ଷା ଅଧିକ ଜାଣେ ସେ । ଇଏ ହୁଏତ ଜାଣେ ନାହିଁ, ତା' ପାଇଁ କ'ଣ ଅପେକ୍ଷା କରିଛି, ଯାହା ସିଏ ଶୁଣି ପକାଇଥିଲା ସେଦିନ ।

ନଶୋଇପାରି ରାତିଟା ସାରା ସେ ଛଟପଟ ହେଉଥାଏ । ତାକୁ ଅନୁକମ୍ପା ଦେଖାଉଥାଏ ଖ୍ରୀଷ୍ଟିନା, ଯଦିଓ ତା'ର ନିଜର ଅବସ୍ଥା ମଧ୍ୟ ଆହୁରି ଶୋଚନୀୟ । କମାଣ୍ଡାଣ୍ଟର କଥାର ତୀବ୍ରତା ସେ ଏବେ ବି ଭୁଲି ପାରୁ ନାହିଁ, "କାଲି ମୁଁ ତୋତେ ଠିକ୍ କରିଦେବି । ମୋ କଥାରେ ରାଜି ନ ହେଲେ ତୋତେ ଜଗୁଆଳିଖାନାକୁ ପଠାଇଦେବି । ଆଉ କସାକ୍‌ମାନେ ତୋତେ ପାଇ ନିଶ୍ଚୟ ଖୁସି ହେବେ । ତେଣୁ ତୁ ଏଥର ବାଛିନେ, କୋଉଟା ତୋର ଦରକାର, ମୁଁ ନା ଜଗୁଆଳିମାନେ ।"

ବିଷଣ୍ଣ ବେଦନାରେ ଆଚ୍ଛନ୍ନ ହୋଇଗଲା ତା'ର ମନ । ଓଃ, କେଡ଼େ କଠିଣ ଏ ଦୁନିଆ ! କେଉଠି ଏତେ ଟିକେ ହେଲେ ଦୟାମାୟା ନାହିଁ । କ'ଣ ତା' ଦୋଷରୁ ଗ୍ରୀଡ୍‌ସୋ ଲାଲଫୌଜରେ ଯୋଗଦେଇଛି ? ଜୀବନ ସତେ କି ନିର୍ମମ ! କଠୋର !

ବେଦନାହତ ବିଷଣ୍ଣ ମନ ତା'ର ଅସହାୟ, ହତାଶାରେ ଆଚ୍ଛନ୍ନ ହୋଇଗଲା । ଭୟ ଓ ହତାଶା ପରବର୍ତ୍ତୀ କାଳରେ ନିଃଶବ୍ଦ କ୍ରନ୍ଦନରେ ପରିଣତ ହେଲା । କଇଁ କଇଁ ହୋଇ କାନ୍ଦିଉଠିଲା ସେ ।

କାନ୍ଧ ପାଖଦେଇ ଗୋଟାଏ ଛାଇ ଘୁଞ୍ଚିଆସିଲା ।

"କାହିଁକି କାନ୍ଦୁଛ ତମେ ?"

ଏକ ଆବେଗପୂର୍ଣ୍ଣ ଅନୁଚ୍ଚସ୍ୱରରେ ଖ୍ରୀଷ୍ଟିନା ତା'ର ବନ୍ଦୀଶାଳାର ବନ୍ଧୁ ଆଗରେ ନିଜର ମର୍ମବେଦନା ବଖାଣିଗଲା । ପାଭେଲ୍ କିଛି କହୁ ନ ଥାଏ । ମୋଲାୟମ ଭାବରେ ତା' ହାତ ଉପରେ ନିଜ ହାତଟି ଥାପିଥାଏ ।

"ସେମାନେ ଅତ୍ୟାଚାର କରି ମୋତେ ମାରିପକାଇବେ", ଆତଙ୍କରେ କହିଲା ଝିଅଟି, କୋହ ଢୋକି ଢୋକି, "ମୋତେ କେହି ରକ୍ଷା କରି ପାରିବେ ନାହିଁ ।"

ପାଭେଲ୍ କ'ଣ କହିବ ଏ ଝିଅଟିକୁ ? କିଛି କହିବାର ନାହିଁ । ଏକ ଲୌହ ବଳୟରେ, ଜୀବନ ଅତି ନିର୍ମମ, ନିଦାରୁଣ ଭାବରେ ନିଷ୍ପେଷିତ କରୁଛି ।

ଆଗାମୀକାଲି ସକାଳୁ ସେମାନେ ତା' ପାଖକୁ ଆସିଲାବେଳେ ତାକୁ କ'ଣ ହୁଏତ ଏକ ସଂଗ୍ରାମ କରିବାକୁ ପଡ଼ିବ ? ସେମାନେ କେବଳ ତାକୁ ପିଟି ପିଟି ମାରିପକେଇବେ, ଅବା ଶିର ଉପରେ ଗୋଟାଏ ଅସ୍ତ୍ରାଘାତରେ ସବୁ ନିଃଶେଷ ହୋଇଯିବ । ବେଦନାବିହ୍ୱଳ ଏ ଝିଅଟିକୁ କିଭଳି କୌଣସି ଉପାୟରେ ସାନ୍ତ୍ୱନା ଦେବା କଥା ଭାବି ଭାବି, ମୋଲାୟମ ଭାବରେ ତା' ହାତ ଥାପୁଡ଼ାଇଲା ପାଭେଲ୍ । କଇଁ କଇଁ କାନ୍ଦଣା ବନ୍ଦ ହେଲା ତା'ର । ମଝିରେ ମଝିରେ ସନ୍ତ୍ରୀ ଚିତ୍କାର କରି ଡାକୁଥାଏ, "କିଏସେ ଯାଉଛି ସେଠାରେ ।" ପରେ ପରେ ସବୁ ପୁଣି ନିସ୍ତବ୍ଧ ହୋଇଯାଉଥାଏ । ଜେଜେ ବୁଢ଼ା ଗାଢ଼ ନିଦରେ ଶୋଇଥାଆନ୍ତି । ମୁହୂର୍ତ୍ତଗୁଡ଼ାକ ଅବିଛିନ୍ନ ଭାବରେ, ଘୁଷୁରି ଘୁଷୁରି ଅତିକ୍ରମ କରୁଥାଏ । ପରେ ପରେ, ଗଭୀର ବିସ୍ମୟ ସହକାରେ ପାଭେଲ୍ ଅନୁଭବ କଲା, ଝିଅଟିର ବାହୁ ତା' ଗ୍ରୀବା ଚାରିପଟେ ଗୁରେଇ ହୋଇଯାଇ ତାକୁ ନିଜ ଆଡ଼କୁ ଭିଡ଼ିଆଣିଲା ।

"ଶୁଣ ...", ଫୁସ୍‌ଫୁସ୍ ହୋଇ କହୁଥାଏ ଝିଅଟି, "ମୋ ପାଇଁ ମୁକ୍ତିର କୌଣସି ଉପାୟ ନାହିଁ । ଯଦି ଅଫିସର ନ ହୁଏ ତେବେ ଆଉ ଅନ୍ୟ ଲୋକମାନେ ମୋ ଉପରେ ଅତ୍ୟାଚାର କରିବେ । ମୋତେ ପ୍ରେମକର, ସେ କୁକୁରଟା ପ୍ରଥମ ଲୋକ ନହେଉ !"

"ତୁମେ କ'ଣ କହୁଛ, ଖ୍ରୀଷ୍ଟିନା ?"

ମାତ୍ର ଶକ୍ତିଶାଳୀ ବାହୁ ଦିଓଟି ତାକୁ ମୁକ୍ତି ଦେଲେ ନାହିଁ । ସମ୍ପୂର୍ଣ୍ଣ ଉତପ୍ତ ଓଠଦିଅଟି, ତା' ଓଠ ଉପରେ ଚାପି ହୋଇଗଲା, ମୁକ୍ତି ପାଇବାର ଉପାୟ ନାହିଁ । ସରଳଭାବରେ ଓ କୋମଳ ସ୍ୱରରେ କହୁଥିଲା ଝିଅଟି । ପାଭେଲ୍ ମଧ୍ୟ ବୁଝିପାରୁଥିଲା, ଏକଥା ସେ କାହିଁକି କହୁଛି ବୋଲି ।

ମହୂର୍ତ୍ତକ ପାଇଁ ସବୁ... ସବୁ କୁଆଡ଼େ ପଳେଇଗଲା – ନିବୁଜ କବାଟ, ଲାଲ୍‌ମୁଣ୍ଡ କସାକ୍‌ମାନେ, ପଶୁଭଳି ମାଡ଼, ସାତୋଟି କଠୋର ବିନିଦ୍ର ରାତ୍ରି ... ସବୁ ପାସୋରି ଗଲା କାହିଁ କୁଆଡ଼େ । କେବଳ ରହିଲା, ଉତପ୍ତ ଓଠଦିଅଟି ଓ ଲୁହଭିଜା ଗୋଟିଏ ମୁହଁ ।

ହଠାତ୍ ତା'ର ମନେ ପଡ଼ିଲା ତୋନ୍ୟା ।

ତୋନ୍ୟାକୁ କିପରି ଭୁଲିଯିବ ସେ ? ତା'ର ସେ ଲୋଭନୀୟ, ଆଶ୍ଚର୍ଯ୍ୟଜନକ ଆଖି ଦିଓଟି ?

ନିଜର ସମସ୍ତ ଶକ୍ତି ସଞ୍ଚୟ କରି ସେ ଖ୍ରୀଷ୍ଟିନାର ଆଲିଙ୍ଗନରୁ ମୁକ୍ତ କଲା ନିଜକୁ । ମଦ୍ୟପ ଭଳି ଟଳିଟଳି ଯାଇ, ଝରକା ବାଡ଼କୁ ଧରି ଛିଡ଼ାହେଲା କୌଣସିମତେ । ଖ୍ରୀଷ୍ଟିନାର ହାତ ପହଞ୍ଚିଲା ତା' ପାଖରେ ।

"କ'ଣ ହେଲା ତମର ?"

ହୃଦୟର ସମସ୍ତ ଆବେଗ ଦେଇ, ଖ୍ରୀଷ୍ଟିନା ପଚାରୁଥିଲା କଥାଟା । ତା' ଆଡ଼କୁ ନଇଁ ପଡ଼ି, ତା' ହାତ ଚାପିଧରି କହିଲା :

"ମୁଁ ... ମୁଁ ପାରିବି ନାହିଁ ଖ୍ରୀଷ୍ଟିନା । ତମେ ... ତମେ ... ଏତେ ଭଲ ..." ସେ ଯାହା କହୁଥିଲା, ନିଜେ ମଧ୍ୟ ବୁଝିପାରୁ ନ ଥିଲା ।

ଅସହ୍ୟ ନୀରବତା ଭିତରେ ସେ ଛିଡ଼ା ହୋଇଗଲା ପୁଣି ଓ ଖଟିଆ ପାଖକୁ ଗଲା । ଖଟର ଧାରରେ ବସି ବୁଢ଼ାକୁ ଉଠାଇଦେଇ କହିଲା :

"ମୋତେ ଗୋଟାଏ ସିଗାରେଟ୍ ଦେବ, ଜେଜେ ?"

ନିଜ ଶାଲ୍‌ରେ ଗୁରେଇ ହୋଇଯାଇ, ଗୋଟିଏ କୋଣରେ ଝିଅଟି କାନ୍ଦିବାକୁ ଲାଗିଲା ।

ତା' ପରଦିନ, କେଇଜଣ କସାକ୍‌ଙ୍କୁ ସାଙ୍ଗରେ ଧରି ଆସି, କମାଣ୍ଡାଣ୍ଟ ଖ୍ରୀଷ୍ଟିନାକୁ ନେଇଗଲା । ବିଦାୟ ମାଗିବା ପାଇଁ ତା'ର ଆଖିଯୋଡ଼ିକ ପାଭେଲ୍‌କୁ ଖୋଜୁଥାନ୍ତି । ସେଥିରେ ଥାଏ ପ୍ରଶ୍ନବାଚୀ । ତା' ଯିବା ପରେ ପରେ, କବାଟଟା ଧଡ଼ାସ କରି ବନ୍ଦ ହେଲା । ସଙ୍ଗେ ସଙ୍ଗେ, ପାଭେଲ୍‌ର ଆତ୍ମା ଅନ୍ୟ ଦିନଠାରୁ ଅଧିକ ନିର୍ଜନ, ହତାଶାରେ ବୁଡ଼ିଗଲା ।

ଦିନଟା ସାରା ବୁଢ଼ା ପଦଟିଏ କଥା ମଧ୍ୟ ପାଭେଲ୍ ନିକଟରୁ ଆଦାୟ କରିପାରିଲା ନାହିଁ । ସନ୍ତ୍ରୀ ଓ କମାଣ୍ଡାଣ୍ଟ ଜଗୁଆଳିମାନେ ବଦଳି ହେଲେ । ସନ୍ଧ୍ୟାବେଳକୁ ଆଉ ଜଣେ ନୂତନ ବନ୍ଦୀ ସେଠିକି ଆସିଲା । ପାଭେଲ୍ ଚିହ୍ନି ପାରିଲା ତାକୁ । ସିଏ ଦୋଲିନ୍ନିକ୍, ଚିନି କଳର ଜଣେ ଜଏନର ଶ୍ରମିକ । ସବୁଠାରୁ ମୋଟା ଓ ଗେଡ଼ା ଲୋକଟା । ପିନ୍ଧିଛି ଗୋଟାଏ ଫିକା ହଳଦିଆ ଜ୍ୟାକେଟ୍, ତା'ର ମିରଜେଇ କୋଟ୍ ତଳେ । ସାବଧାନୀ ଆଖିରେ ସେ ଭଣ୍ଡାର ଘରଟା ସାରା ଦେଖିଗଲା ଆଗ ।

ପାଭେଲ୍ ତାକୁ ଭେଟିଥିଲା ଉଣେଇଶହ ସତର ମସିହା, ଫେବୃଆରୀ ମାସରେ, ତାଙ୍କ ସହରରେ ବିପ୍ଳବର ବାର୍ତ୍ତା ପହଞ୍ଚିଲାବେଳେ । ସେତେବେଳେ ହେଉଥିବା ଜନଗହଳ, ସଭା, ଶୋଭାଯାତ୍ରା ଭିତରେ ଜଣେମାତ୍ର ବଲ୍‌ଶେଭିକ୍‌କୁ କହୁଥିବାର ଶୁଣିଥିଲା ଓ ସେଇ ହେଉଛି ଦୋଲିନ୍ନିକ୍ । ରାସ୍ତାକଡ଼ର ଗୋଟାଏ ବାଡ଼ ଉପରେ ଚଢ଼ିଯାଇ ସେ ଫୌଜମାନଙ୍କ ଉଦ୍ଦେଶ୍ୟରେ ଭାଷଣ ଦେଉଥାଏ । ତା'ର ଶେଷ କଥା କେତୋଟି ମନେ ପଡ଼ିଲା ପାଭେଲ୍‌ର :

"ବଲ୍‌ଶେଭିକ୍‌ମାନଙ୍କୁ ଅନୁସରଣ କର, ଫୌଜୀ ଭାଇମାନେ । ସେମାନେ ତୁମ ସହିତ ବିଶ୍ୱାସଘାତକତା କରିବେ ନାହିଁ !"

ସେଇ ଦିନଠାରୁ ତାକୁ ଆଉ କେବେ ଦେଖି ନ ଥିଲା ପାଭେଲ୍ ।

ଆଉ ଜଣେ ବନ୍ଦୀ ବନ୍ଧୁ ପାଇ ଜେଜେ ବୁଢ଼ା ଖୁସି ହୋଇଗଲା । ଦିନଟାସାରା ମୁହଁ ପୋତି ନୀରବରେ ବସିବା ପାଇଁ ତାକୁ ନିଶ୍ଚିତ ଭାବରେ ଭାରୀ ଖରାପ ଲାଗୁଥିଲା । ତା'ରି ପାଖରେ ଖଟିଆର ଗୋଟିଏ କୋଣରେ ବସିଲା ଦୋଲିନ୍ନିକ୍ । ଗୋଟିଏ ସିଗାରେଟ୍ ଧରାଇଲା ଏବଂ ସବୁକଥା ପଚାରିଲା ସେ ।

ତା'ପରେ ଆଗନ୍ତୁକଟି କୋର୍ଚ୍ଚାଗିନ୍ ଆଡ଼କୁ ମୁହଁକରି ପଚାରିଲା ପାଭେଲ୍‌କୁ :

"ଆଉ, ତମେ ଏଠିକି କେମିତି ଆସିଲ ?"

ପାଭେଲ୍ ଯଥାସମ୍ଭବ ଖଣ୍ଡେଇ ଖଣ୍ଡେଇ କାହାଣୀଟା କହିଲା ଓ ଦୋଲିନିକ୍ ବୁଝିପାରିଲା ଯେ, ତରୁଣଟି ସାବଧାନତା ଅବଲମ୍ବନ କରିବା ପାଇଁ ଏମିତି କହୁଛି । ପାଭେଲ୍ ବିରୁଦ୍ଧରେ ଅଭିଯୋଗଟା ଜାଣିସାରିଲା ପରେ ବିସ୍ମୟରେ ତା'ର ଚତୁର ଆଖିଦି'ଟି ବିସ୍ତାରିତ ହୋଇଗଲା ଓ ଉଠିଆସି ତା' କଡ଼ରେ ବସି ସେ ପଗ୍ରରିଲା :

"ତା'ହେଲେ ତମେ କହୁଛ, ତୁମେ ଝୁଖ୍‌ରାଇକୁ ମୁକୁଳାଇ ଦେଇଛ ? ଭାରୀ ମଜାର କଥା ତ ! ମୋତେ ଜଣା ନ ଥିଲା, ସେମାନେ ତମକୁ ଧରିଛନ୍ତି ବୋଲି ।"

ଆଶ୍ଚର୍ଯ୍ୟ ହୋଇ ପାଭେଲ୍ କହୁଣୀରେ ଭରାଦେଇ ଉଠି ବସିଲା ଓ କହିଲା :

"ମୁଁ ଝୁଖ୍‌ରାଇ ଫୁକରାଇ କାହାକୁ ଜାଣେନା । ଏଠି ସେମାନେ, ଜୋଉ କାରଣ ହେଲେ ଦେଖାଇ ଦେଇପାରନ୍ତି ।"

ହସି ହସି ଦୋଲିନିକ୍ ତା'ର ଆହୁରି ପାଖକୁ ଲାଗିଆସିଲା ।

"ଠିକ୍ ଅଛି, ସେକଥା ଯେ ... ମୋ ସାଙ୍ଗରେ ସାବଧାନ ହେବାର କାରଣ ନାହିଁ । ମୁଁ ତମଠୁଁ ଅଧିକ ଜାଣେ ।"

ତା'ପରେ ବୁଢ଼ାକୁ ଯେପରି ନ ଶୁଣିବ, ସେଇଭଳି ଧୀରସ୍ୱରରେ କହିଲା :

"ମୁଁ ନିଜେ ଝୁଖ୍‌ରାଇକୁ ଛାଡ଼ିଦେଇ ଆସିଛି । ବର୍ତ୍ତମାନ ବୋଧହୁଏ ସିଏ ତା' ଲକ୍ଷ୍ୟସ୍ଥଳରେ ପହଞ୍ଚିସାରିବଣି । ଯାହା ଯାହା ଘଟିଛି, ସବୁ ମୋତେ କହିଛି ସିଏ ।"

ତା'ପରେ କ୍ଷଣଟିଏ ପାଇଁ ତୁନି ହୋଇଯାଇ, ଦୋଲିନିକ୍ ପୁଣି ଆରମ୍ଭ କଲା :

"ତମେ ଠିକ୍ ଅଛ, ଦେଖୁଛି । ପିଲା ହେଲେ କ'ଣ ହେବ ... ସେମାନେ ଯେ ସବୁ ଜାଣିପାରି ତମକୁ ଧରିପାରିଲେ, ଏଇଟା ଭାରୀ ଖରାପ ହେଲା ବୋଲି ମୁଁ କହିବି, ଭାରୀ ଖରାପ ।"

ନିଜ ଜ୍ୟାକେଟ୍‌ଟାକୁ ଖୋଲି ଚଟାଣ ଉପରେ ବିଛାଇ ତା' ଉପରେ ବସିଲା ସେ । କାନ୍ଥକୁ ପିଠି ଦେଇ ଆଉ ଗୋଟାଏ ସିଗାରେଟ୍ ବଳିବାକୁ ଆରମ୍ଭ କଲା ।

ଦୋଲିନିକ୍‌ର ଶେଷ କଥାପଦକ, ପାଭେଲ୍ ଆଗରେ ସବୁ ପରିଷ୍କାର କରିଦେଲା । କୌଣସି ସନ୍ଦେହ ନାହିଁ ତା' କଥାରେ, ଦୋଲିନିକ୍ ଠିକ୍ କହୁଛି ଓ ତା' ଛଡ଼ା ସିଏ ଝୁଖ୍‌ରାଇକୁ ଛାଡ଼ିଆସିଛି, ତା' ମାନେ ... ।

ସେହିଦିନ ସନ୍ଧ୍ୟାରେ ପାଭେଲ୍ ଜାଣିଲା ଯେ, ପେଟ୍‌ଲ୍ୟୁରା କସାକ୍‌ମାନଙ୍କ ଭିତରେ ବିକ୍ଷୋଭ କରାଇବାର ଚେଷ୍ଟା କରୁଥିବାରୁ ଦୋଲିନିକ୍ ଧରାହୋଇଛି । ଅଧିକନ୍ତୁ, ସିଏ ଆଞ୍ଚଳିକ ବୈପ୍ଳବିକ ସମିତି ପକ୍ଷରୁ ଫୌଜୀମାନଙ୍କୁ ଆତ୍ମସମର୍ପଣ କରି, ଲାଲଫୌଜରେ ଯୋଗ ଦେବା ପାଇଁ ଏକ ଆବେଦନପତ୍ର ଫୌଜମାନଙ୍କ ଭିତରେ ବାଣ୍ଟୁଥିବା ଅବସ୍ଥାରେ ଧରାପଡ଼ିଛି ।

ପାଭେଲ୍ ଆଗରେ ଆଉ ଅଧିକ କଥା ନ କହିବା ପାଇଁ ଦୋଲିନିକ୍ ସାବଧାନ ହେଉଥିଲା ।

"କିଏ ଜାଣେ ?" ମନେମନେ ଭାବୁଥିଲା ସେ, "ପିଲାଟାକୁ ମାଡ଼ ଦେଇ କଥା ଆଦାୟ କରିପାରନ୍ତି ... ଛୋଟ ପିଲାଟା ତ !"

ରାତି ଅଧରେ, ସେମାନେ ଶୋଇବାକୁ ଯିବା ଆଗରୁ, ଅଳ୍ପ କଥାରେ ନିଜର ଆଶଙ୍କା ପ୍ରକାଶ କରି ଦୋଲିନ୍ନିକ୍ କହିଲା :

"ବୁଝିଲ କୋର୍ଗିନ୍, ଆମେ ତା'ହେଲେ ବେଶ୍ ବଡ଼ ହରଡ଼ଘଣାରେ ପଡ଼ିଯାଇଛେ, କ'ଣ ଘଟୁଛି ଦେଖାଯାଉ ।"

ତା'ପରଦିନ ଆହୁରି ଜଣେ ବନ୍ଦୀ ତାଙ୍କ ସହିତ ଯୋଗଦେଲା । ସିଧାକାନିଆ, ପାତଳା ବେକବାଲା ନାପିତ ଶ୍ଲେମା ଜେଲ୍‌ହେର୍ ।

"ଫୁକ୍ସ, ବ୍ଲୁଭ୍‌ଷ୍ଟେନ୍ ଓ ଟ୍ରାଖ୍‌ଟେନ୍‌ବର୍ଗ ତାଙ୍କୁ ରୁଟି ଆଉ ଲୁଣରେ ଅଭ୍ୟର୍ଥନା ଜଣାଇବାକୁ ତିଆରି ହୋଇ ଅଛନ୍ତି ।" ଦୋଲିନ୍ନିକ୍‌କୁ ସେ କହିଲା ଉଦ୍ଭଟ ଅଙ୍ଗଭଙ୍ଗୀ କରି ।

"ମୁଁ କହିଲି ଯେ ସେମାନେ ଯଦି ତା' କରିବେ, କରନ୍ତୁ । ହେଲେ ବାକୀ ଯେତେକ ଇହୁଦୀ ଏଠି ଅଛନ୍ତି, ସେମାନେ କ'ଣ ତାଙ୍କୁ ଏ କାମରେ ସମର୍ଥନ କରିବେ ? କଦାପି ନୁହଁ ! ମୋଠୁଁ ତମେ ଏକଥା ଲେଖି ନେଇପାର । ଅବଶ୍ୟ ସେମାନେ ତାଙ୍କ ନିଜ ମାଛ ନିଜେ ଭାଜି ପାରନ୍ତି । ଫୁକ୍‌ସର ଦୋକାନଟାଏ ଅଛି, ଟ୍ରାଖ୍‌ଟେନ୍‌ବର୍ଗର ଅଟାକଳ ଅଛି, ହେଲେ ମୋର ? ମୋର କ'ଣ ଅଛି ? ଆଉ କ'ଣ ଅଛି, ବାକି ଯେତେ ବୁଭୁକ୍ଷୁ, ଭୋକିଲା ଦଳ ଅଛନ୍ତି ତାଙ୍କର ? କିଛି ନାହିଁ, ଦେଉଳିଆ ସମସ୍ତେ ! ସେଇଆ ତ ଆମେ ସଭିଏଁ । ମୋର ବାବୁ, ଭାରୀ ଖରାପ ମୁହଁ ... ଆଜି ଦୋକାନରେ ଖିଅର କରୁଥିଲି ଗୋଟାଏ ଅଫିସରକୁ । ଏବେ ଆସିଛି ସେଇଟା । ମୁଁ କହିଲି କି, ଆତାମାନ୍ ପେଟ୍‌ଲ୍ୟୁରା ଏ ଇହୁଦୀମାରଣ କଥା କିଛି କ'ଣ ଜାଣିଛି ? ସିଏ ଆମ ପ୍ରତିନିଧିଦଳକୁ ଦେଖା ଦବତ ? ହେ ଭଗବାନ ! କେତେ ଥର ମୋର ଏ ବଦ୍‌ତୁଣ୍ଡ ପାଇଁ ଧୋକା ଖାଇଲିଣି, ତଥାପି କ'ଣ ଛାଡ଼ିପାରୁଛି ହେଲେ ? ସେ ଅଫିସରଟା କ'ଣ କଲା ଜାଣିଛ ? ତାକୁ ବାଗେଇ ସାଗେଇ ଖିଅର କରିସାରି, ମୁହଁରେ ପାଉଡର ବୋଳିବାକି ସାରିଲା ପରେ ଉଠି ଠିଆହେଲା । ପଇସା ନ ଦେଇ କହିଲା, କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ଆନ୍ଦୋଳନ କରୁଛି ବୋଲି ମୋତେ ଗିରଫ କଲା ।"

ଜେଲ୍‌ହେର୍ ହାତ ମୁଠାମୁଠା କରି ନିଜ ଛାତିରେ ପିଟି କହିଲା ପୁଣି :

"କିଓ ... କି ଆନ୍ଦୋଳନ କରୁଛି ମୁଁ ? କ'ଣ ଭଲା କହିଲି ମୁଁ ? ମୁଁ ତ ଖାଲି କଥାଟା ପଗ୍ଭରିଲି ଲୋକଟାକୁ । ସେତିକିରେ ମୋତେ ଆଣି ତାଲାବନ୍ଦ ?"

ଉତ୍ତେଜନାବଶତଃ ଜେଲ୍‌ହେର୍, ଦୋଲିନ୍ନିକ୍‌ର କୁର୍ତ୍ତାର ଗୋଟାଏ ବୋତାମ ଭିଡ଼ି ଛିଡ଼ାଇ ପକାଇଲା ଓ ତା' ବାହା ମୋଡ଼ି ପକାଇଲା ।

ତା' ସତ୍ତ୍ୱେ ମଧ୍ୟ ଦୋଲିନ୍ନିକ୍ ଜେଲ୍‌ହେର୍‌ର କଥା ଶୁଣି ହସିଲା ଓ ଜେଲ୍‌ହେର୍ ତା' କଥା ସାରିଲା ପରେ ଗମ୍ଭୀର ହୋଇଯାଇ କହିଲା :

"ହଁ, ଶ୍ଲେମା, ତମ ଭଳି ଚରିତ୍ରର ଲୋକ ଏମିତି ବୋକାମି କରିବା ତ ଉଚିତ

ନ ଥିଲା । ଭାରୀ ଖରାପ ସମୟରେ ତମେ ତମ ତୁଣ୍ଡ ଖୋଲିଦେଲ ! ମୁଁ ତ ତମକୁ ଏଠିକି ଏମିତି ଆସିବା ପାଇଁ ଉପଦେଶ ଦେଇ ନ ଥାନ୍ତି ।"

ବୁଝିପାରିଲା ଭଳି ମୁଣ୍ଡ ଟୁଙ୍ଗାରିଲା ଜେଲ୍‌ଫେର୍ ଓ ନିଜ ହାତ ଉପରକୁ ଟେକି ହତାଶାର ଭଙ୍ଗୀ ପ୍ରଦର୍ଶନ କଲା । ଠିକ୍ ସେତିକିବେଳେ କବାଟ ଖୋଲିଗଲା ଏବଂ ସେ 'ସାମୋଗୋନ୍' ସ୍ତ୍ରୀଲୋକଟିକୁ ପୁଣି ଭିତରକୁ ଠେଲିଦେଲା ଜଣେ କିଏ । ତାକୁ ଆଣିଥିବା କସାକ୍‌କୁ ଅଶ୍ରାବ୍ୟ ଗାଳି ଦେଇ ଦେଇ, ରହି ରହି ଭିତରକୁ ଆସିଲା ସେ ।

"ତୋତେ ଆଉ ତୋ କମାଣ୍ଡାଣ୍ଟକୁ କିଏ ରଡ଼ ନିଆ ରେ ନେଇ ପୋଡ଼ିମାରୁ ନାହିଁରେ ରଇକଳା ! ସେକିସାକି ହୋଇ ସେଇଟା ଫୁଲି ଯାଇ ମରୁ ନାହିଁ !"

ପ୍ରହରୀ ଜଣକ ବାହାରପଟୁ କବାଟ କିଳିଦେଲା ଓ ସେମାନେ ଶୁଣିଲେ, ସେ ବାହାରୁ ତାହା ବନ୍ଦ କରିଦେଲା ।

ବୁଢ଼ୀଟି ଆସି ଖଟିଆର ଗୋଟିଏ କୋଣରେ ବସିଯିବାରୁ ବୁଢ଼ା ତାକୁ ଥଟାରେ କହିଲା:

"ତା' ହେଲେ, ତୁ ବି ଆମ ସାଙ୍ଗକୁ ପୁଣି ଫେରିଆସିଲୁ ଲୋ କଳିହୁଡ଼ୀ ? ହଉ, ବସିଯା ଏଥର ଟିକେ, ନିଃଶ୍ୱାସ ମାର, ବହୁତ ଧଇଁସଇଁ ହୋଇଯାଇଛୁ ।"

'ସାମୋଗୋନ୍' ସ୍ତ୍ରୀଲୋକଟି ରାଗିଯାଇ ଅନେଇଲା ବୃଦ୍ଧଙ୍କୁ ଓ ନିଜର ବୁଜୁଳାଟା ଉଠେଇନେଇ, ସେଠୁଁ ଉଠିଆସି ଚଟାଣ ଉପରେ ଦୋଲିନିକ୍ କଡ଼ରେ ବସିଲା ।

ଜଣାପଡ଼ିଲା ଯେ, ସେମାନଙ୍କ ପାଇଁ କେଇ ବୋତଲ 'ସାମୋଗୋନ୍' ମଦ ଘରଠୁଁ ଆଣିଦେବା ପାଇଁ ତାକୁ କିଛି ସମୟ ପାଇଁ ଛାଡ଼ି ଦେଇଥିଲେ ।

ହଠାତ୍ ବାହାରେ, ଦଉଡ଼ାଧାପଡ଼ାର ଶବ୍ଦ ଶୁଭିଲା ପାଖର ପ୍ରହରୀମାନେ ରହୁଥିବା ଘରୁ । ଜଣେ କିଏ ଚିତ୍କାର କରି ଆଦେଶ ଦେଉଥାଏ । ବନ୍ଦୀମାନେ କ'ଣ ହେଉଛି ଶୁଣିବା ପାଇଁ ନିଜ ନିଜ ଭିତରେ କଥାବାର୍ତ୍ତା ବନ୍ଦ କରି ଉତ୍‌କଣ୍ଠ ହୋଇ ରହିଲେ ।

* * *

ପ୍ରାଚୀନ ଗମ୍ବୁଜଥିବା ଗିର୍ଜା ଆଗର ଛକ । ଅଦ୍ଭୁତ ଅଦ୍ଭୁତ ଘଟଣାସବୁ ସେଠାରେ ଘଟୁଥାଏ । ପଡ଼ିଆଟାର ତିନି କଡ଼ରେ, ଆୟତକ୍ଷେତ୍ର ଆକାରରେ ଫୌଜମାନେ ଘେରି ଛିଡ଼ା ହୋଇଥାଆନ୍ତି । ପୂରା ପଦାତିକ ବାହିନୀର ଲୋକେ, ସମ୍ପୂର୍ଣ୍ଣ ଯୁଦ୍ଧ ସରଞ୍ଜାମର କିଟ୍‌ବ୍ୟାଗ କାନ୍ଧରେ ପକାଇ ଛିଡ଼ା ହୋଇଥାନ୍ତି ।

ଗିର୍ଜାର ପ୍ରବେଶପଥକୁ ସାମନାକରି, ସବାଆଗରେ ତିନୋଟି ରେଜିମେଣ୍ଟ, ପଦାତିକ ବାହିନୀର ସୈନ୍ୟ ବର୍ଗାକାରରେ ଛିଡ଼ା ହୋଇଥାନ୍ତି ଚେସ୍ ଖେଳର ବୋର୍ଡ ଭଳି । ତାଙ୍କର ଚିହ୍ନସବୁ ସ୍କୁଲର ବାଡ଼ ଆଡ଼କୁ ଥାଏ ।

ଏହି ପାଉଁଶିଆ ଓ ମଇଳା ଅସନା ପେଟ୍ଲ୍ୟୁରା ସୈନ୍ୟମାନେ ଲାଉଭଳି ବଡ଼ ବଡ଼ ଓ ମଝିରୁ କଟା ଅସୁନ୍ଦର ରୁଷୀୟ ଶିରସ୍ତ୍ରାଣ ଲଗାଇ, ବନ୍ଧୁକ ଆଉଜାଇ ଛିଡ଼ା ହୋଇଥାଆନ୍ତି । ଏମାନେ ପୁଣି 'ନିର୍ଦ୍ଦେଶାଳୟ'ର ସବୁଠାରୁ ଭଲ ସୈନ୍ୟ ଡିଭିଜନ ।

ପାଖରେ ଠିଆ ହୋଇଥାଆନ୍ତି, ପ୍ରଧାନତଃ କୁଲକ୍‌ମାନଙ୍କ ଦ୍ୱାରା ଗଠିତ ବାହିନୀ, ଯେଉଁମାନେ କି ସଚେତନଭାବରେ ବୁଝିଶୁଝି ସୋଭିଏତ୍‌ମାନଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥାଆନ୍ତି। ସେମାନଙ୍କର ବେଶପୋଷାକ ଭଲ ଓ ପରିଷ୍କାର ପରିଚ୍ଛନ୍ନ, ମୁଖ୍ୟତଃ ପୁରୁଣା ଜାର୍ ବାହିନୀର ଭଣ୍ଡାରରୁ ଆଣିଥିବା ପୋଷାକ ପିନ୍ଧିଥାନ୍ତି ଏମାନେ। ଏହି ଡିଭିଜନଟି ଏବେ ଏଠିକି ବଦଳି ହୋଇ ଆସିଛନ୍ତି, ଏଠାର ପ୍ରତିରକ୍ଷା ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ରେଳ ଜଙ୍କ୍‌ସନ୍‌କୁ ରକ୍ଷା କରିବା ପାଇଁ।

କାରଣ ଏ ଶେପେଟୋଭ୍‌କା ରେଳ ଜଙ୍କ୍‌ସନ୍‌ରେ ପାଞ୍ଚଟି ଦିଗରୁ ପାଞ୍ଚଟି ରେଳଲାଇନ୍ ଆସି ମିଶିଛି ଓ ଏଇଟିକୁ ହରାଇବା ଅର୍ଥ, ପେଟ୍‌ଲ୍ୟୁରାମାନଙ୍କ ପକ୍ଷରେ ସବୁକିଛି ହରାଇବା। ପେଟ୍‌ଲ୍ୟୁରା 'ନିର୍ଦ୍ଦେଶାଳୟ'ର ହାତରେ ଆଉ ଖୁବ୍ ଅଳ୍ପ ଅଞ୍ଚଳ ବାକି ଅଛି। ଏବେ ଛୋଟ ସହର ଭିନ୍‌ନିତ୍‌ସାରେ ସେମାନେ ପେଟ୍‌ଲ୍ୟୁରା ରାଜଧାନୀ କରିଛନ୍ତି।

ମୁଖ୍ୟ ଆତାମାନ୍ ସ୍ଥିର କରିଛନ୍ତି, ନିଜେ ଆସି ସୈନ୍ୟବାହିନୀ ପରିଦର୍ଶନ କରିବା ପାଇଁ। ତାଙ୍କ ଆଗମନ ପାଇଁ ସବୁ ଆୟୋଜନ ଠିକ୍‌ଠାକ୍ ହୋଇଯାଇଛି।

ପଡ଼ିଆର ସବା ଶେଷମୁଣ୍ଡ କୋଣରେ ଛିଡ଼ା ହୋଇଥିଲେ ଦଳେ ନୂଆ ଯୋଗଦେଇଥିବା ସୈନ୍ୟ। ସେମାନଙ୍କୁ ବାହାରକୁ ଦେଖାଯିବାର ସମ୍ଭାବନା ଖୁବ୍ କମ୍ ଥିଲା। ବିଭିନ୍ନ ଚେହେରାର ବିଭିନ୍ନ ଉଚ୍ଚତାର ସାଧା ପୋଷାକ ପିନ୍ଧା ଖାଲି ପାଦରେ ଥିବା ତରୁଣଗୁଡ଼ିଏ। ଅଧରାତିରେ ନିଜ ନିଜର ଘରୁ ଉଠାଇ ଅଣାହୋଇଥିବା କୃଷକ ଯୁବକସବୁ ଏମାନେ। କାହାକୁ ଅବା ରାସ୍ତା ଉପରୁ ଟେକି ଅଣାଯାଇଛି। ସେମାନଙ୍କ ଭିତରୁ ଜଣକର ବି ଯୁଦ୍ଧ କୌଣସି ଯୁଦ୍ଧ କରିବା ପାଇଁ ଏତେ ଟିକେ ଇଚ୍ଛା ନାହିଁ।

"ଆଉ କୋଉଠୁ ଦଳେ ନିର୍ବୋଧ ଧରି ଆଣନ୍ତୁ ସେମାନେ ପଛେ, ଆମେ ପାରିବୁ ନାହିଁ", ସେମାନେ କହୁଥିଲେ।

ପେଟ୍‌ଲ୍ୟୁରା ଅଫିସରମାନେ କେବଳ ଏତିକି କରିପାରିଛନ୍ତି ଯେ, ତାଙ୍କୁ ସବୁ ପ୍ରହରୀଙ୍କ ଦ୍ୱାରା ପରିବେଷ୍ଟିତ କରି ସହରକୁ ନେଇଆସି ପାରିଛନ୍ତି। ଆଉ ତାଙ୍କୁ ଦଳ ଦଳ କରି ବିଭକ୍ତ କରିଦେଇ ପାରିଛନ୍ତି। ଏବେ ଅସ୍ତ୍ରଶସ୍ତ୍ର ଯୋଗାଇ ଦେଇଛନ୍ତି।

ତା' ପରଦିନ ସକାଳୁ ଦେଖାଯାଏ, ଜଣେ ଜଣେ କିଏ ନୂଆ ଯୋଗଦାନ କରି ପଳେଇ ଯାଇଥାଏ ଏବଂ ଏମିତି ଯେମିତି ଦିନ ଗତ ହେଉଥାଏ, ସେମାନଙ୍କର ସଂଖ୍ୟା ସେତିକି ସେତିକି କମିବାକୁ ଲାଗୁଥାଏ।

ସେମାନଙ୍କୁ ବୁଟ୍‌ଜୋତା ଯୋଗାଇଦେବା ନିର୍ବୋଧତା ହୋଇ ଥାନ୍ତା, କାରଣ ଜୋତା ସଂଖ୍ୟା ସେତେବେଳେ କମି ଆସୁଥିଲା। ତେଣୁ ପ୍ରତ୍ୟେକଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା, ବାଧ୍ୟତାମୂଳକ ଭାବରେ ନିଜ ନିଜର ଜୋତା ଦେବା ପାଇଁ। ଏହି ନିର୍ଦ୍ଦେଶ ଫଳରେ ତାରରେ ବା ସୂତାରେ ଗୁଡ଼ାହୋଇଥିବା ଛିଣ୍ଡାଜୋତାର ଆଶ୍ଚର୍ଯ୍ୟଜନକ ଗଦାଟାଏ ହୋଇଥିଲା ସେଠାରେ।

ସେମାନଙ୍କୁ ଖାଲିପାଦରେ ମାର୍ଚ୍ଚିଂକରି ପ୍ୟାରେଡ୍‌କୁ ନିଆହୋଇଥିଲା।

ପଦାତିକ ବାହିନୀର ପଛପଟେ ଛିଡ଼ା ହୋଇଥିଲେ ଗୋଲୁବ୍‌ଙ୍କର ଅଶ୍ୱାରୋହୀ ବାହିନୀ ।

ପ୍ୟାରେଡ୍ ଦେଖିବାକୁ ଆସିଥିବା ଅଗଣନ ସହରବାସୀଙ୍କର ଗହଳିକୁ ଅଶ୍ୱାରୋହୀମାନେ ଜଗି ରହିଥାଆନ୍ତି, ପଛକୁ ହଟାଉ ଥାଆନ୍ତି ।

ଯାହା ହେଉ, ମୁଖ୍ୟ ଆତାମାନ୍ ନିଜେ ଉପସ୍ଥିତ ରହିବେ ! ଏପରି ଘଟଣା ସହରରେ ବିରଳ ଓ ତା'ପରେ ପରେ ହେବ ବୋଲି ପ୍ରତିଶ୍ରୁତି ଦିଆଯାଇଥିବା ମାଗଣା ଆମୋଦପ୍ରମୋଦ କାର୍ଯ୍ୟକ୍ରମକୁ ହରାଇବାକୁ କେହି ବି ଜଣେ ନାରାଜ ।

ଗିର୍ଜା ପାହାଚ ଉପରେ କର୍ଣ୍ଣେଲ ଓ କପ୍ତାନ, ଧର୍ମଯାଜକଙ୍କର ଦି'ଝିଅ, ଦଳେ ୟୁକ୍ରେନୀୟ ସ୍କୁଲ ଶିକ୍ଷକ, ଦଳେ 'ମୁଣ୍ଡ' କସାକ୍, ଈଷତ୍ କୁଜା ମେୟର । ଅଳ୍ପ କଥାରେ ସହରର ବିଶିଷ୍ଟ ନାମଜାଦା ଲୋକେ ଏବଂ ସେମାନଙ୍କ ମଧ୍ୟରେ କକେସୀୟ ଚେର୍କେସ୍କା ଟୋପି ପିନ୍ଧିଥିବା ପଦାତିକ ବାହିନୀର ଇନ୍‌ସପେକ୍ଟର ଜେନେରାଲ ଛିଡ଼ା ହୋଇଥାନ୍ତି ଗିର୍ଜା ପାହାଚରେ । ଏହି ଇନ୍‌ସପେକ୍ଟର ଜେନେରାଲ ହିଁ ପ୍ୟାରେଡ୍‌ରେ କମାଣ୍ଡ ଦେବାର କଥା ।

ଗିର୍ଜା ଭିତରେ ଧର୍ମଯାଜକ ଭାସିଲି ନିଜର ଈଷ୍ଟର ଉପାସନା କରିବାକୁ ଗଲାବେଳର ପୋଷାକରେ ନିଜକୁ ବିଭୂଷିତ କରୁଥାଆନ୍ତି ।

ପେଟ୍‌ଲ୍ୟୁରାଙ୍କୁ ଅତି ଜାକଜମକ ଭିତରେ ସ୍ୱାଗତ ସଂବର୍ଦ୍ଧନା ଜଣାଯିବ । ନୂଆ ଆମଦାନୀ ହୋଇଥିବା ସୈନ୍ୟମାନଙ୍କୁ ଆନୁଗତ୍ୟର ଶପଥ ଦିଆଯିବ । ଏଣୁ ଏଇଥି ପାଇଁ ଏକ ହଳଦିଆ ଓ ନୀଳ ରଙ୍ଗର ପତାକା ମଧ୍ୟ ସେଠାକୁ ଅଣାଯାଇଛି ।

ପେଟ୍‌ଲ୍ୟୁରାଙ୍କୁ ପାଛୋଟି ଆଣିବା ପାଇଁ ଏକ ପ୍ରାଚୀନ ଭଗ୍ନପ୍ରାୟ 'ଫୋର୍ଡ' କାର୍‌ରେ ଡିଭିଜନ କମାଣ୍ଡର ଷ୍ଟେସନ୍‌କୁ ଗଲେ ।

ସେ ଚାଲିଗଲା ପରେ ପଦାତିକ ବାହିନୀର ଇନ୍‌ସପେକ୍ଟର ଜେନେରାଲ କର୍ଣ୍ଣେଲ ଚେର୍‌ନ୍ୟାକ୍‌ଙ୍କୁ ଡାକିଲେ । କର୍ଣ୍ଣେଲ ଚେର୍‌ନ୍ୟାକ୍ ଗୋଟିଏ ଡେଙ୍ଗା, ସୁଗଠନ ଅଫିସର । ନାକତଳେ ବହଳିଆ ନିଶଦିପଟ ତାଙ୍କର ।

"ତମ ସାଙ୍ଗରେ ଜଣକୁ କାହାକୁ ନେଇ ଦେଖିଆସ, କମାଣ୍ଡାଣ୍ଟ ଅଫିସ୍ ଓ ପଶ୍ଚାତ୍ ବାହିନୀସବୁ ଠିକ୍‌ଠାକ୍ ଅଛନ୍ତି କି ନାହିଁ । ସେଠି ଯଦି କୌଣସି ବନ୍ଦୀଙ୍କୁ ଦେଖ, ତାଙ୍କୁ ଛାଡ଼ି ଦେଇ ସାଫ୍ କରିଦିଅ ସବୁ !"

ଚେର୍‌ନ୍ୟାକ୍ ଗୋଡ଼ରେ ଗୋଡ଼ ବଜେଇ, ସାଲ୍ୟୁଟ୍ ଠୁକି ଆଖି ଆଗରେ ଯେଉଁ କସାକ୍ କପ୍ତାନକୁ ଦେଖିଲେ, ତାଙ୍କୁ ସାଙ୍ଗରେ ଧରି ଘୋଡ଼ା ଝପଟାଇ ବାହାରିଗଲେ ।

ବୁଲିପଡ଼ି ଅତି ମର୍ଯ୍ୟାଦା ସହକାରେ ଇନ୍‌ସପେକ୍ଟର ଜେନେରାଲ ପାଦ୍ରୀଙ୍କର ଝିଅଙ୍କୁ ପଚାରିଲେ :

"ଭୋଜି କଥା କ'ଣ ? ସବୁ ଠିକ୍‌ଠାକ୍ ଅଛି ତ ?"

"ନିଶ୍ଚୟ, କମାଣ୍ଡାଣ୍ଟ ଲାଗିପଡ଼ିଛି ତା' ପାଲ୍ଲପର୍ଯ୍ୟନ୍ତ ।" ସୁନ୍ଦର ଚେହେରାର ଇନ୍‌ସପେକ୍ଟରକୁ ନିରିଖେଇ ଚାହିଁ ଉତ୍ତର ଦେଲା ଧର୍ମଯାଜକଙ୍କ ଝିଅ ।

ହଠାତ୍ ଜନତା ଭିତରେ ଏକ ଗୁଞ୍ଜରଣ ଖେଳିଗଲା । ଗୋଟାଏ ଘୋଡ଼ସବାର ଉନ୍ମାଦ ଭଳି ଘୋଡ଼ା ଛୁଟାଇ, ଘୋଡ଼ା ବେକ ଉପରେ ଏକାବେଳକେ ନଇଁ ପଡ଼ି ରାସ୍ତା ଉପରେ ଆସୁଛି । ହାତ ହଲାଇ ହଲାଇ ସେ ଚିତ୍କାର କରି କହୁଛି :

"ସେମାନେ ଆସିଗଲେ!"

"ଧାଡ଼ିବାନ୍ଧି ଛିଡ଼ାହୁଅ !" ଚିତ୍କାର କରିଉଠିଲେ ଇନ୍‌ସପେକ୍ଟର ।

ଅଫିସରମାନେ ନିଜ ନିଜର ସ୍ଥାନକୁ ଦୌଡ଼ିଗଲେ ।

'ଫୋର୍ଡ' ଗାଡ଼ିଖଣ୍ଡକ ବ୍ରେକ୍ କଷି ଛିଡ଼ା ହୋଇଗଲା ମାତ୍ରେ ଗିର୍ଜାର ବ୍ୟାଣ୍ଡରେ ବାଜିଉଠିଲା 'ୟୁକ୍ରାଇନ୍‌ର ଜୟଗାନ' ସ୍ୱରଟା ।

ଡିଭିଜନ କମାଣ୍ଡରଙ୍କ ପରେ ପରେ ବହୁଶ୍ରମ ଆଉ ଚେଷ୍ଟାରେ ମୁଖ୍ୟ ଆଟାମାନ୍ ନିଜକୁ କାର୍ ଭିତରୁ ବାହାର କଲା । ପେଟ୍‌ଲ୍ୟୁରା ମଧ୍ୟମ ଉଚ୍ଚତାର । ମୁଣ୍ଡଟା ବର୍ଗାକାର । ଷଣ୍ଢଭଳି ମୋଟା ବେକଟା ଉପରେ ବଡ଼ ମୁଣ୍ଡଟା ସତେ କି ବେଶ୍ ଟାଣରେ ବସାଯାଇଛି । ନରମ ପଶମର ନୀଳ ଜ୍ୟାକେଟ୍‌ଟାଏ ପିନ୍ଧିଥାଏ ସେ । ସେଇଟା ହଳଦିଆ କମରପଟିରେ ଟାଣକରି ଭିଡ଼ା ହୋଇଥାଏ ଓ ସେଥିରୁ ଝୁଲୁଥାଏ ଛୋଟ ବାଦାମୀ ରଙ୍ଗର ପିସ୍ତଲ୍ ଖୋଳ । ମୁଣ୍ଡରେ ଖାକି ଫୌଜ ଟୋପି ପିନ୍ଧିଥିଲା ସେ ଓ ସେଥିରେ ଏନାମେଲକରା ପଦକ ଲାଗିଥାଏ ।

ସିମୋନ୍ ପେଟ୍‌ଲ୍ୟୁରାର ଚେହେରାର କୌଣସି ଅଂଶରେ ଯୁଦ୍ଧ କଲା ଭଳି ଯୋଦ୍ଧାର ବୈଶିଷ୍ଟ୍ୟ ଆଦୌ ନ ଥାଏ । କହିବାକୁ ଗଲେ, ସେ ଜଣେ ସୈନ୍ୟବିଭାଗର ଲୋକ ଭଳି ଆଦୌ ଦିଶୁ ନ ଥାଏ ।

ମୁହଁରେ ବିରକ୍ତିର ଭ୍ରୁକୁଟି ଦେଖାଇ ସେ ଇନ୍‌ସପେକ୍ଟରଙ୍କର ବିବରଣୀ ଶୁଣିଲା । ତା'ପରେ ମେୟର ତାକୁ ଅଭିବାଦନ ଓ ସ୍ୱାଗତ ସଂବର୍ଦ୍ଧନା ଜଣାଇ ଭାଷଣ ଦେଲା ।

ମେୟରଙ୍କ ମୁଣ୍ଡଉପର ବାଟେ ସମ୍ମିଳିତ ହୋଇଥିବା ସେନାବାହିନୀ ଆଡ଼କୁ ଅନାଇ ଅନାଇ, ଅନ୍ୟମନସ୍କ ଭାବରେ ତା'ର ଭାଷଣ ଶୁଣିଲା ପେଟ୍‌ଲ୍ୟୁରା ।

"ଏଥର ଆରମ୍ଭ କରିବା", ଇନ୍‌ସପେକ୍ଟର ଆଡ଼କୁ ମୁଣ୍ଡ ହଲାଇ ସଙ୍କେତ ଦେଲା ସେ ।

ପତାକା ନିକଟରେ କରା ହୋଇଥିବା ଛୋଟ ମଞ୍ଚ ଉପରକୁ ଯାଇ ସେ ସୈନ୍ୟମାନଙ୍କ ଉଦ୍ଦେଶ୍ୟରେ ଏକ ଦଶମିନିଟିଆ ବକ୍ତୃତା ଦେଲା ।

ବକ୍ତୃତାଟି ଆଦୌ ଭଲ ହୋଇ ନ ଥିଲା । ନିଶ୍ଚିତ ଭାବରେ, ଦୂର ଯାତ୍ରା ଫଳରେ କ୍ଲାନ୍ତ ହୋଇ ପେଟ୍‌ଲ୍ୟୁରା ପୂରାପୂରି ଉତ୍ସାହହୀନ ଭାବରେ ଭାଷଣ ଦେଇଥିଲା । ବାହିନୀରୁ "ଜୟ ଜୟ" ଧ୍ୱନି ଭିତରେ ସେ ତା'ର ଭାଷଣ ସାଙ୍ଗ କରିଥିଲା ଓ ତା'ପରେ ନିଜର ଘର୍ମାକ୍ତ କପାଳରୁ ରୁମାଲରେ ଝାଳ ପୋଛି ପୋଛି ମଞ୍ଚ ଉପରୁ ଓହ୍ଲାଇଆସିଲା । ତା' ପରେ, ଇନ୍‌ସପେକ୍ଟର ଜେନେରାଲ ଓ ଡିଭିଜନ କମାଣ୍ଡର – ଉଭୟଙ୍କ ସହିତ ସୈନ୍ୟବାହିନୀର ପ୍ୟାରେଡ୍ ପରିଦର୍ଶନ କରିଥିଲା ।

ନୂଆକରି ସୈନ୍ୟବାହିନୀରେ ଯୋଗଦେଇଥିବା ବିଭାଗଟିର ସୈନ୍ୟମାନଙ୍କ ଭିତରଦେଇ

ଗଲା ବେଳେ, ବିରକ୍ତିରେ ତା'ର ଆଖି କୁଞ୍ଚିତ ହୋଇଆସିଲା ଏବଂ କ୍ରୋଧରେ ଓଠ କାମୁଡ଼ିଲା ସେ ।

ପରିଦର୍ଶନର ଶେଷଆଡ଼କୁ, ନୂଆ ସୈନ୍ୟମାନେ ଅସମ ଧାଡ଼ିରେ ପତାକା ଆଡ଼କୁ ମାର୍ଚ୍ଚିଂ କରି ଗଲାବେଳେ, ଫାଦର ଭାସିଲି ହାତରେ ବାଇବେଲ୍ ଧରି ଛିଡ଼ା ହୋଇଥାନ୍ତି ସେଠି । ସୈନ୍ୟମାନେ ପ୍ରଥମେ ବାଇବେଲ୍‌କୁ ଓ ପରେ ପତାକାଦଣ୍ଡକୁ ଚୁମ୍ବନ କଲାବେଳକୁ, ହଠାତ୍ ଏକ ଅଭାବିତ ଅଭୂତପୂର୍ବ ଘଟଣା ଘଟିଗଲା ।

ଏକ ପ୍ରତିନିଧି ଦଳ କୌଣସି ଅଜ୍ଞାତ ଉପାୟ ଅବଲମ୍ବନ କରି, ପଡ଼ିଆ ଭିତରକୁ ପଶିଆସି ପେଟ୍ଲ୍ୟୁରାଙ୍କ ନିକଟରେ ପହଞ୍ଚିଲେ । ପ୍ରତିନିଧି ଦଳର ନେତୃତ୍ୱ ନେଉଥାନ୍ତି ଧନୀ କାଠ ବ୍ୟବସାୟୀ ବ୍ରୁଭ୍‌ଷ୍ଟେନ୍ । ସେ ଧରିଥାଆନ୍ତି ରୁଟି ଓ ଲୁଣର ଅର୍ଘ୍ୟ । ତାଙ୍କୁ ଅନୁସରଣ କରୁଥାଆନ୍ତି ଫୁକ୍‌ସ ଓ ଆଉ ତିନିଜଣ ଜଣାଶୁଣା ବ୍ୟବସାୟୀ ।

ଆନୁଗତ୍ୟସୂଚକ ଭଙ୍ଗୀରେ ମୁଣ୍ଡ ନୁଆଁଇ ବ୍ରୁଭ୍‌ଷ୍ଟେନ୍ ପେଟ୍ଲ୍ୟୁରାଙ୍କ ଆଡ଼କୁ ଟ୍ରେଟି ବଢ଼ାଇଦେଲା । ନିକଟରେ ଛିଡ଼ାହୋଇଥିବା ଜଣେ ଅଫିସର ସେଇଟିକୁ ଗ୍ରହଣ କରିନେଲା ।

"ରାଜ୍ୟର ପ୍ରଧାନ ଭାବରେ, ଇହୁଦୀ ଅଧିବାସୀମାନେ ଆପଣଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଓ ସମ୍ମାନ ଜଣାଇବାକୁ ଚାହାନ୍ତି । ଦୟାକରି ଏହି ଅଭିନନ୍ଦନପତ୍ରଟି ଗ୍ରହଣ କରନ୍ତୁ ।"

"ଆଚ୍ଛା", ପେଟ୍ଲ୍ୟୁରା ଗୁଣୁ ଗୁଣୁ କରି କହିଲା ଓ ଶୀଘ୍ର ଶୀଘ୍ର ଆଖି ବୁଲାଇଗଲା କାଗଜ ଖଣ୍ଡକ ଉପରେ ।

ଫୁକ୍‌ସ ଆଗେଇଆସିଲା ।

"ଅତ୍ୟନ୍ତ ନମ୍ରତାର ସହିତ ଆମର ବ୍ୟବସାୟ ସବୁ ଖୋଲିବା ପାଇଁ ଆମ୍ଭେମାନେ ଆପଣଙ୍କର ଅନୁମତି ମାଗିବା ସଙ୍ଗେ ସଙ୍ଗେ ଇହୁଦୀ ମାରଣରୁ ଆମକୁ ରକ୍ଷା କରିବା ପାଇଁ ଆପଣଙ୍କର ସାହାଯ୍ୟ ଚାହୁଁଛୁ", ଶେଷ କଥାପଦକ କହୁ କହୁ ଫୁକ୍‌ସ ହଡ଼ବଡ଼େଇ, ଥଙ୍ଗ ଥଙ୍ଗ ହୋଇଗଲା ।

କ୍ରୋଧୋନ୍ମତ୍ତ ପେଟ୍ଲ୍ୟୁରା ମୁହଁ ଲାଲ ପଡ଼ିଗଲା ।

"ମନେ ରଖ, ମୋ ସେନାବାହିନୀ କଦାପି ଇହୁଦୀ ମାରଣ କାମ କରନ୍ତି ନାହିଁ ।"

ହତାଶା ଭଙ୍ଗୀରେ ଫୁକ୍‌ସ ଦୁଇହାତ ପ୍ରସାରିତ କଲା ।

ପେଟ୍ଲ୍ୟୁରା ନିଜର କାନ୍ଧ ହଲାଇଲା । ଅସମୟରେ ପ୍ରତିନିଧି ଦଳର ଏ ଧରଣର ଆବେଦନ ଜଣାଇବା କାମ ତାକୁ ଉତ୍ୟକ୍ତ କଲା । ତା' ପଛରେ ଛିଡ଼ା ହୋଇ ନିଜର କଳା କଳା ନିଶକୁ ଚୋବାଇ ପକାଉଥିବା ଗୋଲୁବ ଆଡ଼କୁ ବୁଲିପଡ଼ି ସେ କହିଲା :

"ତମ କସାକ୍‌ମାନଙ୍କ ବିରୁଦ୍ଧରେ ଏ ଅଭିଯୋଗ, ପ୍ୟାନ୍ କର୍ଣ୍ଣେଲ ! ଏ ବିଷୟରେ ଅନୁସନ୍ଧାନ କର ଓ ଆବଶ୍ୟକ ହେଲେ କାର୍ଯ୍ୟାନୁଷ୍ଠାନ କର !"

ତା'ପରେ ଇନ୍‌ସପେକ୍ଟରକୁ ସମ୍ବୋଧନ କରି ଶୁଖିଲା ଗଳାରେ କହିଲା :

"ତମେ ପ୍ୟାରେଡ୍ ଆରମ୍ଭ କରିପାର !"

ହତଭାଗ୍ୟ ପ୍ରତିନିଧି ଦଳଟି ଗୋଲୁବ୍‌ର ବିପକ୍ଷରେ ଯିବେ ବୋଲି ଭାବିପାରି ନ ଥିଲେ ଏବଂ ତେଣୁ ସେମାନେ ପଳାଇଯିବାକୁ ତରବର ହେଲେ ।

ଦର୍ଶକମାନେ ସମସ୍ତେ ବର୍ତ୍ତମାନ ଆନୁଷ୍ଠାନିକ ମାର୍ଚ୍ଚପାଷ୍ଟ ଦେଖିବା ପାଇଁ, ଉଦ୍‌ଗ୍ରୀବ ହୋଇ ରହିଥାଆନ୍ତି । କମାଣ୍ଡ ଦେବାର ତୀବ୍ର ସ୍ୱର ସବୁ ଶୁଭିବାକୁ ଲଗିଲା ।

ବାହାରକୁ ବେଶ୍ ଶାନ୍ତ ଦେଖାଯାଉଥିବା ଗୋଲୁବ୍ ଏଥର ବ୍ଲୁଭ୍‌ଷ୍ଟେନ୍ ଆଡ଼କୁ ଆଗେଇଯାଇ ତୀବ୍ରଭାବରେ ଫୁସ୍‌ଫୁସ୍ ସ୍ୱରରେ କହିଲା :

"ଏଠୁ ବାହାରିଯାଅ ଶୀଘ୍ର, ବଜ୍ଜାତ୍‌ଗୁଡ଼ାକ, ନହେଲେ ତମମାନଙ୍କୁ ଚଟଣୀ କରିଦେବି ।"

ବ୍ୟାଣ୍ଡ ବାଜିଉଠିଲା ଏବଂ ପ୍ରଥମ ବିଭାଗଟି ପଡ଼ିଆ ଭିତରେ ମାର୍ଚ୍ଚିଂ କରି ଚାଲିଗଲେ । ସେମାନେ ପେଟ୍‌ଲ୍ୟୁରାକୁ ଅତିକ୍ରମ କଲାପରେ ବାହିନୀ ଭିତରୁ ପୁଣି 'ଜୟଜୟକାର' ଧ୍ୱନି ଉଠିଲା ଯାନ୍ତ୍ରିକ ଭାବରେ ଓ ପରେପରେ ସେମାନେ ପ୍ରଧାନ ରାସ୍ତା ଉପରକୁ ଯାଇ ଗଳିଭିତରେ ଅଦୃଶ୍ୟ ହୋଇଗଲେ । ୟୁନିଟ୍‌ଗୁଡ଼ିକ ସମ୍ମୁଖ ଭାଗରେ, ପୂରାପୂରି ନୂଆ ଖାକି ପୋଷାକ ପିନ୍ଧି, ସ୍ୱଚ୍ଛନ୍ଦ ଗତିରେ ବୁଲିଗଲା ଭଳି ଭଙ୍ଗୀରେ ଅଫିସରମାନେ ଚାଲୁଥାଆନ୍ତି, ସେମାନଙ୍କର ଛାତି ଫୁଲାଇ ଫୁଲାଇ । ସୈନ୍ୟମାନଙ୍କର ଲାଠି ଭଳି ଏବେ ନୂଆକରି ଅଫିସରମାନଙ୍କର ଛଡ଼ିର ପ୍ରଚଳନ ହୋଇଥାଏ ।

ପ୍ୟାରେଡ୍‌ର ସବୁଠାରୁ ପଛରେ ନୂଆ ଯୋଗଦାନକାରୀ ସୈନ୍ୟମାନଙ୍କୁ ନିଆଗଲା । ଅତ୍ୟନ୍ତ ବିଶୃଙ୍ଖଳ ଭାବରେ ଆସୁଥାଆନ୍ତି ସେମାନେ । ପାଦ ପଡୁନଥାଏ ତାଳରେ । ପରସ୍ପର ସହିତ ଧକ୍‌କାଧକି ହୋଇଯାଉଥାନ୍ତି ।

ସେମାନେ ଅତିକ୍ରମ କରି ଗଲାବେଳେ ଖାଲି ପାଦର ଅତ୍ୟନ୍ତ ଶବ୍ଦ ଶୁଭୁଥାଏ । ସେମାନଙ୍କ ଭିତରେ, ପ୍ୟାରେଡ୍‌ରେ ସାଦୃଶ୍ୟ ଓ ସୁଶୃଙ୍ଖଳା ଆଣିବାକୁ ବୃଥା ଚେଷ୍ଟା କରି ବିଫଳ ହୋଇଥିବା ଅଫିସରମାନେ ତାଙ୍କୁ ସବୁ ଘେରି ଚାଲୁଥାଆନ୍ତି । ନୂଆ ସୈନ୍ୟମାନଙ୍କର ଦ୍ୱିତୀୟ ବିଭାଗଟି ମାର୍ଚ୍ଚିଂ କରି ଯାଉଥିଲାବେଳେ ପରିଦର୍ଶନ ମଞ୍ଚର ନିକଟବର୍ତ୍ତୀ ଗୋଟାଏ ଲିଲେନ୍ କୁର୍ତ୍ତା ପିନ୍ଧିଥିବା ଚାଷୀଟୋକା, ପେଟ୍‌ଲ୍ୟୁରା ଆଡ଼କୁ ଏଡ଼େ ବଡ଼ ବଡ଼ ଆଖିକରି ଏମିତି ଆଶ୍ଚର୍ଯ୍ୟ ହୋଇ ରହିଲା ଯେ, ଆଗରେ ଥିବା ଗୋଟାଏ ଗାତରେ ଗଳିପଡ଼ିଲା । ତା'ର ରାଇଫଲ ରାସ୍ତାର ଡିମା ପଥର ଉପରେ ବଡ଼ ଶବ୍ଦକରି ପଡ଼ିଗଲା । ଉଠିବାକୁ ଚେଷ୍ଟାକଲାବେଳକୁ ପଛରୁ ଆସୁଥିବା ସୈନ୍ୟମାନେ ତାକୁ ପୁଣି ପକାଇଦେଲେ ।

ଦର୍ଶକମାନେ ଏ ଦୃଶ୍ୟରେ ହସିଉଠିଲେ । ପ୍ୟାରେଡ୍‌ର ଶୃଙ୍ଖଳା ନଷ୍ଟ ହୋଇଗଲା ଓ ଯିଏ ଯୁଆଡ଼େ ପାରିଲେ, ସେମାନେ ବିଶୃଙ୍ଖଳ ଭାବେ ପ୍ୟାରେଡ୍ ପଡ଼ିଆରେ ଚାଲିବାକୁ ଲାଗିଲେ । ପଡ଼ିଯାଇଥିବା ହତଭାଗ୍ୟ ଯୁବକଟି ନିଜ ରାଇଫଲ ଗୋଟାଇ ଧରି ଅନ୍ୟମାନଙ୍କ ପଛରେ ଦୌଡ଼ିବାକୁ ଲାଗିଲା ।

ଏଭଳି କୁଦୃଶ୍ୟ ଦେଖିବା ପାଇଁ ପରିଦର୍ଶନର ଶେଷପର୍ଯ୍ୟନ୍ତ ଅପେକ୍ଷା ନ କରି ପେଟ୍‌ଲ୍ୟୁରା ନିଜ କାର୍ ପାଖକୁ ଚାଲିଆସିଲା । ତାକୁ ଅନୁଗମନ କରୁଥିବା ଇନ୍‌ସପେକ୍ଟର ଭୟଭୀତ ହୋଇ ପଚାରିଲା :

"ପ୍ୟାନ୍ ଆଟାମାନ୍ କ'ଣ ରାତ୍ରି ଭୋଜନ ପାଇଁ ରହିବେ ନାହିଁ?"

"ନାଁ", ପେଡ୍‌ଲ୍ୟୁରା ରାଗିଯାଇ ଉତ୍ତର ଦେଲା ।

ଗିର୍ଜା ଚାରିକଡ଼େ ଥିବା ବାଡ଼ ଉପରେ ଛିଡ଼ା ହୋଇ, ଜନଗହଳି ଭିତରେ ସେର୍ଗେଇ ବ୍ରୁଝାକ୍, ଭାଇୟା ଓ କ୍ଲିମ୍‌କା ମଧ୍ୟ ପ୍ୟାରେଡ୍ ଦେଖୁଥିଲେ ।

ତାରବାଡ଼କୁ ଧରି ତଳେ ଯାଉଥିବା ଲୋକମାନଙ୍କର ମୁହଁକୁ ଘୃଣାରେ ଚାହୁଁଥିଲା ସେର୍ଗେଇ ।

"ଚାଲ୍ ଯିବାରେ ଭାଲ୍ୟା, ଏଥର ତାଙ୍କର ଖେଳ ବନ୍ଦହେଲା", ଜାଣିଶୁଣି ଅବଜ୍ଞାସୂଚକ ଭଙ୍ଗୀରେ ବଡ଼ପାଟିରେ କହିଲା ସେ ଏବଂ ବାଡ଼ ତଳକୁ ଘୁଞ୍ଚିଆସିଲା । ଲୋକେ ତାକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ।

ସମସ୍ତଙ୍କୁ ବେଖାତିର କରି ସେ ଗଲା । ତା' ଭଉଣୀ ଓ କ୍ଲିମ୍‌କା ପଛରେ ଫାଟକ ପର୍ଯ୍ୟନ୍ତ ଗଲେ ।

* * *

କର୍ଣ୍ଣେଲ ଚେର୍‌ନ୍ୟାକ୍ ଓ କପ୍ତାନ ଉଭୟ କମାଣ୍ଡାଣ୍ଟର ଅଫିସ୍ ପାଖକୁ ଘୋଡ଼ା ଝପଟାଇ ଯାଇ ଓହ୍ଲାଇଲେ । ଘୋଡ଼ାଙ୍କୁ ଜଣେ ସମ୍ବାଦବାହକ ଜିମ୍ମାରେ ଛାଡ଼ି, ସେମାନେ ତରତର ହୋଇ ପ୍ରହରୀ ନିବାସ ଭିତରକୁ ପଶିଗଲେ ।

"କମାଣ୍ଡାଣ୍ଟ କାହିଁ ?" ଖୁବ୍ ତେଜରେ ସମ୍ବାଦବାହକକୁ ପଚାରିଲା ଚେର୍‌ନ୍ୟାକ୍ ।

"ମୁଁ ଜାଣେ ନାହିଁ", ଥଙ୍ଗ ଥଙ୍ଗ ହୋଇ କହିଲା ସେ, "ବାହାରକୁ କେଉଁଠିକି ଯାଇଛନ୍ତି ।"

ଅପରିଷ୍କାର, ଅପରିଚ୍ଛନ୍ନ ଛୋଟିଆ ଘରଟାର ଚାରିକଡ଼କୁ ଆଖି ବୁଲାଇ ଆଣିଲା ଚେର୍‌ନ୍ୟାକ୍ । ବିଛଣାଗୁଡ଼ାକ ଗୁରାଇଚୁରାଇ ହୋଇ ଖଟିଆଗୁଡ଼ାକ ଉପରେ ଗଦା ହୋଇଥିଲା ଓ ଖଟିଆ ଉପରେ ଗଡ଼ୁଥିବା କମାଣ୍ଡାଣ୍ଟର ସବୁ ପ୍ରହରୀମାନେ, ଅଫିସର ଦୁହେଁ ଘରଭିତରକୁ ପଶିଲେ ବି ଉଠିବାର ଉପକ୍ରମ ସୁଦ୍ଧା କଲେ ନାହିଁ ।

"କ'ଣ ହଉଛି ଏସବୁ ?" ଚେର୍‌ନ୍ୟାକ୍ ଗର୍ଜନ କରିଉଠିଲା, "କିଏ ତମକୁ ସବୁ ଅନୁମତି ଦେଇଛି, ଏମିତି ଘୁଷୁରି ଭଳିଆ ଗଡ଼ିବା ପାଇଁ ଏଠି ?"

ଚିତ୍‌ହୋଇ ଶୋଇଥିବା ଲୋକଗୁଡ଼ାକ ଉପରେ ପାହାରେ ଦି'ପାହାର ବସାଇଦେଲା ସେ ।

ଜଣେ କସାକ୍ ଉଠି ବସିପଡ଼ିଲା, ଗାଉଁଗାଉଁ ହୋଇ କହିଲା :

"କାହିଁକି ଏଠି ବକ୍‌ବକ୍ ହଉଛ ? ଆମକୁ ବକିଲାବାଲା ଆମର ଅଛି, ତମେ କିଏ ପୁଣି ?"

"କ'ଣ କହିଲୁ ବେ ?" ଚେର୍‌ନ୍ୟାକ୍ ସେ ଲୋକଟା ପାଖକୁ କୁଦିପଡ଼ିଲା, "ଜାଣିଛୁ କାହା ସାଙ୍ଗରେ ତୁ କଥା କହୁଛୁ ? ଶଳା, ବେଧୁଆ ! ଜାଣୁ ମୁଁ କର୍ଣ୍ଣେଲ ଚେର୍‌ନ୍ୟାକ୍, ଶୁଣୁଛି ତୋତେ ? କୁରା ଶଳା ! ଉଠ ସବୁ, ସମସ୍ତେ ଉଠ ! ତମ ସମସ୍ତଙ୍କର ମଜା ନିକାଳି ଦଉଛି ମୁଁ !" ଉତ୍ତେଜିତ କ୍ରୁଦ୍ଧ କର୍ଣ୍ଣେଲ ପ୍ରହରୀ ନିବାସଟାର ଏପଟୁ ସେପଟ ଲମ୍ଫଦେବାକୁ ଲାଗିଲା । "ତମମାନଙ୍କୁ ମିନିଟିଏ ସମୟ ଦେଲି, ଏସବୁ ମଇଳା ସଫା କରିବାକୁ, ବିଛଣାସବୁ ସଜାଡ଼ ଆଉ ତମ ବାସନକୁସନ ମଜାମଜି କରି ସଫାକର । ତମେ ଦଳେ ଡକାଇତଙ୍କ ଭଳି ଦିଶୁଛ, କସାକ୍‌ଙ୍କ ଭଳି ଦିଶୁନ ।"

ରାଗରେ ଫାଟିପଡ଼ି, ଉତ୍ୟକ୍ତ କର୍ଣ୍ଣେଲ ତାଙ୍କର ବାଟଆଗରେ ଥୁଆହୋଇଥିବା ପାଣିମାଠିଆଟାକୁ ଗୋଇଠାଟାଏ ପକାଇଲା ।

କପ୍ତାନ ମଧ୍ୟ କମ୍ ଉଚ୍ୟନ୍ତ ହୋଇ ନ ଥିଲ । କର୍ଣ୍ଣେଲର ସବୁପ୍ରକାର ଅଶ୍ରାବ୍ୟ ଅଶ୍ଳୀଳ ଗାଳିରେ ସହଯୋଗ କରି, ନିଜର ତିନି କେନାବାଲ ଗ୍ରବୁକ ପିଟି ସେମାନଙ୍କୁ ସବୁ ଖଟିଆରୁ ଉଠାଇ ବାହାରକୁ ନିକାଲିଦେଲ ।

"ମୁଖ୍ୟ ଆତାମାନ୍ ପ୍ୟାରେଡ୍ ପରିଦର୍ଶନ କରୁଛନ୍ତି । ଯେକୌଣସି ମୁହୂର୍ତ୍ତରେ ସେ ଏଠିକି ଆସିପାରନ୍ତି । ଗ୍ରଲ ସମସ୍ତେ ସେଠିକି !"

ସତରେ ଦଣ୍ଡବିଧାନ ହୋଇପାରେ ଓ ଘଟଣାର ଗତି କ୍ରମଶଃ ଗୁରୁତର ଆକାର ଧାରଣ କରୁଥିବାର ଦେଖି ସେମାନେ ଯେତେଶୀଘ୍ର ପାରନ୍ତି କାମଦାମ ଆରମ୍ଭ କରିଦେଲେ । ସମସ୍ତେ ଚେର୍‌ନ୍ୟାକ୍‌ର ନାଁ ଶୁଣିଥିଲେ । କସାକ୍‌ମାନେ ଭୟଭୀତ ହୋଇ କାମରେ ଲଗିଗଲେ ।

ସଙ୍ଗେ ସଙ୍ଗେ କାମ ଆରମ୍ଭ ହୋଇଗଲ ।

"ଗ୍ରଲନ୍ତୁ, ଆମକୁ ଏ ବନ୍ଦୀଗୁଡ଼ାଙ୍କୁ ବି ଦେଖିଯିବାକୁ ହେବ !" କପ୍ତାନ ପରାମର୍ଶ ଦେଲ, "କିଏ ଜାଣିଛି, କାହାକୁ ଏମାନେ ଆଣି ଅଟକାଇ ରଖିଛନ୍ତି ? 'ମୁଖ୍ୟ' ଯଦି ଦେଖିବାକୁ ଗ୍ରହାନ୍ତି ହଠାତ୍, ଅସୁବିଧା ହେବ ପୁଣି !"

"ଗ୍ରବି କାହା ପାଖରେ ଅଛି ?" ଚେର୍‌ନ୍ୟାକ୍ ସନ୍ତ୍ରୀକୁ ପଗ୍ରରିଲ, "କବାଟଟା ଖୋଲ୍ ଜଲଦି !"

ଡେଇଁପଡ଼ି ଉଠି ସର୍ଜେଣ୍ଟ ତାଲ ଖୋଲିଦେଲ । "କମାଣ୍ଡାଣ୍ଟ କାହିଁ ? କେତେ ସମୟ ତାକୁ ଆଉ ଅପେକ୍ଷା କରିବି ମୁଁ ? ଯେଉଠୁ ହେଲେ ତାକୁ ଖୋଜି ବାହାର କରି ଏଠିକି ପଠାଇଦିଅ !" ଆଦେଶ ଦେଲ ଚେର୍‌ନ୍ୟାକ୍, "ବାହାର ଅଗଣାର ଜଗୁଆଳିକୁ କୁହ ... ଏ ରାଇଫଲରେ ସବୁ ସଙ୍ଗିନ୍ କାହିଁକି ଲଗି ନାହିଁ ?"

"ଗତକାଲି ମାତ୍ର କାର୍ଜିଛୁ ଆମେ", ସର୍ଜେଣ୍ଟ ବୁଝାଇବାକୁ ଚେଷ୍ଟା କଲ ଓ ତରବର ହୋଇ କମାଣ୍ଡାଣ୍ଟକୁ ଖୋଜିବାକୁ ବାହାରିଗଲ ।

ଭଣ୍ଡାରଘରର କବାଟକୁ ଗୋଟାଏ ଗୋଇଠା ମାରି ଖୋଲିଦେଲ କପ୍ତାନ । ଭିତରେ ଥିବା ଲୋକମାନଙ୍କ ଭିତରୁ କେହି କେହି ଉଠି ବସିଲେ ଚଟାଣରୁ । ଅନ୍ୟମାନେ ନିଶ୍ଚଳ ହୋଇ ବସିରହିଲେ ସେମିତି ।

"କବାଟଟାକୁ ଆହୁରି ବେଶି ମେଲକର !" ଚେର୍‌ନ୍ୟାକ୍ ଆଦେଶ ଦେଲ, "ଏଠି ଆଦୌ ଆଲୁଅ ନାହିଁ, ଅନ୍ଧାରିଆ ଦିଶୁଛି ।"

ତା'ପରେ ବନ୍ଦୀମାନଙ୍କ ମୁହଁକୁ ନିରିଖି ନିରିଖି ଅନାଇଲ ସେ, ଅନୁସନ୍ଧାନୀ ଗ୍ରହାଣୀରେ ।

"ତମେ କାହିଁକି ଆସିଛ ଏଠିକି ?" ଖଟିଆ କଡ଼କୁ ବସିଥିବା ବୁଢ଼ାକୁ କହିଲ ସେ ।

ଅଧା ଉଠି, ନିଜ ଟ୍ରାଉଜରର ଟାଣିଟୁଣି ଠିକ୍ ହେଲ ବୃଦ୍ଧ ଓ ଏଭଳି ତୀବ୍ର ଆଦେଶରେ ଡରିଯାଇ ଥାଥା ମାମା ହୋଇ କହିଲ :

"ମୁଁ ନିଜେ ବି ଜାଣି ନାହିଁ । ସେମାନେ ଏମିତି ମୋତେ ଧରିଆଣି ତାଲବନ୍ଦ

କରି ରଖିଛନ୍ତି ଆଉ ମୁଁ ଅଛି ... ଅସ୍ତାବଳରୁ ଗୋଟାଏ ଘୋଡ଼ା କୁଆଡ଼େ ପଳେଇଛି, ମୋର ସେଥିରେ କିଛି କରିବାର ନାହିଁ ।"

"କାହା ଘୋଡ଼ା ?" ତାକୁ ବାଧା ଦେଇ କହିଲା କପ୍ତାନ ।

"ସୈନ୍ୟବାହିନୀର ଘୋଡ଼ାଟାଏ । ଅବଶ୍ୟ ମୋ ଘରେ ବନ୍ଧା ହୋଇଥିଲା ସେଇଟା । ମୋର ଖାଇଲେ ପିଇଲେ ଆଉ ଏବେ ମୋତେ ପୁଣି ଦୋଷ ଦେଉଛନ୍ତି ।"

ତା' ମୁହଁରେ ଗୋଟାଏ ତରବରିଆ ଦୃଷ୍ଟି ବୁଲେଇଆଣିଲା ଚେର୍‌ନ୍ୟାକ୍ ଏବଂ ଅଧୈର୍ଯ୍ୟଭାବରେ କାନ୍ଧ ଦୋହଲେଇ ପାଟିକଲା :

"ତୁ ଜିନିଷପତ୍ର ଗୋଟାଇ ଧର । ବାହାରିଯା' ଏଠୁ !"

ତା'ପରେ "ସାମୋଗୋନ୍" ସ୍ତ୍ରୀଲୋକ ଆଡ଼କୁ ମୁହାଁଇଲା ସେ ।

ନିଜ କାନକୁ ନିଜେ ବିଶ୍ୱାସ କରିପାରିଲା ନାହିଁ ବୃଦ୍ଧ । ଅନ୍ଧ ଦିଶୁଥିବା ତା' ଆଖି ମିଟିମିଟି କରି କପ୍ତାନ ଆଡ଼କୁ ବୁଲିପଡ଼ି ପଗ୍ଚରିଲା :

"ତାମାନେ ... ମୁଁ ଯାଇପାରିବି ?"

ତାକୁ ମୁଣ୍ଡ ଟୁଙ୍ଗାରି କସାକ୍ ଜଣାଇଦେଲା ଯେ, "ଯେତେଶୀଘ୍ର ପାରିବ, ଏଠୁ ପଳାଅ ।"

ଖଟିଆ କଡ଼ରେ ଝୁଲିହୋଇଥିବା ନିଜର ଗଣ୍ଠିଲି ଧରି ବୁଢ଼ା କବାଟ ବାହାରକୁ ତରତର ହୋଇ ପଳାଇଗଲା ।

"ଆଉ ତମେ ଏଠି କାହିଁକି ?" 'ସାମୋଗୋନ୍' ବିକାଳୀ ସ୍ତ୍ରୀଲୋକଟିକୁ ପଗ୍ଚରୁଥିଲା ଚେର୍‌ନ୍ୟାକ୍ ।

ପାଟିରେ ଘେବାଉଥିବା ସିଝା ଫଳ ବା ମାଂସ ଖଣ୍ଡକ ଗିଳିପକାଇ ଜଲଦି ଉତ୍ତର ଦେଲା ସ୍ତ୍ରୀଲୋକଟି :

"ମୋତେ ଏଠିକି ଆଣିବା ଭାରୀ ଅନ୍ୟାୟ କଥା ... ଦେଖ, ସେନାପତି ବାବୁ । ଭାବିଲ ଦେଖି, ମୋ ଭଳିଆ ଗରୀବ ସ୍ତ୍ରୀଲୋକଠୁଁ ମଦ ପିଇବେ, ତା'ପରେ ମୋତେ ତାଲା ବନ୍ଦ କରି ରଖିବେ !"

"ତମେ କ'ଣ ମଦ ବ୍ୟବସାୟ କରୁଛ ?" ଚେର୍‌ନ୍ୟାକ୍ ପଗ୍ଚରିଲା ।

"ବ୍ୟବସାୟ ? ନାହିଁ ମଁ", ସ୍ତ୍ରୀଲୋକ କହିଲା, "କମାଣ୍ଡର ଆସିଲା, ମୋଠୁଁ ଗ୍ଚରି ବୋତଲ ନେଲା । ଫଟା କଉଡ଼ିଟିଏ ବି ଦେଲା ନାହିଁ । ଏଇ ପରି କରୁଛନ୍ତି ରେ ପୁଅ ! ତମ ମଦ ପିଇବେ । ପଇସା ଦେବେ ନାହିଁ ! ଇଏ କ'ଣ ବ୍ୟବସାୟ ? କହିଲ ଭଲା ?"

"ବହୁତ ହେଲଣି ... ଯା' ଏବେ ପଳା ଏଠୁ !"

ଆଦେଶଟା ଆଉ ଥରେ ପୁନରାବୃତ୍ତି ହେବା ପର୍ଯ୍ୟନ୍ତ ଅପେକ୍ଷା ନ କରି ସ୍ତ୍ରୀଲୋକଟି ତା'ର ଝୁଡ଼ି ଧରି ଦୁଆରକୁ ପଛକରି, ମୁଣ୍ଡିଆ ମାରି ବାହାରିଲା ।

"ଭଗବାନ ତମକୁ ବହୁତ ଆୟୁଷ ଦିଅନ୍ତୁ ! ତମର ମଙ୍ଗଳ କରନ୍ତୁ !" କହି ବାହାରିଗଲା ସେ ପଛେଇ ପଛେଇ ।

ଏ ପ୍ରହସନକୁ ଆଶ୍ଚର୍ଯ୍ୟ ହୋଇ ଲକ୍ଷ୍ୟ କରୁଥିଲା ଦୋଲିନିକ୍ । ଏସବୁ ଯେ କ'ଣ ଘଟୁଛି, କୌଣସି ବନ୍ଦୀ କିଛି ସ୍ଥିର କରିପାରୁ ନ ଥାନ୍ତି । କେବଳ ଗୋଟାଏ କଥା ପରିଷ୍କାର ଜଣାଯାଉଥାଏ : କେଇଜଣ କିଏ ବଡ଼କର୍ତ୍ତା ଆସି ପହଞ୍ଚିଛନ୍ତି । ସେମାନଙ୍କର ମୁକୁଳାଇଦେବାର କ୍ଷମତା ଅଛି ବୋଲି ଦେଖୁଛନ୍ତି ସେମାନେ ।

"ଆଉ ତମେ ଏଠି ?.." ଚେରନ୍ୟାକ୍ ଏଥର ଦୋଲିନିକ୍‌କୁ ପଚାରିଲା ।

"ତମକୁ ପ୍ୟାନ୍ କର୍ଣ୍ଣେଲ କଥା କହିଲାବେଳେ ଛିଡ଼ାହୁଅ !" ଗର୍ଜନ କରି ଉଠିଲା କପ୍ତାନ ।

ଦୋଲିନିକ୍ ଧୀରେ ଧୀରେ ଚଟାଣରୁ ଉଠି ଛିଡ଼ାହେଲା ।

"ଏଠିକି ତମେ କାହିଁକି ଆସିଛ ?" ଚେରନ୍ୟାକ୍ ପୁଣି ଥରେ ପଚାରିଲା ।

କର୍ଣ୍ଣେଲର ସୁନ୍ଦର କୁଞ୍ଚକୁଞ୍ଚିଆ ନିଶପଟାକୁ ଓ ତା'ର ଚିକ୍‌କଣ ଖିଅରକରା ମୁହଁକୁ, ତା'ର ନୂଆ ଟୋପିଟାର ଆଗକୁ ଥିବା ଏନାମେଲକରା ପ୍ରତୀକକୁ ଧୀରେ ଧୀରେ ଚାହିଁଲା ଦୋଲିନିକ୍ । ମନକୁ ତା'ର ହଠାତ୍ ଆସିଲା, "କାଳେ ଯଦି ସମ୍ଭବ ହୁଏ !"

"ରାତି ଆଠଟା ପରେ ରାସ୍ତାକୁ ବାହାରିଥିବାରୁ ମୁଁ ଗିରଫ ହୋଇଛି ।" ମନକୁ ତା'ର ପ୍ରଥମେ ଯାହା ଆସିଲା, ସେଇକଥା କହିଲା ସେ ।

ସନ୍ଦେହାକୁଳିତ ମନରେ ଉତ୍ତରକୁ ଅପେକ୍ଷା କଲା ।

"ରାତିରେ କ'ଣ କରୁଥିଲ ?"

"ରାତି ହୋଇ ନ ଥିଲା, ମାତ୍ର ଏଗାରଟା ବେଳେ ।" ସେ ସ୍ୱପ୍ନରେ ସୁଦ୍ଧା ବିଶ୍ୱାସ କରିପାରୁ ନ ଥିଲା ଯେ, ତା'ର ଏ କଥାଟା ବାଜିଯିବ ।

ସଂକ୍ଷିପ୍ତ ଆଦେଶ ଶୁଣିଲା ମାତ୍ରେ ତା'ର ଆଣ୍ଠୁ ଥରି ଉଠିଲା ଆଗ ।

"ବାହାର ଏଠୁ ।"

ଯଥାଶୀଘ୍ର ବାହାରିଗଲା ଦୋଲିନିକ୍ । ଗଲାବେଳେ ତା'ର ଜ୍ୟାକେଟ୍‌ଟାକୁ ଭୁଲିଗଲା । ସେତେବେଳକୁ କପ୍ତାନ ଅନ୍ୟ ବନ୍ଦୀକୁ ପ୍ରଶ୍ନ ଆରମ୍ଭ କରିଥାଏ ।

କୋର୍ଣ୍ଣିଗିନ୍‌କୁ ସବାଶେଷରେ ପଚାରିଲେ ସେମାନେ । ଏ ଘଟଣା ଦେଖି ସେ ସ୍ତମ୍ଭୀଭୂତ ହୋଇ ଭୂଇଁରେ ବସିଥାଏ କାଠଭଳି । ଦୋଲିନିକ୍ ମୁକ୍ତ ହୋଇଯିବା କଥାଟାକୁ ପ୍ରଥମେ ବିଶ୍ୱାସ କରିପାରିଲା ନାହିଁ ସେ । ଏମିତି ସମସ୍ତଙ୍କୁ କାହିଁକି ଛାଡ଼ିଦେଉଛନ୍ତି ଏମାନେ ? କିନ୍ତୁ ଦୋଲିନିକ୍... ଦୋଲିନିକ୍ କହିଲା ଯେ, ସେ ସାନ୍ଧ୍ୟ ଆଇନ ଭଙ୍ଗ କରି ଏଠିକି ଆସିଛି ବୋଲି... ତା'ପରେ ହେଜ ଆସିଲା ତା'ର କଥାଟା ।

କର୍ଣ୍ଣେଲ ଜେଲ୍‌ହେର୍ ନାପିତକୁ ଏଥର ପଚାରିବାକୁ ଆରମ୍ଭ କଲା ।

ଡରରେ ଶେଥା ପଡ଼ିଯାଇ ନାପିତ କହିଉଠିଲା :

"ସେମାନେ କହୁଛନ୍ତି, ମୁଁ ଆନ୍ଦୋଳନ କରୁଛି ବୋଲି । କିନ୍ତୁ ସେମାନେ କ'ଣ କହୁଛନ୍ତି, ମୁଁ କିଛି ଜାଣେ ନାହିଁ ।"

"କ'ଣ ସେସବୁ ? ଆନ୍ଦୋଳନ ... କୋଉ ବିଷୟରେ ଆନ୍ଦୋଳନ କରୁଥିଲ ତମେ ?"

ବିହ୍ୱଳିତ ହୋଇ ଦୁଇ ହାତ ପ୍ରସାରିତ କରି ଜେଇ୍‌ଜେର୍ କହିଲା :

"ମୁଁ ନିଜେ ମଧ୍ୟ ଜାଣେ ନାହିଁ । ମୁଁ କେବଳମାତ୍ର ଏତିକି କହିଥିଲି ଯେ, ଇହୁଦୀମାନଙ୍କ ପକ୍ଷରୁ ମୁଖ୍ୟ ଆତାମାନ୍‌କୁ ଦେବାକୁ ଗୋଟାଏ ଆବେଦନପତ୍ରରେ ସେମାନେ ଦସ୍ତଖତ୍ କରୁଛନ୍ତି ।"

"କି ଧରଣର ଆବେଦନପତ୍ର ?" କପ୍ତାନ ଓ ଚେର୍‌ନ୍ୟାକ୍ ଉଭୟ ପ୍ରଶ୍ନବାଚକ ଆଖିରେ ଅନାଇଥାଆନ୍ତି ଜେଇ୍‌ଜେର୍ ଆଡ଼କୁ ।

"ଇହୁଦୀ ମାରଣଲୀଳାକୁ ନିଷିଦ୍ଧ ଘୋଷଣା କରିବା ପାଇଁ ଆବେଦନ । ଆପଣ ଜାଣନ୍ତି, ଆମର ଏଠି ଭୟଙ୍କର ଭାବେ ଇହୁଦୀ ମାରଣ ହୋଇଥିଲା, ସମସ୍ତେ ଡରିମରି ରହିଥିଲେ ।"

"ବହୁତ କହିଲୁଣି ସେତିକି ସେତିକି", ଚେର୍‌ନ୍ୟାକ୍ ତାକୁ ବାଧା ଦେଇ କହିଲା, "ବଜାତ୍ ଇହୁଦୀ !" ତା'ପରେ କପ୍ତାନ ଆଡ଼କୁ ଘୂରିଯାଇ କହିଲା, "ଏଇଟାକୁ ଠିକ୍ କରି ରଖ । ସେଇଟାକୁ ହେଡ୍‌କ୍ୱାର୍ଟରସ୍‌କୁ ପଠାଇଦିଅ । ତା' ସାଙ୍ଗେ ମୁଁ ନିଜେ କଥାବାର୍ତ୍ତା କରିବି । ଦେଖିବି, ଏ ଆବେଦନପତ୍ର ପଛରେ କୋଉକୋଉମାନେ ସବୁ ଅଛନ୍ତି ?"

ଜେଲ୍‌ଜେର୍ ପ୍ରତିବାଦ କରିବାକୁ ଚେଷ୍ଟା କରୁଥିଲା, ମାତ୍ର କପ୍ତାନ ତା' ପିଠିରେ ଘୋଡ଼ାଚାବୁକରେ କଷିକରି ପାହାରେ ବସାଇଲା ।

"ଚୁପ୍‌କର ବେ ଶଳା ବଦ୍‌ମାସ !"

କଷ୍ଟରେ ମୁହଁ ତା'ର କୁଞ୍ଚିତ ହୋଇଗଲା । ଥରିଥରି ଗୋଟାଏ କୋଣକୁ ଗ୍ଲଲିଗଲା ଜେଲ୍‌ଜେର୍ । ତା'ର ଓଠ ଥରିଉଠିଲା ଓ ଅତି କଷ୍ଟରେ ତା'ର ଉଦ୍‌ଗତ କୋହ ବାଧା ମାନିଲା ନାହିଁ ।

ଏ ଘଟଣା ଘଟୁଥିବାବେଳେ ପାଭେଲ୍ ଉଠି ଛିଡ଼ାହେଲା । ଭଣ୍ଡାରଘରଟାରେ ଜେଲ୍‌ଜେର୍‌କୁ ଛାଡ଼ିଲେ, ସେ ଆଉ ଏକମାତ୍ର ବନ୍ଦୀ ଥିଲା ।

ପାଭେଲ୍ ଆଗରେ ଛିଡ଼ାହୋଇ ନିଜର ଛୁରୀ ଭଳି ତୀକ୍ଷ୍ଣ ଆଖିରେ ପାଭେଲ୍‌କୁ ଅନାଇଗଲା ଚେର୍‌ନ୍ୟାକ୍ ।

"ଆଚ୍ଛା, ତୁ ଏଠି କ'ଣ କରୁଛୁ ?"

"ଗୋଟାଏ ଜିନ୍‌ର ଚମଡ଼ା, ଜୋତାତଳି କରିବା ପାଇଁ କାଟି ପକାଇଥିଲି ମୁଁ", ଶୀଘ୍ର ଶୀଘ୍ର କହିଲା ସେ ।

"କି ଜିନ୍ ?" କର୍ଣ୍ଣେଲ ପଚାରିଲା ।

"ଆମ ଘରେ ଦି'ଜଣ କସାକ୍ ରହିଥିଲେ, ମୁଁ ତାଙ୍କର ଗୋଟାଏ ପୁରୁଣା ଘୋଡ଼ା

ଜିନ୍‌ରୁ ମୋ ବୁଟ୍ ଜୋତାର ଚଳି କରିବା ପାଇଁ ଏଡ଼େ ଖଣ୍ଡେ କାଟି ପକାଇଥିଲି । ସେଇଥିପାଇଁ ସେ କସାକ୍‌ମାନେ ମୋତେ ବାନ୍ଧି ଆଣିଛନ୍ତି ।" ମୁକ୍ତି ପାଇଯିବ ବୋଲି ଉତ୍ପନ୍ନ ଆଶା ନେଇ ସେ ପୁଣି କହିଲା, "ମୁଁ ଜାଣି ନ ଥିଲି ଏମିତି କାଟିବାକୁ ଅନୁମତି ନାହିଁ ବୋଲି ।"

ବିରକ୍ତିରେ ପାଭେଲ୍‌କୁ ଗ୍ଚହିଁଲେ କର୍ଣ୍ଣେଲ ।

"ଏ କମାଣ୍ଡାଣ୍ଟଟାକୁ ଆଉ କିଛି ମିଳିଲା ନାହିଁ ? ଏଇଥିରୁ ଗୁଡ଼ାଏ ଧରିଆଣିଛି ! ଦେଖିଲ ଭଲା କୋଉଥିରୁ ଗୁଡ଼ାଏ ଲୋକଙ୍କୁ ଆଣି ଗିରଫ କରି ରଖିଛି ? ବାଜେ ଲୋକଟା !" ତା'ପରେ ଦୁଆର ଆଡ଼କୁ ଆଗେଇଯାଇ ସେ ଚିତ୍କାର କରି କହିଲା :

"ଯା' ପଳା ତୋ ଘରକୁ ଆଉ ବାପାକୁ ଯାଇଁ କହିବୁ, ତୋତେ ଦରକାର ମୁତାବକ ପାହାର ବସାଇବ । ଯା' ଏଠୁ !"

ତଥାପି ସୁଦ୍ଧା ନିଜ କାନକୁ ବିଶ୍ୱାସ ନ କରି ସେ ଦୋଲିନିକ୍‌ର ଜ୍ୟାକେଟ୍‌ଟାକୁ ଭୂଇଁରୁ ଗୋଟେଇ ନେଇ କବାଟ ପାଖକୁ ଦୌଡ଼ିଲା । ଛାତି ତା'ର ଧମ୍‌ଧମ୍ ଉଠୁଥାଏ ପଡ଼ୁଥାଏ, ସତେକି ଏଇ ମୁହୂର୍ତ୍ତରେ ଫାଟିଯିବ । ପ୍ରହରୀ ନିବାସ ବାଟଦେଇ ବର୍ତ୍ତମାନ ଅଗଣାରେ ଯାଉଥିବା କର୍ଣ୍ଣେଲକୁ ଅତିକ୍ରମ କରି ଦୌଡ଼ିବାକୁ ଲାଗିଲା । ମୁହୂର୍ତ୍ତକ ଭିତରେ ଅଧାଫାଟକ ପାଖରେ ଓ ପରେ ପରେ ରାସ୍ତା ଉପରେ ପହଞ୍ଚିଲା ପାଭେଲ୍ ।

ହତଭାଗ୍ୟ ଜେଲ୍‌ସେର୍ ହିଁ କେବଳମାତ୍ର ଏକାକୀ ରହିଗଲା ବନ୍ଦୀଶାଳାରେ । ହତାଶିଆ ଆଖିରେ ଗ୍ଚରିଆଡ଼କୁ ଗ୍ଚହିଁ ଗ୍ଚହିଁ ସେ ବାହାରକୁ ଯିବା କବାଟ ଆଡ଼କୁ ପାଦେ ଦି'ପାଦ ଆଗେଇ ଆସୁଥିଲା । ମାତ୍ର ଠିକ୍ ସେତିକିବେଳକୁ ପ୍ରହରୀ ନିବାସ ଭିତରକୁ ଜଣେ ସନ୍ତ୍ରୀ ପଶିଆସି କବାଟଟାକୁ ଟାଣିନେଇ ତାଲା ଲଟକାଇ ଦେଇ କବାଟ ବାହାରକୁ ଠିକ୍ ଟୁଲ୍‌ଟାଏ ପକାଇ ବସିପଡ଼ିଲା ।

ବାହାରପଟେ ନିଜ କାମରେ ମନକୁ ମନ ଖୁସିହୋଇ ଚେର୍‌ନ୍ୟାକ୍ କପ୍ତାନକୁ କହୁଥିଲା :

"ଆମେ ନିଜେ ଯାଇଁ ଦେଖିଦେଇ ଭଲ କଲେ । ଭାବିଲ ଦେଖି, କେତେ ବାଜେ କାମ କରିଛି ସେ ଲୋକଟା ? ସେ କମାଣ୍ଡାଣ୍ଟକୁ ଦି' ସପ୍ତାହ ପାଇଁ ବନ୍ଦୀ କରିବା ଦରକାର । ଆଚ୍ଛା ହଉ, ଗ୍ଚଲ ଯିବା, ବେଳ ହୋଇଗଲାଣି ।"

ସର୍ଜେଣ୍ଟ ଯାଇ କର୍ଣ୍ଣେଲଙ୍କର ଆଦେଶ ପାଳନ କରୁଥିଲା । ଏବେ କର୍ଣ୍ଣେଲକୁ ଦେଖି ଧାଇଁ ଆସି ସେ କହିଲା :

"ସବୁ ଠିକ୍ ଅଛି, ମହାମାନ୍ୟ କର୍ଣ୍ଣେଲ ।"

ଘୋଡ଼ା ପିଠିରେ ଝୁଲୁଥିବା ପାଦାନିରେ ଗୋଟାଏ ପାଦ ଗଳାଇ, ହାଲୁକାଭାବରେ ଜିନ୍ ଉପରକୁ କୁଦିପଡ଼ିଲା କର୍ଣ୍ଣେଲ । କପ୍ତାନର ଘୋଡ଼ା ଉଠି ଠିଆ ହେଉ ନ ଥିଲା । ଏଣୁ ତାକୁ ଦି'ଗ୍ଚରି ଗ୍ଚବୁକ ବଜାଉ ଥାଏ ସେ । କର୍ଣ୍ଣେଲ ସେ ସର୍ଜେଣ୍ଟକୁ କହିଲା :

"କମାଣ୍ଡାଣ୍ଟ ଆସିଲେ କହିଦେବ, ସିଏ ଯେତେ ବାଜେ ଲୋକ ଆଣି ରୁନ୍ଧେଇଥିଲା,

ସମସ୍ତଙ୍କୁ ଘଉଡ଼େଇ ଦେଇଛି ମୁଁ । ସବୁ ଆବର୍ଜନା ସଫା କରିଦେଇଛି । ତାକୁ କହିଦେବ, ଏ ପ୍ରହରୀ ନିବାସରେ ତାକୁଇ ଠୁକି ଦେବି ମୁଁ ପନ୍ଦରଟି ଦିନ ପାଇଁ ଯେଉଁପରି ଭାବରେ ଏଠିସବୁ କାମ କରିଛି ସେଇ କାରଣରୁ । ଆଉ ଯେଉଁ ଲୋକଟାକୁ ରଖିଛୁ, ତାକୁ ତୁରନ୍ତ ହେଡ୍‌କ୍ୱାର୍ଟରସ୍‌କୁ ପଠାଇଦିଅ । ଜଗୁଆଳିମାନେ ସମସ୍ତେ ସତର୍କ ରୁହନ୍ତୁ ।"

"ଆଜ୍ଞା, ହଜୁର, ମହାମାନ୍ୟ କର୍ଣ୍ଣେଲ" କହି ସାଲ୍ୟୁଟ୍ ବଜାଇଲା ସର୍ଜେଣ୍ଟ ଜଣକ ।

ଘୋଡ଼ାକୁ ଚାବୁକ ଲଗାଇ କର୍ଣ୍ଣେଲ ଓ କପ୍ତାନ ଦୁହେଁ ପ୍ୟାରେଡ୍ ପଡ଼ିଆକୁ ଝପଟାଇଲେ । ପ୍ୟାରେଡ୍ ସେତେବେଳକୁ ପ୍ରାୟ ସରିଆସିଥାଏ ।

* * *

ପାରେଲ୍ ଆଉ ଗୋଟାଏ ବାଡ଼ ସେପଟକୁ କୁଦିପଡ଼ି ଥକ୍‌କା ମାରିବାକୁ ଛିଡ଼ାହେଲା । ଆଉ ଆଗେଇ ପାରିଲା ନାହିଁ ସେ କ୍ଲାନ୍ତିରେ । ଅନ୍ଧକାରାଚ୍ଛନ୍ନ କାରାଗହ, ଏଇ କେତେ ଦିନର ଅନାହାର, ଅର୍ଦ୍ଧାହାର ତା'ର ଶକ୍ତି ନିଃଶେଷିତ କରିନେଇଥିଲା ।

କିନ୍ତୁ କୁଆଡ଼େ ଯିବ ସେ ? ଘରକୁ ଯିବାର ପ୍ରଶ୍ନ ଉଠୁ ନାହିଁ । ବ୍ରୁଙ୍ଗାକ୍ ଘରକୁ ଯାଇ ହୁଅନ୍ତା, ମାତ୍ର ସେଠି ତାକୁ ଖୋଜି ବାହାର କଲେ, ସେ ସାରା ପରିବାରଟା ଉପରେ ଅନେକ ଦୁର୍ଯୋଗ ମାଡ଼ି ଆସିବ ।

କ'ଣ କରିବ କିଛି ସ୍ଥିର କରି ନ ପାରି ଅନ୍ଧଭଳି ଆଖିକାନ ବୁଜି ଦୌଡ଼ିବାକୁ ଲାଗିଲା ସେ । ପଛରେ ରହିଗଲା ତା'ର ସହର ସୀମାନ୍ତର ସବୁଜ ନୀଳ ବଗିଚାସବୁ । ଦୌଡ଼ୁ ଦୌଡ଼ୁ ହଠାତ୍ ଗୋଟାଏ ବାଡ଼ ଦେହରେ ଧକ୍‌କା ଖାଇ ଥକ୍‌କା ହୋଇ ଅଟକିଗଲା ଓ ଚାହିଁଲା । ଉଚ୍ଚ ଉଚ୍ଚ ବାଡ଼ ଭିତରେ ଜଙ୍ଗଲ କର୍ତ୍ତାଙ୍କର ବଗିଚାଟା । ତା' ହେଲେ ତା'ର ଶ୍ରାନ୍ତ କ୍ଲାନ୍ତ ଗୋଡ଼ଦୁଇଟା ଶେଷକୁ ତାକୁ ଏଇଠିକି ଟାଣି ଆଣିଛନ୍ତି । ଯୋଉ ରାଣ ପକାଇ ସେ କହିପାରନ୍ତା ଯେ, ଏ ବାଟରେ ଆସିବା ପାଇଁ ସେ ଆଦୌ ଭାବି ନଥିଲା ।

ତା'ହେଲେ ଏମିତି ଘଟଣା ସମ୍ଭବ ହେଲା କିପରି ? କୌଣସି ଉତ୍ତର ନିଜ ମନ ଭିତରେ ପାଇଲା ନାହିଁ ସେ ।

ତଥାପି ତାକୁ ଦଣ୍ଡେ ଛିଡ଼ା ହୋଇ ଘଡ଼ିଏ ରହି ଥକ୍‌କା ମାରିବାକୁ ହେବ । ତା'ପରେ କ'ଣ କରିବ ବୋଲି ସ୍ଥିର କରିନେଲା ସେ । ସେ ବଗିଚା ଶେଷ ମୁଣ୍ଡରେ ଗ୍ରୀଷ୍ମାବକାଶ ପାଇଁ ଗୋଟିଏ ଘର ଅଛି ବୋଲି ମନେ ପଡ଼ିଲା ତା'ର । ସେଠି ରହିଲେ କେହି ତାକୁ ଦେଖି ପାରିବେ ନାହିଁ ।

ପାଚିରୀ ଉପରକୁ ଚଢ଼ି ଘୁଷୁରି ଘୁଷୁରି ବଗିଚା ଭିତରକୁ ଡେଇଁପଡ଼ିଲା । ବଡ଼ ବଡ଼ ଗଛ ପାଙ୍କରେ ଝାପସା ଝାପସା ଦେଖାଯାଉଥିବା ଘରଟା ଆଡ଼କୁ ଟିକେ ଚାହିଁଦେଇ ସେ ସେଇ ଗ୍ରୀଷ୍ମଦିନର ଘରଟା ଆଡ଼କୁ ଆଗେଇବାକୁ ଲାଗିଲା । ବିସ୍ମିତ ହୋଇ ଦେଖିଲା,

ଘରଟାର ଗ୍ରରିଆଡ଼ ମେଲା ହୋଇ ରହିଛି । ଖରାଦିନେ ସେ ଘରଟା ଗ୍ରରିପଟେ ବଢ଼ି ଉଠିଥିବା ଅନାବନା ଗଛଲତା ବୁଦାସବୁ ମରିଯାଇ ଗ୍ରରିକଡ଼ ଏବେ ସଫା ହୋଇଯାଇଛି । ଫେରିଯିବାକୁ ପ୍ରସ୍ତୁତ ହେଉଥିଲା ସେ, ମାତ୍ର ଅନେକ ବିଳମ୍ବରେ ପଛରେ ତା'ର କୁକୁରଟା ଭୟଙ୍କର ଭାବରେ ଭୁକିବାକୁ ଆରମ୍ଭ କରିଦେଇଥିଲା । ହଠାତ୍ ବୁଲିପଡ଼ି ସେ ଦେଖିଲା ଗୋଟାଏ ବିରାଟକାୟ କୁକୁର ସିଧା ତା ଆଡ଼କୁ ମାଡ଼ିଆସୁଛି, ସେ ଘରଠାରୁ ପଡ଼ିଥିବା ପତ୍ରଝରା ରାସ୍ତାଟା ଦେଇ । କୁକୁରଟାର ଭୟଙ୍କର ଗର୍ଜନରେ ବଗିଗ୍ରର ନିର୍ଜନତା ଭଗ୍ନ ହେଉଛି ।

ଆତ୍ମରକ୍ଷା କରିବା ପାଇଁ ପ୍ରସ୍ତୁତ ହେଲା ପାଭେଲ୍ । ପ୍ରଥମେ ଜୋରରେ ଗୋଟାଏ ଧକ୍କା ଦେଲା କୁକୁରଟା । ଧକ୍କା ସମ୍ଭାଳି ନେଲା ପାଭେଲ୍ । ଦ୍ୱିତୀୟ ଥର ପାଇଁ କୁଦିବାକୁ ଚେଷ୍ଟାକଲା କୁକୁରଟା । ଯଦି ପଛରୁ ଗୋଟିଏ ଅତି ପରିଚିତ କଣ୍ଠ ଡାକି ଉଠି ନଥାନ୍ତା, ଠିକ୍ ସେତିକିବେଳେ "ଟ୍ରେସର୍, ଏଠିକି ଆ, ଟ୍ରେସର୍!" ବୋଲି ଏ ଦ୍ୱନ୍ଦ୍ୱଯୁଦ୍ଧ କେଉଁଠିରେ ଶେଷ ହୋଇଥାଆନ୍ତା କେଜାଣି ?

ସେଇ ରାସ୍ତାରେ ଦୌଡ଼ି ଦୌଡ଼ି ଆସୁଥିଲା ତୋନ୍ୟା । ଟ୍ରେସର୍‌କୁ ପଛକୁ ଟାଣିନେଲା ସେ କାନ୍ଧରୁ ଧରିନେଇ ଓ ବୁଲିପଡ଼ିଲା ପାଚିରୀ ପାଖରେ ଠିଆ ହୋଇଥିବା ତରୁଣଟିକୁ ପଗ୍ରରିବାକୁ :

"ଏଠି ତମେ କ'ଣ କରୁଥିଲ ? ଏଇନେ କାମୁଡ଼ି ଦେଇଥାଆନ୍ତା କୁକୁରଟା । ଭାଗ୍ୟ ଭଲ ଯେ ମୁଁ... ।"

ତା' କଥା ବନ୍ଦ ହୋଇଗଲା ଓ ଚକ୍ଷୁ ବିସ୍ଫାରିତ ହୋଇଗଲା ବିସ୍ମୟରେ । କି ଆଶ୍ଚର୍ଯ୍ୟ କଥା, ଆଗନ୍ତୁକ ଜଣକ ଠିକ୍ କୋର୍ଚ୍ଚାଗିନ୍ ଭଳି ଦିଶୁଛି । କୋର୍ଚ୍ଚାଗିନ୍ ସହିତ ଯା'ର କେତେ ସାଦୃଶ୍ୟ ଅଛି !

ତରୁଣଟି ହଇଚଇ ହେଲା ।

"ତୋନ୍ୟା", କଅଁଳ ସ୍ୱରରେ କହିଲା ତରୁଣଟି । "ମୋତେ କ'ଣ ଚିହ୍ନି ପାରୁନ ?"

ଚିତ୍କାର କରିଉଠି ତୋନ୍ୟା ସମସ୍ତ ସଞ୍ଚିତ ଆବେଗ ଉଜାଡ଼ କରିଦେଇ ତା' ପାଖକୁ ଧାଇଁ ଗଲା ।

"ପାଭେଲ୍ ? ତମେ?"

ତା'ର ଚିତ୍କାରକୁ ଆକ୍ରମଣର ସଙ୍କେତ ବୋଲି ଭାବିନେଇ ଆଗକୁ ଝପଟି ଆସୁଥିଲା ଟ୍ରେସର୍ ।

"ଟ୍ରେସର୍, ଓହ୍ଲାଇ ଆ, ଓହ୍ଲା !"

ତୋନ୍ୟା ହାତରୁ ଦୁଇତିନି ଝିଙ୍କା ଖାଇ ଟ୍ରେସର୍ ତଳକୁ ଡେଇଁପଡ଼ିଲା ଓ ଲାଙ୍ଗୁଡ଼ ଜାକି, ଅଭିମାନରେ ଘର ଆଡ଼କୁ ଗ୍ରଲିଗଲା ।

"ତମେ ତା'ହେଲେ ମୁକ୍ତ?" ପାଭେଲ୍ ହାତକୁ ଜାବୁଡ଼ି ଧରି କହିଲା ତୋନ୍ୟା ।

"ତମେ ତା'ହେଲେ ଜାଣିଥିଲ ?"

"ମୁଁ ସବୁ ଜାଣିଛି", ଅଣନିଃଶ୍ୱାସୀ ହୋଇ କହିଲା ତୋନ୍ୟା, "ମୋତେ ଲିଜା ସବୁ କହିଛି । ଛାଡ଼, ସିଏ ଯାହା ହଉ! ତମେ କେମିତି ଆସିଲ ? ତମକୁ କ'ଣ ଛାଡ଼ିଦେଲେ ?"

"ହଁ, ହେଲେ ଭୁଲରେ", ଚିନ୍ତିତ ହୋଇ କହିଲା ପାଭେଲ୍ । "ମୁଁ ଦୌଡ଼ି ପଳାଇଆସିଲି । ଏବେ ସେମାନେ ଖୋଜିବେଣି ବୋଧେ । ମୁଁ ନିଜେ ବି ଜାଣେ ନାହିଁ, ଏଠିକି କେମିତି ଆସିଲି । ଭାବୁଥିଲି ତମର ଗ୍ରୀଷ୍ମାବକାଶ ଘରଟାରେ ଟିକେ ବିଶ୍ରାମ ନେବି ବୋଲି, ଭାରୀ କ୍ଳାନ୍ତ ମୁଁ", କ୍ଷମା ମାଗିବା ଭଙ୍ଗୀରେ କହିଲା ସେ ।

ଦଣ୍ଡେ, ଦି'ଦଣ୍ଡ ପାଇଁ ତାକୁ ଅନାଇ ରହିଲା ତୋନ୍ୟା । ମମତା ଓ କରୁଣାର ଗୋଟାଏ ତୀବ୍ର ଲହରୀ ଖେଳାଇ ହୋଇଯାଇ ଦେହସାରା ଚଞ୍ଚଳ କରିଦେଲା ତାକୁ ।

"ପାଭେଲ୍, ମୋ ପ୍ରିୟ ପାଭେଲ୍!" ତା' ହାତକୁ ମୁଠାଇ ଧରି କହିଲା ସେ, "ମୁଁ ତମକୁ ଭଲପାଏ, ତମେ ଶୁଣୁଛ ? ପ୍ରିୟତମ, ସେତେବେଳେ ତମେ ଚାଲିଯାଇଥିଲ । ଏବେ ଆମ ପାଖକୁ ଆସିଛ, ମାନେ ମୋ ପାଖକୁ । ଆଉ କଦାପି ଛାଡ଼ିବି ନାହିଁ ତମକୁ ମୋ ପାଖରୁ । ଆମ ଘରେ ତମର କିଛି ଅସୁବିଧା ହବ ନାହିଁ । ଶାନ୍ତିରେ, ନିଶ୍ଚିନ୍ତରେ ତମେ ଯେତେଦିନ ଇଚ୍ଛା ସେତେଦିନ ରହିପାରିବ ।"

ମୁଣ୍ଡ ହଲାଇଲା ପାଭେଲ୍ ।

"ଯଦି ସେମାନେ ମୋତେ ଏଇଠୁ ପାଆନ୍ତି ? ନାଁ ନାଁ, ମୁଁ ତମ ଘରେ ରହିପାରିବି ନାହିଁ ।"

ତୋନ୍ୟା ପାଭେଲ୍ ଆଙ୍ଗୁଠିଗୁଡ଼ାକୁ ଚାପିଦେଲା ଓ ଆଖି ଉଜ୍ଜ୍ୱଳ ହୋଇଉଠିଲା ତୋନ୍ୟାର ।

"ତମେ ଯଦି ମନାକର, ଆଉ କଦାପି ତମ ସାଙ୍ଗରେ କଥା କହିବି ନାହିଁ । ଆର୍ତେମ୍ ଏଠି ନାହିଁ, ତାକୁ ଜଗୁଆଳି ଘେରାଉ ଭିତରେ ଇଞ୍ଜିନ୍‌କୁ ନେଇ ଯାଇଛନ୍ତି । ସବୁ ରେଳବାଇ ଲୋକଙ୍କୁ କାମରେ ଲଗାଇଛନ୍ତି । ତମେ ଯିବ କୋଉଠିକି ?"

ତା'ର ଉଦ୍‌ବେଗ ବୁଝିପାରିଲା ପାଭେଲ୍ । ମାତ୍ର ପ୍ରାଣରୁ ବଳି ପ୍ରିୟ ହୋଇଉଠିଥିବା ଏ ଝିଅଟିକୁ କୌଣସି ଅସୁବିଧାରେ ପକାଇବ ନାହିଁ ବୋଲି ଚିନ୍ତା କରି ପଛେଇ ଯାଉଥିଲା ସେ । ସବାଶେଷରେ ତା'ର ଭୟଙ୍କର ପୁରୁଣା ଅନୁଭୂତି, କ୍ଳାନ୍ତ ଶ୍ରାନ୍ତ ଦେହମନ ଓ କ୍ଷୁଧାର ତାଡ଼ନା ତାକୁ ରାଜି କରାଇଦେଲା ।

ତୋନ୍ୟାର ରୁମ୍‌ରେ, ତା ସୋଫା ଉପରେ ସେ ବସିଥିଲା ବେଳେ, ରୋଷେଇଘରେ ମା ଆଉ ଝିଅଙ୍କ ଭିତରେ କଥାବାର୍ତ୍ତା ଚାଲିଥାଏ ।

"ମା, ମୋ ଘରେ କୋର୍ଚ୍ଚାଗିନ୍ ଅଛି । ତମର ମନେ ଅଛି ନାଁ, ତାକୁ ପଢ଼ାଉଥିଲି ମୁଁ । ତମଠୁ ମୁଁ କିଛି ଲୁଚେଇବାକୁ ଚାହୁଁ ନାହିଁ । ଜଣେ ବଲ୍‌ଶେଭିକ୍ ନାହାକୀକୁ ମୁକୁଳିଯିବାରେ ସାହାଯ୍ୟ କରିବା ଅଭିଯୋଗରେ ସେ ଗିରଫ ହୋଇଥିଲା । ସେ ଜେଲରୁ ଖସି ପଳାଇଆସିଛି । ଆଉ ଏବେ କୋଉଠିକି ଯିବାଭଳି ଜାଗା ତା'ର

ନାହିଁ ।” ଶେଷଆଡ଼କୁ ତା’ର କଣ୍ଠସ୍ୱର ଥରିଉଠିଲା । “ମା, ମୁଁ... ତାକୁ ଏଠି ରହିବା ପାଇଁ ଟିକେ ଅନୁମତି ଦିଅ, ମୋ ସୁନା ମା’ଟି ପରା !”

ଝିଅର ସଂବେଦନଶୀଳ ଆଖିକୁ ଚାହିଁଲେ ମା ।

“ହଉ ରହୁ, ମୋର ଆପତ୍ତି କ’ଣ ଅଛି ? କିନ୍ତୁ କୋଉଠି ରହିବ ସିଏ ?”

ଲଜ୍ଜାରେ ଆରକ୍ତ ହୋଇଗଲା ତୋନ୍ୟାର ମୁଖମଣ୍ଡଳ ।

“ମୋ ଘରେ ସୋଫାଟାରେ ଶୋଇପାରିବ ସିଏ”, କହିଲା ତୋନ୍ୟା, “ଏବେ ବାପାଙ୍କୁ ଏ ବିଷୟରେ କିଛି କହିବା ନାହିଁ ।”

ସିଧାସଳଖ ତା’ ଆଖିକୁ ଚାହିଁଲେ ମା ।

“ୟାରି କଥା ଏବେ ତୁ ଏମିତି ଚିନ୍ତା କରୁଥିଲୁ ?” ପଚାରିଲେ ସେ ।

“ହଁ ।”

“ସିଏ ତ କିନ୍ତୁ ପିଲାଟାଏ ଏକାବେଳେକେ ।”

ନିଜ ବ୍ଲାଉଜ୍‌ର ଧଡ଼ି ଆଙ୍ଗୁଠି ଅଗରେ ମୋଡ଼ୁମୋଡ଼ୁ ବିଚଳିତ ହୋଇ ତୋନ୍ୟା କହିଲା :

“ମୁଁ ଜାଣେ । ତଥାପି ସୁଦ୍ଧା, ସିଏ ଯଦି ପଳେଇ ଆସି ନ ଥାନ୍ତା, ତେବେ ସେ ପିଲାଟାଏ ହେଲେ ବି ସେମାନେ ତାକୁ ବଡ଼ ମଣିଷ ଭଳି ଗୁଳି କରିଦେଇ ଥାନ୍ତେ ।”

ୟେକାତେରିନା ମିଖାଇଲୋଭ୍‌ନା ତାଙ୍କ ଘରେ କୋର୍ଚ୍ଚାଗିନ୍‌ର ଉପସ୍ଥିତିରେ ସତରେ ଆତଙ୍କିତ ହୋଇ ଉଠିଥିଲେ । ତା’ର ଜେଲ୍ ଯିବା ଓ ଅଜଣା ଅଶୁଣା ଏ ଟୋକାଟା ସାଙ୍ଗରେ ତାଙ୍କ ଝିଅର ପ୍ରେମ, ତାଙ୍କୁ ବିଚଳିତ କରୁଥିଲା ।

କଥାଟା କିନ୍ତୁ ସ୍ଥିର ହୋଇଗଲା ବୋଲି ଭାବି ତୋନ୍ୟା ତା’ର ଅତିଥିର ସତ୍କାର କରିବା କଥା ଚିନ୍ତା କରିବାକୁ ଲାଗିଲା ।

“ତା’ର ଆଗେ ଗାଧୋଇବା ଦରକାର ମା ! ମୁଁ ଆଗ ଦେଖୁଛି ସେକଥା । କୋଇଲାଗଦାର ଝାଡ଼ୁଦାର ଭଳି ମଇଳା ହୋଇଛି ସେ । ଯୁଗଟାଏ ହେଲାଣି, ବୋଧେ ଗାଧୋଇ ନାହିଁ ସିଏ ।”

କହି, ଗାଧୋଇବା ପାଇଁ ପାଣି ଗରମ କରିବାକୁ ଓ ପାଭେଲ୍ ପାଇଁ କିଛି ପରିଷ୍କାର ଲୁଗାପଟା ଯୋଗାଡ଼ କରିବାକୁ ତରବର ହୋଇ ବାହାରିଗଲା ସିଏ । ସବୁ ଠିକ୍‌ଠାକ୍ ହୋଇଗଲା ପରେ ଘର ଭିତରକୁ ପଶିଯାଇ, ପାଭେଲ୍‌ର ବାହା ଧରି ଆଉ କିଛି ନ କହି ଗାଧୁଆ ଘର ଭିତରକୁ ପଶିଯିବାକୁ ଠେଲିଲା ସେ ।

“ତମ ଏ ଲୁଗାପଟା ପୂରାପୂରି ବଦଳ କରିଦେବାକୁ ହେବ । ହେଇ ନିଅ, ଏ ସ୍ୟୁଟ୍‌ଟା ପିନ୍ଧ । ତମ ଲୁଗାପଟାଗୁଡ଼ାକ କାଚିବାକୁ ହେବ । ସେଇ ସମୟ ଭିତରେ ତମେ ୟାକୁ ପିନ୍ଧିଥାଅ ।” ଚଉକି ଉପରେ ପଡ଼ିଥିବା ନୀଳରଙ୍ଗର ଗୋଟାଏ ଜାହାଜୀ କୁର୍ତ୍ତା, ଯେଉଁଥିରେ ଧଳା କଲର୍ ଲାଗିଛି, ଢୋଲା ଟ୍ରାଉଜର ଦେଖାଇଲା ତାକୁ ।

ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲା ପାଭେଲ୍ । ମୁରୁକି ମୁରୁକି ହସିଲା ତୋନ୍ୟା ।

"ଗୋଟାଏ ମୁଖାପିନ୍ଧା ବଲ୍‌ଡାନ୍‌ସରେ ଥରଟିଏ ପିନ୍ଧିଥିଲି ଏଇଟାକୁ", ସିଏ ବୁଝାଇଦେଲା । "ତମକୁ ଠିକ୍ ହବ ଏଇଟା । ଏବେ ଗଲ, ଚଟାପଟ ଗାଧୋଇପଡ଼ । ଆଉ ତମେ ଗାଧୋଇଲା ଭିତରେ ମୁଁ ତମ ପାଇଁ କିଛି ଖାଦ୍ୟ ବନ୍ଦୋବସ୍ତ କରେଁ ।"

ପାରେଲ୍‌କୁ ବାକ୍ୟାଳାପ କରିବାର ଆଉ କୌଣସି ସୁଯୋଗ ନ ଦେଇ କବାଟଟାକୁ ବାହାରପଟୁ ବନ୍ଦ କରି ବାହାରିଗଲା ସେ । ଅଗତ୍ୟା ଲୁଗାପଟା ଖୋଲି ଗାଧୁଆ କୁଣ୍ଡ ଭିତରକୁ ପଶିବା ଛଡ଼ା ଆଉ କୌଣସି ଗତି ନ ଥିଲା ପାରେଲ୍‌ର । ଘଣ୍ଟାକ ପରେ ମା, ଝିଅ ଓ ପାରେଲ୍ ତିନିଜଣଯାକ ରୋଷେଇଘରେ ବସି ଖାଉଥିଲେ ।

ଭୟାନକ ଭାବରେ କ୍ଷୁଧାର୍ତ୍ତ ଥିବାରୁ, କିଛି ଜାଣିବା ପୂର୍ବରୁ ପାରେଲ୍ ତିନିଥାଳି ଖାଦ୍ୟ ଖାଇଦେଲା । ପ୍ରଥମେ ସିଏ ୟେକାତେରିନା ମିଖାଇଲୋଭ୍‌ନାଙ୍କୁ ଲଜ୍ଜାଲଜ କରୁଥିଲା, ମାତ୍ର ତାଙ୍କର ସ୍ନେହପୂର୍ଣ୍ଣ ବ୍ୟବହାର ଦେଖି ଭୁଲିଗଲା ସେସବୁ କଥା ।

ଖାଇସାରିବା ପରେ ସେମାନେ ତୋନ୍ୟାର ଘର ଭିତରକୁ ଗଲେ ଓ ୟେକାତେରିନା ମିଖାଇଲୋଭ୍‌ନା ପାରେଲ୍‌କୁ ତା'ର ଅଭିଜ୍ଞତା ବର୍ଣ୍ଣନା କରିବା ପାଇଁ କହିଲେ ।

"ଏବେ କ'ଣ କରିବ ବୋଲି ଭାବିଛ ତମେ ?" ପଚାରିଲେ ତାକୁ, ପାରେଲ୍ ତା'ର ଅଭିଜ୍ଞତା ବଖାଣି ସାରିବା ପରେପରେ ।

ପ୍ରଶ୍ନଟା ଶୁଣି କ୍ଷଣକ ପାଇଁ କି ଉତ୍ତର ଦେବ ବୋଲି ଚିନ୍ତା କଲା ପାରେଲ୍, ତା'ପରେ କହିଲା, "ପ୍ରଥମେ ଆଗ ଆର୍ତେମ୍‌କୁ ଦେଖାକରିବା ଦରକାର, ତା'ପରେ ମୋତେ ଏଠାରୁ ପଳାଇବାକୁ ହେବ ।"

"କିନ୍ତୁ କେଉଁଠିକି ଯିବ ତମେ ?"

"ଭାବୁଛି ଉମାନ୍, ନ ହେଲେ କିଏଭ୍‌କୁ ଯାଇପାରିବି । ମୁଁ ବି ଏ ଯାଏଁ ଠିକ୍ କରିନିଁ କିଛି, କିନ୍ତୁ ଯେତେ ଶୀଘ୍ର ସମ୍ଭବ ସେତେ ଶୀଘ୍ର ପଳାଇବି ଏଠୁ ।"

ପାରେଲ୍ ନିଜକୁ ନିଜେ ବିଶ୍ୱାସ କରିପାରୁ ନ ଥିଲା ଯେ, ଏତେ ଶୀଘ୍ର ସମୁଦାୟ ଘଟଣା ପରିବର୍ତ୍ତିତ ହୋଇଯିବ ଏପରିଭାବରେ । ଏଇ ସକାଳୁ ମାତ୍ର ସେ ଅପରିଚ୍ଛନ୍ନ, ଗନ୍ଧିଆ, ଅନ୍ଧାରିଆ ସେଲ୍ ଭିତରେ ଥିଲା, ଆଉ ବର୍ତ୍ତମାନ ତୋନ୍ୟା ପାଖରେ ଆସି ବସିଛି । ସଫା ଲୁଗା ପିନ୍ଧିଛି ଏବଂ ସବୁଠାରୁ ବଡ଼ କଥା, ସେ ମୁକ୍ତ ହୋଇଯାଇଛି ।

"ଜୀବନ ସତେ କି ବିଚିତ୍ର ଉପାୟରେ ନିଜର ରଙ୍ଗ ବଦଳାଏ ।" ମନକୁ ମନ ଭାବିଲା ସେ । "ଗୋଟାଏ ମୁହୂର୍ତ୍ତରେ ଆକାଶ କଳା କିଟିକିଟି ରାତିଭଳି ଅନ୍ଧକାରାଚ୍ଛନ୍ନ ହୋଇଉଠିବ ଆଉ ପରମୁହୂର୍ତ୍ତରେ ଠିକ୍ ହସିହସି ଉଇଁଆସିବ ଚିକ୍‌ଚିକ୍ ଉଜ୍ଜ୍ୱଳ ସୂର୍ଯ୍ୟ ।" ପୁଣି ଥରେ ଗିରଫ ହୋଇଯିବାର ଆଶଙ୍କା ନ ଥିଲେ, ଏଇ ମୁହୂର୍ତ୍ତରେ ସାରା ଦୁନିଆର ସବୁଠାରୁ ସୁଖୀ ତରୁଣ ହୋଇପାରନ୍ତା ସେ ।

ସେ ବୁଝିଥିଲା, ସେ ଏ ବିରାଟ ନିସ୍ତବ୍ଧ ଘରଟା ଭିତରେ ମଧ୍ୟ ନିରାପଦ ନୁହଁ । ଯେଉଁଠାକୁ ହେଉପଛେ ଏଠାରୁ ତାକୁ ଚାଲିଯିବାକୁ ହେବ ।

ତଥାପି ସୁଦ୍ଧା ମନରେ ଏଠୁଁ ଚାଲିଯିବାର କଥାଟାକୁ ଗ୍ରହଣ କରିପାରୁ ନ ଥିଲା ସେ ।

ବୀର ଗାରିବଲ୍‌ଡିଙ୍କର ବୀରତ୍ୱପୂର୍ଣ୍ଣ କାହାଣୀ ପଢ଼ିବା ସତେ କି ରୋମାଞ୍ଚକର ! ସେ ଗାରିବଲ୍‌ଡିଙ୍କୁ ପ୍ରାଣଦେଇ ଈର୍ଷା କରୁଥିଲା । ମାତ୍ର ଏବେ ସେ ବୁଝିପାରୁଛି, କି ଦୁଃଖକଷ୍ଟପୂର୍ଣ୍ଣ ଜୀବନ ହୋଇଥିବ ଗାରିବଲ୍‌ଡିଙ୍କର ! ଜାଗାରୁ ଜାଗାକୁ ଲୁଚି ଲୁଚି ଘୂରି ବୁଲୁଥିବେ ସେ ଓ ପଛରେ ତାହାଙ୍କ କୁକୁର ଭଳି ଗୋଡ଼ାଉଥିବେ ଶତ୍ରୁ । ଆଉ ସିଏ ପାଭେଲ୍, ନିଜେ ମୋଟେ ଦିନ ସାତଟି କଷ୍ଟ, ଅତ୍ୟାଚାର ଭିତରେ ବନ୍ଦୀଶାଳରେ ରହି ତାକୁ ଲାଗୁଛି, ସତେ ଯେମିତି ବିତାଇଛି ପୂରା ଗୋଟାଏ ବର୍ଷ ।

"ନାଁ, ବୀର ହେବା ତା' ଜାତକରେ ଲେଖା ନାହିଁ ।"

ତା' ଆଡ଼କୁ ଝୁଙ୍କି ପଡ଼ି ତୋନ୍ୟା ପଚାରିଲା :

"କ'ଣ ଭାବୁଛ ଏତେ ?" ତା'ର ସୁନୀଳ ଢଳଢଳ ଆଖିରେ ଅତଳାନ୍ତ ଗଭୀରତା ।

"ତୋନ୍ୟା, ଖ୍ରୀଷ୍ଟିନାର କାହାଣୀ ଶୁଣିବ ?"

"ହଁ, କୁହ", ତୋନ୍ୟା ବାଧ୍ୟ କଲା ତାକୁ ।

ତା'ର ସହବନ୍ଦିନୀର କରୁଣ କାହାଣୀ ଶୁଣାଇଲା ତୋନ୍ୟାକୁ ।

ସେ କାହାଣୀ ଶେଷକଲାବେଳକୁ ନୀରବତାକୁ ବିଦୀର୍ଣ୍ଣ କରି ପିଟାଘଣ୍ଟାଟା ଶବ୍ଦ କରି ବାଜିଉଠିଲା ।

"ଆଉ ... ସେଇ ଶେଷଥର ପାଇଁ ଆମେ ତାକୁ ଦେଖିଛୁ", ଅତି କଷ୍ଟରେ ଅଶ୍ରୁସମ୍ବରଣ କରୁକରୁ କହିଲା ସେ । ଗଭୀର ବେଦନାରେ ମୁଣ୍ଡ ନୁଆଁଇ ବସିଲା ତୋନ୍ୟା ଏବଂ ଲୁହ ରୋଧ କରିବା ପାଇଁ ଓଠ କାମୁଡ଼ିଲା ସେ ।

ତାକୁ ଅନାଇ ପାଭେଲ୍ କହିଲା ଶେଷରେ, "ମୋତେ ଆଜି ରାତିରେ ଚାଲିଯିବାକୁ ପଡ଼ିବ ।"

"ନାଁ, ନାଁ, ଆଜି ରାତିରେ କେଉଁଠିକି ହେଲେ ଛାଡ଼ିଦେବି ନାହିଁ ମୁଁ ତମକୁ ।"

ନିଜର ଉଷ୍ମ କୋମଳ ଅଙ୍ଗୁଳିକୁ ପାଭେଲ୍‌ର ଅଲରା କେଶରାଶି ଭିତରେ ସଞ୍ଚାଳନ କଲା ସେ ।

"ମୋତେ ଟିକେ ସାହାଯ୍ୟ କର ତୋନ୍ୟା । ଜଣକୁ କାହାକୁ ଷ୍ଟେସନ୍‌କୁ ଯିବାକୁ ହେବ ଏବଂ ଆର୍ତେମ୍‌ର କ'ଣ ହେଲା ଦେଖିବାକୁ ହେବ ସେଠି । ଆଉ ସେରୋୟୋଝାକୁ ଗୋଟିଏ ଚିଠି ଦେଇଆସିବ । ଗୋଟାଏ କାଉବସାରେ ଗୋଟାଏ ରିଭଲଭର ଲୁଚାଇ ରହିଛି ମୁଁ । ସେଠିକି ତ ମୁଁ ଯାଇପାରିବି ନାହିଁ । ମାତ୍ର ସେରୋୟୋଝା ସେଇଟାକୁ ସେଠୁ ଆଣିପାରିବ । ମୋ ପାଇଁ ଏତକ କରିପାରିବ ତମେ ?"

ଉଠି ଛିଡ଼ା ହେଲା ତୋନ୍ୟା ।

"ମୁଁ ସିଧା ଲିଜା ସୁଖାର୍କୋ ପାଖକୁ ଯାଉଛି । ସେଠୁଁ ସିଏ ଆଉ ମୁଁ ଏକାଠି ମିଶି ଷ୍ଟେସନ୍‌କୁ ଯିବୁ । ସେରୋୟୋଝା ପାଖକୁ କ'ଣ ଲେଖିବାର କଥା ଲେଖ ତମେ । କେଉଠି ରୁହେ ସେ ? ସିଏ ଯଦି ପଚାରେ ତମେ କେଉଠି ଅଛ, କ'ଣ କରୁଛ, ସବୁ କହିବି ତ ମୁଁ ?"

ଉତ୍ତର ଦେବା ପୂର୍ବରୁ ଟିକେ ଚିନ୍ତା କଲା ପାଭେଲ୍ ।

"ତାକୁ କହିବ ଯେ, ଆଜି ରାତିରେ, ତମର ଏଇ ବଗିଗାଡ଼ି ରିଭଲଭରଟା ନେଇଆସିବ ।"

ତୋନ୍ୟା ଅନେକ ଡେରିରେ ଫେରିଲା । ଗଭୀର ନିଦରେ ଶୋଇଯାଇଥିଲା ପାଭେଲ୍ । ତା'ର ସ୍ପର୍ଶରେ ପାଭେଲ୍‌ର ନିଦ ଭାଙ୍ଗି ଗଲା ଓ ଆଖି ମେଲାଇ ସେ ଦେଖିଲା, ଖୁସି ଉକୁଟାଇ ହସ ହସ ମୁହଁରେ ତା' ଆଗରେ ଛିଡ଼ା ହୋଇଛି ତୋନ୍ୟା ।

"ଆର୍ତେମ୍ ଆଉଟିକେ ପରେ ଆସିବ ଏଠିକି । ଏଇ ସାଙ୍ଗେ ସାଙ୍ଗେ ଫେରିଛି ସେ । ଲିଜାର ବାପା ତା' ପାଇଁ ଜାମିନ୍ ହେବେ ବୋଲି ରାଜି ହୋଇଛନ୍ତି, ଆଉ ତାକୁ ଘଣ୍ଟାକ ପାଇଁ ଛାଡ଼ିବେ ସେମାନେ । ଷ୍ଟେସନ୍‌ରେ ଇଞ୍ଜିନ୍‌ଟା ଛିଡ଼ାହୋଇଛି । ତମେ ଏଠି ଅଛ ବୋଲି ମୁଁ ତାକୁ କହିପାରିଲି ନାହିଁ । କେବଳ କହିଛି ଯେ, ତାକୁ ଗୋଟାଏ ଜରୁରୀ କଥା କହିବାକୁ ଅଛି ମୋର । ହେଇ ଆସିଲାଣି ତ ସିଏ !"

କବାଟ ଫିଟାଇବା ପାଇଁ ଦୌଡ଼ିଗଲା ତୋନ୍ୟା । ନିଜ ଆଖିକୁ ବିଶ୍ୱାସ ନ କରିପାରି ହତବାକ ହୋଇ ଦୁଆରମୁହଁରେ ସେମିତି ଛିଡ଼ା ହୋଇ ରହିଲା ଆର୍ତେମ୍ । ଲାଇବ୍ରେରୀ ଘରେ ଟାଇଫସ୍ ରୋଗରେ ପଡ଼ିଥିବା ତା'ର ବାପା କାଳେ ତାଙ୍କ କଥାବାର୍ତ୍ତା ସବୁ ଶୁଣିପାରିବେ ବୋଲି ତା'ପଛରେ କବାଟଟାକୁ ବନ୍ଦ କରିଦେଲା ତୋନ୍ୟା ।

ଆଉ ଗୋଟିଏ ମୁହୂର୍ତ୍ତ ! ତା'ପରେ ଆର୍ତେମ୍ ପାଭେଲ୍‌କୁ ଗାଢ଼ ଆଲିଙ୍ଗନ କରି ତା' ହାତଗୋଡ଼ ଭାଙ୍ଗି ଦେବାର ଉପକ୍ରମ କଲା ।

"ପାଭେଲ୍ ! ମୋ କୁନିଭାଇଟା ... ପାଭେଲ୍ !"

ଏହା ହିଁ ସ୍ଥିର ହେଲା : ତା' ପରଦିନ ପାଭେଲ୍ ଏଠା ଛାଡ଼ି ଚାଲିଯିବ । କାଜାଟିନ୍ ଆଡ଼କୁ ଯାଉଥିବା ଏକ ଟ୍ରେନ୍‌ରେ ବ୍ରୁଝାକ୍ ତାକୁ ନେଇଯିବା ପାଇଁ ବନ୍ଦୋବସ୍ତ କରିବ ଆର୍ତେମ୍ ।

ଏତେଦିନର ଅନିଶ୍ଚିତତା ଓ ଉଦ୍‌ବେଗ ପରେ ନିଜର ସାନ ଭାଇକୁ ଫେରିପାଇ ସ୍ୱାଭାବିକ ଭାବରେ ଗମ୍ଭୀର ପ୍ରକୃତିର ଆର୍ତେମ୍ ମଧ୍ୟ ତା' ପାଖରେ ବସି ଖୁସିରେ, ଆନନ୍ଦରେ ଉଦ୍‌ବେଳିତ ହୋଇଉଠୁଥାଏ ।

"ତା'ହେଲେ ଏଇ କଥା ହେଲା । କାଲି ସକାଳ ପାଞ୍ଚଟାବେଳକୁ ତୁ ଯାଇ ପହଞ୍ଚିବୁ ଷ୍ଟେସନ୍ ପାଖରେ । ସେମାନେ କୋଇଲା ଲଦିଲାବେଳେ ତୁ ଖସିଯାଇ ପାରିବୁ ଭିତରକୁ । ତୋ ସାଙ୍ଗେ ବସି ଗପିବାକୁ ଭାରୀ ଇଚ୍ଛା ହଉଛି ମୋର । ହେଲେ, ମୋତେ ପୁଣି ଫେରିବାକୁ ପଡ଼ିବ, ହଉ ... କାଲି ତୋ ସାଙ୍ଗେ ଦେଖାହବ । ଏଠି ଜର୍ମାନ୍‌ମାନେ ଥିଲାବେଳେ ଯେମିତି ଚଳୁଥିଲେ, ସେମିତି ଏବେ ଆମକୁ ଜଣେ ଜଣେ ସଶସ୍ତ୍ର ପ୍ରହରୀ ଜଗୁଥିବା ଅବସ୍ଥାରେ ଆମେସବୁ ଯା'ଆସ କରୁଛୁ ।"

ସାନଭାଇ ପାଖରୁ ବିଦାୟ ନେଇ ଆର୍ତେମ୍ ଫେରିଗଲା ।

ସନ୍ଧ୍ୟାର ଅନ୍ଧକାର ଘେରିଆସିଲା ପରେ ପରେ ସେର୍ଗେଇ ରିଭଲଭରଟା ନେଇଆସି

ପହଞ୍ଚିବା କଥା । ଅପେକ୍ଷା କରିକରି ଅନ୍ଧାର ଘରଟାର ଏପଟରୁ ସେପଟ ଯାଏ ପଦଗ୍ଭରଣ କଲା ପାଭେଲ୍ । ଚୋନ୍ୟା ଆଉ ତା' ମା ଚୋନ୍ୟା ବାପାଙ୍କ ପାଖରେ ଥିଲେ ।

ବଗିଚ୍ଟା ଅନ୍ଧକାରରେ ଆଚ୍ଛାଦିତ ହୋଇ ଆସିଲାବେଳକୁ ବାଡ଼ ପାଖରେ ସେର୍ଗେଇକୁ ସେଇ ଅନ୍ଧାରରେ ଭେଟିଲା ପାଭେଲ୍ । ଦୁଇ ବନ୍ଧୁ ପରସ୍ପରର ତାତିଲା ହାତ ଚ୍ଚିପିଧରିଲେ ଜୋର୍‌ରେ । ଭାଲ୍ୟାକୁ ସାଙ୍ଗରେ ଆଣିଥିଲା ସେର୍ଗେଇ । ନୀଚ ଗଳାରେ ଗପସପ କଲେ ସେମାନେ, "ହେ, ବନ୍ଧୁକଟା ଆଣିପାରିଲି ନାହିଁ ମୁଁ", ସେର୍ଗେଇ କହିଲା, "ତମ ଘର ପଛପାଖ ଅଗଣାଟାରେ ପେଟ୍‌ଲ୍ୟୁରା ଲୋକ ଭର୍ତ୍ତି ହୋଇଛନ୍ତି । ଘର ଚ୍ଚରିପଟଯାକ ଗାଡ଼ିଗୁଡ଼ାକ ଗଦା ହୋଇଛି । ସେଠି ବସି ଧୁନୀ ଜଳାଇଛନ୍ତି ଗୋଟାଏ । ସେଇଥି ପାଇଁ ମୁଁ ଗଛ ଉପରେ ଚଢ଼ି ବନ୍ଧୁକଟା ଆଣିପାରିଲି ନାହିଁ । ଭାରୀ ଖରାପ ଲାଗୁଛି ରେ!" ଭାଙ୍ଗି ପଡ଼ି କହିଲା ସେର୍ଗେଇ ।

"କ'ଣ ଅଛି ସେଥିରେ?" ତାକୁ ବୁଝାଇ କହିଲା ପାଭେଲ୍, "ଭଗବାନ ବୋଧହୁଏ ଯାହା କରନ୍ତି, ମଙ୍ଗଳ ପାଇଁ । ନ ହେଲେ ବୋଧହୁଏ ଖରାପ ହୋଇଥାଆନ୍ତା! କହିଲୁ, ଯଦି ବନ୍ଧୁକଟା ସହିତ ଧରାପଡ଼ନ୍ତି କୋଉଠି? ସିଏ ଯାହା ହଉ ସେଇଟାକୁ ଯେମିତି ନିଶ୍ଚୟ ନେଇଆସୁ ତୁ ।"

ପାଭେଲ୍ ପାଖକୁ ଲାଗିଆସିଲା ଭାଲ୍ୟା ।

"କେବେ ଯାଉଛ ତମେ?"

"କାଲି ସକାଳୁ ।"

"କେମିତି ଆସିଲ? ଆମକୁ କୁହ ସବୁ ।"

ଫୁସ୍‌ଫୁସ୍ କରି ଯଥାଶୀଘ୍ର ତାଙ୍କୁ ସାରା କାହାଣୀଟା କହିଲା ପାଭେଲ୍ । ତା'ପରେ ତାଙ୍କଠାରୁ ବିଦାୟ ମାଗିଲା । ସଦାବେଳେ ଖୁସିବାସି ଥିବା ସେର୍ଗେଇ ଗମ୍ଭୀର ଓ ନୀରବ ଥିଲା ।

"ତୋର ମଙ୍ଗଳ ହେଉ ପାଭେଲ୍! ଆମକୁ ଭୁଲିବୁ ନାହିଁ କିନ୍ତୁ!" ବାଷ୍ପରୁଦ୍ଧ କଣ୍ଠରେ କହିଲା ଭାଲ୍ୟା ।

ଏତିକିରେ ବିଦାୟ ନେଲେ ସେମାନେ ।

ମୁହୂର୍ତ୍ତକ ପରେ ଅନ୍ଧାର ସେମାନଙ୍କୁ ଗ୍ରାସ କରିନେଲା ।

ଘରଭିତରେ ସମ୍ପୂର୍ଣ୍ଣ ନୀରବତା ବିରାଜୁଥିଲା । ଘଡ଼ିର ଟିକ୍‌ଟିକ୍ ଶବ୍ଦହିଁ କେବଳ ନୀରବତା ଭଗ୍ନ କରୁଥିଲା ।

ଘରେ ଶୋଉଥିବା ଦୁହିଁଙ୍କ ଆଖିକୁ ସେ ରାତିରେ ନିଦ ଆସିଲା ନାହିଁ । ଆଉ ଛଅଘଣ୍ଟା ମାତ୍ର ପରେ ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ ହେବେ ହୁଏତ ସାରା ଜୀବନ ପାଇଁ, ଆଉ କେବେହେଲେ ମିଳନ ହେବ ନାହିଁ! ସେଥିରେ ସେମାନେ ଶୁଅନ୍ତେ କିପରି? ସେହି ଅଳ୍ପ ସମୟ ଭିତରେ, ସେମାନଙ୍କର ମନ ଭିତରେ ଖେଳିଯାଇଥିବା ଲକ୍ଷ ଲକ୍ଷ ଅବ୍ୟକ୍ତ ଚିନ୍ତାକୁ କ'ଣ ପ୍ରକାଶ କରିବା ସମ୍ଭବ?

ଯୌବନ ! ସୁନ୍ଦର ଯୌବନ ଯେତେବେଳେ ଅଜ୍ଞାତ , ଅବର୍ଣ୍ଣନୀୟ କାମନାର ରୂପନେଇ ଆସେ, କେବଳ ଶିରାପ୍ରଶିରାର ଦ୍ରୁତ ସ୍ପନ୍ଦନରେ ହିଁ ଅନୁଭୂତ ହୁଏ । ଅକସ୍ମାତ୍ ଅଲକ୍ଷ୍ୟରେ ଯଦି କେବେ ତମ ହାତ ବାଜିଯାଏ ପ୍ରେୟସୀର ବକ୍ଷୋଜରେ । ଛାତି ଥରିଉଠେ ଭୟ ପାଇଁ , ସ୍ଖଳନ ପାଇଁ । ଆଉ ଯେତେବେଳେ ଯୌବନର ପବିତ୍ରତମ ମୁହୂର୍ତ୍ତରେ ନିଜକୁ ନିଜେ ଜଗିରଖ , ଶେଷ ସ୍ତରକୁ ଓହ୍ଲାଇଯିବାରୁ ନିବୃତ୍ତ ହୁଅ ! ସେତେବେଳେ ପ୍ରେୟସୀର ବାହୁବନ୍ଧନରେ ବାନ୍ଧି ହୋଇ ତା'ର ଓଠରୁ ଉଷ୍ଣ ଚୁମ୍ବନ ଗ୍ରହଣ କରିବାଠାରୁ ମଧୁରତର ସ୍ମୃତି ଆଉ କିଛି ଥାଇପାରେ ଏ ଦୁନିଆରେ ?

ସେମାନଙ୍କର ବନ୍ଧୁତ୍ୱ ଭିତରେ ଏହାହିଁ ତାଙ୍କର ଦ୍ୱିତୀୟ ଚୁମ୍ବନ । ଆଜୀବନ କେବଳ ଆଘାତ ଠୋକର ଖାଇଥିବା ଓ ମା' ବ୍ୟତୀତ ଆଉ କାହାରି ସ୍ନେହ ପାଇ ନ ଥିବା ପାଭେଲ୍‌ର ଅନ୍ତରର ଗଭୀରତମ ପ୍ରଦେଶ ଥରିଉଠିଲା ସେ ଚୁମ୍ବନରେ ।

ଜୀବନ ତା'ର ଅଭିଜ୍ଞତାରେ ଆଣିଛି ମଣିଷର ପାଶବିକ ରୂପଟି । ଜୀବନ ଯେ ଏତେ ସୁନ୍ଦର , ମଧୁମୟ ଓ ଗୌରବୋଜ୍ଜ୍ୱଳ ଏହା ଅଜ୍ଞାତ ଥିଲା ପାଭେଲ୍ ନିକଟରେ । ଏହି ଝିଅଟି ଏବେ ତାକୁ ଶିଖାଇଲା , ସୁଖର ଅର୍ଥ କ'ଣ ହୋଇପାରେ ।

ତୋନ୍ୟାର ଗହଳ କେଶରାଶିର ସୁଗନ୍ଧ ସେ ମନଭରି ଆଘ୍ରାଣ କଲା । ଅନ୍ଧାର ଭିତରେ ସତେ ଯେମିତି ଦେଖିପାରିଲା ତା'ର କଳା କଳା ଆଖି ଦିଓଟିକୁ ।

"ମୁଁ ତମକୁ ପ୍ରାଣଦେଇ କେତେବେଶି ଭଲପାଏ ତୋନ୍ୟା ! ମୁଁ ତାହା କହିପାରିବି ନାହିଁ , କାରଣ କେମିତି ପ୍ରକାଶ କରାଯାଏ ତାହା ମୋତେ ଜଣା ନାହିଁ ।"

ମୁଣ୍ଡ ଘୂରିଯାଉଥିଲା ତା'ର । ସ୍ପର୍ଶକାତର ଦେହଟି ତା'ର କି କୋମଳ ! ସତେକି ପାଭେଲ୍‌କୁ ଗ୍ରହଣ କରିନେବାକୁ ସମ୍ପୂର୍ଣ୍ଣ ପ୍ରସ୍ତୁତ ଥିଲା ତା'ର ସେ ତନୁବଲ୍ଲରୀଟି ! ମାତ୍ର ଯୌବନର ବନ୍ଧୁତ୍ୱ ଏକ ପବିତ୍ର ବିଶ୍ୱାସ । ତାହା ଅଲଘନୀୟ ।

"ତୋନ୍ୟା ! ଏସବୁ ଶେଷ ହେଲା ପରେ ମୁଁ ମେକାନିକ୍‌ଟିଏ ହୋଇ ପାରିବି । ତମେ ସତେ ଯଦି ମୋତେ ଚାହୁଁ ଥାଅ ଆଉ ମୋ ସାଙ୍ଗେ ଖେଳୁ ନ ଥାଅ ମୁଁ ତମକୁ ବିବାହ କରିବି । କେବେ ତମକୁ ଆଘାତ କରିବି ନାହିଁ । ପ୍ରତିଜ୍ଞା କରୁଛି , ତମକୁ ଆଘାତ ଲାଗିଲାଭଳି କୌଣସି କାମ କରିବି ନାହିଁ ।"

ପରସ୍ପରର କୋଳରେ ସାରାରାତି କାଳେ ଶୋଇଯିବେ ଓ ସକାଳୁ ମା' ଆସି ତାଙ୍କୁ ସେମିତି ଦେଖି ଖରାପ ଭାବିବେ ଏଇ ଭୟରେ , ପରସ୍ପରଠାରୁ ଅଲଗା ହେଲେ ଦୁହେଁ ।

ପରସ୍ପରକୁ ଜୀବନରେ କେବେ ଭୁଲିବେ ନାହିଁ ବୋଲି ଦୃଢ଼ ପ୍ରତିଜ୍ଞା କରିସାରି ଗାଢ଼ ନିଦରେ ସେମାନେ ଶୋଇଲାବେଳକୁ ଭୋର ହୋଇ ଆସୁଥାଏ ।

ୟେକାତେରିନା ମିଖାଇଲୋଭ୍‌ନା ପାଭେଲ୍‌କୁ ସଅଳ ସଅଳ ଉଠାଇଦେଲେ । ବିଛଣାରୁ ସେ ତରବରରେ ଉଠିପଡ଼ିଲା । ଗାଧୁଆ ଘରେ ପଶି ନିଜର ଜାମାକୁର୍ତ୍ତା ଓ ବୁଟ୍ ଏବଂ ତା' ଉପରେ ଦୋଲିନ୍‌ନିକ୍‌ର ଜ୍ୟାକେଟ୍‌ଟାକୁ ସେ ପିନ୍ଧୁଥିଲା ବେଳେ ୟେକାତେରିନା ମିଖାଇଲୋଭ୍‌ନା ତୋନ୍ୟାକୁ ଉଠାଇଦେଲେ ।

କୁହୁଡ଼ିଘେରା ପାହାନ୍ତିଆ ସକାଳରେ ସେମାନେ ଷ୍ଟେସନ୍‌କୁ ଗଲେ । କାଠ ଗଡ଼ଗୁଡ଼ାକ ଗଦା ହୋଇଥିବା ଅଗଣାରେ ସେମାନେ ପଛ ବାଟ ଦେଇ ପହଞ୍ଚିଲେ ବେଳକୁ ଅଧୈର୍ଯ୍ୟ ହୋଇ ଆର୍ତେମ୍ ଅପେକ୍ଷା କରିଥାଏ ସେଠି ।

କଳା ଧୂଆଁ ଉଦ୍‌ଗିରଣ କରି ଗୋଟାଏ ଶକ୍ତିଶାଳୀ ରେଳଇଞ୍ଜିନ୍ ଧୀରେ ଧୀରେ ଲାଇନ୍ ଉପରକୁ ଆସିଲା । ଉପରୁ ଗର୍ଜିଲା ବ୍ରୁଝାକ୍ ।

ତରବରିଆରେ ଆର୍ତେମ୍ ଓ ତୋନ୍ୟା ନିକଟରୁ ବିଦାୟ ମାଗି, ଇଞ୍ଜିନ୍‌ର ଲୁହା ରେଲିଂ ଧରି ଉପରକୁ ଚଢ଼ିଗଲା ସେ । ପଛକୁ ଅନାଇ ଦେଖିଲା ତା'ର ପରିଚିତ ଲୋକମାନଙ୍କୁ । ଡେଙ୍ଗା ଆର୍ତେମ୍ ଓ ତା' ପାଖରେ ଛିଡ଼ାହୋଇଛି ସୁନ୍ଦରୀ ତୋନ୍ୟା ।

କ୍ରୁଦ୍ଧ ପବନ ହଲାଉଥିବା ତା'ର ବ୍ଲାଉଜ୍‌ଟାକୁ ଚିରିଦେଲା ଓ ତା'ର ବାଦାମୀ କେଶରାଶିକୁ ଇତସ୍ତତଃ କରିଦେଲା ।

ତୋନ୍ୟା ଆଡ଼କୁ କଣେଇ ଚାହିଁଲା ଆର୍ତେମ୍ ଏବଂ ତା'ର ଆଖିକୋଣରୁ ବହିଆସୁଥିବା ଦୁଇଧାର ଲୁହକୁ ଦେଖି ଦୀର୍ଘଶ୍ୱାସ ପକାଇ ସେ କହିଲା ମନକୁ ମନ :

"ଆରେ, ଏମାନଙ୍କ ଭିତରେ କିଛି ନାହିଁ ବୋଲି ମୁଁ ବୋକା ଭାବୁଥିଲି ଆଉ ମୁଁ ଭାବୁଛି କ'ଣ ନା, ପାଭେଲ୍‌ଟା ଏବେ ବି ଛୋଟିଆ ଛୁଆଟାଏ !"

ରେଳଗାଡ଼ିଟା ମୋଡ଼ ବଙ୍କେଇ ଆଖି ଆଗରୁ ଅଦୃଶ୍ୟ ହୋଇଗଲା ପରେ, ତୋନ୍ୟା ଆଡ଼କୁ ବୁଲିଯାଇ ସେ କହିଲା :

"ହଉ, ଆମେ ବନ୍ଧୁ ହୋଇପାରିବା ତ !"

ତୋନ୍ୟାର କୁନି କୁନି ହାତ ତା'ର ବିରାଟ ପଞ୍ଝା ଭିତରେ ଲୁଚିଗଲା କୋଉଠି ।

ବହୁ ଦୂରରୁ, ଗତି ବଢ଼ାଉଥିବା ଟ୍ରେନ୍‌ର ହୁଇସିଲ ତୀବ୍ରଭାବରେ ଶୁଭିଲା ।

# ସପ୍ତମ ପରିଚ୍ଛେଦ

ପୂରା ଗୋଟାଏ ସପ୍ତାହ ଧରି ସାରା ସହରଟା, ଘରିକଡ଼ରେ କଣ୍ଟା ତାରର ଘେରାବାଡ଼ ଭିତରେ ଓ ଘରିକଡ଼ରେ ଖୋଳା ହୋଇଥିବା ଟ୍ରେଞ୍ଚ ଭିତରେ ରାତିରେ ଶୋଇଯାଏ ଓ ସକାଳୁ ତା'ର ପହଡ଼ ଭାଙ୍ଗେ ବନ୍ଧୁକ ଓ କମାଣ ଗର୍ଜନରେ । ମଝିରେ ମଝିରେ କେତେ ଘଣ୍ଟା ପାଇଁ ହୁଏତ ଏ କମାଣ ନିନାଦ ବନ୍ଦ ହୋଇଯାଏ ଓ ସେତେବେଳେ ମଧ୍ୟ ଏ ନୀରବତାକୁ ବିଦୀର୍ଣ୍ଣ କରି ମଝିରେ ମଝିରେ ଗୋଳିଗୁଳାର ଧ୍ୱନି ଭାସିଆସେ ସୀମାନ୍ତର ଫାଣ୍ଡିଗୁଡ଼ିକରୁ । କାରଣ ସେଗୁଡ଼ିକରେ ମଧ୍ୟ ଯୁଦ୍ଧ ଲାଗିରହିଥାଏ । ଭୋରରୁ ଲୋକେ ରେଳଷ୍ଟେସନ୍‌ରେ ବ୍ୟାଟେରୀ ଘରିକଡ଼ରେ ବ୍ୟସ୍ତ ରହନ୍ତି । କମାଣର କଳା ମୁହଁଟା ଭୟଙ୍କର ଭାବରେ ଗର୍ଜନ କରିଉଠେ ଓ ଲୋକେ ଧାଇଁଯାଆନ୍ତି ଅନ୍ୟ ଅଂଶଟିରେ ଲୁହା ଓ ବାରୁଦ ଭରିଦେବା ପାଇଁ । କମାଣ ବାହିନୀର ଲୋକଟିର ଥରେ କମାଣଛଡ଼ଟା

ଟାଣିଆଣିବା ମାତ୍ରେ, ପାଦତଳେ ଭୂଇଁ କମ୍ପିଯାଏ, ଦଳୁକିଉଠେ କମାଣଟାର ଗର୍ଜ୍ଜନରେ । ସହରର ତିନି ଫର୍ଲଙ୍ଗ ଦୂରରେ, ଲାଲ ଫୌଜଙ୍କ ଦ୍ୱାରା ଅଧିକୃତ ଗାଁଟା ଉପରେ ଗୋଳା ବର୍ଷିଲାଗିଥାଏ, ଅବିଶ୍ରାନ୍ତ ଭାବରେ ଗର୍ଜ୍ଜନ କରି ଓ ଅନ୍ୟାନ୍ୟ ସବୁ ଶବ୍ଦକୁ ଲୁଚେଇଦେଇ, ଥରକୁ ଥର ଝଲକା ଝଲକା ମାଟି ଉପରକୁ ଧସେଇ ଦେଇ ।

ଗାଁ ମଝିରେ ଠିକ୍ ଏକ ମୁଣ୍ଡିଆ ଉପରେ ଅବସ୍ଥିତ ପୁରାତନ ପୋଲଣ୍ଡୀୟ ମଠର ପଡ଼ିଆ ଭିତରେ ଲାଲ ଫୌଜଙ୍କର କମାଣ ବ୍ୟାଟେରୀ ବସିଥାଏ ।

ବ୍ୟାଟେରୀର ମିଲିଟାରୀ ଅଧ୍ୟକ୍ଷ, କମ୍ରେଡ୍ ଜାମୋସ୍କିନ୍, ଆଣ୍ଠେଇପଡ଼ି ଉଠିଲେ । ଗୋଟିଏ କମାଣର ଶେଷ ପାଖଟା ଉପରେ ମୁଣ୍ଡ ଦେଇ ଶୋଇଥିଲେ ସେ । ଏବେ ଓଜନଦାର 'ମାଉଜର' ବନ୍ଧୁକ ଝୁଲୁଥିବା ତାଙ୍କ କମରପଟିଟାକୁ ଅଣ୍ଟାରେ ସେ କଷିଲେ । ଗୁଳିର ବେଗକୁ କାନପାତି ରହିଲେ, ପଡ଼ିଲା ପରେ କେଉଁଠି ଗର୍ଜ୍ଜନ କରିବ ବୋଲି ଅପେକ୍ଷା କରି । ତା'ପରେ ସମଗ୍ର ଅଗଣାଟିରେ ତାଙ୍କର ଦୃଢ଼ସ୍ୱର ପ୍ରତିଧ୍ୱନିତ ହୋଇ ଉଠିଲା :

"ଏଥର ଉଠିପଡ଼ିବା ବେଳ ହେଲା କମ୍ରେଡ୍‌ଗଣ !"

କମାଣ ବାହିନୀର ସମସ୍ତେ ଯେଝାର କମାଣ କଡ଼େକଡ଼େ ଶୋଇଥିଲେ । ଅଧ୍ୟକ୍ଷଙ୍କ ସଙ୍ଗେ ସଙ୍ଗେ, ତାଙ୍କରି ଭଳି ତୁରନ୍ତ ସେମାନେ ମଧ୍ୟ ଉଠିପଡ଼ିଲେ । ସିଦୋର୍‌ଚୁକ୍ କିନ୍ତୁ ନ ଉଠି, ବଡ଼ ବ୍ୟସ୍ତ ମନରେ, ଧୀରେ ଧୀରେ ନିଜର ନିଦ ମଳମଳ ଆଖିଟେକି ଗ୍ରହିଁଲା ।

"ଓଃ ଶଳା, ଦିନ ହୋଇଗଲା ଆଉ ପୁଣି ସେଗୁଡ଼ାକ ଲାଗିଗଲେଣି । ଓଃ, ଶଳା ବେଧୁଆଗୁଡ଼ାକ, କାହିଁକି ଏମିତି ହଉଚ ରେ ତମେ ?"

ଜାମୋସ୍କିନ୍ ହସିଲେ ।

"ଅତି ଅସାମାଜିକ ପ୍ରାଣୀ ସେମାନେ, ସିଦୋର୍‌ଚୁକ୍... ସେଇଆ ! ତମେ ଟିକେ ଶୋଇବାକୁ ଗ୍ରହୁଁଛ କି ନଗ୍ରହୁଁଛ ସେ କଥା ଜାଣୁ ନାହାନ୍ତି ସେମାନେ ।"

କମାଣଗ୍ରଳକ ଏଥର ବିକ୍ଷୁବ୍ଧ ମନରେ ଉଠାଇଲା ନିଜକୁ ।

କେତୋଟି ମାତ୍ର ମିନିଟ୍ ପରେ, ମଠ ଅଗଣାରେ ସ୍ଥାପିତ ହୋଇଥିବା କମାଣଗୁଡ଼ିକ ଗର୍ଜ୍ଜନ କରିଉଠିଲେ ଏବଂ ସହର ଉପରେ ଗୋଳା ବିଛାଇ ହୋଇଗଲା ।

ଚିନିକଳର ଉଚ୍ଚ ପାଉଁଶଗଦା ଉପରେ କରା ହୋଇଥିବା ଗୋଟାଏ କାଠର ମଞ୍ଚଉପରେ ଜଣେ ଟେଲିଫୋନ୍ ବାର୍ତ୍ତା ପ୍ରେରଣକାରୀ ଓ ଜଣେ ପେଟ୍‌ଲ୍ୟୁରା ଅଫିସର ବସିଥିଲେ । ଚିମ୍ନି ଭିତରେ ଥିବା ଲୁହା ସିଡ଼ିଦେଇ ସେମାନେ ଉପରକୁ ଚଢ଼ିଥିଲେ ।

ଏହି ସୁବିଧାଜନକ ସ୍ଥାନରୁ ସେମାନେ କମାଣ ବାହିନୀର ଗୋଳିଗୁଳା ବର୍ଷଣକୁ ପରିଗ୍ରଳନା କରୁଥିଲେ । ସେମାନେ ସେମାନଙ୍କର ଦୂରବୀକ୍ଷଣ ସାହାଯ୍ୟରେ ସହର ଉପରେ ଆକ୍ରମଣ ଚଳାଇଥିବା ଲାଲଫୌଜଙ୍କର ପ୍ରତିଟି ଗତିବିଧି ଲକ୍ଷ୍ୟ କରୁଥାଆନ୍ତି । ବିଶେଷକରି ଆଜି ବଲ୍‌ଶେଭିକ୍‌ମାନେ ଭୟଙ୍କର ଭାବରେ ଜାଗ୍ରତ ହୋଇଉଠିଛନ୍ତି । ଅସ୍ତ୍ରଶସ୍ତ୍ରବାହୀ

ରେଳଗାଡ଼ିଟିଏ ଧୀରେ ଧୀରେ ପୋଦୋଇସି ଷ୍ଟେସନ୍‌ରେ ଅଟକୁଥାଏ । ତା' ଆରପଟେ ପଦାତିକ ବାହିନୀର ଆକ୍ରମଣର କ୍ଷେତ୍ର ଦେଖାଯାଉଥାଏ । ଆସିଲାବେଳେ ଧାରାବାହିକଭାବେ ଗୁଳିମାଡ଼ ଖାଇ ଖାଇ ଆସୁଥାଏ ରେଳଟି । ଲାଲ ଫୌଜ ଅନେକ ଥର ଚେଷ୍ଟା କରିଥିଲେ ତୋଫାନି ଆକ୍ରମଣ ଚଳାଇ ସହର ଦଖଲ କରିନେବା ପାଇଁ । ମାତ୍ର ପେଟ୍‌ଲ୍ୟୁରା ବାହିନୀ ପ୍ରତ୍ୟେକ ଘାଟୀରେ ଟ୍ରେଞ୍ଚ ଖୋଳି ଜଗି ରହିଛନ୍ତି । ଟ୍ରେଞ୍ଚଗୁଡ଼ିକ ଭିତରୁ ନିଆଁ ଖଣ୍ଡମାନ ସତେ ଯେମିତି ଉପରକୁ ଛୁଟେ, ଆକାଶ ବତାସ ପ୍ରକମ୍ପିତ କରି । ଭନ୍ଦର ଗର୍ଜନ ଶୁଭେ—ଆକ୍ରମଣ ସମୟରେ ଏହି ଗର୍ଜନର ନିନାଦ ସର୍ବୋଚ୍ଚ ସ୍ତରକୁ ଗତିକରେ । ଗୋଳିଗୁଳାର ଏ ଝଡ଼ ଓ ଅମାନୁଷିକ ଏ କଷ୍ଟ ସମ୍ଭାଳି ନ ପାରି ବଲ୍‌ଶେଭିକ୍‌ମାନେ ପଛରେ ନିଷ୍ପଳ ମୃତ ଶବଗୁଡ଼ିକୁ ପଡ଼ିଆରେ ଛାଡ଼ିଦେଇ ପଛକୁ ହଟିଯାଇଥାଆନ୍ତି ।

ସହର ଉପରେ ଦିଆଯାଉଥିବା ମାଡ଼ ଆଜି ସବୁଠାରୁ ଅଧିକ ଓ ଅବିରତ ଭାବରେ ଘଟିଛି । ଗୋଳିଗୁଳାର ନିନାଦରେ ପବନ ପ୍ରକମ୍ପିତ ହୋଇଉଠୁଛି । ଉଚ୍ଚ ପାର୍ଶ୍ୱଗଦା ଉପରୁ ଦ୍ରୁତ ଆଗେଇ ଆସୁଥିବା ବଲ୍‌ଶେଭିକ୍ ବାହିନୀଗୁଡ଼ିକୁ ଲକ୍ଷ୍ୟ କରାଯାଇପାରେ । ଲାଲ ସୈନ୍ୟମାନେ ତଳେ ଲେଟିଯାଉଛନ୍ତି, ପୁଣି ଉଠି, ଝାଡ଼ିଝୁଡ଼ି ହୋଇ ଆଗକୁ ଆସିବା ପାଇଁ । ବର୍ତ୍ତମାନ କେବଳ ଷ୍ଟେସନ୍‌ଟି ଛଡ଼ା ଆଉ ସବୁ ତାଙ୍କର ଦଖଲକୁ ଗଲାଣି । ପେଟ୍‌ଲ୍ୟୁରା ବାହିନୀର ମହଜୁଦ୍ ଥିବା ଅବଶିଷ୍ଟାଂଶ ସୈନ୍ୟଙ୍କୁ ଏଥର ଯୁଦ୍ଧକୁ ପଠାଗଲା । ମାତ୍ର ନିଜ ନିଜର ପୋଜିସନରେ ରହି ସେମାନେ ବାଧା ଦେବାକୁ ସକ୍ଷମ ହେଲେ ନାହିଁ । ଏକ ଅଦମ୍ୟ ଦୃଢ଼ ପ୍ରତିଜ୍ଞା ଧରି ବଲ୍‌ଶେଭିକ୍ ଆକ୍ରମଣକାରୀ ବାହିନୀ ଷ୍ଟେସନ୍‌କୁ ଲାଗିଥିବା ଗଳିଗୁଡ଼ିକ ଭିତରକୁ ପଶିଆସିଲେ ଓ ତାଙ୍କୁ ବାଧା ଦେଉଥିବା ପେଟ୍‌ଲ୍ୟୁରା ବାହିନୀର ତୃତୀୟ ଡିଭିଜନର ସୈନ୍ୟମାନେ ସହର ସୀମାନ୍ତରେ ଥିବା ବଗିଚ୍ଚା, ଚୋଟାମାନଙ୍କରୁ ଉଠିଆସି ଏଥର ସହରସାରା ବିଛାଇ ହୋଇଗଲେ । ଆଉ ଥରେ ପ୍ରତିରୋଧ କରିବାର ପ୍ରସ୍ତୁତି କରୁ କରୁ ଲାଲ ଫୌଜ ସହରର ଗଳିକନ୍ଦିକୁ ପଶିଆସିଲେ ଓ ପେଟ୍‌ଲ୍ୟୁରା ଜଗୁଆଳି ଘାଟୀଗୁଡ଼ିକ ଉପରେ ସଙ୍ଗିନ୍ ଗ୍ରଜ କରି କରି ଓ ପଛଘୁଞ୍ଚା ଦେଇ ପଳାଉଥିବା ପ୍ରହରୀମାନଙ୍କୁ ପିଛା କରି କରି ।

ନିଜର ପରିବାର ଓ ପଡ଼ୋଶୀର ଅନ୍ୟମାନେ ଲୁଚିରହିଥିବା ଘରଭିତରୁ କୌଣସି ବାଧା ନମାନି ସେର୍ଗେଇ 'ବ୍ରୁଝାକ୍ ବାହାରିଆସିଲା ଏଥର ଓ ମା'ର ଗାଳିଗୁଲଜ ନମାନି ଓଦା ଆଟୁଟା ଉପରେ ଚଢ଼ିଗଲା ଦେଖିବାକୁ । ଅସ୍ପଷ୍ଟରେ ସଜ୍ଜିତ 'ସାଗାଇଦାଚ୍‌ନି' ବୋଲି ଲେଖା ହୋଇଥିବା ଗୋଟାଏ କାର୍ ତୁମୂଳ ଭାବରେ ଗୋଳି ବର୍ଷଣ କରି ସେତିକିବେଳେ ଅତିକ୍ରମ କରିଗଲା ଓ ତା' ପଛେ ପଛେ ବିଶୃଙ୍ଖଳ ଭାବରେ ଦଳେ ଭୟଭୀତ, ଶଙ୍କିତ ପେଟ୍‌ଲ୍ୟୁରା ଲୋକ ଦୌଡ଼ି ଦୌଡ଼ି ପଳାଉଥାଆନ୍ତି । ସେଥି ଭିତରୁ ଜଣେ ସେର୍ଗେଇର ଅଗଣା ଭିତରକୁ ଲୁଚି ପଶିଆସିଲା ଓ ଅତି ଭୟରେ ଶୀଘ୍ର ଶୀଘ୍ର ସେଇଠି ନିଜର କାର୍ଟ୍ରିଜ ପଟି, ହେଲମେଟ୍ ଓ ବନ୍ଧୁକ କାଢ଼ି ଫୋପାଡ଼ି ଦେଇ,

ବାଡ଼ ଡେଇଁ ଜଣଙ୍କର ବାରି ଭିତରକୁ ପଶିଗଲା । ବାହାର ରାସ୍ତା ଉପରକୁ ଅନାଇଲା ସେର୍ଗେଇ । ଦକ୍ଷିଣ-ପଶ୍ଚିମ ଦିଗରେ ଷ୍ଟେସନ୍ ଆଡ଼କୁ ପଡ଼ିଥିବା ରାସ୍ତାରେ, ପେଟ୍‌ଲ୍ୟୁରା ଲୋକଗୁଡ଼ାକ ଦୌଡ଼ି ପଳାଉଥାଆନ୍ତି ଓ ପଛରେ ସଶସ୍ତ୍ର ଗାଡ଼ିଟାଏ ଗୋଡ଼ାଉଥାଏ । ସହରକୁ ପଡ଼ିଥିବା ବଡ଼ ରାସ୍ତାଟା ପୂରାପୂରି ନିର୍ଜନ । ତା'ପରେ ଜଣେ ଲାଲଫୌଜର ଲୋକ ଦୌଡ଼ିଆସିଲା । ନିଜେ ତଳେ ଶୋଇପଡ଼ି ବସ୍ତା ଉପରକୁ ଗୋଳି ଚଳାଇବାକୁ ଲାଗିଲା ସେ । ତା' ପଛକୁ ପଛ ଦ୍ୱିତୀୟ ଓ ତୃତୀୟ ଲାଲଫୌଜର ଲୋକ ଆସିଗଲେ । ସେର୍ଗେଇ ଦେଖୁଥାଏ ସେମାନଙ୍କୁ ନଇଁ ପଡ଼ି ଗୁଳିକରି ପୁଣି ଚାଲିଯିବାର । ଲାଲଆଖିଆ ଏତେ ବଡ଼ ବ୍ରଞ୍ଜ ଭଳି ରଙ୍ଗର ଚୀନା ଲୋକଟାଏ, ଦିହରେ ମେସିନ୍‌ଗନ୍ ବେଲ୍ଟ ଭିଡ଼ି, ଦି'ହାତରେ ଦୁଇଟା ଗ୍ରେନେଡ୍ ଧରି ଜୋର୍‌ରେ ଦୌଡ଼ୁଥାଏ । ସେମାନଙ୍କ ପଛରେ ଆସିଲା ଲାଲଫୌଜର ଜଣେ ଲୋକ – ପିଲାଟାଏ କି ତାଠୁଁ ଟିକେ ବେଶି ବୟସର, ହାତରେ ଧରିଛି ଗୋଟାଏ ହାଲୁକା ମେସିନ୍‌ଗନ୍ । ଲାଲଫୌଜର ଆଗୁଆ ବାହିନୀ ସହରରେ ପଶିଲେ । ଉନ୍ମତ୍ତ ଆନନ୍ଦରେ ଅଧୀର ହୋଇ ସେର୍ଗେଇ ରାସ୍ତା ଉପରକୁ ଦୌଡ଼ିଆସି ଚିତ୍କାର କରି ଉଠିଲା :

"କମ୍ରେଡ୍‌ମାନେ, ଦୀର୍ଘଜୀବୀ ହୁଅ !"

ଏତେ ହଠାତ୍ ଦୌଡ଼ିଆସିଲା ଯେ, ଚୀନା ଲୋକଟି ତାକୁ ଧରିପକାଇଲା ଗୋଡ଼ଆଡ଼ୁ, ତାକୁ ଗୁଳି କରିଦେବାକୁ ଯାଉଛି । ଏତିକିବେଳେ ସେର୍ଗେଇର ମୁହଁର କଥା ତାକୁ ବାଧା ଦେଲା ।

"ପେଟ୍‌ଲ୍ୟୁରା କାହାନ୍ତି ?" ଚୀନା ଲୋକଟି ଜୋର୍‌ରେ ଚିତ୍କାରକରି, ଥାପୁଡ଼େଇ ତାକୁ ପଚାରିଲା ।

ମାତ୍ର ସେର୍ଗେଇ ତା' କଥାରେ କର୍ଣ୍ଣପାତ କଲା ନାହିଁ । ସେ ଅଗଣା ଭିତରକୁ ଦୌଡ଼ିଯାଇ, ପେଟ୍‌ଲ୍ୟୁରା ଲୋକଟି ଛାଡ଼ିଯାଇଥିବା କାର୍ଟ୍ରିଜ୍ ପଟି ଓ ରାଇଫଲଟା ଗୋଟାଇନେଇ, ଲାଲଫୌଜଙ୍କ ପଛେ ପଛେ ଧାଇଁଲା । ଦକ୍ଷିଣ-ପଶ୍ଚିମ ଷ୍ଟେସନ୍ ଉପରେ, ତୋଫାନି ଆକ୍ରମଣ ଚଳାଇବା ପର୍ଯ୍ୟନ୍ତ ସେମାନେ ତାକୁ ଲକ୍ଷ୍ୟ କରି ନ ଥିଲେ । ଏଠାରେ ଅନେକ ଟ୍ରେନ୍ ବୋଝାଇ ଅସ୍ତ୍ରଶସ୍ତ୍ର ଓ ଖାଦ୍ୟଦ୍ରବ୍ୟ ଯୋଗାଣ ସବୁ ଦଖଲ କରିସାରି ଶତ୍ରୁ ପକ୍ଷକୁ ଜଙ୍ଗଲ ଭିତରକୁ ଘଉଡ଼େଇ ଦେଇସାରିବା ପରେ ସେମାନେ ଅନ୍ୟ ସମସ୍ତଙ୍କୁ ଅଟକାଇ ଦଳ ବାନ୍ଧିବାକୁ ରହିଲେ ।

ତରୁଣ ମେସିନ୍‌ଗନ୍ ଚାଳକ ସେର୍ଗେଇ ପାଖକୁ ଆସି ବିସ୍ମିତ ହୋଇ ପଚାରିଲା :

"ତମେ କେଉଁଠୁ ଆସିଛ କମ୍ରେଡ୍ ?"

"ମୁଁ ଏଇ ସହରର । ତମେମାନେ ଆସିବାକୁ ମୁଁ ଅପେକ୍ଷା କରି ରହିଥିଲି ।"

ତା' ଚାରିପଟଯାକ ଲାଲଫୌଜର ଲୋକେ ସାଙ୍ଗେ ସାଙ୍ଗେ ଘେରିଗଲେ ।

ଭଙ୍ଗା ଭଙ୍ଗା ରୁଷ୍ ଭାଷାରେ ଚୀନା ଜଣକ କହିଲା, "ମୁଁ ତାକୁ ଜାଣେ । ସେଇ



ଚିତ୍କାର କରୁଥିଲ 'କମ୍ରେଡ୍‌ମାନେ, ଦୀର୍ଘଜୀବୀ ହୁଅ' ବୋଲି।" ମୁହଁରେ ଏକ ବିସ୍ତୀର୍ଣ୍ଣ ହସ ଖେଳାଇ ଓ ସେର୍ଗେଇର ପିଠି ଥାପୁଡ଼େଇ ଥାପୁଡ଼େଇ କହୁଥାଏ ସେ ।

ସେର୍ଗେଇର ହୃଦୟ ଆନନ୍ଦରେ ଅଧୀର ହୋଇଉଠିଲ । ତାକୁ ଗ୍ରହଣ କରିନେଲେ । ସେମାନଙ୍କ ଭିତରୁ ଜଣେ ହୋଇଗଲ ସେ ଏଥର ଏକାଥରକେ । ସେମାନଙ୍କ ସାଙ୍ଗେ ମିଶି ସଙ୍ଗିନ୍ ଆକ୍ରମଣ ଚଳାଇ ଷ୍ଟେସନ୍ ଦଖଲ କରିଛି ସେ ।

ସହର ନୂଆ ଜୀବନ ପାଇ ଉଠିଲ । ସହରବାସୀମାନେ ନିଜ ନିଜର ଦଣ୍ଡଭୋଗର ସମାପ୍ତି ଘଟାଇ, ଆଟୁ, ଭୂଇଁତଳ ଚଟାଣ ଭିତରୁ ବାହାରି ଦାଣ୍ଡ ଦୁଆରମୁହଁରେ ଆସି ଛିଡ଼ାହେଲେ, ସହରରେ ମାର୍ଚ୍ଚିଂ କରି ପ୍ରବେଶ କରୁଥିବା ଲଲଫୌଜକୁ ଦେଖିବା ପାଇଁ । ସେର୍ଗେଇର ମା' ଓ ଭଉଣୀ ଭାଲ୍ୟା ମଧ୍ୟ ଦେଖିଲେ, ଲଲ ଫୌଜର ଅନ୍ୟମାନଙ୍କ ସହିତ ପାଦରେ ପାଦ ମିଳାଇ ସେର୍ଗେଇ ମଧ୍ୟ ମାର୍ଚ୍ଚିଂ କରି କରି ଯାଉଛି ! ମୁଣ୍ଡରେ ତା'ର ଟୋପି ନାହିଁ, ମାତ୍ର ଅଣ୍ଟାରେ କାର୍ଟ୍ରିଜ୍ ପଟି ଓ କାନ୍ଧରେ ଝୁଲୁଛି ଗୋଟାଏ ରାଇଫଲ ।

ଦୁଃଖରେ ମର୍ମାହତ ହୋଇ ଆନ୍ତୋନିନା ଭାସିଲିଯେଭ୍‌ନା ନିଜ ହାତ ଉପରକୁ ଟେକିଲେ ।

ତାଙ୍କ ସେରେ୍ୟାଝା ତା'ହେଲେ ଯାଇଁ ଯୁଦ୍ଧରେ ମିଶିଛି । ଏଥିପାଇଁ ତାକୁ ଭୋଗିବାକୁ ପଡ଼ିବ ଯେ ! କି ନିର୍ଲଜ ଟୋକାଟାଏ ! ସାରା ସହରଟା ଆଗରେ, କାନ୍ଧରେ ଗୋଟାଏ ବନ୍ଧୁକ ଝୁଲାଇ କେମିତି ସେ ପ୍ୟାରେଡ୍ କରୁଛି ? ପରେ ନିଶ୍ଚେ ପୁଣି ଗଣ୍ଡଗୋଳ ହବ । ଆନ୍ତୋନିନା ଭାସିଲିୟେଭ୍ନା ଆଉ ରୋକିପାରିଲେ ନାହିଁ ନିଜକୁ ।

"ସେରେ୍ୟାଝା ଘରକୁ ଆସୁଛୁ ଟିରେ ସାଙ୍ଗେ ସାଙ୍ଗେ ! ଆ' କହୁଛି ! ବଦ୍‌ମାସ ଟୋକା, ଆଜି ଆ, ତୋତେ ଶିଖାଉଛି କେମିତି ଚଳିବାକୁ ହୁଏ । ଆଜି ତୋର ଦିନେ କି ମୋର ଦିନେ ! ଆ' ତୁ ! ମୁଁ ତୋତେ ଯୁଦ୍ଧ ଶିଖାଇ ଦେବି !"

ଏତକ କହି, ଅତି ଦ୍ରୁତ ହୋଇ ପୁଅକୁ ନିଶ୍ଚେ ଫେରାଇ ଆଣିବେ ବୋଲି ରାସ୍ତାଟା ଉପରକୁ ଆଗେଇଗଲେ ସେ ।

ମାତ୍ର ଏଥର ତାଙ୍କର ପୁଅ ସେରେ୍ୟାଝା, ଯାହାର କାନ ସେ ହଜାର ଥର ମୋଡ଼ିଥିବେ, ଅତି ଦମ୍ଭର ସହିତ ଟାଣୁଆ ଚାହାଣୀରେ ମା' ଆଡ଼କୁ ଚାହିଁଲା । ମୁହଁ ତା'ର ଲାଜରେ ଜଳିଯାଉଥାଏ ଯେମିତି । ତା'ପରେ ତାକୁ କହିଲା :

"ପାଟିଫାଟି ବନ୍ଦକର ମା' । ମୁଁ ଯେଉଁଠି ଅଛି ସେଇଠି ରହିବି ।"

ଆଉ ନଅଟକି ସେ ମାର୍ଚ୍ଚ କରି ଚାଲିଗଲା ।

ଆନ୍ତୋନିନା ଭାସିଲିୟେଭ୍ନା ରାଗରେ ଖାଲି ଫାଟିପଡ଼ୁଥାନ୍ତି ତା'ପଛରେ :

"ତା' ହେଲେ, ଏମିତି ତୁ ତୋ ମାଆକୁ ମାନୁ ? ଆଉ କ'ଣ ଘରକୁ କେବେ ଫେରିବୁ ନାହିଁ ରେ ପୋଡ଼ାମୁହାଁ ? ସେତିକିବେଳେ ଦେଖିବି ।"

"ମୁଁ ଫେରିବି ନାହିଁ", ପଛକୁ ନ ବୁଲି ଚିତ୍କାର କରି କହିଲା ସେର୍ଗେଇ ।

ନିର୍ବାକ୍ ହୋଇ ତା'ରି ପଛକୁ ଅନାଇଁ ରହିଲେ ସେମିତି ରାସ୍ତାଟା ଉପରେ ଆନ୍ତୋନିନା ଭାସିଲିୟେଭ୍ନା । ସେତେବେଳେ ରାସ୍ତା ଉପରେ ଧୂଳିଧୂସରିତ, ଶୀତ-ଗ୍ରୀଷ୍ମଜର୍ଜରିତ ଓ ଯୁଦ୍ଧକ୍ଲାନ୍ତ ସୈନିକମାନେ ଦ୍ରୁତ ପଦପାତରେ ଆଗେଇ ଚାଲିଥାଆନ୍ତି !

"କାନ୍ଦ ନାହିଁ ମାଆ ! ତମ ପୁଅକୁ ଆମେ ଗୋଟାଏ କମାଣ୍ଡର କରିଦବୁ !" ଗୋଟାଏ ଖୁସ୍ ମିଜାଜ୍‌ର ସ୍ୱର ଭାସିଆସିଲା ।

ଅକୃତ୍ରିମ, ସୁନ୍ଦର ହସର ଧ୍ୱନି ଉଠିଲା ତା ପରେ ପରେ । ବାହିନୀର ଅଗ୍ରଭାଗରେ ପ୍ରତିଧ୍ୱନିତ ହେଲା :

"କମେଡ୍, ବାଜିଲାଣି ଦେଖ ରଣଭେରୀ
ଉଠ ଜାଗ କାନ୍ଧେ ଅସ୍ତ୍ର ଧରି
ମୁକତିର ରାଜଧାନୀ ଦିଗେ ବେଗେ ଚାଲ
ବିକ୍ରମରେ ଦିଅ ଜାଳି ମୁକ୍ତିର ମଶାଲ ।"

ସମ୍ମିଳିତ ଐକ୍ୟତାନରେ ଗାଇଉଠିଲେ ସମସ୍ତେ । ସେର୍ଗେଇର ସ୍ୱର ଅନୁରଣିତ

ହୋଇଉଠିଛି ସେହି ସ୍ୱରଲହରୀ ଭିତରେ । ଏକ ନୂଆ ପରିବାର ସେ ପାଇଛି ଆଜି । ସେଥିଭିତରୁ ଗୋଟାଏ ସଙ୍ଗିନ୍ ତା'ର ... ସେର୍ଗେଇର ।

* * *

ଲେଷିନ୍‌ସ୍କି ଘରର ଫାଟକ ସାମନାରେ ଖଣ୍ଡେ ଧଳା କାଗଜ ପଟା ଝୁଲୁଛି । ସେଥିରେ ଲେଖା ହୋଇଛି 'ରେଭ୍‌କମ୍ '* ବୋଲି । ତା' କଡ଼କୁ ସୁନ୍ଦର ଦୃଷ୍ଟି ଆକର୍ଷଣ କରୁଥିବା ପୋଷ୍ଟରଟିଏ – ସିଧାସଳଖ ତମ ଆଖିକୁ ଚାହିଁଛି ଲାଲ ଫୌଜର ସୈନିକ ଜଣେ, ଆଉ ଆଙ୍ଗୁଠି ଦେଖାଉଛି ତମକୁ ଲେଖାଥିବା ଜାଗାକୁ, ଯେଉଁଠି ଲେଖା ହୋଇଛି :

"ତମେ ଲାଲ ଫୌଜରେ ଯୋଗ ଦେଇଣି କି ?"

ରାଜନୈତିକ ବିଭାଗର ଲୋକେ ସାରାରାତି ଲାଗି ଏ ପୋଷ୍ଟରସବୁ ମାରିଛନ୍ତି ସହର ସାରା ବୁଲିଆଡ଼େ । ନିକଟରେ ଶେପେଟୋଭ୍‌କା ସହରର ଖଟିଖିଆ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ବିପ୍ଳବୀ କମିଟିର ପ୍ରଥମ ଘୋଷଣାପତ୍ର ଝୁଲୁଛି :

"କମ୍ରେଡ୍‌ଗଣ !

ସର୍ବହରାର ବାହିନୀ ଏ ସହରକୁ ଅଧିକାର କରିଛନ୍ତି । ସୋଭିଏତ୍ ଶାସନ ଏଠାରେ ପ୍ରତିଷ୍ଠିତ ହୋଇଛି । ଆମେ ଆପଣମାନଙ୍କୁ ଶୃଙ୍ଖଳା ରକ୍ଷା କରିବା ପାଇଁ ଆବେଦନ ଜଣାଉଛୁ । ରକ୍ତଲୋଭୀ ତଣ୍ଡିକଟା ନରଘାତକ ଦଳଙ୍କୁ ଏଠାରୁ ହଟାଇ ଦିଆଯାଇଛି । ମାତ୍ର ଯଦି ସେମାନେ ଆଉଥରେ ନ ଫେରନ୍ତୁ ବୋଲି ଚାହାନ୍ତି ଓ ସେମାନଙ୍କର ସମୂଳ ଶେଷଥର ପାଇଁ ଉତ୍ପାଟନ ଚାହାନ୍ତି, ତେବେ ଆପଣମାନେ ଲାଲ ଫୌଜରେ ଯୋଗ ଦିଅନ୍ତୁ । ଖଟିଖିଆ ଶ୍ରମିକ ଜନସାଧାରଣଙ୍କର ଶକ୍ତିକୁ ଦୃଢ଼ୀଭୂତ କରିବା ପାଇଁ ଆପଣ ସମସ୍ତ ପ୍ରକାର ସାହାଯ୍ୟ କରନ୍ତୁ । ଏ ସହରର ସାମରିକ କର୍ତ୍ତୃତ୍ୱ ଏଠାରେ ମୁତୟନ କରା ସେନା ବାହିନୀର ଅଧ୍ୟକ୍ଷଙ୍କ ଉପରେ ନ୍ୟସ୍ତ ଅଛି । ମାତ୍ର ସମସ୍ତ କାମ ନାଗରିକ କାର୍ଯ୍ୟାନୁଷ୍ଠାନ ବିପ୍ଳବୀ ସମିତି ହିଁ କରିବେ ।

ସ୍ୱା ଦୋଲିନିକ୍
ବିପ୍ଳବୀ କମିଟିର ସଭାପତି ।"

ନୂତନ ଧରଣର ଲୋକେ ଲେଷିନ୍‌ସ୍କି ଘରେ ଦେଖାଦେଲେ । 'କମ୍ରେଡ୍' ଶବ୍ଦ ଯାହା ପାଇଁ, ଏଇମାତ୍ର ଗତକାଲି ହୁଏତ ଲୋକଙ୍କୁ ଜୀବନ ଦେବା ପାଇଁ ପଡ଼ିଛି, ସେ ତାକ ଆଜି ବୁଲିଆଡ଼େ ଶୁଭୁଥାଏ । ସେହି ଅବର୍ଣ୍ଣନୀୟ ଭାବରେ ନିଜର କରିନେବାର ଶବ୍ଦ 'କମ୍ରେଡ୍' ।

ଏହି ଦିନମାନଙ୍କରେ ଦୋଲିନିକ୍‌ଙ୍କ ପାଇଁ ନିଦ୍ରା ବା ବିଶ୍ରାମର ପ୍ରଶ୍ନ ଉଠୁ ନ ଥାଏ । ସେ ବିପ୍ଳବୀ ସରକାର ପ୍ରତିଷ୍ଠା ପାଇଁ ବ୍ୟସ୍ତ ଥାନ୍ତି ।

---

* ବିପ୍ଳବୀ କମିଟି – ସଂପାଦକ ।

'ପାର୍ଟି କମିଟି' ବୋଲି ପେନସିଲରେ ଖଣ୍ଡେ ଛୋଟ କାଗଜରେ ଲେଖାହୋଇ ଗୋଟିଏ ଛୋଟିଆ ବଖରାଟିରେ ଝୁଲୁଥାଏ । ତା ଭିତରେ ବସିଥାଏ କମ୍ରେଡ୍ ଇଗ୍ନାତିଯେଭା ସବୁବେଳେ ଭଳି ଧୀର ଓ ଅବିଚଳିତ ଭାବରେ ।

ତାଙ୍କ ଉପରେ ଓ ଦୋଲିନିନ୍ଙ୍କ ଉପରେ ସୋଭିଏତ୍ ଶାସନ ପ୍ରତିଷ୍ଠା ଓ ସରକାର ପ୍ରତିଷ୍ଠାର ଦାୟିତ୍ୱ ନ୍ୟସ୍ତ କରି ଥାଆନ୍ତି ରାଜନୈତିକ ବିଭାଗ ।

ଆଉ ଦିନଟିଏ ପରେ, ଅଫିସ୍ କର୍ମଚାରୀମାନେ ଟେବୁଲ ଚଉକିରେ ବସିଗଲେ ସେଠି । ଗୋଟିଏ ଟାଇପ୍‌ରାଇଟର ବ୍ୟସ୍ତଭାବରେ ଖଟ୍‌ଖଟ୍ ଶବ୍ଦରେ ଚାଲିବାକୁ ଲାଗିଲା । ଚିଝିଚ୍‌ସ୍କିଙ୍କ ଅଧୀନରେ ଏକ ଯୋଗାଣ ବିଭାଗ ସଙ୍ଗଠିତ ହେଲା । ବର୍ତ୍ତମାନ ସହରରେ ସୋଭିଏତ୍ ଶକ୍ତି ଦୃଢ଼ଭାବରେ ପ୍ରତିଷ୍ଠିତ ହେବା ପରେ ଆଗରୁ ସ୍ଥାନୀୟ ଚିନିକଳର ମେକାନିକ୍‌ଙ୍କ ସାହାଯ୍ୟକାରୀ ଥିବା ଚିଝିଚ୍‌ସ୍କି, ବଲ୍‌ଶେଭିକ୍‌ଙ୍କୁ ଘୃଣା କରି ଚୁନି ରହିଯାଇ ସମୟ ଅତିବାହିତ କରୁଥିବା ଚିନିକଳର ମାଲିକମାନଙ୍କ ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିବା ପାଇଁ ଦୃଢ଼ପ୍ରତିଜ୍ଞ ହେଲା ।

ଚିନିକଳର ଶ୍ରମିକମାନଙ୍କର ଏକ ସଭାରେ ସେ ତା'ର କର୍କଶ ଗଳାରେ ସମୁଦାୟ ଅବସ୍ଥାର ଏକ ବିବରଣୀ ଦେଇ କହିଲା :

"ସେ ଅତୀତ ଯାହା ଯାଇଛି, ତାହା ଆଉ ଫେରିବ ନାହିଁ ।" ସେ ଘୋଷଣା କଲା ଟେବୁଲ ଉପରେ ହାତ ବାଡ଼େଇ ବାଡ଼େଇ ପୋଲଣ୍ଡୀୟ ଭାଷାରେ, "ଆମ ପିତୃ ପିତାମହ ଓ ଆମେ ସମସ୍ତେ ଏ ପୋତୋତ୍‌ସ୍କିମାନଙ୍କର ଗୋଲାମି କରି ଜୀବନ ବିତାଇଛୁ, ସେତିକି ଯଥେଷ୍ଟ । ଆମେ ତାଙ୍କ ପାଇଁ ମହଲ ବନାଇଦେଲୁ ଆଉ ସେ ମହାମାନ୍ୟବରମାନେ ଆମକୁ କ୍ଷୁଧାର ତାଡ଼ନାରେ ନ ମରି ବଞ୍ଚି ରହିବା ପାଇଁ ଯେତିକି ଦରକାର ସେତିକି ହିଁ ଦେଲେ ।

କେତେ ବର୍ଷ ଧରି ଏ ପୋତୋତ୍‌ସ୍କି ସାମନ୍ତ ଆଉ ସାଙ୍ଗୁଶ୍‌କୋ ରଜାମାନେ ଆମ ପିଠିରେ ସବାର ହେଲେଣି ? ରୁଷୀୟ ଆଉ ୟୁକ୍ରେନୀୟାନ୍‌ମାନଙ୍କୁ ଯେମିତି ସେମିତି ପୋଲଣ୍ଡୀୟ ଶ୍ରମିକମାନଙ୍କୁ ସେମାନେ କ'ଣ ଦଳି ଦେଇ ନାହାନ୍ତି ? ତଥାପି ସାମନ୍ତଙ୍କର ବଡ଼ୀପେଲଗୁଡ଼ାକ ଶ୍ରମିକମାନଙ୍କ ଭିତରେ ଏବେ ବି କହି ବୁଲୁଛନ୍ତି ଯେ, ସୋଭିଏତ୍ ଶକ୍ତି ସେମାନଙ୍କୁ ଲୌହକଠିଣ ହୋଇ ଶାସନ କରିବ ।

ଏହା ଅତି ଘୃଣ୍ୟ ମିଥ୍ୟା କମ୍ରେଡ୍‌ଗଣ ! ବିଭିନ୍ନ ଜାତି ଶ୍ରମଜୀବୀ ଜନସାଧାରଣ ବର୍ତ୍ତମାନ ଉପଭୋଗ କରୁଥିବା ଭଳି ସ୍ୱାଧୀନତା ଅତୀତରେ କେବେହେଲେ ପାଇ ନ ଥିଲେ ।

ସର୍ବହରା ସର୍ବହରାର ଭାଇ । ଆପଣମାନେ ନିଶ୍ଚିତ ହୋଇପାରନ୍ତି ଯେ, ଏ ଅବଶିଷ୍ଟ ବୁର୍ଜୁଆ ଭଦ୍ରଲୋକଙ୍କୁ ଆମେ ଠିକଣା କରିଦେବୁ ।" ବକ୍ତୃତା ମଞ୍ଚ ଉପରେ ତା'ର ହାତ ପୁଣି ଜୋର୍‌ରେ ହଲିଉଠିଲା ।

"କିଏ ସେମାନେ, ଯେଉଁମାନେ ଭାଇକୁ ଭାଇର ରକ୍ତ ଶୋଷିବା ପାଇଁ ନିୟୋଜିତ କରିଛନ୍ତି ? ଶତାବ୍ଦୀ ଶତାବ୍ଦୀ ଧରି ଏହି ରାଜା ଓ ସାମନ୍ତମାନେ ପୋଲଣ୍ଡର କୃଷକମାନଙ୍କୁ

ତୁର୍କୀମାନଙ୍କ ସହିତ ଯୁଦ୍ଧ ପାଇଁ ବ୍ୟବହାର କରି ଆସୁଛନ୍ତି । ସବୁବେଳେ ସେମାନେ ଗୋଟାଏ ଜାତି ବିରୁଦ୍ଧରେ ଆଉ ଗୋଟାଏ ଜାତିକୁ ମଡାଇ ଆସିଛନ୍ତି । ଭଲକରି ଭାବି ଦେଖ, ଯେଉଁ ରକ୍ତପାତ ସେମାନେ କରାଇଛନ୍ତି, ଯେଉଁ ନିଷ୍ପେଷଣ ସେମାନେ କରିଛନ୍ତି ଆମ ଉପରେ ! ଆଉ ... କିଏ ସେଥିରେ ଫାଇଦା ପାଇଛି ? ସେଇମାନେ ! ଅତିଶୀଘ୍ର ଏ ସବୁର ଅବସାନ ଘଟିବ । ଏ ହେଉଛି ସେ ନିପୀଡ଼ନର ପରିସମାପ୍ତି । ବଲ୍‌ଶେଭିକ୍‌ମାନଙ୍କର ଏ ସ୍ଲୋଗାନ୍‌ର ବଜ୍ର ଘୋଷଣା ବୁର୍ଜୁଆଙ୍କ ଛାତିରେ ଚମକ ଆଣିଦେଇଛି – "ପୃଥିବୀର ଶ୍ରମଜୀବୀ ଜନଗଣ ଏକଜୁଟ୍ ହୁଅ !" ସେଇଥିରେ ହିଁ ନିହିତ ଆମର ମୁକ୍ତି ! ଆମର ଆଶା ! ଆମର ପ୍ରଗତି ! ଆମର ଭବିଷ୍ୟତର ସେ ସୁଦିନ, ଯେବେ ପୃଥିବୀର ଶ୍ରମଜୀବୀ ଜନଗଣ ପରସ୍ପରର ଭାଇ ହେବେ । କମ୍ରେଡ୍‌ଗଣ ! କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦିଅ !

ଦିନେ ନା ଦିନେ ନିଶ୍ଚୟ ପୋଲାଣ୍ଡରେ ସୋଭିଏତ୍ ପ୍ରଜାତନ୍ତ୍ର ଗଢ଼ିଉଠିବ । ମାତ୍ର ସେଥିରେ ପୋଟୋତ୍‌ସିମାନେ ରହିବେ ନାହିଁ । ସେମାନଙ୍କୁ ସମୂଳେ ଉତ୍ପାଟନ କରାଯିବ । ଆଉ ଆମେ ହେବା ପୋଲାଣ୍ଡ ସୋଭିଏତ୍‌ର କର୍ତ୍ତା ! ତମେମାନେ ନିଶ୍ଚୟ ବ୍ରୋନିକ୍ ପ୍ତାଶିନ୍‌ସିଙ୍କୁ ଜାଣ ? ଜାଣନା ? ବିପ୍ଳବୀ କମିଟି ତାଙ୍କୁ ଆମ କାରଖାନାର ଅଧ୍ୟକ୍ଷ ନିଯୁକ୍ତ କରିଛି । ଆମର ଅସ୍ତିତ୍ୱ ନ ଥିଲ, ଆମର ସବୁ ହେବ ! ଆମର ଆନନ୍ଦର ଦିନ ଆସିଛି କମ୍ରେଡ୍‌ମାନେ । କେବଳ ସେ ଲୁକ୍‌କାୟିତ ହିଂସ୍ର ପଶୁଗୁଡ଼ାକ କଥାକୁ କାନ ନ ଦେବାକୁ ସାବଧାନ ! ଆମେ ଆମର ଦୃଢ଼ ବିଶ୍ୱାସ ନ୍ୟସ୍ତ କରିବା ଖଟିଖିଆ ଜନସାଧାରଣଙ୍କ ସ୍ୱାର୍ଥରେ ଏବଂ ଆମେ ହିଁ ପ୍ରତିଷ୍ଠା କରିବା ସାରା ବିଶ୍ୱର ମାନବ ସମାଜ ମଧ୍ୟରେ ସୌଭ୍ରାତୃତ୍ୱର ସେତୁ !"

ସରଳ ନିଷ୍କପଟ ଶ୍ରମଜୀବୀର ହୃଦୟର ଗଭୀରତମ ପ୍ରଦେଶରୁ ଅତ୍ୟନ୍ତ ନିଷ୍ଠା ଓ ପ୍ରାଣବନ୍ତତାର ସହିତ ଏହି ବାକ୍ୟଗୁଡ଼ିକ ଉଚ୍ଚାରିତ ହେଉଥିଲ ।

ତରୁଣ ସଭ୍ୟମାନଙ୍କର ଉଚ୍ଛ୍ୱସିତ କରତାଳି ଧ୍ୱନି, ସମର୍ଥନ ଓ ପ୍ରଶଂସାର କଳରୋଳ ଭିତରେ ସେ ମଞ୍ଚ ଉପରୁ ତଳକୁ ଓହ୍ଲାଇ ଆସିଲ । ପୁରୁଖା ଶ୍ରମିକମାନେ ନିଜନିଜକୁ ପ୍ରକାଶ କରିଦେବାକୁ ଦ୍ୱିଧାବୋଧ କରୁଥିଲେ । କିଏ ଜାଣେ, କାଲି ସକାଳୁ ହୁଏତ ଏ ବଲ୍‌ଶେଭିକ୍‌ମାନଙ୍କୁ ସହର ଛାଡ଼ିବାକୁ ପଡ଼ିବ, ଆଉ ଏଇଠି କହିଥିବା ପ୍ରତ୍ୟେକ ପଦ କଡ଼ାକଥା ପାଇଁ ସେତେବେଳେ ପୁଣି ବେଶ୍‌କରି ଭୋଗିବାକୁ ପଡ଼ିବ । ଫାଶିଖୁଣ୍ଟରୁ ବର୍ତ୍ତିଗଲେ ବି ଗ୍ଳକିରୀଟି ଯେ କେବେ ରହିବ ନାହିଁ, ଏ କଥା ନିଶ୍ଚିତ ।

ଶିକ୍ଷା ବିଭାଗର ଅଧ୍ୟକ୍ଷ ପତଳା ସୁନ୍ଦର ଗଢ଼ଣର ଲୋକଟି ଚେର୍‌ନୋପିସି, ସେ ଅଞ୍ଚଳର ଏକମାତ୍ର ସ୍କୁଲ ଶିକ୍ଷକ, ବଲ୍‌ଶେଭିକ୍‌ଙ୍କୁ ସମର୍ଥନ କରୁଥିଲେ ।

ବିପ୍ଳବୀ କମିଟି ହତାର ବିପରୀତ ପାର୍ଶ୍ୱରେ ସ୍ପେଶିଆଲ୍ ଡିଉଟିର ବିଭାଗୀୟ ସୈନିକମାନେ ଅବସ୍ଥାପିତ ହୋଇଥିଲେ । ସେଇଠାର ଲୋକେ ବିପ୍ଳବୀ କମିଟିର କାମରେ ଲଗୁଥିଲେ । ରାତିରେ ଗୋଟାଏ ବିରାଟ କମାଣ ଥୁଆ ହେଉଥିଲ 'ରେଭ୍‌କମ୍'କୁ ପ୍ରବେଶ

ପଥ ସମ୍ମୁଖର ବଗିଚ୍ଚାରେ । ତା'କଡ଼ରେ ରାଇଫଲଧାରୀ ପ୍ରହରୀ ଦୁଇଜଣ ପହରା ଦେଉଥିଲେ ରାତିସାରା ।

କମ୍ରେଡ୍ ଇଗ୍ନାତିୟେଭା 'ରେଭ୍‌କମ୍' ଆଡ଼କୁ ଯାଉଯାଉ ସେମାନଙ୍କ ଭିତରୁ ଜଣକ ପାଖକୁ ଆଗେଇ ଗଲେ । ତରୁଣ ଲାଲଫୌଜୀ ସୈନିକଟିଏ । ସେ ପଚ୍ଚାରିଲେ ତାକୁ :

"ତମର ବୟସ କେତେ କମ୍ରେଡ୍ ?"

"ସତର ଚ୍ଚାଲିଛି ।"

"ତମେ କ'ଣ ଏଇଠି ଥାଅ ?"

ଲାଲଫୌଜୀ ସୈନିକଟି ହସିଲା, କହିଲା, "ହଁ, ଗତକାଲି ମାତ୍ର ଯୋଗ ଦେଇଛି ଏଇ ଯୁଦ୍ଧ ସମୟରେ ।"

ତା' ମୁହଁକୁ ନିରିଖି ଚ୍ଚାହିଁଲେ ଇଗ୍ନାତିୟେଭା ।

"ତମ ବାପା କ'ଣ କରନ୍ତି ?"

"ସିଏ ଇଞ୍ଜିନ୍ ଡ୍ରାଇଭରର ସହକାରୀ ।"

ଠିକ୍ ଏତିକିବେଳେ, ୟୁନିଫର୍ମ ପିନ୍ଧା ଜଣେ ଲୋକଙ୍କୁ ସାଙ୍ଗରେ ଧରି ସେଠି ଦୋଲିନିନ୍କ୍ ପହଞ୍ଚିଲେ ।

"ତମେ ଠିକ୍ ସମୟରେ ଆସିଛ !" ଇଗ୍ନାତିୟେଭା କହିଲେ, "କମ୍‌ସୋମୋଲ୍‌ର * ଜିଲା କମିଟିର ଦାୟିତ୍ୱ ନେବା ପାଇଁ ମୁଁ ସେ ପାଇଁ ଠିକଣା ଯୁବକ ଖୋଜି ବାହାର କରିଛି । ସିଏ ବି ଏଇଠିକାର ସ୍ଥାନୀୟ ଲୋକ ।"

ଦୋଲିନିନ୍କ୍ ସେର୍ଗେଇ ଉପରେ ଏକ ଚଞ୍ଚଳ ଦୃଷ୍ଟି ବୁଲାଇ ଆଣିଲେ । ତା'ର ବିଷୟରେ ହିଁ ଆଲୋଚନା ହେଉଥିଲା ।

"ଓଃ, ତମେ ଜାଖାର୍‌ର ପୁଅ ନା ? ନୁହଁ ? ଆଚ୍ଛା ଠିକ୍ ଅଛି – ଏଥର ଆଗେଇ ଯାଅ, ତରୁଣମାନଙ୍କୁ ସଙ୍ଗଠିତ କର, ଆନ୍ଦୋଳନରେ ସାମିଲ କରାଅ !"

ସେମାନଙ୍କ ଆଡ଼କୁ ବିସ୍ମିତ ଆଖିରେ ଚ୍ଚାହିଁ ସେର୍ଗେଇ ପଚ୍ଚାରିଲା, "କିନ୍ତୁ ବାହିନୀର କ'ଣ ହେବ ?"

"ସେ କଥା ଆମେ ବୁଝିବୁ ।" ପାହାଚ ଉପରେ ଚଢ଼ି ଯାଉ ଯାଉ ପଛକୁ ଟିକେ ବୁଲିପଡ଼ି କହିଲେ ଦୋଲିନିନ୍କ୍ ।

ତା'ର ଦୁଇଦିନ ପରେ ୟୁକ୍ରାଇନ୍‌ର ଯୁବ କମ୍ୟୁନିଷ୍ଟ ଲିଗ୍ ଗଠିତ ହେଲା ।

ସହର ଉପରେ ଚଞ୍ଚଳ ଗତିରେ ପ୍ରବାହିତ ହେଉଥିବା ଓ ଅଲୋଡ଼ନ ଆଣିଥିବା ଏ ନୂଆ ଜୀବନର ଚଢ଼ାକୁ ଲମ୍ଫଦେଇ ସେର୍ଗେଇ । ଏ ନବଜୀବନ ତା'ର ସାମରିକ ସତ୍ତାକୁ, ଅସ୍ତିତ୍ୱକୁ ଏଭଳି ମୁହ୍ୟମାନ କରିଦେଲା ଯେ, ସେ ଭୁଲିଗଲା ତା'ର ଅତି ନିକଟରେ ଥିବା ଆପଣାର ପ୍ରିୟ ପରିବାରବର୍ଗଙ୍କୁ, ଆତ୍ମୀୟସ୍ୱଜନଙ୍କୁ ।

---

* ଯୁବ କମ୍ୟୁନିଷ୍ଟ ଲିଗ୍ – ସଂପାଦକ ।

ସେଇ ସେର୍ଗେଇ ବ୍ରୁଝାକ୍ ଏବେ ହେଲା ଜଣେ ବଲ୍‌ଶେଭିକ୍ । ୟୁକ୍ରେନୀୟ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ସିଏ କମ୍‌ସୋମୋଲ୍ ଓ କମ୍‌ସୋମୋଲ୍ କମିଟିର ସମ୍ପାଦକ ବୋଲି ପ୍ରଦତ୍ତ ସାର୍ଟିଫିକେଟ୍‌ଟାକୁ ନିଜ ପକେଟ୍‌ରୁ, ଏଥରକୁ ମିଶାଇ ଶହେଥର ପାଇଁ କାଢ଼ିଲା, ଦେଖିଲା । ଏଥିରେ କିଏ କାହିଁକେ ତାକୁ ସନ୍ଦେହ କରିବ, ସେଥି ପାଇଁ ସାଙ୍ଗରେ ରଖିଥିଲା, ପ୍ରିୟ ବନ୍ଧୁ ପାଭେଲ୍‌ର ଉପହାର, ସୁନ୍ଦର 'ମ୍ୟାନଲିଚର' ପିସ୍ତଲ୍‌ଟାକୁ । ତା' ପୋଷାକରୁ କ୍ୟାନ୍‌ଭାସ୍ ବେଲ୍‌ଟଟାରେ ଝୁଲୁଥିଲା ପିସ୍ତଲ୍‌ଟି । ସବୁଠାରୁ ବଡ଼ ପରିଚୟପତ୍ର ସେଇଟା । ପାଭ୍‌ଲୁଶାଟା ଯାହା ଏତେବେଳେ ଆଖପାଖରେ ନାହିଁ । ଭାରୀ ଖରାପ ଲାଗୁଛି ସେଥି ପାଇଁ ।

ପ୍ରଧାନ କାର୍ଯ୍ୟାଳୟ ରେଭ୍‌କମ୍‌ରୁ ତାକୁ ନିର୍ଦ୍ଦେଶ ଦିଆହୋଇଥିବା ଦାୟିତ୍ୱଗୁଡ଼ିକ ସମ୍ପନ୍ନ କରିବାରେ ସେର୍ଗେଇର ଦିନ ବିତିଯାଉଥିଲା । ଆଜି ମଧ୍ୟ ଇଗ୍‌ନାତିୟେଭା ତାକୁ ଅପେକ୍ଷା କରିଥିଲେ ।

ବିପ୍ଳବୀ କମିଟିକୁ ଯାଇଁ ବହିପତ୍ର ଓ ଖବରକାଗଜ ଇତ୍ୟାଦି ଆଣିବା ପାଇଁ ସେମାନଙ୍କୁ ଷ୍ଟେସନ୍ ଆଡ଼କୁ ଡିଭିଜନର ରାଜନୈତିକ ବିଭାଗକୁ ଯିବାକୁ ପଡ଼ିବ । କୋଠାଟାରୁ ଶୀଘ୍ର ବାହାରିପଡ଼ିଲା ସେର୍ଗେଇ । ବାହାରେ ରାଜନୈତିକ ବିଭାଗର ଜଣେ ଲୋକ ତାଙ୍କୁ ଗୋଟାଏ ମୋଟରଗାଡ଼ି ଧରି ଅପେକ୍ଷା କରିଥିଲା ।

ଏଠାରୁ ଷ୍ଟେସନ୍ ପାଖରେ ଥିବା ପ୍ରଥମ ସୋଭିଏତ୍ ୟୁକ୍ରେନୀୟ ଡିଭିଜନର ରାଜନୈତିକ ବିଭାଗର ପ୍ରଧାନ କାର୍ଯ୍ୟାଳୟ ଅନେକ ବାଟ । ବାଟସାରା ମୋଟରଗାଡ଼ିରେ ଗଲାବେଳେ ଇଗ୍‌ନାତିୟେଭା ପ୍ରଶ୍ନରେ ପୋତି ପକାଇଲେ ସେର୍ଗେଇକୁ ।

"ତମ କାମ କେମିତି ଚାଲିଛି ? ତମ ସଂଗଠନ ଏଯାଏଁ ଆରମ୍ଭ କଲଣି କି ନାହିଁ ? ତମ ବନ୍ଧୁମାନଙ୍କୁ, ଶ୍ରମିକମାନଙ୍କର ପିଲାମାନଙ୍କୁ କମ୍‌ସୋମୋଲ୍‌ରେ ଯୋଗ ଦେବା ପାଇଁ ତମକୁ ପ୍ରବର୍ତ୍ତାଇବାକୁ ହେବ । ଅତିଶୀଘ୍ର ଆମର ଗୋଟିଏ ଯୁବ କମ୍ୟୁନିଷ୍ଟ ଗୋଷ୍ଠୀ ଦରକାର ହେବ । କାଲି ଗୋଟାଏ କମ୍‌ସୋମୋଲ୍ ପ୍ରଚାରପତ୍ର ଲେଖିବା ଆଉ ଛାପିବାକୁ ଦେବା । ତା'ପରେ ଥିଏଟର ହଲ୍‌ରେ ଗୋଟାଏ ବିରାଟ ଯୁବ ସମ୍ମିଳନୀ କରାଇବା । ରାଜନୈତିକ ବିଭାଗରେ ପହଞ୍ଚି ତମକୁ ଉସ୍ତିନୋଭିଚ୍‌ଙ୍କ ସାଙ୍ଗରେ ପରିଚୟ କରାଇଦେବି ମୁଁ । ମୁଁ ଯଦି ଭୁଲ ନ କହୁଥାଏ, ସିଏ ମଧ୍ୟ ବୋଧହୁଏ ତରୁଣମାନଙ୍କ ସାଙ୍ଗରେ କାମ କରୁଛି ।"

ଦେଖିଲାବେଳକୁ ଉସ୍ତିନୋଭିଚ୍ ଅଠର ବର୍ଷର କଳା କଳା ଗହଳ ଛୋଟ ବବ୍‌କେଶଧାରିଣୀ ସୁନ୍ଦରୀ ତରୁଣୀଟିଏ । ପିନ୍ଧିଛି ନୂଆ ଖାକି ପୋଷାକ । ଅଣ୍ଟାରେ ସରୁ ଚମଡ଼ା କମରପଟି । ସେ ସେର୍ଗେଇକୁ ତା' କାମ ପାଇଁ ଅନେକ ବାଟ ବତାଇଦେଲା, ଦିଗ୍‌ଦର୍ଶନ ଦେଲା, ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଲା । ଆସିବା ଆଗରୁ ବିରାଟ ବହି ଓ ଖବରକାଗଜ ବଣ୍ଡିଲ୍‌ଟାଏ ଦେଲା ସେ ସେର୍ଗେଇକୁ । ସେଥିରୁ ଖଣ୍ଡେ ବହିରେ କମ୍‌ସୋମୋଲ୍ କାର୍ଯ୍ୟକ୍ରମ ଓ ନିୟମାବଳୀ ଅଛି । ସେର୍ଗେଇ ପାଇଁ ଭାରୀ ଦରକାରୀ ବହି ।

ଅନେକ ଡେରିରେ, ରାତିରେ ରେଲ୍‌କମ୍‌କୁ ଫେରିଲାବେଳକୁ ସେର୍ଗେଇ ଦେଖିଲା, ବାହାରେ ତାକୁ ଭାଲ୍ୟା ଅପେକ୍ଷା କରିଛି ।

"ତୋତେ ଲାଜ ନାହିଁ ଟିକେ ?" ପାଟିକରି କହିଲା ଭାଲ୍ୟା, "ଘରୁ ଏମିତି ପଳାଇ ଆସି ବାହାରେ ରହିବାର ମାନେ କ'ଣ ? ମା କାନ୍ଦି କାନ୍ଦି ଆଖି ଫୁଲାଇଛି, ବାପା ତୋ ଉପରେ ରାଗିମାଗି ଖଡ୍‌ଗହସ୍ତ ହୋଇ ଅଛନ୍ତି । ଭାରୀ ଗଣ୍ଡଗୋଳ ହବ ।"

"କିଛି ଗଣ୍ଡଗୋଳ ହେବ ନାହିଁ", ଭାଲ୍ୟାକୁ ଆଶ୍ୱାସନା ଦେଇ କହିଲା ସେର୍ଗେଇ, "ଘରକୁ ଯିବା ପାଇଁ ଜମା ବେଳ ହେଉ ନାହିଁ ଲୋ । ସତ କହୁଛି, ଜମା ବେଳ ହେଉ ନାହିଁ । ଆଜି ରାତିରେ ବି ଯାଇ ହବ ନାହିଁ । କିନ୍ତୁ ତୁ ଆସିଛୁ, ଭଲ ହୋଇଛି । ତୋ ସାଙ୍ଗେ କେତେ କଥା ହେବାର ଅଛି । ଚାଲ ଭିତରକୁ ଯିବା ।"

ଭାଲ୍ୟା ବହୁକଷ୍ଟରେ ତା' ଭାଇକୁ ଚିହ୍ନି ପାରିଲା । ପୂରା ବଦଳିଯାଇଛି ସେ । ଉତ୍ସାହ ଉଦ୍ଦୀପନାରେ ସେ ଯେମିତି ଫାଟି ପଡ଼ୁଛି ।

ସେମାନେ ବସିଲା ପରେ ସିଧାସଳଖ ସେର୍ଗେଇ କହିଲା :

"ଦେଖ, ଏଇଆ ହେଲା ଘଟଣା ଭାଲ୍ୟା । ତୋତେ କମ୍‌ସୋମୋଲ୍‌ରେ ଯୋଗ ଦେବାକୁ ପଡ଼ିବ । ସେଇଟା କ'ଣ ଜାଣିନୁଁ ତୁ ? ଯୁବ କମ୍ୟୁନିଷ୍ଟ ଲିଗ୍ । ଏଠା କାମସବୁ ମୁଁ ଚଳାଉଛି, ବିଶ୍ୱାସ ଆସୁ ନାହିଁ ମୋ କଥାରେ ? ଭଲ କଥା ଦେଖ ଏଇଟା ।"

କାଗଜଟା ପଢ଼ି ଭାଇ ମୁହଁକୁ ବିହ୍ୱଳ ହୋଇ ଚାହିଁରହିଲା ଭାଲ୍ୟା ।

"କମ୍‌ସୋମୋଲ୍‌ରେ ଯୋଗଦେଇ କ'ଣ କରିବି ମୁଁ ?"

ନିଜ ହାତ ପ୍ରସାରିତ କଲା ସେର୍ଗେଇ ।

"ସୁନା ଭଉଣୀଟା, ଅନେକ... ଅନେକ କାମ ଅଛି ଆମକୁ କରିବାକୁ । ମୋତେ ଚାହାଁ । ଏତେ ବ୍ୟସ୍ତ ଅଛି ମୁଁ କାମରେ ଯେ ରାତିରେ ଶୋଇବାକୁ ବି ବେଳ ପାଉ ନାହିଁ । ଆମକୁ ପ୍ରଚାର କରିବାକୁ ହେବ । ଇଗ୍‌ନାତିୟେଭା କହୁଥିଲେ, ଶୀଘ୍ର ଆମକୁ ଥିଏଟର ହଲ୍‌ରେ ଗୋଟାଏ ସଭା କରିବାକୁ ହେବ ଏବଂ ସେଠାରେ ସୋଭିଏତ୍ ଶକ୍ତିର କଥା କହିବାକୁ ହେବ । ପୁଣି ତାଙ୍କ ମତରେ ମୋତେ ଭାଷଣ ଦେବାକୁ ହେବ । କିନ୍ତୁ ମୋତେ ତ ଭାଷଣ ଦେଇ ଆସେ ନାହିଁ ଜମାରୁ । ଲୋକେ ହସିବେ ସିନା ! ସିଏ ଯାହା ହେଉ... ତୋ'ର କମ୍‌ସୋମୋଲ୍‌ରେ ଯୋଗଦେବା କଥା କ'ଣ ହେଲା କହ ?"

"କ'ଣ କହିବି, କିଛି ଭାବିପାରୁ ନାହିଁ ମୁଁ । ମିଶିଲେ ମା' ମୋ ଉପରେ ରାଗି ପାଗଳ ହୋଇଯିବ ।"

"ମା ବିଷୟରେ କିଛି ଭାବନା ଭାଲ୍ୟା, ସିଏ ବୁଝିପାରୁ ନାହିଁ", ସେର୍ଗେଇ କହିଲା । "ତାଙ୍କର ଇଚ୍ଛା, ତାଙ୍କର ପିଲାଏ ତାଙ୍କରି ପଣତକାନି ଧରି ପାଖେ ପାଖେ ଥାଆନ୍ତୁ । ତାଙ୍କର କିନ୍ତୁ ସୋଭିଏତ୍ ଶକ୍ତି ବିରୁଦ୍ଧରେ ତ କିଛି କହିବାର ନାହିଁ । ବରଂ ଓଲଟା, ତାଙ୍କର ଏଥିପାଇଁ ସମର୍ଥନ ଅଛି । ତାଙ୍କର କିନ୍ତୁ ଇଚ୍ଛା ଯେ ଆଉ ଲୋକଙ୍କର ପିଲାଏ ଲଢ଼େଇ କରନ୍ତୁ । କହିଲୁ, ଏଇଟା କ'ଣ ଭଲ କଥା ? ମନେ ଅଛି ନାଁ, ଝୁଖ୍‌ରାଇ

ଆମକୁ କ'ଣ କହିଥିଲେ ? ଆଉ ପାଭେଲ୍ କଥା ମନେ ପକାଇଲୁ ? ସିଏ ତ ତା' ମାଆଙ୍କ କଥା ଭାବିବାକୁ ପଛେଇଗଲା ନାହିଁ ? ଏବେ ସମୟ ଆସିଛି, ଯେବେ ଆମେ ଯୁବଶକ୍ତି ଏକ ନବଜୀବନ ପାଇଁ, ଆମର ଦାବୀ ପାଇଁ ସଂଗ୍ରାମ କରିବା । ଏଥି ପାଇଁ ତୁ ଭାଲ୍ୟା, ମନା କରିବୁ ନାହିଁ ନିଶ୍ଚୟ । ଭାବିଲୁ ଦେଖି, କେଡ଼େ ସୁନ୍ଦର ହେବ । ତୁ ଝିଅମାନଙ୍କ ସାଙ୍ଗେ କାମ କରି ପାରିବୁ, ଆଉ ମୁଁ ପୁଅମାନଙ୍କ ସାଙ୍ଗେ କାମ କରିବି । ଆରେ ମୋର ମନେ ପଡ଼ୁଛି, ଆଜି ଯାଇ ନାଲିମୁଣ୍ଡିଆ କିମ୍‌କାକୁ ବାଗେଇବାକୁ ପଡ଼ିବ । ହଉ, ଭାଲ୍ୟା କହିଲୁ, କ'ଣ ଭାବୁଛୁ ତୁ ? ତୁ ଆମ ସାଙ୍ଗରେ ଅଛୁ ନା ନାହିଁ ? ଏଇ ଛୋଟ ବହିଟି ପଢ଼ । ଏଥିରେ ସବୁ ଅଛି ।"

ପକେଟ୍‌ରୁ କମ୍‌ସୋମୋଲ୍ ନିୟମାବଳୀ ବହିଟି କାଢ଼ି ଭାଲ୍ୟାକୁ ଦେଲା ସେ ।

"କିନ୍ତୁ ଯଦି ପେଟ୍‌ଲ୍ୟୁରାମାନେ ପୁଣି ଫେରନ୍ତି, କ'ଣ ହେବ ସେତେବେଳେ ?" ଅନୁଚ୍ଚ ଗଳାରେ ପଚାରିଲା ଭାଲ୍ୟା, ଭାଇର ଆଖିରେ ଆଖି ମିଳାଇ ।

ଏଯାଏଁ ଏ କଥାଟା ସେର୍ଗେଇର ମନକୁ ଛୁଇଁ ନ ଥିଲା । ସେଥିପାଇଁ ମୁହୂର୍ତ୍ତକ ପାଇଁ ହଡ଼ବଡ଼େଇ ଗଲା ସେ ।

"ଆଉମାନଙ୍କ ସାଙ୍ଗରେ ମୋତେ ବି ଯିବାକୁ ପଡ଼ିବ", ସିଏ କହିଲା । "ହଁ, କିନ୍ତୁ ତୋର କ'ଣ ହେବ ? ଏଇ କଥାଟା ମା'କୁ ଚିନ୍ତାନ୍ୱିତ କରିବ, ତା'ମନରେ ଦୁଃଖ ହବ ଏ କଥାଟାରେ", ନୀରବତାରେ ବୁଡ଼ିଗଲା ସେ ।

"କିନ୍ତୁ ସେରୋଝା, ତୁ କ'ଣ ମୋତେ ମା' ବା ଆଉ କେହି ନ ଜାଣି ସେମାନଙ୍କ ଅଜ୍ଞାତରେ ଦଳରେ ମିଶାଇ ପାରିବୁ ନାହିଁ ? କେବଳ ତୁ ଆଉ ମୁଁ ଜାଣିବା ? ମୁଁ ଏମିତି ସାହାଯ୍ୟ କରିପାରିବି । ସେଇଟା ସବୁଠୁଁ ଭଲ ହବ ।"

"ସେଇଆ ହେଉ । ତୁ ଠିକ୍ କହିଛୁ, ଭାଲ୍ୟା ।"

ଏତିକିବେଳେ, ଇଗ୍‌ନାତିୟେଭା ସେ ଘର ଭିତରକୁ ପଶିଆସିଲେ ।

"ଇଏ ମୋ ଛୋଟ ଭଉଣୀ ଭାଲ୍ୟା, କମ୍ରେଡ୍ ଇଗ୍‌ନାତିୟେଭା । ତା'ସାଙ୍ଗେ ମୁଁ ତା'ର କମ୍‌ସୋମୋଲ୍‌ରେ ଯୋଗଦେବା କଥା କଥାବାର୍ତ୍ତା ହେଉଥିଲି । ଭଲ କାମିକା ସଭ୍ୟାଟିଏ ହେବ ସିଏ, କିନ୍ତୁ ଗୋଟାଏ କଥା, ଆମେ କ'ଣ ଭାଲ୍ୟାକୁ ଏମିତି କିଛି କାମ ଦେଇପାରିବା, ଯେଉଁଥିରେ ଆଉ କେହି ତା'ର ମେମ୍ବର ହେବା କଥା ଜାଣି ପାରିବେ ନାହିଁ ? କାରଣ ଆମ ମା' ଅସୁବିଧା କରିପାରେ । ଦେଖନ୍ତୁ, ଆମକୁ ହୁଏତ ଏ ସହର ଛାଡ଼ିଦେବା ପାଇଁ ପଡ଼ିପାରେ । ସେତେବେଳେ ମୁଁ ହୁଏତ ସେନାବାହିନୀ ସହିତ ଗ୍ଲିଯିବି । କିନ୍ତୁ ମା' ଅସୁବିଧାରେ ପଡ଼ିଯିବ — ଭାଲ୍ୟା ଭୟ କରୁଛି ... ।"

ଗୋଟାଏ ଚଉକି ବାଡ଼ାରେ ଆଉଜି ବସି ଗମ୍ଭୀର ହୋଇ ଶୁଣୁଥିଲେ ଇଗ୍‌ନାତିୟେଭା ।

"ହଁ, ସେଇଟା ଭଲ ଉପାୟ", ସେ ସମ୍ମତି ଦେଲେ ।

* * *

ଉତ୍ତେଜିତ ଯୁବକମାନଙ୍କର କଳଗୁଞ୍ଜନ ଶୁଭୁଥିଲା—ଥିଏଟର ହଲ୍ ଭରପୂର ହୋଇଉଠିଥିଲା, ସହରସାରା ମରାହୋଇଥିବା ବିଜ୍ଞପ୍ତି ଜାଣି ଆସି ଏକତ୍ର ହୋଇଥିବା ଯୁବକ ଯୁବତୀରେ । ଚିନିକଳର ଯୁବ ସଂପ୍ରଦାୟ ଶ୍ରମିକଙ୍କର ସଙ୍ଗଠିତ ଗୋଟିଏ ବ୍ୟାଣ୍ଡ ବାଜୁଥିଲା । ସ୍ଥାନୀୟ ସେକେଣ୍ଡରୀ ସ୍କୁଲ ଓ ଜିମ୍ନାସିଅମ୍‌ର ଛାତ୍ରଙ୍କ ସମ୍ମିଳନୀରେ ଗଠିତ ଦର୍ଶକମଣ୍ଡଳୀ ଏହା ଅପେକ୍ଷା ପରବର୍ତ୍ତୀ କାଳରେ ହେବାକୁ ଥିବା ଐକ୍ୟସଙ୍ଗୀତ ପ୍ରତି ଆଗ୍ରହୀ ଥିଲେ ଅଧିକ ।

ସର୍ବଶେଷରେ ପରଦା ଉଠିଲା ଏବଂ ସଙ୍ଗେ ସଙ୍ଗେ ପହଞ୍ଚିଥିବା ଉୟେଜ୍‌ଦ ସମିତିର ସମ୍ପାଦକ କମ୍ରେଡ୍ ରାଜିନ୍ ମଞ୍ଚ ଉପରେ ଦେଖାଦେଲେ ।

ସମସ୍ତଙ୍କ ଆଖି ଯାଇଁ ଠୁଳୀଭୂତ ହେଲା ଅଳ୍ପ ଉଚ୍ଚତାସମ୍ପନ୍ନ, ସୁନ୍ଦର ଗଠନର, ଶୁଆଭଳି ତୀକ୍ଷ୍ଣ ନାକର ଏହି ଲୋକଟି ଉପରେ ଓ ସମସ୍ତେ ସ୍ଥିର ହୋଇ ତାଙ୍କର ଭାଷଣକୁ ଶୁଣିଲେ ।

ସାରା ଦେଶରେ ଆଲୋଡ଼ନ ଆଣିଥିବା ଗଣସଂଗ୍ରାମର କଥା ସେ କହି, ସମସ୍ତଙ୍କୁ କମ୍ୟୁନିଷ୍ଟ ପାର୍ଟିର ପତାକା ତଳେ ଏକଜୁଟ ହେବା ପାଇଁ ଆହ୍ୱାନ ଦେଲେ । ଜଣେ ଅଭିଜ୍ଞ ବକ୍ତା ଭଳି କହୁଥାନ୍ତି ସେ, ମାତ୍ର ଅନେକ ଥର 'ଅର୍ଥୋଡକ୍ସ ମାର୍କସିଷ୍ଟ', 'ଉଗ୍ରଜାତୀୟବାଦୀ' ଆଦି ଏମିତି କେତେ ଶବ୍ଦ ଉଚ୍ଚାରଣ କରୁଥାନ୍ତି, ଯାହା ଶ୍ରୋତାମାନେ ବୁଝିପାରୁ ନଥାନ୍ତି । ସେ ଯାହା ହେଉ, ତାଙ୍କ ଭାଷଣ ଶେଷ ହେଲା ପରେ ଶ୍ରୋତୃବର୍ଗ ଉଚ୍ଛ୍ୱସିତ ପ୍ରଶଂସା କଲେ । ତାଙ୍କ ଭାଷଣର ପରବର୍ତ୍ତୀ ବକ୍ତା ସେର୍ଗେଇର ପରିଚୟ ପ୍ରଦାନ କରି ସେ ମଞ୍ଚ ଉପରୁ ଓହ୍ଲାଇଗଲେ ।

ସେର୍ଗେଇ ଯାହା ଡରୁଥିଲା, ଅବିକଳ ସେଇଆ ଘଟୁଛି । ବର୍ତ୍ତମାନ ଦର୍ଶକମାନଙ୍କ ଆଗରେ ମୁହାଁମୁହିଁ ଠିଆ ହୋଇଛି ସେ । କ'ଣ ଯେ କହିବ, ସେକଥା ଜାଣେ ନାଁ ସେର୍ଗେଇ । ଥଙ୍ଗ ଥଙ୍ଗ ହୋଇ ଅଟକିଗଲା ସେ । ମଞ୍ଚ ଉପରୁ ତାଙ୍କ ଆସନରୁ ଇଗ୍‌ନାତିୟେଭା ଫୁସ୍‌ଫୁସ୍ କରି ତାକୁ କହିଲେ :

"ଏଠାରେ କମ୍‌ସୋମୋଲ୍ ଦଳ ଗଠନ କରିବା କଥା କୁହ ସେମାନଙ୍କୁ !"

ସେର୍ଗେଇ ପ୍ରଥମରୁ ହିଁ ମୂଳକଥା ଆରମ୍ଭ କଲା :

"ହଁ, କମ୍ରେଡ୍‌ଗଣ ... ଯାହା କୁହାଯିବା କଥା, ଆପଣମାନେ ସବୁ ଶୁଣିଛନ୍ତି । ଆମେ ବର୍ତ୍ତମାନ ଯାହା କରିବା ଆବଶ୍ୟକ, ତାହା ହେଉଛି, ଏଠାରେ ମଧ୍ୟ ଏକ କମ୍‌ସୋମୋଲ୍ ସେଲ୍ ଗଠନ କରିବା । କିଏ ଏହା ସପକ୍ଷରେ ?"

ଉପସ୍ଥିତ ଯୁବମଣ୍ଡଳୀ ଭିତରେ ଏକ ନିସ୍ତବ୍ଧତା ଖେଳିଗଲା । ଉସ୍ତିନୋଭିଚ୍ ଉଠିପଡ଼ିଲା ଓ ମସ୍କୋରେ ଯୁବ ସଂପ୍ରଦାୟ କିଭଳି ସଙ୍ଗଠନ କରିଛନ୍ତି ସେକଥା କହିଲା । ସେର୍ଗେଇ ସଙ୍କୋଚରେ ଗୋଟିଏ ପାଖକୁ ଛିଡ଼ା ହୋଇଥାଏ ।

ଏଠାରେ ଏକ କମ୍‌ସୋମୋଲ୍ ସେଲ୍ ପ୍ରତିଷ୍ଠା ବିଷୟରେ ଉପସ୍ଥିତ ଯୁବ ସଂପ୍ରଦାୟର ପ୍ରତିକ୍ରିୟା ଦେଖି ମନେମନେ ଉତ୍ତ୍ୟକ୍ତ ହୋଇଉଠୁଥିଲା ସେ ଓ ସେମାନଙ୍କ ଉପରେ ଖିଙ୍କାରି

ଉଠୁଥିଲା । ସେମାନେ ଉଷ୍ଟିନୋଭିଚ୍‌ର କଥା ଶୁଣୁ ନ ଥିଲେ ଆଦୌ । ସେର୍ଗେଇ ଦେଖିଲା ବକ୍ତା ଆଡ଼କୁ ଘୃଣାବ୍ୟଞ୍ଜକ ଆଖିଠାରି ଜାଲିଭାନୋଭ୍, ଲିଜା ସୁଖାର୍କୋ କାନରେ ଫୁସ୍‌ଫୁସ୍ କରି କ'ଣ କହିଲା । ପ୍ରଥମ ଧାଡ଼ିରେ, ମୁହଁରେ ପାଉଡର ବୋଳି ଉଚ୍ଚ ବିଦ୍ୟାଳୟର ଝିଅଗୁଡ଼ାକ ବସିଥିଲେ ଓ ସଭାମଞ୍ଚର ଲୋକମାନଙ୍କ ଆଡ଼କୁ ତିର୍ଯ୍ୟକ ଦୃଷ୍ଟି ନିକ୍ଷେପ କରି ନିଜ ନିଜ ଭିତରେ କ'ଣ ସବୁ ଭୁଟ୍‌ଭାଟ୍ ହେଉଥିଲେ । ସେକଡ଼ ପଛ କୋଣକୁ ବସିଥିଲେ ଦଳେ ତରୁଣ ଲାଲ ଫୌଜୀ ସୈନିକ । ସେମାନଙ୍କ ମଝିରେ ବସିଥିବା ସେ ତରୁଣ ମେସିନ୍‌ଗନ୍ ଚାଳକକୁ ମଧ୍ୟ ଦେଖିଲା ସେର୍ଗେଇ । ସେ ମଞ୍ଚର ଦାଡ଼କୁ ବସି ଆଖିରେ ସ୍ପଷ୍ଟ ଘୃଣା ପ୍ରକଟିତ କରି, ଚିକ୍‌ଚିକିଆ ପୋଷାକ ପିନ୍ଧି ଓ ସଭାରେ ଘଟୁଥିବା ଘଟଣା ପ୍ରତି ଭ୍ରୂକ୍ଷେପ ନ କରି ନିଜ ନିଜ ସାଙ୍ଗରେ ଆଣିଥିବା ଲୋକଙ୍କ ସହିତ ଗପରେ ମାତିଥିବା ଲିଜା ସୁଖାର୍କୋ ଓ ଆନ୍ନା ଆଦ୍‌ମୋଭ୍‌ସ୍କାୟାକୁ ଚାହିଁଥିଲା ।

କେହି ଯେ ତା'କଥା ଶୁଣୁ ନାହାନ୍ତି, ଏହା ଲକ୍ଷ୍ୟ କରି ଉଷ୍ଟିନୋଭିଚ୍ ନିଜ ଭାଷଣ ଶୀଘ୍ର ଶୀଘ୍ର ଶେଷ କରି ଉଦ୍ଦିଷ୍ଟ ଆସନରେ ବସିପଡ଼ିଲା । ତା' ପଛରେ ଉଠିଲେ ଇଗ୍‌ନାତିୟେଭା । ତାଙ୍କର ଶାନ୍ତ ଓ ଗମ୍ଭୀର ଭାଷଣ ଦର୍ଶକମଣ୍ଡଳୀଙ୍କୁ ସ୍ଥିର କରିଦେଲା ।

"କମ୍ରେଡ୍‌ଗଣ !" ସେ କହିଲେ, "ଆଜି ଏଠି ଯାହାସବୁ କୁହାଗଲା, ସେ ବିଷୟରେ ଧୀରସ୍ଥିର ହୋଇ ଭାବିବା ପାଇଁ ମୁଁ ଆପଣମାନଙ୍କୁ ନିବେଦନ କରୁଛି । ମୁଁ ଦୃଢ଼ ବିଶ୍ୱାସ କରେ ଯେ, କେବଳ ନୀରବ ଦର୍ଶକ ହୋଇ ନରହି ଆପଣମାନଙ୍କ ମଧ୍ୟରୁ ଅନେକେ ବିପ୍ଳବରେ ସକ୍ରିୟ ସହଯୋଗ କରିବେ । ଆପଣଙ୍କୁ ସ୍ୱାଗତ ଜଣାଇବା ପାଇଁ ଦ୍ୱାର ଉନ୍ମୁକ୍ତ ! ଆମେ ଆପଣମାନଙ୍କର ମତାମତ ମଧ୍ୟ ଶୁଣିବାକୁ ଚାହୁଁ । ଆପଣମାନଙ୍କ ମଧ୍ୟରୁ କେହି ଯଦି କିଛି କହିବାକୁ ଚାହୁଁଥାନ୍ତି, ଆମେ ତାଙ୍କୁ ମଞ୍ଚ ଉପରକୁ ଆସି କହିବାକୁ ସାଦର ଆହ୍ୱାନ ଜଣାଉଛୁ ।"

ସାରା ସଭାସ୍ଥଳରେ ପୁଣି ଥରେ ନୀରବତା ଖେଳିଗଲା । ତା'ପରେ ସବାପଛରୁ ଗୋଟିଏ ସ୍ୱର ଶୁଭିଲା :

"ମୁଁ କହିବାକୁ ଚାହେଁ ।"

ମିଶା ଲେଭ୍‌ଚୁକୋଭ୍, ଗୋଟାଏ ଛୋଟ ଭାଲୁଭଳି ଚେହେରା ତା'ର, ଟିକିଏ ଟେରା ହୋଇ ଯୁବକଟିଏ ମଞ୍ଚ ଉପରକୁ ଚଢ଼ିଆସିଲା ।

"ବର୍ତ୍ତମାନ ଅବସ୍ଥାରେ ବଲ୍‌ଶେଭିକ୍‌ଙ୍କୁ ସମର୍ଥନ ଜଣାଇବା ଆବଶ୍ୟକ । ମୁଁ ଏଥିରେ ରାଜି । ସେରୋ୍ୟାଝା ମୋତେ ଜାଣେ, ମୁଁ କମ୍‌ସୋମୋଲ୍‌ରେ ଯୋଗ ଦେଉଛି ।"

ସେର୍ଗେଇ ଦଉଡ଼ିଆସିଲା ମଞ୍ଚ ମଝିକୁ ଆନନ୍ଦରେ ଅଧୀର ହୋଇ ।

"ଦେଖିଲ ଦେଖିଲ କମ୍ରେଡ୍ ! ମୁଁ ଜାଣେ, ସବୁବେଳେ କହିଛି ମିଶା ଆମ ସାଙ୍ଗର ଜଣେ । ତା' ବାପା ଜଣେ ସୁଇଚ୍‌ମ୍ୟାନ୍ ଥିଲେ । ରେଳଚକେ ଚାପିହୋଇ ପ୍ରାଣ ହରାଇଛନ୍ତି ସେ । ସେଇଥି ପାଇଁ ପଢ଼ିପାରିଲା ନାହିଁ ମିଶା । କିନ୍ତୁ ବର୍ତ୍ତମାନ ଯାହା ଦରକାର, ସେକଥା ଜାଣିବା ପାଇଁ ତାକୁ ଜିମ୍‌ନାସିଅମ୍‌କୁ ଯିବାକୁ ପଡ଼ିବ ନାହିଁ ।"

ହଲ୍‌ଟା ସାରା କଳରୋଳ ଖେଳିଗଲା । ସୁନ୍ଦର କରି ଟେରି ବାଗେଇଥିବା ଯୁବକଟିଏ ଭାଷଣ ଦେବା ପାଇଁ ଅନୁମତି ମାଗିଲା । ସ୍ଥାନୀୟ ଜିମ୍‌ନାସିଅମ୍‌ର ଛାତ୍ର ଓକୁଶେଭ୍— ବାପା ତା'ର ସ୍ଥାନୀୟ ଜଣେ ଔଷଧ ଦୋକାନୀ । ନିଜ ପୋଷାକକୁ ଝଡ଼ାଝଡ଼ି କରି ସେ ଆରମ୍ଭ କଲା :

"କମ୍ରେଡ୍‌ଗଣ ! ଆପଣମାନଙ୍କଠାରୁ କ୍ଷମା ମାଗିନେଇ ମୁଁ ଆରମ୍ଭ କରୁଛି । ମୁଁ ବୁଝିପାରୁ ନାହିଁ, ଆମ୍ଭମାନଙ୍କୁ କ'ଣ କରିବାକୁ କୁହାଯାଉଛି ଏଠି । ଆମେମାନେ କ'ଣ ରାଜନୀତିରେ ମିଶିବା ଉଚିତ ? ଯଦି ତାହା ହୁଏ, ତେବେ କେତେବେଳେ ପଢ଼ିବା ଆମେ ? ଆମ୍ଭମାନଙ୍କୁ ଜିମ୍‌ନାସିଅମ୍‌ରେ ପାଠ ଶେଷ କରିବାକୁ ହେବ । ଖେଳ ସୋସାଇଟି, କ୍ଲବ୍ ଯାହା ହେଉପଛେ ଏଠାରେ ସଙ୍ଗଠିତ ହୋଇଛି, ଆମେମାନେ ଏକାଠି ହୋଇ ପଢ଼ିବା ପାଇଁ । ସେକଥା ଅଲଗା । ମାତ୍ର ରାଜନୀତିରେ ମିଶିବା ଅର୍ଥ, ବିପଦ ଭିତରକୁ ପଶିଯିବା ଓ ପରବର୍ତ୍ତୀ କାଳରେ ଫାଶିରେ ଝୁଲିବା ପରି ବିପଦ ମଧ୍ୟ ଏଥିରେ ଅଛି । ମୁଁ ଦୁଃଖିତ ଏବଂ ଭାବିପାରୁ ନାହିଁ ଯେ ଏଥିରେ କେହି ରାଜିହେବେ ବୋଲି ।"

ଓକୁଶେଭ୍ ମଞ୍ଚ ଉପରୁ ଡେଇଁପଡ଼ି ନିଜ ଆସନକୁ ଫେରିଯିବା ମାତ୍ରେ ହଲ୍‌ସାରା ଗୋଟାଏ ହସର ଲହରୀ ଖେଳିଗଲା । ତରୁଣ ମେସିନ୍‌ଗନ୍ ଚାଳକ ହିଁ ପରବର୍ତ୍ତୀ ବକ୍ତା ଭାବେ ଉଠିଆସିଲା । ନିଜ ମୁଣ୍ଡ ଆଗକୁ ଟୋପିଟା ଟାଣିଆଣି ରାଗରେ ତମତମ ହୋଇ ଦର୍ଶକମାନଙ୍କ ଆଡ଼କୁ ତରାଟି ଚାହିଁ ସେ ଚିତ୍କାର କରି କହିଲା :

"ଆପଣମାନେ କାହିଁକି ହସୁଛନ୍ତି ? କୋଉଥି ପାଇଁ ? ଲାଜ ଲାଗୁ ନାହିଁ ଆପଣମାନଙ୍କୁ ?"

ଆଖିଦିଇଟା ତା'ର ଜଳନ୍ତା ଅଙ୍ଗାର ଭଳି ଜଳୁଥିଲା ଦାଉଦାଉ ହୋଇ । ଉତ୍ତେଜନାରେ ଦେହ ତା'ର ଥରିଉଠୁଥିଲା । ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ ସେ ଆରମ୍ଭ କଲା :

"ମୋ ନାଁ ଇଭାନ୍ ଝାରକୀ । ମୁଁ ଜଣେ ବାପ ମା ଛେଉଣ୍ଡ ପିଲା । ମୋର ବାପ କିଏ, ମା' କିଏ ମୁଁ ଜାଣେ ନାହିଁ ଏବଂ ଘର ମୋର କେବେ ନ ଥିଲା କି ଏବେ ବି ନାହିଁ । ସହରର ରାସ୍ତାରେ ରୁଟି ଟୁକୁରାଏ ମାଗିମାଗି ଅଧିକାଂଶ ଦିନ ଉପାସରେ ବିତାଇ ବଢ଼ିଉଠିଛି ମୁଁ । ଗୋଟାଏ କୁକୁରର ଜୀବନ । ହଁ, ମୁଁ କହିବି, ଗୋଟାଏ କୁକୁରର ଜୀବନ ବିତାଉଥିଲି ମୁଁ । ଯେଉଁ ଜୀବନରୁ କାଣିଚାଏ ସୁଦ୍ଧା ଆପଣମାନଙ୍କ ଭଳି ଗେହ୍ଲା ପୁଅମାନେ ଜାଣି ନାହାନ୍ତି । ସୋଭିଏତ୍ ଶାସନ ଆସିଲା । ଲାଲ ଫୌଜୀ ବନ୍ଧୁମାନେ ମୋତେ ରାସ୍ତାରୁ ଗୋଟାଇ ଆଣିଲେ, ଦରଦ ଦେଇ ମଣିଷ କଲେ । ପୂରା ଗୋଟାଏ ବାହିନୀ ମୋତେ ପୋଷ୍ୟ କରିନେଲେ । ପିନ୍ଧିବାକୁ ଲୁଗା ଦେଲେ, ପଢ଼ିବାକୁ ଲେଖିବାକୁ ଶିଖାଇଲେ । ସବୁଠାରୁ ବଡ଼ କଥା ମୋତେ ସେମାନେ ଶିଖାଇଲେ ମଣିଷ କିପରି ହେବାକୁ ହୁଏ । ସେଇମାନଙ୍କ ପ୍ରେରଣାରେ ମୁଁ ବଲ୍‌ଶେଭିକ୍ ହୋଇଛି ଏବଂ ଜୀବନର ଶେଷ ନିଃଶ୍ୱାସଟି ପର୍ଯ୍ୟନ୍ତ ବଲ୍‌ଶେଭିକ୍ ହିଁ ରହିବି । ମୁଁ ଜାଣେ, ଆମେ କାହିଁକି ସଂଗ୍ରାମ

କରୁଛୁ । ଆମେ ସଂଗ୍ରାମ କରୁଛୁ ମୋରି ଭଳି, ଆମରି ଭଳି ଦରିଦ୍ରଙ୍କ ପାଇଁ, ବୁଭୁକ୍ଷୁଙ୍କ ପାଇଁ — ଖଟିଖିଆ ଶ୍ରମିକଙ୍କର ସରକାର ଗଢ଼ିବା ପାଇଁ । ତମେ ଦାନ୍ତ କିଲେଇ ସେଠି ବସିଛ, ମାତ୍ର ଜାଣ ନାହିଁ ଯେ, ଏଇ ସହର ପାଇଁ ଦୁଇଶହ କମ୍ରେଡ୍ ପ୍ରାଣବଳୀ ଦେଇଛନ୍ତି । ସେମାନେ ନିଃଶେଷ ହୋଇଗଲେ ।"

ଝାର୍‌କାର ସ୍ୱର କମ୍ପି ଉଠୁଥିଲା, ଥରିଉଠୁଥିଲା, ଅନୁରଣିତ ହେଉଥିଲା ସାରା ହଲ୍‌ରେ । ସେ କହିଚାଲିଲା :

"ହସି ହସି ଆମରି ପାଇଁ, ଆମରି ସୁଖ ପାଇଁ ସେମାନେ ତାଙ୍କର ଜୀବନ ଦେଇଗଲେ । ଦେଶସାରା ଅଗଣିତ ଲୋକ ଜୀବନ ଦେଉଛନ୍ତି ସବୁ ସାମ୍ନାଖ୍ୟରେ ଆଉ ଆପଣମାନେ ଏଠି ବସି ଖେଳୁଛନ୍ତି କାଠଘୋଡ଼ାରେ ?"

"କମ୍ରେଡ୍‌ଗଣ !" ସେ କହିଚାଲିଲା, "ଆପଣ ଅଯଥା ଏମାନଙ୍କୁ କହି ସମୟ ନଷ୍ଟ କରୁଛନ୍ତି", ହଲ୍‌ରେ ଥିବା ଦର୍ଶକମାନଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା ସେ, "ଭାବୁଛନ୍ତି ଏମାନେ ବୁଝିବେ ଆପଣଙ୍କ କଥା ? ନାଁ ... ତା' ହୋଇ ପାରେ ନାଁ । କାରଣ ଭରାପେଟ ଲୋକ କ୍ଷୁଧାର୍ତ୍ତର କମ୍ରେଡ୍ ହୋଇ ନ ପାରେ । କେବଳ ଜଣେ ଲୋକ ଏଠାରେ ଆଗେଇ ଆସିଲା, କାରଣ ସେ ଛେଉଣ୍ଡ, ପିତୃମାତୃହୀନ ଦରିଦ୍ର । ଚିନ୍ତା ନାହିଁ !" ଦର୍ଶକମାନଙ୍କ ଆଡ଼କୁ ଚାହିଁ ସେ ଗର୍ଜନ କଲା, "ଆମେ ଆପଣମାନଙ୍କୁ ବାଦ୍ ଦେଇ ମଧ୍ୟ ଆଗେଇଯିବୁ, ଆମ ସହିତ ଯୋଗଦେବା ପାଇଁ ଆପଣଙ୍କର ସହଯୋଗ ଭିକ୍ଷା କରିବୁ ନାହିଁ ଆମେ । ଆପଣମାନେ ଯା' ଇଚ୍ଛା ତା' କରି ପାରନ୍ତି । ଆପଣମାନଙ୍କ ଭଳି ଲୋକମାନଙ୍କ ସହିତ କଥାବାର୍ତ୍ତା କରିବାର ଏକମାତ୍ର ପଦ୍ଧତି ହେଉଛି ମେସିନ୍‌ଗନ୍ !"

ଏହି ଶେଷ ଠୋକ୍‌କାର ଦେଇ ସେ ମଞ୍ଚ ତଳକୁ ଓହ୍ଲାଇଆସିଲା ଏବଂ ସିଧାସଳଖ ଡାହାଣ କି ବାଁ କୌଣସି ଆଡ଼କୁ ଦୃକ୍‌ପାତ ନ କରି ବାହାରକୁ ବାହାରିଯିବା ରାସ୍ତାକୁ ଚାଲିଆସିଲା ।

ସଭାରେ ସଭାପତିତ୍ୱ କରୁଥିବା କେହି ପରବର୍ତ୍ତୀ କାଳରେ ସଙ୍ଗୀତ କାର୍ଯ୍ୟକ୍ରମ ପାଇଁ ଅପେକ୍ଷା କଲେ ନାହିଁ ।

"କି ଗଣ୍ଡଗୋଳ !" ସେର୍ଗେଇ ବିପ୍ଳବୀ କମିଟିକୁ ଫେରିବା ବାଟରେ କହିଲା :

"ଝାର୍‌କା ସତ କହୁଥିଲା — ସେ ଜିମ୍‌ନାସିଅମ୍‌ର ପିଲାଗୁଡ଼ାଙ୍କୁ ଧରି କିଛି କରିହେବ ନାହିଁ । ସେମାନେ କେବଳ ତମକୁ ଉତ୍ୟକ୍ତ କରିଦେବେ ।"

"ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ", ଇଗ୍‌ନାଟିୟେଭା ତାକୁ ବାଧାଦେଇ ମଝିରେ କହିଲେ :

"ସେମାନଙ୍କ ଭିତରେ ସର୍ବହରା ଯୁବକ କେହି ପ୍ରାୟ ନ ଥିଲେ । ଅଧିକାଂଶ ପେଟି-ବୁର୍ଜୁଆଙ୍କର ପୁଅ ବା ସ୍ଥାନୀୟ ବୁଦ୍ଧିଜୀବୀଙ୍କର ପିଲାଝିଲା । ସମସ୍ତେ ସଂସାରବାଦୀ । ତମକୁ କରତକଳ କି ଚିନିକଳର ଶ୍ରମିକମାନଙ୍କୁ ନେଇ କାମ କରିବାକୁ ହେବ । କିନ୍ତୁ ସେ ସଭାଟା ପୂରାପୂରି ବ୍ୟର୍ଥ ନୁହଁ । ତୁମେ ଛାତ୍ରମାନଙ୍କ ଭିତରେ ବି ଅନେକ ଭଲ କମ୍ରେଡ୍ ପାଇବ ।"

ଉସ୍ତିନୋଭିଚ୍ ମଧ୍ୟ ଇଗ୍ନାତିୟେଭାଙ୍କ କଥାରେ ସମ୍ମତ ହେଲେ ।

"ସେରୋ୍ୟାଝା, ଆମର ଦାୟିତ୍ୱ ହେଲା", ସେ କହିଲା, "ଆମର ଚିନ୍ତାଧାରା, ଆମର ସ୍ଲୋଗାନକୁ ସମସ୍ତଙ୍କୁ ଜଣାଇବା, ସମସ୍ତଙ୍କ ନିକଟରେ ପହଞ୍ଚାଇବା । ପ୍ରତ୍ୟେକଟି ନୂଆ ଘଟଣା ପ୍ରତି ପାର୍ଟି ସମସ୍ତ ଖଟିଖିଆ ଲୋକଙ୍କର ଦୃଷ୍ଟି ଆକର୍ଷଣ କରିବ । ଆମକୁ ଅନେକ ସଭା, ସମ୍ମିଳନୀ, କଂଗ୍ରେସ୍ କରିବାକୁ ପଡ଼ିବ । ଏବେ ରାଜନୈତିକ ବିଭାଗ, ଷ୍ଟେସନ୍‌ରେ ଗୋଟାଏ ଗ୍ରୀଷ୍ମକାଳୀନ ଥିଏଟର ଖୋଲୁଛନ୍ତି । ଆଉ ଦିନାକେତେ ପରେ ପ୍ରଚାର ଟ୍ରେନ୍‌ଟିଏ ପହଞ୍ଚିବାର ଅଛି ଏବଂ ସେମାନେ ଅତି ନିଷ୍ଠାର ସହିତ ସବୁକାମ କରିବେ । ମନେରଖ, ଲେନିନ୍ ଯାହା କହିଛନ୍ତି—"ଜନଗଣଙ୍କୁ, ଲକ୍ଷ ଲକ୍ଷ ଖଟିଖିଆ ଜନସାଧାରଣଙ୍କୁ ସଂଗ୍ରାମ ପ୍ରତି ଆକୃଷ୍ଟ ନକରି ପାରିଲା ପର୍ଯ୍ୟନ୍ତ ଆମର ବିଜୟ ଅସମ୍ଭବ ।"

ସେଦିନ ସନ୍ଧ୍ୟା ବିତିଯିବା ପରେ ଉସ୍ତିନୋଭିଚ୍‌ଙ୍କ ସାଙ୍ଗରେ, ତାଙ୍କୁ ପହଞ୍ଚାଇଦେବାକୁ ଷ୍ଟେସନ୍ ପର୍ଯ୍ୟନ୍ତ ଗଲା ସେର୍ଗେଇ । ବିଦାୟ ମାଗି ଆସିଲାବେଳକୁ ସେ ଉସ୍ତିନୋଭିଚ୍‌ଙ୍କ ହାତକୁ ଦୃଢ଼ଭାବରେ ମୁଠାଇଧରିଲା ଅନେକ ବେଳଯାଏ—ଦରକାରଠାରୁ ଅଧିକ ସମୟ । ଉସ୍ତିନୋଭିଚ୍‌ଙ୍କ ମୁହଁରେ ଗୋଟାଏ ହାଲୁକା ହସର ପ୍ରଲେପ ବୋଳି ହୋଇଗଲା ।

ଫେରିବା ବାଟରେ ସେର୍ଗେଇ ନିଜ ଘରକୁ ଗଲା ସମସ୍ତଙ୍କୁ ଟିକିଏ ଦେଖାକରିଦେଇ ଯିବ ବୋଲି ।

ନୀରବରେ ମାଆର ଗାଳିସବୁ ମୁଣ୍ଡପାତି ସହିଲା ସେ, ମାତ୍ର ବାପା ଖିଙ୍କାରି ଉଠିଲା ମାତ୍ରେ ସେର୍ଗେଇ ତାଙ୍କୁ ସବୁ ବୁଝାଇ କହିବାକୁ ଆରମ୍ଭ କଲା ଓ ଜାଖାର୍ ଭାସିଲିୟେଭିଚ୍ ବଡ଼ ଅସୁବିଧାରେ ପଡ଼ିଲେ ।

"ବର୍ତ୍ତମାନ ଶୁଣ ବାପା, ତମେ ଯେତେବେଳେ ଜର୍ମାନ୍‌ମାନଙ୍କ ବିରୁଦ୍ଧରେ ଧର୍ମଘଟ କରି ସେ ସବୁକୁ ମାରିଦେଲ, ଇଞ୍ଜିନ୍ ଉପରେ ସେତେବେଳେ ତମେ ତମ ପରିବାର କଥା ଚିନ୍ତା କରିଥିଲ—ନୁହଁକି ? ନିଶ୍ଚୟ କରିଥିଲ । ମାତ୍ର ତଥାପି ତମେ ସେ କାମ କଲ । କାରଣ ତମର ଶ୍ରମଜୀବୀର ବିବେକ, ସେ କାମ କରିବା ପାଇଁ ପ୍ରରୋଚିତ କଲା । ମୁଁ ବୁଝିପାରୁଛି, ଯଦି ଆମ୍ଭେମାନେ ହଟିଯାଉ, ତମେସବୁ କେବଳ ମୋ ପାଇଁ ବନ୍ଧା ହୋଇଯିବ । ମାତ୍ର କୌଣସିମତେ ମୁଁ ଘରେ ରହିପାରିଲି ନାହିଁ । ତମେ ନିଜେ ଜାଣ ସବୁ ବାପା, ତଥାପି କାହିଁକି ମିଛରେ ଚିଡ଼ୁଛ ? ମୁଁ ଭଲ କାମ ପାଇଁ ଯାଉଛି । ସେଥିରେ ତମେ ମୋତେ ସମର୍ଥନ ଦେବା କଥା । ତା' ନକରି, ତମେ ଗୋଇଠା ମାରୁଛ ? ଗ୍ଲାନ୍ତ ଲାଗି ପଡ଼ିବା—ତା'ପରେ ମା' ବି ଗାଳିଦେବା ଛାଡ଼ିଦେବ ।"

ବାପାକୁ ଟା'ର ସମ୍ମାନ ଦେଖାଇ, ସ୍ୱଚ୍ଛ ନୀଳ ଆଖିରେ ତା'ର ସ୍ନେହପୂର୍ଣ୍ଣ ହସ ଫୁଟାଇଲା ସେ । ସେ ଦୃଢ଼ ନିଶ୍ଚିତ ଥିଲା ଯେ, ତା'ରି ପନ୍ଥା ହିଁ ଠିକ୍ ।

ଜାଖାର୍ ଭାସିଲିୟେଭିଚ୍ ବସିଥିବା ବେଞ୍ଚଟା ଉପରେ ଟିକିଏ ଏକଡ଼ ସେକଡ଼ ହେଲେ ଅସ୍ୱସ୍ତିକର ଭାବରେ । ତା'ପରେ ତାଙ୍କର ମୋଟା ବହଳିଆ ନିଶ ଓ କହରା ଛୋଟ ଦାଢ଼ି ଭିତରୁ ହଳଦିଆ ଦାନ୍ତପଟିକ ଦେଖାଗଲା । ସେ ମଧ୍ୟ ହସିଲେ ।

"ଏତେ ଟିକେ ପିଲା ! ଏଥିଭିତରେ ଶ୍ରେଣୀ ଚେତନଶୀଳତାର କଥା ମୋତେ ଶୁଣଉଛୁ ତୁ ? ଭାବୁଛୁ, ସେ ରିଭଲଭରଟା ଟଙ୍ଗେଇଛୁ ବୋଲି ତୋତେ ମୁଁ ମାଡ଼ ଦେଇପାରିବି ନାହିଁ ?"

ମାତ୍ର କଣ୍ଠସ୍ୱରରେ କ୍ରୋଧ ନ ଥିଲା ତିଳେମାତ୍ର । ନିଜର ଦ୍ୱିଧା ଦ୍ୱନ୍ଦ୍ୱକୁ ନିବୃତ୍ତ କରି ସେ ପୁଅ ଆଡ଼କୁ ହାତଟା ବଢ଼ାଇଦେଲେ ।

"ଆଗେଇ ଯା ତୁ ସେରୋ୍ୟାଝା, ଆରମ୍ଭ କଲୁଣି ଯେତେବେଳେ । ମୁଁ ସେଥିରେ ତୋତେ ବାଧା ଦେବି ନାହିଁ । କିନ୍ତୁ ଆମକୁ ଏକାବେଳେକେ ଯେମିତି ଭୁଲି ନ ଯାଉ । ବେଳେ ବେଳେ ଆସୁଥିବୁ... ଏଁ ?"

* * *

ରାତି । କବାଟ ଫାଙ୍କବାଟେ ମେଁଗ୍ନଏ ଆଲୁଅ ଆସି ପଡ଼ୁଥିଲା ବାହାର ପାହାଚ ଉପରେ । ବିରାଟ ଓକିଲ ଟେବୁଲ ଘ୍ୱରିପଟେ ଆସବାବପତ୍ରପୂର୍ଣ୍ଣ ହୋଇଥିବା ସେ ଘରଟାରେ ପାଞ୍ଚ ଜଣ ଲୋକ ବସିଥିଲେ ।

ଦୋଲିନିନ୍‌କ୍, ଇଗ୍‌ନାଟିୟେଭ୍, ଚେକା * ସଂସ୍ଥାର ମୁଖ୍ୟ ଟିମୋଷେଙ୍କୋ । ନିଜର କସାକୀୟ ପରଟୋପି ପିନ୍ଧି ସେ କିରଘିଜ୍ ଭଳି ଦିଶୁଥିଲେ । ଏମାନଙ୍କ ଛଡ଼ା ଓସ୍ତାପ୍‌ଚୁକ୍ ରେଲଷ୍ଟେସନ୍‌ର କର୍ମଗ୍ନରୀ ପ୍ରକାଣ୍ଡ ଦେହବିଶିଷ୍ଟ, ଚେପ୍‌ଟା ନାକା ଶୁଦିକ୍ ମଧ୍ୟ ଥିଲେ । ରେଭ୍‌କମ୍‌ର ଏକ ସଭା ଗ୍ନଲିଥିଲା ।

ଟେବୁଲ ଉପରେ ଝୁଙ୍କିପଡ଼ି କଠିନଭାବରେ ଇଗ୍‌ନାଟିୟେଭାଙ୍କ ଆଡ଼କୁ ଗ୍ନହିଁ କର୍କଶ ଗଳାରେ ଦୋଲିନିନ୍‌କ୍ କହିଲେ :

"ସାନ୍ନ୍ଖ୍ୟକୁ ଯୋଗାଣ ଗ୍ନହିଁ, ଶ୍ରମିକମାନଙ୍କୁ ଖାଇବାକୁ ଦେବା ଦରକାର । ଆମେ ଆସିବା ମାତ୍ରେ ଦୋକାନୀ ଓ ଲାଭଖୋରମାନେ ଦର ଚଢ଼ା କରିଦେଲେ । ସେମାନେ ସୋଭିଏତ୍ ପଇସା ନେବେ ନାହିଁ । ପୁରୁଣା ଜାର୍ ଅମଳର ମୁଦ୍ରା ଓ କେରେନ୍‌ସ୍କି ନୋଟ୍ ହିଁ କେବଳ ଏଠି ପ୍ରଚଳିତ ହେଉଛି । ଆଜି ଆମେ ବସି ଦରଦାମ ଧାର୍ଯ୍ୟ କରିବାକୁ ହେବ । ଆମେ ମଧ୍ୟ ଭଲଭାବରେ ଜାଣିଛେ ଯେ, ଲାଭଖୋରମାନେ ଧାର୍ଯ୍ୟ ଦରରେ ଜିନିଷପତ୍ର ବିକିବେ ନାହିଁ । ସେମାନଙ୍କର ମାଲପତ୍ର ଛପାଇଦେବେ । ସେଭଳି କ୍ଷେତ୍ରରେ ଆମକୁ ଖୋଜି ବାହାର କରି ସେ ରକ୍ତଶୋଷାଗୁଡ଼ାକର ଜିନିଷପତ୍ର ବାଜ୍ୟାପ୍ତ କରିବାକୁ ପଡ଼ିବ । ବର୍ତ୍ତମାନ ଆନନ୍ଦର ସମୟ ନୁହେଁ । ଶ୍ରମିକମାନଙ୍କୁ ଆଉ ଭୋକିଲା ରଖିବା ଉଚିତ ନୁହଁ ଆମ ପକ୍ଷରେ । କମ୍ରେଡ୍ ଇଗ୍‌ନାଟିୟେଭା ଆମକୁ ଅଧିକ ଆଗେଇ ନ ଯିବା ପାଇଁ ସତର୍କ କରୁଛନ୍ତି । ଏହା ଦୁର୍ବଳ ଚିତ୍ତ ବୁଦ୍ଧିଜୀବୀର କଥା, ମୋ ମତରେ । ଖରାପ ଭାବିବ ନାହିଁ ଜୋୟା । ମୁଁ ଜାଣେ, ମୁଁ କ'ଣ କହୁଛି । ପୁଣି ଏହା ଛୋଟ ଛୋଟ ଦୋକାନଦାରମାନଙ୍କ କାମ ନୁହେଁ । ତାଙ୍କ ବିଷୟରେ ନୁହଁ । ମୁଁ ଆଜିଠାରୁ ଖବର ପାଇଛି

---

* କେନ୍ଦ୍ରୀୟ ନିରାପତ୍ତା ସଂସ୍ଥା — ସଂପାଦକ ।

ଯେ, ହୋଟେଲ୍‌ବାଲା ବୋରିସ୍ ଜୋନ୍‌ର ଗୋଟାଏ ଗୁପ୍ତ ସ୍ଥାନ ଅଛି ନିଜ ଘର ଭିତରେ । ଏପରିକି ପେଟ୍ରଗ୍ରାଡ଼ ଆସିବା ଆଗରୁ ବଡ଼ ଦୋକାନୀ ସେଠି ଅନେକ ଜିନିଷପତ୍ର ଲୁଚାଇ ଦେଉଥିଲେ ।" ଟିକିଏ ଅଟକିଯାଇ ସେ ତିମୋଶେଙ୍କୋଙ୍କ ଆଡ଼କୁ ଟିକିଏ ଚତୁର ବିଦ୍ରୂପ କଲାଭଳି ହସିଲେ ।

"କେମିତି ଜାଣିଲ ତମେ ସେକଥା ?" ତିମୋଶେଙ୍କୋ ପଚାରିଲେ । ସେ ଆଶ୍ଚର୍ଯ୍ୟ ଓ ବିରକ୍ତ ହେଉଥିଲେ ଯେ, କେନ୍ଦ୍ରୀୟ ନିରାପତ୍ତା ସଂସ୍ଥା ଏହି ଖବର ପାଇବା ପୂର୍ବରୁ ଦୋଲିନିନ୍‌କ୍ ଜାଣି ପାରିଥିଲେ ।

ଦୋଲିନିନ୍‌କ୍ କହିଉଠିଲେ, "ମୁଁ ସବୁ ଜାଣେ ବନ୍ଧୁ । ହୋଟେଲ୍‌ବାଲାର ଗୁପ୍ତ ଆଟୁର ଖବର ସାଙ୍ଗେ ସାଙ୍ଗେ ଆହୁରି ମଧ୍ୟ ଜାଣିଛି ଯେ, ଗତକାଲି ତମେ ଓ ଡିଭିଜନର ରାଜନୈତିକ ବିଭାଗର କମାଣ୍ଡରର ଡ୍ରାଇଭର, ଦୁହେଁ ମିଶି ଅଧା ବୋତଲ 'ସାମୋଗୋନ୍' ସାଫ୍ କରିଛ ।"

ନିଜ ଚଉକିରେ ଝୁଙ୍କିବସିଲେ ତିମୋଶେଙ୍କୋ ଓ ତାଙ୍କର ଶେଥା ମୁହଁ ଲାଲ ପଡ଼ିଗଲା ।

"ଭଲ କଥା ତ !" ଅନିଚ୍ଛୁକ ଭାବରେ ସେ ପ୍ରଶଂସା ଜଣାଇଲେ ଦୋଲିନିନ୍‌କ୍ କାମର । ମାତ୍ର ଇଗ୍‌ନାତିୟେଭାଙ୍କର ବିରକ୍ତିବ୍ୟଞ୍ଜକ ତୀକ୍ଷ୍ଣ ଚାହାଣୀ ଦେଖି ଆଉ ଅଧିକ ଆଗେଇଲେ ନାହିଁ । "ବଦ୍‌ମାସ ଜଏନରଟା ଚେକାକୁ ବି ନିଜର କରି ପାଇଛି" ବୋଲି ମନେ ମନେ ଭାବିଲେ ସେ ରେଭ୍‌କମ୍‌ର ସଭାପତିଙ୍କୁ ଅନାଇ ଅନାଇ ।

ଦୋଲିନିନ୍‌କ୍ କହିଚାଲିଲେ, "ସେର୍ଗେଇ ବ୍ରୁଝାକ୍ କହିଛି ମୋତେ, ସେଇ ହୋଟେଲ୍‌ର କାହାରିକୁ ଜାଣେ ସେ । ସେ ସେଠାର ରାନ୍ଧୁଣିଆମାନଙ୍କଠାରୁ ଶୁଣିଛି ଯେ, ଜୋନ୍ ସେମାନଙ୍କର ଯେତେ ଯାହା ଦରକାର ଅସୀମ ପରିମାଣରେ ଯୋଗାଇ ଦେଇଥିଲା । ଗତକାଲି ସେର୍ଗେଇ ନିର୍ଦ୍ଦିଷ୍ଟଭାବରେ ସେ ଗୁପ୍ତ ଆଟୁଟାର କଥା ଜାଣିଲା । ଏବେ କେବଳ ସେଇଟାକୁ ଖୋଜି ବାହାର କରିବା କଥା । ତିମୋଶେଙ୍କୋ, ଶୀଘ୍ର ତମ ପିଲାଙ୍କୁ ଏ କାମରେ ଲଗାଅ । ଯଦି ଭାଗ୍ୟରେ ଥାଏ, ତମେ ହିଁ ଶ୍ରମିକମାନଙ୍କୁ ଓ ସୈନ୍ୟବାହିନୀକୁ ଖାଦ୍ୟ ଯୋଗାଇ ଦେଇପାରିବ ।"

ଅଧଘଣ୍ଟାକ ପରେ, ଆଠଜଣ ସଶସ୍ତ୍ର ଲୋକ ହୋଟେଲ୍‌ବାଲା ଘରେ ପଶିଲେ । ଦୁଇଜଣ ବାହାରେ ରହିଲେ ପ୍ରବେଶ ପଥକୁ ଜଗିବା ପାଇଁ ।

ହୋଟେଲ୍ ମାଲିକ, ଗେଡ଼ା ହୋଇ ପିମ୍ପା ଭଳି ଗୋଲଗାଲ ମୋଟା ଲୋକଟିଏ, ଗୋଟିଏ ଗୋଡ଼ ତା'ର କାଠର । ମୁହଁଟା ତାଙ୍କି ହୋଇଯାଇଛି କହରା କହରା ବାଳରେ । ବାହାରି ଆସି ନୂଆ ଆଗନ୍ତୁକମାନଙ୍କୁ ଅତ୍ୟନ୍ତ ନମ୍ରତା ଦେଖାଇ ସାକ୍ଷାତ୍ କଲା ।

ତା'ର ଘାଘଡ଼ା କର୍କଶ ଗଳାରେ ନମ୍ରତା ଉଚ୍ଛୁଟାଇ ପଚାରିଲା :

"ଏତେ ଡେରିରେ ଆପଣମାନେ କ'ଣ ଚାହାନ୍ତି କମ୍ରେଡ୍‌ମାନେ ?"

ଜୋନ୍ ପଛରେ ତା'ର ଝିଅମାନେ ଆସି ଠିଆ ହୋଇଥାନ୍ତି । ଦେହରେ ତାଙ୍କର

ତରବରିଆରେ ପିନ୍ଧି ଆସିଥିବା ଡ୍ରେସିଂ ଗାଉନ୍ । ତିମୋଶେଙ୍କୋର ଟର୍ଚ୍ଚ ଆଲୁଅରେ ଝଲକା ହୋଇ ଆଖି ମିଟିମିଟି କରୁଥାନ୍ତି ସେମାନେ । ପାଖ ବଖରାରୁ ଦୀର୍ଘଶ୍ୱାସ ଘୁମୁରିବାର ଶବ୍ଦ ଶୁଭିଲା । ଶବ୍ଦଟା ଜୋନ୍‌ର ସ୍ତ୍ରୀର । ଶୀଘ୍ର ଶୀଘ୍ର ପୋଷାକ ପିନ୍ଧୁ ପିନ୍ଧୁ ସେମିତି ହେଉଥାଏ ସେ ।

"ଆମେମାନେ ଆସିଛୁ, ତମ ଘର ଖାନ୍‌ତଲାସ କରିବା ପାଇଁ", ତିମୋଶେଙ୍କୋ ତୀକ୍ଷ୍ଣ ସ୍ୱରରେ କହିଲେ ।

ଚଟାଣର ପ୍ରତ୍ୟେକଟି ଉଚ୍ଚ ଜାଗା ତନ୍ନତନ୍ନ କରି ଖୋଳାହେଲା । ବେଶ୍ ପ୍ରଶସ୍ତ ଖଳାବାଡ଼ି ତା'ର । କରତା ହୋଇଥିବା କାଠଗୁଡ଼ାକ ଉଚ୍ଚ ହୋଇ ଗଦା ମରାହୋଇଛି ସେଠି । ରୋଷେଇଘର, ବେଶ୍ ଘର ଭଳି ଆଟୁଟାଏ । ପ୍ରତ୍ୟେକଟି ଜାଗା ଭଲଭାବରେ ଖାନ୍‌ତଲାସ କରାଗଲା । କିନ୍ତୁ ଗୁପ୍ତ ଆଟୁର ଚିହ୍ନବର୍ଣ୍ଣ ବି ମୁଦ୍ଧା ମିଳିଲା ନାହିଁ ।

ରୋଷେଇଘର ପାଖର ଗୋଟାଏ ଛୋଟିଆ ଘରେ ଚାକରାଣୀ ଝିଅଟି ଶୋଇଥିଲା ନିଘୋଡ଼ ନିଦରେ । ଏତେ ଗାଢ଼ ନିଦରେ ସେ ଶୋଇଥିଲା ଯେ, ଏମାନଙ୍କ ପଶିବାର ଶବ୍ଦ ସେ ଶୁଣିପାରି ନାହିଁ । ସେର୍ଗେଇ ତାକୁ ଭଦ୍ରଭାବରେ ଉଠାଇଦେଲା ।

"ତମେ ଏଠି କାମ କର ?" ପଚାରିଲା ସେର୍ଗେଇ । ବାଉଳା ଖାଇ, ନିଦମଳମଳ ଆଖିରେ ଝିଅଟି କାନ୍ଧ ଉପରକୁ ଚାଦର ଟାଣିଆଣି ଆଲୁଅରୁ ନିଜ ମୁହଁକୁ ହାତରେ ଢାଙ୍କିଦେଲା ।

"ହଁ, କିନ୍ତୁ ତମେ କିଏ ?"

ସେର୍ଗେଇ ତାକୁ ସବୁ କହିଲା ଏବଂ ପୋଷାକପତ୍ର ପିନ୍ଧି ପକେଇବାକୁ ନିର୍ଦ୍ଦେଶ ଦେଇ ଘରୁ ବାହାରି ଆସିଲା ।

ପ୍ରଶସ୍ତ ଡାଇନିଙ୍ଗରୁମ୍‌ରେ ତିମୋଶେଙ୍କୋ ହୋଟେଲ୍‌ବାଲାକୁ ପ୍ରଶ୍ନ ପଚାରି ଚାଲିଥିଲେ ଓ ହୋଟେଲ୍ ମାଲିକ ମୁହଁରୁ ରାଗରେ ଫେଣ ବାହାରି ଆସୁଥିଲା । ସେ ଉତ୍ତ୍ୟକ୍ତ ହୋଇ ପାଟି ପାକୁପାକୁ କରୁଥିଲା ଓ କହୁଥିଲା :

"କ'ଣ ଚାହୁଁଛ ତମେ ମୋ ନିକଟରୁ ? ଆଉ ଅଧିକ ଗୁପ୍ତଘର ମୋର ନାହିଁ । ମିଛରେ ତମେ ସମୟ ନଷ୍ଟ କରୁଛ । ମୁଁ ନିର୍ଭର ଜବାବ ଦେଇ କହୁଛି । ହଁ, ଏକଥା ମାନୁଛି ଯେ, ଆଗରୁ ମୋର ଗୋଟାଏ ଗୋଦାମ ଥିଲା, ମାତ୍ର ଏବେ ମୁଁ ଜଣେ ଦରିଦ୍ର ଲୋକ । ପେଟ୍‌ଲ୍ୟୁରା ଲୋକ ସବୁ ସାଫ୍ କରିଦେଇଛନ୍ତି ମୋ ଘରୁ । ମୋତେ ପ୍ରାୟ ମାରିଥିଲେ ସେମାନେ । ସୋଭିଏତ୍ ଶକ୍ତି ଆସିବାକୁ ମୁଁ ସତରେ ଭାରୀ ଖୁସି । କିନ୍ତୁ ଯାହା ମୋର ଅଛି, ସବୁ ଦେଖିଲେ ଆପଣମାନେ ।" ନିଜର ଛୋଟ ଛୋଟ ହାତ ବଢ଼ାଇଦେଲା ସେ ଓ ରାଗରେ ଲାଲ ହୋଇଯାଇଥିବା ତା'ର ଆଖି ଦି'ଇଟା କେନ୍ଦ୍ରୀୟ ନିରାପତ୍ତା ସଂସ୍ଥାର ମୁଖ୍ୟଙ୍କ ନିକଟରୁ ସେର୍ଗେଇ ଯାଏ ଓ ସେର୍ଗେଇ ପାଖରୁ ଛାତର କୋଣଯାଏ ବୁଲିଯାଉଥାଏ ।

ତିମୋଶେଙ୍କୋ ନିଜର ଓଠ କାମୁଡ଼ିଲେ ।

"ତା'ହେଲେ, ତମେ କହିବ ନାହିଁ ନା ? ଶେଷଥର ପାଇଁ ମୁଁ ତମକୁ ଆଦେଶ ଦେଉଛି, ତମର ଗୁପ୍ତ କୋଠରୀ କେଉଁଠି ଅଛି ଦେଖାଇ ଦିଅ !"

"କିନ୍ତୁ କମ୍ରେଡ୍ ଅଫିସର, ଆମ ନିଜର ଖାଇବା ପାଇଁ ମଧ୍ୟ କିଛି ନାହିଁ, ଆମର ଯାହା ଥିଲା, ସେମାନେ ସବୁ ନେଲେ ।" ହୋଟେଲ୍ ମାଲିକର ସ୍ତ୍ରୀ ଭୋଭୋ କରି କାନ୍ଦି ଉଠିବାକୁ ଚେଷ୍ଟା କରୁଥିଲା, କିନ୍ତୁ ପାରିଲା ନାହିଁ ।

"ତମେ କହୁଛ, ତମେ ଖାଇବାକୁ ପାଉ ନ, ନା ? କିନ୍ତୁ ଗୋଟାଏ ଚାକରାଣୀ ରଖିଛ ?" ସେର୍ଗେଇ କହିଲା ।

"ସିଏ ଆମ ଚାକରାଣୀ ନୁହଁ—ଗରିବ ଝିଅଟାଏ । ତାକୁ ଆଣି ରଖିଛି ଏଠି, ଆଉ ତା'ର ସଂସାରରେ କେହି ନାହିଁ ବୋଲି । ତାକୁ ପଚାରନ୍ତୁ, ସେ ନିଜେ କହିବ ।"

ତିମୋଶେଙ୍କୋଙ୍କ ଧୈର୍ଯ୍ୟ ଆଉ ରହିଲା ନାହିଁ । ଚିତ୍କାର କରି ସେ କହିଲେ, "ଠିକ୍ ଅଛି । ଏବେ ଆମ କାମ ଆମେ କରୁଛୁ ।"

ସକାଳ ହୋଇଗଲା । ତଥାପି ଖାନତଲାସ ସରିଲା ନାହିଁ । ଦୀର୍ଘ ତେର ଘଣ୍ଟାର ନିଷ୍ଫଳ ପରିଶ୍ରମ ପରେ କ୍ଳାନ୍ତ ହୋଇ, ତିମୋଶେଙ୍କୋ ସିଦ୍ଧାନ୍ତ ନେଇ ସାରିଥିଲେ ତଲାସି ବନ୍ଦ କରିବେ ବୋଲି । ଏତିକିବେଳେ ଠିକ୍ ଚାକରାଣୀ ଝିଅଟିର ଘରର ତଲାସି ନେଇ ବାହାରି ଆସୁଥିଲା ବେଳେ, ତା' ପଛରୁ ଅନୁଚ୍ଚ କ୍ଷୀଣ ସ୍ୱରରେ ଶୁଣିଲା :

"ରୋଷେଇ ଘରେ, ଚୁଲି ପଛରେ ଦେଖ ।"

ଦଶ ମିନିଟ୍ ପରେ, ରୁଷୀୟ ଚୁଲି ପଛରେ ଗୋଟାଏ ଲୁହା ଗଳିକବାଟ ଦେଖାଗଲା ଏବଂ ଘଣ୍ଟାକ ପରେ ଗୋଟାଏ ଦୁଇ ଟନ୍‌ର ଟ୍ରକ୍ ବ୍ୟାରେଲ ଓ ବସ୍ତା ଲଦା ହୋଇ ହୋଟେଲ୍‌ବାଲା ଘରୁ ବାହାରିଗଲା—ଏବେ ନିଦରୁ ଉଠିପଡ଼ିଥିବା ଦେଖଣାହାରୀଙ୍କର ଗହଳି ଭେଦକରି ।

* * *

ଗ୍ରୀଷ୍ମଦିନର ଏକ ସକାଳ । ମାରିୟା ୟାକୋଭ୍‌ଲେଭ୍‌ନା କୋର୍ଗିନା ନିଜର ଛୋଟିଆ ପୁଟଳୀଟି ଧରି ଘରକୁ ଫେରିଲେ । ପାଭେଲ୍‌ର ଯାହା ଯାହା ହୋଇଛି, ସବୁ ଆର୍ତେମ୍‌ଠାରୁ ଶୁଣି ଦୁଃଖରେ ଭୋ ଭୋ କାନ୍ଦିଉଠିଲେ ସେ । ଜୀବନ ତାଙ୍କୁ ନିରର୍ଥକ, ଶୂନ୍ୟ ବୋଧ ହେଲା ବର୍ତ୍ତମାନ । ସେ କାମ ଖୋଜିଲେ ଓ ଦିନାକେତେ ପରେ ଲାଲ ଫୌଜୀ ଲୋକଙ୍କର ବାସନ ମଜାମଜି କାମ ଧରିନେଲେ ଓ ଦରମା ଭାବରେ ଫୌଜଙ୍କୁ ମିଳୁଥିବା ରେସନ୍ ମିଳିଲା ତାଙ୍କୁ ।

ଦିନେ ସନ୍ଧ୍ୟାରେ ସେ ଝରକା ପାଖରେ ଶୁଣିଲେ, ଆର୍ତେମ୍ କାହିଁକି ତରତର ହୋଇ, ଚଞ୍ଚଳ ଚଞ୍ଚଳ ଆସୁଛି । କବାଟ ଖୋଲିଦେଲା ସେ ଓ ଦୁଆରବନ୍ଧ ପାଖରୁ ବଡ଼ ପାଟିରେ କହିଲା :

"ମା' ପାଭ୍‌କାଠୁ ଗୋଟାଏ ଚିଠି ପାଇଛି ।"

ପାଭ୍‌କା ଲେଖିଛି :

"ପ୍ରିୟ ଆର୍ଟେମ୍ ଭାଇ, ତମକୁ ଜଣାଇବାକୁ ଏ ଚିଠି ଲେଖୁଛି ଯେ, ଖୁବ୍ ଭଲରେ ନ ହେଲେ ମଧ୍ୟ ମୁଁ ବଞ୍ଚିଛି । ଗୋଡ଼ରେ ଗୋଟାଏ ଗୁଳି ବାଜିଥିଲା, ଏବେ ଭଲ ହୋଇ ଆସିଲାଣି । ଡାକ୍ତର କହୁଛନ୍ତି, ହାଡ଼ରେ ଆଘାତ ଲାଗି ନାହିଁ । ମୋ ପାଇଁ ବ୍ୟସ୍ତ ହେବ ନାହିଁ । ମୁଁ ଭଲ ହୋଇଯିବି । ହାସ୍‌ପାତାଳରୁ ବାହାରିଲା ପରେ ମୁଁ ଛୁଟି ପାଇପାରେ । ତା'ପରେ ଦିନାକେତେ ପାଇଁ ଘରକୁ ଯିବି । ମା' ପାଖକୁ ଯାଇ ପାରିନି । ଏବେ ମୁଁ ଘୋଡ଼ସବାର ବାହିନୀରେ ଯୋଗ ଦେଇଛି, ଯାହାର କମାଣ୍ଡର ହେଉଛନ୍ତି କମ୍ରେଡ୍ କୋଟୋଭ୍‌ସ୍କି । ତମେ ତାଙ୍କ କଥା ନିଶ୍ଚୟ ଶୁଣିଥିବ । କାରଣ ସେ ତାଙ୍କର ବୀରତ୍ୱ ପାଇଁ ଖୁବ୍ ପ୍ରସିଦ୍ଧ । ମୁଁ ଏହା ପୂର୍ବରୁ ତାଙ୍କ ଭଳି କାହାରିକୁ ଦେଖି ନଥିଲି ଏବଂ ତାଙ୍କ ପ୍ରତି ମୋର ଅସୀମ ସମ୍ମାନ ଅଛି । ମା ଫେରିଲାଣି କି ନାହିଁ ? ଯଦି ଫେରିଥାଏ, ତାକୁ ମୋର ସ୍ନେହ ଓ ପ୍ରଣାମ ଜଣାଇଦେବ । ମୋର ସମସ୍ତ ଦୋଷ, ଯେତେ ଅସୁବିଧା ତମକୁ ଦେଇଛି, ସବୁ କ୍ଷମା ଦେବ ।

ଭାଇ, ତମେ ଦୟାକରି ସେ ଜଙ୍ଗଲ ଅଫିସରଙ୍କ ଘରକୁ ଯାଇ ଏ ଚିଠି ସଂପର୍କରେ ସେମାନଙ୍କୁ ଜଣାଇବ ।

ତମର ସାନ ଭାଇ

ପାଭେଲ୍ ।"

ପାଭେଲ୍‌ର ଚିଠି ଉପରେ ଅଶେଷ ଲୁହ ଝରାଇଲେ ମାରିୟା ୟାକୋଭ୍‌ଲେଭ୍‌ନା । ମୁଣ୍ଡପାଗଲା ଟୋକାଟା, ତା' ହାସ୍‌ପାତାଳର ଠିକଣାଟା ବି ସୁଦ୍ଧା ଦେଇ ନାହିଁ ।

* * *

ସେପେଟିଭ୍କା ରେଳ ଷ୍ଟେସନ୍‌ରେ ଥିବା ସବୁଜ ରଙ୍ଗର, "ରାଜନୈତିକ ଡିଭିଜନର ପ୍ରଚାର ବିଭାଗ" ଲେଖାଥିବା ଗାଡ଼ିକୁ ପ୍ରାୟ ଆସେ । ଆନ୍ଦୋଳନ ଓ ପ୍ରଚାର ବିଭାଗ ଗାଡ଼ିର ଗୋଟିଏ କମ୍ପାର୍ଟମେଣ୍ଟରେ ଉସ୍ତିନୋଭିଚ୍ ଓ ଇଗ୍‌ନାଟିଭ୍ନେରା ସେମାନଙ୍କ ଅଫିସ୍ କରିଥାନ୍ତି । ତାକୁ ଦେଖିଲାମାତ୍ରେ ଓଠରେ ସିଗାରେଟ୍ ଚାପିଧରି, ଜାଣିଜାଣି ହସନ୍ତି ଇଗ୍‌ନାଟିଯେଭା ।

କମ୍‌ସୋମୋଲ୍ ଜିଲ୍ଲା କମିଟିର ସମ୍ପାଦକ ଏବଂ ରୀତା ଉସ୍ତିନୋଭିଚ୍‌ଙ୍କ ମଧ୍ୟରେ ବନ୍ଧୁତା ଜମିଆସିଥାଏ । ବହିପତ୍ର ଓ କାଗଜ ବିଡ଼ା ବ୍ୟତୀତ ସେ ଉସ୍ତିନୋଭିଚ୍ ନିକଟରୁ କିପରି ଏକ ଅଦୃଶ୍ୟ ସୁଖର ଭାବ ମଧ୍ୟ ବହନ କରି ନେଇଯାଏ ପ୍ରତ୍ୟେକ ଥର ।

ରାଜନୈତିକ ବିଭାଗର ମୁକ୍ତ ଅଙ୍ଗନ ରଙ୍ଗମଞ୍ଚକୁ ପ୍ରତିଦିନ ଅସଂଖ୍ୟ ଶ୍ରମିକ ଓ ଲାଲ ଫୌଜ ଲୋକ ଦେଖିବା ପାଇଁ ଆସନ୍ତି । ୧୨ଶ ସେନାନୀର ପ୍ରଚାର ଟ୍ରେନ୍ ସାରା ବଡ଼ ବଡ଼ ସୁନ୍ଦର ପୋଷ୍ଟର ମରାହୋଇଥାଏ । ପ୍ଲାଟ୍‌ଫର୍ମରେ ରହିଥିବା ଗାଡ଼ିଟାସାରା ଦିନରାତି ଚବିଶଘଣ୍ଟା କାମଦାମ, ଗହଳଚହଳ ଲାଗି ରହିଥାଏ । ଭିତରେ ଏକ ଛପାକଳ ଚାଲିଥାଏ

ଓ ସେଥିରୁ ଦିନରାତି ଖବରକାଗଜ, ପ୍ରଗ୍ରରପତ୍ର, ଘୋଷଣାପତ୍ରସବୁ ଛପା ହୋଇ ବାହାରୁଥାଏ ଅଫୁରନ୍ତ ଝରଣା ଭଳି । ରଣାଙ୍ଗନଟା ଏହାର ନିକଟରେ ।

ଦିନେ ସନ୍ଧ୍ୟାରେ, ଆକସ୍ମିକ ଭାବରେ ଟିକିଏ ଥିଏଟରକୁ ଯିବାକୁ ମନକରି ଯାଇ, ସେର୍ଗେଇ ସେଠାରେ ଦଳେ ଲାଲ ଫୌଜୀଙ୍କ ସାଙ୍ଗରେ ରୀତାକୁ ଭେଟିଲା । ସେଦିନ ରାତିରେ, ରାଜନୈତିକ ବିଭାଗର ଲୋକେ ରହୁଥିବା କ୍ୱାର୍ଟରଗୁଡ଼ିକ ଭିତରେ ରହୁଥିବା ରୀତାର ଘରକୁ ତାକୁ ଛାଡ଼ିବାକୁ ଗଲା ସେର୍ଗେଇ । ସେଇଠି କହିଲା ତାକୁ :

"କାହିଁକି କେଜାଣି, ତମକୁ ସଦାବେଳେ ଦେଖିବାକୁ ଇଚ୍ଛା ହେଉଛି, କମ୍ରେଡ୍ ରୀତା ? ଆଉ ତମ ସାଙ୍ଗରେ ଥିଲାବେଳେ ଭାରୀ ଭଲ ଲାଗୁଛି ମତେ ! ତମକୁ ଦେଖିଲା ପରେ ମୋର ଇଚ୍ଛା, କେବେ ବନ୍ଦ ନକରି, ସାରା ଜୀବନ ଅନେକ ... ଅନେକ କାମ କରିଯିବାକୁ ।"

ରୀତା ଅଟକିଗଲା ଆଉ କହିଲା, "ଦେଖ କମ୍ରେଡ୍ ବ୍ରୁଝାକ୍, ମୋତେ ଏମିତି ଢଙ୍ଗ ଭଳି ଚରଳିଯିବା ଓ କବି କବି ଭାବ ସୁଖ ଲାଗେ ନାହିଁ । ଆଉ କେବେ ଏମିତି କହିବ ନାହିଁ ମୋତେ ।"

ମାଷ୍ଟର ଗାଳି ଦେଇଥିବା ସ୍କୁଲପିଲା ଭଳି ଲାଜରେ ରଙ୍ଗା ପଡ଼ିଗଲା ସେର୍ଗେଇ ।

"ମୁଁ ଆଉ କିଛି ଭାବି କହି ନାହିଁ", ସିଏ କହିଲା, "ମୁଁ ଭାବୁଥିଲି, ଆମେମାନେ ପରସ୍ପରର ବନ୍ଧୁ । ମୁଁ କିଛି ପ୍ରତିବିପ୍ଳବର କଥା କହି ନାହିଁ ତ — କହିଛି କି ? ହଉ କମ୍ରେଡ୍ ଉସ୍ତିନୋଭିଚ୍, ଆଉ ଦିନେ ପଦେହେଲେ କିଛି କହିବି ନାହିଁ ମୁଁ ।"

ତରତର ହୋଇ, ତା ସହିତ କୌଣସିମତେ ହାତ ମିଳାଇ ପ୍ରାୟ ଦୌଡ଼ି ଦୌଡ଼ି ସହରକୁ ଫେରି ଆସିଲା ସେ ।

ତା'ର, ଅନେକ ଦିନ ପର୍ଯ୍ୟନ୍ତ, ଷ୍ଟେସନ୍ ପାଖକୁ ଗଲା ନାହିଁ ସେର୍ଗେଇ ।

ଇଗ୍ନାତିଯେଭା କେବେ ଡାକିଲେ, ତାକୁ କାମଦାମରେ ବ୍ୟସ୍ତ ଅଛି ବୋଲି କହି ଏଡ଼ାଇଯାଏ ସେର୍ଗେଇ । ତା'ଛଡ଼ା ସତରେ ତା'ର ଅନେକ କାମ କରିବାକୁ ଥିଲା ।

କମ୍ରେଡ୍ ଶୁଦିକ୍ ଦିନେ, ବେଶୀ ପୋଲାଣ୍ଡୀୟ ଅଧିବାସୀମାନେ ବସବାସ କରୁଥିବା ଗୋଟିଏ ଗଳିରେ ଯାଉଥିବା ବେଳେ, ରାତିରେ ତାଙ୍କ ଉପରକୁ କେହି ଗୁଳିକଲା । ସେମାନେ ଚିନି କଳରେ ପରିଗ୍ରାଳକ ଭାବେ କାମ କରୁଥିଲେ । ପରେ ପରେ ଯେଉଁ ଖାନ୍‌ତଲାସ ଏଥି ପାଇଁ ଗ୍ରଲିଲା, ତା' ଫଳରେ 'ଷ୍ଟ୍ରେଲେଟ୍‌ସ' ନାମକ ଗୁପ୍ତ ପିଲ୍‌ସୁଦ୍‌ସି ସଙ୍ଗଠନ ଓ ହାଲୁକା ଧରଣର କିଛି ଅସ୍ତ୍ରଶସ୍ତ୍ର, କିଛି ଗୁପ୍ତ କାଗଜପତ୍ରର ସନ୍ଧାନ ମିଳିଲା ।

ରେଭ୍‌କମ୍‌ରେ ଏଥି ନିମନ୍ତେ ଏକ ସଭା ହେଲା । ଉପସ୍ଥିତ ଥିବା ଉସ୍ତିନୋଭିଚ୍ ସେର୍ଗେଇକୁ ଗୋଟିଏ କଡ଼କୁ ଏକୁଟିଆ ଡାକି ନେଇ ଧୀର ଗଳାରେ କହିଲା :

"କ'ଣ ତମର ବଡ଼ଲୋକୀ ପୌରୁଷ ଉପରେ ଆଘାତ ଲାଗିଲା ନାଁ ? ତମେ ଏ ଧରଣର ବ୍ୟକ୍ତିଗତ କଥା ପାଇଁ, ତମ କାମ ବି ବାଧା ଦେଉଛି ? ଏମିତି ହେଲେ, ଚଳିବ ନାହିଁ, କମ୍ରେଡ୍ ।"

ତା'ପରେ ପରେ, ସେର୍ଗେଇ ସବୁଜ ରେଳଗାଡ଼ିକୁ ତା'ର ଯାତାୟାତ ଗ୍ଲୁ ରଖିଲା ।

ସେ ଏକ ଜିଲ୍ଲାସ୍ତରୀୟ ସମ୍ମିଳନୀରେ ଯୋଗଦେଇ ଦୁଇଦିନ ବ୍ୟାପୀ ସେଠାରେ ଗ୍ଲୁଥିବା ସରଗରମ ଆଲୋଚନାରେ ଭାଗ ନେଇଥିଲା । ତୃତୀୟ ଦିନ ସମ୍ମିଳନୀର ଅନ୍ୟ ପ୍ରତିନିଧିମାନଙ୍କ ସହିତ ମିଶି ନଇ ଆରପଟର ଜଙ୍ଗଲରେ ଗୋଟିଏ ଦିନ ଓ ଗୋଟିଏ ରାତି ବଳକା ରହିଯାଇଥିବା ଜଣେ ପେଟ୍ଲ୍ୟୁରା ଅଫିସର ଜାଲୁଦ୍‌ନି ଦ୍ୱାରା ସଙ୍ଗଠିତ ଡକାଇତ ଦଳଙ୍କ ସହିତ ଯୁଦ୍ଧ କଲା ।

ସେଠାରୁ ଫେରି ସେ ଇଗ୍‌ନାଟିୟେଭାଙ୍କୁ ଭେଟିବାକୁ ଯାଇ ତାଙ୍କ ପାଖରେ ଭସ୍ତିନୋଭିଚ୍‌କୁ ମଧ୍ୟ ଦେଖିଲା । ତା'ପରେ, ସେ ତାକୁ ଷ୍ଟେସନ୍ ପାଖରୁ ତା' ଘରକୁ ବାଟେଇ ଦେବାକୁ ଗଲା । ବିଦାହୋଇ ଆସିଲା ବେଳେ ତାଙ୍କ ହାତକୁ, ଜୋରରେ ମୁଠାଇ ଧରିଲା ସେର୍ଗେଇ ।

ଭସ୍ତିନୋଭିଚ୍ ରାଗରେ ହାତଟାକୁ ଛଡ଼ାଇନେଲା ତା'ଠାରୁ, ତା'ପରେ ମଧ୍ୟ ଅନେକ ଦିନ ପାଇଁ, ପ୍ରଗ୍ଲର ରେଳଗାଡ଼ି ନିକଟକୁ ଗଲା ନାହିଁ ସେର୍ଗେଇ । ଯେତେବେଳେ ଭସ୍ତିନୋଭିଚ୍ ନଯିବାର ଓ ଏମିତି ବ୍ୟବହାରର କାରଣ ପଗ୍ଲରିଲା, ସେ ତାକୁ ତୀକ୍ଷ୍ଣ ଭାବରେ କହିଲା :

"ତମ ସାଙ୍ଗେ କଥା କହିବାର କୌଣସି ମାନେ ନାହିଁ, କାରଣ ତମେ ମୋତେ ଶ୍ରମିକ ଶ୍ରେଣୀ ବିରୋଧୀ କାମ କରୁଛି ବୋଲି ବା ବୁର୍ଜୁଆ ବୋଲି ଦୋଷ ଦେବ ।"

* * *

କକେସୀୟ, "ଲାଲ ପତାକା" ଅର୍ଡରପ୍ରାପ୍ତ ତିରିଜନବାହୀ ରେଳଗାଡ଼ିଗୁଡ଼ିକ ଷ୍ଟେସନ୍‌ରେ ଅଟକିଲା । ତିନିଜଣ ପାଣ୍ଡୁରିଆ ଚେହେରାର କମାଣ୍ଡର ରେଭ୍‌କମ୍‌କୁ ଆସିଲେ । ତାଙ୍କ ଭିତରୁ ଡେଙ୍ଗାହୋଇ ଜଣେ ଅଫିସର ଅଣ୍ଟାରେ ତା'ର ପିଟାରୁପାର କମରପଟି ସିଧାସିଧି ଦୋଲିନିନ୍‌ଙ୍କ ପାଖକୁ ଯାଇ ଶହେ ଶଗଡ଼ କୁଟା ଦାବିକଲା :

"ଏବେ କୌଣସି ଯୁକ୍ତିତର୍କ ଆବଶ୍ୟକ ନାହିଁ", ସିଏ ଅଳ୍ପକରେ କହିଲା, "ମୋର ଯେ କୌଣସିମତେ ହେଉ ଏତିକି କୁଟା ଦରକାର, ନହେଲେ ମୋର ଘୋଡ଼ାଗୁଡ଼ାକ ସବୁ ମରିଯିବେ ।"

ଏଣୁ ଦୁଇଜଣ ଲାଲ ଫୌଜଙ୍କ ସାଙ୍ଗରେ ସେର୍ଗେଇ କୁଟା ସଂଗ୍ରହ ପାଇଁ ଗଲା । ଗୋଟାଏ ଗାଁରେ ଦଳେ କୁଲାକ୍ ସେମାନଙ୍କୁ ଆକ୍ରମଣ କଲେ । ଲାଲ ଫୌଜ ଲୋକଙ୍କର ଅସ୍ତ୍ରଶସ୍ତ୍ର ଛଡ଼ାଇ ନେଇ, ନିର୍ଦ୍ଦୟ ଭାବରେ ପିଟିଲେ ସେମାନେ । ସେର୍ଗେଇ ଚୋକାଟାଏ ବୋଲି କୌଣସିମତେ ଅଳ୍ପକେ ବର୍ତ୍ତିଗଲା । ତିନିଜଣଯାକଙ୍କୁ ଦରିଦ୍ର କୃଷକ ସମିତିର ଲୋକମାନେ ଶଗଡ଼ରେ ବସାଇ ସହରରେ ଛାଡ଼ିଦେଇ ଆସିଲେ ।

ତା'ଆରଦିନ, ସେ ଗାଁକୁ ଏକ ସଶସ୍ତ୍ର ବାହିନୀ ପଠାଗଲା ଓ ସେମାନେ କୁଟା ନେଇ ଆସିଲେ ।

ନିଜ ପରିବାରକୁ ଅଯଥା ଆତଙ୍କିତ କରିବ ନାହିଁ ବୋଲି ସେର୍ଗେଇ, ଭଲହେବା ପର୍ଯ୍ୟନ୍ତ ଇଗ୍‌ନାତିୟେଭାଙ୍କ ଘରେ ରହିଲା ଓ ସେଠିକି ରୀତା ଉଷ୍ଟିନୋଭିଚ୍ ତାକୁ ଦେଖିବାକୁ ଆସେ । ଦିନେ ଆବେଗ ଓ କୋମଳତାର ସହ ସେ ସେର୍ଗେଇର ହାତ ଚିପି ଧରିଲେ, ଯାହା ସେର୍ଗେଇ କଦାପି ହୁଏତ ପ୍ରକାଶ କରି ପାରି ନଥାନ୍ତା ।

ଏକ ଗ୍ରୀଷ୍ମ ଅପରାହ୍ଣରେ ସେର୍ଗେଇ ପ୍ରସ୍ପର ରେଳଗାଡ଼ିରେ ପହଞ୍ଚିଲା । ରୀତାକୁ ଦେଖି ଯିବ ବୋଲି, ତା' ଆଗରେ ପାଭେଲ୍‌ର ଚିଠି ପଢ଼ିଲା ଓ ତାକୁ ତା'ବନ୍ଧୁ ବିଷୟରେ ଅନେକ କଥା କହିଲା । ଫେରିଲା ବେଳେ ଆସୁ ଆସୁ ବୁଲିପଡ଼ି କହିଲା :

"ଭାବୁଛି ଜଙ୍ଗଲ ଆଡ଼କୁ ଯାଇ, ହ୍ରଦରେ ଟିକେ ବୁଡ଼ାବୁଡ଼ି କରି ଆସିବି ।"

ନିଜ କାମରୁ ଆଖି ଉଠାଇ ରୀତା କହିଲା :

"ଏ ରହ ରହ, ଟିକେ ଅପେକ୍ଷା କର, ମୁଁ ବି ତମ ସାଙ୍ଗେ ଯିବି ।"

ହ୍ରଦର ଜଳ, ଦର୍ପଣ ଭଳି ସ୍ୱଚ୍ଛ ଦିଶୁଥିଲା ଏବଂ ସତେକି ହାତଠାରି ନିମନ୍ତ୍ରଣ କରୁଥିଲା ।

"ରାସ୍ତା ଉପରେ ମୋ ପାଇଁ ଅପେକ୍ଷା କର, ମୁଁ ଭିତରକୁ ଯାଉଛି", ରୀତା ଆଦେଶ ଦେଲା ।

ପୋଲ କଡ଼ରେ ପଡ଼ିଥିବା ଗୋଟାଏ ବଡ଼ ପଥର ଖଣ୍ଡ ଉପରେ ବସି ସେର୍ଗେଇ ଆକାଶର ଚିକ୍ ଚିକ୍ ମାରୁଥିବା ସୂର୍ଯ୍ୟ ଆଡ଼କୁ ମୁହଁ ଟେକିଲା । ସେ ଶୁଣିପାରିଲା, ତା' ପଛରେ ରୀତା ପାଣି ଭିତରକୁ ଚବ୍‌କରି ଡେଇଁ ପଡ଼ିବାର ଶବ୍ଦ ।

ହଠାତ୍ ଗଛପତ୍ର ଫାଙ୍କରେ, ତା' ଆଖିରେ ପଡ଼ିଲା ଟୋନ୍ୟା ତୁମାନୋଭା । ପ୍ରସ୍ପର ରେଳଗାଡ଼ିରେ ମିଲିଟାରୀ କମିସାର ଚୁଝାନିନ୍‌ଙ୍କ ସହିତ ସେ କଥାବାର୍ତ୍ତା କରି କରି ଆସୁଛି । ଚୁଝାନିନ୍‌ଙ୍କର ଅଫିସର ପୋଷାକ, ଅଣ୍ଟାର ଚମଡ଼ା ବେଲ୍‌ଟ, ଚିକିଚିକିଆ ବୁଟ୍‌ଜୋତା ତାଙ୍କ ଚେହେରାକୁ ଚମତ୍କାର ମାନୁଛି । ଟୋନ୍ୟା ସାଙ୍ଗରେ କଥାବାର୍ତ୍ତାରେ ମଜ୍ଜିଯାଇଥିଲେ ସେ ।

ଏଇ ଝିଅଟି ତା'ପାଖକୁ ପାଭେଲ୍‌ର ଚିଠି ନେଇ ଆସିଥିଲା ବୋଲି ଚିହ୍ନି ପାରିଲା ସେର୍ଗେଇ । ପାଖାପାଖି ହେବାରୁ ସେ ମଧ୍ୟ ସେର୍ଗେଇ ଆଡ଼କୁ ଚିହ୍ନିଲା ଚିହ୍ନିଲା ଆଖିରେ କଟମଟ କରି ଅନେଇଲା । କୋଉଠି ଦେଖିଛି ବୋଲି ବୋଧହୁଏ ମନେ ପକାଉଥିଲା ସେ । ଯେତେବେଳେ ଏକାବେଳକେ ମୁହାଁମୁହିଁ ହୋଇଗଲେ, ସେର୍ଗେଇ ନିଜ ପକେଟ୍‌ରୁ ପାଭେଲ୍‌ର ଚିଠି ଖଣ୍ଡକ କାଢ଼ି ତା' ପାଖକୁ ଆଗେଇଗଲା ।

"ଟିକିଏ ଅପେକ୍ଷା କର କମ୍ରେଡ୍, ମୋ ପାଖରେ ଖଣ୍ଡେ ଚିଠି ଅଛି, ଯେଉଁଥିରେ ତମ ପାଇଁ ବି କିଛି ଅଂଶ ଲେଖା ଅଛି ।

ନିଜ ହାତକୁ ମୁକ୍ତ କରି ଟୋନ୍ୟା ଚିଠିଟା ନେଲା । ପଢ଼ୁଥିଲା ବେଳେ ଚିଠି ଟୁକୁରାଖଣ୍ଡକ ତା' ହାତ ଭିତରେ ଥରିଉଠିଲା ।

"ତା'ର ଆଉ କିଛି ଖବର ତମେ ପାଇଛ ?" ସେର୍ଗେଇକୁ ଚିଠିଟି ଫେରସ୍ତ ଦେଉ ଦେଉ କହିଲା ସେ ।

"ନାଁ", ସେର୍ଗେଇ ଉତ୍ତର ଦେଲା ।

ଏତିକିବେଳେ ରୀତାର ପାଦତଳେ ବାଲିଗରଡ଼ାଗୁଡ଼ାକ ଦଳିହୋଇ ଗଲା ଭଳି ଶବ୍ଦ ହେଲା । ତା'ର ଉପସ୍ଥିତି ସମ୍ପର୍କରେ ସଜାଗ ନ ଥିବା ଅଫିସର ତୋନ୍ୟାକୁ ଫୁସ୍‌ଫୁସ୍ କରି କହିଲେ, "ଚାଲ ଆମେ ଯିବା ।"

ମାତ୍ର ରୀତାର ପରିହାସବ୍ୟଞ୍ଜକ ସ୍ୱର ତାଙ୍କୁ ବାଧା ଦେଲା ।

"କମ୍ରେଡ୍ ଚୁଝାନିନ୍, ଆଜି ଦିନସାରା ସେମାନେ ତମକୁ ରେଜରେ ଖୋଜୁଛନ୍ତି ।"

ଚୁଝାନିନ୍ ତା' ଆଡ଼କୁ ବିରକ୍ତିମିଶା ଚାହାଣୀରେ ଅନାଇଲେ :

"ସେଥିରେ କିଛି ନାହିଁ । ମୁଁ ନଥିଲେ ବି ସେମାନେ ଚଳାଇନେବେ ।"

ତୋନ୍ୟା ଓ ମିଲିଟାରୀ କମିସାର ଚାଲିଯିବାର ଲକ୍ଷ୍ୟ କଲା ରୀତା ।

"ଏ ବେକାରଗୁଡ଼ାକୁ ପଠାଇଦେବା ପାଇଁ ଢେର ବେଳ ହେଲଣି", ଶୁଖିଲା ଭାବରେ କହିଲା ସେ ।

ପବନରେ ଜଙ୍ଗଲର ଶୁଖିଲା ଗଛପତର ମର୍ମର କରିଉଠିଲା । ଉଚ୍ଚ ଉଚ୍ଚ ଓକ୍ ଗଛଗୁଡ଼ାକର ଚୂଡ଼ା ଦୋହଲି ଉଠିଲା । ହ୍ରଦର ଜଳ ଆସ୍ତରଣରୁ ଭାସିଆସିଲା ଏକ ମନମତାଣିଆ ମହକ । ସେର୍ଗେଇ ଏଥର ପାଣିରେ ପଶିବାକୁ ସ୍ଥିର କଲା ।

ପହଁରିସାରି ଫେରିଆସିଲାବେଳକୁ ସେ ଦେଖିଲା, ରାସ୍ତାର ଅଦୂରବର୍ତ୍ତୀ ଏକ ଓକ୍ ଗଛର ଗଣ୍ଡିରେ ଆଉଜି ରୀତା ବସିଛି ।

ଗପିଗପି ଜଙ୍ଗଲ ଭିତରକୁ ପଶିଗଲେ ସେମାନେ । ଡେଙ୍ଗା ଡେଙ୍ଗା ଘାସର ଗାଲିଚା ଉପରେ ଦଣ୍ଡେ ଥକ୍‌କା ମାରିବାକୁ ସ୍ଥିରକଲେ । ନିସ୍ତବ୍ଧ ଜଙ୍ଗଲ । ଓକ୍ ଗଛଗୁଡ଼ିକ ପରସ୍ପରକୁ କ'ଣ କହୁଥାନ୍ତି, ମୁହଁରେ ମୁହଁ ଯୋଡ଼ିଦେଇ । ନରମ ଘାସର ଗାଲିଚା ଉପରେ ନିଜକୁ ଲେଟାଇଦେଲା ରୀତା ନିଜ ବାହା ଉପରେ ମୁଣ୍ଡ ଥାପି । ସୁନ୍ଦର ବଳିଲା ବଳିଲା ଗୋଡ଼ଯୋଡ଼ିକ ତା'ର ବଡ଼ ବଡ଼ ଘାସଗଛଗୁଡ଼ିକ ଭିତରେ ପୁରୁଣା ତାଳିପକା ବୁଟ୍ ସହିତ ଲୁଚିଯାଇଥାଏ ।

ସେର୍ଗେଇର ଆଖି ତା'ର ଗୋଡ଼ ଉପରେ ପଡ଼ିଗଲା । ସୁନ୍ଦର ସୁନ୍ଦର ତାଳିପଡ଼ିଥିବା ଜୋତାହଳକୁ ଦେଖିଲା ସେ । ତା'ପରେ ନିଜ ଗୋଡ଼ର ଗୋଟାଏ ଆଙ୍ଗୁଠି ଛିଡ଼ା ଜୋତା ଭିତରୁ ଗଳି ଆସିଥିବାର ମଧ୍ୟ ଦେଖିଲା ସେ, ତା'ପରେ ହସିଉଠିଲା ।

"କାହିଁକି ହସୁଛ ?" ଉସ୍ତିନୋଭିଚ୍ ପଚାରିଲା ।

ନିଜ ଗୋଡ଼ରେ ପିନ୍ଧିଥିବା ବୁଟ୍‌କୁ ଦେଖାଇଦେଲା ସେର୍ଗେଇ ।

"ଏମିତି ବୁଟ୍ ପିନ୍ଧି ଆମେ କେମିତି ଯୁଦ୍ଧ କରିବା ?"

ରୀତା କୌଣସି ଉତ୍ତର ଦେଲା ନାହିଁ । ଗୋଟାଏ ଘାସ ଚୋବାଉଥିଲା ସେ । ଭାବନା ତା'ର ଅନ୍ୟ କେଉଁଠି କେଜାଣି ଥିଲା । ଆଉ କେଉଁ ଭାବନା ରାଜ୍ୟରେ ଘୂରି ବୁଲୁଥିଲା ସେ ।

"ଏକ ନିକୃଷ୍ଟ କମ୍ୟୁନିଷ୍ଟ ଚୁଝାନିନ୍", ଶେଷକୁ ସେ କହିଲା, "ଆମର ସବୁ

ରାଜନୈତିକ କର୍ମୀ ଛିଣ୍ଡା ମଇଳା ପିନ୍ଧିପାନ୍ଧି ବୁଲୁଛନ୍ତି, ସିଏ କିନ୍ତୁ ନିଜ ଛଡ଼ା ଆଉ କାହା କଥା ଚିନ୍ତା କରେ ନାହିଁ । ଆମ ପାର୍ଟିର ହୋଇ ମଧ୍ୟ ପାର୍ଟିର ନୁହେଁ ସେ ...। ଆଉ ଯୁଦ୍ଧ ସାମ୍ନାଖ୍ୟରେ ସତରେ ଅବସ୍ଥା ବଡ଼ ସଙ୍ଗିନ୍ । ଆମ ଦେଶ ଏକ ବିରାଟ ସଂଗ୍ରାମ ଭିତରେ ଗତିକରୁଛି", ଟିକିଏ ଅଟକି ସେ ପୁଣି ଆରମ୍ଭ କଲା, "ଆମକୁ ବନ୍ଧୁକ ଓ କଥା ଉଭୟ ନେଇ ଯୁଦ୍ଧ କରିବାକୁ ପଡ଼ିବ । ସେର୍ଗେଇ ତମେ କେନ୍ଦ୍ର କମିଟିର ସିଦ୍ଧାନ୍ତ ଜାଣିଛ କି ନାହିଁ ? ଏକ ଚତୁର୍ଥାଂଶ କମ୍‌ସୋମୋଲ୍‌ଙ୍କୁ ସେନାବାହିନୀରେ ସାମିଲ୍ କରିବା ପାଇଁ ? ମୋର ତ ଧାରଣା ହେଉଛି ସେର୍ଗେଇ, ଆମେ ଏଠି ଆଉ ବୋଧହୁଏ ବେଶିଦିନ ରହିପାରିବା ନାହିଁ ।"

ତା' କଥା ଶୁଣୁଶୁଣୁ ସେର୍ଗେଇ ତା' କଣ୍ଠରେ ଏକ ନୂତନ ଧରଣର ଚମକ ଲକ୍ଷ୍ୟ କରୁଥିଲା । ନିଜର କଳାକଳା ସ୍ୱଚ୍ଛ ଆଖିଦୁଇଟି ତା' ଉପରେ ନ୍ୟସ୍ତକରି, ତା'ର ପବନର ସ୍ୱରକୁ ଏଡ଼ାଇ ରୀତାକୁ କହିବାକୁ ଇଚ୍ଛା ହେଉଥିଲା । ରୀତାର ଆଖିଦୁଇଟି ଦର୍ପଣ ଭଳି ସ୍ୱଚ୍ଛ । ମାତ୍ର ସେ ନିଜକୁ ଠିକ୍ ସମୟରେ ରୋକିନେଲା ।

ନିଜ କହୁଣୀରେ ଭରାଦେଇ ଉଠି ରୀତା ପଚାରିଲା :

"ତମ ରିଭଲଭର କାହିଁ ?"

ନିଜ ଖାଲି ବେଲ୍‌ଟରେ ହାତ ଘଷିଘଷି ସେର୍ଗେଇ କହିଲା :

"ସେ କୁଲକ୍ ଦଳଟା ମୋଠୁଁ ଛଡ଼େଇ ନେଇଛନ୍ତି ।"

ନିଜ ପିନ୍ଧା ଜାମା ପକେଟ୍ ଭିତରେ ହାତ ପୂରାଇ ରୀତା ଗୋଟାଏ ଚକ୍‌ଚକିଆ ସ୍ୱୟଂକ୍ରିୟ ପିସ୍ତଲ୍ ବାହାର କଲା ।

"ସେ ଓକ୍ ଗଛଟାକୁ ଦେଖୁଛ ?" ପିସ୍ତଲ୍‌ର ନଳୀକୁ ପ୍ରାୟ ପଚିଶ କଦମ୍ ଆଗରେ ଥୋଇ ଗୋଟାଏ କେନା ହୋଇଯାଇଥିବା ଗଛର ଗଣ୍ଡିକୁ ଲକ୍ଷ୍ୟ କରି କହିଲା ସେ । ତା'ପରେ ପିସ୍ତଲ୍‌ଟାକୁ ନିଜ ଆଖିର ସମାନ୍ତରାଳରେ ରଖି ପ୍ରାୟ ଲକ୍ଷ୍ୟ ନକରି ଗୁଳି ଚଳାଇଲା । ଗଣ୍ଡିରେ ଠିକ୍ ଗୁଳିଟା ବାଜିଲା, ଶବ୍ଦ କରି ଗଛରୁ ଖୋଳପା ଖଣ୍ଡେ ଝଡ଼ିପଡ଼ିଲା ।

"ଦେଖିଲ ?" ନିଜ କୃତିତ୍ୱରେ ଖୁବ୍ ଖୁସି ହୋଇଯାଇ କହିଲା ସେ ଓ ଆହୁରି ଥରେ ଗୁଳି ଫୁଟାଇଲା । ଛିନ୍ନବିଛିନ୍ନ ଗଛ ଖୋଳପା ପୁଣି ଝରିପଡ଼ିଲା ତଳେ ।

"ଆଚ୍ଛା, ଏଥର ଦେଖିବା, ତମେ କେମିତି ଲକ୍ଷ୍ୟ କରୁଛ ।" ଟିକିଏ ବ୍ୟଙ୍ଗହସର ଛିଟା ଖେଳାଇ ପିସ୍ତଲ୍‌ଟା ସେର୍ଗେଇକୁ ବଢ଼େଇଦେଇ କହିଲା ସେ ।

ତିନିଥର ଗୁଳିରୁ ଗୋଟିଏ ଗୁଳି ଲକ୍ଷ୍ୟଭ୍ରଷ୍ଟ ହେଲା ସେର୍ଗେଇର । ଅଳ୍ପ ହସି ରୀତା କହିଲା :

"ମୁଁ ତ ଭାବିଥିଲି, ତମର ଯାଠୁଁ ବି ଖରାପ ଲକ୍ଷ ବୋଲି ।"

ତା'ପରେ ପିସ୍ତଲ୍‌ଟାକୁ ତଳେ ରଖି ଦେଇ ଘାସ ଉପରେ ପୁଣି ଶୋଇପଡ଼ିଲା ସେ । ଜାମାଟା ତା'ର ଉନ୍ନତ ବକ୍ଷ ଉପରେ ଭିଡ଼ି ହୋଇଗଲା ।

ସେର୍ଗେଇକୁ କୋମଳ ଭାବରେ କହିଲେ ସେ, "ଏଠିକି ଆସ ।"

ପାଖକୁ ଘୁରିଆସିଲା ସେର୍ଗେଇ ।

"ଆକାଶକୁ ଚାହଁ ! ଦେଖିଲ କେମିତି ନୀଳ ହୋଇଛି ଆକାଶଟା ? ତମ ଆଖି ସେମିତି ନୀଳ । ମୋତେ ଏମିତି ଭଲ ଲାଗେ ନାଁ । ଆଖିଗୁଡ଼ାକ ପାଉଁଶିଆ ହେବା ଦରକାର, ଇସ୍ପାତ ଭଳି । ନୀଳଟା ଭାରୀ ନରମା ରଙ୍ଗ ।"

ହଠାତ୍ ତା'ର କପାଳ ଉଠାଇ ସେ ଅଧୀର କାମନାରେ ସେର୍ଗେଇର ଓଠକୁ ଚୁମାରେ ଛାଇଦେଇଗଲା ।

* * *

ଦୁଇମାସ ବିତିଗଲା । ଶରତ୍ କାଳ ।

ରାତି ଧୀରେ ଧୀରେ ବଢ଼ିଚାଲିଥାଏ ଗହଳ ନୀଳ ଗଛପତ୍ରକୁ କଳାଛାଇରେ ଘୋଡ଼ାଇଦେଇ । ଡିଭିଜନର ମୁଖ୍ୟ କାର୍ଯ୍ୟାଳୟର ଟେଲିଗ୍ରାଫିଷ୍ଟ ଟିକ୍ଟିକ୍ ଶବ୍ଦ କରିଚାଲିଥିବା ଯନ୍ତ୍ରଟି ଉପରେ ଢଳିପଡ଼ିଥାଏ ଓ ସେଥିରୁ ବାହାରି ଆସୁଥିବା ଓ ତା'ର ଆଙ୍ଗୁଠିରେ ସାପ ଭଳି ଗୁଡ଼େଇ ହୋଇଯାଉଥିବା ସରୁ ଫିତାଗୁଡ଼ାକ ସଂଗ୍ରହ କରି ଚାଲିଥାଏ ।

ଯଥାଶୀଘ୍ର ସେଥିରେ ଥିବା ବିନ୍ଦୁ ଓ ରେଖାଗୁଡ଼ିକୁ ଭାଷାରେ ପରିଣତ କରୁଥାଏ ।

"ପ୍ରଥମ ଡିଭିଜନର ଷ୍ଟାଫ୍‌ର ପ୍ରଧାନଙ୍କୁ ଓ ତାହାର ଏକ ନକଲ ଶେପେଟୋଭ୍‌କାର ରେଭ୍‌କମ୍‌ର ସଭାପତିଙ୍କୁ ଦିଆଯାଉଛି । ଏ ତାରବାର୍ତ୍ତା ପାଇବାର ଦଶ ଘଣ୍ଟା ଭିତରେ ସମସ୍ତ ସରକାରୀ ପ୍ରତିଷ୍ଠାନ ଓ ଅଫିସ୍ ଖାଲି କରିଦିଅ । ସମ୍ମୁଖବାହିନୀର ରେଜିମେଣ୍ଟର କମାଣ୍ଡରଙ୍କ ଅଧୀନରେ କେବଳ ଗୋଟିଏ ବାଟାଲିଅନ୍ ସୈନ୍ୟ ଛାଡ଼ିଆସ । ଡିଭିଜନର ମୁଖ୍ୟ କାର୍ଯ୍ୟାଳୟ, ରାଜନୈତିକ ବିଭାଗ, ସମସ୍ତ ସେନା ବିଭାଗୀୟ ପ୍ରତିଷ୍ଠାନକୁ ବାରାନ୍‌ଚେଭ୍ ଷ୍ଟେସନ୍‌କୁ ହଟାଇନିଅ । ଡିଭିଜନ କମାଣ୍ଡରଙ୍କୁ କାର୍ଯ୍ୟ ସଂପନ୍ନ ହେବାର କଥା ତୁରନ୍ତ ଜଣାଅ ।

— ସ୍ୱାକ୍ଷରିତ ।"

ଠିକ୍ ଦଶ ମିନିଟ୍ ପରେ ସହରର ସର୍ପିଳ ଲୋକଗହଳି ରାସ୍ତାରେ ଗୋଟିଏ ମୋଟର-ସାଇକେଲ ଦ୍ରୁତଗତିରେ ଆସୁଥାଏ । ତା'ର ଆଲୁଅରେ ଅନ୍ଧାର ଚିରିହୋଇ ଯାଉଥାଏ । ରେଭ୍‌କମ୍ ଦୁଆର ମୁହଁରେ ଫଡ୍‌ଫଡ୍ ହୋଇ ବନ୍ଦହେଲା ସେଇଟା । ବାହକ ତୁରନ୍ତ ଭିତରକୁ ଯାଇ ରେଭ୍‌କମ୍‌ର ସଭାପତି ଦୋଲିନିକ୍‌ଙ୍କୁ ଟେଲିଗ୍ରାମ୍‌ଟି ବଢ଼ାଇଦେଲା । ସଙ୍ଗେ ସଙ୍ଗେ ସ୍ଥାନଟି କର୍ମମୁଖର ହୋଇଉଠିଲା, ଚଞ୍ଚଳ ହୋଇଉଠିଲା । ବିଶେଷ କାର୍ଯ୍ୟ ପାଇଁ ଥିବା ବାହିନୀ ଧାଡ଼ିବାନ୍ଧି ଠିଆ ହୋଇଗଲେ । ଘଣ୍ଟାକ ପରେ ରେଭ୍‌କମ୍‌ର ସମସ୍ତ ଜିନିଷପତ୍ର ଲଦା ହୋଇଥିବା ଗାଡ଼ିସବୁ ଘର୍ଘର ଶବ୍ଦ କରି ପୋଦୋଲ୍‌ସି ଷ୍ଟେସନ୍‌କୁ ଚାଲିଲେ । ସହର ଭିତର ଦେଇ ସେଠାରୁ ରେଳଡବାରେ ଲଦା ହୋଇଗଲା ।

ଟେଲିଗ୍ରାମ୍‌ର ସମ୍ବାଦ ପାଇବା ମାତ୍ରେ ସେର୍ଗେଇ ମୋଟର-ସାଇକେଲ ଗ୍ରହକ ପଛରେ ଦୌଡ଼ିଲା ।

"କମ୍ରେଡ୍, ମୋତେ ଦୟା କରି ଷ୍ଟେସନ୍ ପର୍ଯ୍ୟନ୍ତ ନେଇ ଯାଇପାରିବ ?"

"ପଛରେ ବସିଯାଅ, ଜୋରରେ ଧରିଥାଅ କିନ୍ତୁ ।"

ରେଳ ସହିତ ସଂଯୁକ୍ତ ହୋଇସାରିଥିବା ପ୍ରଗ୍ରର ରେଳଗାଡ଼ିର ବାରଚଉଦ ପାହୁଣ୍ଡ ଦୂରରେ ରୀତାକୁ ଭେଟିଲା ସେର୍ଗେଇ । ତା କାନ୍ଧରୁ ଧରି ପକାଇଲା ସେ । ନିଜର କୌଣସି ଅତି ପ୍ରିୟ ବସ୍ତୁ ହରାଇବାକୁ ଯାଉଥିବା କଥା ଜାଣି ସେ ଅତି କୋମଳ କଣ୍ଠରେ ରୀତାକୁ କହିଲା :

"ବିଦାୟ, ପ୍ରିୟ କମ୍ରେଡ୍ ରୀତା ! ପୁଣି କେବେ ଦେଖାହେବ ନିଶ୍ଚୟ ! ମୋତେ ଭୁଲିବ ନାହିଁ ?"

ବିହ୍ୱଳିତ ହୋଇ ଦେଖିଲା, ତା'ର କଣ୍ଠ ଲୁହରେ ରୋଧ ହୋଇଯାଉଛି । ତାକୁ ଶୀଘ୍ର ଫେରିବାକୁ ହେବ । ଆଉ କଥା କହିବା ପାଇଁ ନିଜ ଉପରେ ଭରସା ନ ରଖି ପାରି ସେ ରୀତାର ହାତଦୁଇଟିକୁ ଦୋହଲାଇବାକୁ ଲାଗିଲା କଷ୍ଟ ହେବା ପର୍ଯ୍ୟନ୍ତ ।

ସକାଳୁ ସମସ୍ତେ ଦେଖିଲେ ସାରା ସହର ଜନଶୂନ୍ୟ ଓ ନିର୍ଜନ ହୋଇ ଯାଇଛି । ଶେଷ ଟ୍ରେନ୍‌ଟି ସତେ କି ବିଦାୟ ମାଗିଲା ଭଳି ହୁଇସିଲ ଦେଇ ଧୀରେ ଧୀରେ ଗତିକଲା । ବର୍ତ୍ତମାନ ପଶ୍ଚାତ୍ ରକ୍ଷାପାଇଁ ଉଦ୍ଦିଷ୍ଟ ବାହିନୀ ସହରର ରାସ୍ତାରେ ଦୁଇ ସାମାନ୍ତରେ ଘାଟୀ କରି ଜଗି ରହିଲେ ।

ଗଛରୁ ହଳଦିଆ ପତ୍ରସବୁ ଝରି ପଡ଼ିଲେ, ଡାଳସବୁ ଫୁଙ୍ଗୁଳା ଦେଖାଗଲେ । ପଡ଼ନ୍ତ ପତ୍ରସବୁ ବହିନେଇ ପବନ ରାସ୍ତାରେ ପକାଇ ଦେଉଥାଏ ।

ଏକ ଲାଲ ଫୌଜୀ ବଡ଼ କୋଟ୍ ପିନ୍ଧି କ୍ୟାନ୍‌ଭାସ୍‌ର ଗୁଳି ବେଲ୍‌ଟ ଝୁଲାଇ ବାରଜଣ ଲାଲ ଫୌଜ ବାହିନୀ ଲୋକଙ୍କୁ ଧରି ସେର୍ଗେଇ ଚିନି କଳର ବିପରୀତ ପାଖର ଛକରେ ଜଗିରହିଲା । ପୋଲାଣ୍ଡର ବାହିନୀ ଆଗେଇ ଆସୁଛନ୍ତି ।

ଆଭ୍‌ତୋନୋମ୍ ପେଟ୍ରୋଭିଚ୍ ନିଜ ପଡ଼ୋଶୀ ଗେରାସିମ୍ ଲେଓନ୍ତିୟେଭିଚ୍‌ଙ୍କ ଦୁଆର ମୁହଁର କଡ଼ା ଖଡ଼୍‌ଖଡ଼୍ କଲେ । ପୋଷାକ ନ ପିନ୍ଧି ଗେରାସିମ୍ ଲେଓନ୍ତିୟେଭିଚ୍ ଦୁଆରବାଟେ ମୁହଁ ଗଳାଇ ଗ୍ରହିଁଲେ ।

"ଘଟଣା କ'ଣ ?"

ଆଭ୍‌ତୋନୋମ୍ ପେଟ୍ରୋଭିଚ୍ ରାସ୍ତାରେ ଯାଉଥିବା ଲାଲ ଫୌଜଙ୍କୁ ଦେଖାଇଦେଇ ଆଖିମାରି କହିଲେ :

"ସେମାନେ ବାହାରି ଯାଉଛନ୍ତି ।"

ଗେରାସିମ୍ ଲେଓନ୍ତିୟେଭିଚ୍ ବିବ୍ରତ ଭାବରେ ପଗ୍ରରିଲେ :

"ଆଚ୍ଛା, ପୋଲାଣ୍ଡୀୟ କି ପ୍ରକାର ପ୍ରତୀକ ବ୍ୟବହାର କରନ୍ତି, କହିପାରିବ ?"

"ଏକମୁଣ୍ଡିଆ ଈଗଲ୍ ବୋଧହୁଏ ।"

"ସେଥିରୁ ଗୋଟାଏ କୋଉଠୁ ମିଳିବ ?"

ଆଭ୍‌ତୋନୋମ୍ ପେଟ୍ରୋଭିଚ୍ ଭୟବିହ୍ୱଳ ହୋଇ ଆଙ୍ଗୁଳିରେ ମୁଣ୍ଡ କୁଣ୍ଡାଇଲେ ।

"ତାଙ୍କର ତ କାମ ଘଟେ ...", ମୁହୂର୍ତ୍ତକ ପରେ କହିଲେ ସେ, "ଉଠିଲେ ତ ଗ୍ଭଲିଲେ ସେମାନେ । ତମେ କିନ୍ତୁ ପୁଣି ଯିଏ ନୂଆ କର୍ତ୍ତା ଆସିବେ ତାଙ୍କ ମର୍ଜି ଜଗିବା ପାଇଁ ଭାବିବାକୁ ପଡ଼ିବ ।"

ନୀରବତାକୁ ବିଦୀର୍ଣ୍ଣ କରି ମେସିନ୍‌ଗନ୍ ଗର୍ଜନ କରି ଉଠିଲା । ଷ୍ଟେସନ୍ ଆଡ଼ୁ ଗୋଟିଏ ଇଞ୍ଜିନ୍‌ର ସିଟି ଶବ୍ଦ ଓ ସଙ୍ଗେ ସଙ୍ଗେ ସେଇଆଡ଼ୁ ଗୋଟିଏ ଗୁଳିର ଆୱାଜ ଭାସି ଆସିଲା । ଗୋଟାଏ ବଡ଼ ଗୋଳା ସୁ'କରି ଆକାଶକୁ ଉଠିଯାଇ ଶବ୍ଦ କରି ଫୁଟିଲା ଓ ତିନି ଜଣ ପାଖାପାଖି ରାସ୍ତା ଉପରେ ପଡ଼ିଲା । ପାଖଆଖର ଅଞ୍ଚଳ ନୀଳ ଧୂଆଁରେ ଭର୍ତ୍ତି ହୋଇଗଲା । ନୀରବ ଓ ଗମ୍ଭୀର ହୋଇ ପଛଘୁଞ୍ଚା ଦେଉଥିବା ଲାଲ ଫୌଜୀ ସୈନିକମାନେ ସହର ରାସ୍ତାରେ ମାର୍ଚ୍ଚ କରି ଯାଉଥାନ୍ତି ଓ ଗଲାବେଳେ ପଛକୁ ଫେରି ଅନାଉଥାଆନ୍ତି ।

ସେର୍ଗେଇର ଗଣ୍ଡଦେଶରୁ ଲୁହଧାର ବହିଯାଉଥାଏ । ତାକୁ ଚଞ୍ଚଳ ପୋଛିପକାଇ ଆଉ କେହି କମ୍ରେଡ୍ କାଳେ ଦେଖିପକେଇଥିବେ ବୋଲି ରାଗି ଯାଇ ଅନାଇଗଲା ସେ ।

ସେର୍ଗେଇ କଡ଼ରେ ମାର୍ଚ୍ଚ କରି ଗ୍ଭଲିଥାଏ ଆନ୍ତେକ୍ କ୍ଲୋପୋତୋଭ୍‌ସି – କରତ କଳର ଶ୍ରମିକଟିଏ । ଆଙ୍ଗୁଠି ତା'ର ବନ୍ଧୁକର ଟିପା ଉପରେ ଥାଏ । କ'ଣ ଭାବନାରେ ବୁଡ଼ିରହି ବିଷାଦାଚ୍ଛନ୍ନ ଭାବରେ ଗ୍ଭଲିଥାଏ ସେ । ତା' ଆଖି ସେର୍ଗେଇ ଆଖିରେ ମିଳିଗଲା ଅକସ୍ମାତ୍, ସେ ପାଟିକରି ଉଠିଲା :

"ଆମ ଲୋକଙ୍କ ଉପରେ ଭୀଷଣ ଅତ୍ୟାଗ୍ଭର କରିବେ ସେମାନେ । ବିଶେଷକରି ମୋ ଘର ଲୋକଙ୍କ ଉପରେ, କାରଣ ଆମେମାନେ ବି ପୋଲାଣ୍ଡୀୟ । ସେମାନେ ପୋଲାଣ୍ଡୀୟ ବାହିନୀର ବିରୋଧୀ ବୋଲି ନିଶ୍ଚୟ ଧରିନେବେ । ମୋ ବୁଢ଼ା ବାପକୁ ନିଶ୍ଚେ କରତ କଳରୁ କାଢ଼ିଦେଇ ଶେଷ କରିଦେବେ । ଆମ ସାଙ୍ଗରେ ଗ୍ଭଲିଆସିବାକୁ ମୁଁ ତାକୁ କହିଲି, ହେଲେ ପରିବାରକୁ ଛାଡ଼ି ଆସିବାକୁ ତା' ମନ ଡାକିଲା ନାହିଁ । ଓଃ, ସେମାନଙ୍କ କଥା ଛାଡ଼, ସେମାନଙ୍କୁ ଶୀଘ୍ର ଆମେ ଯୁଦ୍ଧ କ୍ଷେତ୍ରରେ ଭେଟିବା ।"

ଉତ୍ତ୍ୟକ୍ତ ହୋଇ ନିଜ ଆଖି ଉପରକୁ ଖସିଆସିଥିବା ଶିରସ୍ତ୍ରାଣକୁ ଉପରକୁ ଉଠାଇନେଲା ଆନ୍ତେକ୍ ।

"... ବିଦାୟ ! ବିଦାୟ ହେ ମୋର ପ୍ରିୟ ପୁରାତନ ସହର ! ତମର ମଳିନ ଛୋଟ ଘର, ଅପରିଚ୍ଛନ୍ନ ରାସ୍ତା । ତମର ସମସ୍ତ ମଳିନତା ସତ୍ତ୍ୱେ ତମେ ମୋର ଅତିପ୍ରିୟ । ବିଦାୟ ମୋର ପ୍ରିୟ ବନ୍ଧୁଗଣ ! ବିଦାୟ ! ବିଦାୟ ! ବିଦାୟ ଭାଇୟା, ବିଦାୟ ମୋର ପ୍ରିୟ କମ୍ରେଡ୍‌ଗଣ, ଯେଉଁମାନେ ଲୁଚିରହି କାମ ଚଳାଇବାକୁ ରହିଛ ଏଠି ! ବିଦାୟ !"

ନିର୍ଦ୍ଦୟ, ଭୟଙ୍କର, ନିରଙ୍କୁଶ ପୋଲାଣ୍ଡୀୟ ଶ୍ୱେତ ବାହିନୀ ଆଗେଇ ଆସୁଛନ୍ତି ।

ଦୁଃଖପୂର୍ଣ୍ଣ ହୃଦୟରେ ଚେଇଚିକିଟା ମଳିଆ କୁର୍ତ୍ତାପିନ୍ଧା ରେଳବାଇ କର୍ମଚାରୀମାନେ ଦେଖୁଥାନ୍ତି, ଲାଲ ଫୌଜ ବାହିନୀ ବିଦାୟ ହୋଇଯିବାର କରୁଣ ଦୃଶ୍ୟ ।

ବ୍ୟଥିତ ହୃଦୟରେ ଚିତ୍କାର କରି ଉଠିଲା ସେର୍ଗେଇ :

"ଆମେମାନେ ପୁଣି ଫେରିବୁ, କମ୍ରେଡ୍ !"

# ଅଷ୍ଟମ ପରିଚ୍ଛେଦ

ଭୋରର କ୍ଷୀଣ ପାଣ୍ଡୁର ଆଲୋକରେ ନଦୀର ଧାର ଈଷତ୍ ଉଜ୍ଜ୍ୱଳ ଦିଶି ଆସୁଛି । କଳକଳ ଧ୍ୱନିସହ ଶଯ୍ୟାରେ ଓ କୂଳରେ ପଡ଼ିଥିବା ଛୋଟ ଛୋଟ ବାଲିଗରଡ଼ା ଉପରେ ବହିଯାଉଛି ନଦୀଟି । କୂଳର ଧାରଗୁଡ଼ିକୁ ଦେଖିଲେ ଜଣାଯାଉଛି ନଦୀଟି ଶାନ୍ତ, ଧୀର । ଅବିଚଳିତ ସ୍ୱଚ୍ଛ ରୂପା ଭଳି ଜଳଧାରା । ମାତ୍ର ମଝିର ଗଣ୍ଡ, କଳାଘୁମର ନଦୀର ବକ୍ଷ ସ୍ଫୀତ ଓ ଅଶାନ୍ତ । ତରତର ବେଗରେ ବହିଚାଲିଛି ଆଗକୁ ... ଆଗକୁ । ଗୋଗଲଙ୍କ ସାହିତ୍ୟରେ ଏହି ବିଶାଳ ନୀପର ନଦୀଟି ଅମର ହୋଇ ଚିହ୍ନିତ ହୋଇଛି । ଦକ୍ଷିଣ ପାର୍ଶ୍ୱର ବନ୍ଧ ତୀଖ, ଉଚ୍ଚ ଓ ସିଧା ଯେମିତି ସତେ କି ଆଗେଇ ଯାଉଯାଉ ପାହାଡ଼ଟାଏ ତୀବ୍ର ଜଳଧାର ସହ ବାଧାପାଇ ଅଟକିଯାଇଛି । ତୀଖ ହୋଇ ତଳକୁ ଲମ୍ବି ଆସି ପାଣି ଛୁଇଁଛି । ବାଁ ପଟର କୂଳରେ, ଠାଏ ଠାଏ ବାଲିଚଡ଼ା ବସନ୍ତ ଋତୁର ବନ୍ୟାପାଣି ଛାଡ଼ିଗଲା ପରେ ରହିଯାଇଛି ।

ଗୋଟାଏ ଚେପ୍‌ଟାମୁହାଁ 'ମାକ୍‌ସିମ୍' ମେସିନ୍‌ଗନ୍ ତଳେ, ପାଞ୍ଚଜଣ ଲୋକ ପେଟେଇ ପଡ଼ିଥିଲେ – ନଦୀକୂଳରେ ତାଙ୍କ ପାଇଁ ଛୋଟ ଟ୍ରେଞ୍ଚଟିଏ ଖୋଳା ହୋଇଥିଲା । ଏଇଟା ସପ୍ତମ ରାଇଫଲ ବାହିନୀର ଆଗୁଆ ଘାଟୀ । ନଈ ଆଡ଼କୁ ମୁହଁକରି ମେସିନ୍‌ଗନ୍‌ର ସବୁଠାରୁ ନିକଟତମ ଥିଲା ସେର୍ଗେଇ ବ୍ରୁଝାକ୍ ।

ଦିନକ ଆଗରୁ, ଅବିଶ୍ରାନ୍ତ ଶେଷହୀନ ଲଢ଼େଇ ଲଢ଼ି ଓ ପୋଲାଣ୍ଡୀୟ କମାଣ ବାହିନୀର ତୋଫାନୀ ଆକ୍ରମଣରେ ଛିନ୍ନବିଚ୍ଛିନ୍ନ ହୋଇ ତାଙ୍କୁ କିଏଭ୍ ଛାଡ଼ିଦେବାକୁ ହୋଇଥିଲା ଓ ନଦୀର ବାଁ ପଟକୁ ଆସି ଟ୍ରେଞ୍ଚ ଖୋଳି ଘାଟୀ କରି ରହିବାକୁ ହୋଇଥିଲା ।

ପଛଘୁଞ୍ଚା, ଅନେକ କ୍ଷୟକ୍ଷତି ଓ ପରିଶେଷରେ ଶତ୍ରୁ ହାତରେ କିଏଭ୍ ପଡ଼ିବାର ଘଟଣା ଲୋକମାନଙ୍କ ମନ ଉପରେ ଏକ ଦାରୁଣ ଧକ୍‌କା ଦେଇଥିଲା । ସପ୍ତମ ଡିଭିଜନର ସୈନ୍ୟମାନେ ବୀରତ୍ୱପୂର୍ଣ୍ଣ ଲଢ଼େଇ କରି, ଜଙ୍ଗଲ ଭିତରେ ଅଗ୍ରସର ହୋଇ ମାଲିନ୍ ଷ୍ଟେସନ୍ ନିକଟରେ ରେଳଲାଇନ୍ ଉପରକୁ ଆସିଥିଲେ ଏବଂ ପୋଲାଣ୍ଡୀୟ ବାହିନୀକୁ ଏକ ବିରାଟ ଧକ୍‌କା ଦେଇ କିଏଭ୍‌କୁ ପଥ ପରିଷ୍କାର କରିଥିଲେ ।

ମାତ୍ର ପରିଶେଷରେ, ସୁନ୍ଦର କିଏଭ୍ ସହରକୁ ଛାଡ଼ିଦେବାକୁ ହେଲା – ଲାଲ ଫୌଜ ବାହିନୀ ତେଣୁ ବିଷଣ୍ଣ ବୋଧ କରୁଥିଲେ ।

ପୋଲଣ୍ଡୀୟ ବାହିନୀ ଛଲ ଫୌଜଙ୍କୁ ଦାର୍‌ନିସାରୁ ବାହାର କରି ସାରି ନଦୀର ବାଁ କୂଳରେ ଗୋଟାଏ ପୋଲ ମୁଣ୍ଡରେ ଘାଟୀ କରିଛନ୍ତି । ରେଳପୋଲ ମଧ୍ୟ ତାଙ୍କ ଦଖଲରେ । ମାତ୍ର ତୀବ୍ର ପ୍ରତିଆକ୍ରମଣ ଯୋଗୁଁ ସେଠାରୁ ଆଉ ଅଧିକ ଅଗ୍ରସର ହେବାର ସମସ୍ତ ପ୍ରଚେଷ୍ଟା ତାଙ୍କର ବ୍ୟର୍ଥ ହୋଇଛି ।

କଳକଳ ନାଦରେ ବହିଯାଉଥିବା ନଈକୁ ଗ୍ୱହିଁ ଗ୍ୱହିଁ ସେର୍ଗେଇ ଭାବୁଥିଲା ଗତକାଲି ଘଟିଯାଇଥିବା ଘଟଣା ସବୁ ।

ଗତକାଲି ଦିପହରରେ ତା'ର ୟୁନିଟ୍ ପୋଲଣ୍ଡୀୟ ସୈନ୍ୟମାନଙ୍କ ସହିତ ଲଢ଼ିଥିଲେ । ଗତକାଲି ଜୀବନରେ ପ୍ରଥମକରି ତା'ର ଶତ୍ରୁପକ୍ଷ ସହିତ ହାତାହାତି ଯୁଦ୍ଧ ହୋଇଥିଲା । ଜଣେ ତରୁଣ ପୋଲଣ୍ଡୀୟ ବାହିନୀର ସୈନ୍ୟ ନିଜର ଲମ୍ବା ତରବାରି ଭଳି ଫରାସୀ ତିଆରି ବାୟୋନେଟ୍ ଉଞ୍ଚାଇ ତା' ଆଡ଼କୁ ମାଡ଼ିଆସିଲା । ସେ ଦୁର୍ବୋଧ୍ୟ ଭାଷାରେ ସେର୍ଗେଇକୁ କ'ଣ ଗାଳି ଦେଇ ଦେଇ ଠେକୁଆ ଭଳି ତା ଆଡ଼କୁ ଚଢ଼ିଆସୁଥିଲା । ମହୂର୍ତ୍ତକରୁ ଆହୁରି କମ୍ ସମୟ ଭିତରେ ସେର୍ଗେଇ ଦେଖିଲା ତା'ର ଆଖିରେ ଉନ୍ମତ୍ତ ବୁଭୁକ୍ଷା ! ପର ମୁହୂର୍ତ୍ତରେ ସେର୍ଗେଇ ବାୟୋନେଟ୍ ପୋଲଣ୍ଡୀୟ ସୈନ୍ୟଟିର ବାୟୋନେଟ୍‌ରେ ତୀବ୍ରଭାବରେ ବାଜି ଝଣତ୍କାର କରିଉଠିଲା । ଚିକ୍‌ଚିକ୍ ଫରାସୀ ଫଳାଟା ଭାଙ୍ଗିପଡ଼ିଲା । ପୋଲଣ୍ଡୀୟ ସୈନ୍ୟଟି ପଡ଼ିଗଲା ।

ସେର୍ଗେଇର ହାତ ଥରିଉଠିଲା ନାହିଁ । ସେ ଜାଣିଥିଲା ତାକୁ ଏମିତି ଅନେକ ହତ୍ୟା କରିବାକୁ ପଡ଼ିବ । ସେ ସେର୍ଗେଇ ଯେ ଏପରି କୋମଳତାର ସହିତ ଭଲ ପାଇପାରେ, ଏତେ ନିବିଡ଼ ବନ୍ଧୁତା କରିପାରେ, ତାକୁଇ ଏପରି ଅନେକ ... ଅନେକ ମାରିବାକୁ ପଡ଼ିବ । ସେ ଆଦୌ କ୍ରୂର ପ୍ରକୃତିର ବା ଭୟଙ୍କର ନ ଥିଲା । ମାତ୍ର ସେ ବୁଝିଥିଲା ଯେ, ତା'ର ମାତୃଭୂମି ବିରୁଦ୍ଧରେ ପୃଥିବୀର ପରାଙ୍ଗପୁଷ୍ଟ ନିର୍ମୂଳୀଇଟାମାନେ ଏଭଳି ତୀବ୍ର ଉନ୍ମତ୍ତ ଘୃଣା ପୋଷଣ କରି ଯେଉଁ ବିପଥଗାମୀ ସୈନ୍ୟଦଳଙ୍କୁ ପଠାଇଛନ୍ତି ସେମାନଙ୍କ ବିରୁଦ୍ଧରେ ତାକୁ ସଂଗ୍ରାମ କରିବାକୁ ହିଁ ପଡ଼ିବ । ଆଉ ସେର୍ଗେଇକୁ ସେଇ ଅନାଗତ ଶୁଭଦିନ ଆସିବାର ସମୟକୁ ତ୍ୱରାନ୍ୱିତ କରିବାକୁ ପଡ଼ିବ—ଯେଉଁଦିନ ଏ ପୃଥିବୀରେ ଆଉ କେହି କାହାରିକୁ ମାରିବେ ନାହିଁ । ସେଇଥି ପାଇଁ ତା'ର ଏ ସଂଗ୍ରାମ ।

ତା' କାନ୍ଧରେ ଟିପ ମାରି ପାରାମୋନୋଭ୍ କହିଲା, "ଆମର ପଛକୁ ଫେରିବା ଉଚିତ, ସେର୍ଗେଇ । ସେମାନେ ହୁଏତ ଆମକୁ ଦେଖିପାରିବେ ଏଠୁ ।"

* * *

ବର୍ଷେ ହେଲା ପାଭେଲ୍ କୋର୍ଚ୍‌ଗିନ୍ ନିଜର ମାତୃଭୂମିର ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ବିସ୍ତୃତଭାବରେ ବୁଲିଛି । ବୁଲିଛି ମେସିନ୍‌ଗନ୍‌ବାହୀ ଗାଡ଼ିଗୁଡ଼ିକ ଉପରେ ବା ତା' ଛୋଟ ଧୂସର ଘୋଟକୀଟି ପିଠିରେ ବସି । ଏବେ ସେ ଏକ ପୂରାପୂରି ମଣିଷ । ଦୁଃଖକଷ୍ଟ ସହି, ଛେଚ୍ରପିଟା ଖାଇ ପରିଣତ ହୋଇଛି ଲୁହାରେ ।

ଓଜନଦାର ଗୁଳିର ଥଳି ବୋହିବୋହି ତା'ର ନରମ ଚମଡ଼ା ଟାଣ କର୍କଶ ହୋଇଯାଇଛି କେବେଠୁଁ । କାନ୍ଧର ବନ୍ଧୁକ ଫିତାଟା ଝୁଲୁଥିବା ଜାଗାରେ ବଡ଼ ବିଣ୍ଡିଟାଏ ।

ସେ ବର୍ଷର ଯେତେ ବିଭୀଷିକାମୟ ଘଟଣା ସାରା ଦେଶରେ ଘଟିଛି, ସବୁ ଆଖି ଆଗରେ ଦେଖିଛି ପାଭେଲ୍ । ତା ଭଳି ଅଗଣନ ଛିନ୍ନ-ମଳିନ ପୋଷାକପିନ୍ଧା ଇଢ଼ୁଆ ମଣିଷଙ୍କ ସାଙ୍ଗରେ ସେ ତା'ର ପ୍ରିୟ ମାତୃଭୂମିର ଏକ ପାର୍ଶ୍ୱରୁ ଅପର ପାର୍ଶ୍ୱ ପର୍ଯ୍ୟନ୍ତ କଦମ୍ ପକାଇଛି । ମନଭିତରେ ସେମାନଙ୍କର ନିଜର ଶ୍ରେଣୀର ସରକାର ଗଢ଼ିବାର ଅଦମ୍ୟ ଦୁର୍ଲଙ୍ଘ୍ୟ ପ୍ରତିଜ୍ଞାର ବହ୍ନି ! ମାତ୍ର ଦୁଇଥର ତା' ବ୍ୟତୀତ ଏ ଝଡ଼ ବହିଥିଲା । ପ୍ରଥମ ଥର ଯେତେବେଳେ ସେ ଗୋଡ଼ରେ ଆଘାତ ପାଇଥିଲା, ଗୁଳିଗ୍ରେଟ ଲଗିଥିଲା ଏବଂ ଦ୍ୱିତୀୟଥର ୧୯୨୦ ମସିହାର ଫେବୃଆରୀ ମାସରେ ଯେବେ ସେ ଟାଇଫସ୍ ଜ୍ୱରରେ ଭୀଷଣଭାବରେ ଆକ୍ରାନ୍ତ ହୋଇ ପଡ଼ିଥିଲା ।

ପୋଲାଣ୍ଡୀୟ ବାହିନୀର ମେସିନ୍‌ଗନ୍ ଅପେକ୍ଷା ଏ ଟାଇଫସ୍ ରୋଗ ଦ୍ୱାଦଶ ବାହିନୀର ଅଧିକ ଭୟାବହ କ୍ଷତି ଘଟାଇଥିଲା । ସେତେବେଳେ ପ୍ରାୟ ସାରା ଭରର ୟୁକ୍ରାଇନ୍‌କୁ ନେଇ ଏକ ବିରାଟ ଅଞ୍ଚଳରେ ପୋଲାଣ୍ଡୀୟ ବାହିନୀର ଅଗ୍ରଗତିକୁ ପ୍ରତିହତ କରୁଥିଲେ ଦ୍ୱାଦଶ ବାହିନୀ । ଦେହ ପୂରାପୂରି ଭଲ ହୋଇଛି କି ନାହିଁ ଏବେ ସ୍ରୋନ୍ତୋଭ୍‌କାରେ ଲଢ଼େଇ ଚଢ଼ାଇଥିବା ତା'ର ୟୁନିଟ୍‌କୁ ଫେରି ଆସିଲା ପାଭେଲ୍ ।

ସ୍ରୋନ୍ତୋଭ୍‌କାଟା କାଜାଟିନ୍ ଉମାନ୍ ପ୍ରଧାନ ଲାଇନ୍ ଉପରେ ଅବସ୍ଥିତ ।

ଜଙ୍ଗଲ ପରିପୂର୍ଣ୍ଣ ଅଞ୍ଚଳ । ଆଖପାଖରେ କେତୋଟି ଭଗ୍ନ, ପରିତ୍ୟକ୍ତ କୁଟୀର ଗୋଟିଏ ଛୋଟ ଷ୍ଟେସନ୍ ଘରକୁ ଘେରି ଛିଡ଼ା ହୋଇଛନ୍ତି ସେଠାରେ । ତିନିବର୍ଷ କାଳ କ୍ରମାଗତ ଲଢ଼େଇ ଲାଗିବା ଫଳରେ, ଏ ଅଞ୍ଚଳରେ ସାଧାରଣ ନାଗରିକ ଜୀବନଯାପନ ପ୍ରାୟ ଅସମ୍ଭବ ହୋଇଉଠିଛି । ବହୁଥର ସ୍ରୋନ୍ତୋଭ୍‌କାର କର୍ତ୍ତୃତ୍ୱର ଅଦଳବଦଳ ଘଟିଛି ।

ଅନେକ ବଡ଼ ବଡ଼ ଘଟଣା ପୁଣି ଘଟିବାକୁ ଲାଗିଲା । ଦ୍ୱାଦଶ ବାହିନୀ ଯେତେବେଳେ ପୋଲାଣ୍ଡୀୟ ବାହିନୀର ଚାପ ଫଳରେ ଭୟାନକ ଭାବେ କ୍ଷତିଗ୍ରସ୍ତ ହୋଇ ଓ ଆଂଶିକ ଭାବେ ବିଶୃଙ୍ଖଳ ହୋଇପଡ଼ି କିଏଭ୍ ପଛକୁ ହଟି ଆସୁଥିଲେ ସେତେବେଳେ ସର୍ବହରା ପ୍ରଜାତନ୍ତ୍ର ନିଜର ସମସ୍ତ ଶକ୍ତି ଖଟାଇ ବିଜୟୋନ୍ମତ୍ତ ପୋଲାଣ୍ଡୀୟ ଶ୍ୱେତ ବାହିନୀକୁ ଧ୍ୱସ୍ତବିଧ୍ୱସ୍ତ କରିବାକୁ ପ୍ରସ୍ତୁତ କରୁଥିଲେ ।

ଯୁଦ୍ଧରେ ସଦା ନିଯୁକ୍ତ ପ୍ରଥମ ନମ୍ବର ଅଶ୍ୱାରୋହୀ ବାହିନୀର ଡିଭିଜନଗୁଡ଼ିକୁ ଏତେଦୂର ଉତ୍ତର କକେସସ୍‌ରୁ ୟୁକ୍ରାଇନ୍‌କୁ ବଦଳି କରାଯାଇଥିଲା, ସାରା ମିଲିଟାରୀ ଇତିହାସରେ ଅଶ୍ରୁତପୂର୍ବ ଏକ ଯୁଦ୍ଧସଜ୍ଜା ପାଇଁ । ଚତୁର୍ଥ, ଷଷ୍ଠ, ଏକାଦଶ ଓ ଚତୁର୍ଦ୍ଦଶ ଅଶ୍ୱାରୋହୀ ଡିଭିଜନଗୁଡ଼ିକୁ ଗୋଟିକ ପରେ ଗୋଟିଏ ଉମାନ୍ ଅଞ୍ଚଳକୁ ପଠାଗଲା । ସେମାନେ ଆଗୁଆ ଯୁଦ୍ଧ ସାମ୍ମୁଖ୍ୟର ପଶ୍ଚାଦ୍ ଭାଗ ରକ୍ଷା କଲେ ଓ ବାଟରେ ମାଖ୍‌ନୋ ଡକାଇତ ଦଳଙ୍କୁ ଯୁଦ୍ଧକୁ ତଡ଼ି ନେଇ ନେଇ ଗଲେ । ସାଢ଼େ ଷୋଳ ହଜାର ଖଡ୍‌ଗ ଓ ସାଢ଼େ ଷୋଳ ହଜାର ଯୋଦ୍ଧାରେ ସୂର୍ଯ୍ୟାଲୋକ, ଉଦ୍‌ଭାସିତ ଷ୍ଟେପୀଭୂଇଁ ଝଲସିଗଲା ।

ଏ ଘଡ଼ିସନ୍ଧି ମୂହୂର୍ତ୍ତରେ ଶତ୍ରୁପକ୍ଷର ଆଘାତର ସାମନା କରିବା ଲାଲ ଫୌଜର ସର୍ବୋଚ୍ଚ କମାଣ୍ଡ ଓ ଦକ୍ଷିଣ-ପଶ୍ଚିମ ସାମ୍ମୁଖ୍ୟର କମାଣ୍ଡର ପ୍ରଧାନ ଲକ୍ଷ୍ୟ ଥିଲା । ଏକ ବିରାଟ ସେନାନୀ ଏକତ୍ର ଠୁଳ କରିବା ପାଇଁ ସବୁପ୍ରକାର ଉଦ୍ୟମ କରାଯାଇଥିଲା ।

ଉମାନ୍ ବିଭାଗରେ ପ୍ରତ୍ୟକ୍ଷ ଯୁଦ୍ଧ ଆକ୍ରମଣ ବନ୍ଦ କରା ଯାଇଥିଲା । ମସ୍କୋରୁ ଖାର୍‌କୋଭ୍ ପର୍ଯ୍ୟନ୍ତ ଓ ସେଠାରୁ ଚତୁର୍ଦ୍ଦଶ ଓ ଦ୍ୱାଦଶ ଡିଭିଜନ ସେନାଛାଉଣୀକୁ ଯାଇଥିବା ସିଧାସଳଖ ଟେଲିଗ୍ରାଫ୍ ଲାଇନ୍ ସଦାବେଳେ କର୍ମବ୍ୟସ୍ତ ରହି ଗୁଞ୍ଜନ କରିଉଠୁଥିଲା । ଟେଲିଗ୍ରାଫ୍ ଅପରେଟରମାନେ ତାର ଆଦେଶସବୁ ପ୍ରସ୍ତୁତ କରିଚାଲିଥିଲେ : "ପୋଲାଣ୍ଡୀୟ ବାହିନୀର ଦୃଷ୍ଟି ଠୁଳ କରାଯାଉଥିବା ଅଶ୍ୱାରୋହୀ ବାହିନୀ ଉପରୁ ଘୁଞ୍ଚାଇ ରଖ !" ଶତ୍ରୁ ପକ୍ଷ ପ୍ରତ୍ୟକ୍ଷଭାବରେ ବ୍ୟସ୍ତ ରହିଲେ ଯେତେବେଳେ ବୁଦ୍ୟୋନିଙ୍କ ଅଶ୍ୱାରୋହୀ ଡିଭିଜନ ଉପରେ ପଡ଼ିଲା ସେମାନଙ୍କର ଅଗ୍ରସର ହେବା ପଥରେ ।

ଶିବିରାଗ୍ନିର ଲାଲ ନିଆଁ ଜିହ୍ୱା ଲହଲହ କରି ଜଳିଉଠିଲା । କଳା କଳା ଧୂଆଁ ସର୍ପିଳ ଗତିରେ ଆକାଶକୁ ଉଠିଲା । ଆକାଶରେ ଗୁଞ୍ଜନ କରି ଉଡ଼ିବୁଲୁଥିବା ଯୂଥ ଯୂଥ ପତଙ୍ଗ ନିଆଁରେ ପୋଡ଼ି ପାଉଁଶ ହୋଇଗଲେ । ନିଆଁ ଚାରିପଟେ ଅର୍ଦ୍ଧବୃତ୍ତାକାରରେ ଘେରି ବସିଥିଲେ ସୈନିକମାନେ । ନିଆଁର ଧାସରେ ସେମାନଙ୍କ ମୁହଁ ତମ୍ବା ଭଳି ଦିଶୁଥାଏ । ବାଲଗଣୀ ପାଉଁଶ ଉପରେ ବସିଥିବା ପାତ୍ରଗୁଡ଼ିକରେ ପାଣି ଟବ୍‌ଟବ୍ ହୋଇ ଫୁଟୁଥାଏ ।

ଖଣ୍ଡେ ଦରଜଳା କାଠଗଣ୍ଡିରୁ ନିଆଁ ଫୁଲଖଣ୍ଡେ ଯାଇ ଛିଟିକିପଡ଼ିଲା ଜଣକ ଉପରେ । ସେ 'ଧେତ୍' ବୋଲି ପାଟିକରି ଉଠିଲା ମୁଣ୍ଡଟା ଆଡ଼େଇନେଇ । ପରେପରେ ନିଆଁକୁ ଘେରି ବସିଥିବା ଲୋକଙ୍କ ଭିତରୁ ହସର ରୋଳ ଉଠିଲା ।

ଅଧ୍ୟବୟସୀ ସୈନିକ ଜଣେ କହିଉଠିଲା, ନିଜ ବନ୍ଧୁକର ନଳୀକୁ ନିଆଁ ତେଜରେ ଅନେକ ପରୀକ୍ଷା କରୁକରୁ । ମୁହଁରେ ତା'ର ନିଶପଟକ ଓଠତଳକୁ ଲମ୍ବି ଆସିଛି ।

"ଟୋକାର ବହି ପଢ଼ାରେ ଏତେ ମନ ଲାଗିଯାଇଛି ଯେ, ତାକୁ ନିଆଁ ଧାସ ସୁଦ୍ଧା କାଟୁ ନାହିଁ ।"

"ଏ କୋର୍ଚ୍ଚାଗିନ୍, ତୁ ଯାହା ପଢ଼ୁଛୁ, ଆମକୁ ସବୁ ବି ଶୁଣା ପଦେ ପଦେ ସେଥିରୁ", ଜଣେ କିଏ ପ୍ରସ୍ତାବ ଦେଲା ।

ଲାଲ ଫୌଜୀ ସୈନିକ ବହିଟା ପଢ଼ିବା ଜାଗାରେ ଆଙ୍ଗୁଠି ଦେଇ ହସିହସି କହିଲା :

"ସତରେ, ବଢ଼ିଆ ବହିଟା, କମ୍ରେଡ୍ ଆନ୍ଦ୍ରୋଷ୍ଚୁକ୍ । ଏଥିରୁ ପରା ଆଖି ଉଠାଇ ପାରୁନି । ଏତେ ଭଲ ଲାଗୁଛି ।"

"କେଉଁ ବିଷୟରେ ଲେଖା ହୋଇଛି ?" କୋର୍ଚ୍ଚାଗିନ୍ ପାଖରେ ବସିଥିବା ଗୋଟାଏ ଚେପ୍‌ଟା ନାକା ଟୋକା ପଚାରିଲା, ତା' ତମାଖୁ ମୁଣାର ଫିତାଟାକୁ ବହୁ ପରିଶ୍ରମ କରି ସଜାଡ଼ୁ ସଜାଡ଼ୁ । ମୋଟା ସୂତାଖଣ୍ଡକ ଦାନ୍ତରେ ଛିଡ଼ାଇ, ବଳକା ସୂତାତକ ଗୁଡ଼େଇଲା ଛୁଞ୍ଚି ଚାରିପଟେ, ତା'ପରେ ତାକୁ ନେଇ ତା' ଶିରସ୍ତାଣରେ ଗୁଞ୍ଜିଦେଲା, "ଯଦି ପ୍ରେମ ବିଷୟରେ ହୋଇଥିବ ନା଼ … ତେବେ ମୋତେ ଶୁଣା ।"



ତା' କଥାର ଜବାବରେ ହୋ ହୋ ହସ ଶୁଭିଲା । ମାଚ୍‌ଭେଇଚୁକ୍ ତା'ର ଥୁଣ୍ଟା ହୋଇ ବାଳ କଟାହୋଇଥିବା ମୁଣ୍ଡଟି ଟେକି ଟାହି କରି ସେ ଚେପ୍‌ଟା ନାକା ଟୋକାକୁ କହିଲା :

"ଆହା ହାଃ ... ସତରେ ପ୍ରେମ ଭାରୀ ମଧୁର, ସେରେଦା, ଆଉ ତୋ ଭଳି ସୁନ୍ଦରିଆ ଟୋକାଙ୍କ ପାଇଁ ତ, ଛାଡ଼ ... ଯୋଉଠିକି ତୁ ଯିବୁ, ସୁନ୍ଦର ସୁନ୍ଦର ଝିଅସବୁ ତାଙ୍କ ଜୋତା ଛାଡ଼ିଦେଇ ତୋ' ପଛରେ ଗୋଡ଼େଇବେ । ସବୁ ତୋର ଭଲ ଯେ, ଖାଲି ଯାହା ଏଇ ଟିକେ ଖୁଣ ରହିଗଲା ବୋଲି ସିନା, ଏଇ ତୋ ନାକଟା ମ୍ଁ । ନାକଟା ଜାଗାରେ ତ ଗୋଟାଏ ପାଞ୍ଚପଇସିଟାଏ ବସିଯାଇଛି । ହୁଁ, ସିଏ କ'ଣ ଭଲ ହୋଇଯିବ ନାହିଁ, ସେଥିରେ ଗୋଟାଏ ଦଶପାଉଣ୍ଡିଆ ନୋଭିତ୍‌ସି ଗ୍ରେନେଡ୍* ଝୁଲେଇଦେଲେ ହେଲା, ଆଉ କ'ଣ ! ରାତିଟାଏ ଝୁଲାଇ ରଖ ନା, ସକାଳକୁ ନାକଟା ଲମ୍ବିଯିବ !"

କଥାଟା ସରିବା ପରେ ଏତେ ଜୋର୍‌ରେ ହସର ସ୍ୱର ଶୁଭିଲା ଯେ, ମେସିନ୍‌ଗନ୍ ଗାଡ଼ିଗୁଡ଼ାକରେ ଯୋଗ୍ୟ ହୋଇଥିବା ଘୋଡ଼ାସବୁ ହିଁ ହିଁ କରି ଇତଃସ୍ତତଃ ହୋଇଉଠିଲେ ଭୟରେ ।

---

* ଏକ ପ୍ରକାରର ହାତବୋମା, ପ୍ରାୟ ସାଢ଼େ ଚାରି ସେର ଓଜନ । କଣ୍ଟାତାର ବେଢ଼ାକୁ ଉଡାଇବା ପାଇଁ ବ୍ୟବହୃତ ହୁଏ — ସଂପାଦକ ।

ସେରେଦା ବୁଲି ଗ୍ରହିଁଲା ଆଉ ଟିପ୍‌ପଣୀର ଜବାବ ଦେଇ କହିଲା, "ତୋ ମୁହଁ ନୁହଁ, ତୋ ମଗଜରେ...", ନିଜ ମୁଣ୍ଡରେ ହାତ ମାରି କହିଲା ସେ, "କିଛି ନାହିଁ, ଜିଭଟା ସିନା ଶାଣଦିଆ ଛୁରୀ ଭଳିଆ ହୋଇଛି, କିନ୍ତୁ ମଗଜଟା ଗଧ ଭଳି, ଆଉ କାନଟା ଥଣ୍ଡା।"

ସେ ଦୁହେଁ ପରସ୍ପର ସହିତ କଳିଗୋଳ ଆରମ୍ଭ କରିଦେବା ଆଗରୁ ସେକ୍‌ସନ୍ କମାଣ୍ଡର ଚାଚାରିନୋଭ୍ କହିଲେ :

"ଠିକ୍ ଅଛି, ମିଛରେ ଗହଳି କରି ଲାଭ କ'ଣ ଅଛି? ତା' ଅପେକ୍ଷା ଯଦି ଭଲ କିଛି ଥାଏ, କୋର୍ଗିନ୍ ଆମକୁ ପଢ଼ି ଶୁଣାଉ।"

"ଠିକ୍ ଅଛି, ସେଇ ଭଲ। ଆରମ୍ଭ କର ପାଭ୍‌ଲୁଶା", ଗ୍ରରିଆଡ଼ୁ ସ୍ୱର ଶୁଭିଲା।

ପାଭେଲ୍ ଆଉ ଟିକେ ଘୁଞ୍ଚିବସିଲା ନିଆଁ ପାଖକୁ, ତା'ର ଘୋଡ଼ା ଜିନ୍‌ଟାକୁ ଘୋଷାରିନେଲା, ଆଉ ତା' ଆଣ୍ଠୁ ଉପରେ ପଡ଼ିଥିବା ମୋଟା ବହିଖଣ୍ଡକ ଖୋଲିଲା।

"ବହିଟା ନାଁ 'ଗାଡ୍‌ଫ୍ଲାୟ'। ବାଟାଲିଅନ୍ କମାଣ୍ଡର ବହିଖଣ୍ଡିକ ଦେଇଥିଲେ ମୋତେ। ବଢ଼ିଆ ବହିଟାଏ କମ୍ରେଡ଼୍‌ମାନେ, ତମେ ଯଦି ଧୀରସ୍ଥିର ହୋଇବସିବ, ତା'ହେଲେ ପଢ଼ି ଶୁଣାଇବି।"

"ଓଃ, ସବୁ ଚୁପ୍, ଆମେ ସମସ୍ତେ ଶୁଣୁଛୁ।"

କିଛି ସମୟ ପରେ ରେଜିମେଣ୍ଟ କମାଣ୍ଡର କମ୍ରେଡ୍ ପୁଜିରେଭ୍‌ସି ଯେତେବେଳେ ତାଙ୍କ କମିସାର ସହିତ ଘୋଡ଼ାରେ ବସି ଶିବିରାଗ୍ନି ଜାଗାରେ ପହଞ୍ଚିଲେ, ଦେଖିଲେ ଏଗାର ହଳ ଆଖି ପଢ଼ିଲାବାଲା ଉପରେ ଲାଖିରହିଛି। କେହି ତାଙ୍କୁ ଲକ୍ଷ୍ୟ କରି ନାହାନ୍ତି।

କମିସାରଙ୍କ ଆଡ଼କୁ ବୁଲିପଡ଼ି ସେ କହିଲେ :

"ରେଜିମେଣ୍ଟର ସ୍କାଉଟ୍‌ଙ୍କ ଭିତରୁ ଅଧା ଏଠି", ଲୋକଙ୍କୁ ଦେଖାଇ କହୁଥାନ୍ତି ସେ, "ସେଥିରୁ ଗ୍ରରିଜଣ ତରୁଣ କମ୍‌ସୋମୋଲ୍ ସଦସ୍ୟ, ମାତ୍ର ସେମାନେ ସମସ୍ତେ ଅତି ଭଲ ସୈନିକ, ଯୋଦ୍ଧା। ଯିଏ ପଢ଼ୁଛି, ତା' ନାଁ କୋର୍ଗିନ୍, ତା' ପାଖକୁ ହେଟାବାଘ ଭଳି ଆଖି ଯାହାର ସିଏ ଝାର୍‌କୀ। ଦିହେଁଯାକ ପରମ ବନ୍ଧୁ। କିନ୍ତୁ ଦିହିଁଙ୍କ ଭିତରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ନୀରବରେ। କେର୍ଗିନ୍ ମୋର ସବୁଠୁଁ ଭଲ ସ୍କାଉଟ୍ ଥିଲା। ଏବେ ତା'ର ପ୍ରତିଦ୍ୱନ୍ଦ୍ୱୀ ଆସିଯାଇଛି। ଏବେ ସେମାନେ ରାଜନୈତିକ କାମ କରୁଛନ୍ତି, ମାତ୍ର ବେଶ୍ କାମ ଦେଖାଉଛି। ଶୁଣିଲି ଏ ତରୁଣମାନଙ୍କୁ କୁହାଯାଉଛି 'ତରୁଣ ପ୍ରହରୀ' (ୟାଙ୍ଗଗାର୍ଡ) ବୋଲି। ମୋ ମତରେ ତ ବିଲ୍‌କୁଲ୍ ଯଥାର୍ଥ ହୋଇଛି ଏ ନାଆଁଟା।"

"ଯିଏ ପଢ଼ୁଛି, ସିଏ କ'ଣ ରାଜନୈତିକ ଶିକ୍ଷକ?" କମିସାର ପଗ୍ରରିଲେ।

"ନାଁ, କ୍ରାମେର୍ ହେଲେ ରାଜନୈତିକ ଶିକ୍ଷକ।"

ପୁଜିରେଭ୍‌ସି ତାଙ୍କ ଘୋଡ଼ାକୁ ଗ୍ରବୁକ ଲଗାଇଲେ।

"ଶୁଭାଭିଳାଷ କମ୍ରେଡ଼୍‌ଗଣ!" କହିଲେ ସେ।

ସମସ୍ତେ କମାଣ୍ଡରଙ୍କ ଆଡ଼କୁ ବୁଲି ଗ୍ଭହିଁଲେ । ସେ ଘୋଡ଼ାରୁ ଓହ୍ଲାଇଲାବେଳେ ସେମାନଙ୍କ ପାଖକୁ ଗ୍ଭଲିଆସିଲେ କମାଣ୍ଡର ।

"କ'ଣ ନିଆଁ ପୋହୁଁଛ ବସି ?" ପ୍ରଶସ୍ତ ହସ ଫଟାଇ କହିଲେ ସେ । ତାଙ୍କର ଦୃଢ଼ତାବ୍ୟଞ୍ଜକ ଗ୍ଭହାଣୀ, କଠିଣ ମୁହଁରୁ କାଠିନ୍ୟ ଅପସାରିତ ହୋଇଗଲା । ଜଣେ ଭଲ ବନ୍ଧୁ ବା କମ୍ରେଡ୍‌ଙ୍କୁ ଶୁଭେଚ୍ଛା ଜ୍ଞାପନ କରିବା ଭଳି ତାଙ୍କୁ ଶୁଭେଚ୍ଛା ଜଣାଇଲେ ସୈନିକମାନେ । କମିସାର କିନ୍ତୁ ଘୋଡ଼ାରୁ ଓହ୍ଲାଇ ନ ଥାନ୍ତି ।

ନିଜ ପିସ୍ତଲ୍‌କୁ ଖୋଳ ଭିତରକୁ ପୂରାଇଦେଇ ପୁଚିରେଭ୍‌ସି କୋର୍ଗିନ୍ ପାଖକୁ ଲାଗି ବସିପଡ଼ିଲେ ।

"କ'ଣ ଖଣ୍ଡେ ଧୂଆଁ ହବ ? ମୋ ପାଖେ ବଢ଼ିଆ ତମାଖୁ ଅଛି", ପଗ୍ଭରିଲେ ସେ ।

ଗୋଟିଏ ସିଗାରେଟ୍ ବଳି ନିଆଁ ଧରାଇଲେ ସେ । ତା'ପରେ କମିସାରଙ୍କୁ କହିଲେ :

"ତମେ ଆଗେ ଗ୍ଭଲ ଦୋରୋନିନ୍ । ମୁଁ ଏଠି କିଛି ସମୟ ଅଛି । ଯଦି ହେଡ୍‌କ୍ୱାର୍ଟରସ୍‌ରେ ମୋତେ ଖୋଜାପଡ଼େ, ଜଣାଇବ ମୋତେ ।"

ଦୋରୋନିନ୍ ଗଲାପରେ ସେ କୋର୍ଗିନ୍‌କୁ କହିଲେ, "ପଢ଼ ପଢ଼, ପଢ଼ା ବନ୍ଦ କଲୁ କାହିଁକି ? ମୁଁ ବି ଶୁଣିବି ।"

ଶେଷ ପର୍ଯ୍ୟନ୍ତ ପଢ଼ିଗଲା ପାଭେଲ୍ । ବହିଖଣ୍ଡକ ଜଙ୍ଘ ଉପରେ ଥୋଇ ଶୂନ୍ୟଦୃଷ୍ଟିରେ ନିଆଁ ଆଡ଼କୁ ଅନାଇରହିଲା ନୀରବରେ ।

କେତେ ସମୟ ପର୍ଯ୍ୟନ୍ତ କେହି କିଛି କଥା କହିଲେ ନାହିଁ । ସମସ୍ତଙ୍କ ମନଭିତରେ ଗାଡ୍‌ଫ୍ଲାୟର କରୁଣ କାହାଣୀ ଖେଳି ବୁଲୁଥିଲା ।

ପୁଚିରେଭ୍‌ସି ତାଙ୍କ ସିଗାରେଟ୍‌କୁ ଦମେ ଟାଣି ଦେଇ ଆଲୋଚନା ପାଇଁ ଅପେକ୍ଷା କଲେ ।

ନୀରବତା ଭଙ୍ଗ କରି ସେରେଦା କହିଲା :

"ଭାରୀ କରୁଣ କାହାଣୀ । ଏମିତି ଲୋକ ବି ଜଗତରେ ଅଛନ୍ତି, ମୋର ତ ଧାରଣା, ସିଏ ଯାହା ଯାହା କରିଛି, ଭୋଗିଛି, ପୃଥିବୀରେ ଆଉ କେହି ତାହା ପାରିବେ ନାହିଁ । ହେଲେ ଜଣେ ଯଦି ସଂଗ୍ରାମ ପାଇଁ ଦୃଢ଼ ହୋଇଯିବ, ସବୁ ସହ୍ୟ କରିବାର ଶକ୍ତି ଆସିଯିବ ତା'ର ।"

ସେରେଦା ଭାବବିହ୍ୱଳ ଜଣା ଯାଉଥାନ୍ତି । ବହିଟା ତାଙ୍କ ମନରେ ଗଭୀର ରେଖାପାତ କରିଛି । ସେ ମୁଗ୍ଧ ହୋଇଯାଇଥିଲା ବହିଟିରେ ।

"ମୁଁ ଯଦି ସେ ଧର୍ମଯାଜକଟାକୁ ପାଆନ୍ତି ନା, ସଙ୍ଗେ ସଙ୍ଗେ ଶେଷ କରିଦିଅନ୍ତି ସେଇଟାକୁ, ଏଇ ଯେଉଁଟା ତା' ବେକରେ କ୍ରୁଶ ଦେବାକୁ ଲାଗିଥିଲା ମ, ତା' ବେକରେ !" ଆନ୍ଦ୍ର୍ୟୁଶା ଫୋମିଚୋଭ୍, ବେଲାୟା ସେର୍‌କୋଭ୍ ଗାଁର ଜଣେ ଜୋତା କାରିଗରର ଶିଖାଳି କହିଉଠିଲା ।

"ଗୋଟାଏ କାରଣ ପାଇଁ ମରିବାକୁ ଥିଲେ ମଣିଷ ମରଣକୁ ଭୟ କରେ ନାହିଁ", ନିଆଁ ଆଡ଼କୁ କେଟଲିଟାକୁ ଆଉରି ଠେଲି ଦେଉଁ ଦେଉଁ କଣ୍ଠରେ ଦୃଢ଼ତା ଫୁଟାଇ କହିଲା ଆନ୍ଦ୍ରୋଶ୍ଚୁକ୍, "ସେଇ ଉଦ୍ଦେଶ୍ୟ ବା କାରଣ ହିଁ ମଣିଷକୁ ଶକ୍ତି ଯୋଗାଏ । ତମେ ସତ୍ୟ ପାଇଁ, ନ୍ୟାୟ ପାଇଁ ପ୍ରାଣ ଦେଇଛ ବୋଲି ଜାଣିଲେ, ମରିବାରେ ଦୁଃଖ ଆସିବ ନାହିଁ । ଆଉ ଏମିତି ସବୁ ବୀର ହୁଅନ୍ତି । ମୁଁ ଜଣେ ଯୁବକକୁ ଜାଣିଥିଲି । ତା' ନାଁ ପୋରାଇକା । ଓଡେଶାରେ ପୋଲାଣ୍ଡୀୟ ବାହିନୀ ତାକୁ ଘେରାଉ କଲାବେଳେ, ସେ ପୂରା ଗୋଟାଏ ପ୍ଲାଟୁନ୍ ସହିତ ଏକା ଏକା ଲଢ଼େଇ କଲା । ଆଉ ସେମାନେ ତାକୁ ସଙ୍ଗିନ୍‌ରେ ଭୁଷିବା ଆଗରୁ ସେ ନିଜକୁ ଓ ସେ ସମସ୍ତଙ୍କୁ ବି ଏକାଠି ଗୋଟାଏ ଗ୍ରେନେଡ୍‌ରେ ଖତମ କରିଦେଲା । ଦେଖିବାକୁ ବି ଏମିତି କିଛି ଜୋର୍‌ଦାର କି ଆଖିଦୃଶିଆ ସେ ନଥିଲା । ବହିରେ ସବୁ ଲେଖା ହୋଇଥିବା ଲୋକଙ୍କ ଭଳି ଚେହେରା ନୁହଁ । ହେଲେ, ବହିରେ ଲେଖା ହେବା ଭଳି ମଣିଷଟାଏ ସେ । ଆମରି ଭଳି ତରୁଣମାନଙ୍କ ଭିତରେ ଏମିତି ଶହ ଶହ ତରୁଣ ଅଛନ୍ତି ।"

ତା' ଆଗରେ ଫୁଟୁଥିବା ଡେକ୍‌ଚିରେ ଖାଦ୍ୟକୁ ଚାମଚରେ ଘାଣ୍ଟିଦେଇ ଓଠ ମେଲାକରି ଟିକେ ଚାଖିଦେଇ ସେ ପୁଣି ଆରମ୍ଭ କଲା :

"ଅନେକ ମରନ୍ତି କୁକୁରର ମରଣ ... ମାନେ ମୁଁ କହିବାକୁ ଚାହୁଁଛି, ଅସମ୍ମାନଜନକ ମୃତ୍ୟୁ । ଇଜାସ୍ଲାଭ୍‌ଲରେ ଲଢ଼େଇ ଲାଗିଲା ବେଳେ, ସେମିତି ଗୋଟାଏ ଘଟଣା ଘଟିଲା । ସେଇ କଥା ମୁଁ ତମମାନଙ୍କୁ କହିବି । ଗୋରିନ୍ ନଈ କୂଳରେ ଅବସ୍ଥିତ ଏକ ପ୍ରାଚୀନ ସହର ଇଜାସ୍ଲାଭ୍‌ଲ, କୋଉ ରଜା ଅମଳରେ ବସିଥିଲା ସେଠି । ସେଠାରେ ଏକ ପୋଲାଣ୍ଡୀୟ ଗିର୍ଜା ଅଛି । ଠିକ୍ ଦୁର୍ଗଭଳି ତିଆରି ସେଇଟା । ଆମେ ସେ ସହର ଭିତରକୁ ପଶିଲୁ ଆଉ ଅଙ୍କାବଙ୍କା ଗଳି ରାସ୍ତାମାନଙ୍କରେ ଜଣିକିଆ ଧାଡ଼ିକରି ଆଗେଇଲୁ । ଲାଟ୍‌ଭୀୟମାନଙ୍କର ଗୋଟିଏ ବାହିନୀ ଆମର ଡାହାଣ କଡ଼ରେ ଥିଲେ । ଆମେ ବଡ଼ ରାସ୍ତା ଉପରକୁ ଉଠିଲାବେଳକୁ ଦେଖିଲୁ ଜିନ୍ ପଡ଼ିଥିବା ତିନୋଟି ଘୋଡ଼ା ଗୋଟିଏ ଘର ଆଗର ବାଡ଼ରେ ବନ୍ଧା ହୋଇଛନ୍ତି । ଆହାଃ ... ଆମେ ମନେ ମନେ ଭାବିଲୁ, ଯାହା ହଉ, ଏଇଠି କିଛି ପୋଲାଣ୍ଡୀୟ ସୈନ୍ୟଙ୍କୁ ପାଇଗଲୁ ! ଆମ ଭିତରୁ ଦଶଜଣ ଖଣ୍ଡେ ଘରଟାର ଅଗଣା ଭିତରକୁ ଧସେଇଗଲୁ । ଆଗେ ଆଗେ ଆମର ଲାଟ୍‌ଭୀୟ କମ୍ପାନିର କମାଣ୍ଡର ଯାଉଥାନ୍ତି ତାଙ୍କର 'ମାଉଜର' ବନ୍ଧୁକ ହଲାଇ ହଲାଇ ।

ଆଗ ଦୁଆର ମେଲା ଥିଲା । ଆମେ ଭିତରକୁ ଦୌଡ଼ିଗଲୁ । ମାତ୍ର ପୋଲାଣ୍ଡୀୟ ସୈନ୍ୟଙ୍କ ପରିବର୍ତ୍ତେ ଆମରି ଲୋକଙ୍କୁ ଦେଖିଲୁ ସେଠି । ଘୋଡ଼ସବାର ପ୍ରହରୀ ସେମାନେ । ଆମ ଆଗରୁ ପହଞ୍ଚି ଯାଇଛନ୍ତି । ଯାହା ଦେଖିଲୁ, ସତରେ ତାହା ଏକ କୁଦୃଶ୍ୟ । ସେମାନେ ସେଠି ରହୁଥିବା ଜଣେ ପୋଲାଣ୍ଡୀୟ ଅଫିସରର ସ୍ତ୍ରୀ ଉପରେ ଦୁର୍ବ୍ୟବହାର କରୁଛନ୍ତି । ଲାଟ୍‌ଭୀୟ କମାଣ୍ଡର ସେ ଦୃଶ୍ୟ ଦେଖିଲା ମାତ୍ରେ ନିଜ ଭାଷାରେ କ'ଣଗୁଡ଼ାଏ ପାଟି କରିଗଲେ ଆଗେ । ତିନିଜଣଯାକଙ୍କୁ ଘୋଷାରି ଆଣିଲେ ବାହାରକୁ । ସାରା ଫୌଜ

ଭିତରୁ ଆମେ ମାତ୍ର ଦୁଇଜଣ ରୁଷୀୟ ଥିଲୁ ଓ ବାକି ସମସ୍ତେ ଲାଟ୍‌ଭୀୟ । ଲାଟ୍‌ଭୀୟ କମାଣ୍ଡରଙ୍କ ନାଁ ବ୍ରେଡିସ୍ । ତାଙ୍କ ଭାଷା ନ ବୁଝିପାରୁଥିଲେ ମଧ୍ୟ ମୁଁ ବୁଝିପାରୁଥିଲି ଯେ, ସେ ତିନିଜଣଯାକଙ୍କୁ ଖତମ କରିବା ପାଇଁ ଆଦେଶ ଦେଇ ସାରିଲେଣି କମାଣ୍ଡର । ଭାରୀ ଟାଣୁଆ ଓ ଋକ୍ଷ ସେ ଲାଟ୍‌ଭୀୟମାନେ । ଗୁହାଳ ଘର ଭିତରୁ ବାହାରକୁ ଘୋଷାରି ଆଣିଲେ ସେମାନଙ୍କୁ । ସେମାନଙ୍କର ଆଉ ରକ୍ଷା ନାହିଁ ବୋଲି ମୁଁ ଦେଖି ପାରିଲି । ସେମାନଙ୍କ ମଧ୍ୟରୁ ଜଣେ ଖୁବ୍ ଲମ୍ବା ଚଉଡ଼ା, ମୁହଁଟା ଅସୁନ୍ଦର । ସେ ପ୍ରାଣବିକଳରେ ଲାତିମାରି ଲଢ଼ୁଥାଏ ଓ ଚିତ୍‌କାର କରୁଥାଏ – ଗୋଟେ ବାଜେ ସ୍ତ୍ରୀଲୋକ ପାଇଁ ତାକୁ ଗୁଳି କରି ମାରିବାର ଅଧିକାର ସେମାନଙ୍କର ନାହିଁ । ଆର ଦୁଇଟା କ୍ଷମା ମାଗୁଥାନ୍ତି, କରୁଣା ଚାହୁଁଥାନ୍ତି ।

ମୋ ଦେହରୁ ଗୋଟାଏ ଥଣ୍ଡା ଝାଳ ବାହାରିଗଲା । ମୁଁ ବ୍ରେଡିସ୍‌ଙ୍କ ପାଖକୁ ଦୌଡ଼ିଯାଇଁ କହିଲି, 'କମ୍ରେଡ୍ କମ୍ପାନିର କମାଣ୍ଡର, ଟ୍ରିବୁନାଲ୍ ତାଙ୍କ ବିଚାର କରୁ । ଆପଣ ତାଙ୍କ ରକ୍ତରେ ହାତ ଅପରିଷ୍କାର କରିବେ କାହିଁକି ? ସହରରେ ଯୁଦ୍ଧ ଏଯାଏଁ ସରି ନାହିଁ । ଆଉ ଆମେ ଏ ବଜ୍ଜାତ୍‌ଗୁଡ଼ାକ ପାଇଁ ସମୟ ନଷ୍ଟ କରିବା ନାଁ ?' ବାଘଭଳି ଜଳନ୍ତା ଆଖିରେ ମୋ ଆଡ଼କୁ ଚାହିଁଲେ ସେ । ବିଶ୍ୱାସ କର, କାହିଁକି ମନ୍ଦ ବୁଦ୍ଧି କରି ଏମିତି କହିଲି ବୋଲି ବିଚାରିଲି ମୁଁ । ବନ୍ଧୁକଟାକୁ ମୋ ଆଡ଼କୁ ମୁହାଁଇଲେ । ସାତ ବର୍ଷ ହେଲା ଲଢ଼େଇ କଲିଣି ମୁଁ । ହେଲେ ସତ ମାନୁଛି, ଗୋଟାପଣେ ଥରିଗଲି ସେ ମୁହୂର୍ତ୍ତରେ । ଦେଖିଲି, ସେ ଆଗ ଗୁଳି ଚଳାଇସାରି, ତା'ପରେ ଯାହା ପଚାରିବାର ପଚାରିବ । ମୋ ଆଡ଼କୁ ଅନାଇ ଭଙ୍ଗା ଭଙ୍ଗା ରୁଷ୍ ଭାଷାରେ ଯାହା ଗେଁ ଗେଁ ହୋଇ କହିଲେ, ସେଥିରୁ ବୁଝିଲି ଯେ ସେ ମୋତେ କହୁଛନ୍ତି, 'ଆମ ପତାକା, ଆମର ଲାଲ ରକ୍ତରେ ଧୁଆ ହୋଇଛି । ଏ ଲୋକଗୁଡ଼ାକ ଆମର ଫୌଜ ପ୍ରତି, ଆମ ପତାକା ପ୍ରତି ଘୋର ଅପମାନ । ଏଭଳି ଡକାଇତି ରାହାଜାନୀ ପାଇଁ ଶାସ୍ତି ହେଉଛି ମୃତ୍ୟୁ ।'

ଏ ଦୃଶ୍ୟ ଆଉ ସହ୍ୟ କରିପାରିଲି ନାହିଁ ମୁଁ । ଯେତେ ଶୀଘ୍ର ପାରେ, ଅଗଣାରୁ ବାହାରକୁ ଦୌଡ଼ିଆସିଲି, ଆଉ ପଛରୁ ଶୁଣିଲି ତାଙ୍କର ଗୁଳିର ଆୱାଜ । ଜାଣିଲି ସେ ତିନିଟା ଖତମ୍ ହୋଇଗଲେ । ଆମେ ସହରରେ ପହଞ୍ଚିଲାବେଳକୁ ସହରଟା ଆମ ଦ୍ୱାରା ଅଧିକୃତ ହୋଇ ସାରିଲାଣି । ଆଉ ଏଇଆ ହେଲା ମୋ ମତରେ, କୁକୁରର ମରଣ ବୋଲି ଯାହା କହୁଥିଲି, ଏଇ ଯେମିତି ସେ ତିନିଟା ମଲେ । ମେଲିତୋପୋଲ୍‌ଠାରେ ପ୍ରହରୀମାନେ ଆମ ସାଙ୍ଗେ ମିଶିଥିଲେ । ସେମାନେ ପୁଣି ମାଖ୍‌ନୋରେ ବି ଥିଲେ । ଗୁଡ଼ିଏ ଆଜିମାଳିକା ଲୋକ ସେଗୁଡ଼ାକ ।"

ଆଣ୍ଡ୍ରୋଷ୍କୁକ୍ ତା' ଡେକ୍‌ଚିଟା ଓହ୍ଲାଇଆଣି ଏଥର ରୁଟି ଥିବା ଥଳି ଖୋଲିବାକୁ ଆରମ୍ଭ କଲା ।

"ହଁ, ଏମିତି ଲୋକ ଆମ ଭିତରେ ବି ଅଛନ୍ତି । ସଦାବେଳେ ସମସ୍ତଙ୍କୁ ତ ଆଉ ଜାଣିହେବ ନାହିଁ । ଉପର ମୁହଁରେ ସମସ୍ତେ ବିପ୍ଳବ ପାଇଁ ଆଗଭର । ଆଉ ତାଙ୍କରି ପାଇଁ

ଆମର ଦୁର୍ନାମ ହେବ । ହେଲେ ଏମିତି ଖରାପ ଘଟଣା ମୋ ଜୀବନସାରା ମୁଁ ଭୁଲିବି ନାହିଁ ।"

ଘ'ଣ୍ଟ ଟିକେ ଶୋଷିନେଇ ସେ ତା' କଥା ସାରିଲା ।

ଶିବିରରେ ସଭିଏଁ ଶୋଇଲାବେଳକୁ ରାତି ଅନେକ ହେଲାଣି ।

ନୀରବତାକୁ ଭେଦ କରି ସେରେଦାର ଘୁଙ୍ଗୁଡ଼ି ଶୁଭୁଥାଏ । ମୁଣ୍ଡତଳେ ଘୋଡ଼ା ଜିନ୍ ଦେଇ ଶୋଇଥାଏ ପୁଜିରେଭ୍‌ସି, ରାଜନୈତିକ ଶିକ୍ଷକ କ୍ରାମେର୍ ନିଜ ନୋଟ୍‌ଖାତାରେ କ'ଣ ଗାରେଇ ଘଲିଥାଏ ସେ ।

ତହିଁଆରଦିନ ସ୍କାଉଟ୍ କାମ ସାରି ଘୋଡ଼ାକୁ ଗଛ ଗଣ୍ଡିରେ ବାନ୍ଧି କ୍ରାମେର୍‌କୁ ଡାକି ପାଭେଲ୍ କହିଲା ।

କ୍ରାମେର୍ ସେତିକିବେଳକୁ ଠିକ୍ ତା' ଘ'ପିଆ ସାରିଥାଏ ।

"ଦେଖ୍ କ୍ରାମେର୍, ମୁଁ ଯଦି ପ୍ରଥମ ଘୋଡ଼ସବାର ବାହିନୀକୁ ବଦଳାଇଦେବି କ'ଣ ହବ ? ଯାହା ଦେଖାଯାଉଛି, ସେଠି ସବୁ ବଡ଼ ବଡ଼ କଥା ଘଟିବ । ଖାଲି କ'ଣ ଖେଳରେ ଏତେ ସୈନ୍ୟକୁ ଠୁଳ କରାଯାଇଛି ଏକାଠି ? ଆଉ ରହିଲେ, ଆମେ ସେଥିରୁ କିଛି ଜାଣିପାରିବା ନାହିଁ କି ଦେଖିପାରିବା ନାହିଁ ।"

ପାଭେଲ୍‌କୁ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଘହିଁଲା କ୍ରାମେର୍ ।

"ବଦଳାଇଦେବୁ ? ମାନେ ? ତୁ କ'ଣ କହିବାକୁ ଘହୁଁଛୁ ଯେ, ସିନେମାରେ ଆସନ ଅଦଳ ବଦଳ କଲା ଭଳି ସେନାବାହିନୀରେ ବି ତୁ ୟୁନିଟ୍ ଅଦଳ ବଦଳ କରିପାରିବୁ ?"

"ମାତ୍ର ଲଢ଼େଇ କଲାବେଳେ, ଜଣେ କେଉଁଠି ଲଢ଼େଇକଲା, ସେଥିରୁ କ'ଣ ମିଳିବ ? ମୁଁ ସିନା ଖସି ପଳେଇଲେ କ୍ଷତି ହୁଅନ୍ତା । ମୁଁ ତ ଆଗକୁ ଯିବାକୁ କହୁଛି !" ପାଭେଲ୍ କହିଲା ତାକୁ ।

କ୍ରାମେର୍ କିନ୍ତୁ ଅତି ଦୃଢ଼ଭାବରେ ଏ ଧାରଣାକୁ ବିରୋଧ କରୁଥିଲା ।

"କିନ୍ତୁ ଶୃଙ୍ଖଳାର କ'ଣ ହେବ ? ଦେଖ୍ ପାଭେଲ୍, ସାଧାରଣ ଭାବରେ ତୁ ବେଶ୍ ଭଲ ପିଲା । ହେଲେ ତୋ ଭିତରେ ବହୁତ ନୈରାଜ୍ୟବାଦୀ ଧାରଣା ରହିଛି । ଭାବୁଛୁ କ'ଣ ଯେମିତି ଇଚ୍ଛା ସେମିତି କାମ ତୁ କରିପାରିବୁ ? ତୁ ଭୁଲିଯାଉଛୁ ଯେ, ପାର୍ଟି ଆଉ କମ୍‌ସୋମୋଲ୍ ଲୌହ ଶୃଙ୍ଖଳାର ଭିତ୍ତି ଉପରେ ପ୍ରତିଷ୍ଠିତ । ପହିଲେ ପାର୍ଟି କଥା ଦେଖିବାକୁ ହେବ । ଆମେ ପ୍ରତ୍ୟେକେ ଏମିତି ଜାଗାରେ ରହିବା, ଯେଉଁଠି ଆମର ଆବଶ୍ୟକତା ଅଧିକ ଓ ପାର୍ଟି ଆମକୁ ଯେଉଁଠି ରଖିବାକୁ ଘହୁଁଛି । ତୋର ବଦଳି ପାଇଁ ଦରଖାସ୍ତଟାକୁ ପୁଜିରେଭ୍‌ସି ଫେରାଇ ଦେଇଛନ୍ତି । ଦେଇ ନାହାନ୍ତି, ସେଇ ତ ତୋର ଉତ୍ତର । ଆଉ କ'ଣ ?"

କ୍ରାମେର୍ ଏତେ ଉତ୍ତେଜିତ ହୋଇ କହିଲା ଯେ, କାଶ ଉଠିଗଲା ତା'ର । ଡେଙ୍ଗା, ସବଳ ଲୋକଟି ବେଉସା ଦୃଷ୍ଟିରୁ ଥିଲା ଛାପାକଳର ପ୍ରିଣ୍ଟର । ଆଉ ସୀସା ଗୁଣ୍ଡସବୁ ସବେ

ଯେମିତି ଟା' କଲିଜାରେ ବୋଳି ହୋଇ ଯାଇଥିଲା । ବେଳେ ବେଳେ ଟା'ର ସେ ମହଣ ଭଳି ମୁହଁରେ କ୍ଷୟରୋଗର ଝଲକ ଉକୁଟି ଉଠୁଥିଲା ।

କ୍ଲାମେର୍ ଚୁନି ରହିଲା ପରେ ଅନୁଚ୍ଚ ଅଥଚ ଦୃଢ଼ ଗଳାରେ ପାରେଲ୍ କହିଲା :

"ସେ ଯାହା ହେଉ ପଛେ, ମୁଁ ନିଶ୍ଚେ ବୁଦ୍ୟୋନି ବାହିନୀକୁ ଯାଉଛି ।"

ଟା' ପରଦିନ ସନ୍ଧ୍ୟାରେ ପାରେଲ୍ ଶିବିରାଗ୍ନି ପାଖରେ ନଥିଲା ।

* * *

ପାଖ ଗାଆଁର ସ୍କୁଲଘର ବାହାରେ ଥିବା ପାହାଡ଼ଟା ଉପରେ ଦଳେ ବୁଦ୍ୟୋନି ଘୋଡ଼ସବାର ସୈନିକ ବିରାଟ ଗୋଟାଏ ବୃତ୍ତ କରି ବସିଥିଲେ । ଅର୍ଘାଚିଆ ଅସୁର ଭଳି ବଡ଼ ମଣିଷଟାଏ ମେସିନ୍‌ଗନ୍ ବୁହା ଗାଡ଼ି ଉପରେ ବସି, ଟୋପିଟାକୁ ମୁଣ୍ଡ ପଛରେ ପିନ୍ଧି ଆକର୍ଡିଆନ୍ ବଜାଉଥିଲା । ଟା'ର ବିରାଟ ବିରାଟ ଆଙ୍ଗୁଠିର ଘୁପରେ ଯନ୍ତଟା ବାହୁନି ଉଠୁଥିଲା, ବୋବାଳି ଛାଡ଼ୁଥିଲା ଓ ଆଶ୍ଚର୍ଯ୍ୟ ରକମର ଲାଲ ରଙ୍ଗର ବ୍ରିଚେସ୍ ପିନ୍ଧି, ମଝିରେ ହୋପାକ୍ ନାଚ ନାଚୁଥିବା ସୈନିକଟି ବିବ୍ରତ ହୋଇଉଠୁଥିଲା ସେ ସ୍ୱରରେ ।

ଉତ୍ସୁକ ଆଖିରେ ଗାଁର ପୁଅଝିଅମାନେ ମେଢ଼ିବାନ୍ଧି ମେସିନ୍‌ଗନ୍ ଗାଡ଼ି ଆରପଟେ ଠିଆହୋଇ ଟାଙ୍କ ଗାଁରେ ସଦ୍ୟ ପହଞ୍ଚିଥିବା ଏ ସୈନିକମାନଙ୍କର ମଉଜମଜଲିସ୍‌କୁ ଲକ୍ଷ୍ୟ କରୁଥିଲେ ।

"ଟୋପ୍‌ଟାଲେ, ସେଇ ... ସେଇ ସ୍ୱରଟା ବଜାଅ ! ଆଉ ସବୁ ତୁଚ୍ଛା ଲାଗିବ ଟା' ଆଗରେ, ଆକର୍ଡିଆନ୍‌ରେ ମସ୍‌ଗୁଲ କରି ଟୋକ ଦୁନିଆକୁ !"

ମାତ୍ର ଆକର୍ଡିଆନ୍ ବାଦକର ବଡ଼ ବଡ଼ ଆଙ୍ଗୁଠିଗୁଡ଼ାକରେ, ସହଜରେ ଲୁହାର ଘୋଡ଼ାନାଲ ସିନା ବଙ୍କା ହୋଇଯିବ, ଯନ୍ତଟା ଉପରେ ଘୂଳୁ ନଥିଲା ଆଦୌ ।

ଦୁଃଖରେ, ଜଣେ ତମାଟିଆ ବର୍ଣ୍ଣର ଘୋଡ଼ସବାର କହିଲା, "ମାଖ୍‌ନୋ ଯୁଦ୍ଧରେ ଯାହା ଆଫାନାସି କୁଲ୍ୟାବ୍‌କୋକୁ ନେଇ, ସେ ଟୋକାଟା ଥିଲେ ନାଁ, ଓଃ ! ବଢ଼ିଆ ଆକର୍ଡିଆନ୍ ବଜାଉଥିଲା ସେ । ଆମ ସ୍କ୍ୱାଡ୍ରନ୍‌ର ଡାହାଣ କଡ଼େ କଡ଼େ ଯାଉଥିଲା ସେ । ଦୁଃଖର କଥା ବିଚରାଟା ମରିଗଲା । ଭଲ ସୈନିକଟାଏ ବି ଥିଲା । ଆଉ ସବୁଠାରୁ ଶ୍ରେଷ୍ଠ ଆକର୍ଡିଆନ୍ ବାଦକ ଥିଲା ସେ ଆମ ଭିତରେ ।"

ବୃତ୍ତରେ ଠିଆ ହୋଇଥିବା ପାଭେଲ୍ ମଧ୍ୟ ଏ ଶେଷ କଥା କେଇପଦ ଶୁଣିଲା । ସେ ଠେଲିଠାଲି ମେସିନ୍‌ଗନ୍ ଗାଡ଼ିଟା ଯାଏ ଆସିଲା ଆଉ ଆକର୍ଡିଆନ୍‌ର ବୋଲରେ ହାତ ରଖିଲା । ସ୍ୱର ଥମିଗଲା ।

"କ'ଣ ଦରକାର କିରେ", ଆକର୍ଡିଆନ୍ ବାଦକ ପାଟିକାରି ଉଠିଲା ।

ନାଚୁଥିବା ସୈନିକ ଟୋପ୍‌ଟାଲେ ରହିଗଲା ଓ ଜନତା ଭିତରୁ କ୍ରୁଦ୍ଧ ଟିପ୍‌ପଣୀ ଶୁଣାଗଲା, "କ'ଣ ଘଟିଛି ସେଠି ?"

ପାଭେଲ୍ ଏଥର ଯନ୍ତ୍ରଟା ଧରିଲା ।

"ଦିଅ, ମୁଁ ଚେଷ୍ଟା କରି ଦେଖେ", କହିଲା ସେ ।

ଇଲ ପଦାତିକ ବାହିନୀର ଏ ସୈନିକଟିକୁ ବୁଦ୍ୟୋନି ଘୋଡ଼ସବାର ସୈନିକ ଅବିଶ୍ୱାସର ଚାହାଣୀରେ ଅନାଇଲା ଏବଂ ଅନିଚ୍ଛା ସତ୍ତ୍ୱେ ଯନ୍ତ୍ରଟା ତା' ହାତକୁ ବଢ଼ାଇଦେଲା, ନିଜ କାନ୍ଧରୁ ଫିତାଟା କାଢ଼ି ।

ଅଭ୍ୟସ୍ତ ଭଙ୍ଗୀରେ ପାଭେଲ୍ ନିଜ ଜଙ୍ଘ ଉପରେ ରଖିଲା ଯନ୍ତ୍ରଟିକୁ ଓ ଯନ୍ତ୍ରର ପରଦାକୁ ବିସ୍ତୃତ କରି, ପୁଣି ଚାପିଆଣି ହାତ ଚଳାଇଲା ଓ ପରେପରେ ଆକର୍ଡିଆନ୍ ମଧୁର ରାଗିଣୀରେ ବାଜିଉଠିଲା :

ଲୁନି ଆପେଲଟି
ଆଉ ଯିବୁ କୁଆଡ଼େ ?
ଚେକା ହାତେ ପଡ଼ିଛୁ ତୁ ଧରା
ସେଇଠି ତୁ ରହିଥିବୁ ପରା !

ତୋପ୍‌ତାଲେ ଏ ଜଣାଶୁଣା ସ୍ୱରରେ ଚଢ଼େଇ ଭଳି ବାହା ହଲାଇ ବୃତ୍ତ ଭିତରକୁ ପଶିଆସିଲା ଉନ୍ମତ୍ତ ଭାବରେ ନାଚ କରି କରି । ନାଚି ନାଚି ଆସିଲାବେଳେ ନିଜ ଜଙ୍ଘରେ, ନିଜ ବାହାରେ ତାଳି ମାରି ମାରି ତାଳ ଦେଉଥାଏ ସେ । ବେଳେବେଳେ ତାଳ ଦେଉଥାଏ ଜୋତା ସୋଲ୍‌ରେ ଏବଂ ଶେଷରେ ନିଜ ମୁହଁରେ ମଧ୍ୟ ।

ଉନ୍ମତ୍ତ ଅଧୀର ଏକ ମନମତାଣିଆ ଛନ୍ଦରେ ଆକର୍ଡିଆନ୍ ଦ୍ରୁତରୁ ଦ୍ରୁତତର ହୋଇ ବାଜିଉଠିଲା ଏବଂ ଅଣନିଃଶ୍ୱାସୀ ହେଲା ପର୍ଯ୍ୟନ୍ତ ବୃତ୍ତ ମଝିରେ ନାଚି ଚାଲିଲା ତୋପ୍‌ତାଲେ ।

* * *

ଊଣେଇଶହ କୋଡ଼ିଏ ମସିହା ଜୁନ୍ ୫ ତାରିଖରେ, ସଂକ୍ଷିପ୍ତ ମାତ୍ର ଭୟଙ୍କର ଯୁଦ୍ଧରେ ବୁଦ୍ୟୋନି ପ୍ରଥମ ଅଶ୍ୱାରୋହୀ ବାହିନୀ, ତୃତୀୟ ଓ ଚତୁର୍ଥ ପୋଲାଣ୍ଡୀୟ ବାହିନୀକୁ ଏକ ସାମ୍ନାଖ୍ୟରେ ଛିନ୍ନବିଛିନ୍ନ କରି ଆଗେଇ ଯାଇଥିଲେ । ଅଗ୍ରସର ହେବା ପଥରେ ଜେନେରାଲ ସାଭିତ୍‌ସ୍କିଙ୍କ ନେତୃତ୍ୱରେ ଏକ ଅଶ୍ୱାରୋହୀ ବ୍ରିଗେଡ୍‌କୁ ଧ୍ୱସ୍ତବିଧ୍ୱସ୍ତ କରି ଲୁଝିନ୍ ଆଡ଼କୁ ମାଡ଼ି ଯାଇଥିଲେ ।

ପୋଲାଣ୍ଡୀୟ କମାଣ୍ଡ ଯଥାଶୀଘ୍ର ଏକ ବାହିନୀ ଠିଆ କରି ବାଧାଦେବାକୁ ଆଗେଇ ଆସିଲେ । ଯୁଦ୍ଧକ୍ଷେତ୍ରକୁ ପୋଗ୍ରେବିଷ୍ଟେ ରେଳଷ୍ଟେସନ୍‌ରୁ ପାଞ୍ଚଟି ଟ୍ୟାଙ୍କ୍ ମାଡ଼ିଆସିଲା ।

ମାତ୍ର ପୋଲାଣ୍ଡୀୟ ବାହିନୀ ଆଘାତ ହାଣିବାକୁ ପ୍ରସ୍ତୁତ ଥିବା ଜାରୁଦ୍‌ନିତ୍‌ସାକୁ ଅଶ୍ୱାରୋହୀ ବାହିନୀ ସତର୍କତାର ସହ ଅତିକ୍ରମ କରି ଯାଇଥିଲେ ଓ ପୋଲାଣ୍ଡୀୟ ବାହିନୀର ପଛପଟକୁ ଚାଲିଆସିଥିଲେ ।

ପ୍ରଥମ ଅଶ୍ୱାରୋହୀ ବାହିନୀ ପଛେ ପଛେ ଅନୁସରଣ କରି ଜେନେରାଲ କୋର୍ନିଚ୍‌ସ୍କିଙ୍କର ଅଶ୍ୱାରୋହୀ ବାହିନୀ ମଧ୍ୟ ଚାଲିଥିଲେ । ସେମାନଙ୍କୁ ନିର୍ଦ୍ଦେଶ ଥିଲା, ଯୁଦ୍ଧକ୍ଷେତ୍ରରେ ପ୍ରଥମ ଅଶ୍ୱାରୋହୀ ବାହିନୀର ପଛପଟୁ ଆକ୍ରମଣ କରିବା ପାଇଁ, କାରଣ ପୋଲାଣ୍ଡୀୟ ବାହିନୀର ନେତୃତ୍ୱ ଅନୁମାନ କରିଥିଲେ ଯେ, ପ୍ରଥମ ଅଶ୍ୱାରୋହୀ ବାହିନୀ ସେମାନଙ୍କର ସବୁଠାରୁ ଘାଟୀସ୍ଥାନ କାଜାଟିନ୍‌କୁ ଚଢ଼ାଉ କରିବେ । ପୋଲାଣ୍ଡୀୟ ବାହିନୀକୁ ଏ ପଦ୍ଧତି ମଧ୍ୟ କୌଣସି ସାହାଯ୍ୟ କରିପାରିଲା ନାହିଁ । ସେମାନେ ଯେତେ ଯାହା କଲେ ମଧ୍ୟ ପଛେ ପଛେ ଏକ ଶକ୍ତିଶାଳୀ ଘୋଡ଼ସବାର ବାହିନୀ ତାଙ୍କ ପଛୁଆ ଘାଟୀସବୁକୁ ଧ୍ୱଂସ କରି କିଏଭ୍‌ଠାରେ ଥିବା ତାଙ୍କର ସେନାଛାଉଣୀରେ ପହଞ୍ଚିଯିବେ – ଏହି ଚିନ୍ତାହିଁ ତାଙ୍କୁ ଘାରୁଥିଲା । ସେମାନେ ଆଗେଇବା ସାଙ୍ଗେସାଙ୍ଗେ ଲାଲ ଅଶ୍ୱାରୋହୀ ବାହିନୀ ଛୋଟଛୋଟ ରେଳ ପୋଲ, ରେଳ ରାସ୍ତା ସବୁକୁ ଧ୍ୱଂସ କରିଦେଇ ପୋଲାଣ୍ଡୀୟ ବାହିନୀର ପଶ୍ଚାଦ୍‌ଗତିକୁ ମଧ୍ୟ ଅସମ୍ଭବ କରିଦେଇଥିଲେ ।

ପୋଲାଣ୍ଡୀୟ ବାହିନୀର ଏକ ସେନାଛାଉଣୀର ହେଡ୍‌କ୍ୱାର୍ଟରସ୍ ଝିଟୋମିର୍‌ଠାରେ ଅବସ୍ଥିତ ବୋଲି ବନ୍ଦୀମାନଙ୍କଠାରୁ ଜାଣି (ପ୍ରକୃତରେ ଝିଟୋମିର୍‌ରେ ସମୁଦାୟ ବାହିନୀର ହେଡ୍‌କ୍ୱାର୍ଟରସ୍ ଅବସ୍ଥିତ ଥିଲା) ପ୍ରଥମ ଅଶ୍ୱାରୋହୀ ବାହିନୀର କମାଣ୍ଡର ଅତି ଗୁରୁତ୍ୱପୂର୍ଣ୍ଣ ରେଳବାଇ ଜଙ୍କ୍‌ସନ୍ ଝିଟୋମିର୍ ଓ ବେର୍ଦ୍ଦିଚେଭ୍ – ଉଭୟକୁ ଦଖଲ କରିବାକୁ ସ୍ଥିର କଲେ । ଉଭୟ ମଧ୍ୟ ପ୍ରଧାନ ଶାସନ କେନ୍ଦ୍ର ଥିଲା । ଜୁନ୍ ସାତ ତାରିଖର ଭୋରରୁ ଚତୁର୍ଥ ଅଶ୍ୱାରୋହୀ ଡିଭିଜନ ଦ୍ରୁତଗତିରେ ଝିଟୋମିର୍ ଆଡ଼କୁ ଆଗେଇ ଚାଲିଲେ ।

ଗୋଟିଏ ସ୍କ୍ୱାଡ୍ରନ୍‌ର ଡାହାଣ ଦିଗରେ ଆକର୍ଡିଆନ୍ ବାଦକ କୋର୍ଗିନ୍ ମୃତ କୁଲ୍ୟାବ୍‌କୋର ସ୍ଥାନରେ ଚାଲିଥାଏ । ସମସ୍ତଙ୍କର ସମବେତ ଅନୁରୋଧରେ ତାକୁ ସ୍କ୍ୱାଡ୍ରନ୍‌ରେ ଗ୍ରହଣ କରାଯାଇଥିଲା । ଲୋକେ ଏଡ଼େ ଚମତ୍କାର ଆକର୍ଡିଆନ୍ ବାଦକକୁ ଛାଡ଼ିବାକୁ ନାରାଜ ହେଲେ ।

ବାଟରେ କୌଣସିଠାରେ ଘୋଡ଼ାକୁ ନ ରୋକି ସେମାନେ ଝିଟୋମିର୍ ସହରରେ ପହଞ୍ଚିଲେ । ସେମାନଙ୍କର ଅସ୍ତ୍ରଶସ୍ତ୍ର ସବୁ ଖରାରେ ଝଲସି ଉଠୁଥାଏ ।

ସେମାନଙ୍କର ପଦପାତରେ ଧରିତ୍ରୀ ଥରିଉଠିଲା, ଦୁଲୁକି ଉଠିଲା । ଘୋଡ଼ାସବୁ ହ୍ରେଷା ରବ କରିଉଠିଲେ । ଅଶ୍ୱାରୋହୀମାନେ ଷ୍ଟିରପରେ ପାଦ ଦେଇ ଠିଆ ହୋଇଗଲେ ଘୋଡ଼ା ପିଠି ଉପରେ ।

ସୈନ୍ୟ ଡିଭିଜନକୁ ଦେଖିବା ପାଇଁ ବଗିଚା ଓ ପାର୍କ ଭରା ସହରର ସମସ୍ତେ ଉତ୍ସୁକ ହୋଇଉଠିଲେ । କୋଳାହଳରେ ଭରିଗଲା ସହରଟା ସାରା । ସହରର ମଧ୍ୟସ୍ଥଳରେ ଠୁଳ ହେଲେ ଅଶ୍ୱାରୋହୀମାନେ । ସେମାନଙ୍କର ଅସ୍ତ୍ରଶସ୍ତ୍ରର ଝନତ୍କାର ଓ ଭୟାବହ ଯୁଦ୍ଧ ରବରେ ଗଗନ ପବନ ପ୍ରକମ୍ପିତ ହୋଇଉଠିଲା । ମରଣଠାରୁ ଭୟଙ୍କର ସେ ରବ ।

ହତଭମ୍ବ ହୋଇଯାଇଥିବା ପୋଲାଣ୍ଡୀୟ ବାହିନୀ ଅପ୍ରସ୍ତୁତ ହୋଇ ଆଦୌ ବାଧା ଦେଇ ପାରିଲେ ନାହିଁ । ସ୍ଥାନୀୟ ସୈନ୍ୟମାନେ ଧ୍ୱସ୍ତବିଧ୍ୱସ୍ତ ହୋଇଗଲେ ।

ନିଜ ଘୋଡ଼ା ଉପରେ ନଇଁପଡ଼ି, ତୋପ୍‌ତାଲ୍ଲେର କଡ଼େ କଡ଼େ ନିଜର କଳା ଘୋଡ଼ାକୁ ଝପଟାଇଥାଏ ପାଭେଲ୍ କୋର୍ଚ୍ଚାଗିନ୍ ।

ପାଭେଲ୍‌ର ଆଖି ଆଗରେ ଦୁର୍ଦ୍ଦାନ୍ତ ଅଶ୍ୱାରୋହୀ ସୈନିକଟି ଗୋଟିଏ ପୋଲାଣ୍ଡୀୟ ସୈନ୍ୟକୁ, ସେ ତା'ର ବନ୍ଧୁକ କାନ୍ଧରୁ କାଢ଼ିଲା ପୂର୍ବରୁ ନିପାତ୍ କରିଦେଲା ।

ରାସ୍ତା ଉପରେ କଦମ୍ ପକାଇ ଗଲାବେଳେ, ଘୋଡ଼ାଖୁରାରେ ରାସ୍ତା ଉପରର ପଥର ଉପରେ ବାଜି ଶବ୍ଦ କରିଉଠୁଥାଏ । ଗୋଟିଏ ଜାଗାରେ, ଏମିତି ଆଗେଇ ଯାଉଯାଉ ସେମାନେ ଗୋଟିଏ ଛକ ମୁଣ୍ଡରେ ଠିକ୍ ରାସ୍ତା ଉପରେ ଥୁଆହୋଇଥିବା ମେସିନ୍‌ଗନ୍‌ର ସମ୍ମୁଖୀନ ହେଲେ । ତା'ଉପରେ ବଙ୍କା ପୋଲାଣ୍ଡୀୟ ଟୋପି ପିନ୍ଧି ତିନିଜଣ ପୋଲାଣ୍ଡୀୟ ସୈନିକ ନଇଁପଡ଼ିଥାନ୍ତି । ନିଜ ଜାମାରେ କଲର୍ ଉପରେ ସୁନାଜରିଦିଆ ଗାରଥାଇ ଚତୁର୍ଥ ଜଣେ ମଧ୍ୟ ଥାଏ । ସିଏ ତା'ର ପିସ୍ତଲ୍ ଅଶ୍ୱାରୋହୀମାନଙ୍କ ଆଡ଼କୁ ଲକ୍ଷ୍ୟ କରି ଟେକି ଧରିଥାଏ ।

ତୋପ୍‌ତାଲେ ବା ପାଭେଲ୍, କେହିହେଲେ, ନିଜ ନିଜର ଘୋଡ଼ାକୁ ଅଟକାଇ ରଖି ନ ପାରି, କଦମ ପକାଇ ସିଧାସିଧା ମେସିନ୍‌ଗନ୍ ଆଗକୁ, ମରଣ ମୁହଁକୁ ଆଗେଇଗଲେ । ଅଫିସର ଜଣକ କୋର୍ଚ୍ଚାଗିନ୍‌କୁ ଲକ୍ଷ୍ୟ କରି ଗୁଳି ଚଳାଇଲା । ବୁଲେଟ୍‌ଟା ପାଭେଲ୍‌ର ଗାଲ କଡ଼ରେ ଠିକ୍, ତୀବ୍ରସ୍ୱରରେ ଅତିକ୍ରମ କରିଗଲା ଏବଂ ପର ମୁହୂର୍ତ୍ତରେ ଲେଫଟ୍‌ନାଣ୍ଟ ଜଣକ ରାସ୍ତା ଉପରେ ନିଜ ମୁଣ୍ଡ ଲେଟାଇ ଗଡ଼ିପଡ଼ିଲେ, ଘୋଡ଼ାର କଦମ୍‌ପାତରେ ଓଲଟିଯାଇ ।

ଠିକ୍ ସେହି ମୁହୂର୍ତ୍ତରେ, ଭୟଙ୍କର ଗର୍ଜନ କରି ମେସିନ୍‌ଗନ୍ ଫୁଟି ଉଠିଲା ଏବଂ ତୋପ୍‌ତାଲେ ଓ ତା'ର କଳାଘୋଡ଼ାଟି ଭୂଇଁରେ ଲେଟିପଡ଼ିଲେ ।

ପାଭେଲ୍‌ର ଘୋଡ଼ା ହେଁ ହେଁ ଶବ୍ଦ କରି ନିଜ ପଛ ଦୁଇ ଗୋଡ଼ରେ ଠିଆ ହୋଇପଡ଼ିଲା ଭୟଭୀତ ହୋଇ, ମୃତଶବକୁ ଟପିଯାଇ ମେସିନ୍‌ଗନ୍‌କୁ ମଧ୍ୟ ଟପିଗଲା । ସେତିକିବେଳେ ପାଭେଲ୍‌ର ଖଡ୍‌ଗ, ଗୋଟାଏ ନାଲଟୋପି ଲକ୍ଷ୍ୟ କରି ଖସିଲା ।

ପୁଣି ଥରେ ଉପରକୁ ଉଠି ତା'ର ଅସ୍ତ୍ର ଦ୍ୱିତୀୟ ମସ୍ତକ ଉପରେ ପଡ଼ିଲା । ମାତ୍ର ଏତିକିବେଳକୁ ତ୍ରସ୍ତ ଘୋଡ଼ା ଆରପଟକୁ ଡେଇଁଗଲା ନିଜର ସବାରକୁ ନେଇ ।

ପର୍ବତ ଧସେଇପଡ଼ିଲା ଭଳି ସେନାବାହିନୀ ପରେ ଗଦାହୋଇଗଲେ ଏବଂ ଅସ୍ତ୍ରସବୁ ଝଇସିଉଠିଲା ।

* * *

ବନ୍ଦୀଶାଳର ଅଣଓସାରିଆ ଅନ୍ଧକାରାଚ୍ଛନ୍ନ ବାରଣ୍ଡା ଚିହାରରେ ପ୍ରତିଧ୍ୱନିତ କରିଉଠୁଥାଏ ।

ହତାଶିଆ ଆଖିର ନାରୀପୁରୁଷରେ ବନ୍ଦୀଶାଳର କୋଠରୀଗୁଡ଼ିକ ପୂରିଯାଇଥାଏ । ସେମାନେ ଶୁଣିପାରୁଥାନ୍ତି ସହରରେ ଯୁଦ୍ଧ ହେବାର କଳରୋଳ । ଭାବୁଥାନ୍ତି, ଏହା ପରେ କ'ଣ ସତରେ ଏ ଅତ୍ୟାଗ୍ଚରର ପରିସମାପ୍ତି? ମୁକ୍ତି ଆସନ୍ନ ? ସତେ କ'ଣ ଏ

ବାହିନୀ ସହରକୁ ଆସିଛନ୍ତି, ଭଗବାନଙ୍କ ଦ୍ୱାରା ହଠାତ୍ ପ୍ରେରିତ ହୋଇ ତାଙ୍କୁ ସବୁ ମୁକ୍ତ କରିବାକୁ ?

ବନ୍ଦୀଶାଳର ପ୍ରାଙ୍ଗଣରେ ଗୁଳିଗୋଳା ଫୁଟିବାର ଶବ୍ଦ ଶୁଭିଲା । ବନ୍ଦୀମାନେ ବାରଣ୍ଡା ଉପରକୁ ଦୌଡ଼ିଆସିଲେ, ସେମାନଙ୍କର ବହୁ ଈପ୍‌ସିତ, ଆକାଂକ୍ଷିତ "କମ୍ରେଡ୍, ତମେମାନେ ମୁକ୍ତ" ବୋଲି କଥାପଦକ ଶୁଣିବା ପାଇଁ ।

ଛୋଟ ଝରକାଥିବା ତାଲାବନ୍ଦ ହୋଇଥିବା ଗୋଟିଏ ବଖରାକୁ ଦୌଡ଼ିଆସିଲା ପାଭେଲ୍ । ଭିତରୁ ବାର ତେରଟି ଆଖି ନିର୍ନିମେଷ ଭାବରେ ଚାହିଁଥାନ୍ତି ତାକୁ । ନିଜ ବନ୍ଧୁକ ଗୋବରେ ବନ୍ଦ ହୋଇଥିବା ତାଲାଟା ଉପରେ ପାହାର ପରେ ପାହାର ବସାଇଗଲା ସେ ।

"ଅପେକ୍ଷାକର ଟିକିଏ, ମୁଁ ତାଲାଟାକୁ ଗୋଟାଏ ହାତ ବୋମାରେ ଫଟାଇଦିଏଁ", ମିରୋନୋଭ୍ ଚିତ୍କାର କରି କହିଲା ଓ ପାଭେଲ୍‌କୁ କଡ଼କୁ ଠେଲିଦେଇ ନିଜ ଥଳିରୁ ଗୋଟାଏ ହ୍ୟାଣ୍ଡ ଗ୍ରେନେଡ୍ ବାହାରକଲା ।

ପ୍ଲାଟୁନ୍ କମାଣ୍ଡର ଝିଗାର୍ଚେଙ୍କୋ ତା'ହାତରୁ ଗ୍ରେନେଡ୍‌ଟାକୁ ଛଡ଼ାଇନେଲେ ।

"ବନ୍ଦକର ! ବୋକା, ତମେ ପାଗଳ ହୋଇଯାଇଛ ? ଆମେ ଗୋଟାଏ ଧକ୍କାରେ ଚାବି ଭାଙ୍ଗି ଦେବା ନାହିଁ ? ଯାହା ଭାଙ୍ଗି ନ ପାରିବା, ଚାବିରେ ଫିଟାଇବା ।"

ଜରାଜୀର୍ଣ୍ଣ ଅପରିଚ୍ଛନ୍ନିଆ ବେଶରେ ଆନନ୍ଦ ଉନ୍ମତ୍ତ ବନ୍ଦୀମାନେ ବନ୍ଦୀଶାଳର କୋଠରୀରୁ ବାହାରି ଆସିଲାବେଳକୁ ପ୍ରହରୀମାନଙ୍କ ପଛରୁ ପିସ୍ତଲ୍ ଦେଖାଇ ସେମାନଙ୍କୁ ବାରଣ୍ଡାରେ ଏକାଠି ଆଣି ଠୁଳ କରାଯାଇ ସାରିଥାଏ ।

ବନ୍ଦୀଶାଳର ଗୋଟିଏ କୋଠରୀ ଫିଟାଇ ଭିତରକୁ ଦୌଡ଼ିଯାଇ ପାଭେଲ୍ ଚିତ୍କାର କରି ଉଠିଲା :

"କମ୍ରେଡ୍, ତମେମାନେ ମୁକ୍ତ, ଆମେସବୁ ବୁଦ୍ୟୋନି ଲୋକ, ଆମର ଡିଭିଜନ ସହର ଅଧିକାର କରିଛି ।"

ଗୋଟିଏ ନାରୀ ଲୁହ ଛଳଛଳ ଆଖିରେ ଦୌଡ଼ିଆସି ପାଭେଲ୍‌କୁ କୁଣ୍ଢାଇ ପକାଇ ଜୋର୍‌ରେ ଜୋର୍‌ରେ ଗୁମୁରି ଗୁମୁରି କାନ୍ଦିଉଠିଲା ।

ଡିଭିଜନ ଆଗରେ ଏ ବିଜୟ ପାଇଁ ଯେକୌଣସି ପୁରସ୍କାରଠାରୁ ବଡ଼ ପୁରସ୍କାର ଥିଲା ଏ ଅନ୍ଧକାରାଚ୍ଛନ୍ନ ନିବୁଜ ବନ୍ଦୀଶାଳର କୋଠରୀ ଭିତରେ ପୋଲାଣ୍ଡୀୟ ବାହିନୀ ଦ୍ୱାରା ଆବଦ୍ଧ ହୋଇ, ତିଳତିଳ ହୋଇ ନିଃଶେଷ ହୋଇ ବନ୍ଧୁକ ଗୁଳି ବା ଫାଶିଖୁଣ୍ଟକୁ ଅପେକ୍ଷା କରି ରହିଥିବା ପାଞ୍ଚହଜାର ଏକସ୍ତରୀ ଜଣ ବଲ୍‌ଶେଭିକ୍ ଓ ଦୁଇହଜାର ଲାଲ ଫୌଜର ରାଜନୈତିକ କର୍ମୀଙ୍କର ମୁକ୍ତି ! ବିଜୟ ଅପେକ୍ଷା ମଧ୍ୟ ଏହା ଶ୍ରେଷ୍ଠ ପୁରସ୍କାର ! ସାତ ହଜାର ବିପ୍ଳବୀମାନଙ୍କର ରାତ୍ରିର ନୀରନ୍ଧ୍ର ବିଷଣ୍ଣତା ସ୍ଥାନରେ ଫୁଟି ଉଠିଲା ଜୁନ୍ ମାସର ଏକ ଉତ୍ତପ୍ତ ଦିନର ଉଜ୍ଜ୍ୱଳ ସୂର୍ଯ୍ୟ ।

ଶେଥା ପଡ଼ିଯାଇ ଲେମ୍ବୁ ଭଳି ହଳଦିଆ ଦିଶୁଥିବା ଜଣେ ବନ୍ଦୀ ଆନନ୍ଦରେ ଅଧୀର ହୋଇ ପାଭେଲ୍ ଆଡ଼କୁ ଦୌଡ଼ିଆସିଲା । ଶେପେଟୋଭ୍‌କା ଛାପାଖାନାରେ କାମ କରୁଥିବା କମ୍ସୋମୋଲ୍‌ର ସାମୁଏଲ୍ ଲେଖେର୍ ସେ ।

ସାମୁଏଲ୍ ଲେଖେର୍‌ଠାରୁ ନିଜର ସହରରେ ଘଟିଯାଇଥିବା ରକ୍ତତାଣ୍ଡବର କାହାଣୀ ଶୁଣି ପାଭେଲ୍‌ର ମୁହଁ କଳାକାଠ ପଡ଼ିଗଲା । କଥାଗୁଡ଼ାକ ତାତିଲା ତରଳ ଲୁହା ଭଳି ଗଳିଯାଉଥାଏ ତା' ଦେହରେ ।

"ଆମ ସମସ୍ତଙ୍କୁ ଗୋଟାଏ ରାତିରେ ସେମାନେ ଧରିନେଲେ ହଠାତ୍, ସମସ୍ତଙ୍କୁ ଏକାବେଳେକେ । ଗୋଟାଏ କୋଉ ଅପଦାର୍ଥ ଆମ ନିକଟରେ ବିଶ୍ୱାସଘାତକତା କରି ସାମରିକ ଗୁଇନ୍ଦାମାନଙ୍କ ଆଗରେ ଆମ କଥା କହି ଦେଇଥିଲା । ଆଉ ଥରେ ସେମାନେ ଆମକୁ ତାଙ୍କ ହାତମୁଠାରେ ପାଇଲା ପରେ ଦୟାମାୟା ସବୁ ଭୁଲିଗଲେ । ନିର୍ଦ୍ଦୟ ଭାବରେ ମାଡ଼ ଦେଲେ, ପାଭେଲ୍, ଭୟଙ୍କର ଭାବରେ । ମୁଁ ବୋଧହୁଏ ଅନ୍ୟମାନଙ୍କ ତୁଳନାରେ କମ୍ ମାଡ଼ ଖାଇଛି, କାରଣ ପହିଲି କେଇଟା ମାଡ଼ ପରେ ମୁଁ ବେହୋସ୍ ହୋଇଗଲି । ମାତ୍ର ଅନ୍ୟମାନେ ତ ମୋ ଅପେକ୍ଷା ବଳୁଆ ଥିଲେ ।

ଆମର ଆଉ କିଛି ଲୁଚେଇବା ପାଇଁ ନ ଥିଲା । ଗୁଇନ୍ଦାମାନେ ଆମ ଅପେକ୍ଷା ସବୁକଥା ଅଧିକ ଭଲ ଭାବରେ ଜାଣି ସାରିଥିଲେ । ଆମ ଭିତରେ ଥିବା ସେଇ କୋଉ ବିଶ୍ୱାସଘାତକ ବେଇମାନ୍‌ଟା ପାଇଁ ଆମର ସବୁ ଉପାୟ, ସବୁ ପଦକ୍ଷେପର କଥା ସେମାନେ ଜାଣିଥିଲେ । ସେ ଭୟଙ୍କର ଦିନଗୁଡ଼ାକର କାହାଣୀ ମୁଁ କହିପାରିବି ନାହିଁ ରେ ପାଭେଲ୍ । ଯାହାଙ୍କୁ ସବୁ ଧରିନେଲେ, ତାଙ୍କ ଭିତରୁ ଅଧିକାଂଶଙ୍କୁ ତୁ ଜାଣୁ । ଭାଲ୍ୟା ବ୍ରୁଝାକ୍, ରୋଜା ଗ୍ରୀସମାନ୍, ସୁନ୍ଦର ଝିଅଟିଏ ସତର ବର୍ଷର ! ଏଡ଼େ ସୁନ୍ଦର ନିର୍ଭରଶୀଳ ଆଖିଦିଇଟି ତା'ର । ଆଉ ଥିଲା ସାଶା ବ୍ରୁନ୍‌ଶାଫ୍‌ଟ । ତୁ ତାକୁ ଜାଣିଛୁ । ଆମର ଜଣେ କମ୍ସୋମୋଲ୍‌ର ସେ ଥିଲା । ହସଖୁସିର ଟୋକାଟା ! ସବୁବେଳେ ମାଲିକର କ୍ୟାରିକେଚର କରେ ସେ । ତାକୁ ଆଉ ଦି'ଜଣ ଉଚ୍ଚ ବିଦ୍ୟାଳୟର ଛାତ୍ରଙ୍କୁ ବି ଧରିନେଲେ ସେମାନେ । ନୋଭୋସେଲ୍‌ସି ଓ ତୁଝିଚ୍ ... ତାଙ୍କ ଦିହିଁଙ୍କୁ ବି ତୋର ବେଶ୍ ମନେଥିବ । ଆଉ ଦି'ଜଣ ସେଇଠାର ସ୍ଥାନୀୟ ଲୋକ କିମ୍ବା ଜିଲା କେନ୍ଦ୍ରର । ମୋଟରେ ଅଣତିରିଶ ଜଣ ଗିରଫ ହେଲେ—ସେଥିରୁ ଛଅଜଣ ଝିଅ । ସେମାନଙ୍କ ସମସ୍ତଙ୍କ ଉପରେ ଅମାନୁଷିକ ଅତ୍ୟାଚାର ହୋଇଛି । ପ୍ରଥମ ଦିନ ଭାଲ୍ୟା ଆଉ ରୋଜା ଉପରେ ପାଶବିକ ଅତ୍ୟାଚାର କଲେ । ଯେତେ ଉପାୟରେ ସମ୍ଭବ, ତାଙ୍କର ସର୍ବସ୍ୱ ନେଲେ ବେଧୁଆଗୁଡ଼ାକ । ତା'ପରେ ତାଙ୍କ ଉପରେ ଅତ୍ୟାଚାର କରି କରି, ମଲା ଭଳିଆ କରି ସେଲ୍ ଭିତରକୁ ଘୋଷାରି ନେଇଗଲେ । ତା' ପରେପରେ ରୋଜା ପ୍ରଳାପ କରିବାକୁ ଆରମ୍ଭ କଲା ଓ କିଛି ଦିନ ପରେ ପୂରାପୂରି ପାଗଳୀ ହୋଇଗଲା ସେ ।

ସିଏ ପାଗଳୀ ହୋଇଯାଇଛି ବୋଲି ମଧ୍ୟ ବିଶ୍ୱାସ କଲେ ନାହିଁ ସେମାନେ । ଛଳନା କରୁଛି ବୋଲି ଭାବି, ପ୍ରତ୍ୟେକ ଥର ପଚରାଉଚରା କଲାବେଳେ ନିର୍ମମ ଭାବରେ ମାଡ଼

ମାରନ୍ତି ତାକୁ । ଓଃ, କି ହୃଦୟବିଦାରକ ଦୃଶ୍ୟ, ଯେଉଁଦିନ ସବାଶେଷରେ ଗୁଳିକଲେ ତାକୁ! ଖଣ୍ଡିଆ ଖାବରା ହୋଇଯାଇଥାଏ ମୁହଁ ତା'ର । ଆଖିଗୁଡ଼ାକ ଭୟଙ୍କର ଦିଶୁଥାଏ । ବୁଢ଼ାଟାଏ ଭଳି ଦିଶୁଥାଏ ସେ ।

ଭାଲ୍ୟା ବୁଝାକ୍ କିନ୍ତୁ ଶେଷ ଯାଏ ଠିକ୍ ଥିଲା । ସେମାନେ ପ୍ରକୃତ ବୀର ପରି ମୃତ୍ୟୁବରଣ କରିଥିଲେ । ସେମାନେ ସେସବୁ ଯାତନା କିପରି ସହି ପାରିଲେ ମୁଁ ଜାଣେନା । ସେମାନଙ୍କ ମୃତ୍ୟୁର ବର୍ଣ୍ଣନା ମୁଁ ତତେ କେମିତି କହିବି ଭାବି ପାରୁନି ? ସେସବୁ ଅତି ଭୟଙ୍କର ଥିଲା । ଭାଲ୍ୟା ସବୁଠାରୁ ବିପଜ୍ଜନକ କାମ କରୁଥିଲା । ପୋଲାଣ୍ଡୀୟ ବାହିନୀ ହେଡ୍‌କ୍ୱାର୍ଟରସ୍‌ର ଓ୍ୱାୟାର୍‌ଲେସ୍ ଅପରେଟରମାନଙ୍କ ସହିତ ଓ ଆମ ଜିଲ୍ଲା କେନ୍ଦ୍ର ଅଫିସର ଲୋକଙ୍କ ସହିତ ଯୋଗାଯୋଗ ଥାଏ ତା'ର । ତା'ଛଡ଼ା ତା' ଘର ଖାନତଲାସ କରି ସେମାନେ ଦିଇଟା ହାତବୋମା ଓ ଗୋଟାଏ ପିସ୍ତଲ୍ ପାଇଲେ । ହାତବୋମା ଦୁଇଟା ତାକୁ ସେଇ ଉକ୍ତୁକେଇଲାବାଲାଏ ଦେଇଥିଲେ । ସବୁ ଠିକ୍ କରାହୋଇଥିଲା ତାଙ୍କ ବିରୁଦ୍ଧରେ, ହେଡ୍‌କ୍ୱାର୍ଟରସ୍ ଉଡ଼ାଇଦେବାର ଚକ୍ରାନ୍ତ କରୁଥିବାର ଅଭିଯୋଗ ଆଣିବା ପାଇଁ ।

ଭାରି ଦୁଃଖ ଲାଗୁଛି ରେ ମୋତେ ପାଭେଲ୍, ସେ ଶେଷ ଦିନଗୁଡ଼ାକର କାହାଣୀ ବର୍ଣ୍ଣନା କରିବାକୁ । ଖାଲି ପଗ୍ଭରୁଛୁ ବୋଲି କହୁଛି । ସାମରିକ ବିଚାରାଳୟ ଭାଲ୍ୟା ଓ ଆଉ ଦୁଇଜଣଙ୍କୁ ଫାଶି ପାଇଁ ଓ ଅନ୍ୟମାନଙ୍କୁ ଗୁଳି କରିଦେବା ପାଇଁ ରାୟ ଦେଲେ ।

ଯେଉଁ ପୋଲାଣ୍ଡୀୟ ସୈନିକମାନେ ଆମ ସାଙ୍ଗେ ଥିଲେ, ତାଙ୍କର ବିଗ୍ଭର ଦୁଇଦିନ ଆଗରୁ ସାରିଦେଇଥିଲେ । କରପୋରାଲ ସ୍ନେଗୁର୍କୋ ତରୁଣ ଓ୍ୱାୟାର୍‌ଲେସ୍ ଅପରେଟରଟିଏ, ଯୁଦ୍ଧ ଆଗରୁ ଲଦ୍‌ଜରେ ଇଲେକ୍‌ଟ୍ରିସିୟାନ୍ ଭାବରେ କାମ କରୁଥିଲା ବିଚରା । ସେନାବାହିନୀ ଭିତରେ କମ୍ୟୁନିଷ୍ଟ ପ୍ରଗ୍ଭର କରୁଛି ଏବଂ ଦେଶଦ୍ରୋହ କରୁଛି ବୋଲି ତାକୁ ଗୁଳି କରିଦିଆଯିବାକୁ ରାୟ ଦେଲେ । ସିଏ ଅପିଲ୍ କଲା ନାହିଁ ଓ ରାୟର ଚବିଶ ଘଣ୍ଟା ଭିତରେ ତାକୁ ଗୁଳି କରିଦେଲେ ।

ତା' ବିଗ୍ଭରବେଳେ ଭାଲ୍ୟାକୁ ସାକ୍ଷୀ ଦେବା ପାଇଁ ଡକା ହୋଇଥିଲା । ଭାଲ୍ୟା ଆମକୁ ପଛରେ କହିଲା ଯେ, କମ୍ୟୁନିଷ୍ଟ ପ୍ରଗ୍ଭର କରିଛି ବୋଲି ମାନିନେଲା ସିଏ, ହେଲେ ଦେଶଦ୍ରୋହ କରିଛି ବୋଲି ଅଭିଯୋଗକୁ ତୀବ୍ରଭାବରେ ବିରୋଧ କଲା । କହିଲା, 'ମୋର ପିତୃଭୂମି ହେଉଛି ପୋଲାଣ୍ଡୀୟ ସୋଭିଏତ୍ ସୋସାଲିଷ୍ଟ ପ୍ରଜାତନ୍ତ୍ର । ହଁ, ମୁଁ ପୋଲାଣ୍ଡ କମ୍ୟୁନିଷ୍ଟ ପାର୍ଟିର ଜଣେ ସଭ୍ୟ । ମୋ ଇଚ୍ଛା ବିରୁଦ୍ଧରେ ମୋତେ ଏ ଯୁଦ୍ଧକୁ ଅଣାଯାଇଛି ଏବଂ ମୁଁ ମୋରି ଭଳି ଯୁଦ୍ଧକୁ ଘୋଷରା ହୋଇ, ବାଧ୍ୟ କରାଇ ଅଣାହୋଇଥିବା ଲୋକଙ୍କର ଆଖି ଖୋଲିଦେବା ପାଇଁ ଚେଷ୍ଟା କରିଛି । ମୋତେ ସେଥିପାଇଁ ଫାଶିଖୁଣ୍ଟରେ ଲଟକାଇ ଦେଇପାର ତମେ । ମାତ୍ର ମୋର ପିତୃଭୂମି ବିରୁଦ୍ଧରେ ଦେଶଦ୍ରୋହିତାର ଅଭିଯୋଗରେ ନୁହେଁ । କାରଣ ମୁଁ ଦେଶଦ୍ରୋହୀ ନ ଥିଲି ବା ହେବି ନାହିଁ । ତମର ପିତୃଭୂମି ମୋ ପିତୃଭୂମି ନୁହେଁ । ତମର ପିତୃଭୂମି ସଂଭ୍ରାନ୍ତ ଲୋକଙ୍କର ... ଧନୀଙ୍କର —

ମୋର ପିତୃଭୂମି ଶ୍ରମିକଙ୍କର ... ଦରିଦ୍ରଙ୍କର । ମୁଁ ନିଶ୍ଚିତ ଯେ, ମୋ ପିତୃଭୂମି, ଯେଉଁ ଭୂମି ମୋର ଭବିଷ୍ୟତ୍‌ର ସୁନେଲି ସ୍ୱପ୍ନର ସାର୍ଥକତା ଆଣିବ, ସେଥିରେ କେହିହେଲେ ମୋତେ ବିଶ୍ୱାସଘାତକ ବୋଲି କହିବେ ନାହିଁ ।'

ବିଗ୍ଭର ସରିଲାପରେ ଆମେ ସମସ୍ତେ ଏକାଠି ଥିଲୁ । କେବଳ ଖୁଣ୍ଟ ବା ଗୁଳି ଆଗକୁ ଯିବା ପୂର୍ବରୁ ଜେଲ୍‌କୁ ବଦଳି କରିଦିଅନ୍ତି । ହାସ୍‌ପାତାଳ କଡ଼ରେ, ବନ୍ଦୀଶାଳାର ବିପରୀତ ପାଖରେ ରାତାରାତି ଫାଶିମଞ୍ଚ ତିଆର କରନ୍ତି ସେମାନେ । ଆଉ ଗୁଳି କରିବା ପାଇଁ ରାସ୍ତାର ଅଦୂରବର୍ତ୍ତୀ ଜଙ୍ଗଲ ଭିତରର ଗୋଟାଏ ବଡ଼ ଖାତ ଠିକ୍ କରିଥାନ୍ତି । ଆମ ସମସ୍ତଙ୍କ ପାଇଁ ଗୋଟାଏ ସାଧାରଣ କବର ଖୋଳା ହୋଇଥିଲା ।

ସମସ୍ତେ ଆମର ପରିଣତିର କଥା ଯେମିତି ଜାଣିପାରିବେ, ସେଥିପାଇଁ ଦଣ୍ଡାଦେଶର ଘୋଷଣା ସହରସାରା ଲେଖି ମରାଯାଉଥିଲା । ସମସ୍ତଙ୍କୁ ଥରାଇ ଦେବା ପାଇଁ ସର୍ବସାଧାରଣରେ ଫାଶି ଦେବା ପାଇଁ ସ୍ଥିର କରିଥିଲେ ସେମାନେ । ବଡ଼ିସକାଳୁ ସହର ସାରା ଲୋକଙ୍କୁ ଫାଶିମଞ୍ଚ ପାଖକୁ ଘଉଡ଼ାଇ ନିଆଯାଉଥିଲା । ଭୟାବହ ହେଲେ ମଧ୍ୟ କେତେକ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଉଥିଲେ ଫାଶି ସ୍ଥଳକୁ । ଅଳ୍ପ ସମୟ ଭିତରେ ବନ୍ଦୀଶାଳା ବାହାରେ ବିରାଟ ଜନତା ଘେରି ଯାଇଥାନ୍ତି । ଆମ ସେଲ୍ ଭିତରୁ ତାଙ୍କର କଳଗୁଞ୍ଜନ ଶୁଭେ ଆମକୁ । ଲୋକଙ୍କ ପଛରେ ରାସ୍ତାରେ ସେମାନେ ମେସିନ୍‌ଗନ୍ ରଖିଥାନ୍ତି ଓ ସାରା ଅଞ୍ଚଳରୁ ଅଶ୍ୱାରୋହୀ ତଥା ସାଧାରଣ ଗୁଇନ୍ଦାମାନଙ୍କୁ ଠୁଳ କରାଇଥାନ୍ତି ଆଣି । ପରିବା ଖେତ ଓ ସହରର ରାସ୍ତାମାନଙ୍କ ଗ୍ଭରିପଟେ, ସେମାନଙ୍କର ଗୋଟାଏ ପୂରା ବାଟାଲିଅନ୍ ଘେରିଥାଆନ୍ତି । ଯେଉଁମାନଙ୍କୁ ଫାଶି ଦିଆଯାଏ ସେମାନଙ୍କ ପାଇଁ ମଞ୍ଚତଳେ ଠିକ୍ ଗୋଟାଏ ଗାତ ଖୋଳାଯାଇଥାଏ । ଆମେ ଶେଷ ମୁହୂର୍ତ୍ତକୁ ନୀରବରେ ଅପେକ୍ଷା କରିଥାଉ, ଆଗ ରାତିରୁ କଥାବାର୍ତ୍ତା ସାରି, ଆମର ବିଦାୟ ସଂଭାଷଣ ସାରିଥାଉ । ପରସ୍ପରଠାରୁ ସବୁ ବିଦାୟ ମାଗିନେଉଥାଉ । କେବଳ ରୋଜା ସେଲ୍‌ର ଗୋଟାଏ କୋଣରେ ନିଜକୁ ନିଜେ ଫୁସ୍‌ଫୁସ୍ କରି କ'ଣ ସବୁ କହିଲା । ନିଜ ଉପରେ ସବୁ ପ୍ରକାର ଅତ୍ୟାଗ୍ଭର, ମାରପିଟ୍ ସହି ସହି ଭାଇୟା ଏତେ ଦୁର୍ବଳ ହୋଇପଡ଼ିଥାଏ ଯେ, ସଦାବେଳେ ପଡ଼ିରହିଥାଏ । ଦୁଇଜଣ ସ୍ଥାନୀୟ କମ୍ୟୁନିଷ୍ଟ ଝିଅ, ଦି' ଭଉଣୀ ପରସ୍ପରଠାରୁ ଚିରବିଦାୟ ନେଇ ଗଲାବେଳେ ଝରଝର ହୋଇ କାନ୍ଦି ପକାଇଲେ । ଷ୍ଟେପାନୋଭ୍ ବୋଲି ଗାଁର ତରୁଣଟିଏ, ଯିଏ ତାକୁ ଗିରଫ କରିବାକୁ ଆସିଥିବା ଦୁଇଜଣ ଗୁଇନ୍ଦାଙ୍କୁ ଖତମ କରିଥାଏ, ସେମାନଙ୍କୁ ନ କାନ୍ଦିବାକୁ ଉପଦେଶ ଦେଇ କହିଲା । 'ବୁନ୍ଦାଏ ବି ଲୁହ ଝରାଅ ନାହିଁ, କମ୍ରେଡ୍ । ଏଠି କାନ୍ଦିପାର ପଛେ କିନ୍ତୁ ତାଙ୍କ ଆଗରେ ନୁହେଁ । ସେ ଘୁଷୁରିଗୁଡ଼ାକ ଯେମିତି କିଛି ନ ବୁଝନ୍ତି ! ସେମାନଙ୍କର ତ ଦୟା ନାହିଁ । ଆମକୁ ମରିବାକୁ ହିଁ ପଡ଼ିବ, ତେବେ ଭଲରେ ମରିବା ନାହିଁ କାହିଁକି ? ଆଣ୍ଠେଇ ପଡ଼ିବା କାହିଁକି କମ୍ରେଡ୍ ? ମନେରଖ, ମରିବା ଯଦି ମରିବା ବୀର ପରି ।'

ତା'ପରେ ସେମାନେ ଆମ ପାଖକୁ ଆସିଲେ । ସବା ଆଗରେ ଆସେ ଶ୍ଚୁଭାର୍କୋଭ୍‌ସି

ବୋଲି ତାଙ୍କର ଗୁଇନ୍ଦା ମୁଖ୍ୟ । ପାଗଳା କୁକୁର ଭଳି ଉତ୍‌କ୍ଷିପ୍ତ ଓ ସବୁଠାରୁ ଘଣ୍ୟ ଲୋକଟା ! ଓଃ ... ଯଦି ନିଜେ ପାଶବିକ ଅତ୍ୟାଚାର ନ କରିପାରେ, ତେବେ ଠିଆ ହୋଇ ନିଜର ଜେନ୍ଦାର୍ମମାନେ ଅତ୍ୟାଚାର କରୁଥିବାର ଦେଖେ ସେ । ଦି' ଧାଡ଼ି ଜେନ୍ଦାର୍ମଙ୍କ ଭିତରେ, ସଡ଼କରେ ମାର୍ଚ୍ଚ କରାଇ କରାଇ ଆମକୁ ଫାଶିମଞ୍ଚ ପାଖକୁ ନିଆହେଲା । ସେଗୁଡ଼ାଙ୍କୁ ଆମେ କ୍ୟାନେରି ପକ୍ଷୀ ବୋଲି ନାମ ଦେଇଥିଲୁ । କାରଣ, ସେମାନଙ୍କ କାନ୍ଧର ଆଭରଣର ରଙ୍ଗ ଥିଲା ହଳଦିଆ । ଖଡ଼୍‌ଗ ଉନ୍ମୁକ୍ତ କରି ସେଗୁଡ଼ାକ ଠିଆ ହୋଇଥାନ୍ତି !

ସେମାନେ ଆମ ପଛରେ ବନ୍ଧୁକ ଗୋବାମାରି ଜଲଦି ଜଲଦି ବନ୍ଦୀଶାଳାର ପ୍ରାଙ୍ଗଣ ପାରକରାଇ ଚାରି ଚାରି ଜଣିଆ ଧାଡ଼ି କରିବାକୁ କହିଲେ । ତା'ପରେ ଫାଟକଟା ଫିଟାଇ ରାସ୍ତା ଉପରକୁ ନେଇ ଫାଶିଖୁଣ୍ଟ ସାମନାସାମନି ଠିଆ କରାଇଲେ, ଯେମିତିକି ଆମେ ଆମ କମ୍ରେଡ୍‌ମାନେ ଫାଶିରେ ଝୁଲିବାର ଦେଖି, ଆମ ପାଳି ଆସିବା ଯାଏ ଅପେକ୍ଷା କରିବୁ । ମୋଟା କାଠଗଣ୍ଡିରେ ତିଆରି ହୋଇଥାଏ ଉଚ୍ଚ ଫାଶିମଞ୍ଚଟା । ଉପର କାଠଗଡ଼ରୁ ମୋଟା ମୋଟା ଦଉଡ଼ିର ତିନିଟା ଫାଶି ଝୁଲୁଥାଏ ଓ ପ୍ରତ୍ୟେକ ଫାଶି ତଳେ କାଠ ପଟାର ମଞ୍ଚଟାଏ ଥାଏ, ଯାହାକୁ ପଦରେ ପେଲିଦେଲେ ବାହାରିଯିବ । ଉଦ୍‌ବିଗ୍ନହୃଦୟ ଜନସମୁଦ୍ର ଭିତରୁ କ୍ଷୀଣ କଳ ଗୁଞ୍ଜନ ଶୁଭିଲା । ସମସ୍ତ ଆଖି ଆମ ଉପରେ ନ୍ୟସ୍ତ । ଗହଳି ଭିତରୁ ଆମର ପରିଚିତ ଅନେକ ଲୋକଙ୍କୁ ଚିହ୍ନିଲୁ ଆମେ ।

ଦୂରରେ ଗୋଟାଏ ଖିଲଣ ଉପରେ ଦଳେ ପୋଲାଣ୍ଡୀୟ ସମ୍ଭ୍ରାନ୍ତ ଲୋକ ଓ ଅଫିସର ଦୂରବୀକ୍ଷଣ ଯନ୍ତ୍ର ଧରି ଛିଡ଼ା ହୋଇଥାନ୍ତି । ବଲ୍‌ଶେଭିକ୍‌ଙ୍କୁ ଫାଶି ଦିଆହେବାର ଦୃଶ୍ୟ ଦେଖିବାକୁ ଆସିଥାନ୍ତି ସେମାନେ ।

ପାଦତଳେ ଥାଏ ନରମ ତୁଷାରଚୂର୍ଣ୍ଣ । ସାରା ବନଭୂମି ତୁଷାରରେ ଶୁଭ୍ର ଦେଖାଯାଉଥାଏ । ଭିଣା ହୋଇଥିବା ତୂଳା ଭଳି ଗଛ ଅଗରେ ଲାଗିଥାଏ ବରଫସବୁ । ଝରଝର ହୋଇ ବିଞ୍ଚି ହୋଇଯାଉଥାଏ ବରଫ ଆମର ଉତପ୍ତ ମୁହଁକୁ ଶୀତଳ କରି । ଫାଶିଖୁଣ୍ଟର ମଞ୍ଚ ଉପରେ ବି ଗଦା ହୋଇଥାଏ ବରଫ । ପୋଷାକପତ୍ର ନ ଥିଲେ ବି ଆମ ଭିତରକୁ କାହାରିକୁ ଥଣ୍ଡା ଲାଗୁ ନ ଥାଏ । ଏପରିକି ସ୍ତେପାନୋଭ୍ ନିଜେ ଖାଲି ମୋଜା ପିନ୍ଧି ଚାଲିଛି ବୋଲି ଖିଆଲ ନ ଥାଏ ତା'ର ।

ଫାଶିଖୁଣ୍ଟ ପାଖରେ ପ୍ରତୁଷା ଅଫିସରମାନେ ଓ ସାମରିକ ପ୍ରୋସିକ୍ୟୁଟର ଛିଡ଼ା ହୋଇଥାନ୍ତି । ଶେଷକୁ ଭାଲ୍ୟା ଓ ଆଉ ଯେଉଁ ଦୁଇଜଣ କମ୍ରେଡ୍ ଫାଶି ପାଇବାର ଥାଏ, ସେମାନଙ୍କୁ ଜେଲ୍ ବାହାରକୁ ଅଣାଗଲା । ଭାଲ୍ୟା ମଝିରେ ଚାଲିଥାଏ ଅନ୍ୟ ଦୁଇଜଣଙ୍କ କାନ୍ଧରେ ଭାରାଦେଇ । କାରଣ ଚାଲିବାର ଶକ୍ତି ନ ଥାଏ ତା'ର ଆଦୌ । କାନ୍ଧକୁ କାନ୍ଧ ମିଳାଇ ଚାଲୁଥାନ୍ତି ସେମାନେ । ଏତେ କଷ୍ଟରେ ସୁଦ୍ଧା ଭାଲ୍ୟା ସିଧାସଳଖ ଚାଲିବାକୁ ଚେଷ୍ଟା କରୁଥାଏ ସ୍ତେପାନୋଭ୍‌ର କଥାପଦକ ମନେପକାଇ — "ମରିବା ଯଦି ମରିବା

ବୀର ପରି, କମ୍ରେଡ୍ ।” ଗୋଟାଏ ପଶମ ଜ୍ୟାକେଟ୍ ପିନ୍ଧିଥାଏ ସେ, ମାତ୍ର କୋଟ୍ ନ ଥାଏ ।

ଖ୍ରାର୍କୋଭ୍‌ସିକୁ ନିଶ୍ଚିତ ଭାବରେ ସେମାନଙ୍କର କାନ୍ଧକୁ କାନ୍ଧ ମିଳାଇ ଏମିତି ଗ୍ଲାଲିବା ଅସହ୍ୟ ଲାଗୁଥିଲା । ସେଥିପାଇଁ ପଛଆଡ଼ୁ ପେଲିଦେଲା ସେ । କ'ଣ ଗୋଟାଏ କହିଲା ଭାଇୟା ଓ ଗୋଟାଏ ଅଶ୍ୱାରୋହୀ ଜେନ୍‌ଦାର୍ମ, ତା'ର ପରା ମୁହଁରେ ବନ୍ଧୁକ ପାହାରଟାଏ ବସାଇଲା ।

ଭୟବିହ୍ୱଳ ଚିତ୍କାର କରି ସ୍ତ୍ରୀଲୋକଟିଏ ଉନ୍ମାଦିନୀଙ୍କ ଭଳି, ଭିଡ଼ ଠେଲି କର୍ଡନ ଭାଙ୍ଗି ଭିତରକୁ ପଶିଆସିବାକୁ ଭୀଷଣ ପ୍ରଚେଷ୍ଟା କରୁଥାଏ । ତାକୁ ଧରି ଘୋଷାରିନେଲେ । ନିଶ୍ଚୟ ଭାଇୟାର ମା' ସିଏ । ଫାଶିଖୁଣ୍ଟ ପାଖରେ ପହଞ୍ଚି ଭାଇୟା ଗୀତ ଗାଇବାକୁ ଆରମ୍ଭ କଲା । ତା'ର ଏଭଳି ମଧୁର ସ୍ୱର ମୁଁ କେବେ ଶୁଣି ନ ଥିଲି । ମରଣ ମୁହଁକୁ ଯାଉଥିବାବେଳେ ବୋଧହୁଏ ଜଣେ ଏମିତି ଆବେଗ ଢାଳିଦେଇ ପାରେ କଣ୍ଠରେ ତା'ର । ତା' ଗୀତରେ ଆଉ ଦୁଇଜଣ ଯୋଗଦେଲେ । ଅଶ୍ୱାରୋହୀ ସୈନିକମାନେ ଉନ୍ମତ୍ତ ହୋଇ ଗ୍ଲାବୁକରେ କଷିଦେଇଗଲେ । ମାତ୍ର ଅବିଚଳିତ ଭାବରେ ଗାଇଗ୍ଲାଲିଥାନ୍ତି ସେମାନେ, ସତେ ଯେମିତି ଏ ଗ୍ଲାବୁକମାଡ଼ ତାଙ୍କ ଦେହକୁ ଆଦୌ ଲାଗୁ ନାହିଁ । ଟଳେ ପକାଇଦେଇ ଅଖାବସ୍ତା ଭଳି ଫାଶିଖୁଣ୍ଟକୁ ଘୋଷାରି ନିଆଗଲା ସେମାନଙ୍କୁ । ଦଣ୍ଡାଦେଶ ଚରବର କରି ପଢ଼ିଦେଲେ ଓ ଫାଶି ଝୁଲିଆସିଲା ତାଙ୍କ ମୁଣ୍ଡ ଉପରକୁ ।

ଆଉ ସେହି ମୁହୂର୍ତ୍ତରେ ଆମେମାନେ ଗାଇଉଠିଲୁ :

'ଉଠ ଜାଗ ଭୋକୀ ବନ୍ଦୀ ...'

ଗ୍ଲାରିଆଡ଼ୁ ପ୍ରହରୀମାନେ ଖେଦିଆସିଲେ ଆମ ଉପରକୁ ଓ ମୁଁ କେବଳମାତ୍ର ଦେଖିପାରିଲି, ବନ୍ଧୁକ ଗୋବରେ ମଞ୍ଚଟାକୁ ଘୁଞ୍ଚାଇ ଦିଆଯାଉଛି, ତିନିଜଣଯାକଙ୍କର ଦେହ ଫାଶିରୁ ଝୁଲୁଛି ... ।

ବାକି ଆମମାନଙ୍କୁ ବନ୍ଦୀଶାଳାରେ ପୂରାଇ ରାୟ ଶୁଣାଇ ଦିଆଗଲା ଯେ, ଆମ ଭିତରୁ ଦଶଜଣଙ୍କୁ କୋଡ଼ିଏ ବର୍ଷ ଜେଲ୍‌ଦଣ୍ଡ ଦିଆଗଲା, ବାକି ଷୋଳଜଣଙ୍କୁ ଗୁଳି କରିଦିଆଗଲା ।”

କଣ୍ଠ ରୁଦ୍ଧହୋଇ ଆସିଲାଭଳି ନିଜ ଜାମାର କଲର୍‌ଟାକୁ ଚିପି ଧରିଲା ସାମୁଏଲ୍ ।

“ତିନିଦିନ ପାଇଁ ସେ ଫାଶିରୁ ସେ ତିନିଜଣଙ୍କର ଦେହ ସେମିତି ଝୁଲିରହିଲା ସେଠି । ଦିନରାତି କଡ଼ା ଜଗୁଆଳି ଭିତରେ ରହିଲା ଫାଶିଖୁଣ୍ଟଗୁଡ଼ାକ । ତା'ପରେ ଆଉ ଦଳେ ନୂଆ ବନ୍ଦୀ ବନ୍ଦୀଶାଳାକୁ ଅଣାହେଲେ । ସେମାନେ କହିଲେ ଯେ, ଚତୁର୍ଥ ଦିନ କମ୍ରେଡ୍ ତୋବୋଲ୍‌ଦିନ୍ ଝୁଲି ରହିଥିବା ଦଉଡ଼ିଟି ଛିଡ଼ିଗଲା – କାରଣ ଫାଶି ଦିଆଯାଇଥିବା ତିନି ଜଣଙ୍କ ମଧ୍ୟରୁ ତୋବୋଲ୍‌ଦିନ୍ ସବୁଠାରୁ ଓଜନଦାର ଥିଲେ । ପରେ, ଅନ୍ୟ ଦୁଇଟି ଶବକୁ କାଢ଼ିନେଇ ସେମାନେ ପୋତି ଦେଇଥିଲେ ।

ଫାଶିମଞ୍ଚ କିନ୍ତୁ ସେମିତି ରଖାଯାଇଥିଲା । ଆମକୁ ଏଠାକୁ ଅଣାଯିବା ପର୍ଯ୍ୟନ୍ତ ଫାଶିମଞ୍ଚଗୁଡ଼ାକ ସେମିତି ଥିଲା । ଫାଶି ଦଉଡ଼ି ଲଗା ହୋଇ ରହି ଖୁଣ୍ଟଗୁଡ଼ାକ ସେହିଭଳି ଭାବରେ ରହିଥିଲା ନୂଆ ଶିକାରକୁ ଅପେକ୍ଷା କରି ।"

କହିସାରି ସାମୁଏଲ୍ ନୀରବ ହୋଇଗଲା । ତାଙ୍କ ଆଖିରେ ଆଗକୁ ଚାହିଁ ରହିଥିଲା ସେମିତି । ପାଭେଲ୍‌କୁ ଜଣା ନଥିଲା ସେପର୍ଯ୍ୟନ୍ତ, ସାମୁଏଲ୍‌ର କାହାଣୀ ସରିଗଲାଣି ବୋଲି ।

ତା' ଆଖି ଆଗରେ ଜଳ ଜଳ ହୋଇ ଭାସିଉଠୁଥିଲା, ଗୋଟିଏ କଡ଼କୁ ଭୟଙ୍କର ଭାବରେ ବେକ ଝୁଲି ପଡ଼ିଥିବା, ଫାଶି ଦଉଡ଼ିରେ ଝୁଲା ହୋଇଥିବା ତିନୋଟି ଦେହ ।

ସମବେତ ହେବା ପାଇଁ ସୂଚନା ଦେଇ ବାହାରେ ବିଗୁଲ ବାଜିଉଠିବାରୁ ପାଭେଲ୍ ଚଞ୍ଚଳ ହୋଇଉଠିଲା ।

"ଚାଲ୍ ବାହାରକୁ ଯିବା ସାମୁଏଲ୍", ଅନୁଚ୍ଚ ସ୍ୱରରେ ଉଚ୍ଚାରଣ କଲା ସେ ।

ପୋଲାଣ୍ଡୀୟ ବନ୍ଦୀମାନଙ୍କର ଗୋଟିଏ ଧାଡ଼ି ରାସ୍ତାରେ ଆସି ଅଶ୍ୱାରୋହୀ ବାହିନୀ କଡ଼ରେ ଛିଡ଼ାହେଲେ । ବନ୍ଦୀଶାଳାର ଦ୍ୱାରଦେଶରେ ରେଜିମେଣ୍ଟର କମିସାର ଛିଡ଼ାହୋଇ ନିଜ ନୋଟ୍‌ଖାତାରେ ଅର୍ଡର ଲେଖୁଥାନ୍ତି ।

କାଗଜ ଟୁକୁରା ଖଣ୍ଡକ, ବେଶ୍ ବଳୁଆ ସ୍ୱାତ୍ରନ୍ କମାଣ୍ଡରଙ୍କ ହାତକୁ ବଢ଼ାଇଦେଇ ସେ କହିଲେ, "କମ୍ରେଡ୍ ଆନ୍ତିପୋଭ୍, ଏଇଟା ନିଅ, ଆଉ ଅଶ୍ୱାରୋହୀ ବାହିନୀ ଜଗୁଆଳି ଦେଇ ସବୁ ବନ୍ଦୀଙ୍କୁ ନୋଭୋଗ୍ରାଦ୍-ଭୋଲିନ୍‌ସ୍କିକୁ ନେଇଯାଅ ! ଦେଖ, ଯେମିତି ଆହତମାନେ ଡାକ୍ତରୀ ତତ୍ତ୍ୱାବଧାନରେ ରହନ୍ତି । ତା'ପରେ ଶଗଡ଼ରେ ବସାଇ ସହରର କୋଡ଼ିଏ ମାଇଲ ବାହାରକୁ ନେଇଯାଅ । ଛାଡ଼ିଦିଅ – ଯୁଆଡ଼େ ଇଚ୍ଛା ଯିବାକୁ ... ସେମାନଙ୍କ ପାଇଁ ମୁଣ୍ଡ ଖେଳେଇବାକୁ ଆମର ସମୟ ନାହିଁ । ଦେଖ, ଯେମିତି ବନ୍ଦୀମାନଙ୍କ ପ୍ରତି କୌଣସି ଖରାପ ବ୍ୟବହାର ନ କରାଯାଏ ।"

ନିଜ ଘୋଡ଼ା ପିଠିରେ ଚଢ଼ି, ପାଭେଲ୍ ସାମୁଏଲ୍ ଆଡ଼କୁ ବୁଲିପଡ଼ି କହିଲା, "ଶୁଣିଲୁ ତ ? ସେମାନେ ଆମ ଲୋକଙ୍କୁ ଫାଶିଖୁଣ୍ଟରେ ଝୁଲାଇ ଦେଉଛନ୍ତି, ଅଥଚ ଆମେ ତାଙ୍କୁ ପହରା ଦେଇ ନିଜ ନିଜ ଜାଗାକୁ ନେଇଯିବୁ, ପୁଣି ଭଲ ବ୍ୟବହାର କରିବାକୁ ହେବ । କେମିତି ଆମେ କରିବୁ ଏସବୁ ?"

ରେଜିମେଣ୍ଟ କମାଣ୍ଡର ଦୃଢ଼ତାବ୍ୟଞ୍ଜକ କଣ୍ଠରେ କହୁଥିବା ଲୋକ ଆଡ଼କୁ ଅନାଇ କହିଲେ, "ନିରସ୍ତ୍ର ବନ୍ଦୀଙ୍କ ପ୍ରତି ଅତ୍ୟାଚାରର ଦଣ୍ଡ ହେଉଛି ମୃତ୍ୟୁ । ଆମେମାନେ ପୋଲାଣ୍ଡୀୟ ଶ୍ୱେତ ବାହିନୀ ନୋହୁଁ !"

ଘୋଡ଼ାରେ ବସି ଯାଉଯାଉ, ପାଭେଲ୍ ବିପ୍ଲବୀ ମିଲିଟାରୀ କାଉନ୍‌ସିଲର ଘୋଷଣାର ଶେଷ କେଇପଦ ମନେ ମନେ ଆଉଡ଼େଇଗଲା । ବାହିନୀରେ ପଢ଼ାହୋଇଥିଲା ଘୋଷଣାପତ୍ରଟି :

"କୃଷକ ଶ୍ରମିକର ଏ ରାଷ୍ଟ୍ର, ନିଜର ଲାଲ ଫୌଜକୁ ଭଲପାଏ, ତା' ପାଇଁ ଗର୍ବିତ

ମଧ୍ୟ ଏବଂ ସେ ବାହିନୀର ପତାକାରେ କଳଙ୍କର ଦାଗଟିଏ ସୁଦ୍ଧା ଲାଗିବାକୁ ଦିଆଯିବ ନାହିଁ।"

"କଳଙ୍କର ଦାଗଟିଏ ସୁଦ୍ଧା ନୁହେଁ", ପାଭେଲ୍ ଫୁସ୍‌ଫୁସ୍ କରି କହିଉଠିଲା ।

* * *

ଝୋମିର୍ ଚତୁର୍ଥ ଅଶ୍ୱାରୋହୀ ଡିଭିଜନ ଦଖଲ କଲାବେଳେ ସପ୍ତମ ରାଇଫଲ ଡିଭିଜନର ବିଂଶ ବ୍ରିଗେଡ୍ କମ୍ରେଡ୍ ଗୋଲିକୋଭ୍‌ଙ୍କ ଅଧୀନରେ ଏକ ଆକ୍ରମଣକାରୀ ଦଳ ଗଠନ କରି ଓକୁନିନୋଭୋ ଗ୍ରାମାଞ୍ଚଳରେ ନୀପର ନଦୀ ଅତିକ୍ରମ କରୁଥାଆନ୍ତି ।

ପଞ୍ଚବିଂଶତମ ରାଇଫଲ ଡିଭିଜନର ଗୋଟିଏ ଦଳ ଏବଂ ବାଶ୍‌କିର ଅଶ୍ୱାରୋହୀ ବ୍ରିଗେଡ୍ ମଧ୍ୟ ନିର୍ଦ୍ଦେଶ ପାଇଥାନ୍ତି ନୀପର ନଦୀ ଅତିକ୍ରମ କରି କିଏଭ୍-କୋରୋଷ୍ଟେନ୍ ରେଲବାଇର ଇର୍ଶା ଷ୍ଟେସନ୍‌ରେ ଘାଟୀ ଜମାଇବାକୁ । ଏହି ଚଢ଼ାଉ ଫଳରେ ପୋଲାଣ୍ଡୀୟମାନଙ୍କର କିଏଭ୍‌ରୁ ପଛଘୁଞ୍ଚା ଦେବା ପାଇଁ ଶେଷ ପ୍ରଚେଷ୍ଟା ମଧ୍ୟ ବିଫଳ ହେବ ।

ଏହି ନଦୀ ଅତିକ୍ରମ କଲାବେଳେ ଶେପେଟୋଭ୍‌କା କମ୍‌ସୋମୋଲ୍ ସଂଗଠନର ମିଶା ଲେଭ୍‌ଚୁକୋଭ୍ ମୃତ୍ୟୁମୁଖରେ ପଡ଼ିଲା । ସେମାନେ ଦୋହଲମୋହଲ ହେଉଥିବା ଭସା ପୋଲ ଉପରେ ଦୌଡ଼ି ଯାଉଥିଲା ବେଳେ ହଠାତ୍ ନଦୀର ତୀଖ କୂଳଆଡ଼ୁ କେଉଁଠୁ ଗୋଟାଏ ହାତବୋମା ଆସି ତୀବ୍ରଭାବରେ ପଡ଼ି ଫୁଟିଲା ଓ ପାଣିରେ ପଡ଼ି ପାଣିକୁ ଦି'ଭାଗ କରିଦେଲା । ସେହି ମୁହୂର୍ତ୍ତରେ ଭସା ପୋଲର ଗୋଟିଏ ଅଂଶ ସହିତ ମିଶା ମଧ୍ୟ ଅଦୃଶ୍ୟ ହୋଇଗଲା କୁଆଡ଼େ । ନଦୀ ନିଜର କରାଳ ଗର୍ଭରେ କାହିଁ କୁଆଡ଼େ ତାକୁ ବିଲୀନ କରିଦେଲା । ଛିନ୍ନ ମଳିନ ଟୋପିପିନ୍ଧା ବାଟାଲିଅନ୍‌ର ଅନ୍ୟ ଏକ ସୈନିକ ଯାକିମେଙ୍କୋ ଚିତ୍କାର କରି ଉଠିଲା :

"ମିଶା, ଆରେ ମିଶା, ପଥରଖଣ୍ଡେ ଭଳି ପାଣିରେ ଯାଇ ପଡ଼ିଲା ବିଚରା!" ମୁହୂର୍ତ୍ତକ ପାଇଁ କଳାଘୂମର ପାଣିକୁ ଅନାଇରହିଲା ସେ । ମାତ୍ର ପଛଆଡ଼ୁ ଲୋକେ ଆସି ତାକୁ ଆଗକୁ ପେଲିବାକୁ ଲାଗିଲେ :

"ଏଠି କାହିଁକି ଅନାଇଁ ଛିଡ଼ା ହୋଇଛୁ ବୋକାଙ୍କ ଭଳି ? ଚାଲ ଶୀଘ୍ର!"

ଅଟକି ରହିବା ପାଇଁ କାହାରିକୁ ବେଳ ନଥିଲା ସେତେବେଳେ । ନଦୀର ଦକ୍ଷିଣପାର୍ଶ୍ୱ ସେତେବେଳକୁ ବାହିନୀର ଗୋଟିଏ ଅଂଶ ଦଖଲ କରି ସାରିଲେଣି । ଏମାନେ ପଛେଇ ରହିଯାଇଛନ୍ତି ।

ତା'ର ଚାରିଦିନ ପର୍ଯ୍ୟନ୍ତ ସେର୍ଗେଇ ମିଶାର ମୃତ୍ୟୁ ସମ୍ବାଦ ପାଇ ନ ଥିଲା । ସେତେବେଳକୁ ବ୍ରିଗେଡ୍ ବୁଗ୍ର ଷ୍ଟେସନ୍ ଦଖଲ କରି ସାରିଲେଣି ଏବଂ କିଏଭ୍ ଆଡ଼କୁ ଆଗେଇଲା ଭିତରେ ପୋଲାଣ୍ଡୀୟ ବାହିନୀର ପ୍ରାଣମୂର୍ଚ୍ଛା ଆକ୍ରମଣକୁ ପ୍ରତିହତ କରୁଥାନ୍ତି, କାରଣ ପୋଲାଣ୍ଡୀୟମାନେ କୋରୋଷ୍ଟେନ୍ ବାଟେ ବାହାରି ଯିବାର ଚେଷ୍ଟା କରୁଥାନ୍ତି ।

ଗୁଳି ଚଳାଇଲାବେଳେ ଧାଡ଼ିରେ ସେର୍ଗେଇ ପାଖରେ ପେଟେଇ ପଡ଼ି ଗୁଳି ଚଳାଉଥିଲା ୟାକିମେଙ୍କୋ । ବହୁ ସମୟ ଗୁଳି ଚଳାଇଲା ପରେ ତାତିଯାଇଥିବା ବନ୍ଧୁକର ବୋଲ୍‌ଟ ହୁଗୁଳା କରିବାକୁ ଅସୁବିଧା ହେଉଥିଲା । ତା'ର ନିଜ ମୁଣ୍ଡକୁ ଅତି ସାବଧାନତାର ସହିତ ନୁଆଁଇ ରଖି ସେର୍ଗେଇ ଆଡ଼କୁ ମୁହଁବୁଲାଇ ସେ କହିଲା :

"ଟିକିଏ ବନ୍ଦ କରିବାକୁ ହବ ... ଭାରି ତାତିଯାଇଛି ବନ୍ଧୁକଟା !"

ଗୁଳି ଗର୍ଜନାର ତୀବ୍ର ଶବ୍ଦ ଭିତରେ ସେର୍ଗେଇ ତା' କଥା ଶୁଣି ପାରିଲା କି ନାହିଁ କେଜାଣି ?

ଶବ୍ଦର ସ୍ରୋତ ଟିକେ ଧିମେଇ ଆସିଲାବେଳେ ଅତି ସାଧାରଣ ଭାବରେ ସେର୍ଗେଇକୁ କହିଲା ସେ, "ତମ କମ୍ରେଡ୍ ନୀପରରେ ବୁଡ଼ିଗଲା । ମୁଁ କିଛି କରିପାରିବା ଆଗରୁ ତଳକୁ ଖସିପଡ଼ିଥିଲା ସେ ।" ଏତିକିମାତ୍ର କହିଲା ସେ । ନିଜ ବନ୍ଧୁକର ବେଲ୍‌ଟ ଫିଟାଇ ଆଉ ଗୋଟିଏ ଗୁଳିର ବେଲ୍‌ଟ ନେଇ ଲୋଡିଂ କରିବାରେ ଲାଗିଗଲା ସେ ।

* * *

ବେର୍ଦିଚେଭ୍‌କୁ ପ୍ରେରିତ ହୋଇଥିବା ଏକାଦଶ ଡିଭିଜନ, ପୋଲାଣ୍ଡୀୟମାନଙ୍କଠାରୁ ଭୀଷଣ ପ୍ରତିରୋଧର ସମ୍ମୁଖୀନ ହେଲେ । ସହରର ରାସ୍ତାମାନଙ୍କରେ ରକ୍ତାକ୍ତ ସମର ଲାଗିଗଲା । ମେସିନ୍‌ଗନ୍ ଗୁଳିର ଝଡ଼ଭିତର ଦେଇ ଲାଲ ଅଶ୍ୱାରୋହୀ ବାହିନୀ ଅଗ୍ରସର ହେଲେ । ସହର ଅଧିକୃତ ହେଲା ଏବଂ ପୋଲାଣ୍ଡୀୟମାନଙ୍କର ଶେଷ କେଇଜଣ ପଳାଇଗଲେ । ରେଳଷ୍ଟେସନ୍‌ରେ କେତେକ ରେଳଗାଡ଼ିକୁ ସେମାନେ ଅକ୍ତିଆର କରିନେଲେ । ପୋଲାଣ୍ଡୀୟମାନଙ୍କ ପାଇଁ ସବୁଠାରୁ ବଡ଼ କ୍ଷତି ଘଟିଲା, ସମୁଦାୟ ଆଗୁଆ ଘାଟୀଗୁଡ଼ିକୁ ଯୋଗାଣ ଦେବାକୁ ଥିବା ଅସ୍ତ୍ରାଗାରର ବିସ୍ଫୋରଣ । ଲକ୍ଷ ଲକ୍ଷ ବୋମା ଫୁଟିଯିବାର ଶବ୍ଦ ପବନରେ ଭାସିଗଲା ଚାରିଆଡ଼େ । ଝରକା କବାଟସବୁ ଏ ବିସ୍ଫୋରଣ ଫଳରେ ଛୋଟ ଛୋଟ ଧୂଳିକଣାରେ ପରିଣତ ହୋଇଗଲା । ବଡ଼ ବଡ଼ ଘରସବୁ, କାଗଜପଟାରେ ତିଆରି ଘରଭଳି ଥରିଉଠିଲା ।

ଝିଟୋମିର୍ ଓ ବେର୍ଦିଚେଭ୍ ଅଧିକାର ଫଳରେ ପୋଲାଣ୍ଡୀୟମାନେ ଦୁଇଟି ଆଡ଼ୁ କିଏଭ୍‌କୁ କିଲ୍‌ବିଲ୍ ହୋଇ ପଶି ଆସିବାକୁ ଲାଗିଲେ । ତାଙ୍କୁ ଚାରିଆଡ଼ୁ ଘେରିଆସୁଥିବା ଇସ୍‌ପାତର ବଳୟରୁ କୌଣସିମତେ ରକ୍ଷା ପାଇ ପଳାଇ ଯିବା ପାଇଁ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଗଲେ ।

ଏ ଭୟଙ୍କର ଉନ୍ମାଦକର ଯୁଦ୍ଧ ଭିତରେ ଆଚ୍ଛନ୍ନ ରହି, ଏଇ କେତେଦିନ ଭିତରେ ପାଭେଲ୍ ନିଜକୁ ବି ଭୁଲି ଯାଇଥିଲା । ତା'ର ବ୍ୟକ୍ତିତ୍ୱ ଗଣ ଭିତରେ ନିଶ୍ଚିହ୍ନ ହୋଇଯାଇଥିଲା । ଏ ସମସ୍ତ ଯୁଦ୍ଧ କରୁଥିବା ଲୋକଙ୍କ ପାଇଁ "ମୁଁ" ଏକ ବିସ୍ମୃତ ଶବ୍ଦ ହୋଇଯାଇ ରହିଥିଲା କେବଳ "ଆମେ", "ଆମ ରେଜିମେଣ୍ଟ", "ଆମ ସ୍କ୍ୱାଡ୍ରନ୍", "ଆମ ବ୍ରିଗେଡ୍" — ଏମିତି ସବୁ ... ।

ଝଟିକା ବେଗରେ ଘଟଣାସବୁ ଘଟିଯିବାକୁ ଲାଗିଲା । ପ୍ରତିଦିନ କିଛି ନୂଆ ଘଟଣା ଘଟିଯାଏ ।

ବୁଦ୍ୟୋନ୍ନିର ଅଶ୍ୱାରୋହୀ ବାହିନୀ, ତୀବ୍ର ବେଗରେ ଆଗେଇବାକୁ ଲାଗିଲେ ପୋଲାଣ୍ଡୀୟମାନଙ୍କ ପଶ୍ଚାଦ୍ ଭାଗକୁ ଦୀର୍ଣ୍ଣ ବିଦୀର୍ଣ୍ଣ କରି । ନିଜର ଏ ବିଜୟ ପରେ ବିଜୟର ଉନ୍ମତ୍ତ ଉନ୍ମାଦନାରେ ମତ୍ତ ହୋଇ ଅଶ୍ୱାରୋହୀ ଝଡ଼ଭଳି ପହଞ୍ଚିଲେ । ପୋଲାଣ୍ଡ ପଛୁଆ ବାହିନୀର କେନ୍ଦ୍ରସ୍ଥଳ ନୋଭୋଗ୍ରାଦ୍-ଭୋଲିନ୍‌ସ୍କିରେ ।

ସମୁଦ୍ରର ଉତ୍ତାଳ ତରଙ୍ଗ ତଟଦେଶର ପ୍ରସ୍ତର ଉପକୂଳରେ ବାଧା ପାଇ ପୁଣି ଘୂରିଆସି ଘୂର୍ଣ୍ଣି ଭଳି ଆଗକୁ ମାଡ଼ିଗଲା ଭଳି ସେମାନଙ୍କ ନିକଟରେ କେବଳ ଗୋଟିଏ ଶବ୍ଦ ଜଣାଥିଲା :

"ଆଗେଇ ଚାଲ ... ଆଗେଇ ଚାଲ !"

ପୋଲାଣ୍ଡୀୟମାନଙ୍କର କୌଣସିଥିରେ ରକ୍ଷା ନ ଥିଲା । ସେମାନଙ୍କର କଣ୍ଟାତାରର ଘେର ବା ଜୀବନମୂର୍ଚ୍ଛା ବିକଳ ସଂଗ୍ରାମ କେହି ସେମାନଙ୍କୁ ରକ୍ଷା କରିପାରିଲେ ନାହିଁ । ଜୁନ୍ ୨୭ ତାରିଖ ସକାଳୁ, ବୁଦ୍ୟୋନ୍ନିର ଅଶ୍ୱାରୋହୀମାନେ ସ୍ଲୁଚ୍ ନଦୀ ଭିତରେ ପଶି, ଅତିକ୍ରମ କରି ନୋଭୋଗ୍ରାଦ୍-ଭୋଲିନ୍‌ସ୍କିରେ ପହଞ୍ଚିଲେ ଓ ପୋଲାଣ୍ଡୀୟମାନଙ୍କୁ ସହରରୁ ବାହାର କରି କୋରେସ୍ଥ ଆଡ଼କୁ ଘଉଡ଼େଇନେଲେ । ଠିକ୍ ସେତିକିବେଳକୁ ପଞ୍ଚଚାଳିଶତମ ଡିଭିଜନ ନୋଭି-ମିରୋପୋଲ୍‌ଠାରେ ସ୍ଲୁଚ୍ ନଦୀ ଅତିକ୍ରମ କଲେ ଏବଂ କୋଟୋଭ୍‌ସ୍କି ଅଶ୍ୱାରୋହୀ ବ୍ରିଗେଡ୍ ଲ୍ୟୁବାର୍ ଉପରେ ଚଢ଼ାଉ କଲେ ।

ପ୍ରଥମ ଅଶ୍ୱାରୋହୀ ସେନାବାହିନୀର ବେତାର କେନ୍ଦ୍ର ପ୍ରଧାନ ସେନାପତିଙ୍କଠାରୁ ଏକ ନିର୍ଦ୍ଦେଶ ପାଇଲେ, ରୋଭ୍‌ନୋ ଦଖଲ ପାଇଁ ସମସ୍ତ ବାହିନୀକୁ ଠୁଳୀଭୂତ କରିବାକୁ । ଲାଲ ଡିଭିଜନମାନଙ୍କର ଅପ୍ରତିହତ ଆକ୍ରମଣ ପୋଲାଣ୍ଡୀୟ ବାହିନୀକୁ ଛିନ୍ନବିଛିନ୍ନ କରିପକାଇଲା ।

ଏହି ଅବ୍ୟବସ୍ଥିତ ଦିନମାନଙ୍କରେ ପାଭେଲ୍‌ର ଜୀବନରେ ଏକ ଚମତ୍କାର ଅଭୂତପୂର୍ବ ଘଟଣା ଘଟିଲା । ବ୍ରିଗେଡ୍ କମାଣ୍ଡର ତାକୁ ଶସ୍ତ୍ରବାହୀ ଟ୍ରେନ୍ ନିକଟକୁ ଯିବାକୁ ଷ୍ଟେସନ୍‌କୁ ପଠାଇଲେ । ତୀଖ ରେଳବାଇ ବନ୍ଧକୁ ଟପି ପାଭେଲ୍ ଯାଇଁ ଲଗାମ ଧରି ତା'ର ଘୋଡ଼ାକୁ ଅଟକାଇଲା ଇସ୍ପାତ-ଧୂସର ରଙ୍ଗର ଗାଡ଼ିଟାର ଇଞ୍ଜିନ୍ ପାଖରେ । ବନ୍ଧୁକଗୁଡ଼ିକର କଳାକିଟିକିଟି ମଳଇଗୁଡ଼ିକ ଜଳକବାଟିସବୁ ଦେଇ ବାହାରକୁ ଖଞ୍ଜାହୋଇ ସାଞ୍ଜୁଆ ରେଳଗାଡ଼ିଟି ଭୟଙ୍କର ରୂପ ଧରିଥିଲା । କେତେକ ଲୋକ ତେଲ ଚିକିଟା ପୋଷାକରେ ତା'ପାଖରେ କାମ କରି ଚକାଗୁଡ଼ିକୁ ରକ୍ଷା କରୁଥିବା ଓଜନିଆ ଲୁହା ପ୍ଲେଟ୍‌କୁ ଉଠାଉଥାନ୍ତି ।

ଚମଡ଼ା ଜ୍ୟାକେଟ୍ ପିନ୍ଧା ଲାଲ ବାହିନୀର ଜଣେ ସୈନିକ ବାଲ୍‌ଟିଏ ପାଣି ନେଉଥିଲା । ତାକୁ ପାଭେଲ୍ ପଚାରିଲା, "ଶସ୍ତ୍ରବାହୀ ଟ୍ରେନ୍‌ର କମାଣ୍ଡରଙ୍କୁ କେଉଁଠି ପାଇବି ?"

ଇଞ୍ଜିନ୍‌କୁ ଦେଖାଇ ଲୋକଟି କହିଲା, "ଏଇ ସେଠାରେ ପାଇବ ।"

ପାଭେଲ୍ ଘୋଡ଼ା ଛୁଟାଇଲା ଇଞ୍ଜିନ୍ ପାଖକୁ ଆଉ କହିଲା, "ମୁଁ କମାଣ୍ଡରକୁ ଦେଖିବାକୁ ଚାହେଁ ।"

ବସନ୍ତମୁହାଁ ଲୋକଟିଏ । ପାଦରୁ ମୁଣ୍ଡଯାଏ ଚମଡ଼ା ପୋଷାକ । ସେ ବୁଲିପଡ଼ି କହିଲେ :

"ମୁଁ କମାଣ୍ଡର ।"

ପାଭେଲ୍ ପକେଟ୍‌ରୁ ଖଣ୍ଡେ ଲଫାପା ବାହାର କଲା ।

"ବ୍ରିଗେଡ୍ କମାଣ୍ଡର କ'ଣ ଆଦେଶ ଦେଇଛନ୍ତି । ଲଫାପାରେ ଦସ୍ତଖତ୍ ଦିଅନ୍ତୁ ।"

କମାଣ୍ଡର ଆଣ୍ଠୁ ଉପରେ ଲଫାପାଟିକୁ ରଖି ତା' ଉପରେ ଦସ୍ତଖତ୍ ମାରିଲେ । ଇଞ୍ଜିନ୍‌ର ମଝିଚକରେ ଜଣେ ଲୋକ ତେଲଦାନୀ ଧରି ରେଲପାହିଆ ଉପରେ କାମ କରୁଥାଏ । ପାଭେଲ୍ କେବଳ ଚା' ଓସାରିଆ ପିଠିଟାକୁ ଦେଖିପାରୁଥିଲା ଆଉ ଦେଖୁଥିଲା ତା'ର ଚମଡ଼ା ପାଇଜାମା ପକେଟ୍‌ରୁ ପିସ୍ତଲ୍ ଅଗଟା ପଦାକୁ ବାହାରିଛି ବୋଲି ।

"ହେଇ ନିଅ, ଦସ୍ତଖତ୍ ହୋଇଯାଇଛି" କହି, ପାଭେଲ୍‌କୁ କମାଣ୍ଡର ଲଫାପାଟିକୁ ଫେରାଇଦେଲେ । ପାଭେଲ୍ ଲଗାମ ଧରି ଯିବାକୁ ବସିଛି, ଏତିକିବେଳେ ତେଲଦାନୀ ଧରିଥିବା ଲୋକଟି ଠିଆହୋଇ ମୁହଁ ଘୁରେଇଦେଲା । ପରମୁହୂର୍ତ୍ତରେ ପାଭେଲ୍ ଘୋଡ଼ାରୁ ଡେଇଁପଡ଼ିଲା, ସତେ ଯେମିତି ଝିଙ୍କାଏ ପବନ ତାକୁ ତଳକୁ ଫିଙ୍ଗି ଦେଲା ।

"ଆର୍ଟେମ୍ !"

ଲୋକଟି ତେଲଦାନୀଟି ଫିଙ୍ଗି ଦେଲା ଏବଂ ତତ୍କ୍ଷଣ ଯାଇ ସୈନିକକୁ କୋଳ କରିନେଲା ।

ଯେମିତି ପରତେ ଯାଇପାରୁ ନାହିଁ ସେମିତି ସେ କହିଲା, "ପାଭ୍‌କା ! ବଦ୍‌ମାସ ! ହଇରେ ତୁଇଟି !"

ଶସବାହୀ ଟ୍ରେନ୍‌ର କମାଣ୍ଡର ଚକିତ ହେଉଥାନ୍ତି ଆଉ ପାଖରେ ଥିବା ବେଶ୍ କେତେକ ବନ୍ଧୁକଧାରୀ ଦୁଇଭାଇଙ୍କର ଏପରି ଅପ୍ରନକ ଭେଟରେ ଆନନ୍ଦ ଦେଖି ହସୁଥାନ୍ତି ।

* * *

ଲ୍‌ଭୋଭ୍ ଯୁଦ୍ଧରେ ଅଗଷ୍ଟ ୧୯ ତାରିଖର ଘଟଣା । ଯୁଦ୍ଧରେ ଟୋପିଟି ହରାଇ ପାଭେଲ୍ ଘୋଡ଼ା ଛୁଟାଇ ଆସୁଥାଏ । ଆଗରେ ଥିବା ସ୍କ୍ୱାଡ୍ରନ୍‌ଗୁଡ଼ିକ ପୋଲାଣ୍ଡୀୟ ବାହିନୀ ଭିତରକୁ ମାଡ଼ି ଚାଲିଥାନ୍ତି । ଏତିକିବେଳେ ବୁଦାଗହଳରେ ଘୋଡ଼ା ଛୁଟାଇ ଦେମିଦୋଭ୍ ଆସୁଥାନ୍ତି ନଦୀ ଆଡ଼କୁ । ପାଭେଲ୍‌କୁ ପାର ହୋଇ ସେ ଚିତ୍କାର କଲେ :

"ଡିଭିଜନ କମାଣ୍ଡର ନିହତ ହୋଇଛନ୍ତି !"

ପାଭେଲ୍ ଛୁଟିଲା । ଲେତୁନୋଭ୍, ତା'ର ବୀର କମାଣ୍ଡର, କି ଅଦ୍ଭୁତ ସାହସିକ ବ୍ୟକ୍ତି ! ସେ ନିହତ ! ହିଂସ୍ର କ୍ରୋଧରେ ଜର୍ଜରିତ ହୋଇଉଠିଲା ପାଭେଲ୍ ।

ତରବାରିର ଦନ୍ତୁରା ଧାରରେ ଗେବା ଦେଇ ତା' ଗ୍ରେଦୋକ୍ ଘୋଡ଼ାକୁ ସଙ୍କେତ ଦେଲା । ଘୋଡ଼ାଟି ଦାନ୍ତ କାମୁଡ଼ିଲା । ତା' ପାଟିରୁ ନାଲି ନାଲିମେଞ୍ଚାଏ ବାହାରିପଡ଼ିଲା, ଆଉ ଗ୍ରେଦୋକ୍ ଛୁଟିଲା ଯୁଦ୍ଧ ଭୂମିକୁ ।

"ମାର ବଦ୍‌ମାସଗୁଡ଼ାକୁ, ମାର ସେମାନଙ୍କୁ! ପୋଲାଣ୍ଡୀୟ ବାହିନୀର ସେନାପତିକୁ ଖତମ କରିଦିଅ! ଇେଚୁନୋଭ୍‌ଙ୍କୁ ସେମାନେ ମାରିଛନ୍ତି!" ସବୁଜ ପୋଷାକ ପିନ୍ଧା ଏକ ସୈନିକ ଉପରେ ସେ ଝାମ୍ପି ପଡ଼ିଲା । ଡିଭିଜନ କମାଣ୍ଡରଙ୍କ ମୃତ୍ୟୁରେ କ୍ରୋଧାନ୍ୱିତ ଘୋଡ଼ସବାରମାନେ ପୋଲାଣ୍ଡର ଗୋଟାଏ ପ୍ଲାଟୁନ୍ ସୈନ୍ୟଙ୍କୁ ଉଡ଼େଇଦେଲେ ।

ଶତ୍ରୁ ପଛରେ ସେମାନେ ଘୋଡ଼ା ଛୁଟାଇଲେ ଯୁଦ୍ଧକ୍ଷେତ୍ରକୁ । ଏତିକିବେଳେ ପୋଲାଣ୍ଡର ବ୍ୟାଟେରୀରୁ ଗୁଳି ଛୁଟିଲା, ସ୍ରାପ୍‌ନେଲ ପବନ ବିଦୀର୍ଣ୍ଣ କରି ଘୂରିଆଡ଼େ ମୃତ୍ୟୁର ତାଣ୍ଡବ ସୃଷ୍ଟି କଲା ।

ହଠାତ୍ ପାଭେଲ୍ ଚକ୍ଷୁ ସାମନାରେ ଆଖିଝଲସା ଶାଗୁଆ ଆଲୋକଶିଖା । ବଜ୍ର ଗର୍ଜନ ତା'ର କାନକୁ ଫଟେଇଦେଲା ଯେପରି । ଖପୁରୀରେ ଗଳିଗଲା ତା'ର ତପ୍ତ ଲୌହଖଣ୍ଡ । ପୃଥିବୀ ତା' ଆଗରେ ଯେପରି ଅଦ୍ଭୁତ ଭାବରେ ଘୂରିଗଲା ଆଉ ଧୀରେ ଏପଟ ସେପଟ ହୋଇଗଲା ।

କୁଟାଖିଅଟି ପରି ଆହୁଦା ଉପରୁ ଟଳିପଡ଼ିଲା ପାଭେଲ୍ । ଗ୍ରେଦୋକ୍‌ର ମୁଣ୍ଡଦେଇ ଛିଟିକିଗଲା ସେ ଆଉ ଦୁମ୍ କରି ଭୂଇଁରେ ଲେଟିଗଲା ।

ସଙ୍ଗେ ସଙ୍ଗେ କଳାକିଟିକିଟି ରାତି ମାଡ଼ିଆସିଲା ।

# ନବମ ପରିଚ୍ଛେଦ

ଅଷ୍ଟପଦୀ-ଅକ୍‌ଟୋପସ୍‌ର ବିରାଟ ଲାଲ ଲାଲ ଜ୍ୱଳନ୍ତ ଅଗ୍ନିପିଣ୍ଡ ଭଳି ଆଖିଦୁଇଟା ମଝିରେ ଠିକ୍ ଫସଫରସ ଭଳି ଜଳିଉଠୁଛି ନୀଳାଭ ଆଲୁଅଟାଏ । ଅକ୍‌ଟୋପସ୍‌ର ବିରାଟ ବିରାଟ ବାହୁଗୁଡ଼ାକ ତାକୁ ସାପ ଭଳି ଜୋର୍‌ରେ ଛନ୍ଦି ଦେଉଥାଆନ୍ତି । ଦେହ ଉପରୁ ତା'ର ସତେ ଯେମିତି ଛାଲ ଉଠିଯାଉଥାଏ । ଅକ୍‌ଟୋପସ୍‌ର ଭିଡ଼ା ଭିତରେ ସାରା ଦେହ ଉପରେ ଭିଡ଼ି ହୋଇଯାଇ ଅକ୍‌ଟୋପସ୍ ନିଜର ମୁନିଆ ତୀକ୍ଷ୍ଣ ନାହୁଡ଼ ବିନ୍ଧ କରୁଥାଏ ତା'ର କପାଳ ଭିତରେ, ଆଉ ଭିତରକୁ ଭିତରକୁ ନାହୁଡ଼ ପୂରାଇ ରକ୍ତଗୁଡ଼ାକ ସବୁ ଦେହରୁ ତା'ର ଶୋଷି ନେଉଥାଏ – ନିଃଶେଷ କରିଦେଉଥାଏ । ଓଃ ... କି ଭୟଙ୍କର ଅସହ୍ୟ ଯନ୍ତ୍ରଣା ସେ ରକ୍ତ ଶୋଷଣର! ରକ୍ତଗୁଡ଼ାକ ତା' ଦେହରୁ କାଢ଼ିନେଇ ପିଇଯାଉଥାଏ ଯେମିତି ଅକ୍‌ଟୋପସ୍‌ଟା । ଦେହରୁ ତା'ର ଶୁଖି ଯାଉଥାଏ ରକ୍ତ ଧୀରେ ଧୀରେ ।

କାହିଁ କେଉଁ ଦୂରରୁ ତାକୁ ଶୁଭୁଥାଏ ମଣିଷର କଣ୍ଠସ୍ୱର :

"ଏବେ ନାଡ଼ୀର ଗତି କେମିତି ଅଛି ?"

ଆଉ ଗୋଟିଏ ନାରୀକଣ୍ଠ କୋମଳ ସ୍ୱରରେ ଉତ୍ତର ଦିଏ :

"ନାଡ଼ୀ ଶହେଅଠତ୍ରିଶ, ଉତ୍ତାପ ଶହେଅଠତିରିଶ ଡିଗ୍ରୀ । ସବୁବେଳେ ପ୍ରାୟ ପ୍ରଳାପ କରୁଛି ।"

ଅକ୍ଟୋପସ୍‌ଟା ଉଭେଇଯାଏ, ମାତ୍ର ସେ ତୀବ୍ର ଯନ୍ତ୍ରଣା ରହିଥାଏ ସେମିତି । ପାଭେଲ୍ ଅନୁଭବ କରେ, କେହି ଜଣେ ତା'ର କଡ଼ଟିକୁ ଟେକି ଧରୁଛି । ଆଖି ଖୋଲିବାକୁ ଚେଷ୍ଟା କରେ ସେ, ମାତ୍ର ଆଖିପତାଗୁଡ଼ାକ ଏତେ ଓଜନ ଲାଗେ ଯେ, ଆଖି ଖୋଲିପାରେ ନାହିଁ । ଏତେ ଗରମ କାହିଁକି ହେଉଛି ? ମା' ବୋଧହୁଏ ଚୁଲିଟା ଚଢ଼େଇଛି । ପୁଣି ତାକୁ ଶୁଭେ ସେହି କଣ୍ଠସ୍ୱର ସବୁ ।

"ବର୍ତ୍ତମାନ ତା'ର ନାଡ଼ୀ ଶହେବାଇଶି ଚାଲୁଛି ।"

ସେ ଆଖିପତା ଖୋଲିବାକୁ ଚେଷ୍ଟା କରେ । ମାତ୍ର ଭିତରେ ତା'ର ସତେ ଯେମିତି ନିଆଁ ଜଳିଉଠେ, ଛାତି ଶୁଖିଶୁଖି ଯାଏ ।

ଭୟଙ୍କର ଶୋଷ ଲାଗେ ତାକୁ । ଇଚ୍ଛା ହୁଏ ଏହି ମୁହୂର୍ତ୍ତରେ ଉଠିଯାଇ ପାଣି ପିଇ ପକେଇବ, ମାତ୍ର ଉଠିପାରୁ ନାହିଁ କାହିଁକି ସେ ? ନିଜର ଅଙ୍ଗପ୍ରତ୍ୟଙ୍ଗକୁ ଚାଳନା କରିବାକୁ ଚେଷ୍ଟାକରେ, ମାତ୍ର ସେମାନେ ତା'ର ଆଦେଶ ପାଳନ କରନ୍ତି ନାହିଁ । ଯେମିତି ସେଇଟା ଆଉ କାହା ଦେହ ! ମା' ଏଇ ମୁହୂର୍ତ୍ତରେ ତା' ପାଇଁ ପାଣିଦେବ । ମା'କୁ ସେ କହିବ, "ମା' ମୋତେ ଟୋପାଏ ପାଣିଦିଅ, ଶୋଷ କରୁଛି ।" ତା' ପାଖରେ ଗୋଟାଏ କ'ଣ ସଇବଲ ହେଉଛି । ଅକ୍ଟୋପସ୍‌ଟା ବୋଧହୁଏ ପୁଣି ଥରେ ତା'ଉପରେ ଚାଲିବାକୁ ଆରମ୍ଭ କରୁଛି । ହେଇ ସେଇଟା ଆସୁଛି, ତା'ର ଲାଲ୍ ଲାଲ୍ ଜଳନ୍ତା ଆଖିଦୁଇଟା ... ।

ବହୁ ଦୂରରୁ ଗୋଟାଏ କୋମଳ ସ୍ୱର ଶୁଭେ :

"ଫ୍ରୋସ୍ୟା, କିଛି ପାଣି ଆଣ !"

"କାହା ନାଁ ଏଇଟା ?" ମନେ ପକାଇବାକୁ ଚେଷ୍ଟା ତା'ର ବ୍ୟର୍ଥ ହୁଏ । ଅନ୍ଧାରର କଳା ପରଦା ଟାଣି ହୋଇଯାଏ ତା' ଦେହସାରା । ସେଇ ଅନ୍ଧାରରୁ ମୁକ୍ତି ଲଭି ତା'ର ମନେ ପଡ଼େ :

"ଓଃ, ଶୋଷ ... ।"

ତାକୁ ଶୁଭେ, "ତା'ର ଚେତା ବୋଧହୁଏ ଫେରିଆସୁଛି" ଏବଂ ଖୁବ୍ ନିକଟରେ, ସ୍ପଷ୍ଟ ସ୍ୱରରେ ଶୁଭେ, ଭଦ୍ର ସ୍ୱରରେ :

"କିଛି ପିଇବାକୁ ଚାହଁ କମ୍ରେଡ୍ ?"

"ଏମାନେ କ'ଣ ମୋତେ କହୁଛନ୍ତି, ମୋର ଦେହ କ'ଣ ଖରାପ ଅଛି ? ଓହୋଃ ! ମୋର ତ ଟାଇଫସ୍ ହୋଇଥିଲା । ସେଇଥି ପାଇଁ ବୋଧେ ..." ତୃତୀୟ ଥର ପାଇଁ ନିଜ ଆଖିପତା ଖୋଲିବାକୁ ଚେଷ୍ଟା କରେ ସେ ଏବଂ ସର୍ବଶେଷରେ ସେ ସଫଳ ହୁଏ । ପ୍ରଥମେ ତା'ର ଅଧାଖୋଲା ଆଖିରେ ସେ ନିଜର ଚେତନା ଭିତରେ ଯାହା

ଦେଖିବାକୁ ପାଏ ତାହା ହେଲା ମୁଣ୍ଡ ଉପରେ ଝୁଲୁଥିବା ଗୋଟାଏ ଇଲ୍ ବଲ୍ବ । ମାତ୍ର ସେ ନାଲିଆ ଆଲୁଅଟା ଉପରେ ଗୋଟାଏ କିଛି କଳା ଢାଙ୍କୁଣୀ ଦିଆଯାଇଛି ଏବଂ ତା'ର ଓଠ ଗୋଟିଏ ଗ୍ଲାସର କଠିଣ ଫେନ୍ଦକୁ ଅନୁଭବ କଲା । ଗ୍ଲାସରୁ ତା' ଓଠରେ ଲଗୁଥିବା ପାନୀୟ କେଇ ବିନ୍ଦୁରେ ତା'ର ଜୀବନ ସଞ୍ଚରିତ ହେଲା ସତେକି ! ଭିତରେ ଜଳୁଥିବା ନିଆଁଟା ତା'ର ନିର୍ବାପିତ ହେଲା ।

"ଓହୋଃ, ବଞ୍ଚିଗଲି", କହିଉଠିଲା ସେ ।

"ମୋତେ ତୁମେ ଦେଖି ପାରୁଛ କମ୍ରେଡ୍?" ତା' ନିକଟରେ ଛିଡ଼ା ହୋଇଥିବା କଳା ଛାଇଟି କହିଉଠିଲା ଏବଂ ପୁଣି ଥରେ ତା'ର ଚେତନା ହଜିଯିବା ଆଗରୁ କୌଣସିମତେ ସେ କହିଉଠିଲା, "ମୁଁ ଦେଖିପାରୁ ନାହିଁ, ମାତ୍ର ଶୁଣିପାରୁଛି ।"

"କିଏ ବିଶ୍ୱାସ କରୁଥିଲା ଯେ, ସିଏ ବଞ୍ଚିବ ବୋଲି ? ହେଲେ ଦେଖ, ସେ ଜୀବନ ଫେରିପାଇଲା ତା'ର । ଭାରି ଟାଣୁଆ ଦେହ କିନ୍ତୁ । ତମେ ନିଜ ପାଇଁ ଗର୍ବ ଅନୁଭବ କରିବା ଉଚିତ, ନୀନା ଭ୍ଲାଦିମିରୋଭ୍ନା ! ତମେହିଁ ତାକୁ ସତରେ ଜୀବନ ଦେଇଛ ।"

ନାରୀ କଣ୍ଠଟି ଥରିଲା ସ୍ୱରରେ କହିଉଠିଲା :

"ଓଃ, ମୁଁ କେତେ ଆନନ୍ଦିତ !"

ସମ୍ପୂର୍ଣ୍ଣଭାବରେ ତେରଟି ଦିନ ବେହୋସ୍ ହୋଇ ରହିବା ପରେ ପାଭେଲ୍ କୋର୍ଚ୍ଚାଗିନ୍‌ର ଚେତା ଫେରିଆସିଲା ।

ତା'ର ତରୁଣ ଦେହ ମୃତ୍ୟୁ ଗ୍ରହୁଁନଥିଲା । ଧୀରେ ଧୀରେ ତା'ର ଶକ୍ତି ଫେରିପାଇଲା । ଏଇଟା ତା'ର ନବଜନ୍ମ । ସବୁ ଜିନିଷ ନୂଆ ଓ ଅଲୌକିକ ଲାଗିଲା ତାକୁ । କେବଳ ତା'ର ମୁଣ୍ଡଟି ନିଷ୍ପଳ ହୋଇ ଓ ଭୟଙ୍କର ଓଜନିଆ ହୋଇ ପ୍ଲାଷ୍ଟର ଛାଉଣୀ ଭିତରେ ପଡ଼ିଥାଏ । ମୁଣ୍ଡ ହଲଚଲ କରିବାକୁ ବଳ ପାଉନଥାଏ ତା'ର । ମାତ୍ର ଶରୀରର ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗରେ ସେ ଅନୁଭବ କରିପାରୁଥାଏ, ନିଜ ଆଙ୍ଗୁଠି ବଙ୍କେଇ ପାରୁଥାଏ ।

ସେନାବାହିନୀ ହାସ୍‌ପାତାଳର ସହକାରୀ ଡାକ୍ତର ନୀନା ଭ୍ଲାଦିମିରୋଭ୍ନା ନିଜ କୋଠରୀର ଛୋଟ ଟେବୁଲଟି କଡ଼ରେ ବସି ଗୋଲ ଗୋଲ ଅକ୍ଷରରେ ଲେଖାହୋଇଥିବା ତାଙ୍କର ସୁନ୍ଦର ମଲାଟଦିଆ ଟିପାଖାତାର ପୃଷ୍ଠା ଓଲଟାଉଥାନ୍ତି ।

"ଅଗଷ୍ଟ ୨୬, ୧୯୨୦

ଆମ୍ବୁଲାନ୍‌ସ ଟ୍ରେନ୍ ଆଜି କେତେଗୁଡ଼ିଏ ଅତି କଠିନ ରୋଗୀ ଆଣିଛି । ସେଥିରୁ ଜଣଙ୍କର ଭାରି ଭୟଙ୍କର ଆଘାତ ଲାଗିଛି ମୁଣ୍ଡରେ । ଝରକା ପାଖ କୋଣରେ ରଖିଛୁ ତାକୁ । ମାତ୍ର ସତରବର୍ଷ ବୟସର ତରୁଣଟିଏ । ସେମାନେ ମୋତେ ଗୋଟିଏ ଲଫାପାରେ ତା' ପକେଟ୍‌ରୁ ମିଳିଥିବା ସମସ୍ତ କାଗଜପତ୍ର ଏବଂ ତା'ର ବିବରଣୀ ଦେଲେ । ନାଁ ତା'ର ପାଭେଲ୍ ଆନ୍ଦ୍ରେୟେଭିଚ୍ କୋର୍ଚ୍ଚାଗିନ୍ । କାଗଜପତ୍ର ଭିତରେ ଛିନ୍ନ ଲେସ୍‌କୋମ୍ର ସଭ୍ୟ କାର୍ଡ ଖଣ୍ଡେ ଥିଲା, ନମ୍ବର ୯୬୭ – ୟୁକ୍ରାଇନ୍‌ର ଯୁବ କମ୍ୟୁନିଷ୍ଟ

ଛିଗର । ସେଥିରେ ଥିଲା ଜଳ ବାହିନୀର ଛିନ୍ନ ପରିଚୟପତ୍ରଟିଏ ଏବଂ ତା'ର ବାହିନୀର ଆଦେଶନାମା, "ଜଳ ବାହିନୀର ସୈନିକ କୋର୍ଗିନ୍ ଗୋଟିଏ ଗୁଇନ୍ଦା କାର୍ଯ୍ୟରେ ଅସାଧାରଣ ସାଫଲ୍ୟ ପାଇଁ ସମ୍ମାନିତ ହୋଇଛନ୍ତି ।"

ସେଥିରେ ଲେଖାଥିଲା, ଯେତେଦୂରସମ୍ଭବ ନିଜେ ସେଇହିଁ ଲେଖିଛି, "ଯଦି ମୋର ମୃତ୍ୟୁ ହୁଏ, ତେବେ ଶେପେଟୋଭ୍କା ରେଳବାଇ ଜଙ୍କ୍‌ସନ୍‌ରେ କାମ କରୁଥିବା ମୋର ଆତ୍ମୀୟ ମେକାନିକ୍ ଆର୍ତେମ୍ କୋର୍ଗିନ୍‌କୁ ଜଣାଇଦେବ ।"

ଅଗଷ୍ଟ ୧୯ ତାରିଖ କପାଳରେ ଗୋଟିଏ ଗୋଳା ଫାଟି କିଛି ଅଂଶ ପଶିଯିବା ସମୟରୁ ତା'ର ଚେତା ଆସି ନାହିଁ । କାଲି ଆନାତୋଲି ଷ୍ଟେପାନୋଭିଚ୍ ତାକୁ ପରୀକ୍ଷା କରିବେ ।

ଅଗଷ୍ଟ ୨୭

ଆଜି ଆମେ କୋର୍ଗିନ୍‌ର କ୍ଷତକୁ ପରୀକ୍ଷା କଲୁଁ । ବେଶ୍ ଗଭୀର ହୋଇଛି କ୍ଷତଟି । ଖପୁରୀ ଜଖମ ହୋଇଛି । ମସ୍ତିଷ୍କର ଡାହାଣ କଡ଼ଟାସାରା ପୂରାପୂରି ଅଚଳ ହୋଇଯାଇଛି । ଡାହାଣ ଆଖିଟା ଭୟଙ୍କର ଭାବରେ ଫୁଲିଯାଇଛି ଗୋଟାଏ ରକ୍ତକୋଷ ଫାଟିଯିବା ଫଳରେ ।

ଫୁଲ କମାଇଦେବାକୁ ଆନାତୋଲି ଷ୍ଟେପାନୋଭିଚ୍ ଆଖିଟିକୁ କାଢ଼ି ଦେବାକୁ ଚାହୁଁଥିଲେ । ମୁଁ ବାରଣ କଲି, କାରଣ ଏବେବି ଆଶା ଅଛି ଫୁଲ କମିଯାଇପାରେ । ସେ ରାଜି ହୋଇଗଲେ ।

ଏକଥା କରିବା ପାଇଁ କେବଳ ମୋତେ ପ୍ରବର୍ତ୍ତାଉଥିଲା ମୋର ସୌନ୍ଦର୍ଯ୍ୟବୋଧ — ଆଖିଟା କାଢ଼ି ନିଆଗଲେ ବିଚରା ବିକଳାଙ୍ଗ ହୋଇଯିବ । ଭଲ ହୋଇଯାଇପାରେ ତରୁଣଟି !

ସବୁବେଳେ ପ୍ରାୟ ସେ ପ୍ରଳାପ କରୁଛି । ଭାରୀ ବ୍ୟସ୍ତ ହେଉଛି । ଆମ ଭିତରୁ ଜଣେ ସବୁବେଳେ ତା' ବିଛଣା ପାଖରେ ଡିଉଟି କରୁଛୁ । ମୁଁ ଅଧିକାଂଶ ସମୟ ତା'ରି କାମରେ କଟଉଛି । ମୃତ୍ୟୁକୁ ସ୍ୱୀକାର କରିନେବା ପାଇଁ ଅତି ସାନ ସିଏ । ମୁଁ ଦୃଢ଼ପ୍ରତିଜ୍ଞ ତାକୁ ମୃତ୍ୟୁର କରାଳ କବଳରୁ ମୁକ୍ତ କରି ଆଣିବା ପାଇଁ । ମୁଁ ନିଶ୍ଚିତଭାବରେ ସଫଳ ହେବି ।

ଗତକାଲି ମୋର ଡିଉଟି ସରିବା ପରେ ମଧ୍ୟ ଅନେକ ସମୟ ପର୍ଯ୍ୟନ୍ତ ମୁଁ ଓ୍ୱାର୍ଡ୍‌ରେ ଥିଲି । ସମସ୍ତଙ୍କଠାରୁ ଖରାପ ଅବସ୍ଥାଟା ତାଆରି । ତା'ର ପ୍ରଳାପସବୁ ପ୍ରତି କାନ ପାତିଥିଲି । କାହାଣୀ ଭଳି ଲାଗୁଥିଲା । ତା' ଜୀବନ ବିଷୟରେ ଅନେକ କଥା ଜାଣିପାରିଲି ମୁଁ । ମାତ୍ର ବେଳେବେଳେ ସେ ଭୟଙ୍କର ଗାଳିଦିଏ — ଅତି ଖରାପ ଭାଷାରେ । ତା' ମୁହଁରୁ ଏପରି ଭାଷା ଶୁଣିବାକୁ ମୋତେ ଭାରୀ ଖରାପ ଲାଗେ । ଆନାତୋଲି ଷ୍ଟେପାନୋଭିଚ୍ ସିଏ ଭଲ ହୋଇଯିବ ବୋଲି ଆଦୌ ବିଶ୍ୱାସ କରନ୍ତି ନାହିଁ । ସେଥି ପାଇଁ ବୃଦ୍ଧ ଗେଁ ଗେଁ ହୋଇ କହନ୍ତି, "ମୁଁ ବୁଝିପାରୁ ନାହିଁ, ସେନାବାହିନୀ ଏମିତିଗୁଡ଼ାଏ ବାଳକଙ୍କୁ ନେଇ କି କାମ କରୁଛି ? ଅତି ଲଜ୍ଜାର କଥା ।"



ଅଗଷ୍ଟ ୩୦

ଏବେ ମଧ୍ୟ କୋର୍ଶ୍‌ଗିନ୍‌ର ଚେତା ଫେରି ନାହିଁ । ନିରାଶଜନକ ରୋଗୀସବୁ ରହିଥିବା ଓ୍ୱାର୍ଡ଼କୁ ତାକୁ ବଦଳାଇ ଦିଆଯାଇଛି । ନର୍ସ ଫ୍ରୋସ୍ୟା ସବୁବେଳେ ତା' ପାଖେ ଜଗିରହିଛି । ଜଣାଯାଉଛି ଫ୍ରୋସ୍ୟା ବୋଧହୁଏ ତାକୁ ଆଗରୁ ଜାଣିଥିଲା । କେବେ ହୁଏତ ସେମାନେ ଏକାଠି କାମ କରିଥିଲେ । ତା' ସହିତ କେଡ଼େ ସୁନ୍ଦର ବ୍ୟବହାର କରେ ଫ୍ରୋସ୍ୟା ! ଧୀରେ ଧୀରେ ମୋର ମଧ୍ୟ ଆଶଙ୍କା ହେବାକୁ ଆରମ୍ଭ କଲାଣି ଯେ, ତା' ଅବସ୍ଥା ଶୋଚନୀୟ ।

ସେପ୍‌ଟେମ୍ବର ୨, ସମୟ ରାତି ୧୧ଟା

ମୋ ପାଇଁ ଏହା ଏକ ଅତ୍ୟନ୍ତ ଲୋଭନୀୟ ଓ ସୁନ୍ଦର ଦିନ । ମୋ ରୋଗୀ କୋର୍ଶ୍‌ଗିନ୍‌ର ଚେତା ଆସିଲା ଆଜି । ସେ ସଙ୍କଟ ସମୟ ଅତିକ୍ରମ କରିଗଲାଣି । ଗତ ଦୁଇଦିନ ଧରି ମୁଁ ଘରକୁ ନ ଫେରି ଡାକ୍ତରଖାନାରେ ବିତାଇଛି ।

ଆଉ ଗୋଟିଏ ଜୀବନକୁ ମୁଁ ରକ୍ଷା କରିପାରିଛି ବୋଲି ମୋର ଯେଉଁ ଆନନ୍ଦଉଲ୍ଲାସ ତାହା ବର୍ଣ୍ଣନା କରିବା ମୋ ପକ୍ଷେ ସମ୍ଭବ ନୁହେଁ । ମୋ ଓ୍ୱାର୍ଡ଼ରେ ଆଉ ଗୋଟିଏ ମୃତ୍ୟୁ ସଂଖ୍ୟା କମିଗଲା । ମୋର ସମସ୍ତ କ୍ଲାନ୍ତିକର କାର୍ଯ୍ୟ ଭିତରେ ସବୁଠାରୁ ଆନନ୍ଦପ୍ରଦ ସମ୍ବାଦ ହେଉଛି ରୋଗୀଟିଏ ବଞ୍ଚିଯିବା ! ସେମାନେ ଠିକ୍ ଶିଶୁଙ୍କ ଭଳି ।

ସେମାନଙ୍କର ଶ୍ରଦ୍ଧା ଶିଶୁ ଭଳି ସରଳ ଓ ସତ୍ୟ । ମୁଁ ମଧ୍ୟ ସେମାନଙ୍କ ପ୍ରତି ଏତେ

ଆକୃଷ୍ଟ ହୋଇପଡ଼ିଥିଲି ଯେ, ସେମାନେ ବିଦାୟ ନେଲାବେଳେ ମୁଁ କାନ୍ଦିପକାଏ – ମୁଁ ବୁଝେ ଏହା ମୋ ପକ୍ଷେ ନିର୍ବୋଧତା, ତଥାପି ମୁଁ ନିଜକୁ ରୋଧ କରିପାରେ ନାହିଁ ।

ସେପ୍ଟେମ୍ବର ୧୦

ଆଜି କୋର୍ଗ୍ଗିନ୍‌ର ପରିବାରଙ୍କ ନିକଟକୁ ତା'ର ପହିଲି ଚିଠିଟି ମୁଁ ଲେଖିଲି । ସେ ଲେଖିଛି ଯେ ତା' ଦେହରେ ବେଶୀ ଆଘାତ ଲଗି ନାହିଁ ଏବଂ ଅତି ଶୀଘ୍ର ସେ ଭଲ ହୋଇଯିବ ଓ ଘରକୁ ଫେରିବ । ତା' ଦେହରୁ ଅନେକ ରକ୍ତ ଯାଇଛି ଓ ଫଳରେ ସେ ଭୂତ ଭଳି ଶେଥା ପଡ଼ିଯାଇଛି ଏବଂ ଏବେ ବି ଭାରୀ ଦୁର୍ବଳ ଅଛି ।

ସେପ୍ଟେମ୍ବର ୧୪

ଆଜି ପ୍ରଥମ ଥର ପାଇଁ କୋର୍ଗ୍ଗିନ୍ ହସିଲା । ଭାରୀ ସୁନ୍ଦର ହସ ତା'ର । ସାଧାରଣତଃ ତା' ବୟସ ତୁଳନାରେ ସେ ଟିକେ ଅଧିକ ଗମ୍ଭୀର । ଦ୍ରୁତଗତିରେ ଆରୋଗ୍ୟ ଲାଭ କରୁଛି ସେ । ସେ ଓ ଫ୍ରୋସ୍ୟା ଅତି ଅନ୍ତରଙ୍ଗ ବନ୍ଧୁ । ସାଧାରଣତଃ ଫ୍ରୋସ୍ୟାକୁ ତା' ଶଯ୍ୟା ପାର୍ଶ୍ୱରେ ଦେଖେ ମୁଁ । ଫ୍ରୋସ୍ୟା ତାକୁ ମୋ ବିଷୟରେ କହୁଥିବ ଓ ନିଶ୍ଚିତ ଭାବରେ ମୋର ଅଜସ୍ର ପ୍ରଶଂସାରେ ପଞ୍ଚମୁଖ ହୋଇଉଠୁଥିବ । କାରଣ ଆଜିକାଲି ମୁଁ ପହଞ୍ଚିଲା ମାତ୍ରେ ମୁହଁରେ ଈଷତ୍ ହାସ୍ୟ ରେଖା ଖେଳାଇ ସେ ମୋତେ ସ୍ୱାଗତ ଜଣାଏ ।

ଗତକାଲି ସେ ପଚାରିଲା, "ଆପଣଙ୍କ ହାତରେ ସେ କଳା ଦାଗଗୁଡ଼ାକ କ'ଣ ଡାକ୍ତର ?"

ମୁଁ ତାକୁ କହିଲି ନାହିଁ ଯେ, ସେ ନିଜେ ପ୍ରଳାପ କରୁଥିବା ବେଳେ ମୋ ହାତକୁ ଜାବୁଡ଼ିଧରି ଆଞ୍ଚୁଡ଼ି ପକାଇଛି ଓ ତା'ରି ଫଳରେ ଏ ଦାଗଗୁଡ଼ାକ ।

ସେପ୍ଟେମ୍ବର ୧୭

କୋର୍ଗ୍ଗିନ୍‌ର କପାଳରେ ହୋଇଥିବା କ୍ଷତ ଭଲଭାବରେ ଶୁଖିଆସୁଛି । କ୍ଷତସ୍ଥାନ ସବୁକୁ ଡ୍ରେସିଂ କଲାବେଳେ ଯେପରି ଅସୀମ ଧୈର୍ଯ୍ୟ ଓ ଅକାତର ହୋଇ ଏ ତରୁଣଟି ସେ କଷ୍ଟକୁ ସହିଯାଏ ତାହା ଦେଖି ଆମେ ଡାକ୍ତରମାନେ ମଧ୍ୟ ବିସ୍ମିତ ହେଉଛୁ ।

ସାଧାରଣତଃ ଏଭଳି ଆଘାତରେ ରୋଗୀ ଭୟଙ୍କର ଭାବରେ ଚିତ୍କାର କରେ ଯନ୍ତ୍ରଣାରେ ଓ ଆମକୁ ହଇରାଣ କରେ । ମାତ୍ର ଇଏ ଚୁପ୍ ହୋଇ ନିଶ୍ଚଳ ହୋଇ ଶୋଇରୁହେ ଓ ଖୋଲା କ୍ଷତସ୍ଥାନରେ ଆୟୋଡିନ୍ ଦିଆଗଲାବେଳେ ବେହେଲା ଛଡ଼ ଭଳି ବଙ୍କେଇଯାଏ । ବେଳେ ବେଳେ ତା'ର ଚେତା ହଜିଯାଏ । ମାତ୍ର ତା' ମୁହଁରେ ଥରଟିଏ ପାଇଁ ସୁଦ୍ଧା ଆମେ ଯନ୍ତ୍ରଣାକାତର ଚିତ୍କାର ଶୁଣି ନାହୁଁ ।

ବର୍ତ୍ତମାନ ଆମେ ଜାଣିପାରୁଛି ଯେ, ଆଗରୁ ଯେତେବେଳେ କୋର୍ଗ୍ଗିନ୍ ଚିତ୍କାର କରୁଥିଲା, ସେତେବେଳେ ତା'ର ଜ୍ଞାନ ନଥିଲା । ମୁଁ ଆଶ୍ଚର୍ଯ୍ୟ ହେଉଛି, କେଉଁଠୁ ଏଭଳି ଧୈର୍ଯ୍ୟ, କଷ୍ଟସହିଷ୍ଣୁତା ସେ ଶିକ୍ଷାକଲା ?

ସେପ୍‌ଟେମ୍ବର ୨୧

ଆଜି ପ୍ରଥମ ଥର ପାଇଁ ଚକଇଗା ଚଉକିରେ ବସାଇ କୋର୍ଗିନ୍‌କୁ ଖୋଲା ବାଲ୍‌କନିକୁ ଆଣିଲୁ । ବାହାରକୁ ଆସି ବଗିଚ୍ଛଟିକୁ ଦେଖିଲା ମାତ୍ରେ ତା' ମୁହଁ କି ଉଜ୍ଜ୍ୱଳ ହୋଇଉଠିଲା ! ଓଃ ... କି ଲୋଭରେ ସେ ଖୋଲା ପବନକୁ ଗ୍ରହଣ କରୁଥାଏ – ସତେ ଯେମିତି ପିଇଯାଉଥାଏ ପବନଗୁଡ଼ାକୁ ! ମୁଣ୍ଡସାରା ତା'ର ବ୍ୟାଣ୍ଡେଜରେ ବୁଡ଼ିଯାଇଥାଏ , କେବଳ ଗୋଟିଏମାତ୍ର ଆଖି ମୁକ୍ତ ଥାଏ ଏବଂ ସେହି ଜୀବନ୍ତ ଉଜ୍ଜ୍ୱଳ ଆଖିଟି ଦୁନିଆକୁ ଚ୍ଛହିଁ ଦେଖୁଥାଏ , ସତେ ଯେମିତି ପ୍ରଥମ ଥର ପାଇଁ ଦେଖୁଛି !

ସେପ୍‌ଟେମ୍ବର ୨୬

ଆଜି କୋର୍ଗିନ୍‌କୁ ଦେଖିବା ପାଇଁ ଦିଓଟି ତରୁଣୀ ହାସ୍‌ପାତାଳକୁ ଆସିଥିଲେ । ତଳେ ଅପେକ୍ଷା କରିବାକୁ ଉଦ୍ଦିଷ୍ଟ ଥିବା କୋଠରୀକୁ ମୁଁ ଓହ୍ଲାଇଆସିଲି ସେମାନଙ୍କ ସହିତ କଥାବାର୍ତ୍ତା କରିବାକୁ । ସେଥିଭିତରୁ ଜଣେ ଭାରୀ ସୁନ୍ଦରୀ । ସେମାନଙ୍କ ନାଁ ତୋନ୍ୟା ତୁମାନୋଭା ଓ ତାତ୍ୟାନା ବୁରାନୋର୍‌ସ୍କାୟା ବୋଲି ପରିଚିତି ଦେଲେ । ଏଇ ତୋନ୍ୟାର ନାଁ ଆଗରୁ ଶୁଣିଛି । କୋର୍ଗିନ୍ ପ୍ରଳାପ କରୁଥିଲା ବେଳେ ବାରମ୍ବାର ତା' ନାଁ କହୁଥିଲା । ତା' ସହିତ ଦେଖାକରିବାକୁ ମୁଁ ସେମାନଙ୍କୁ ଅନୁମତି ଦେଲି ।

ଅକ୍ଟୋବର ୮

କୌଣସି ସାହାଯ୍ୟ ନ ନେଇ କୋର୍ଗିନ୍ ଏଣିକି ବଗିଚ୍ଛରେ ବୁଲାଚଲା କରିପାରୁଛି । ସେ ମୋତେ ପଚ୍ଛରି ଲାଗିଛି , କେବେ ଡାକ୍ତରଖାନାରୁ ତାକୁ ଛାଡ଼ିଦିଆଯିବ ବୋଲି । ମୁଁ କହିଲି , ଶୀଘ୍ର । ଝିଅ ଦିଓଟି ବାହାର ଲୋକ ଆସିବାକୁ ଅନୁମତି ମିଳୁଥିବା ପ୍ରତିଟି ଦିନ ଆସୁଛନ୍ତି ତାକୁ ଦେଖା କରିବାକୁ । ମୁଁ ଏବେ ଜାଣିଲି , କାହିଁକି କଷ୍ଟରେ ସେ ଚିତ୍କାର କରେ ନାହିଁ । ତାକୁ ପଚ୍ଛରିଲି । ସେ କହିଲା , "ଗାଡ୍‌ଫ୍ଲାୟ" ପଢ଼ନ୍ତୁ ... ଜାଣିପାରିବେ ।"

ଅକ୍ଟୋବର ୧୪

କୋର୍ଗିନ୍‌କୁ ଛାଡ଼ିଦିଆଗଲା । ସେ ମୋଠାରୁ ବିଦାୟ ମାଗିଲା ଅତି ଦୁଃଖରେ । ଆଖିରୁ ତା'ର ବ୍ୟାଣ୍ଡେଜ ଖୋଲି ଦିଆହୋଇଛି । କେବଳ ମୁଣ୍ଡରେ ଗୋଟିଏ ପଟି ଅଛି । ସେ ଅନ୍ଧ ହୋଇଯାଇଛି , ମାତ୍ର ଉପରୁ ସେକଥା ଜଣାଯାଉ ନାହିଁ । ସାଧାରଣ ଭାବରେ ଭଲ ଆଖି ଭଳି ଦିଶୁଛି । ତରୁଣ କମ୍ରେଡ୍‌ଠାରୁ ବିଦାୟ ନେଲାବେଳେ ମୋତେ ଭାରୀ ଦୁଃଖ ଲାଗିଲା ।

ମାତ୍ର ଏହାହିଁ ଘଟିଥାଏ ସଚରାଚର । ଥରେ ଆରୋଗ୍ୟ ଲାଭ କଲାପରେ ସେମାନେ ଆମକୁ ଛାଡ଼ିଯାଆନ୍ତି ଏବଂ ଆଉ ପ୍ରାୟ ସେମାନଙ୍କ ସହିତ ଭେଟ ହୁଏନା ଜୀବନସାରା । ଗଲାବେଳେ କହିଲା , "କେବଳ ଏତିକି ଯେ ଡାହାଣ ଆଖିଟା ଫୁଟିଗଲା । ବାଁଟା ଫୁଟିଥିଲେ ଦୁଃଖ ନ ଥିଲା । ଏବେ ମୁଁ ଗୁଳି କରିବି କେମିତି ?"

ଏବେ ବି ସେ ଯୁଦ୍ଧର କଥା ଭାବୁଛି ।"

ହାସ୍‌ପାତାଲରୁ ବାହାରି ପାଭେଲ୍ କିଛି ଦିନ ପାଇଁ ବୁରାନୋଭ୍‌ସିଙ୍କ ଘରେ ରହିଲା । ତୋନ୍ୟା ସେହିଠାରେ ହିଁ ରହୁଥିଲା ।

ପାଭେଲ୍ ତୋନ୍ୟାକୁ ତୁରନ୍ତ ତରୁଣ କମ୍ୟୁନିଷ୍ଟ ବା କମ୍‌ସୋମୋଲ୍ କାର୍ଯ୍ୟକଳାପ ପ୍ରତି ଆକୃଷ୍ଟ କରିବାକୁ ଚେଷ୍ଟା କଲା । ତାକୁ ସହରର କମ୍‌ସୋମୋଲ୍ ସଭାକୁ ପ୍ରଥମେ ଡାକିଲା ପାଭେଲ୍ । ତୋନ୍ୟା ଯିବାକୁ ରାଜି ହେଲା, ମାତ୍ର ଯେତେବେଳେ ସେ ନିଜ ଘରଭିତରୁ ସାଜସଜ୍ଜା ହୋଇ ସଭାକୁ ଯିବା ପାଇଁ ବାହାରିଲା, ପାଭେଲ୍ ଓଠ କାମୁଡ଼ିଲା ନିଜର । ଏତେ ସମୟ ଯାଏଁ ସେ ସଭାକୁ ଯିବା ପାଇଁ ନିଜକୁ ସଜାଉଥିଲା ଘରଟା ଭିତରେ । ବଢ଼ିଆ ପୋଷାକ ପିନ୍ଧିଛି ସେ । ମାତ୍ର ଏପରି ପୋଷାକ ଓ ଚେହେରା ସଜେଇ ଯିବାଟା ଆଦୌ କମ୍‌ସୋମୋଲ୍ ସଭାକୁ ମନେଇବ ନାହିଁ ବୋଲି ଭାବିଲା ପାଭେଲ୍ ।

ଏହାହିଁ ତାଙ୍କର ପ୍ରଥମ କଳିର କାରଣ ହେଲା । ଏତେ ସଜେଇ ହୋଇଛ କାହିଁକି ବୋଲି ପଚାରିବାରୁ ତୋନ୍ୟା ଭାରୀ ଅପ୍ରତିଭ ହୋଇଗଲା ଓ କହିଲା :

"ମୁଁ ଯେ ଆଉ ସମସ୍ତଙ୍କ ଭଳି ଦେଖାଯାଉଥିବି ବା ମୋତେ ସେମିତି ହେବାକୁ ହେବ, ଯାର ତ କୌଣସି କାରଣ ନାହିଁ ! ଠିକ୍ ଅଛି, ମୋ ପୋଷାକ ଯଦି ତମକୁ ଭଲ ନ ଲାଗୁଛି, ମୁଁ ବରଂ ଘରେ ରହୁଛି ।"

ସଭାଗୃହରେ ଅନ୍ୟମାନଙ୍କର ମଇଳା କୁର୍ତ୍ତା, ରଙ୍ଗଛିଭା ବ୍ଲାଉଜ୍‌ଗୁଡ଼ିକ ଭିତରେ ତୋନ୍ୟାର ପୋଷାକ ଏତେ ବାରି ହୋଇଯାଉଥିଲା ଯେ, ପାଭେଲ୍‌କୁ ଭାରୀ ଖରାପ ଲାଗିଲା । ତରୁଣମାନେ ତାକୁ ଜଣେ ବାହାର ଲୋକ ଭଳି ବ୍ୟବହାର କଲେ । ତୋନ୍ୟା ମଧ୍ୟ ତା' ପ୍ରତି ସେମାନଙ୍କର ମନୋଭାବର କଥା ଜାଣିପାରି, ମିଶିବାକୁ ଚେଷ୍ଟା ନ କରି ଗମ୍ଭୀର ହୋଇ ମୁହଁ ଫୁଲାଇ ରହିଲା ସେମିତି ।

କମ୍‌ସୋମୋଲ୍ ସଂଗଠନର ସଂପାଦକ ପାନ୍‌କ୍ରାତୋଭ୍ ଖଲାସୀ ସେ । ଚଉଡ଼ା କାନ୍ଧ । ପିନ୍ଧିଛନ୍ତି ଗୋଟାଏ ମୋଟା ଲାଇନେନ୍ କୁର୍ତ୍ତା । ପାଭେଲ୍‌କୁ ଗୋଟାଏ କଡ଼କୁ ଡାକିନେଇ ଆଖିରେ ତୋନ୍ୟାକୁ ଦେଖାଇ ଟିକେ ବିରକ୍ତିସୂଚକ ସ୍ୱରରେ କହିଲେ :

"ତମେ ସେ କଣ୍ଢେଇକୁ ଏଠିକି ଆଣିଛ ?"

"ହଁ", ପାଭେଲ୍ ଭଦ୍ରଭାବେ ଉତ୍ତର ଦେଲା ।

"ହୁଁ", ପାନ୍‌କ୍ରାତୋଭ୍ କହିଲେ, "ଦେଖ, ତା' ଚେହେରା କହୁଛି ସିଏ ଆମ ଗୋଷ୍ଠୀର ନୁହଁ । ଅତି ବେଶୀ ବୁର୍ଜୁଆ ଢଙ୍ଗଢାଙ୍ଗ । କେମିତି ପଶିଲା ଏଥିରେ ?"

ପାଭେଲ୍‌ର ଓଠ ଦୁଇଟି ଥରି ଉଠିଲା ।

"ସିଏ ମୋର ଗୋଟିଏ ବାନ୍ଧବୀ । ତାକୁ ମୁଁ ଏଠିକି ନେଇଆସିଛି । ବୁଝିଲ ? ତା' ପୋଷାକ ପରିଚ୍ଛଦ ଏମିତି ହେଲେ ମଧ୍ୟ ସେ ଆମ ପ୍ରତି ଆଦୌ ଶତ୍ରୁତାପୂର୍ଣ୍ଣ ନୁହଁ । ତମେ ଜାଣିଛ ତ ଜଣକୁ ତା' ପରିଚ୍ଛଦରୁ ବିଚାର କରିବା ସବୁବେଳେ ସମ୍ଭବ ନୁହେଁ । ତମେ ଯେମିତି ଜାଣ, ମୁଁ ବି ସେମିତି ଜାଣିଛି—କାହାକୁ ଏଠିକି ଆଣିବା ଉଚିତ ଆଉ

କାହାକୁ ନୁହଁ । ତେଣୁ ଏଭଳି ହାକିମୀ ମିଜାଜରେ କଥାବାର୍ତ୍ତା କର ନାହିଁ ।”

ସେ ଆହୁରି ଅପମାନ କରି ଓ କଟୁକଥା କହିବାକୁ ଯାଉଥିଲା, ମାତ୍ର ନୀରବ ରହିଲା । କାରଣ ସେ ବୁଝୁଥିଲା ଯେ, ପାନ୍‌ଦ୍ରାତୋଭ୍ ସମସ୍ତଙ୍କର ମନୋଭାବ ହିଁ ପ୍ରକାଶ କରୁଛି । ଫଳରେ ତୋନ୍ୟା ପ୍ରତି ତା'ର ରାଗ ବଢ଼ିଗଲା ଆହୁରି ।

“ମୁଁ ତାକୁ ଆଗରୁ କହିଛି, ଏମାନେ କ'ଣ ଭାବିବେ ? କାହିଁକି ଭଲ ଫୁଟାଣି ଦେଖାଇହୋଇ ଏମିତି ପୋଷାକ ପିନ୍ଧି ଚାଲିଆସିଲ ?”

ସେଦିନ ସନ୍ଧ୍ୟାରେ ହିଁ ତାଙ୍କ ବନ୍ଧୁତ୍ୱ ଶେଷର ଆରମ୍ଭ ପର୍ବ ସଙ୍ଘଟିତ ହେଲା । ମନରେ ଅସମ୍ଭବ ଚିନ୍ତା ଓ ଘୃଣା ନେଇ ପାଭେଲ୍ ଯେଉଁ ବନ୍ଧୁତ୍ୱକୁ ଏତେ ସୁଦୃଢ଼ ବୋଲି ଭାବୁଥିଲା, ତା'ର ପରିଣତି ଲକ୍ଷ୍ୟ କଲା ।

ଆଉ କିଛି ଦିନ ବିତିଗଲା ଏବଂ ପ୍ରତିଟି ମିଳନରେ, ପ୍ରତିଟି କଥୋପକଥନରେ ସେମାନଙ୍କର ବ୍ୟବଧାନ ବଢ଼ିଚାଲିଲା ଦ୍ରୁତ ଗତିରେ । ତୋନ୍ୟାର ଶସ୍ତା ବ୍ୟକ୍ତିବାଦିତ୍ୱ ପାଭେଲ୍ ପକ୍ଷରେ ଅସହ୍ୟ ହୋଇଉଠିଲା ।

ଉଭୟ ହୃଦୟଙ୍ଗମ କଲେ ଯେ, ଏ ବନ୍ଧୁତ୍ୱର ଶେଷ ଅବଶ୍ୟମ୍ଭାବୀ ।

ଆଜି ସେମାନେ ଶେଷ ଥର ପାଇଁ କୁପେଚେସ୍କିଙ୍କ ବଗିଚାରେ ମିଳିତ ହେଲେ । ରାସ୍ତାସାରା ଝରାପତ୍ରରେ ଛାଇ ହୋଇଯାଇଥିଲା । ସେମାନେ ଟାୱାର ନାସିର ଚୂଡ଼ାରେ ଛିଡ଼ାହୋଇ ତଳେ ବହିଯାଉଥିବା ନୀପର ନଦୀର କଳା ଜଳରାଶିକୁ ଚାହିଁଲେ । ଅସ୍ତାୟମାନ ସୂର୍ଯ୍ୟର ରକ୍ତିମ କିରଣ ବୋଳି ହୋଇଯାଇଥିଲା ତ୍ରୁଖାନୋଭ୍ ଦ୍ୱୀପ ଉପରେ । ସୁନାଗୁଡ଼ାକ ବିଛି ହୋଇଯାଇଥିଲା ଚାରିଆଡ଼େ । ଝରକା, କବାଟ ସବୁରେ ଯେମିତି ନିଆଁ ଲାଗିଆସୁଥିଲା ।

ସୂର୍ଯ୍ୟର ସୁନେଲି କିରଣକୁ ଚାହିଁ ଦୀର୍ଘଶ୍ୱାସ ପକେଇ ଦୁଃଖରେ ତୋନ୍ୟା କହିଲା :

“ଏଇ ଅସ୍ତଗାମୀ ସୂର୍ଯ୍ୟ ଭଳି କ'ଣ ଆମର ବନ୍ଧୁତ୍ୱ ଫିକା ପଡ଼ିଯିବ ? ମିଳେଇଯିବ ?”

ତା'ମୁହଁକୁ ନିରିଖି ନିରିଖି ଦେଖୁଥିଲା ପାଭେଲ୍ । ଆଖିପତା ତା'ର ପୋଛିଦେଇ ଅନୁଚ୍ଚ କଣ୍ଠରେ କହିଲା :

“ତୋନ୍ୟା, ବହୁ ଆଗରୁ ଯା'ର ସିଦ୍ଧାନ୍ତ ହୋଇଯାଇଛି । ଅବଶ୍ୟ ତମେ ଜାଣିଛ ଯେ, ମୁଁ ତମକୁ ଭଲପାଏ ଏବଂ ଏବେ ବି ଭଲପାଇବି, ମାତ୍ର ସେଥିପାଇଁ ତମକୁ ଆମ ସାଥୀରେ ରହିବାକୁ ପଡ଼ିବ । ମୁଁ ବିଗତ ଦିନର ସେ ପାଭ୍‌ଲୁଶା ନୁହଁ । ତମେ ଯଦି ଚାହଁ ଯେ, ମୁଁ ପାର୍ଟିଠାରୁ ତମକୁ ବଡ଼ କରି ଦେଖେ, ତେବେ ମୁଁ ତମର ଉପଯୁକ୍ତ ସ୍ୱାମୀ ହୋଇପାରିବି ନାହିଁ । କାରଣ ମୁଁ ସବୁବେଳେ ପାର୍ଟିକୁ ସର୍ବୋଚ୍ଚ ସ୍ଥାନ ଦେବି ଓ ଦ୍ୱିତୀୟ ସ୍ଥାନ ଦେବି ତମକୁ, ମୋ ମା'କୁ, ମୋର ପ୍ରିୟ ପରିଜନଙ୍କୁ ।”

ଆଖିରେ ଆଖିଏ ଲୁହ ଧରି ତୋନ୍ୟା ତଳକୁ, କଳାଘୁମର ପାଣି ଆଡ଼କୁ ଚାହିଁରହିଲା ।

ତା'ର କମନୀୟ ରୂପକୁ ଆଖି ପୂରାଇ ଦେଖୁଥିଲା ପାଭେଲ୍, ଯାହାକୁ ସେ ଅତି ଭଲଭାବରେ ଜାଣିଛି । ତା'ର ବାଦାମୀ ରଙ୍ଗର ଗହଳ କେଶରାଶି ଏବଂ ତା'ର ଅତି

ପ୍ରିୟ ଏଇ ଝିଅଟିର ଆସନ୍ନ ବିଚ୍ଛେଦ ତା' ଦେହସାରା ଏକ କରୁଣତାର, ଦୁଃଖର ତରଙ୍ଗ ଖେଳାଇଦେଲା ।

ମୋଲାୟମ ଭାବରେ ନିଜ ହାତ ସେ ତୋନ୍ୟା କାନ୍ଧ ଉପରେ ରଖିଲା ।

"ତୋନ୍ୟା, ନିଜକୁ ମୁକ୍ତ କରି ଆମ ପାଖକୁ ଆସ । ଆସ ଆମେ ଦୁହେଁ କାନ୍ଧକୁ କାନ୍ଧ ମିଳାଇ କାମ କରି ଏ ହାକିମଶାହୀ ଶାସନର ଶେଷ ଘଟାଇବା । ଆମ ଭିତରେ ଅନେକ ଚମତ୍କାର ଝିଅ ଅଛନ୍ତି, ଯେଉଁମାନେ ଏ ସଂଗ୍ରାମରେ ଅତି କଷ୍ଟକର କାମ କରୁଛନ୍ତି । ସବୁପ୍ରକାର କଷ୍ଟ, ଦୁଃଖର ସାମନା କରୁଛନ୍ତି ସେମାନେ । ସେମାନେ ହୁଏତ ତମ ଭଳି ଏତେ ବେଶୀ ପଢ଼ାପଢ଼ି କରି ନାହାନ୍ତି । କିନ୍ତୁ ତୁମେ ଆମ ସାଙ୍ଗରେ ରହିବାକୁ ଗ୍ରହୁଁ ନାହିଁ କାହିଁକି ? ତମେ କହୁଛ ଯେ ଚୁଝାନିନ୍ ତମ ପ୍ରତି ଅଶୋଭନୀୟ ଆଚରଣ କଲା । ସିଏ ଗୋଟାଏ ବାଜେଲୋକ, ଯୋଦ୍ଧା ନୁହେଁ । ତମେ କହୁଛ, କମ୍ରେଡ୍‌ମାନେ ତମ ପ୍ରତି ବନ୍ଧୁତ୍ୱ ଭାବ ଦେଖାଇଲେ ନାହିଁ । ତମେ ନିଜେ କହିଲ ଦେଖି, ତମେ କାହିଁକି ସେଠିକି ବୁର୍ଜୁଆଙ୍କର ବଲ୍‌ନାଚକୁ ଗଲାଭଳି ପୋଷାକ ପିନ୍ଧି ଯାଇଥିଲ ? ତମର ଅର୍ଥହୀନ ଗର୍ବକୁ ଛାଡ଼ିବା ଉଚିତ । ସମସ୍ତେ ପିନ୍ଧୁଛନ୍ତି ବୋଲି ମୁଁ କାହିଁକି ଗୋଟାଏ ପୁରୁଣା ମଇଳା ସୈନ୍ୟବାହିନୀ ପୋଷାକ ତେବେ ପିନ୍ଧୁଛି ? ଜଣେ ଶ୍ରମିକକୁ ଭଲ ପାଇବାର ସାହସ ତମର ଅଛି, ଅଥଚ ଗୋଟାଏ ଆଦର୍ଶକୁ ଭଲ ପାଇପାରନା ! ତମ ସହିତ ଏ ବିଚ୍ଛେଦ ପାଇଁ ମୁଁ ଦୁଃଖିତ । ତମ କଥା ଚିରଦିନ ପାଇଁ ମୋ ସ୍ମୃତିର ସଙ୍ଗାଳି ହୋଇ ରହିବ ।"

ସେ ନୀରବ ହେଲା ।

ତହିଁ ଆରଦିନ ପାଭେଲ୍ ଦେଖିଲା, ସହରର ରାସ୍ତା ଉପରେ ଏକ ଆଦେଶନାମା ଟଙ୍ଗା ହୋଇଛି ଝୁଖ୍‌ରାଇର ଦସ୍ତଖତ୍‌ରେ । ଝୁଖ୍‌ରାଇ ଏବେ ଆଞ୍ଚଳିକ ଚେକାର ସଭାପତି । ତା' ହୃଦୟ ଆନନ୍ଦରେ ଥରିଉଠିଲା । ଅତି କଷ୍ଟରେ ସେ ଜାହାଜୀ ଝୁଖ୍‌ରାଇର ଅଫିସ୍ ଭିତରକୁ ପ୍ରବେଶ କରିପାରିଲା । ପ୍ରହରୀମାନେ ତାକୁ ଭିତରକୁ ଛାଡ଼ିବାକୁ ମନାକଲେ ଓ ତା' ଫଳରେ ସେ ଏପରି ଗଣ୍ଡଗୋଳ ଆରମ୍ଭ କଲା, ଯାହା ଫଳରେ ପ୍ରାୟ ଗିରଫ ହେବାକୁ ଯାଉଥିଲା । ଯାହା ହେଉ ଶେଷକୁ ତାକୁ ଅନୁମତି ମିଳିଲା ।

ଫ୍ୟୋଦୋର୍ ତାକୁ ଅତି ଆଦର ସ୍ନେହରେ ସ୍ୱାଗତ ଜଣାଇଲା । ଗୋଟିଏ ହାତ ତା'ର କଟିଯାଇଛି ଯୁଦ୍ଧରେ । ଗୋଟିଏ ସେଲ୍ ଫାଟିବା ଫଳରେ ସେଇଟି ପୂରା ଉପୁଡ଼ି ଯାଇଥିଲା ।

ସଙ୍ଗେ ସଙ୍ଗେ ସେମାନଙ୍କର ଆଲୋଚନା ପରିବର୍ତ୍ତିତ ହେଲା କାମ ସମ୍ବନ୍ଧରେ ।

"ପୁଣି ଥରେ ଯୁଦ୍ଧକୁ ଯିବା ପାଇଁ ସକ୍ଷମ ହେଲା ପର୍ଯ୍ୟନ୍ତ ତୁ ମୋତେ ଏଠି ସାହାଯ୍ୟ କରିପାରିବୁ, ପ୍ରତିବିପ୍ଳବକୁ ପ୍ରତିରୋଧ କରିବାରେ । କାଲିଠାରୁ ଆରମ୍ଭ କର", ଝୁଖ୍‌ରାଇ କହିଲା ତାକୁ ।

ପୋଲାଣ୍ଡୀୟ ବାହିନୀ ସହିତ ଯୁଦ୍ଧର ପରିସମାପ୍ତି ଘଟିଲା । ଲାଲ ଫୌଜ ଶତ୍ରୁପକ୍ଷକୁ

ସାୟ ଓ୍ୱାର୍ସା ଭିତରକୁ ଫେରାଇ ନେଇଗଲେ  ମାତ୍ର ସେମାନଙ୍କର ଶାରୀରିକ ଓ ବ୍ୟାବହାରିକ ଶକ୍ତି କମି ଆସିଥିବାରୁ ଏବଂ ସେମାନଙ୍କର ଯୋଗାଣ ଦେବା କ୍ଷେତ୍ରସ ବହୁ ପଛରେ ପଡ଼ିଯାଇଥିବାରୁ ସେମାନେ ଏ ଶେଷ ଆଘାତ ନ ଦେଇପାରି ଫେରିଆସିଲେ । ଆଉ ଏମିତିଭାବରେ ଲାଲ ଫୌଜ ପୋଲାଣ୍ଡରୁ ଅପସରି ଆସିଲେ ଏବଂ ପୋଲାଣ୍ଡୀୟ ଶ୍ୱେତ ବାହିନୀ ଭାଷାରେ, 'ଭିସ୍ତୁଲର ଯାଦୁ' ସଂଘଟିତ ହେଲା । ଭୂସ୍ୱାମୀମାନଙ୍କର ପୋଲାଣ୍ଡ ଯେମିତି ଥିଲା ସେମିତି ରହିଲା । ପୋଲାଣ୍ଡୀୟ ସୋଭିଏତ୍ ସୋସାଲିଷ୍ଟ ପ୍ରଜାତନ୍ତ୍ରର ସ୍ୱପ୍ନ ସେଯାଏଁ ସଫଳ ହୋଇ ନଥିଲା ।

ରକ୍ତନିଃଶେଷିତ ଭୂମି ଟିକେ ଅବସର ଗ୍ରହୁଁଥାଏ ।

ପାଭେଲ୍ ତା'ର ନିଜ ପରିବାରବର୍ଗଙ୍କୁ ଦେଖା କରିପାରିଲା ନାହିଁ । କାରଣ ଶେପେଟୋଭ୍କା ରେଳ ଷ୍ଟେସନ୍ ପୁଣି ପୋଲାଣ୍ଡୀୟ ବାହିନୀ ହାତରେ ଥାଏ ଏବଂ ଏକ ସାମୟିକ ସୀମାନ୍ତ ଘାଟୀ ହୋଇଥାଏ । ଶାନ୍ତି ଆଲୋଚନା ଚାଲିଥାଏ । ନାନା କାମର ଦାୟିତ୍ୱ ନେଇ ପାଭେଲ୍ ଏବେ ଝୁଖ୍ରାଇ ଅଫିସ୍‌ରେ ଦିନରାତି ବିତାଉଥାଏ । ନିଜ ଜନ୍ମସ୍ଥାନ ପୋଲାଣ୍ଡୀୟମାନଙ୍କ ଅଧିକାରରେ ରହିଥିବାର ଜାଣି ଭୟଙ୍କର ବିବ୍ରତ ହୋଇପଡ଼ିଥିଲା ସେ ।

"ମାନେ ଯଦି ସାମରିକ ଚୁକ୍ତି ସ୍ୱାକ୍ଷରିତ ହୁଏ, ମୋ ମା' କ'ଣ ସୀମା ଆରପଟେ ରହିଯିବ ?" ସେ ଝୁଖ୍ରାଇକୁ ପଚାରିଲା ।

ମାତ୍ର ଫ୍ୟୋଦୋର୍ ତା'ର ଭୟ ଭାଙ୍ଗିଦେଲା ।

"ଖୁବ୍ ସମ୍ଭବତଃ, ସୀମାରେଖା ଗୋରିନ୍ ଦେଇ ନଇ ଉପରେ ଯିବ । ଯାହା ଅର୍ଥ, ତମ ସହର ଆମ ପଟେ ରହିବ । ସେ ଯାହାହେଉ, ଆମେ ଅତିଶୀଘ୍ର ଫଳାଫଳ ଜାଣିପାରିବା ।"

ପୋଲାଣ୍ଡ ସାମ୍ନାଖ୍ୟାରୁ ବାହିନୀକୁ ସବୁ ଦକ୍ଷିଣ ଦିଗକୁ ଅପସାରିତ କରା ଯାଉଥାଏ । କାରଣ ଏପର୍ଯ୍ୟନ୍ତ ସାରା ଗଣତନ୍ତ୍ର ପୋଲାଣ୍ଡ ସାମ୍ନାଖ୍ୟାରେ ହିଁ ସମସ୍ତ ଶକ୍ତି ନିଯୋଜିତ କରିଥିଲା । ଏହି ଅବସରର ସୁଯୋଗରେ ଭ୍ରାଙ୍ଗେଲ୍, କ୍ରିମିୟା ଅତିକ୍ରମ କରି ଉତ୍ତରଦିଗକୁ ଧୀରେ ଧୀରେ ନୀପର ବାଟଦେଇ ଯେକାତେରିନୋସ୍ଲାଭ୍ ଅଞ୍ଚଳ ଲକ୍ଷ୍ୟରେ ଆଗଉଥିଲା ।

ଏବେ ପୋଲାଣ୍ଡୀୟମାନଙ୍କ ସହିତ ଯୁଦ୍ଧ ଶେଷ ହୋଇଯିବାରୁ ଗଣତନ୍ତ୍ର ନିଜର ବାହିନୀକୁ ତୁରନ୍ତ କ୍ରିମିୟା ଅଭିମୁଖେ ପଠାଇଲା, ପ୍ରତିବିପ୍ଳବର ପୀଠଭୂମିକୁ ଧ୍ୱଂସ କରିବାକୁ ।

ଟ୍ରେନ୍‌ଭର୍ତ୍ତି ସୈନ୍ୟ ଶଗଡ଼ ଯୁଦ୍ଧକ୍ଷେତ୍ରର ଚୁଲୀ, ବନ୍ଧୁକ କିଏଭ୍ ଦେଇ ଦକ୍ଷିଣ କୁ ମୁହାଁଇଲେ । ଆଞ୍ଚଳିକ ଚେକା ଯୋଗାଯୋ ବଭାଗର ସର୍ବୋଚ୍ଚ ଅଫିସ୍‌କୁ ଗମନାଗମନର ଏ ବନ୍ୟା ସହିତ ତାଳ ମିଳାଇ ଚାଲିବାକୁ ଭୟଙ୍କର ବେଗରେ ରାତିଦିନ ଖଟି କାମ କରିବାକୁ ପଡ଼ିଲା । ଷ୍ଟେସନ୍ ସବୁରେ ଟ୍ରେନ୍ ପରେ ଟ୍ରେନ୍ ଆସି ଭର୍ତ୍ତି ହେଇଯାଏ । ଫଳରେ ଖୋଲା ଲାଇନ୍  ପାଇବକୁ ଘଣ୍ଟା ଘଣ୍ଟା ଧରି ଅବେକ୍ଷା କରିବାକୁ

ପଡ଼େ ଗୋଟି ଗୋଟିକୁ । ଟେଲିଗ୍ରାମ୍ ଅପରେଟରମାନଙ୍କୁ ଶହ ଶହ ସମ୍ବାଦ ଟରେଟ୍-ଟକା କରି ପଠାଇବାକୁ ପଡ଼ୁଥାଏ—ଅମୁକ ବାହିନୀ ପାଇଁ ଲାଇନ୍ ଦେବାକୁ ସମୁକ ବାହିନୀ ଅପେକ୍ଷା କରିଛନ୍ତି ବୋଲି । ଯେତେ ସମ୍ବାଦ ଫିତାସବୁ ଟେଲିଗ୍ରାମ୍ ଯନ୍ତ୍ରସବୁରୁ ମାଇଲ ମାଇଲ ଶେଷହୀନ ହୋଇ ବାହାରୁଥାଏ, ସବୁଥିରେ ସେଇ ଏକା କଥା ଥାଏ, "ଏହା ଏକ ସାମରିକ ଆଦେଶ ... ଅନ୍ୟମାନଙ୍କ ଆଗରୁ ଏହା ପାଇଁ ଲାଇନ୍ ଦେବାକୁ ହେବ ... ତୁରନ୍ତ ଲାଇନ୍ ଖାଲିକର ..." ଇତ୍ୟାଦି । ପ୍ରତିଟି ସମ୍ବାଦରେ ଥାଏ ଯେ, ଏ ଆଦେଶ ପାଳିତ ନ ହେଲେ ବିପ୍ଳବୀ ସାମରିକ ଅଦାଲତ୍‌ରେ ଦଣ୍ଡ ଦିଆଯିବ ।

ଆଞ୍ଚଳିକ ଚେକା ଯୋଗାଯୋଗ ବିଭାଗର ସର୍ବୋଚ୍ଚ ଅଫିସ୍ କୌଣସି ବାଧା ନ ରହି ଯେପରି ଚଳାଚଳ ହୋଇପାରିବ, ତାହା ତଦାରଖ କରୁଥାନ୍ତି ।

ସେନାବାହିନୀର କମାଣ୍ଡରମାନେ ପିସ୍ତଲ୍ ଦେଖାଇ ଦେଖାଇ ଅଫିସ୍‌ର ପ୍ରଧାନ କାର୍ଯ୍ୟାଳୟ ଭିତରକୁ ପଶିଆସୁଥାନ୍ତି କହି କହି ଯେ, ଅମୁକ କମାଣ୍ଡରଙ୍କ ଦ୍ୱାରା ଦସ୍ତଖତ୍ ହୋଇଥିବା ଅମୁକ ନମ୍ବରର ଟେଲିଗ୍ରାମ୍ ବଳରେ ତାଙ୍କ ଟ୍ରେନ୍‌ଗୁଡ଼ିକୁ ସର୍ବପ୍ରଥମେ ଲାଇନ୍ ଦେବାକୁ ହେବ ।

ସେମାନଙ୍କ ମଧ୍ୟରୁ କେହିହେଲେ ଏହା ଅସମ୍ଭବ ବୋଲି ବୁଝିବାକୁ ପ୍ରସ୍ତୁତ ନ ଥାନ୍ତି । "ଏମିତି ହେଲେ ତମ ଟ୍ରେନ୍‌କୁ ବାତିଲ କରିଦିଆଯିବ" ଓ ସଙ୍ଗେ ସଙ୍ଗେ ତୀକ୍ଷ୍ଣ ସ୍ୱରରେ ଗାଳିଗୁଲଜ ଆରମ୍ଭ ହୋଇଯାଏ । ଏଭଳି ଅସମ୍ଭାଳ ଅବସ୍ଥାରେ ଝୁଖ୍‌ରାଇର ଡାକରା ପଡ଼େ ଓ ନିଜକୁ ଗୁଳି କରିବାକୁ ପ୍ରାୟ ଯାଉଥିବା ଉତ୍ତେଜିତ ଲୋକେ ସଙ୍ଗେ ସଙ୍ଗେ ଥଣ୍ଡା ପଡ଼ିଯାଆନ୍ତି ।

ଏ ଲୋକଟିର ଲୌହକଠିନ ରୂପ ଦେଖି ଓ ତା'ର ଗମ୍ଭୀର ଥଣ୍ଡା ସ୍ୱର ଶୁଣି କୌଣସି ଯୁକ୍ତିତର୍କ ଆଉ ଉଠିପାରେନା ଏବଂ ପିସ୍ତଲ୍‌ସବୁ ନିଜ ନିଜ ଖୋଳ ଭିତରକୁ ପଶିଯା'ନ୍ତି ।

ବେଳେବେଳେ ଭାରାକ୍ରାନ୍ତ ମୁଣ୍ଡରେ ପାଭେଲ୍ ପ୍ଲାଟ୍‌ଫର୍ମ ଉପରକୁ ବାହାରିଯାଏ ଟିକେ ବୁଲାବୁଲି କରି ଆସିବାକୁ । ଚେକାର ପ୍ରଧାନ କାର୍ଯ୍ୟାଳୟରେ କାମ କରିବା ଫଳରେ ତା' ସ୍ନାୟୁ ଉପରେ ବହୁ ଚାପ ପଡ଼ୁଛି । ଦିନେ ସେ ହଠାତ୍ ଗୋଟାଏ ଅସ୍ତ୍ରଶସ୍ତ୍ର ବୋଝେଇ ଟ୍ରକ୍ ଉପରେ ସେର୍ଗେଇ ବ୍ରୁଝାକ୍‌କୁ ଭେଟିଲା । ସେର୍ଗେଇ ତଳକୁ କୁଦିପଡ଼ିଲା ଓ ପାଭେଲ୍‌କୁ କୁଣ୍ଢେଇ ପକେଇ ଦି'ହାତରେ ଭିଡ଼ିଧରିଲା ।

"ଆରେ ଖେଚେଡ଼ା ପାଭ୍‌କା! ତୁ, ମୁଁ ଦେଖି ଠିକ୍ ଚିହ୍ନିଛି ।"

ଦୁହିଁଙ୍କର ପରସ୍ପରକୁ ଏତେ ଖବର ଦେବା ପାଇଁ ଥିଲା ଯେ, କେଉଁଠୁ ଆରମ୍ଭ କରିବେ, କେହି ଠିକ୍ କରିପାରିଲେ ନାହିଁ । ଶେଷରେ ଯେବେ ସେମାନେ ପରସ୍ପରକୁ ଭେଟିଥିଲେ ସେ ଦିନଠାରୁ ଉଭୟଙ୍କ ଜୀବନରେ ଅନେକ ପରିବର୍ତ୍ତନ ଘଟିଯାଇଛି । ଉଭୟ ଉଭୟଙ୍କୁ ପ୍ରଶ୍ନରେ ପୋତିପକାଇଲେ, ଉତ୍ତର ପାଇଁ ଅପେକ୍ଷା ନ ରଖି । ଇଞ୍ଜିନ୍ ଯେ ଛାଡ଼ିବା ପାଇଁ ସିଟି ଦେଲାଣି ଏକଥା କାହାରି ଖିଆଲ ନ ଥିଲା । ଟ୍ରେନ୍‌ଟା ଠିକ୍ ଛାଡ଼ିଲାବେଳେ ସେମାନେ ନିଜର ବାହୁବନ୍ଧନକୁ ଖୋଲି ଦେଲେ ।

ଆହୁରି ଅନେକ, ଅନେକ କଥା ପରସ୍ପରକୁ କହିବା ପାଇଁ ଥିଲା, ମାତ୍ର ଟ୍ରେନ୍‌ଟା ସେତେବେଳକୁ ଦ୍ରୁତତର ହେଲଣି । ସେର୍ଗେଇ ନିଜ ବନ୍ଧୁକୁ କ'ଣ ଗୋଟାଏ ବଡ଼ପାଟିରେ କହି ପ୍ଲାଟ୍‌ଫର୍ମରେ ଦୌଡ଼ିବାକୁ ଆରମ୍ଭ କଲା ଏବଂ ଗୋଟାଏ ଡବାର ହାତକୁ ଧରିପକାଇଲା । ଆହୁରି ଅନେକ ହାତ ତାକୁ ଭିଡ଼ିନେଲେ ଉପରକୁ । ତା' ଯିବାପଥକୁ ଗ୍ରହିଁଗ୍ରହିଁ ଛିଡ଼ା ହୋଇଥିଲା ପାଭେଲ୍ ଓ ହଠାତ୍ ତା'ର ମନେପଡ଼ିଲା ଯେ ଭାଉଜର ମରଣ କଥା, ସେର୍ଗେଇ ଆଦୌ କିଛି ଜାଣି ନାହିଁ । କାରଣ ଶେପେଟୋଭ୍‌କା ଛାଡ଼ିବା ଦିନରୁ ସେ ଆଉ ଏଠିକି ଫେରି ନାହିଁ । ହଠାତ୍ ଏ ଦେଖାରେ, ଏ ଅସ୍ପର୍କରେ ପାଭେଲ୍ ତାକୁ କିଛି କହିପାରିଲା ନାହିଁ ।

"ଭଲ ହୋଇଛି, ନ ଜାଣିଛି କଥାଟା, ମନଟା ତା'ର ହାଲୁକା ରହିବ", ପାଭେଲ୍ ଭାବିଲା । ତାକୁ ଜଣା ନ ଥିଲା ଯେ ଏହାହିଁ ତା' ବନ୍ଧୁ ସହିତ ତା'ର ଶେଷ ଦେଖା । ଗାଡ଼ି ଉପରେ ଶାରଦୀୟ ପବନରେ ଛାତି ଖୋଲି ଛିଡ଼ା ହୋଇଥିବା ସେର୍ଗେଇକୁ ମଧ୍ୟ ଜଣା ନ ଥିଲା, ସେ ତା'ର ମୃତ୍ୟୁ ନିକଟକୁ ଯାଉଛି ।

"ସେଠୁଁ ଓହ୍ଲାଇ ଆ' ସେରୟୋଝା !" ଦୋରୋଶେଙ୍କୋ ନାମକ ଲାଲ ଫୌଜୀ ସୈନିକଟି କହିଲା ସେର୍ଗେଇକୁ । ସୈନିକଟିର କୋଟ୍‌ର ପଛପଟେ ଗୋଟାଏ ପୋଡ଼ା ଜଣା ।

"ଠିକ୍ ଅଛି, ପବନ ମୋର ଅତି ଅନ୍ତରଙ୍ଗ ବନ୍ଧୁ", ସେର୍ଗେଇ ହସିଦେଇ କହିଲା ।

ଠିକ୍ ସପ୍ତାହକ ପରେ, ତା'ର ପ୍ରଥମ ଯୁଦ୍ଧରେ କାହିଁ ଆସି ଗୋଟାଏ ବୁଲେଟ୍ ତା'ର ବକ୍ଷ ବିଦ୍ଧକଲା ।

ଛାତିରେ ତୀବ୍ର ଯନ୍ତ୍ରଣା ନେଇ ସେ ଆଗକୁ ଉହୁଁକିଗଲା । ଛାତିକୁ ଜୋର୍‌ରେ ଚପିଧରି ସେ ଭୂଇଁ ଉପରେ ଲେଟିପଡ଼ିଲା ଏବଂ ତା'ର ଦୃଷ୍ଟିଶକ୍ତିହୀନ ନୀଳ ଆଖି ଦିଓଟି ଦିଗନ୍ତବିସ୍ତାରୀ ୟୁକ୍ରେନୀୟ ଷ୍ଟେପ୍‌କୁ ଗ୍ରହିଁରହିଲା ସେମିତି ଖୋଲା ରହି ।

ଚେକା ସଂସ୍ଥାର କଠିନ କାମ ପାଭେଲ୍‌ର ଦୁର୍ବଳ ଓ ସଦ୍ୟ ଆରୋଗ୍ୟ ହୋଇଥିବା ଶରୀର ଉପରେ ତୀବ୍ର ପ୍ରଭାବ ପକାଇଲା । ତା'ର ମୁଣ୍ଡବିନ୍ଧା କ୍ରମଶଃ ସଦାବେଳେ ହେବାକୁ ଲାଗିଲା । ଦୁଇ ରାତି ନଶୋଇବା ହେତୁ ହଠାତ୍ ବେହୋସ୍ ହୋଇ ଯାଇଛି, ସେ କଥାଟା ଝୁଖ୍‌ରାଇ ନିକଟରେ ଉତ୍‌ଥାପନ କରିବାକୁ ସ୍ଥିର କଲା ।

"ମୁଁ ଆଉ କିଛି କାମ କରିବା ଉଚିତ ବୋଲି ତମେ କ'ଣ ଭାବୁନ ଫ୍ୟୋଦୋର୍ ? ମୁଁ ରେଳବାଇରେ ମୋ ନିଜ ଧନ୍ଦା କରିବାକୁ ସବୁଠାରୁ ଭଲ ପାଇବି । ମୋର ଭାରୀ ଭୟ ହେଉଛି, ମୋ ମୁଣ୍ଡରେ କିଛି ଗୋଳମାଳ ଅଛି ବୋଧହୁଏ । ସେମାନେ ମେଡ଼ିକାଲ କମିଶନ୍‌ରେ ମୋତେ କହିଲେ ଯେ, ସେନାବାହିନୀରେ ଯୋଗ ଦେବା ପାଇଁ ମୁଁ ଅନୁପଯୁକ୍ତ । ମାତ୍ର ଏମିତି କାମ ଯୁଦ୍ଧ ଅପେକ୍ଷା ଖରାପ ଲାଗୁଛି । ଗତ ଦୁଇଦିନ ଧରି ସୁଚିର୍ ଦଳକୁ ଘେରଉ କରିବାକୁ ଯାଇ ମୁଁ ଖୁବ୍ ଦୁର୍ବଳ ହୋଇପଡ଼ିଛି । ମୋର ଏସବୁ

ଗୁଳିବର୍ଷଣରୁ ବିଶ୍ରାମ ଲୋଡ଼ା । ଦେଖ ଫ୍ୟୋଦୋର୍, ଏମିତି ଦୁର୍ବଳିଆ ହୋଇ ମୁ ବୋଧହୁଏ ତମର କୌଣସି କାମରେ ଲାଗି ପାରିବି ନାହିଁ ।"

ଝୁଖ୍ରାଇ ଗମ୍ଭୀର ହୋଇ ପାଭେଲ୍‌ର ମୁହଁକୁ ଲକ୍ଷ୍ୟ କରୁଥିଲା ।

"ହଁ ତୋ ମୁହଁରୁ ଜଣାଯାଉଛି, ତୋ ଦେହ ଭଲ ନାହିଁ ବୋଲି । ମୁଁ ଆଗରୁ ତୋତେ ଛାଡ଼ିଦେବା ଉଚିତ ଥିଲା, ମାତ୍ର କାର୍ଯ୍ୟବ୍ୟସ୍ତ ରହି ମୁଁ ଲକ୍ଷ୍ୟ କରିପାରି ନାହିଁ ।"

ଏହି କଥୋପକଥନର ଅଳ୍ପ କିଛି ଦିନ ପରେ ପାଭେଲ୍ କମ୍‌ସୋମୋଲ୍‌ର ଆଞ୍ଚଳିକ କମିଟି ନିକଟରେ ନିଜକୁ ପେଶ୍ କଲା । ସାଥିରେ ଥିଲା ତା'ର ଏକ ଚିଠି ଯେ, ତାକୁ କମ୍‌ସୋମୋଲ୍ କମିଟି ଅଧୀନରେ ରଖାଗଲା ।

ଜଣେ ହାକିମୀ ଭାବର ତରୁଣ ନାକ ଉପରକୁ ତା'ର ଟୋପିଟା ଖସେଇ ଆଣିଛି, ତରବରିଆ ଭାବରେ ଚିଠିଟା ଉପରେ ଆଖି ବୁଲାଇ ଆଣି ପାଭେଲ୍ ଆଡ଼କୁ ଅନାଇଲା ।

"ଚେକା ବିଭାଗରୁ, ଆଚ୍ଛା ... ବେଶ୍ ସଙ୍ଗଠନ ସେଇଟା । ଆମେ ତୁରନ୍ତ ତମ ପାଇଁ କାମ ଠିକ୍ କରିଦେବୁ । ଆମର ଅନେକ ଲୋକ ଦରକାର । ଆଚ୍ଛା, କେଉଁଠି କାମ କରିବାକୁ ଚାହଁ ତମେ ? ଆଞ୍ଚଳିକ ଯୋଗାଣ ବିଭାଗରେ, ନାଁ ? ଠିକ୍ ଅଛି, ପ୍ରଚାର ବିଭାଗରେ ଆନ୍ଦୋଳନ ଚଳାଇବାକୁ କେମିତି ହେବ, ନାଁ ? ଆଚ୍ଛା କଥା ? ସେଇଟା ବଢ଼ିଆ କାମ । ଅଧିକ ପଢ଼ି ମଧ୍ୟ ସେଥିପାଇଁ ମିଳିବ ।"

ତାକୁ ବାଧାଦେଇ ପାଭେଲ୍ କହିଲା :

"ମୁଁ ରେଳବାଇ ଯନ୍ତ୍ର ସଜଡ଼ାସଜଡ଼ି କାରଖାନାରେ କାମ କରିବାକୁ ଚାହେଁ ।"

ଡୋକ ଗିଳି ଯୁବକଟି କହିଲା, "ହୁଁ, କିନ୍ତୁ ଆମର ତ ସେଠି କାହାକୁ ଦରକାର ନାହିଁ ବୋଧହୁଏ । ମାତ୍ର ତମେ ଉସ୍ତିନୋଭିଚ୍‌ଙ୍କ ନିକଟକୁ ଗଲେ ସିଏ କିଛି ଗୋଟାଏ ଜୁଟେଇ ଦେଇପାରିବେ ।"

ଉଜ୍ଜ୍ୱଳ କଳାକଳା ଆଖିର ଝିଅଟି ସହିତ ସଂକ୍ଷିପ୍ତ କିଛି ଆଲୋଚନା ପରେ ସିଦ୍ଧାନ୍ତ ହେଲା ଯେ, ପାଭେଲ୍‌କୁ ରେଳବାଇ କାରଖାନାର କମ୍‌ସୋମୋଲ୍ ସଙ୍ଗଠନର ସମ୍ପାଦକ ଭାବରେ ନିଯୁକ୍ତ କରାଯିବ, ଯେଉଁଠି ସେ କାମ କରିବାକୁ ଯାଉଛି ।

* * *

ଇତ୍ୟବସରରେ ଶ୍ୱେତ ବାହିନୀମାନେ କ୍ରିମିୟାରେ ଦୃଢ଼ୀଭୂତ ହେଉଥାନ୍ତି । ଦିନେ କ୍ରିମୀୟ ତାତାର ଓ ଜାପୋରୋଝ୍‌ସି କସାକ୍‌ମାନଙ୍କ ଭିତରେ ସୀମାନ୍ତ ଭାବରେ ପରିଗଣିତ ହେଉଥିବା, ସରୁଆ ହୋଇ ଅଞ୍ଚଳଟକରେ ଏବଂ ଆଧୁନିକ ରକ୍ଷଣ କୌଶଳରେ ଦୃଢ଼ ହୋଇ ପେରେକୋପ୍ ଲାଇନ୍ ଦଣ୍ଡାୟମାନ ହୋଇଛି ।

ପେରେକୋପ୍‌ର ପଶ୍ଚାଦ୍‌ଭାଗରେ, କ୍ରିମିୟାରେ ପ୍ରାଚୀନ, ହତାଶ ଜୀବନ ଦେଶର ଚତୁର୍ଦ୍ଦିଗରୁ ବହିଷ୍କୃତ ହୋଇ, ନିରାପଦ ଆଶ୍ରୟ ମଣି, ମଦମତ୍ତ ହୋଇ ଆନନ୍ଦରେ ରହିଛି ।

ଏକ ଶୀତାର୍ତ୍ତ ଶାରଦୀୟ କଳା ମଚମଚ ରାତିରେ, ଦେଶର ଦଶ ସହସ୍ରାଧିକ

ଶ୍ରମିକ ସନ୍ତାନ ସିଭାଶ୍ ଉପସାଗରର ହେମାଳ ଜଳ ଭିତରେ ଧସେଇ ପଶିଲେ । କଳା ଅନ୍ଧକାର ଭିତରେ ଲୁଚିରହିଥିବା କୂଳରେ ପହଞ୍ଚି ନିଜ ଦୁର୍ଗରେ ନିରାପଦ ଆଶ୍ରୟ ଭିତରେ ଶୋଇଥିବା ଶତ୍ରୁକୁ ପଛୁଆ ଆକ୍ରମଣ କରିବା ପାଇଁ । ସେ ସହସ୍ର ସହସ୍ରଙ୍କ ଭିତରେ ଥିଲା ଇଭାନ୍ ଝାର୍କୀ , ନିଜର ମେସିନ୍‌ଗନ୍‌ଟା ପାଣିରେ ଓଦା ହୋଇଯିବ ବୋଲି ସେ ମୁଣ୍ଡରେ ଲଦି ଥିଲା ।

ସେଦିନର ଭୋର ପେରେକୋପ୍‌ର ଉନ୍ମତ୍ତ ଯୁଦ୍ଧ ବିଳାସ ଦେଖିଲା । ସମ୍ମୁଖ ସମର ଆରମ୍ଭ ହୋଇଗଲା । ପ୍ରଥମ ବିଭାଗର ଯେଉଁମାନେ ସିଭାଶ୍ ଅତିକ୍ରମ କରିଥିଲେ , ସେମାନେ କୂଳରେ ପହଞ୍ଚି ଲିଟୋଭ୍‌ସି ଉପତ୍ୟକାରେ ଚଢ଼ିଥିଲେ ଶ୍ୱେତ ବାହିନୀକୁ ପଛରୁ ଆକ୍ରମଣ କରିବାକୁ । ଯେଉଁମାନେ ପ୍ରଥମେ ଦନ୍ତୁରିତ ପାହାଡ଼ିଆ ଉପକୂଳରେ ଉପସାଗରର ଜଳରୁ ଉପରକୁ ଚଢ଼ିଥିଲେ , ସେମାନଙ୍କ ମଧ୍ୟରେ ଥିଲା ଝାର୍କୀ ।

ନାହିଁ ନଥିବା ଘମାଘୋଟ ଭାବରେ ଭୟଙ୍କର ଯୁଦ୍ଧ ଚାଲିଲା । ଶ୍ୱେତ ଅଶ୍ୱାରୋହୀ ବାହିନୀ ପାଣି ଭିତରୁ ଉଠୁଥିବା ଲାଲଫୌଜଙ୍କ ଉପରକୁ ନିର୍ମମଭାବରେ ଗୁଳିବର୍ଷଣ କରିବାକୁ ଲାଗିଲେ । ଝାର୍କୀର ମେସିନ୍‌ଗନ୍ ଉନ୍ମତ୍ତ ହୋଇ ମରଣ ଘଟାଇ ଚାଲିଲା ଦ୍ରୁତତର ଭାବରେ । ମଣିଷ ଓ ଘୋଡ଼ା ଗଦା ଗଦା ହୋଇ ମରିପଡ଼ିଲେ । ଅଣନିଃଶ୍ୱାସୀ ହୋଇ ମେସିନ୍‌ଗନ୍‌ରେ ମ୍ୟାଗାଜିନ୍ ପରେ ମ୍ୟାଗାଜିନ୍ ଗୁଳି ଭର୍ତ୍ତି କରି ଚାଲିଲା ଝାର୍କୀ ଲଇଦି ଲଇଦି ।

ଶତଶତ କମାଣର ଗର୍ଜନ ଧ୍ୱନିରେ ପେରେକୋପ୍ ଥରିଉଠିଲା । ପୃଥିବୀ ମନେ ହେଲା ଯେମିତି ରସାତଳକୁ ଦବି ଯାଉଛି । ଆକାଶରେ ଶତଶତ ଗୋଳାର କାନଫଟା ବିସ୍ଫୋରଣ ଆଉ ମୃତ୍ୟୁରେ ବିଦୀର୍ଣ୍ଣ ବିକ୍ଷତ ପୃଥିବୀରୁ ନିର୍ଗତ କଳାଧୂଆଁ ସୂର୍ଯ୍ୟକୁ ଘୋଡ଼ାଇ ପକାଇଲା ।

ଦାନବର ମସ୍ତକ ଚୂର୍ଣ୍ଣୀଭୂତ ହେଲା ଏବଂ କ୍ରିମିୟା ଭିତରକୁ ପ୍ରଥମ ଘୋଡ଼ସବାର ବାହିନୀର ଡିଭିଜନଗୁଡ଼ିକର ଲାଲ ସ୍ରୋତ ପ୍ରବାହିତ ହେବାକୁ ଲାଗିଲା ସର୍ବଶେଷ ଆଘାତ ହାଣିବାକୁ ଉଦ୍‌ବିହ୍ୱଳ ହୋଇ । ଶ୍ୱେତ ଜଗୁଆଳମାନେ ବନ୍ଦରକୁ ଧାଇଁବାକୁ ଲାଗିଲେ ଛାଡ଼ିଯାଉଥିବା ଜାହାଜ ସବୁରେ ଚଢ଼ିବା ପାଇଁ ।

ଗଣତନ୍ତ୍ର ପକ୍ଷରୁ ଅନେକ ମଳିନ ଖାକି କୁର୍ତ୍ତା ଉପରେ , ଲାଲ ପତାକା ଲାଞ୍ଛିତ ବୀରତ୍ୱସୂଚକ ପଦକସବୁ ଟଙ୍ଗାଇ ଦିଆଗଲା ଅର୍ଡର ଅଫ ରେଡ ବ୍ୟାନର । ସେଥିରୁ ଗୋଟିଏ ମଳିନ ପୋଷାକ ହେଉଛି ମେସିନ୍‌ଗନ୍ ଚାଳକ ଝାର୍କୀର ।

* * *

ପୋଲଣ୍ଡୀୟମାନଙ୍କ ସହିତ ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହେଲା ଏବଂ ଯାହା ଝୁଖ୍‌ରାଇ ପୂର୍ବରୁ କହିଥିଲା , ସେହିଭଳି ଭାବରେ ଶେପେଟୋଭ୍‌କା ସୋଭିଏତ୍ ୟୁକ୍ରାଇନ୍‌ରେ ରହିଲା । ସହର ବାହାରେ ପଇଁତିରିଶ କିଲୋମିଟର ଦୂରରେ ରହିଯାଉଥିବା ଏକ ନଦୀ ସୀମା ରୂପେ ଚିହ୍ନିତ

ହେଲ । ଊଣେଇଶହ କୋଡ଼ିଏର ଏକ ସ୍ମରଣୀୟ ସୁନ୍ଦର ସକାଳରେ, ପାଭେଲ୍ ନିଜର ଜନ୍ମମାଟି ସହରରେ ପାଦ ଦେଲ ।

ବରଫାଚ୍ଛାଦିତ ପ୍ଲାଟ୍‌ଫର୍ମ ଉପରେ ପହଞ୍ଚିଲ ସେ । ଦଣ୍ଡେ ଅଟକି ରହି 'ଶେପେଟୋଭ୍‌କା ୧' ବୋଲି ବୋର୍ଡକୁ ଚାହିଁ ଦେଖିଲ ଏବଂ ସିଧା ଯାଇଁ ରେଳବାଇ ୟାର୍ଡରେ ପହଞ୍ଚିଲ ଆର୍ଟେମ୍ କଥା ବୁଝିବା ପାଇଁ । ଆର୍ଟେମ୍ କିନ୍ତୁ ସେଠାରେ ନ ଥିଲ । ନିଜର ସୈନ୍ୟ ବାହିନୀ କୋଟ୍‌ଟିକୁ ଆହୁରି ଛାତି ଉପରକୁ ଟାଣିଆଣି ପାଭେଲ୍ ଜଙ୍ଗଲ ଭିତର ଦେଇ ସହର ଆଡ଼କୁ ମୁହାଁଇଲ ।

ଦୁଆରମୁହଁରେ କଡ଼ା ବାଡ଼େଇଲ କ୍ଷଣି କବାଟ ଖୋଲିଦେଇ ମାରିୟା ୟାକୋଭ୍‌ଲେଭ୍‌ନା କହିଲେ, "ଭିତରକୁ ଆସ ।" ବରଫାବୃତ ଜଣେ ମଣିଷ ଭିତରକୁ ପଶିଲ । ସେ ନିଜ ପୁଅର ପରିଚିତ ପ୍ରିୟ ମୁହଁଟିକୁ ଦେଖିବାକୁ ପାଇଲେ । ଆନନ୍ଦରେ ଅଧୀର ହୋଇ ତାକୁ କୁଣ୍ଢାଇ ପକାଇଲେ ସେ । ଆନନ୍ଦରେ ତାଙ୍କ ମୁହଁରୁ କଥା ବାହାରିଲ ନାହିଁ ।

ପୁଅର ଛାତିରେ ଲେଟିପଡ଼ି ସେ ତା' ମୁହଁକୁ ଚୁମାରେ ଛାଇଦେଲେ । ଗାଲ ଉପର ଦେଇ ଝରିବାକୁ ଲଗିଲ ଆନନ୍ଦର ଅଶ୍ରୁ ।

ଆଉ ପାଭେଲ୍ ଛୋଟ ଦେହଟିକୁ ଚାପି ଧରି ଦେଖୁଥିଲ ତା' ମା'ର ଚିନ୍ତା, ଦୁଃଖ, ଅବସାଦରେ ଭାରାକ୍ରାନ୍ତ ମୁଖମଣ୍ଡଳକୁ । ଶାନ୍ତ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲ ସେ ।

ଜୀବନରେ ଅପରିସୀମ ଦୁଃଖକଷ୍ଟ ଅଙ୍ଗେ ନିଭାଇଥିବା, ଏ ନାରୀଟିର ଜୀବନରେ ପୁଣି ଆନନ୍ଦର ଦିନ ଆସିଲ । ଖୁସିରେ, ଆନନ୍ଦରେ, ଆଖି ଦିଓଟି ତାଙ୍କର ପୁଣି ଉଜ୍ଜ୍ୱଳ ହୋଇଉଠିଲ । ଯେଉଁ ପୁଅକୁ ଆଉ କେବେ ହୁଏତ ଜୀବନରେ ଦେଖିବେ ନାହିଁ ବୋଲି ଆଶା ଛାଡ଼ି ଦେଇଥିଲେ, ତାକୁ ଫେରିପାଇ ସତେ ଯେମିତି ଆଉ ଆଖିରୁ ଅନ୍ତର କରିବାକୁ ଚାହୁଁ ନ ଥିଲେ ସେ । ତାଙ୍କ ଆନନ୍ଦ, ଆବେଗ ଆହୁରି ଶତଗୁଣିତ ହେଲ, ଯେତେବେଳେ ତା'ର ତିନିଦିନ ପରେ, ଦିନେ ରାତି ଅଧରେ ଆର୍ଟେମ୍ ମଧ୍ୟ ନିଜର କିଟ୍‌ବ୍ୟାଗ କାନ୍ଧରେ ପକାଇ ଛୋଟ ଘରଟି ଭିତରକୁ ପଶିଆସିଲ ।

କୋର୍ଚ୍ଚାଗିନ୍ ପରିବାରର ପୁନର୍ମିଳନ ହେଲ । ଦୁଇଟିଯାକ ଭାଇ ମରଣ ମୁହଁରୁ ବର୍ତ୍ତିଛନ୍ତି । ଅନେକ ଦୁଃଖକଷ୍ଟ ଅଙ୍ଗେ ନିଭେଇ ପୁଣି ଏକାଠି ମିଳିତ ହୋଇଛନ୍ତି ।

"ଏଥର କ'ଣ କରିବାକୁ ବିଚାରିଛ ?" ମା' ତାଙ୍କ ପୁଅ ଦୁହିଁଙ୍କୁ ପଚାରିଲେ ।

"ମୁଁ ତ ମୋ ପୁରୁଣା ରେଳବାଇ କାରଖାନାକୁ ଫେରିବି ମା !" ଆନନ୍ଦରେ ଆର୍ଟେମ୍ କହିଲ ।

ଆଉ ଦିଓଟି ସପ୍ତାହ ଘରେ ବିତାଇ ପାଭେଲ୍ ପୁଣି କିଏଭ୍‌କୁ ଫେରିଗଲ, ଯେଉଁଠାରେ ତା'ର କାମ ତାକୁ ଅପେକ୍ଷା କରିଛି ।

# ପ୍ରଥମ ପରିଚ୍ଛେଦ

ରାତି ଅଧ । ଶେଷ ଟ୍ରାମ୍‌ଗାଡ଼ିଟି ମଧ୍ୟ ନିଜର ଶ୍ରାନ୍ତକ୍ଲାନ୍ତ ଦେହକୁ ଘୋଷାରି ଘୋଷାରି ନେଇ ନିଜ ଡିପୋକୁ ଫେରିଗଲାଣି । ଝରକା ବାଟ ଦେଇ ଚନ୍ଦ୍ରର ଶୀତଳ କିରଣ ବିଛଣା ଉପରେ ବିଛାଇ ହୋଇ ପଡ଼ିଛି । ବିଛଣାଟା ସଫେଦ ଜହ୍ନ ଆଲୁଅରେ ପରିଷ୍କାର ଦେଖାଯାଉଛି । ସେତିକି ଜହ୍ନ ଆଲୁଅରେ ଘର ଭିତରଟି ଈଷତ୍ ଆଲୋକରେ ଉଦ୍‌ଭାସିତ । ଗୋଟିଏ କୋଣରେ, ଉପରେ ଢାଙ୍କୁଣୀଦିଆ ଟେବୁଲ ଲ୍ୟାମ୍ପର ବୃତ୍ତାକାର ଆଲୋକ ନିକଟରେ ରୀତା ଝୁଙ୍କି ପଡ଼ିଛି ତା'ର ଟିପାଖାତା ଉପରେ । ତା'ର ପେନସିଲ ଅଗରେ ଲେଖିହୋଇଯାଉଛି ।

"ମଇ, ୨୪

ମୋର ସମସ୍ତ କଥା ଲିପିବଦ୍ଧ କରିବା ପାଇଁ ପୁଣି ଥରେ ଚେଷ୍ଟା କରୁଛି ମୁଁ । ମଝିରେ ଅନେକ ଦିନ ଛାଡ଼ିଯାଇଛି । ଶେଷ ଥର ପାଇଁ ଯେବେ ଲେଖିଥିଲି, ସେହି ଦିନଠାରୁ ପ୍ରାୟ ଛଅ ସପ୍ତାହ ବିତିଗଲାଣି, ମାତ୍ର ଲେଖିବା ସମ୍ଭବ ହୋଇ ନାହିଁ ।

ଡାଇରୀ ଲେଖିବାକୁ ବେଳ କାହିଁ ? ରାତି ଅଧ ହେଲାଣି ଏବଂ ମୁଁ ଏବେ ମଧ୍ୟ ବସି ଲେଖୁଛି । ନିଦ ଲାଗୁ ନାହିଁ । କମ୍ରେଡ୍ ସେଗାଇ୍ ଆମମାନଙ୍କୁ ଛାଡ଼ିଯାଉଛନ୍ତି । ସେ କେନ୍ଦ୍ର କମିଟିରେ କାମ କରିବା ପାଇଁ ଯାଉଛନ୍ତି । ଏ ଖବର ପାଇଲାମାତ୍ରେ, ଆମେ ସମସ୍ତେ ବିଚଳିତ ହୋଇପଡ଼ିଥିଲୁ । ଆମର ପ୍ରିୟ ଲଜାର୍ ଆଲେକ୍‌ଜାନ୍ଦ୍ରୋଭିଚ୍ ଅତି ସୁନ୍ଦର, ଭଲ ମଣିଷଟିଏ । ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ଜାଣିପାରୁ ନଥିଲି, ସତରେ ଆମମାନଙ୍କ ସହିତ କେତେ ଗାଢ଼ ବନ୍ଧୁତା ତାଙ୍କର । ସିଏ ଛାଡ଼ିଗଲେ ପରେ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦର ପଢ଼ା ଆଦୌ ହୋଇପାରିବ ନାହିଁ, କହିଲେ ଚଲେ । ଆମ ଛାତ୍ରଛାତ୍ରୀମାନଙ୍କର ପଢ଼ା କେତେଦୂର ଆଗେଇଲାଣି, ସେକଥା ତନଖି କରିବା ପାଇଁ ଆମେ ଗତକାଲି ଅନେକ ସମୟ ଯାଏ ତାଙ୍କ ଘରେ ଥିଲୁ । ଜିଲ୍ଲା କମ୍‌ସୋମୋଲ୍ କମିଟିର ସଂପାଦକ ଆକିମ୍ ଓ ସେ ତୁରୁତୁରିଆ ତୁଫ୍‌ତା ମଧ୍ୟ ଆସିଥିଲେ । ସେ ସବ୍‌ଜାନତାଟାକୁ ମୁଁ ଆଦୌ ସହ୍ୟ କରିପାରେ ନାଁ । ତାଙ୍କ ଛାତ୍ର କୋର୍ସ୍‌ଗିନ୍ ଯେତେବେଳେ ପାର୍ଟି ଇତିହାସ ସଂପର୍କରେ

ଆଲୋଚନାରେ ତୃପ୍ତାକୁ ହରେଇଦେଲେ, ସେଗାଇ୍ ଅତି ଖୁସି ହୋଇଗଲେ । ହଁ, ଏ ଦୁଇମାସ ତା' ହେଲେ ବ୍ୟର୍ଥ ହୋଇ ନାହିଁ । ଏଭଳି ଚମତ୍କାର ଫଳାଫଳ ଦେଖିଲେ, ନିଜର ପରିଶ୍ରମ ପ୍ରତି ଆସ୍ଥା ଆସେ । ଅନେକେ କୁହାକୁହି ହେଉଛନ୍ତି ଯେ, ଝୁଖ୍ରାଇ ସାମରିକ ଇଲାକାର ଏକ ବିଶେଷ ବିଭାଗକୁ ବଦଳି ହୋଇଛନ୍ତି । କାହିଁକି ଯେ ଏପରି ହେଲ, ମୁଁ ଆଶ୍ଚର୍ଯ୍ୟ ହେଉଛି ।

ଇଭାର୍ ଆଲେକ୍ଜାନ୍ଦ୍ରୋଭିଚ୍ ତାଙ୍କ ଛାତ୍ରକୁ ମୋ ଜିମା କରିଦେଇ କହିଲେ, 'ମୁଁ ଯାହା ଆରମ୍ଭ କରିଛି, ତମକୁ ତାହା ଶେଷ କରିବାକୁ ପଡ଼ିବ । ଅଧାପନ୍ତରିଆ ପଢ଼ାରେ କୌଣସି ମୂଲ୍ୟ ନାହିଁ । ରୀତା, ତମେ ଓ ସେ ପରସ୍ପରଠାରୁ ଅନେକ ଶିଖିପାରିବ । ଏବେ ବି ସେ ଟୋକାଟା ଠିକ୍ ସଂଗଠିତ ହୋଇ ପାରି ନାହିଁ । ଭାରୀ ବିକ୍ଷୁବ୍ଧ ପ୍ରକୃତି ତା'ର, ଆଉ ସହଜରେ ଭାବପ୍ରବଣତା ସୁଅରେ ସେ ଭାସିଯିବ । ମୁଁ ଭାବୁଛି, ତମେ ତା' ପାଇଁ ଉପଯୁକ୍ତ ଶିକ୍ଷକ । ମୁଁ ତମର ସଫଳତା କାମନା କରୁଛି, ରୀତା । ଦେଖ, ମୋତେ ମସ୍କୋ ଠିକଣାରେ ସବୁ ଜଣାଇବାକୁ ଯେମିତି ଭୁଲି ନଯାଅ ।'

ଆଜି କେନ୍ଦ୍ର କମିଟି ପକ୍ଷରୁ ସୋଲୋମେଙ୍କା ଜିଲ୍ଲ କମିଟି ପାଇଁ ଜଣେ ନୂଆ ସଂପାଦକ ଆସିଲେ । ତାଙ୍କ ନାଁ ଝାର୍କୀ । ସେନାବାହିନୀରେ ମୁଁ ତାଙ୍କୁ ଜାଣିଛି ।

କାଲି ଦ୍ମିତ୍ରି ଦୁବାଭା କୋର୍ଚ୍ଚାଗିନ୍‌କୁ ଆଣିବେ । ଦୁବାଭାଙ୍କ ବିଷୟରେ ଲେଖେଁ । ମଧ୍ୟମ ଉଚ୍ଚତାର, ଶକ୍ତ, ସବଳ ମଣିଷଟିଏ । ୧୯୧୮ରେ କମ୍‌ସୋମୋଲ୍‌ରେ ଯୋଗଦେଇଛନ୍ତି । ୧୯୨୦ରୁ ପାର୍ଟି ସଭ୍ୟ ହେଲେଣି । ଯେଉଁ ତିନିଜଣ "ଶ୍ରମିକଙ୍କୁ ବିରୋଧ କରୁଥିଲେ" ବୋଲି ଜିଲ୍ଲ କମିଟିରୁ ବିତାଡ଼ିତ ହୋଇଥିଲେ, ସେମାନଙ୍କ ମଧ୍ୟରୁ ଦୁବାଭା ଜଣେ । ତାଙ୍କୁ ଶିକ୍ଷାଦେବା ସହଜ ନୁହେଁ । ପ୍ରତିଦିନ ସେ ଅସଂଖ୍ୟ ପ୍ରଶ୍ନ ପଗ୍ଭରି ମୂଳ ବିଷୟରୁ ଆମକୁ କୁଆଡ଼େ ବୋଲି କୁଆଡ଼େ ଟାଣିନିଅନ୍ତି । ସିଏ ଏବଂ ମୋର ଆଉ ଛାତ୍ରୀ, ଓଲ୍‌ଗା ୟୁରେନେଭାଙ୍କ ଭିତରେ ଆଦୌ ପଡ଼େ ନାହିଁ । ପ୍ରଥମ ସାକ୍ଷାତ୍‌ରେ ସେ ୟୁରେନେଭାକୁ ଅପମାନକରି କହିଲ, 'ତମ ଚେହେରା, ପୋଷାକପତ୍ର ଭାରୀ ଅବାଗିଆ, ବୁଝିଲ, ତମେ ଚମଡ଼ା ବନ୍ଧା ପ୍ୟାଣ୍ଟ, ଗ୍ଭବୁକ, ଟୋପି ଲଗାଅ, ଅଣ୍ଟାରେ ତରବାରି ଝୁଲାଅ । ଏମିତି ବେଶରେ ତମେ ଝିଅକି ପୁଅ ଜଣାଯାଉନ ।'

ଓଲ୍‌ଗା ବି ରାଗିଯାଇଥିଲ । ସହିପାରିଲ ନାହିଁ କଥାଟା । ମୋତେ ସମାଧାନ କରିବାକୁ ପଡ଼ିଲ । ମୋର ଧାରଣା ଦୁବାଭା କୋର୍ଚ୍ଚାଗିନ୍‌ର ଜଣେ ବନ୍ଧୁ ।

ଆଜି ରାତିରେ ଏତିକି ଥାଉ, ନିଦ ମାଡ଼ିଲଣି ।"

* * *

ପ୍ରଖର ସୂର୍ଯ୍ୟ କିରଣରେ ସାରା ପୃଥିବୀ ସିଝିଥାଏ । ରେଳ ପ୍ଲାଟ୍‌ଫର୍ମର ଫୁଟ୍‌ବ୍ରିଜର ଲୁହା ରେଲିଂଗୁଡ଼ାକ ତାତିରେ ଛୁଇଁ ହେଉ ନଥାଏ । ଖରା ଧାସରେ, କ୍ଲାନ୍ତଶ୍ରାନ୍ତ ଅନେକ

ଲୋକ ରେଳପୋଲ ଉପରେ ଚଢ଼ିଥାନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ଯାତ୍ରୀ ନୁହନ୍ତି । ଅଧିକାଂଶ ରେଳବାଇ ଲୋକ, ଯେଉଁମାନେ ସହରକୁ ରେଳପୋଲ ଦେଇ ଯାଆନ୍ତି ଅଳ୍ପ ବାଟ ପଡ଼ିବ ବୋଲି ।

ରେଇପୋଲ ଉପରେ ଚଢ଼ି ଆସୁଆସୁ ପାଭେଲ୍ ରୀତାକୁ ଦେଖିଲା । ରୀତା ତା'ଆଗରୁ ଷ୍ଟେସନକୁ ଆସିଯାଇଛି ଏବଂ ରେଳପୋଲ ଦେଇ ଆସୁଥିବା ଲୋକମାନଙ୍କୁ ଅନାଇ ଅନାଇ ଦେଖୁଛି ।

ତା'ଠାରୁ ତିନିପାଦ ପଛରେ ପାଭେଲ୍ ଠିଆହେଲା । ରୀତା ତାକୁ ଲକ୍ଷ୍ୟ କରିପାରି ନାହିଁ । ଏକ ନୂଆ ଆଗ୍ରହ ନେଇ ସେ ରୀତାକୁ ଦେଖିଲା ଆଜି । ରୀତା ପିନ୍ଧିଥିଲା ଏକ ଗାରିଗାରିକା ବ୍ଲାଉଜ୍ ଓ ଛୋଟ ନୀଳରଙ୍ଗର ସାର୍ଟ । ଶସ୍ତା କନାର ବୋଧହୁଏ । କାନ୍ଧରୁ ତା'ର ଝୁଲୁଥିଲା ଛୋଟ ଚମଡ଼ା ଜ୍ୟାକେଟ୍‌ଟାଏ । ଖରା ତାତିରେ ଲାଲ ପଡ଼ିଯାଇଥିବା ମୁହଁ ଉପରେ ତା'ର ଉଡ଼ିବୁଲୁଥିଲା ଚୂନାଚୂନା ଅମାନିଆଁ ବାଳ କେରାଏ । ମୁଣ୍ଡକୁ ଟିକେ ପଛକୁ ଝୁଙ୍କାଇ, ଆଖିଦୁଇଟାକୁ ଟିକେ ଛୋଟ କରି ଖରାର ଉଜ୍ଜ୍ୱଳତା ସହି ନ ପାରିବା ପାଇଁ ଛିଡ଼ା ହୋଇଥିଲା ସେ । ଏଇ ପ୍ରଥମ ଥର ପାଇଁ କୋର୍ଚ୍ଚାଗିନ୍‌ର ଧାରଣା ହେଲା ଯେ, ତା'ର ବନ୍ଧୁ ଏବଂ ଶିକ୍ଷକ ରୀତା, କେବଳ ଜିଲ୍ଲା କମ୍‌ସୋମୋଲ୍ କମିଟିର ଜଣେ ସଭ୍ୟ ନୁହଁ – ସେ ଗୋଟିଏ ନାରୀ ମଧ୍ୟ ... । ଏଭଳି "ପାପ କଥା" ମନକୁ ଆସୁଛି ବୋଲି, ନିଜ ଉପରେ ନିଜେ ବିରକ୍ତ ହୋଇ ସେ ରୀତାକୁ ଡାକିଲା ।

"ମୁଁ ତମକୁ ଏଇଠି ଏମିତି ଘଣ୍ଟାଏ ହେଲା ଅନାଇ ଛିଡ଼ା ହୋଇଛି, ମାତ୍ର ତମେ ବୁଲିକରି ଚାହୁଁ ନ", ହସିହସି କହିଲା ସେ । "ଆସ, ଆମ ଗାଡ଼ିଟା ଆସିଗଲାଣି ।"

ପ୍ଲାଟ୍‌ଫର୍ମ ଭିତରକୁ ପଶିବା ଦୁଆରମୁହଁକୁ ଆସିଲେ ସେମାନେ ।

ତା' ଆଗଦିନ ଆଞ୍ଚଳିକ କମ୍‌ସୋମୋଲ୍ କମିଟି ରୀତାକୁ ଜିଲ୍ଲା କମ୍‌ସୋମୋଲ୍ ସମ୍ମିଳନୀରେ ଭାଗ ନେବା ପାଇଁ ବିଶେଷ ପ୍ରତିନିଧି ରୂପେ ନିର୍ବାଚିତ କରିଥାନ୍ତି ଏବଂ କୋର୍ଚ୍ଚାଗିନ୍‌କୁ ତା'ର ସହକାରୀ ଭାବରେ ଯିବାର କଥା । ତାଙ୍କର ବର୍ତ୍ତମାନର ସମସ୍ୟା ହେଲା କେମିତି ଗାଡ଼ିରେ ଚଢ଼ିବେ । କାରଣ ଗାଡ଼ିରେ ଚଢ଼ିବା ଅତ୍ୟନ୍ତ ଦୁଃସାଧ୍ୟ ବ୍ୟାପାର । ଏଭଳି ବିଶେଷ ବିଶେଷ ସମୟରେ ରେଳଷ୍ଟେସନ୍ ଏକ ଅଶେଷ କ୍ଷମତାସମ୍ପନ୍ନ ପାଞ୍ଚଜଣିଆ କମିଟି ହାତରେ ଛାଡ଼ିଦିଆଯାଏ । ସେମାନଙ୍କଠାରୁ ଅନୁମତିପତ୍ର ନ ଆଣିଲେ କାହାକୁ ଗାଡ଼ି ଚଢ଼ିବା ତ ଦୂରର କଥା, ପ୍ଲାଟ୍‌ଫର୍ମ ଭିତରକୁ ଛାଡ଼ିଦିଆଯାଏ ନାଁ । ପ୍ଲାଟ୍‌ଫର୍ମ ଭିତରକୁ ଯିବା ଓ ବାହାରିବାର ପ୍ରତିଟି ରାସ୍ତାରେ କମିଟିର ଲୋକେ ଜଗିରହିଥାନ୍ତି । ରେଳରେ ଏତେ ଭିଡ଼ ହୋଇଥାଏ ଯେ, ଅପେକ୍ଷମାଣ ଲୋକଙ୍କ ମଧ୍ୟରୁ ଏକ ଭଗ୍ନାଂଶ ମାତ୍ର ସେଥିରେ ଯାଇପାରିବେ କି ନାହିଁ ସନ୍ଦେହ । ମାତ୍ର ପରେ କେତେବେଳେ ଆଉ ଗୋଟାଏ ଟ୍ରେନ୍ ଆସି ସେମାନଙ୍କୁ ନେବ କି ନନେବ, ସେଥିପାଇଁ ଅପେକ୍ଷା କରି ରହିଯିବା ପାଇଁ କେହି ପ୍ରସ୍ତୁତ ନୁହନ୍ତି । ତେଣୁ ହଜାର ହଜାର ଲୋକ ପ୍ଲାଟ୍‌ଫର୍ମ ଦୁଆରମୁହଁରେ ଠେଲାପେଲା ଲଗାଇଥାନ୍ତି ରେଳରେ ଯିବା ପାଇଁ । ସେତେବେଳର

ପ୍ଲାଟ୍‌ଫର୍ମ ଓ ରେଳ ଯାତାୟାତର ଅବସ୍ଥା ହିଁ ଏମିତି ଥିଲା ଏବଂ ବେଳେବେଳେ ସତରେ ଯୁଦ୍ଧ ଲାଗିଯାଏ ସେଠାରେ ।

ପ୍ଲାଟ୍‌ଫର୍ମ ପ୍ରବେଶ ପଥରେ ଭିଡ଼ ଲଗାଇଥିବା ଲୋକମାନଙ୍କୁ ଠେଲିପେଲି ପଶିବା ପାଇଁ ବ୍ୟର୍ଥ ଚେଷ୍ଟା କରିସାରିଲା ପରେ, ପାଭେଲ୍ ରୀତାକୁ ଲଗେଜରୁମ୍ ବାଟ ଦେଇ ଆଗେଇନେଲା, କାରଣ ତାକୁ ଆଗରୁ ପ୍ଲାଟ୍‌ଫର୍ମର କହିବିକହି ସବୁ ଜଣାଥିଲା । ବହୁକଷ୍ଟରେ ସେମାନେ ଗ୍ରରି ନମ୍ବର ଗାଡ଼ି ପାଖରେ ପହଞ୍ଚିଲେ । ଡବା ଦୁଆର ମୁହଁରେ କମିଟିର ଜଗୁଆଳୀ ଜଣେ ଲୋକ ଗଳଦଘର୍ମ ହୋଇ ଠିଆ ହୋଇଛି । ଜନଗହଳିକୁ ଆଗେଇବାକୁ ନ ଦେବା ପାଇଁ ହାତ ମେଲାଇ ରହିଛି । ପାଟିକରି କହୁଛି :

"ଗାଡ଼ି ଭିତରେ ଆଉ ଜାଗା ନାହିଁ । ଛାତ ଉପରେ କିମ୍ବା ବଫର ଉପରେ ଯିବା ବେଆଇନ କାମ ।"

ଲୋକମାନେ ତା' ନାକ ଆଗରେ କମିଟି ଦେଇଥିବା ଟିକେଟ୍ ସବୁ ହଲାଉଥାନ୍ତି । ଉଦ୍‌ଯ୍ୟକ୍ତ ଗାଳିଗୁଲଜ, ପାଟିଗୋଳରେ ସାରା ଗାଡ଼ିଟା ମୁଖରିତ ହୋଇଉଠିଥାଏ । ପାଭେଲ୍ ଦେଖିଲା, ଏଭଳି ଉପାୟରେ ଗାଡ଼ିରେ ଚଢ଼ିବା ଅସମ୍ଭବ ଏବଂ ଦୁହିଁଙ୍କୁ ଯେପରି ହେଉ ଯିବାକୁ ପଡ଼ିବ, ନଚେତ୍ ସର୍ମିଳନୀ ବସିବ ନାହିଁ ।

ରୀତାକୁ କଡ଼କୁ ଡାକିନେଇ ସେ ନିଜର ଯୋଜନା ଓ କର୍ମପଦ୍ଧତି ବର୍ଣ୍ଣନା କଲା । ସିଏ ଏକ ଖୋଲା ଝରକା ବାଟ ଦେଇ ଠେଲିପେଲି ଭିତରକୁ ପଶିଯିବ ଏବଂ ତା'ପରେ ରୀତାକୁ ସେଇ ବାଟ ଦେଇ ଚଢ଼ିଯିବାକୁ ସାହାଯ୍ୟ କରିବ । ଆଉ କୌଣସି ପନ୍ଥା ନାହିଁ ।

"ମୋତେ ତମର ଜ୍ୟାକେଟ୍‌ଟା ଦିଅ—ସେଇଟା ପରିଚୟପତ୍ର ଅପେକ୍ଷା ଅଧିକ କାମରେ ଆସିବ ।"

ଜ୍ୟାକେଟ୍ ଗଳେଇନେଲା ସେ ଦେହରେ ଏବଂ ରିଭଲଭରଟାକୁ ପକେଟ୍‌ରେ ପୂରାଇଲା, ଯେପରିକି ତା'ର ଫିତାଟା ଓ ମୁଠିଟା ବାହାରକୁ ଦିଶିବ । ବ୍ୟାଗଟିକୁ ରୀତା ଜିମ୍ମାରେ ରଖି ସେ ଗାଡ଼ି ପାଖକୁ ଆଗେଇଗଲା । ଉତ୍ତେଜିତ ଯାତ୍ରୀମାନଙ୍କ ଆଖି ଆଗରେ ଚଢ଼ିଯାଇ ହାତମୁଠାଟା ଧରିପକାଇଲା ।

"ହେ କମ୍ରେଡ୍, କୁଆଡ଼େ ଚଢ଼ୁଛ ସେବାଟେ ?"

ପାଭେଲ୍ ଚେକା କମିଟିର ଲୋକଟିକୁ ବୁଲିପଡ଼ି ଅନାଇଲା ବେଖାତିର ଭାବରେ ।

"ମୁଁ ବିଶେଷ ବିଭାଗର ଲୋକ । ମୁଁ ଦେଖିବାକୁ ଯାଉଛି, ଡବାର ପ୍ରତ୍ୟେକ ଯାତ୍ରୀଙ୍କ ନିକଟରେ କମିଟିର ଦିଆହୋଇଥିବା ଟିକେଟ୍ ଅଛି କି ନାହିଁ ।" ତା' କଣ୍ଠସ୍ୱରରୁ ଜଣାଯାଉଥାଏ ତା' ଆଧିପତ୍ୟ ।

ଲୋକଟି ପାଭେଲ୍ ପକେଟ୍‌କୁ ଗ୍ରହିଁଲା ଏବଂ କପାଳରୁ ଝାଳ ପୋଛି କହିଲା :

"ଯାଅ, ଯଦି ଭିତରକୁ କୌଣସିମତେ ପଶିପାର ।"

ଦୁଆରମୁହଁରେ ନିଜ ମାଇପତ୍ର ଉପରେ ବସିରହିଥିବା ଲୋକଙ୍କ ଉପର ଦେଇ, ଉପର ବର୍ଥର ଫେମ୍‌ଟାକୁ ଧରି, ନିଜ ହାତ, କାନ୍ଧ, ମୁଠା ଦେଇ ଠେଲିପେଲି, ଭିଡ଼ିମୋଡ଼ି

ହୋଇ ଚତୁର୍ଦ୍ଦିଗର ଲୋକଙ୍କର ତା'ଉପରେ ହେଉଥିବା ଗାଳିବର୍ଷଣକୁ ଉପେକ୍ଷା କରି ପାଭେଲ୍ ଡବା ଭିତରକୁ ପଶିଗଲା କୌଣସିମତେ ।

"ତମକୁ ଦେଖାଯାଉ ନାହିଁ କି ? ମଣିଷ ଉପରେ ଚଢ଼ିଯାଉଛ ?" ମୋଟାସୋଟା ସ୍ତ୍ରୀଲୋକଟିଏ ପାଟିକରି କହିଲା । କାରଣ ପାଭେଲ୍ ତା' ପାଦ ଚକଟି ପକାଇଥିଲା, ଝରକା ବାଟ ଦେଇ ଉପରକୁ ପଶି ସେ ତଳକୁ ଓହ୍ଲାଇଲାବେଳେ । ତା'ର ଦେଢ଼ ମହଣର ବିପୁଳ ଦେହଟିକୁ କୌଣସିମତେ ଗୋଟିଏ ସିଟ୍‌ର କଡ଼କୁ ରଖିବାକୁ ଚେଷ୍ଟା କରୁଥିଲା ମହିଳାଟି – ଦି'ଆଣ୍ଠୁ ମଝିରେ ତା'ର ଗୋଟାଏ ବିରାଟ ଟେଲଟିଣ । ଆଖପାଖର ଜିନିଷଥୁଆ ଥାକଗୁଡ଼ାକ ସାରା ସେଇଭଳି ଟେଲଟିଣଗୁଡ଼ାକ ଆଉ ଅଖା ପଟସବୁ ଥୁଆହୋଇଥାଏ । ଡବା ଭିତରର ପବନ ରୁଦ୍ଧ ହୋଇଯାଉଥାଏ ।

ତା' ଗାଳିକୁ ଉପେକ୍ଷା କରି ପାଭେଲ୍ ପଚାରିଲା :

"ତମ ଟିକେଟ୍‌ଟା ଦୟାକରି ଦେଖାଇଲ ।"

"କ'ଣ ମୋର ?" ମହିଳା ଜଣକ ଚିଡ଼ିଉଠି କହିଲା ଆଗନ୍ତୁକ ଟିକେଟ୍ କଲେକ୍‌ଟରକୁ ।

ସବାଉପର ବର୍ଥରୁ ଗୋଟାଏ ମୁଣ୍ଡ ଦେଖାଗଲା ଏବଂ କର୍କଶ ଗଳାରେ ଶୁଭିଲା ତଳୁ :

"ଭାସ୍‌କା, ଦେଖିଲୁ ଏ ଲୋକଟା କ'ଣ ମାଗିଲାଣି ଆସି ? ତାକୁ ଦବୁଟି ଗୋଟାଏ ଟିକେଟ୍ ସେପାରିକୁ ଯିବାକୁ ।"

ଭାସ୍‌କା ବୋଲି ଲୋକଟିର ଲୋମଶ ଛାତି ଓ ବିରାଟ ଦେହ ପାଭେଲ୍‌ର ମୁଣ୍ଡ ଉପରେ ଠିକ ଉପରୁ ଝୁଙ୍କିପଡ଼ି ତା'ର ଲାଲ୍‌ଲାଲ୍ ଡିମାଡିମା ଆଖିରେ ଅନାଇରହିଲା ।

"ଏଃ, ସେ ସ୍ତ୍ରୀଲୋକ ସାଙ୍ଗେ କାହିଁକି ଲାଗିଛୁ ? ଟିକେଟ୍ ତୋର କାହିଁକି ଦରକାର ପଡ଼ୁଛି ?"

ଉପର ବର୍ଥରୁ ଗ୍ରାରିଯୋଡ଼ା ଗୋଡ଼ ଝୁଲିପଡ଼ିଲା । ସେସବୁର ମାଲିକମାନେ ପରସ୍ପର କାନ୍ଧରେ ହାତଛନ୍ଦି, ସୂର୍ଯ୍ୟମୁଖୀ ମଞ୍ଜି ଖେଉଛନ୍ତି କଡ଼ମଡ଼ ଶବ୍ଦ କରି । ସେମାନଙ୍କ ମୁହଁ ଉପରେ ଗୋଟିଏ ମାତ୍ର ଥର ଆଖି ବୁଲାଇଆଣି ପାଭେଲ୍ ଜାଣିପାରିଲା କିଏ ଏମାନେ : ଦଳେ ଖାଦ୍ୟ ଜିନିଷର କଳାବଜାରୀ । ଦେଶର ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ଏମାନେ ଏମିତି ବୁଲିବୁଲି ଖାଦ୍ୟଜିନିଷ ଶସ୍ତାରେ କିଣନ୍ତି ଗ୍ରାମୀମାନଙ୍କଠାରୁ ଓ ତା'ପରେ ଅଭାବ ପଡ଼ିଲେ, କଳାବଜାରରେ ଚଢ଼ା ଦରରେ ବିକନ୍ତି । ଏମାନଙ୍କ ସହିତ ନଷ୍ଟ କରିବା ପାଇଁ ସମୟ ନଥିଲା ପାଭେଲ୍‌ର ।

ରୀତାକୁ କୌଣସିମତେ ଉପରକୁ ଆଣିବାକୁ ପଡ଼ିବ ।

ରେଳବାଇ ପୋଷାକପିନ୍ଧା ଜଣେ ଲୋକଙ୍କୁ ସେ ପଚାରିଲା, "ଏଇଟା କାହା ବାକ୍‌ସ ?" ଠିକ୍ ଝରକା ତଳକୁ ଥୁଆହୋଇଥିବା ଗୋଟାଏ ବିରାଟ କାଠ ବାକ୍‌ସକୁ ଦେଖାଇ ।

"ସେଇ ସ୍ତୀଲୋକର", ବାଦାମୀ ମୋଜାପିନ୍ଧା ଦୁଇଟା ମୋଟା ମୋଟା ଗୋଡ଼କୁ ଦେଖାଇଦେଇ ସେ କହିଲା ।

କୌଣସିମତେ ବାକ୍‌ସଟାକୁ ଘୁଞ୍ଚାଇ ଝରକାଟାକୁ ଖୋଲିବାକୁ ପଡ଼ିବ । ଆଉ କୌଣସିଠାରେ ଜାଗା ନପାଇ ପାଭେଲ୍ ସେ ବାକ୍‌ସଟାକୁ ଟେକିନେଇ ତା'ମାଲିକାଣୀ ଉପରେ ଥୋଇଦେଲା ।

"ଏଇଟାକୁ ଟିକେ ଧରନ୍ତୁ—ମୁଁ ଝରକାଟା ଖୋଲିବି ।"

"ଏଃ, ମୋ ଜିନିଷପତ୍ରରେ ହାତ ଲଗାନା କହିଦେଉଛି", ଚେପ୍‌ଟିନାକୀ ସ୍ତୀଲୋକଟି ପାଟି କରିଉଠିଲା ପାଭେଲ୍ ତା' ଜଙ୍ଘ ଉପରେ ବାକ୍‌ସଟିକୁ ଥୋଇ ଦେଉଦେଉ ।

"ମୋଟ୍‌କା, ଏ ଲୋକଟା କ'ଣ ଏମିତି ହଉଛିରେ ?" ତା'ପାଖରେ ବସିଥିବା ଲୋକଟାକୁ ପାଟିକରି କହିଲା ସେ । ପୁରୁଷ ଜଣକ ତା' ସାଣ୍ଡାଲ ପିନ୍ଧା ପାଦରେ ପାଭେଲ୍ ପିଠିକୁ କଷିକରି ଏକ ଗୋଇଠା ପକାଇଲା ।

"ଏ ଟୋକା ଶୁଣ୍, ଏଠୁ ପଳା ! ନହେଲେ ତୋ ନାକ ଫଟାଇଦେବି !"

ପାଭେଲ୍ ନୀରବରେ ଗୋଇଠା ମାଡ଼ ସହି ଝରକା ଫିଟାଇବାରେ ଲାଗିଲା । ରେଳବାଇ କର୍ମଚାରୀ ଜଣଙ୍କୁ କହିଲା, "ଟିକେ ଘୁଞ୍ଚି ବସନ୍ତୁ ।"

ଆଉ ଗୋଟାଏ ଚେଇଟିଣ ହଟାଇ ପାଭେଲ୍ ଝରକା ରାସ୍ତାଟାକୁ ସଫା କରିଦେଲା । ତଳେ ପ୍ଲାଟ୍‌ଫର୍ମ ଉପରେ ଠିଆ ହୋଇଥିଲା ରୀତା । ପାଭେଲ୍ ହାତକୁ ବ୍ୟାଗଟା ବଢ଼ାଇଦେଲା ସେ । ବ୍ୟାଗଟାକୁ ସେ ମୋଟାସୋଟା ସ୍ତୀଲୋକର ଜଙ୍ଘ ଉପରକୁ ଫୋପାଡ଼ିଦେଇ ପାଭେଲ୍ ନଇଁପଡ଼ି ରୀତା ହାତ ଦୁଇଟାକୁ ଧରି ଭିତରକୁ ଉଠାଇଆଣିଲା । ବେଆଇନ୍ କାମ ଘଟିଗଲା ବୋଲି ଜଗୁଆଳୀଟି ଲକ୍ଷ୍ୟ କରିବା ଆଗରୁ, ରୀତା ଡବା ଭିତରକୁ ଆସିଲାଣି । ଠକ ଦଳଯାକ ରୀତାକୁ ଦେଖି ଏମିତି ଚିତ୍କାର କରିଉଠିଲେ ଯେ, ରୀତା ଆଶ୍ଚର୍ଯ୍ୟ ହୋଇଗଲା । ଡବାରେ ଆଉ ଠିଆ ହେବା ପାଇଁ ମଧ୍ୟ ଟିକେ ଜାଗା ନଥିବାରୁ ରୀତା ସେଇ ତଳ ବର୍ଥର ଧାରରେ, ଉପର ବର୍ଥକୁ ଧରି ଛିଡ଼ା ହୋଇ ରହିଲା । ଡବା ଭିତରୁ ଘରିଆଡ଼ୁ ତୀବ୍ର ଗାଳି ବର୍ଷିବାକୁ ଲାଗିଲା । ଉପରୁ ଘଡ଼ଘଡ଼ିଆ ସ୍ୱରରେ ଶୁଭିଲା :

"ଦେଖ ସେ ବଜାତ୍‌ଟାକୁ—ନିଜେ ତ ପଶିଆସିଲା, ଏବେ ସାଙ୍ଗ ମାଇକିନାଟାକୁ ପୂରାଇ ଆଣିଲାଣି !"

ଉପରୁ ଆଉ ଗୋଟାଏ ସ୍ୱର ଶୁଭିଲା :

"ମୋଟ୍‌କା, ତା' ଆଖିଟା ଉପାଡ଼ି ଆଣିବୁଟି !"

ଉପରେ ବସିଥିବା ସ୍ତୀଲୋକଟି ପାଭେଲ୍ ମୁଣ୍ଡ ଉପରେ କାଠ ବାକ୍‌ସଟିକୁ ଥୋଇଦେବାକୁ ଯଥାସାଧ୍ୟ ଚେଷ୍ଟା କରୁଥିଲା । ଦୁଇଜଣଯାକ ନବାଗତଙ୍କୁ ଏଭଳି ଖରାପ ଅବସ୍ଥାରେ ପଡ଼ିବାକୁ ହେଲା, ପୁଣି ଏମିତି ପଶୁ ଭଳି ଲୋକଙ୍କ ଦ୍ୱାରା । ରୀତା ଏଭଳି

ଅବସ୍ଥାରେ ସମ୍ମୁଖୀନ ହେଲ ବୋଲି ଦୁଃଖିତ ହେଉଥିଲ ପାରେଲ୍, ମାତ୍ର ଆଉ କୌଣସି ଗତି ନଥିଲ ।

"ତମ ଅଖାଗୁଡ଼ାକ ଘୁଞ୍ଚାଇ କମ୍ରେଡ୍‌କୁ ଛିଡ଼ା ହେବାକୁ ଟିକେ ଜାଗା ଦିଅ", ମୋଟ୍‌କା ବୋଲି ଲୋକକୁ କହିଲ ସେ । ମାତ୍ର ଏମିତି ଅଭଦ୍ର ଭାଷାରେ ଉତ୍ତର ଶୁଣିଲ ଯେ, ସେ ରାଗରେ ଥରିଗଲ । ତା'ର ଡାହାଣ ଆଖିପତା ଉତ୍ତେଜନାରେ ଡେଇଁବାକୁ ଲଗିଲ ।

"ରହ, ଏଥିପାଇଁ ତୋତେ ଉପଯୁକ୍ତ ଶିକ୍ଷା ଦେବି, ବଦ୍‌ମାସ", ଏତିକି କହୁକହୁ ମୁଣ୍ଡ ଉପରେ ଠିକ୍ ଗୋଟାଏ ଗୋଇଠା ଖାଇଲ ସେ ।

"ବଢ଼ିଆ ହୋଇଛି ଭାସ୍‌କା, ଆଉ ଗୋଟାଏ ଥୋ", ଘରିଆଡ଼ୁ ଶୁଭିଲ ।

ପାଭେଲ୍ ଆଉ ନିଜକୁ ସଂଯତ ରଖିପାରିଲ ନାହିଁ । ତା'ର ଧୈର୍ଯ୍ୟ ଭାଙ୍ଗିଗଲ ଏବଂ ଏମିତି ସବୁ ସମୟରେ ତା' କାର୍ଯ୍ୟପନ୍ଥା ଦ୍ରୁତ ଏବଂ ନିଶ୍ଚିତ ହୋଇଥାଏ ।

"ଆଚ୍ଛା ! ବଜ୍ଜାତ୍ କଳାବଜାରୀ ଦଳ, ତମେ ଭାବିଛ ଏମିତି ଖସିଯିବ ?" ସେ ପାଟି କରିଉଠିଲ ଏବଂ ନିଜେ ଉପର ବର୍ଥକୁ ଉହୁଁକିଯାଇ, ମୋଟ୍‌କା ବୋଲି ଲୋକଟାର ମୁହଁ ଉପରେ ଗୋଟାଏ ମୁଥି ବସାଇଲ । କଳାବଜାରୀଟି ଅନ୍ୟମାନଙ୍କ ଉପରେ ଢଳିପଡ଼ିଲ ।

"ଏଠୁ ବାହାର ସବୁ, ନହେଲେ ତମ ସମସ୍ତଙ୍କୁ ଗୋଟିଗୋଟି କରି ଗୁଳି କରିଦେବି", ପାଭେଲ୍ ସେ ଘରିଜଣଯାକଙ୍କ ଆଗରେ ନିଜର ରିଭଲଭର ହଲଇ କହିଲ ।

ଅବସ୍ଥା ବଦଳିଗଲ ଏଥର । ରୀତା ଅତି ବ୍ୟଗ୍ରତାର ସହିତ ସବୁ ଲକ୍ଷ୍ୟ କରୁଥାଏ ଏବଂ ପ୍ରସ୍ତୁତ ହୋଇଥାଏ ଯଦି କେହି କୋର୍ଗିନ୍‌କୁ ଆକ୍ରମଣ କରେ, ତାକୁ ଗୁଳି କରିବା ପାଇଁ । ଉପର ବର୍ଥଟି ସଙ୍ଗେ ସଙ୍ଗେ ଖାଲି ହୋଇଗଲ । ଦଳଟାଯାକ ତୁରନ୍ତ ପାଖ ଡବାକୁ ଘଲିଗଲେ ।

ରୀତାକୁ ଶୂନ୍ୟ ଉପର ବର୍ଥ ଉପରେ ଚଢ଼ି ବସିବାକୁ ସାହାଯ୍ୟ କରୁକରୁ ସେ ଫୁସ୍ ଫୁସ୍ କରି କହିଲ :

"ତମେ ଏଠି ବସ, ମୁଁ ସେମାନଙ୍କୁ ଟିକେ ଦେଖିଆସେ ।"

ତାକୁ ରୋକିବାକୁ ଚେଷ୍ଟା କଲ ରୀତା, "ତମେ କ'ଣ ଯାଇ ତାଙ୍କ ସାଙ୍ଗେ ଲଢ଼ିବ ?"

"ନାଁ, ନାଁ, ମୁଁ ଏଇନେ ଆସୁଛି ।"

ସେ ପୁଣି ଥରେ ଝରକାଟାକୁ ଫିଟାଇ ପ୍ଲାଟ୍‌ଫର୍ମ ଉପରକୁ ଡେଇଁ ପଡ଼ିଲ । ଯାଇଁ ପରିବହନ ଚେକା କମିଟିର ବୁର୍‌ମିଷ୍ଟରଙ୍କ ସହିତ ଆଲୋଚନା କଲ । ସବୁ ଶୁଣି ସେ ପୁରା ଡବାଟାକୁ ଖାଲି କରିବା ପାଇଁ ଆଦେଶ ଦେଲେ ଏବଂ ଯାତ୍ରୀମାନଙ୍କର ଟିକେଟ୍ ଚେକ୍ କରିବା ପାଇଁ ମଧ୍ୟ ।

"ସେଇଆ ମୁଁ ମଧ୍ୟ ଭାବୁଥିଲି । ସାରା ରେଳଟାରେ ଏଇ ଘୋରାବଜାରୀ ଭର୍ତ୍ତି ହୋଇଛନ୍ତି", ବୁର୍‌ମିଷ୍ଟର କହିଲେ ।

ଦଶଜଣ କର୍ମଗ୍ଧରୀ ଡବାଟାକୁ ଖାଲି କରିଦେଲେ । ନିଜର ପୁରୁଣା ଡିଉଟି ନେଇ ପାଭେଲ୍ ସେମାନଙ୍କ କାଗଜପତ୍ର ଚନଖି କରିବାରେ ସାହାଯ୍ୟ କଲ । ସେ ଏପର୍ଯ୍ୟନ୍ତ କମିଟି ସହିତ ନିଜର ସବୁ ସଂପର୍କ ଛିନ୍ନ କରି ନଥିଲ ଏବଂ କମ୍‌ସୋମୋଲ୍ କମିଟିର ସଂପାଦକ ଭାବରେ ସେଠାକୁ ଦଶଜଣ ବଛା ବଛା କମ୍ରେଡ୍ ମଧ୍ୟ ଯୋଗାଡ଼ କରିଦେଇଥିଲ କାମ କରିବା ପାଇଁ । ଚନଖି ସରିଲ ପରେ ପାଭେଲ୍ ରୀତା ପାଖକୁ ଆସିଲ । ବର୍ତ୍ତମାନ ଡବାଟି ସାରା ଭିନ୍ନ ଧରଣର ଯାତ୍ରୀମାନେ ବସିଥିଲେ । ଲଲ୍ ଫୌଜୀ ଲେକ, ଅଫିସ୍ କର୍ମଗ୍ଧରୀ, କାରଖାନାର ଶ୍ରମିକ, ବ୍ୟବସାୟୀ ଆଦି ଯାତ୍ରୀରେ ଡବାଟି ଭରପୂର ଥିଲ ।

ଗୋଟିଏ କୋଣରେ ଥିବା ସବା ଉପର ବର୍ଥରେ ବସିଥିଲେ ରୀତା ଓ ପାଭେଲ୍ । ମାତ୍ର ବର୍ଥଟିର ଏତେ ଅଂଶରେ ଖବରକାଗଜଗୁଡ଼ାକ ରହିଥିଲ ଯେ, କେବଳ ରୀତା ଟିକେ ଡଳିପଡ଼ିବାକୁ ବା ଶୋଇପଡ଼ିବାକୁ ଜାଗା ଥିଲ ।

"କିଛି ଚିନ୍ତା କର ନାହିଁ, କୌଣସିମତେ ଚଳାଇନେବା", ରୀତା କହିଲ ।

ଶେଷରେ ଟ୍ରେନ୍ ଛାଡ଼ିଲ । ଧୀରେ ଧୀରେ ଷ୍ଟେସନ୍‌ରୁ ଛାଡ଼ିଲବେଳକୁ ସେମାନେ ଦେଖିଲେ ମୋଟା ଖ୍ୱାଲେକଟି ପ୍ଲାଟ୍‌ଫର୍ମ ଉପରେ ଥିବା କାଠ ବାକ୍‌ସ ଉପରେ ବସିଛି ଓ ପାଟିକରି କହୁଛି, "ହେ, ମାନ୍‌କା ମୋ ଡେଇଟିଣଟା କୁଆଡ଼େ ଗଲ ?"

ଖବରକାଗଜ ଗଦା ଭିତରେ ଅଳ୍ପ ଜାଗାରେ ଜାକିଜୁକି ହୋଇ ବସି ପାଉଁରୁଟି ଓ ଆପେଲ ଗ୍ଧେବାଇ ଗ୍ଧେବାଇ ରୀତା ଆଉ ପାଭେଲ୍ ହସିହସି ଗପୁଥାଆନ୍ତି, ତାଙ୍କର ଯାତ୍ରାରମ୍ଭ ସମୟର ଏହି ଅଭିଜ୍ଞତାର କାହାଣୀ ।

ରେଳଟି ଏଥର ଘୁଷୁରି ଘୁଷୁରି ଗ୍ଧଲିଲ । ପୁରୁଣା ରେଳଡବାଗୁଡ଼ାକ ଲଇନ୍‌ର ପ୍ରତ୍ୟେକ ଯୋଡ଼େଇ ଜାଗାମାନଙ୍କରେ ତୀବ୍ର ଶବ୍ଦ କରି ଦୋହଲି ଉଠୁଥାନ୍ତି । ଝରକାଗୁଡ଼ିକରେ ନୀଳ ଆକାଶ ଉଙ୍କି ମାରୁଥାଏ । ତା'ପରେ ରାତି ଆସିଲ, ଡବାଗୁଡ଼ିକରେ କଳା ଅନ୍ଧାର ଛାଇଗଲ ।

ରୀତା କ୍ଲାନ୍ତ ହୋଇପଡ଼ିଥାଏ । ବ୍ୟାଗ ଉପରେ ମୁଣ୍ଡ ରଖି ସେ ଘୁମାଉଥାଏ । ପାଭେଲ୍ ବର୍ଥର ଧାରରେ ବସି ସିଗାରେଟ୍ ଟାଣୁଥାଏ । ସେ ମଧ୍ୟ କ୍ଲାନ୍ତ ହୋଇଥାଏ । ମାତ୍ର ଶୋଇବାକୁ ଆଦୌ ଜାଗା ନଥାଏ । ଖୋଲ ଝରକାବାଟେ ରାତ୍ରିର ଶୀତଳ ପବନ ବହିଆସୁଥାଏ ସୁଲୁସୁଲୁ ହୋଇ । ରେଳଟା ଦୋହଲି ଯିବାରୁ ସେ ଧକ୍‌କାରେ ହଠାତ୍ ଚେଇଁଉଠି ରୀତା ପାଭେଲ୍‌ର ସିଗାରେଟ୍‌ର ଜଳନ୍ତା ଅଗଟାକୁ ଦେଖିଲ । ନିଜେ ସମସ୍ତ ଅସୁବିଧା ବରଣ କରିନେଇ ରାତିସାରା ଚେଇଁ ରହି ରୀତାର ସମସ୍ତ ସୁବିଧା କରିଦେବା କେବଳ ପାଭେଲ୍ ପକ୍ଷରେ ହିଁ ସମ୍ଭବ ।

"କମ୍ରେଡ୍ କୋର୍ଚ୍ଚାଗିନ୍, ସେ ବୁର୍ଜୁଆ ଧାରଣା ରଖ, ଶୋଇଯାଅ !"

ଅତ୍ୟନ୍ତ ବାଧ୍ୟ ଶିଶୁଟି ଭଳି ପାଭେଲ୍ ତା' କଡ଼ରେ ଶୋଇ, ଆରାମରେ ଗୋଡ଼ଦୁଇଟିକୁ ଲମ୍ବାଇଦେଲ ।

"କାଲି ସକାଳକୁ ଆମର ଗଦାଏ କାମ ବାକି ଅଛି । ତେଣୁ କିଛି ସମୟ ଶୋଇଯାଅ, ଦୁଷ୍ଟ କୋଉଠିକାର ।" ରୀତା ନିଜର ହାତଟିକୁ ଅତି ନିର୍ଭରତାର ସହିତ ତା' ବେକ ଘରିପଟେ ଘୂରାଇ ଆଣିଲା ଏବଂ ପାଭେଲ୍ ଅନୁଭବ କଲା, ରୀତାର କେଶଗୁଡ଼ିକ ତା'ର ଚିବୁକ ସ୍ପର୍ଶ କରୁଛନ୍ତି ।

ପାଭେଲ୍ ପାଇଁ ରୀତା ଅତି ପବିତ୍ର ଥିଲା । ସେ ତା'ର ବନ୍ଧୁ, କମ୍ରେଡ୍ ଏବଂ ରାଜନୈତିକ ଗୁରୁ । ତା' ସତ୍ତ୍ୱେ ସେ ଜଣେ ନାରୀ ! ରୀତା ଯେ ଗୋଟିଏ ତରୁଣୀ ଓ ନାରୀତ୍ୱର ସମସ୍ତ ତା'ଠାରେ ଅତିମାତ୍ରାରେ ଭରପୂର, ଏକଥା ପାଭେଲ୍ ପ୍ରଥମେ ଜାଣିଥିଲା ସେ ରେଳ ପ୍ଲାଟଫର୍ମ ତଳେ ଠିଆହୋଇ ଏବଂ ସେଇଥିପାଇଁ ତା'ର ଆଲିଙ୍ଗନ ତାକୁ ଏଭଳି ଭାବରେ ବିଚଳିତ କରୁଥିଲା ।

ତା'ର ମୃଦୁ ନିଃଶ୍ୱାସର ଭଠପଡ଼ ଶବ୍ଦ । ଏ ଅନ୍ଧକାର ଭିତରେ ଅତି ନିକଟରେ ଥିବା ତା'ର ଓଠଦୁଇଟି ସବୁକୁ ସେ ଅନୁଭବ କରି ପାରୁଥିଲା । ଉଦଗ୍ର ଆବେଗ ନେଇ ସେ ହଠାତ୍ ଇଚ୍ଛା କଲା ରୀତାର ଓଠ ସ୍ପର୍ଶ କରିବା ପାଇଁ, କେଉଁଠି ଖୋଜି ଦେଖିବା ପାଇଁ । ଅତି କଷ୍ଟରେ ସେ ତା'ର ଆବେଗ ଉଚ୍ଛ୍ୱାସକୁ ଦମନ କଲା ।

ସତେ ଯେମିତି ଏ ଅନ୍ଧାର ଭିତରେ ତା'ର ଅନୁଭୂତିକୁ ଜାଣିପାରୁଥିଲା ରୀତା । ସେ ଫିକ୍‌କିନା ହସିଦେଲା ଟିକିଏ । ସେ ଉପଲବ୍ଧି କରିଥିଲା କାମନାର ଆନନ୍ଦ ଓ ତାକୁ ହରାଇବାର ତୀବ୍ର ବେଦନାକୁ । ଦୁଇଜଣ ବଲ୍‌ଶେଭିକ୍‌କୁ ଭଲ ପାଇଥିଲା ସେ । ଶ୍ୱେତ ବାହିନୀଙ୍କର ବୁଲେଟ୍ ସେ ଦୁହିଁଙ୍କୁ ତା'ଠାରୁ ଛିନ୍ନ କରିଦେଇଥିଲା । ସେଥିମଧ୍ୟରୁ ଜଣେ ଏକ ବ୍ରିଗେଡ୍ କମାଣ୍ଡର – ବିରାଟ ମଣିଷଟିଏ । ଆଉଜଣକ ନୀଳ ଭସାଣିଆ ଆଖି – ଟୋକାଟିଏ ।

ରେଳଚକାର ଧାରାବାହିକ ଛନ୍ଦମୟ ସ୍ୱରରେ ପାଭେଲ୍‌ର ଆଖିରେ ନିଦ ଛାଇଗଲା ଅତିଶୀଘ୍ର । ତା' ଆରଦିନ ସକାଳୁ ରେଳ ଇଞ୍ଜିନ୍ ତୀବ୍ରଭାବରେ ସିଟି ନଦେଲା ପର୍ଯ୍ୟନ୍ତ ତା' ନିଦ ଭାଙ୍ଗି ନଥିଲା ।

* * *

ପ୍ରତ୍ୟେକ ଦିନ ଗଭୀର ରାତ୍ରି ପର୍ଯ୍ୟନ୍ତ କାମରେ ବୁଡ଼ିରହି ରୀତା ଡାଇରୀ ଲେଖିବା ପ୍ରାୟ ଭୁଲିଯାଇଥିଲା । କିଛି ଦିନ ପରେ ପୁଣି ଡାଇରୀରେ ସେ ଲେଖିଲା :

"ଅଗଷ୍ଟ ୧୧

ଆଞ୍ଚଳିକ ସମ୍ମିଳନୀ ଶେଷ ହେଲଣି । ଆକିମ୍, ମିଖାଇଲୋ ଏବଂ ଆଉ କେତେଜଣ ଖାର୍‌କୋଭ୍‌କୁ ଯାଇଛନ୍ତି ନିଖିଳ-ୟୁକ୍ରେନୀୟ ସମ୍ମିଳନୀରେ ଯୋଗ ଦେବା ପାଇଁ । ମୋ ଉପରେ ସମସ୍ତ କାଗଜପତ୍ର କାମର ଦାୟିତ୍ୱ ଦେଇ ଯାଇଛନ୍ତି । ଦୁବାଭା ଏବଂ ପାଭେଲ୍‌କୁ ଆଞ୍ଚଳିକ କମିଟିରେ କାମ କରିବାକୁ ପଠାଯାଇଛି । ପେଚେର୍‌ସି ଜିଲ୍ଲା ସମିତିର ସଂପାଦକ ହେବା ଦିନଠାରୁ ଦ୍‌ମିତ୍ରି ଆଉ ପଢ଼ାପଢ଼ି ପାଇଁ ଆସୁ ନାହିଁ । ବେଳ ପର୍ଯ୍ୟନ୍ତ

ସେ କାମରେ ବୁଡ଼ିରହୁଛି । ପାଭେଲ୍ କିଛି ପଢ଼ାପଢ଼ି ପାଇଁ ଚେଷ୍ଟା କରୁଛି । ମାତ୍ର ବିଶେଷ ପଢ଼ାପଢ଼ି ଆଗେଇ ପାରୁ ନାହିଁ । କାରଣ ମୁଁ ବେଳେବେଳେ ବିଭିନ୍ନ କାମରେ ବ୍ୟସ୍ତ ରହିଯାଉଛି ଓ ତାକୁ ଅନେକ କାମର ଦାୟିତ୍ୱ ଦେଉଛି । ରେଳବାଇରେ ବର୍ତ୍ତମାନ ଅବସ୍ଥାରେ କମ୍‌ସୋମୋଲ୍‌ମାନଙ୍କୁ ଅଧିକ କାମରେ ନିଯୋଗ କରାଯାଉଛି । ଗତକାଲି ଝାର୍‌କୀ ମୋ ସହିତ ଦେଖା କରିବାକୁ ଆସିଥିଲେ । ତାଙ୍କ ନିକଟରୁ ପିଲାଗୁଡ଼ାଙ୍କୁ କାର୍ଡ଼ ଆଣିବା ବିଷୟରେ ସେ ଅଭିଯୋଗ କରି କହିଲେ ଯେ, ତାଙ୍କର ସେମାନଙ୍କୁ ବିଶେଷ ଦରକାର ।

ଅଗଷ୍ଟ ୨୩

ଆଜି କରିଡର ଦେଇ ଯାଉଁଯାଉଁ ଦେଖିଲି, କୋର୍ଚ୍ଚଗିନ୍ ମ୍ୟାନେଜରଙ୍କ ଅଫିସ୍ ବାହାରେ ପାନ୍‌କ୍ରାଟୋଭ୍ ଓ ଆଉ ଜଣଙ୍କ ସହିତ ଛିଡ଼ାହୋଇଛି । ନିକଟକୁ ଆସି ଶୁଣିଲି, ପାଭେଲ୍ କହୁଛି :

"ସେଠି ବସିଥିବା ଲୋକଗୁଡ଼ାଙ୍କୁ ଗୁଳି କରିଦେବାକୁ ପଡ଼ିବ । 'ଆମ ନିର୍ଦ୍ଦେଶ ବିରୁଦ୍ଧରେ ପ୍ରତିନିର୍ଦ୍ଦେଶ ଦେବାର ତମର କୌଣସି ଅଧିକାର ନାହିଁ ।' ସେ କହୁଥାଏ । 'ରେଳବାଇ ଜାଳେଣୀ କାଠ ବିଭାଗ ଏଠାର ସର୍ବୋଚ୍ଚ କର୍ତ୍ତା ଏବଂ ତମେ କମ୍‌ସୋମୋଲ୍‌ମାନେ ଏ ସବୁଥିରେ ମୁଣ୍ଡ ପୂରାଇବାର ଆବଶ୍ୟକତା ନାହିଁ ।' ତମେ ନିଶ୍ଚୟ ଦେଖିଥିବ ତା'ର ମଗ୍ ଏବଂ ... । ଜାଗାଟା ସାରା ତା'ରି ଭଳି ପରାଙ୍ଗଭୋଜୀମାନେ ଛାଇଯାଇଛନ୍ତି ।"

ଆହୁରି ଅନେକ ବାଜେକଥା ଗପିଲା ସେ ପରେପରେ । ପାନ୍‌କ୍ରାଟୋଭ୍ ମୋତେ ଦେଖି ହସି ମୁଣ୍ଡ ଟୁଙ୍ଗାରିଲା । ପାଭେଲ୍ ବୁଲିପଡ଼ିଲା ଏବଂ ମୋତେ ଦେଖିଲା ମାତ୍ରେ ମୋ ଆଡ଼କୁ ନଗ୍ରହିଁ ଗ୍ଲଲିଗଲା । ଆଉ କିଛି ଦିନ ଯାଏଁ ସେ ଆସିବ ନାହିଁ ନିଶ୍ଚୟ । ସେ ଜାଣେ ଯେ, ମୁଁ ଏଭଳି ଖରାପ ଭାଷା ଆଦୌ ବରଦାସ୍ତ କରିପାରେ ନାଁ ।

ଅଗଷ୍ଟ ୨୬

ଆଜି ଆମ ବ୍ୟୁରୋର ଏକ ଗୁପ୍ତ ନିବୁଜ ବୈଠକ ଥିଲା । ଅବସ୍ଥାର ଗତି କ୍ରମଶଃ ଅସନ୍ତୋଷ ହେବାକୁ ଯାଉଛି । ବର୍ତ୍ତମାନ ମୁଁ ସେସବୁ ପୂରାପୂରି ଲେଖିବା ସମ୍ଭବ ନୁହଁ । ଆକିମ୍ ଖୁବ୍ ବିବ୍ରତ ହୋଇ ସମ୍ମିଳନୀରୁ ଫେରିଛି । ଗତକାଲି ଆହୁରି ଏକ ଯୋଗାଣିଆ ରେଳଗାଡ଼ି ଲାଇନ୍ ଚ୍ୟୁତ ହୋଇଛି । ମୁଁ ଭାବୁଛି ଆଉ ଏସବୁ ଡାଇରୀରେ ଲେଖିବି ନାହିଁ । ସବୁ କିଛି ଗୋଳମାଳିଆ ଭାବେ ଗ୍ଲଲିଛି । କୋର୍ଚ୍ଚଗିନ୍‌କୁ ଅପେକ୍ଷା କରୁଛି । ସେଦିନ ତାକୁ ଭେଟିଥିଲି ଏବଂ ସେ କହିଲା ଯେ, ସେ ଏବଂ ଝାର୍‌କୀ ଏକ ପାଞ୍ଚଜଣିଆ କମ୍ୟୁନ୍ କରୁଛନ୍ତି ।"

* * *

ଦିନେ ରେଳବାଇ କାରଖାନାରେ କାମ କରୁଥିଲାବେଳେ, ପାଭେଲ୍‌କୁ ଟେଲିଫୋନ୍‌ରେ କିଏ ଡାକୁଛି ବୋଲି ଜଣାଇ ଦିଆଗଲା । ରୀଟା ଡାକୁଥିଲା । ସେଦିନ

ସନ୍ଧ୍ୟାରେ ତା'ର କିଛି କାମ ନାହିଁ । ସେମାନେ ପଢ଼ୁଥିବା ପ୍ୟାରିସ୍ କମ୍ୟୁନ୍ ପତନର କାରଣ ବିଷୟକ ଅଧ୍ୟାୟଟି ସେମାନେ ସେଦିନ ସନ୍ଧ୍ୟାରେ ସାରିପାରନ୍ତି ।

ୟୁନିଭର୍ସିଟି ଗଳିରେ, ରୀତାର ଘର ପାଖରେ ସେଦିନ ସନ୍ଧ୍ୟାରେ ପହଞ୍ଚିଲାବେଳକୁ ପାଭେଲ୍ ଉପରକୁ ଗ୍ରହିଁ, ତା' ଝରକାବାଟେ ଆଲୁଅ ଦେଖିପାରିଲା । ଦ୍ରୁତଭାବରେ ଉପର ମହଲାକୁ ଉଠିଗଲା ସେ । ସାଧାରଣଭାବରେ ଖଡ଼୍ ଖଡ଼୍ କରି ଭିତରକୁ ପଶିଲା ।

ତା'ର ଶଯ୍ୟା ଉପରେ, ଯେଉଁଠିକି କୌଣସି ତରୁଣ କମ୍ରେଡ୍‌ଙ୍କର ପ୍ରବେଶ ନିଷିଦ୍ଧ, ସେଇଠି ଶୋଇଥିଲା ଜଣେ ସୈନିକ ପୋଷାକପରିହିତ ଲୋକ । ଟେବୁଲ ଉପରେ ଗୋଟିଏ ନ୍ୟାପ୍‌ସ୍ୟାକ୍, ଗୋଟିଏ ପିସ୍ତଲ, ଓ ଲାଲ ତାରକା ବ୍ୟାଜଲଗା ଟୋପି ଥୁଆହୋଇଥିଲା । ଆଗନ୍ତୁକକୁ ବାହୁପାଶରେ ଆବଦ୍ଧ କରି ତା' ଶଯ୍ୟା ପାର୍ଶ୍ୱରେ ବସିଥିଲା ରୀତା । ଦୁହେଁ ଅତି ଘନିଷ୍ଠଭାବରେ କଥୋପକଥନ କରୁଥିଲେ ଓ ପାଭେଲ୍‌କୁ ଦେଖି ରୀତାର ମୁହଁ ଉଜ୍ଜ୍ୱଳ ହୋଇଉଠିଲା ।

ପୁରୁଷଟି ନିଜକୁ ରୀତାର ଆଲିଙ୍ଗନରୁ ମୁକ୍ତ କରି ଉଠିବସିଲା ।

ତା' ସହିତ କରମର୍ଦ୍ଦନ କରି ରୀତା ପରିଚୟ କରାଇଦେଲା, "ପାଭେଲ୍ ... ଇଏ ହେଉଛନ୍ତି ..."

"ଡେଭିଡ୍ ଉସ୍ତିନୋଭିଚ୍ ..." ପୁରୁଷ ଜଣକ ପାଭେଲ୍ ସହିତ କରମର୍ଦ୍ଦନ କରି କହିଉଠିଲେ ।

ପାଭେଲ୍ ଅନିଚ୍ଛୁକ ଭାବରେ ଆଗନ୍ତୁକ ବ୍ୟକ୍ତିଟି ସହିତ କରମର୍ଦ୍ଦନ କଲା ।

"ଆଜି ହଠାତ୍ ସେ ଆସି ପହଞ୍ଚିଲେ", ହସ ଉଜ୍ଜ୍ୱଳ ମୁହଁରେ ରୀତା କହିଲା ।

ପାଭେଲ୍‌ର ଆଖିରେ, ଆଗନ୍ତୁକଙ୍କ ପ୍ରତି ବିଦ୍ୱେଷ ଓ ଅଶ୍ରଦ୍ଧା ପ୍ରକାଶ ପାଉଥିଲା । ତାଙ୍କ ଛାତିରେ କମ୍ପାନୀ କମାଣ୍ଡର ସୂଚକ ଚାରି ବର୍ଗାକାରବିଶିଷ୍ଟ ବ୍ୟାଜ ଲାଗିଥିଲା ।

ରୀତା ଆଉ କ'ଣ କହିବାକୁ ଯାଉଥିଲା, ମାତ୍ର ତାକୁ ବାଧାଦେଇ ପାଭେଲ୍ କହିଲା :

"ମୁଁ କେବଳ ତମକୁ କହିବାକୁ ଆସିଥିଲି ଯେ, ଆଜି ସନ୍ଧ୍ୟାରେ କାଠ ବୋଝେଇ ପାଇଁ ମୁଁ ବ୍ୟସ୍ତ ରହିବି । ତା'ଛଡ଼ା ତମରତ ଜଣେ ଅତିଥି ଆସି ପହଞ୍ଚିଛନ୍ତି । ହଉ, ମୁଁ ତା' ହେଲେ ଆସୁଛି ? ମୋତେ ଅପେକ୍ଷା କରି ପିଲାମାନେ ତଳେ ଠିଆ ହୋଇଛନ୍ତି ।"

ଯେପରି ଅପ୍ରତ୍ୟାଶିତଭାବରେ ସେ ଆସିଥିଲା, ସେହିପରି ଅପ୍ରତ୍ୟାଶିତଭାବରେ ଦୁଆରବାଟେ ବାହାରକୁ ବାହାରିଗଲା ସେ । ତରତର ହୋଇ ସେ ପାହାଚ ପରେ ପାହାଚ ଓହ୍ଲାଇ ଯାଉଥିବାର ଶବ୍ଦ ଶୁଣିଲେ ସେମାନେ ।

"ତା'ର କ'ଣ ଗୋଟାଏ ଅସୁବିଧା ହୋଇଛି", ଡେଭିଡ୍‌ର ପ୍ରଶ୍ନବାଚକ ଆଖିର ଉତ୍ତରରେ ଥାଥା ମାମା ହୋଇ ଉତ୍ତର ଦେଲା ରୀତା ।

ବାହାର କବାଟ ଧଡ଼ାସ୍ କରି ବନ୍ଦ ହୋଇଗଲା । ତା'ପରେ ସବୁ ନୀରବ ।

ତଳେ, ଦୂରରୁ ଗୋଟାଏ ଇଞ୍ଜିନ୍ ତୀବ୍ର ସ୍ୱରରେ ଗର୍ଜ୍ଜନ କରିଉଠିଲା, ଅଗ୍ନି

ଉଦ୍‌ଗିରଣ କରି । ନିଆଁଗୁଡ଼ାକ ନୃତ୍ୟ କରିକରି ଘୁରିଆଡ଼େ ବିଛାଇ ହୋଇଗଲା ପରେପରେ ଧୂଆଁରେ ପରିଣତ ହୋଇ ।

ରେଲିଂ ବାଡ଼ ଧରି ଝୁଙ୍କି ପଡ଼ି ପାଭେଲ୍ ରଙ୍ଗବେରଙ୍ଗ ସିଗ୍‌ନାଲ୍ ଆଲୋକଗୁଡ଼ାକୁ ଗ୍ୱହିଁରହି ଭାବୁଥିଲା । ଆଖି ତା'ର କୁଞ୍ଚିତ ହୋଇ ଆସୁଥିଲା । ସେ ଭାବୁଥିଲା ଓ ନିଜକୁ ନିଜେ କହୁଥିଲା :

"କ'ଣ କମ୍ରେଡ୍ କୋର୍‌ଗିନ୍ ? ରୀତାର ସ୍ୱାମୀ ଅଛି ବୋଲି ଜାଣି ତମ ମନ ଏମିତି ବେଦନାରେ ଭାଙ୍ଗିପଡ଼ୁଛି କାହିଁକି ? ତା'ର ସ୍ୱାମୀ ନାହିଁ ବୋଲି କେବେ ସେ ତମକୁ କହିଛି ଭଲା ? ଆଉ ତେବେ, ତମେ କାହିଁକି ଏମିତି ହେଉଛ ? ବାଃ ବାଃ କମ୍ରେଡ୍ ତମେ ଭାବିଥିଲ, ଏଇଟା କେବଳ ପ୍ଲାଟୋନିକ୍ ବନ୍ଧୁତ୍ୱ, ଆଉ କିଛି ନୁହେଁ, ନାଁ ... ? ଏମିତି ହେବାକୁ ତମେ ପ୍ରଶ୍ରୟ ଦେଇଥାନ୍ତ କେମିତି ? ମାତ୍ର ଧର ଯଦି ସେ ତା'ର ସ୍ୱାମୀ ନ ହୋଇଥାଏ ? ତେବେ ? ଯଦି ସେ ତା'ର ଭାଇ ବା ଦାଦା ହୋଇଥାଏ ... । ତା' ହେଲେ ବୁଝୁଛ, ତମେ ସେ ବିଗ୍ୱରୀ ପ୍ରତି କି ଅବିଗ୍ୱର କରିଛ ? ନିର୍ବୋଧ । ତମେ ଗୋଟାଏ ଘୁଷୁରିଠୁଁ କୋଉ ଗୁଣରେ ଭଲ ଭଲ ? ତମେ ତ ଅପେକ୍ଷା କରି ଅତି ସହଜରେ ତା'ଠାରୁ ବୁଝିପାରିଥାଆନ୍ତ, ସିଏ ତା'ର ଦାଦା, ନା ଭାଇ, କିମ୍ବା ଆଉ କ'ଣ ? ତା' ସହିତ ଯେପରି ଦୁର୍ବ୍ୟବହାର କରିଛ, ଆଉ କେମିତି ମୁହଁ ଦେଖାଇବ ତାକୁ ? ନାଁ, ତମେ ତା' ସହିତ ଆଉ ଦେଖାକରି ପାରିବ ନାହିଁ !"

ପୁଣି ଗୋଟାଏ ଇଞ୍ଜିନ୍‌ର କର୍କଶ ଚିହ୍ନାରରେ ତା'ର ଚିନ୍ତାର ଖିଅ ଛିନ୍ନ ହୋଇଗଲା ।

"ଡେରି ହେଲଣି, ଘରକୁ ଯାଏଁ । ଏ ବାଜେ କଥା ଭାବି କିଛି ଲାଭ ନାହିଁ । ଅନେକ ହେଲାଣି ଏଥର !"

* * *

ରେଳବାଇ ଶ୍ରମିକମାନେ ଯେଉଁଠି ବାସ କରନ୍ତି, ଯାହାକୁ ସୋଲୋମେଙ୍କା ଜିଲା ବୋଲି କୁହାଯାଏ, ସେହିଠାରେ ପାଞ୍ଚଜଣ ତରୁଣ ଗୋଟିଏ କମ୍ୟୁନ୍ ଗଠନ କରିଥିଲେ । ସେ ପାଞ୍ଚଜଣ ହେଲେ – ଝାର୍‌କୀ, ପାଭେଲ୍, କ୍ଲାଭିଚେକ୍ – କୁଞ୍ଚୁକୁଞ୍ଚିଆ ସୁନ୍ଦରିଆ ଚେରି ବାଗେଇ ଚେକ୍ ତରୁଣଟିଏ, ନିକୋଲାଇ ଓକୁନେଭ୍ – ରେଳବାଇ ପାର୍ଟି କମ୍‌ସୋମୋଲ୍‌ର ସଂପାଦକ ଏବଂ ଷ୍ଟେପାନ୍ ଆର୍‌ଟ୍ୟୁଖିନ୍ – ବଏଲର୍ ମିସ୍ତ୍ରୀ, ଯେ କି ଏବେ ରେଳବାଇ ଡେକାରେ କାମ କରୁଥିଲା ।

ଗୋଟିଏ ବଖରା ନେଇ, ପାଞ୍ଚଜଣଯାକ ମିଳିମିଶି ଆଗ ତିନିଦିନ ଲାଗି ତାକୁ ସଫାସୁତୁରା କଲେ । ଚୂନ ଧଉଳାଇ, ସେଥିରେ ରଙ୍ଗ ଲଗାଲଗି ସାରିଲେ । ଏ ତିନିଦିନ ଭିତରେ ମାଠିଆମାନ ଧରି ଏତେ ଥର ସେମାନେ ପାଣି ପାଇଁ ଯିବା ଆସିବା କଲେ ଯେ, ପ୍ରଥମେ ପାଖ ପଡ଼ିଶା ଲୋକେ ଭାବିଥିଲେ, ଘରଟାରେ ବୋଧହୁଏ ନିଆଁ ଲାଗିଯାଇଛି । ନିଜ ପାଇଁ ସବୁ କଟା-ଗଦି-ବିଛଣା, ଶୋଇବା ପାଇଁ ଭାଡ଼ି ଖଟିଆ ପକାଇଲେ । ଚତୁର୍ଥ

ଦିନକୁ, ପରିଷ୍କାର-ପରିଚ୍ଛନ୍ନ ହୋଇ ପେଟ୍ରୋଭ୍‌ସ୍କିଙ୍କର ଗୋଟିଏ ବଡ଼ ତୈଳଚିତ୍ର ଓ ଗୋଟିଏ ବିରାଟ ମାନଚିତ୍ର ଟଙ୍ଗାହୋଇ ଘରଟି ସଫାସୁତୁରା ଦେଖାଗଲା ।

ଝରକା ଦିଓଟି ମଝିରେ ଥାକଟିଏ । ସେଥିରେ ବହିଗଦା ମରାହୋଇଛି । ଦୁଇଟି ଡାବଲ ଚଉକି କାମ ଚଳାଏ, ଆଉ ଗୋଟିଏ ଡାବଲ ଆଲମାରି କାମ କରେ । ବଖରାଟି ମଝିରେ ପଡ଼ିଥାଏ କନା ନଥିବା ବିରାଟ ବିଲିଆର୍ଡ ଟେବୁଲଟିଏ । ସେଇଟିକୁ ବାହାରୁ କମ୍ୟୁନ୍ ବାସିନ୍ଦାମାନେ କାନ୍ଧରେ ବୋହିନେଇ ଆସିଥାନ୍ତି । ଦିନବେଳା ସେଇଟା ଟେବୁଲ କାମ କରେ ଏବଂ ରାତିରେ କ୍ଲାଭିଚେକ୍ ତା'ଉପରେ ଶୁଏ । ପାଞ୍ଚଜଣଯାକ ଯିଏ ଯେଝାର ଯାହା ଯାହା ଜିନିଷପତ୍ର ଥିଲା ସବୁ ବୋହିଆଣିଥିଲେ ସେଠିକି । କ୍ଲାଭିଚେକ୍ ସେମାନଙ୍କଠାରୁ ଟିକେ ଅଧିକ ବାସ୍ତବବାଦୀ । ସେ କମ୍ୟୁନ୍‌ର ସବୁତକ ଜିନିଷର ହିସାବପତ୍ର କରି ପକେଇଲା । ଘର ଭିତରେ ଯାହାଯାହା ଥିଲା, ସବୁ କମ୍ୟୁନ୍‌ର ସଂପତ୍ତି ବୋଲି ଘୋଷଣା କରାଗଲା । ସେ ଚାହୁଁଥିଲା ସେ ହିସାବଟାକୁ କାନ୍ଥରେ ଟଙ୍ଗେଇ ଦେବାକୁ, କିନ୍ତୁ ଅନ୍ୟମାନେ ବିରୋଧ କଲେ । ରୋଜଗାର, ରେସନ୍, ଘରୁ କଦବା କେମିତି ଆସୁଥିବା କ'ଣ ଜିନିଷ, ସବୁ କମ୍ୟୁନ୍‌ର । ତାଙ୍କର ବ୍ୟକ୍ତିଗତ ହୋଇ ରହିଲା କେବଳ ନିଜ ନିଜର ଅସ୍ତଶସ୍ତଗୁଡ଼ିକ । ସର୍ବସମ୍ମତିକ୍ରମେ ସିଦ୍ଧାନ୍ତ ହେଲା ଯେ, ଯେ କେହି କମ୍ୟୁନ୍‌ର ଏହି ସାମୂହିକ ସଂପତ୍ତିର ଆଇନ ଭଙ୍ଗ କରିବ ବା କମ୍ରେଡ୍ ପ୍ରତି ବିଶ୍ୱାସଘାତକତା କରିବ, ତାକୁ କମ୍ୟୁନ୍‌ରୁ ବହିଷ୍କାର କରିଦିଆଯିବ । ଓକୁନେଭ୍ ଓ କ୍ଲାଭିଚେକ୍ ପ୍ରସ୍ତାବ କଲେ ଯେ, କେବଳ କମ୍ୟୁନ୍‌ରୁ ବାହାର କରାଯିବ ନାହିଁ, ତାକୁ ଏ ଘରୁ ମଧ୍ୟ ଉଚ୍ଛେଦ କରାଯିବ । ତାହାହିଁ ଗୃହୀତ ହେଲା ।

ଜିଲାର କମ୍‌ସୋମୋଲ୍ ସମିତିର ସମସ୍ତ ସକ୍ରିୟ ସଭ୍ୟ, ଗୃହପ୍ରବେଶ ଅନୁଷ୍ଠାନକୁ ଆସିଲେ ନିମନ୍ତ୍ରିତ ହୋଇ । ପଡ଼ିଶା ଘରୁ ବଡ଼ ଗୋଟାଏ ସାମୋଭାର ମଗା ହୋଇଆସିଲା । ଚା' ଭୋଜିରେ କମ୍ୟୁନ୍‌ର ଯେତେ ସାଖାରିନ୍ ଥିଲା, ସବୁତକ ଶେଷ ହୋଇଗଲା । ଚା'ପର୍ବ ଶେଷ ହେଲା ପରେ ସମସ୍ତେ ସମବେତ କଣ୍ଠରେ ଗୀତ ଗାଇବାକୁ ଲାଗିଲେ । ତରୁଣ କଣ୍ଠର ସମବେତ ଐକ୍ୟ ସଙ୍ଗୀତ ଘରସାରା ପ୍ରତିଧ୍ୱନିତ ହେବାକୁ ଲାଗିଲା :

"ସାରା ପୃଥିବୀ ଆଜି ଲୁହରେ ତିନ୍ତିଛି,
ଆମର ଦିନ ସେଇ ଲୁହରେ,
କ୍ଲେଦାକ୍ତ ହୋଇ ବିତିଗଲା,
ଏବେ ଅପେକ୍ଷାକର ବନ୍ଧୁ,
ଉଜ୍ଜ୍ୱଳ ସକାଳ ଆସୁଛି ... ।"

ତମାଖୁ କାରଖାନାରେ କାମ କରୁଥିବା ଝିଅ ତାଲ୍ୟା ଲାଗୁଟିନା, ଐକ୍ୟ ସଙ୍ଗୀତର ନେତୃତ୍ୱ ନେଲା । ତା'ର ଲାଲରଙ୍ଗର ରୁମାଲଟି ମୁଣ୍ଡର ଗୋଟିଏ କଡ଼କୁ ଢଳିପଡ଼ିଥାଏ ।

ଆଖି ଦୁଇଟିରେ ତା'ର ଅତଳାନ୍ତ ଗଭୀରତା – ଖାଲି ସରଳ ଚପଳତାରେ ନାଚିଉଠୁଥାଏ ସେ ଦୁଇଟି । ତାଙ୍କ୍ୟାର ହସ ବଡ଼ ସଂକ୍ରାମକ । ସାରା ପୃଥିବୀକୁ ସେ ଦେଖେ ତା'ର ଅଠର ବର୍ଷ ଜୀବନର ସମଗ୍ର ପ୍ରଖର ଉଜ୍ଜ୍ୱଳତା ନେଇ । ହାତ ଉପରକୁ ଉଠାଇ ତୂରୀର ଧ୍ୱନି ଭଳି ସେ ଗାଇଉଠିଲା :

"ଆମର ଏ ସଙ୍ଗୀତ,
ବନ୍ୟା ଭଳି ବ୍ୟାପିଯିବ ସାରା ଦୁନିଆରେ,
ଆମର ପତାକା,
ତରଙ୍ଗାୟିତ ହେବ ସାରା ଦୁନିଆରେ,
ଆମ ଛାତିର ତାତିଲା ରକ୍ତର ତାତି,
ସାରା ଦୁନିଆକୁ ଜଳାଇଦେବ,
ଉଜ୍ଜ୍ୱଳ କରିଦେବ,
ଦାଉଦାଉ ହୋଇ ଜଳିବ ..."

ଅନେକ ଡେରିରେ ସେଦିନ ରାତିରେ ତାଙ୍କର ବୈଠକ ଶେଷ ହେଲା । ନିଶାନ୍ତ ନିର୍ଜନତା ଭିତରେ ସହରରେ ନୀରବ ଗଳିରାସ୍ତା ସବୁ ସେମାନଙ୍କର ତରୁଣ ସ୍ୱରରେ ପ୍ରତିଧ୍ୱନିତ ହୋଇଉଠିଲା ।

* * *

ଟେଲିଫୋନ୍ ବାଜିଉଠିଲା ଏବଂ ଝାର୍‌କୀ ରିସିଭର ଉଠାଇଲା ।

"ଏଃ, ସମସ୍ତେ ଟିକେ ଚୁନିହୁଅ । ମୁଁ କିଛି ଶୁଣିପାରୁ ନାହିଁ", ସେ ଚିତ୍କାର କରି କହିଲା ସଂପାଦକଙ୍କ ଅଫିସ୍‌ରେ ବସି ପାଟିଗୋଳ କରୁଥିବା କମ୍‌ସୋମୋଲ୍‌ମାନଙ୍କୁ ।

ଟିକେ ଚୁନିପଡ଼ିଗଲେ ସଭିଏଁ ।

"ହଲୋ ? ଓଃ ... ତମେ ? ହଉ ଠିକ୍ ଅଛି । କ'ଣ ସବୁ ଅଛି ଆଲୋଚନାସୂଚୀରେ ? ସେଇ ପୁରୁଣା କଥା । ଜାଳେଣୀ କାଠ ସବୁ ଜେଟିରୁ ଉଠାଇ ନେଇଯାଉଛନ୍ତି । କ'ଣ ହେଲା ? ନାଁ ନାଁ, ତାକୁ କେଉଁଠିକି ପଠାହୋଇ ନାହିଁ । ଏଇଠି ଅଛି ସେ, ତା' ସାଙ୍ଗେ କଥା କହିବ ? ଟିକେ ଅପେକ୍ଷା କର ।"

ଝାର୍‌କୀ ପାଭେଲ୍‌କୁ ଇସାରା ଦେଇ ଡାକିଲା ।

"କମ୍ରେଡ୍ ଉସ୍ତିନୋଭିଚ୍, ତମ ସାଙ୍ଗରେ କଥାବାର୍ତ୍ତା ହେବାକୁ ଡାକୁଛନ୍ତି", କହି ରିସିଭର ବଢ଼ାଇଦେଲା ପାଭେଲ୍‌କୁ ।

"ଭାବୁଥିଲି ତମେ ସହର ବାହାରକୁ କୁଆଡ଼େ ଯାଇଛ", ପାଭେଲ୍ ଶୁଣୁଥାଏ ରୀତାର ସ୍ୱର । "ଆଜି ସନ୍ଧ୍ୟାରେ ମୋର କୌଣସି କାମ ନାହିଁ । ତମେ ଚାଲିଆସ ନାଁ ? ଭାଇ ଗଲେଣି ଚାଲି । ସିଏ ଏ ସହର ଦେଇ ଯାଉଥିଲେ । ଭାବିଲେ, ଅଟକି ମୋତେ ଦେଖିଦେଇ ଯିବେ ବୋଲି । ଆମେ ଦୁହେଁ ଦୁହିଁଙ୍କୁ ଦି'ବର୍ଷ ହେଲା ଦେଖି ନଥିଲୁ ।"

"ତା'ର ଭାଇ !"

ଆଉ କିଛି ଶୁଣିପାରୁ ନଥାଏ ପାଭେଲ୍ । ସେ ଅଶୁଭ ସନ୍ଧ୍ୟାର କଥା ମନେପଡ଼ିଲା ତା'ର । ଆଉ ମନେ ପଡ଼ିଲା ସେ ପୋଲ ପାଖରେ ଛିଡ଼ାହୋଇ ସିଏ କରିଥିବା ପ୍ରତିଜ୍ଞା ସବୁ । ନା଼ଁ, ଆଜି ସନ୍ଧ୍ୟାରେ ସେ ନିଶ୍ଚୟ ଯିବ ରୀତା ଘରକୁ ଏବଂ ଯା'ର ସମାପ୍ତି ଘଟାଇବ । ପ୍ରେମ ଅନେକ କଷ୍ଟ, ଅନେକ ଭଳଣା ଦେଇଛି, ବର୍ତ୍ତମାନ କ'ଣ ସେସବୁ କରିବାର ସମୟ ?

ତାକୁ ଶୁଭିଲା ରୀତା କହୁଛି :

"ତମକୁ କ'ଣ ଶୁଭିଲା ନାହିଁ ?"

"ହଁ, ହଁ, ମୋତେ ଶୁଭୁଛି । ଭଲ କଥା, ଆଜି ସନ୍ଧ୍ୟାରେ ମୁଁ ଯିବି, ବ୍ୟୁରୋର ଗୋଟାଏ ମିଟିଂ ସରିଲା ପରେ ।"

ଫୋନ୍ ଛାଡ଼ିଦେଲା ସେ ।

* * *

ସିଧାସଳଖ ଭାବରେ ତା' ଆଖିଦୁଇଟିକୁ ଚାହିଁ, ଓକ୍ ଟେବୁଲକୁ ଦୃଢ଼ଭାବରେ ଧରି ସେ କହିଲା :

"ଆଉ ତମ ସହିତ ଦେଖାକରିବାକୁ ମୁଁ ବୋଧହୁଏ ଆସିପାରିବି ନାହିଁ ।"

ସେ ଲକ୍ଷ୍ୟକଲା, ରୀତାର ଗହଳ ଆଖିପତା କୁଞ୍ଚିତ ହୋଇ ଉଠିଲା ଓ ଉପରକୁ ଉଠିଗଲା । ତା'ର ପେନସିଲ କାଗଜ ଉପରେ ସ୍ଥିର ହୋଇ ଅଟକିଗଲା ।

"କାହିଁକି ଆସିପାରିବ ନାହିଁ ?"

"ସମୟ ହେଉ ନାହିଁ, ତମେ ତ ଜାଣିଛ ନିଜେ, ଏବେ କେତେ କାମ ଆମକୁ ପଡ଼ୁଛି । ମୁଁ ଭାରୀ ଦୁଃଖିତ ଯେ, ଆମ ସଂପର୍କ ଆଉ ବୋଧହୁଏ ରହି ପାରିବ ନାହିଁ ... ।"

ନିଜେ ସେ ସଚେତ ଥିଲା ଯେ, ତା'ର ଶେଷ ଦୁଇଟି କଥା ଆଦୌ ଦୃଢ଼ ଭାବରେ କହିପାରିଲା ନାହିଁ ସେ ।

ମନକୁ ମନ ସେ ଭାବିଲା ଯେ, "କାହିଁକି ମିଛରେ କଥାଟା ଉଖାରିବାରେ ଆବଶ୍ୟକତା କ'ଣ ? ଯେତେହେଲେ ବି ତ ସବୁ ଖୋଲି କହି ହେବ ନାହିଁ ।" ଭିତରେ ଭିତରେ ତାତି ଉଠୁଥିଲା ସେ ।

ତା'ପରେ କହିଲା ସେ, "ତା'ଛଡ଼ା କେତେ ଦିନ ହେଲା ମୁଁ ତମକୁ କହିବି ବୋଲି କହିପାରି ନାହିଁ ... । ତମେ ପଢ଼ୁଥିଲାବେଳେ ମୁଁ କେମିତି ଠିକ୍ ଧରିପାରୁ ନାହିଁ, ବୁଝିପାରୁ ନାହିଁ । ସେଗାଲ୍ଙ୍କ ପାଖରେ ଆମେ ପଢ଼ୁଥିଲାବେଳେ ଯାହା ପଢ଼ୁଥିଲି ସବୁ ମନେ ରହୁଥିଲା । ତମ ପାଖରେ କାହିଁକି କିଛି ମନେ ରହୁ ନାହିଁ । ମୋତେ ତେଣୁ ସବୁବେଳେ ପୁଣି ପଢ଼ା ପରେ ତୋକାରେଭ୍ ପାଖକୁ ଯିବାକୁ ପଡ଼ିଛି, ଭଲଭାବରେ ବୁଝିବା ପାଇଁ । ଏଇଟା ଅବଶ୍ୟ ମୋ ଦୋଷ । ମୋ ମୁଣ୍ଡରେ ଠିକ୍ ପଶୁ ନାହିଁ । ତମେ ବରଂ ମୋଠାରୁ ବୁଦ୍ଧିଆ ଛାତ୍ର ଆଣିଲେ, ତାକୁ ପଢ଼ାଇବା ତମ ପକ୍ଷରେ ସହଜ ହେବ ।"



ରୀତାର ଅନୁସନ୍ଧିତ୍ସୁ ଆଖିରୁ, ନିଜର ଆଖି ଖସାଇଆଣି ସବୁ ସଂପର୍କ ଛିନ୍ନ କରିବା ପାଇଁ ଉଦ୍ଦେଶ୍ୟମୂଳକ ଭାବରେ ପୁଣି କହିଲା, "ତେଣୁ, ଆମ ଉଭୟଙ୍କ ପକ୍ଷରେ ଏହା ଫଳରେ କେବଳ ସମୟ ନଷ୍ଟ କରିବା ହିଁ ସାର ହେବ, ଏଭିଭଳି ଚଳାଇଲେ ।"

ତା'ପରେ ସେ ଉଠି ଛିଡ଼ାହେଲା । ଅତି ସାବଧାନତା ସହକାରେ ବସିଥିବା ଚଉକିଟିକୁ ପଛକୁ ଘୁଞ୍ଚାଇଲା ।

ଲ୍ୟାମ୍ପର ହଳଦିଆ ଆଲୋକରେ ସେ ଦେଖିଲା, ରୀତାର ଝାଉଁଳି ପଡ଼ିଥିବା ମୁହଁକୁ । ରୀତା ବିଷଣ୍ଣ ହୋଇ ତଳକୁ ମୁଣ୍ଡ ନୁଆଁଇ ଦେଇଛି । ତା'ପରେ ନିଜର ଟୋପିଟିକୁ ପିନ୍ଧିଲା ସେ ।

"ବିଦାୟ କମ୍ରେଡ୍ ରୀତ । ତମର ଏତେ ମୂଲ୍ୟବାନ ସମୟ ନଷ୍ଟ କଲି ବୋଲି ମୁଁ ସତରେ ଦୁଃଖିତ । ଏସବୁ କଥା ତମକୁ ବହୁ ଆଗରୁ କହିବା ମୋର ଉଚିତ ଥିଲା । ନକହିଥିବାରୁ ସତରେ ଦୋଷୀ ମୁଁ ।"

ଯନ୍ତ୍ରଚାଳିତ ଭଳି ରୀତା କରମର୍ଦ୍ଦନ ପାଇଁ ହାତ ବଢ଼ାଇଦେଲା । ଘଟଣାର ଆକସ୍ମିକତାରେ ସେ ଏତେ ବିଚଳିତ ଓ ସ୍ତମ୍ଭିତ ହୋଇଯାଇଥିଲା ଯେ, ସେ କେବଳ ପଦଟିଏ ବ୍ୟତୀତ ଆଉ କିଛି କହିପାରିଲା ନାହିଁ ।

"ତମକୁ ମୁଁ କାହିଁକି ଅଯଥା ଦୋଷ ଦେବି ପାଭେଲ୍ ? ସବୁକଥା ବୁଝାଇବା ପାଇଁ ମୋର ଅସାମର୍ଥ୍ୟ ପାଇଁ ଏହାହିଁ ମୋର ପ୍ରାପ୍ୟ ।"

ଗଭୀର ପଦପାତରେ ଦୁଆରମୁହଁ ଆଡ଼କୁ ଆଗେଇଲା ପାଭେଲ୍ । ବାହାରକୁ ବାହାରିଯାଇ ଧୀରେ କବାଟକୁ ଆଉଜାଇଦେଲା ସେ । ମୁହୂର୍ତ୍ତକ ପାଇଁ ସ୍ଥିର ହୋଇ ଛିଡ଼ାହେଲା ରୁଦ୍ଧ ଦ୍ୱାର ନିକଟରେ । ଫେରିଯାଇ ପୁଣି ଥରେ ସବୁକଥା ବୁଝାଇ କହିଦେବା ପାଇଁ ବର୍ତ୍ତମାନ ବି ସୁବିଧା ସମୟ ଅଛି, ବିଳମ୍ବ ହୋଇ ନାହିଁ, ମାତ୍ର ତା'ର ଆଉ ଆବଶ୍ୟକତା କ'ଣ ଅଛି ? କାହିଁକି ବା ବୁଝାଇବ ? ରୀତାର ସନ୍ଦିଗ୍ଧ ବ୍ୟବହାର ଏବଂ ଆହୁରି ଥରେ ଏମିତି ଫେରିବା ପାଇଁ ? ନାଁ !

* * *

ଧ୍ୱସ୍ତବିଧ୍ୱସ୍ତ ରେଳଡବାମାନଙ୍କର ଓ ପରିତ୍ୟକ୍ତ ରେଳ ଇଞ୍ଜିନ୍‌ଗୁଡ଼ିକର କବର କ୍ରମଶଃ ଦୁଇକଡ଼ରେ ବଢ଼ିବାକୁ ଲାଗିଲା । ସୁସୁ ପବନରେ ଶୁଖିଲା କରତଗୁଣ୍ଡି ଶୂନ୍ୟ ନିର୍ଜନ ଜଙ୍ଗଲିଆ ଜାଗାମାନଙ୍କରେ ଉଡ଼ିବୁଲିବାକୁ ଲାଗିଲା ।

ସହରର ଚତୁର୍ଦ୍ଦିଗରେ ଜଙ୍ଗଲିଆ ଅଞ୍ଚଳରେ ଏବଂ ପାହାଡ଼ିଆ ଓ ବୁଦୁବୁଦୁକିଆ ଜଙ୍ଗଲ ଅଞ୍ଚଳମାନଙ୍କରେ ଓଲ୍ଡିକ୍‌ଙ୍କ ଦଳମାନେ ଘୁରିବୁଲୁଥାନ୍ତି । ଦିନର ଆଲୋକରେ ସେମାନେ ଆଖପାଖର ବୁଦୁବୁଦୁକିଆ ଜଙ୍ଗଲ କିମ୍ବା ଜଙ୍ଗଲ ଭିତରେ ଲୁଚି ରହନ୍ତି ଏବଂ ରାତିରେ ରେଳ ରାସ୍ତାଗୁଡ଼ିକ ପାଖକୁ ଛପିଛପି ଯାଇଁ ରେଳଲାଇନ୍‌ଗୁଡ଼ିକୁ ନିର୍ଦ୍ଦୟଭାବରେ ଭାଙ୍ଗିରୁଜି ଦିଅନ୍ତି । ତାଙ୍କ ଭଙ୍ଗାରୁଜା କାମ ଶେଷ ହେଲା ପରେ ପୁଣି ଲୁଚିଲା ଜାଗାକୁ ଫେରିଯାଆନ୍ତି ।

ରେଳପୋଲଗୁଡ଼ିକ ନିକଟରେ ଅଗଣିତ ରେଳଗାଡ଼ି ଧକାଖାଇ ଖସିଯାଏ । ରେଳଡବାଗୁଡ଼ିକ ଦୁର୍ଘଟଣା ଫଳରେ, କମାରଶାଳର ଗୁଣ୍ଡ ଲୁହାରେ ପରିଣତ ହୁଏ । ନିଦ୍ରାଳୁ ରେଳଯାତ୍ରୀମାନେ ବିଧ୍ୱସ୍ତ ରେଳଡବା ଭିତରେ ପେଷିହୋଇଯାଆନ୍ତି । ଜୀବନଠାରୁ ମୂଲ୍ୟବାନ ଖାଦ୍ୟସବୁ ରକ୍ତ ଓ ମାଟିରେ ସାଲୁବାଲୁ ହୋଇ ପଡ଼ିରହିଥାଏ ।

ବେଳେବେଳେ ସେମାନେ କୌଣସି କୌଣସି ଛୋଟ ସହର ଭିତରକୁ ପଶିଆସନ୍ତି,

ଭୟଭୀତ କୃଷକମାନଙ୍କୁ ଆହୁରି ସନ୍ତ୍ରସ୍ତ କରାଇ । ଯୁଆଡ଼େ ସିଆଡ଼େ କେଇ ରାଉଣ୍ଡ ଗୁଳି ଇତସ୍ତତଃ ଫୁଟାଇ ଦିଅନ୍ତି । ଭୋଲେନ୍ସ୍ତ ସୋଭିଏତ୍ କୋଠା ବାହାରେ ଅଳ୍ପ ସମୟ ପାଇଁ ଗୁଳି ଫୁଟାର ଶବ୍ଦ ଶୁଭେ । ଡକାଏତ ଦଳ ସେମାନଙ୍କର ହୃଷ୍ଟପୁଷ୍ଟ ଘୋଡ଼ାଗୁଡ଼ିକରେ ଗାଁ ରାସ୍ତାରେ ଧସାଇ ଆସନ୍ତି ଏବଂ ତାଙ୍କ ରାସ୍ତାରେ ଯାହାକୁ ଭେଟନ୍ତି, ତାକୁ ଦୁଇଗଡ଼ କରି କାଟିପକାନ୍ତି, ସତେକି ମଣିଷଗୁଡ଼ାକ କାଠଗଡ଼ ଓ ସେମାନେ କାଠଗଡ଼ ହାଣୁଛନ୍ତି । ସାଧାରଣତଃ ବନ୍ଧୁକ ଗୁଳି ସେମାନେ ବ୍ୟବହାର କରନ୍ତି ନାହିଁ । କାରଣ ଗୁଳି ପ୍ରାୟ ଦୁଷ୍ପ୍ରାପ୍ୟ ।

ପରେ ପରେ ଯେମିତି ହଠାତ୍ ପଶି ଆସିଥାନ୍ତି, ସେମିତି ଅତି ଶୀଘ୍ର ଡକାଏତ ଦଳଟା ସାରା ଅଦୃଶ୍ୟ ହୋଇଯାଆନ୍ତି । ଗୁରିଆଡ଼େ ତାଙ୍କର ଯେମିତି କାନ ଓ ଆଖି ଅଛି ଦେଖିବାକୁ-ଶୁଣିବାକୁ । ସେମାନେ ଭୋଲେନ୍ସ୍ତ ସୋଭିଏତ୍ କୋଠାଟି ଭିତରେ କ'ଣ ଘଟୁଛି କେତେବେଳେ, ସବୁ ଜାଣିପାରନ୍ତି, କାରଣ ଏକ ଅଦୃଶ୍ୟ ସୂତ୍ର, ଧର୍ମଯାଜକଙ୍କ ଘର ଭିତରୁ ଓ କୁଲକ୍ କୁଡ଼ିଆଗୁଡ଼ିକ ଭିତରୁ ଜଙ୍ଗଲ ଭିତରକୁ ଟଣାହୋଇଥାଏ – ଗୁଳି ବାକ୍ସ, ମାଂସ, ସ୍ପିରିଟ୍ ବୋତଲ, ଖାଦ୍ୟଦ୍ରବ୍ୟ ସବୁ ସେହି ସୂତ୍ରରେ ହିଁ ଯାଏ ବାହାରକୁ, ସେମାନଙ୍କ ପାଖକୁ । ସମ୍ବାଦସବୁ ମଧ୍ୟ ନୀଚ ପାହିଆର ଆତାମାନ୍‌ର କାନକୁ ଯିବା ସଙ୍ଗେସଙ୍ଗେ ବିଭିନ୍ନ ପଥରେ ଯାଇ ଯାଇ ପହଞ୍ଚେ ସ୍ୱୟଂ ଓର୍ଲିକ୍ କାନରେ ।

ସେମାନଙ୍କ ଭିତରେ ସର୍ବମୋଟ ଦୁଇଶହ କି ତିନିଶହ ତଣ୍ଟିକଟା ଡକାଏତ ଥିଲେ ମଧ୍ୟ ଦଳଟି ଏପର୍ଯ୍ୟନ୍ତ ବଞ୍ଚିରହିଛି, ସବୁ ଆକ୍ରମଣରୁ ନିଜକୁ ବଞ୍ଚାଇ ରଖିଛି । ସେମାନେ ଦୁଇ ତିନୋଟି ଛୋଟ ଛୋଟ ଦଳରେ ବିଭକ୍ତ ହୋଇଯାଇ, ଏକାଦିକ୍ରମେ ଦୁଇ ତିନୋଟି ଜିଲ୍ଲା ଉପରେ ଆକ୍ରମଣ ଚଳାନ୍ତି । ତେଣୁ ସେମାନଙ୍କ ଭିତରୁ ସମସ୍ତଙ୍କୁ ଧରିବା ଅସମ୍ଭବ ହୋଇପଡ଼େ । ପୁଣି ଗତରାତିର ଡକାଏତ, ତା' ପରଦିନ ସକାଳୁ ଏକ ନିରୀହ ଶାନ୍ତ କୃଷକ ରୂପରେ ନିଜ କ୍ଷେତରେ କାମ କରୁଥାଏ, ନିଜ ଘୋଡ଼ାକୁ ମୁହାଁଇ ଦେଉଥାଏ । କିମ୍ବା ପିକା ଟାଣି ନିରୀହଭାବରେ ନିଜ ଘର ଫାଟକ ପାଖରେ ଛିଡ଼ାହୋଇ ଡକାଏତଙ୍କୁ ଖୋଜିବାକୁ ଯାଉଥିବା ପ୍ରହରୀବାହିନୀଙ୍କୁ କଣେଇ କଣେଇ ଗୁହୁଁଥାଏ ।

ଆଲେକ୍‌ଜାନ୍ଦର ପୁଚିରେଭ୍‌ସି ନିଜର ଦଳବଳ ନେଇ ତିନୋଟି ଜିଲ୍ଲାସାରା ଅସୀମ ଧୈର୍ଯ୍ୟ ସହିତ ଡକାଏତ ଦଳଟିକୁ ଧରିବାକୁ ଉଠିପଡ଼ି ଲାଗିଥାନ୍ତି । ବେଳେବେଳେ ତାଙ୍କ ପଛରେ ଯାଇ କେତେକଙ୍କୁ ଶେଷ ମଧ୍ୟ କରିଛନ୍ତି ।

ମାସକ ପରେ ଓର୍ଲିକ୍ ବାଧ୍ୟ ହୋଇ ଦୁଇଟି ଜିଲ୍ଲାରୁ ନିଜ ଦଳକୁ ଅପସାରିତ କରିନେଲା । ଏବେ ସେ ଏକ ସଂକ୍ଷିପ୍ତ, ଛୋଟ ଅଞ୍ଚଳଟିରେ ନିଜର କାରସାଦି ଦେଖାଉଛି ।

ସହରର ଜୀବନଯାତ୍ରା ସାଧାରଣ ଗତିରେ ଗ୍ଲୁଲିଥାଏ । ପାଞ୍ଚୋଟି ପ୍ରଧାନ ବଜାର ଭିତରେ କିଣାବିକା ପାଇଁ ଗହଳି ବଢ଼ିଉଠିଥାଏ । ସାଧାରଣ ଭାବରେ ଲୋକଙ୍କ ଭିତରେ ଦୁଇଟି ମନୋବୃତ୍ତି ପ୍ରବଳ ଥାଏ – ଗୋଟିଏ ହେଉଛି, ଯେତେ ଯାହା ମିଳିବ ସବୁକୁ

ଆବୋରି ନେଇଯାଇ ନିଜର କରିବା ଓ ଦ୍ୱିତୀୟଟି ହେଲା, ଅପରକୁ ଯେତେ ସମ୍ଭବ କମ୍ ଦେବା । ଏଭଳି ପରିବେଶ କଳାବଜାରୀ ଓ ଲାଞ୍ଚଖୋର ଲୋକମାନଙ୍କୁ ଅଫୁରନ୍ତ ସୁଯୋଗ ଓ ଶକ୍ତି ଯୋଗାଉଥାଏ । ଜନଗହଳି ଭିତରେ ଶହଶହ ଧୂର୍ତ୍ତ ଆଖି, ଯେଉଁଥିରୁ ସଚୋଟପଣିଆ ବ୍ୟତୀତ ଆଉ ସବୁ ମିଳିପାରିବ, ଘୂରିବୁଲୁଥାଏ । ପଚାସଢ଼ା ଜିନିଷ ଉପରକୁ ମାଛି ଘେରି ଆସିଲାଭଳି ସହରର ସମସ୍ତ ଲୋଭାତୁର, ଧୂର୍ତ୍ତ ଲୋକ ବଜାରମାନଙ୍କୁ ଚାଲିଆସନ୍ତି । ସମସ୍ତଙ୍କର କେବଳ ଗୋଟିଏ ମାତ୍ର ଉଦ୍ଦେଶ୍ୟ – କିଭଳି କାହାକୁ ଠକାଇବା । ଯେଉଁ କେତୋଟି ରେଳ ଏ ରାସ୍ତାରେ ଆସେ, ସବୁଗୁଡ଼ିକ କାନ୍ଧରେ ଝୁଲା ଲଦାହୋଇଥିବା ଅନେକ ଲୋକଙ୍କୁ ବୋହିଆଣେ, ଯେଉଁମାନେ ଓହ୍ଲାଇଲା ମାତ୍ରେ ଚରବର ହୋଇ ମାର୍କେଟ୍ ଆଡ଼କୁ ପାଦ ବଢ଼ାନ୍ତି ।

ରାତିରେ ମାର୍କେଟ୍ ଅଞ୍ଚଳ ସବୁ ନିର୍ଜନ ଜନଶୂନ୍ୟ ହୋଇଯାଏ । ଧାଡ଼ିଧାଡ଼ି ହୋଇ ଶୂନ୍ୟ ଦୋକାନଘର ସବୁ କଳାରାତିର ନିର୍ଜନତା ଭିତରେ ଭୟପ୍ରଦ ହୋଇଉଠନ୍ତି ।

ରାତିର ଅନ୍ଧକାରରେ କେବଳ ସାହସୀ ଲୋକେ ହିଁ ଏ ଜନଶୂନ୍ୟ ଅଞ୍ଚଳକୁ ଆଗେଇଯିବାକୁ ପାଦ ବଢ଼ାନ୍ତି । କାରଣ ପ୍ରତ୍ୟେକଟି ଦୋକାନଘର ପଛପଟେ ବିପଦ ଛପିରହିଥାଏ । ସାଧାରଣତଃ ରାତିର ନିର୍ଜନତା ଭଙ୍ଗ କରି ବଡ଼ ଲୁହା ଉପରେ ଜୋର୍‌ରେ ହାତୁଡ଼ି ପାହାର ପଡ଼ିଲା ଭଳି ଶବ୍ଦ କରି ଗୁଳି ଫୁଟେ ।

ନିଜ ରକ୍ତରେ ତଣ୍ଟି ଓଦା ହୋଇ ଲାଶ ହୋଇଯାଏ । ଅଳ୍ପସଂଖ୍ୟକ ସଶସ୍ତ୍ର ପ୍ରହରୀ, ଯେଉଁମାନେ ରାତି ପହରା ପାଇଁ ଥାଆନ୍ତି, ସେମାନେ ନିକଟସ୍ଥ ବିଟ୍‌ରୁ ଗୁଳି ଫୁଟିବା ଅଞ୍ଚଳକୁ ଆସିବାବେଳକୁ (କାରଣ ସେମାନେ ମଧ୍ୟ ଏକାଟିଆ ଆସିବାକୁ ଭୟ ପାଆନ୍ତି) କେବଳ ରକ୍ତାକ୍ତ ମୃତ୍ୟୁଦେହଟି ବ୍ୟତୀତ ଆଉ କିଛି ଦେଖିବାକୁ ପାଆନ୍ତି ନାହିଁ ।

ହତ୍ୟାକାରୀମାନେ କୁଆଡ଼େ ଅଦୃଶ୍ୟ ହୋଇଯାଇଥାନ୍ତି । ଦଲକାଏ ପବନ ଭଳି ଏ କୋଳାହଳ ମାର୍କେଟ୍ ଅଞ୍ଚଳର ନିଶାଚରମାନଙ୍କୁ କାହିଁକୁଆଡ଼େ ଉଭାନ୍ କରିଦେଇଥାଏ ।

ମାର୍କେଟ୍‌ର ବିପରୀତ ପାର୍ଶ୍ୱରେ ଛିଡ଼ାହୋଇଥାଏ 'ଓରିଅନ୍' ସିନେମା । ରାସ୍ତା ଓ ଫୁଟ୍‌ପାଥ ବିଜୁଳି ଆଲୋକରେ ଉଦ୍ଭାସିତ ହୋଇଥାଏ ଏବଂ ସିନେମା ହଲ୍‌ର ପ୍ରବେଶପଥରେ ଲୋକେ ଜମା ହୋଇଥାନ୍ତି । ହଲ୍ ଭିତରେ ପ୍ରୋଜେକ୍ଟର ଶବ୍ଦ କରି ଚାଲିବାକୁ ଆରମ୍ଭ କରେ ଓ ପରଦା ଉପରେ ଦେଖାଯାଏ କେତୋଟି ଅତିନାଟକୀୟ ପ୍ରେମ ଦୃଶ୍ୟ । ମଝିରେ ମଝିରେ ଫିଲ୍ମ କଟିଯାଏ ଏବଂ ଦର୍ଶକମାନଙ୍କର 'ବନ୍ଦକର' 'ବନ୍ଦକର' ପାଟିଗୋଳ ଭିତରେ ଅପରେଟର ପ୍ରୋଜେକ୍ଟର ବନ୍ଦ କରିଦିଏ ।

ସହରର କେନ୍ଦ୍ର-ସ୍ଥଳୀରେ ତଥା ସହରତଳି ଅଞ୍ଚଳରେ ଜୀବନ ଗତାନୁଗତିକ ଧାରାରେ ଚାଲୁଥିଲା ଭଳି ଜଣାଯାଏ । ଏପରିକି ପାର୍ଟିର ଜିଲ୍ଲା କମିଟି, ଯେଉଁଟିକି ବିପ୍ଳବୀ କର୍ମକର୍ତ୍ତାମାନଙ୍କର କେନ୍ଦ୍ରସ୍ଥଳ, ସେଠାରେ ମଧ୍ୟ ସବୁ ଅତି ସାଧାରଣଭାବରେ ଚାଲୁଥାଏ । ବରଂ ଅସାଧାରଣ ଭାବରେ ଚୁପ୍‌ଚାପ୍ ଥାଏ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମାତ୍ର ଏହି ଚୁପ୍‌ଚାପ୍ ରହିବା ଏକ ବାହ୍ୟିକ କଥା ମାତ୍ର ।

ସହରରେ ଏକ ଝଡ଼ ଆସନ୍ନ ଥାଏ । ବିଭିନ୍ନ ଅଞ୍ଚଳରୁ ଆସିଥିବା ଲୋକେ, ଯେଉଁମାନଙ୍କର ବିରାଟ କୃଷକପିନ୍ଧା ଓଭରକୋଟ୍ ତଳୁ ମଧ୍ୟ ବନ୍ଧୁକଟିମାନ ଦିଶୁଥାଏ ବାହାରକୁ, ସମସ୍ତେ ଏକଥା ଅନୁଭବ କରୁଥାନ୍ତି ଯେ, କିଛି ଗୋଟାଏ ହେବାକୁ ଯାଉଛି । ସେମିତି ମଧ୍ୟ ଜାଣିପାରୁଥାନ୍ତି ଖାଦ୍ୟଦ୍ରବ୍ୟ ବ୍ୟବସାୟୀଙ୍କ ରୂପରେ, ଯେଉଁମାନେ ସବୁ ରେଳ ଛାତ ଉପରେ ବସି ସହର ଭିତରକୁ ଆସୁଥାନ୍ତି । ସେମାନେ ନିଜନିଜର ଅଖାଗୁଡ଼ିକୁ ସିଧାସିଧି ବଜାରକୁ ନନେଇ, ଅତି ସାବଧାନତା ସହକାରେ ମନେରଖିଥିବା ଗୁପ୍ତ ଠିକଣାମାନଙ୍କୁ ନେଇଯାଆନ୍ତି ।

ଏମାନେ ସମସ୍ତେ ଜାଣିଥାନ୍ତି । ମାତ୍ର ଶ୍ରମିକ ଜିଲ୍ଲଗୁଡ଼ିକ ଏବଂ ଏପରିକି ବଲ୍‌ଶେଭିକ୍‌ମାନେ ମଧ୍ୟ ଘୁଣାକ୍ଷରେ ସୁଦ୍ଧା ଏ ଆସନ୍ନ ଝଡ଼ର ସମ୍ବାଦ ଜାଣିପାରି ନଥାନ୍ତି ।

ସହରର ମାତ୍ର ପାଞ୍ଚଜଣ ବଲ୍‌ଶେଭିକ୍‌ଙ୍କୁ ଜଣାଥିଲା କି ଚକ୍ରାନ୍ତ ଗ୍ରଚିଛି ବୋଲି ।

ପେଟ୍‌ଲ୍ୟୁରା ଦଳର ଅବଶେଷାଂଶ, ଯେଉଁମାନଙ୍କୁ ଲାଲସେନା ଶ୍ୱେତ ପୋଲାଣ୍ଡ ଭିତରକୁ ଘଉଡ଼ାଇ ଦେଇଥିଲେ, ସେମାନେ ଓ୍ୱାର୍ସାଠାରେ ବିଦେଶୀ ମିଶନ୍‌ମାନଙ୍କ ସହିତ ସହଯୋଗ ସ୍ଥାପନ କରି ଏ ପ୍ରତିବିପ୍ଳବରେ ଭାଗ ନେବାକୁ ପ୍ରସ୍ତୁତ ହେଉଥାନ୍ତି । ପେଟ୍‌ଲ୍ୟୁରା ବାହିନୀର ସେହି ଅବଶିଷ୍ଟଙ୍କୁ ନେଇ ଏକ ଲୁଣ୍ଠନକାରୀ ବାହିନୀ ଗଢ଼ା ହେଉଥାଏ ।

ଏହି ବିରୋଧୀମାନଙ୍କର ଏକ ସଂଗଠନ ଶେପେଟୋଭ୍‌କାରେ ଥିଲା । ସେଥିରେ ସତରଚାଳିଶ ଜଣ ସଭ୍ୟ ଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଅତୀତର ପ୍ରସିଦ୍ଧ ପ୍ରତିବିପ୍ଳବୀ, ଯେଉଁମାନଙ୍କୁ ବିଶ୍ୱାସ କରି ସ୍ଥାନୀୟ ଚେକା ଛାଡ଼ି ଦେଇଥିଲା ।

ଧର୍ମଯାଜକ ଭାସିଲି, ଏନ୍‌ସାନ୍ ଭିନ୍ନିକ, କୁଜ୍‌ମେଙ୍କୋ ବୋଲି ଜଣେ ପେଟ୍‌ଲ୍ୟୁରା ଅଫିସର—ଏମାନେ ହେଲେ ସଂଗଠନର ନେତା । ଧର୍ମଯାଜକଙ୍କର ଝିଅମାନେ, ଭିନ୍ନିକ୍‌ର ବାପା ଓ ଭାଇ ଓ ସାମୋଟିୟା ବୋଲି ଜଣେ ଲୋକ, ଯିଏକି କାର୍ଯ୍ୟନିର୍ବାହିକା ସମିତି କାର୍ଯ୍ୟାଳୟ ସହିତ ଯୋଗାଯୋଗ ରଖିଥିଲା, ଏମାନେ ସଭିଏଁ ହେଲେ ତାଙ୍କ ଗୁପ୍ତଚର ବାହିନୀ ।

ଯୋଜନା ହେଲା ରାତିଅଧରେ ସାମାନ୍ତର ବିଶେଷ ବିଭାଗକୁ ଗ୍ରେନେଡ୍ ଇତ୍ୟାଦି ଧରି ଆକ୍ରମଣ କରାଯିବ ଏବଂ ବନ୍ଦୀମାନଙ୍କୁ ଖଲାସ କରିଦିଆଯିବ ଏବଂ ଯଦି ସମ୍ଭବ ହୁଏ ରେଳଷ୍ଟେସନ୍ ଦଖଲ କରାଯିବ ।

ଇତ୍ୟବସରରେ, ଗୁପ୍ତଭାବରେ ଓ ଅତି ସାବଧାନତା ସହକାରେ ସହରରେ ଅଫିସରମାନଙ୍କୁ ଠୁଳ କରାଯାଇଥିଲା । କାରଣ, ସେହିଠାରୁ ହିଁ ଏ ପ୍ରତିବିପ୍ଳବ ଆରମ୍ଭ ହେବ ଏବଂ ଡକାଏତ ଦଳମାନଙ୍କୁ ନିକଟବର୍ତ୍ତୀ ଅଞ୍ଚଳର ଜଙ୍ଗଲଗୁଡ଼ିକୁ ସ୍ଥାନାନ୍ତରିତ କରାଯାଇଥିଲା । ଏହିଠାରୁ ହିଁ ରୁମାନିଆ ସହିତ ଏବଂ ପେଟ୍‌ଲ୍ୟୁରା ସହିତ ବିଶ୍ୱାସୀ ଗୁପ୍ତଚରମାନଙ୍କ ଜରିଆରେ ଯୋଗାଯୋଗ ସ୍ଥାପନ କରାଯାଉଥିଲା ।

* * *

ସ୍ପେଶିଆଲ୍ ଡିପାର୍ଟମେଣ୍ଟରେ, ନିଜର ଅଫିସ୍ ବଖରାରେ ଫ୍ୟୋଦୋର୍ ଝୁଖ୍ରାଇ ଗତ ଛଅ ରାତି ସଂପୂର୍ଣ୍ଣ ବିନିଦ୍ର ବିତାଇଛନ୍ତି । କାରଣ କ'ଣ ଘଟିବାକୁ ଯାଉଛି, ସେକଥା ଜାଣିଥିବା ସହରର ପାଞ୍ଚଜଣ ବଲ୍‌ଶେଭିକ୍‌ଙ୍କ ମଧ୍ୟରୁ ଝୁଖ୍ରାଇ ଜଣେ । ପୁରୁଣା ଜାହାଜୀ ଏବେ ଅନୁଭବ କରୁଛନ୍ତି ପୋଖତ ଶିକାରୀର ମାନସିକ ଉଦ୍‌ବେଗ ଓ ଉଜ୍ଜ୍ୱଳା, ଯିଏ ଜାଲପାତି, ସବୁ ଠିକ୍‌ଠାକ୍ କରି ଅପେକ୍ଷା କରି ବସିଥାଏ, କେତେବେଳେ ଜାଲ ଭିତରକୁ ତା' ଶିକାର ଇମ୍ଫ ହେବ ।

ତାଙ୍କୁ ଛପି ରହିବାକୁ ପଡ଼ିବ । ସେ ପାଟି କରିବେ ନାହିଁ ବା କିଛି ବିପଦ ସଙ୍କେତ ଦେବେ ନାହିଁ । କାରଣ ରକ୍ତପିପାସୁ ପଶୁକୁ ନିପାତ କରିବାକୁ ହେବ ଏବଂ ତା'ପରେ ହିଁ କେବଳ ଶାନ୍ତିରେ ସବୁ କାମ କରି ହେବ, ନିଶ୍ଚିନ୍ତ ହୋଇ ଆଗେଇ ଯାଇହେବ । ପ୍ରତ୍ୟେକ ବୁଦାକୁ ଭୟାର୍ତ୍ତ ଦୃଷ୍ଟି ପକାଇ ସାବଧାନ ହୋଇ ଆଗେଇବା ଦରକାର ହେବ ନାହିଁ । ପଶୁଟା ଯେପରି ଖସି ନ ଯାଇପାରେ ଏଥର ! ଏଭଳି ଜୀବନମରଣ ସଂଘର୍ଷ ଭିତରେ ଧୈର୍ଯ୍ୟ ଓ ସାହସିକତା ହିଁ କେବଳ ବିଜୟୀ ହୁଏ ।

ଘଡ଼ିସନ୍ଧି ମୁହୂର୍ତ୍ତ ସନ୍ନିକଟ । ସହରର କେଉଁ ଲୁକ୍‌କାୟିତ ଦସ୍ୟୁଗୁହା ଭିତରେ ଏ ସମୟ ସ୍ଥିରୀକୃତ ହୋଇଛି : ଆଗାମୀକାଲି ରାତି !

ମାତ୍ର ଯେଉଁ ପାଞ୍ଚଜଣ ବଲ୍‌ଶେଭିକ୍ ଜାଣିଥିଲେ, ସେମାନେ ସ୍ଥିର କଲେ, ନା ପ୍ରଥମେ ଆମକୁ ଆଘାତ ହାଣିବାକୁ ପଡ଼ିବ । କାଲି ନୁହେଁ, ଆଜି ରାତିରେ !

ସେହି ସନ୍ଧ୍ୟାରେ ଏକ ସାଞ୍ଜୁଆ ଟ୍ରେନ୍ ନୀରବରେ ଷ୍ଟେସନ୍‌ରୁ ବାହାରିଲା ଏବଂ ରେଳବାଇ ୟାର୍ଡର ବିରାଟ ଫାଟକଗୁଡ଼ାକ ମଧ୍ୟ ଟ୍ରେନ୍ ଯିବା ପରେ, ତା'ଠାରୁ ଆହୁରି ନୀରବରେ ପଛେ ପଛେ ବନ୍ଦ ହୋଇଗଲା ।

ସଙ୍କେତ ଟେଲିଗ୍ରାମ୍ ସବୁ ତାରରେ ବହିଗଲା ସମ୍ବାଦ । ସେମାନଙ୍କର ତୁରନ୍ତ ସମ୍ବାଦ ପାଇବା ମାତ୍ରେ ସଜାଗ ଓ ସତର୍କ ନିରାପତ୍ତା ବାହିନୀର ଲୋକେ, ଯାହାଙ୍କ ଉପରେ ସାଧାରଣତନ୍ତ୍ରର ନିରାପତ୍ତା ନ୍ୟସ୍ତ କରାଯାଇଛି, ତୁରନ୍ତ ପଦକ୍ଷେପ ନେଲେ ଦସ୍ୟୁର ଗୁହାକୁ ଦୀର୍ଣ୍ଣବିଦୀର୍ଣ୍ଣ କରିବା ପାଇଁ, ବିଦ୍ରୋହିବସାକୁ ଭାଙ୍ଗିବା ପାଇଁ ।

ଆକିମ୍ ଝାର୍‌କୀଙ୍କୁ ଟେଲିଫୋନ୍ କଲେ ।

"ସେଇ୍ ମିଟିଂ ଚାଲିଛି ତ ଠିକ୍ ? ଭଲ ... ଏଠାରେ ଏକ ସମ୍ମିଳନୀରେ ଯୋଗ ଦେବା ପାଇଁ ଜିଲା ପାର୍ଟି ସଂପାଦକଙ୍କୁ ସାଙ୍ଗରେ ନେଇ ତୁରନ୍ତ ଆସ । ଜାଳେଣୀର ସମସ୍ୟା, ଆମେ ଯାହା ଭାବିଥିଲେ, ତା'ଠାରୁ ମଧ୍ୟ ଆହୁରି ଖରାପ । ତମେ ଏଠାକୁ ଆସିଲେ, ଆମେ ସୁବିସ୍ତୃତଭାବରେ ଆଲୋଚନା କରିବା ।" ଆକିମ୍ ଦୃଢ଼ ଓ ତରବରିଆ ଭାବରେ କହିଲେ ।

"ଏହି ଜାଳେଣୀ କାଠ ସମସ୍ୟା ଆମ ମୁଣ୍ଡ ଖରାପ କରି ଦେଉଛି ।" ଝାର୍‌କୀ ରିସିଭର ଭିତରେ ନିଜକୁ ନିଜେ କହିଲା ଭଳି କହିଲେ ।

ଭିତ୍‌କେ ଦୁଇଜଣଯାକ ସଂପାଦକଙ୍କୁ ତୀବ୍ର ବେଗରେ ହେଡ୍‌କ୍ୱାର୍ଟରସ୍‌କୁ ନେଇଆସିଲା ଗାଡ଼ିରେ । ସେମାନେ ପାହାଚରେ ଅବତରଣ କରିବା ମାତ୍ରେ ଜାଣିପାରିଲେ ଯେ, ତାଙ୍କୁ ଏଠାକୁ ଜାକେଣୀ ସଂପର୍କରେ ଆଲୋଚନା କରିବା ପାଇଁ ଡକା ହୋଇ ନାହିଁ ।

ଅଫିସ୍ ମ୍ୟାନେଜରଙ୍କ ଟେବୁଲ ଉପରେ ଥୁଆହୋଇଥାଏ ଗୋଟିଏ ମେସିନ୍‌ଗନ୍ ଓ ସ୍ପେଶିଆଲ୍ ଟାସ୍ ୟୁନିଟ୍‌ର ଆସିଥିବା ମେସିନ୍‌ଗନ୍ ଚାଳକ ସୈନ୍ୟମାନେ ତାକୁ ନେଇ ବ୍ୟସ୍ତ ଥାଆନ୍ତି । ସହର ପାର୍ଟି ଓ କମ୍‌ସୋମୋଲ୍‌ରୁ ଆଗତ ପ୍ରହରୀମାନେ ନୀରବରେ ବାରଣ୍ଡା ସାରା ଛିଡ଼ା ହୋଇଥାନ୍ତି । ସଂପାଦକଙ୍କ ଅଫିସ୍ ଭିତରେ ପାର୍ଟିର ଜିଲ୍ଲା କମିଟିର ବ୍ୟୁରୋର ଏକ ଜରୁରୀ ବୈଠକ ଚାଲିଥାଏ । ବୈଠକ ପ୍ରାୟ ଶେଷ ହୋଇଆସିଥାଏ ।

ଗୋଟିଏ ଜଳାକବାଟ ବାଟେ ବାହାରକୁ ତାର ନିଆଯାଇ ଦୁଇଟି ବାହାରର ଯୁଦ୍ଧକ୍ଷେତ୍ରର ଟେଲିଫୋନ୍ ସହ ଯୋଗାଯୋଗ ସ୍ଥାପନ କରାଯାଇଥାଏ ।

ପ୍ରକୋଷ୍ଠଟି ଭିତରେ ଚାପାଗଳାରେ କଥାବାର୍ତ୍ତା ଚାଲିଥାଏ । ଝାର୍‌କୀ ପ୍ରକୋଷ୍ଠ ମଧ୍ୟକୁ ପଶିଗଲା । ସେଠାରେ ଥାଆନ୍ତି ଆକିମ୍, ରୀତା ଓ ମିଖାଇଲେ । ଶ୍‌କୋଲେଙ୍କୋକୁ ସେ ଚିହ୍ନି ପାରିଲା ନାହିଁ । ସେ ଗୋଟାଏ ଫୌଜୀ କୋଟ୍ ପିନ୍ଧିଥାଏ ଏବଂ ବେଲ୍ଟରେ ଏକ ରିଭଲଭର ଖୋସିଥାଏ । ରୀତା ପିନ୍ଧିଥାଏ ଗୋଟିଏ ଲାଲ ସେନା ଶିରସ୍ତାଣ, ଖାକି ସାର୍ଟ ଓ ତା'ଉପରେ ଚମଡ଼ା ଜ୍ୟାକେଟ୍ । ଜ୍ୟାକେଟ୍‌ରୁ ଝୁଲୁଥାଏ ଓଜନଦାର ପିସ୍ତଲ୍‌ଟିଏ । ଏହି ପୋଷାକ ସେ ଆଗରୁ ପିନ୍ଧୁଥିଲା, ଯେତେବେଳେ ସେ ସାମ୍ମୁଖ୍ୟ ବାହିନୀର ରାଜନୈତିକ ନିର୍ଦ୍ଦେଶକ ଥିଲା ।

"ଏସବୁ କାହିଁକି ?" ଆଶ୍ଚର୍ଯ୍ୟାନ୍ୱିତ ହୋଇ ତାକୁ ପ୍ରଶ୍ନ କଲା ଝାର୍‌କୀ ।

"ପ୍ରସ୍ତୁତ ରୁହ, ଭାନ୍ୟା ! ଆମେ ସିଧାସଳଖ ଏଠାରୁ ଚମ ଜିଲାକୁ ଯାଉଛୁ । ଆମେ ସମସ୍ତେ ମିଶିବୁ ପଞ୍ଚମ ପଦାତିକ ବାହିନୀ ଶିକ୍ଷା ଶିବିରରେ । କମ୍‌ସୋମୋଲ୍ ସଦସ୍ୟମାନେ ସିଧା ...ଙ୍କର ସେଲ୍ ମିଟିଂ ସାରି ସେଠାରେ ପହଞ୍ଚିଯିବେ । ସବୁଠାରୁ ବଡ଼ କଥା ହେଉଛି, କାହାରି ଦୃଷ୍ଟି ଆକର୍ଷଣ ନକରି ଆମେ ଯେପରି ସେଠାରେ ପହଞ୍ଚିପାରୁ ।"

ପ୍ରାଚୀନ ମିଲିଟାରୀ ଶିକ୍ଷା ଶିବିରର ବିରାଟ ପ୍ରକାଣ୍ଡକାୟ ଓକ୍ କାଠଭରା ପଡ଼ିଆ, ଆଜେବାଜେ ଦଳରେ ପରିପୂର୍ଣ୍ଣ ମଇଳା ପାଣିରେ ଭର୍ତ୍ତି ତା'ର ପୋଖରୀ ଏବଂ କେବେ ପରିଷ୍କାର ନ କରାହୋଇଥିବା ତା'ର ପ୍ରଶସ୍ତ ରାସ୍ତା—ସବୁଠାରେ ଯେମିତି ନିର୍ଜନତା ଭରିଯାଇଥିଲା । ପଡ଼ିଆର ଠିକ୍ ମଝିରେ ପ୍ରାୟ ବିରାଟ ଏକ ଧଳା କାନ୍ଥର ପଛପଟେ ଛିଡ଼ା ହୋଇଛି ସ୍କୁଲ ଘରଟା—ଏବେ ପଞ୍ଚମ ପଦାତିକ ବାହିନୀର, ଲାଲ ବାହିନୀର ଅଧ୍ୟକ୍ଷମାନଙ୍କର ଶିକ୍ଷାକେନ୍ଦ୍ର । ରାତି ଗଭୀର ହେଲଣି । କୋଠାର ଉପର ମହଲଟି ପୂରାପୂରି ଅନ୍ଧାରରେ ବୁଡ଼ି ରହିଛି । ବାହାରକୁ ଆଲୋକର ଚିହ୍ନବର୍ଣ୍ଣ ସୁଦ୍ଧା ଦିଶୁ ନାହିଁ । ଅକସ୍ମାତ୍ ପଥଚାରୀ କେହି ସେ ବାଟରେ ଗଲେ ଭାବିବ, ଶିକ୍ଷା କେନ୍ଦ୍ରର ସମସ୍ତ

ଶିକ୍ଷାନବିସ୍ ବୋଧହୁଏ ବର୍ତ୍ତମାନ ଗଭୀର ନିଦ୍ରାମଗ୍ନ । କାହିଁକି ତେବେ ଲୁହା ଫାଟକଟା ଖୋଲା ହୋଇରହିଛି ଓ ଫାଟକ ଦୁଇ କଡ଼ରେ ସେ କଳା କଳା ଛାଇଦୁଇଟା ଅନ୍ଧାରକୁ ଭେଦକରି ଦିଇଟା ଫାପୁଲା ବେଙ୍ଗ ଭଳି ଭୟଙ୍କର ଦିଶୁଛି, କ'ଣ ସିଏ ? ରେଜବାଇ ଜିଲାର ବିଭିନ୍ନ ଅଞ୍ଚଳରୁ ଆସି, ଏଠାରେ ଏକତ୍ର ହୋଇଥିବା ସମସ୍ତଙ୍କୁ ଜଣା ଯେ, ସ୍କୁଲର ଶିକ୍ଷାନବିସ୍‌ମାନେ କେହି ଆଜି ରାତିରେ ଶୋଇ ନ ପାରନ୍ତି । କାରଣ ସେମାନଙ୍କୁ ରାତି ଜାଗିବାକୁ ସଙ୍କେତ ଦିଆଯାଇଛି । ସେମାନେ ସମସ୍ତେ ନିଜର ଯୁବ ସଂଗଠନ ବୈଠକ ଓ ପାର୍ଟିର ସେଲ୍ ବୈଠକରୁ ଘୋଷଣା ଶୁଣି ସିଧାସିଧି ଏଠାକୁ ଆସୁଛନ୍ତି । ସଭିଏଁ ନୀରବରେ ଆସୁଛନ୍ତି । ଜଣ ଜଣ ହୋଇ ବା ଦୁଇ ଦୁଇ ଜଣ କରି, ମାତ୍ର କେବେହେଲେ ତିନିଜଣରୁ ଅଧିକ ଏକାଠି ହୋଇ ଆସୁ ନାହାନ୍ତି । ଏବଂ ପ୍ରତ୍ୟେକେ ତାଙ୍କର କମ୍‌ସୋମୋଲ୍ ସଂଗଠନର ବା ପାର୍ଟି ସଭ୍ୟ କାର୍ଡ ନେଇ ଆସିଛନ୍ତି ସାଙ୍ଗରେ । କାରଣ ପରିଚୟପତ୍ର ବ୍ୟତୀତ କେହି ଏ ଲୁହା ଫାଟକ ଡେଇଁ ଯାଇପାରିବ ନାହିଁ ।

ସମ୍ମିଳନୀ ହଲ୍‌ଟା ସାରା ଆଲୋକରେ ଉଦ୍ଭାସିତ ଓ ଅନେକ ଲୋକ ଆସିଗଲେଣି । ଝରକାସବୁରେ ବହଳିଆ ପରଦା ଟଣାଯାଇଛି । ଯେଉଁ ବଲ୍‌ଶେଭିକ୍‌ମାନଙ୍କୁ ଏଠାକୁ ଡକାଯାଇଛି, ସେମାନେ ସଭିଏଁ ଘର ତିଆରି ସିଗାରେଟ୍‌ଟିଏ ଟାଣିଟାଣି ଗପ କରୁଛନ୍ତି ଧୀର ସ୍ୱରରେ, କାହିଁକି ତାଙ୍କୁ ଡକାଗଲା ବୋଲି । କେହି ଭାବିପାରୁ ନଥିଲେ ଯେ, ସତରେ କୌଣସି ବିପଦ ଆଶଙ୍କାରେ ତାଙ୍କୁ ଡକାଯାଇଛି ବୋଲି, କାରଣ ସମସ୍ତଙ୍କର ଧାରଣା ହେଉଥିଲା ଯେ, ଶୃଙ୍ଖଳା ରକ୍ଷିବା ପାଇଁ ବା ଅଭ୍ୟାସ କରିବା ପାଇଁ ଏଭଳି ଡାକରା ହୋଇଛି । ମାତ୍ର ଅଭ୍ୟସ୍ତ ସୈନିକମାନେ ବୁଝିସାରିଲେଣି ଯେ, ଏ ଡାକରା କେବଳ ଅଭ୍ୟାସ ବା ଶୃଙ୍ଖଳା ପାଇଁ ନୁହେଁ । ସେମାନେ ଏହି ସ୍କୁଲ ହତାରେ ପ୍ରବେଶ କଲାମାତ୍ରେ ସତର୍କତା ଅବଲମ୍ବନ କରିବାର ପଦ୍ଧତିରୁ ଏକଥା ସ୍ପଷ୍ଟଭାବେ ଜାଣିସାରିଛନ୍ତି । ସାଧାରଣଠାରୁ ଅନେକ ବେଶି ସତର୍କତା ଅବଲମ୍ବନ କରାଯାଉଛି । ନିମ୍ନସ୍ୱରରେ ଦିଆଯାଉଥିବା ଆଦେଶ ଅନୁସରଣ କରି ଛାତ୍ରବାହିନୀ ଧାଡ଼ିବାନ୍ଧି ଆସି ବାହାରେ ଠିଆ ହେଲେଣି । ନୀରବରେ ମେସିନ୍‌ଗନ୍‌ସବୁ ଅଗଣାକୁ ନିଆହେଉଛି ଓ ଘରର କୌଣସି ଗୋଟିଏ ହେଲେ ଝରକାରେ ସୁଦ୍ଧା ଆଲୋକର ଚିହ୍ନବର୍ଣ୍ଣ ନାହିଁ ।

ଝରକା ବନ୍ଧ ଉପରେ, ଦୁଇତିନି ଦିନ ତଳେ ଝାର୍‌ଜାର ଘରେ ଭେଟିଥିବା ଗୋଟିଏ ଝିଅକୁ ଲାଗି ବସିଥିବା ଦୁବାଭାକୁ ପାଭେଲ୍ ପଚାରିଲା :

"ଖବର କ'ଣ କିରେ ମିତ୍ୟାୟ, ବେଶ୍ ଗୁରୁତର ଭଳି ମନେ ହେଉଛି ?"

ପାଭେଲ୍‌ର କାନ୍ଧ ଥଟ୍ଟାରେ ଥାପୁଡ଼ାଇ ଦେଇ ଦୁବାଭା କହିଲା :

"କ'ଣ ଥଣ୍ଡା ହୋଇଗଲୁଣି କିରେ ? ଥୟ ଧର, ଆମେ ତମକୁ ଯୁଦ୍ଧ କରିବା ଶିଖାଇଦେବୁ ଯେ । ଆଚ୍ଛା, ତମେ ଦିହେଁ ବୋଧହୁଏ ପରସ୍ପରକୁ ଜାଣ ନାହିଁ, ନାଁ ?" ଝିଅଟି ଆଡ଼କୁ ଗୁହିଁ ପଚାରିଲା ସେ, ତା'ପରେ କହିଲା, "ଇଏ ହେଲା ଆନ୍ନା । ତା'

ଶେଷ ନାଁଟା ମୁଁ ବି ଏଯାଏଁ ଜାଣି ନାହିଁ । ସେ ଆନ୍ଦୋଳନ ଓ ପ୍ରଗ୍ରର ବିଭାଗର ଦାୟିତ୍ୱରେ ଅଛି ।"

କୋର୍ଗିନ୍ ସହିତ ପରିଚିତ ହୋଇ, ଅଭିବାଦନ ଆଦାନପ୍ରଦାନ ହେଲ ପରେ ଝିଅଟି ବେଶ୍ ଆଗ୍ରହ ପ୍ରକାଶ କଲ ତା'ପ୍ରତି । ନିଜର ବାଇଗଣୀ ରଙ୍ଗର ମୁଣ୍ଡବନ୍ଧା ରୁମାଲ ଭିତରୁ ଅସଂଯତ ହୋଇ ବାହାରି ପଡ଼ିଥିବା ଚୂର୍ଣ୍ଣକୁନ୍ତଳକୁ ସଜାଡ଼ିନେଲ ।

ଉଭୟଙ୍କ ଆଖି ପରସ୍ପର ସହିତ ନୀରବରେ ମିଳିତ ହୋଇ ଫେରିଆସିଲ ଥରେ, ଦୁଇଥର । ବହଳ ଭ୍ରୂଲତଳେ ଉଜ୍ଜ୍ୱଳ କଳା ଆଖିଦିଓଟି ତା'ର ସତେ ଯେମିତି ପାଭେଲ୍‌କୁ ଆହ୍ୱାନ ଦେଲ । ପାଭେଲ୍ ତା ଆଖିରୁ ଆଖି ଫେରାଇ ଦୂବାଭାକୁ ଗ୍ରହିଁଲ । ନିଜେ ନିଜେ ଯେ ସେ ଲଜେଇଯାଉଛି, ଏ ବିଷୟରେ ସଚେତ ହୋଇ ସେ ପଗ୍ରରିଲ :

"ତମ ଭିତରୁ କିଏ କିଏ ଆନ୍ଦୋଳନ କର ?" ମୁହଁରେ ତା'ର ହସିବାକୁ ଚେଷ୍ଟାର ଫଳସ୍ୱରୂପ ଟିକେ ହସ ।

ଠିକ୍ ସେତିକିବେଳେ ସହସା ଗ୍ରଞ୍ଚଲ୍ୟ ଖେଳିଗଲ ଘରଟା ସାରା । କାରଣ ମିଖାଇଲେ ଶ୍‌କୋଲେଙ୍କୋ ହଲ୍ ଭିତରକୁ ପଶିଆସି ଚଉକିଟାଏ ଉପରେ ଛିଡ଼ା ହୋଇପଡ଼ି ବଡ଼ ପାଟିରେ କହିଲେ :

"ପ୍ରଥମ କମାନୀ କମ୍ୟୁନାରମାନେ, ଧାଡ଼ି ବାନ୍ଧି ଛିଡ଼ା ହୁଅ ! ଶୀଘ୍ର, ଶୀଘ୍ର ଧାଡ଼ି ବାନ୍ଧ ତମେମାନେ, ଯେତେ ଶୀଘ୍ର ପାର !"

ତା'ପରେ ଆଞ୍ଚଳିକ କାର୍ଯ୍ୟକାରୀ ସମିତିର ସଭାପତି ଓ ଆକିମ୍‌କୁ ସାଙ୍ଗରେ ନେଇ ଝୁଖିରାଇ ସେ ହଲ୍ ଭିତରେ ପ୍ରବେଶ କଲ । ସେମାନେ ବୋଧହୁଏ ଏହିକ୍ଷଣି ପହଞ୍ଚିଲେ ସେଠାରେ ।

ହଲ୍‌ଟା ସାରା ଧାଡ଼ିବନ୍ଧା ଲେକରେ ପରିପୂର୍ଣ୍ଣ ହୋଇଗଲ ।

ଆଞ୍ଚଳିକ କାର୍ଯ୍ୟକାରୀ ସମିତିର ସଭାପତି, ଅଭ୍ୟାସ ପାଇଁ ବ୍ୟବହୃତ ହୋଇଥିବା ମେସିନ୍‌ଗନ୍‌ର ଭାଡ଼ି ଉପରକୁ ଚଢ଼ିଗଲେ ଏବଂ ବାହୁ ପ୍ରସାର କରି କହିଲେ :

"କମ୍ରେଡ୍‌ଗଣ, ଆପଣମାନଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ ଓ ଜରୁରୀ କାରଣରେ ଏଠାକୁ ଡକାଯାଇଛି । ମୁଁ ବର୍ତ୍ତମାନ ଆପଣମାନଙ୍କୁ ଯାହା କହିବାକୁ ଯାଉଛି, ସେକଥା ନିରାପତ୍ତା ଦୃଷ୍ଟିରୁ ଗତକାଲି ମଧ୍ୟ କୁହାଯାଇ ପାରି ନଥାନ୍ତା – କହିବା ସମ୍ଭବ ନଥିଲ । କାଲି ରାତିରେ ଏକ ପ୍ରତିବିପ୍ଳବୀ ସଂଗଠନ ଏ ସହର ଏବଂ ୟୁକ୍ରାଇନ୍‌ର ଅନ୍ୟାନ୍ୟ ସହରମାନଙ୍କରେ ଗଣ୍ଡଗୋଳ କରିବାର ସିଦ୍ଧାନ୍ତ ନେଇଛନ୍ତି । ସହର ସାରା ଶ୍ୱେତ ରକ୍ଷୀ ଅଫିସରରେ ଛାଇଯାଇଛି । ଡକାଏତ ଲୁଟ୍‌ତରାଜକାରୀ ଦଳ ସହରକୁ ଘେରିରହିଛନ୍ତି ଗ୍ରରିଆଡ଼େ । ସେମାନଙ୍କର କେତେକ ଗୁପ୍ତଚର ସେନାବାହିନୀ ଗାଡ଼ି ଇତ୍ୟାଦିରେ କୌଣସିମତେ ପ୍ରବେଶ କରି, ସେଠାରେ ଗ୍ରଳକଭାବରେ କାମ ମଧ୍ୟ କରୁଛନ୍ତି । ମାତ୍ର ଚେକା ଉପଯୁକ୍ତ ସମୟରେ ଏସବୁର ସନ୍ଧାନ ପାଇ ପାରିଛି ଏବଂ ସେଥି ପାଇଁ ଆମେ ସମଗ୍ର ପାର୍ଟି ଓ କମ୍‌ସୋମୋଲ୍‌ମାନଙ୍କୁ ଆହ୍ୱାନ ଦେଇଛୁ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ।

ପ୍ରଥମ ଓ ଦ୍ୱିତୀୟ କମ୍ୟୁନିଷ୍ଟ ବାଟାଲିଅନ୍ ମିଲିଟାରୀ ସ୍କୁଲ ବିଭାଗ ଓ ଚେକା ବିଭାଗ ସହିତ ଏକାଠି ମିଶି ଯୁଦ୍ଧ କରିବେ । ମିଲିଟାରୀ ସ୍କୁଲର ୟୁନିଟ୍ ତାଙ୍କ କାମ ଆରମ୍ଭ କରିସାରିଲେଣି । ବର୍ତ୍ତମାନ ତମ ପାଳି କମ୍ରେଡ୍‌ଗଣ ! ଆଉ ମାତ୍ର ପନ୍ଦର ମିନିଟ୍ ଭିତରେ ତମମାନଙ୍କୁ ନିଜ ନିଜର ଅସ୍ତ୍ରଶସ୍ତ୍ର ନେଇ ଯୋଗ ଦେବାକୁ ପଡ଼ିବ । କମ୍ରେଡ୍ ଝୁଖ୍‌ରାଇ ଏ ସଂଗ୍ରାମ ପରିଚାଳନା କରିବେ । ଅନ୍ୟାନ୍ୟ ୟୁନିଟ୍ କମାଣ୍ଡରମାନେ ତାଙ୍କଠାରୁ ନିର୍ଦ୍ଦେଶ ନେଇ କାମ ଆରମ୍ଭ କରିବେ । କମ୍ରେଡ୍‌ଗଣ, ଘଟଣାର ଗୁରୁତ୍ୱ ସଂପର୍କରେ ତମମାନଙ୍କୁ ଆଉ ଅଧିକ ବୁଝାଇବା ଆବଶ୍ୟକ ନାହିଁ ବୋଲି ମୁଁ ଭାବୁଛି । କାଲି ଯେଉଁ ସଙ୍କଟ ଆମ ଉପରେ ଆସିବାର ଅଛି, ତାକୁ ଆଜିଠାରୁ ମୂଳପୋଛ କରିବାକୁ ହେବ ।”

ଆଉ ପନ୍ଦର ମିନିଟ୍ ପରେ, ଏକ ସଶସ୍ତ୍ର ବାଟାଲିଅନ୍ ସ୍କୁଲ ଅଗଣାରେ ଧାଡ଼ି ବାନ୍ଧି ଠିଆ ହୋଇଗଲେ ପ୍ରସ୍ତୁତ ହୋଇ ।

ନିଜର ଧାଡ଼ିଗୁଡ଼ିକ ଉପରେ ଆଖି ବୁଲାଇ ଆଣିଲେ ଝୁଖ୍‌ରାଇ ।

ଧାଡ଼ିଗୁଡ଼ିକଠାରୁ ତିନିପାଦ ଆଗେଇ ଛିଡ଼ା ହୋଇଥାନ୍ତି ଦୁଇଜଣ ଲୋକ । ବାହିନୀର ଅଧ୍ୟକ୍ଷ ମେନ୍ୟାଇଲୋ—ଗୋଟିଏ ଲୁହାକାରଖାନାର ଶ୍ରମିକ, ୟୁରାଲ୍ ଅଞ୍ଚଳରୁ ଆସିଥିବା ପ୍ରକାଣ୍ଡ ମଣିଷଟିଏ ସେ । ତାଙ୍କ ପାଖରେ କମିସାର ଆକିମ୍ । ବାଁ କଡ଼କୁ ପ୍ରଥମ ପ୍ଲାଟୁନ୍‌ର ସୈନ୍ୟମାନେ । ତାଙ୍କ ଆଗରେ ତାଙ୍କ ପ୍ଲାଟୁନ୍ କମାଣ୍ଡର ଶ୍‌କୋଲେଙ୍କୋ ଓ ରାଜନୈତିକ ଶିକ୍ଷକ ଉସ୍ତିନୋଭିଚ୍ । ପଛକୁ ଛିଡ଼ା ହୋଇଥାନ୍ତି କମ୍ୟୁନିଷ୍ଟ ବାଟାଲିଅନ୍‌ର ତିନିଶହ ବଛାବଛା ଲଢ଼ୁଆ ସୈନିକ ନୀରବ ହୋଇ ।

ଫ୍ୟୋଦୋର୍ ସଙ୍କେତ ଦେଲେ, “ସମୟ ହେଲା ।”

* * *

ତିନିଶହ ଲୋକ ନିର୍ଜନ ରାସ୍ତାରେ କଦମ ପକାଇ ଆଗେଇଲେ ।

ସାରା ସହର ଶୋଇ ରହିଛି ।

ଲ୍‌ଭୋଭ୍‌ସ୍କାୟା ଷ୍ଟ୍ରିଟ୍‌ରେ ଦିକାୟା ଗଳିର ଠିକ୍ ବିପରୀତ ଦିଗରେ, ବାଟାଲିଅନ୍‌ଟି ଧାଡ଼ିଭାଙ୍ଗି ଖେଳାଇ ହୋଇଗଲେ । ନୀରବରେ ସେମାନେ ସେ କୋଠାଗୁଡ଼ିକ ଘେରିପକେଇ ଘେରିଗଲେ । ଗୋଟିଏ ଦୋକାନ ବାରଣ୍ଡାରେ ସେନାବାହିନୀ କାର୍ଯ୍ୟାଳୟ ସ୍ଥାପିତ ହେଲା ।

କେନ୍ଦ୍ର ଆଡ଼ୁ ତୀବ୍ରବେଗରେ ଗୋଟିଏ ମୋଟର ଗାଡ଼ି ଛୁଟିଆସିଲା ଲ୍‌ଭୋଭ୍‌ସ୍କାୟା ଷ୍ଟ୍ରିଟ୍ ଆଡ଼କୁ । ଗାଡ଼ିଟିର ଲାଇଟ୍ ଆଗରେ ବିରାଟ ରାସ୍ତାଟା ଦେଖାଯାଉଥାଏ । ବାଟାଲିଅନ୍ କମାଣ୍ଡ ପୋଷ୍ଟ ନିକଟରେ ଜୋର୍‌ରେ ବ୍ରେକ୍ କଷି ଛିଡ଼ା ହୋଇଗଲା ଗାଡ଼ିଟା ।

ଚାଳକ ହୁଗୋ ଲିଟ୍‌କେ ଏଥର ଆଣିଥିଲା ନିଜ ବାପାଙ୍କୁ । କମାଣ୍ଡାଣ୍ଟ ଲିଟ୍‌କେ ଗାଡ଼ିରୁ ଡେଇଁପଡ଼ି ନିଜ ପୁଅ, ଗାଡ଼ିର ଚାଳକକୁ ନିଜର ଲେଟୀୟ ଭାଷାରେ କ’ଣ ଗୁଡ଼ାଏ କହିଗଲେ । ଗାଡ଼ିଟା ଆଗକୁ ପୁଣି ଦ୍ରୁତ ଗତିରେ ଯାଇ ଗଳି ମୋଡ଼ରେ ଅଦୃଶ୍ୟ

ହୋଇଗଲା । ଷ୍ଟିଅରିଂକୁ ଜାବୁଡ଼ି ଧରି, ନିଜେ ଯେମିତି ଗାଡ଼ିର ଗୋଟାଏ ଅଂଶ ହୋଇଯାଇଛି, ସେମିତି ବସି, ଆଗ ରାସ୍ତାକୁ ଜଳିଲା ଆଖିରେ ଅନାଇଁ ଭୂତଭଳି ଚଳାଉଥାଏ ଲିଟ୍‌କେ ।

ଆଜି ରାତିରେ ଅନ୍ତତଃ ଲିଟ୍‌କେର ଏଭଳି ଗାଡ଼ି ଚଳାଇବା ଆବଶ୍ୟକ ଥିଲା । ଏଭଳି ଜୋରରେ ଗାଡ଼ି ଚଳାଇବା ପାଇଁ ଗାର୍ଡ ହାଉସ୍‌ରେ ତାକୁ ଆଉ ଦୁଇଟି ରାତି ମିଳିବ କି ନାହିଁ ସନ୍ଦେହ !

ରାସ୍ତାରେ ଧୂମକେତୁ ଭଳି ପୁଣି ଝପଟି ଆସିଲା ଲିଟ୍‌କେ ।

ସହରର ଗୋଟିଏ ସୀମାନ୍ତର ଅପର ପ୍ରାନ୍ତ ପର୍ଯ୍ୟନ୍ତ ରାସ୍ତାକୁ ଆଖି ପିଛୁଳାକେ ଆସିଥିବା ଝୁଖ୍‌ରାଇ, ସପ୍ରଶଂସ ଦୃଷ୍ଟିରେ ବାହକ ଲିଟ୍‌କେକୁ ଗ୍ରହିଁ କହିଲା :

"ଆଜି ଯଦି କାହା ସହିତ ଧକ୍‌କା ନଲଗାଇ ଗାଡ଼ି ନବା ଆଣିବା କର, କାଲି ତେବେ ଗୋଟାଏ ସୁନା ଘଡ଼ି ପୁରସ୍କାର ଦିଆଯିବ ।"

ଉତ୍‌ଫୁଲ୍ଲ ଲିଟ୍‌କେ କହିଲା, "ସେଥି ପାଇଁ ମୋତେ ଦଶ ଦିନ ଜେଲ ଭୋଗିବାକୁ ପଡ଼ିବ ... ।"

ପ୍ରତିବିପ୍ଳବୀମାନଙ୍କର କେନ୍ଦ୍ର ଉପରେ ଆକ୍ରମଣ ଆରମ୍ଭ ହୋଇଗଲା ସାଙ୍ଗେ ସାଙ୍ଗେ ଓ ଅଳ୍ପ ସମୟ ପରେ ବହୁ ବନ୍ଦୀ ଏବଂ ଜବତ ହୋଇଥିବା ନଥିପତ୍ର ସ୍ପେଶିଆଲ୍ ବିଭାଗକୁ ପଠାହେବାକୁ ଲାଗିଲା ।

ଦିଜାୟା ଗଳିରେ ଏଗାର ନମ୍ବର ଘରେ ଷ୍ଟ୍ୟୁର୍ବେର୍ଟ ବୋଲି ଜଣେ ଲୋକ ରହୁଥିଲା । ଚେକା କାର୍ଯ୍ୟାଳୟ ନିକଟରେ ପହଞ୍ଚିଥିବା ଖବରରୁ ଜଣାଯାଉଥିଲା ଯେ, ଏ ଶ୍ୱେତ ରକ୍ଷୀ କୁମନ୍ତ୍ରଣା ଉସ୍କାଇବାରେ ତା'ର ବେଶ୍ ହାତ ଥିଲା । ପୋଦୋଲ୍ ଅଞ୍ଚଳରେ ଯେଉଁ ଅଫିସରମାନେ ପରିଚାଳନା କରିବେ, ସେ ସମସ୍ତଙ୍କର ତାଲିକା ତା' ପାଖରେ ଥିଲା ।

ବଡ଼ ଲିଟ୍‌କେ ନିଜେ ଦିଜାୟା ଗଳିକୁ ଗଲେ ତାକୁ ଗିରଫ କରିବା ପାଇଁ । ଷ୍ଟ୍ୟୁର୍ବେର୍ଟ ଘରର ଝରକାସବୁ ଗୋଟିଏ ବଗିଚାକୁ ଦେଖାଯାଉଥିଲା । ତା' କଡ଼କୁ ଲାଗି, ଧର୍ମଯାଜକମାନଙ୍କର ମଠ ରୂପେ ଅତୀତରେ ବ୍ୟବହୃତ ହେଉଥିବା ଘର । ମଝିରେ ବାଡ଼ଭଳି ଦୁଇଟିକୁ ପୃଥକ୍ କରୁଛି ସେହି ମଠର ଉଚ୍ଚ ପଥର ପାଚିରୀ । ସେ ଘରେ ନଥିଲା । ପଡ଼ୋଶୀମାନେ କହିଲେ ଯେ, ଆଜି ଦିନସାରା ସେମାନେ ଷ୍ଟ୍ୟୁର୍ବେର୍ଟକୁ ଦେଖି ନାହାନ୍ତି ଏଠି । ତା' ଘର ଖାନତଲାସ ହେଲା ଓ ଖାନତଲାସ ଫଳରେ, ନାଁ ଠିକଣାର ଏକ ଲମ୍ବା ତାଲିକା ଓ ହାତବୋମା ରଖାଯିବା ବାକ୍‌ସଟିଏ ମିଳିଲା । ସେଠାରେ ଗୁପ୍ତରେ ଗୋଟିଏ ଦଳ ରହିବାକୁ ଆଦେଶ ଦେଇସାରି କାଗଜପତ୍ରଗୁଡ଼ିକ ତନଖି କରି ଦେଖିବା ପାଇଁ, ଘର ଭିତରେ ଦଣ୍ଡେ ଅଟକିଗଲେ ଲିଟ୍‌କେ ।

ସନ୍ତ୍ରୀ ରୂପେ ବଗିଚା ଭିତରେ ଜଗିରହିଥିବା ମିଲିଟାରୀ ସ୍କୁଲର ତରୁଣ ଛାତ୍ରଟି, ଠକ୍‌ରୁ ବଗିଚା କଣରୁ ଲିଟ୍‌କେ ଥିବା ବଖରାର ଝରକାବାଟେ ଆଲୁଅ ସ୍ୱଷ୍ଟଭାବରେ ଦେଖିପାରୁଥାଏ । ଏକାଟିଆ ବଗିଚାର ସେ ଅନ୍ଧାର ଭିତରେ ଛିଡ଼ାହେବାକୁ ଡର ଲାଗୁଥାଏ

ତାକୁ । କାନ୍ଥଟା ଉପରେ ନଜର ରଖିବାକୁ ମଧ୍ୟ ତାକୁ କୁହାହୋଇଥାଏ । ସେ ଠିଆହୋଇଥିବା ସ୍ଥାନରୁ ଦିଶୁଥିବା ଝରକାର ଆଲୋକ ଅନେକ ଦୂରରେ ଥିବାଭଳି ଜଣାପଡ଼ୁଥାଏ । ପୁଣି ସେତିକିବେଳକୁ ଠିକ୍ ଜହ୍ନଟା ବାଦଲ କୋଳରେ ମୁହଁ ଲୁଚାଇ ଦେଇଥାଏ । ରାତିର ଘନ ଅନ୍ଧାର ଭିତରେ ବୁଦା ଗଛଗୁଡ଼ାକ ଯେମିତି ଭୟଙ୍କର ରୂପ ନେଇ ଛିଡ଼ାହୋଇଥାନ୍ତି । ତତ୍‌କ୍ଷଣ ସୈନିକଟି ତା' ଚାରିକଡ଼େ ଘେରିରହିଥିବା ବହଳ ଅନ୍ଧାରକୁ ସଙ୍ଗିନ୍ ମୁନରେ ବିଦ୍ଧ କଲା ।

"ମୋତେ ଏଠି ଭଲା କାହିଁକି ରଖିଲେ ସେମାନେ ? ଏତେ ଉଚ୍ଚ କାନ୍ଥଟାକୁ କ'ଣ କେହି ଡେଇଁପାରିବ ? ଜଗିବି କ'ଣ ମୁଁ ? ତା' ଅପେକ୍ଷା ବରଂ ଯାଇଁ ଝରକାରେ ଭୁଁକିମାରି ଦେଖେଁ", ଉଚ୍ଚ ପାଚିରୀଟାକୁ ଚାହିଁ ମନେମନେ ଭାବିଲା ସେ ଓ ନିଜେ ଲୁଚି ଛିଡ଼ାହୋଇଥିବା ଅନ୍ଧାର ଉଷୁମୁଳିଆ ଗନ୍ଧଭରା ବୁଦା ଭିତରୁ ବାହାରି ଆସିଲା । ସେ ଝରକା ପାଖରେ ପହଞ୍ଚିଲାବେଳକୁ ଲିଟ୍‌କେ କାଗଜପତ୍ରତକ ବିଡ଼ା ବାନ୍ଧି ଧରିସାରିଲାଣି ଓ ଘରୁ ବାହାରି ଯିବା ପ୍ରସ୍ତୁତ ହେଉଛି । ଠିକ୍ ସେହି ମୁହୂର୍ତ୍ତରେ ପାଚିରୀଟାର ମଥାନ ଉପରେ ଗୋଟାଏ ଛାଇ ଦେଖାଗଲା । ସେ ଜାଗାରୁ ଝରକା ପାଖରେ ଛିଡ଼ା ହୋଇଥିବା ସୈନିକ ଓ ଘର ଭିତରେ ଥିବା ମଣିଷ ଉଭୟ ସ୍ପଷ୍ଟଭାବରେ ଦେଖାଯାଉଥାନ୍ତି । ବିଲେଇ ଭଳି ଛକିଛକି ଛାୟାଟି ଗୋଟିଏ ଗଛରେ ଓହଳିପଡ଼ି ତଳକୁ ଡେଇଁପଡ଼ିଲା । ପାଦ ଚାପି ଚାପି ସେ ନିଜ ଶିକାର ଆଡ଼କୁ ଆଗେଇଆସିଲା ସନ୍ତର୍ପଣରେ । ଗୋଟିଏ ମାତ୍ର ଆଘାତରେ ସୈନିକଟି ଭୂଇଁରେ ଲେଟିପଡ଼ିଲା । ବେକ ପର୍ଯ୍ୟନ୍ତ ତା'ର ଗଳିଯାଇଥିଲା ଗୋଟିଏ ଜାହାଜୀ ଛୁରି ।

ତା' ପରେ ପରେ ଚାରିକଡ଼େ ଘେରିରହିଥିବା ସୈନିକମାନଙ୍କୁ ସଜାଗ ଓ ସଚକିତ କରି ବଗିଚା ଭିତରୁ ଗୁଳିଟାଏ ଫୁଟିଲା । ସୈନିକମାନଙ୍କ ଭିତରୁ ଛଅଜଣ ଘର ଆଡ଼କୁ ଦୌଡ଼ିଆସିଲେ । ରାତିର ଅନ୍ଧକାରାଚ୍ଛନ୍ନ ନୀରବତା ଭଙ୍ଗ କରୁଥାଏ ତାଙ୍କର ଦୃପ୍ତ ପଦପାତ । ଲିଟ୍‌କେ ଟେବୁଲ ଉପରକୁ ଝୁଙ୍କି ପଡ଼ିଥାନ୍ତି ଓ ତାଙ୍କର ଠିକ୍ କପାଳରୁ ରକ୍ତର ସୁଅ ଛୁଟିଥାଏ । ତାଙ୍କ ଦେହରେ ପ୍ରାଣ ନଥାଏ । ଝରକା କାଚ ଚୂରମାର ହୋଇଯାଇଥାଏ । ମାତ୍ର ଖୁଣୀ ସେ କାଗଜପତ୍ର ସବୁକୁ ନେଇଯିବା ପାଇଁ ସମୟ ପାଇ ନାହିଁ ।

କାନ୍ଥ ପାଖରୁ ଆଉ କେତୋଟି ଗୁଳିର ଆୱାଜ ପର ପର ହୋଇ ଶୁଭିଲା । ଖୁଣୀ ପାଚିରୀଟା ଉପରେ ଚଢ଼ିଯାଇଥାଏ ଓ ଗୁଳି ଫୁଟାଉଥାଏ, ଗଳିକୁ ବାହାରିଯିବାକୁ ଚେଷ୍ଟା କରୁଥାଏ ପାଖରେ ଥିବା ଲୁକ୍ୟାନୋଭ୍‌ଙ୍କର ଖାଲି ଜାଗାଟା ବାଟେ । ମାତ୍ର ଗୋଟିଏ ବୁଲେଟ୍ ତା' ଯାତ୍ରାକୁ ସଂକ୍ଷିପ୍ତ କରିଦେଲା ।

ସାରା ରାତି ଧରି ଖାନ୍‌ତଲାସ, ଧରପଗଡ଼ ଲାଗିରହିଲା । ଗୃହଯୋଗାଣ କମିଟି ନିକଟରେ ନିଜକୁ ତାଲିକାଭୁକ୍ତ କରି ନଥିବା ଓ ସନ୍ଦେହଯୁକ୍ତ କାଗଜପତ୍ର ବା ଅସ୍ତ୍ରଶସ୍ତ୍ର ରଖିଥିବା ଶହଶହ ଲୋକଙ୍କୁ ଚେକା ସଂସ୍ଥାକୁ ଚାଲାଣ କରାହେଲା । ସେଠାରେ ଏକ

କମିଟି ବସି ସଙ୍ଗେ ସଙ୍ଗେ ସନ୍ଦେହଜନକ ଲୋକଙ୍କୁ ତନଖି କରି ବାଛିଦେଉଥାନ୍ତି ଓ ବାକୀ ସମସ୍ତଙ୍କୁ ଛାଡ଼ିଦେଉଥାନ୍ତି ।

ଗ୍ରରି ଆଡ଼େ ଷଡ଼ଯନ୍ତ୍ରକାରୀମାନେ ନିଜକୁ ରକ୍ଷା କରୁଥାନ୍ତି । ଝିଭ୍ୟାନ୍‌ସାୟା ଷ୍ଟ୍ରିଟ୍‌ରେ ଏମିତି ଖାନ୍‌ତଲାସୀ ହେଉ ହେଉ, ଆନ୍ତୋନ୍ ଲେବେଦେଭ୍‌ର ପ୍ରାଣଗଲା ଗୁଳିମୁହଁରେ ।

ସୋଲୋମେଙ୍କା ବାଟାଲିଅନ୍ ପାଞ୍ଚଜଣ ସୈନିକ ହରାଇଲେ ସେ ରାତିରେ । ଚେକା ବିଭାଗ, ସାଧାରଣତନ୍ତ୍ରର ଅତନ୍ଦ୍ର ପ୍ରହରୀ ଓ ଜଣେ ଟାଣୁଆ ବଲ୍‌ଶେଭିକ୍ ୟାନ୍ ଭିଟ୍‌କେଙ୍କୁ ହରାଇଲେ ।

ମାତ୍ର ଶ୍ୱେତ ରକ୍ଷୀ ବିଦ୍ରୋହ ମୂଳରୁ ହିଁ ଶେଷ ହୋଇଗଲା ।

ସେହି ରାତିରେ ଶେପେତୋଭ୍‌କା ସହରରେ ଫାଦର ଭାସିଲି ତାଙ୍କ ଝିଅମାନଙ୍କ ସହିତ ଓ ଦଳର ଅନ୍ୟାନ୍ୟମାନଙ୍କ ସହିତ ଗିରଫ ହେଲେ । ଉତ୍ତେଜନା କମିଗଲା ।

ମାତ୍ର ତା'ର ଠିକ୍ ପରେ ପରେ ଆହୁରି ଏକ ନୂତନ ଶତ୍ରୁ ଦେଖାଦେଲା ସହରରେ । ସାରା ରେଳବାଇର ଅଚଳ ଅବସ୍ଥା, ଯାହାର ଅର୍ଥ ହେଉଛି ବୁଭୁକ୍ଷା, ଦୁର୍ଭିକ୍ଷ ଏବଂ ଆଗାମୀ ଶୀତକାଳରେ ପ୍ରଚଣ୍ଡ ଥଣ୍ଡା ।

ବର୍ତ୍ତମାନ ସମସ୍ତଟା ନିର୍ଭର କରୁଛି ଖାଦ୍ୟ ଓ ଜାଳେଣୀ କାଠ ଉପରେ ।

# ଦ୍ୱିତୀୟ ପରିଚ୍ଛେଦ

ଫ୍ୟୋଦୋର୍ ତା'ର ଛୋଟ ବେଣ୍ଟ ଥିବା ପାଇପ୍‌ଟିକୁ ମୁହଁରୁ କାଢ଼ିଲା ଓ ପାଉଁଶକୁ କେଞ୍ଚିବାକୁ ଲାଗିଲା । ପାଇପ୍‌ଟା ଲିଭିଯାଇଥିଲା ।

ତଳନେଖଣ୍ଡେ ସିଗାରେଟ୍‌ରୁ ବାହାରୁଥିବା ଧୂଆଁରେ ଘରଟା ସାରା ଭର୍ତ୍ତି ହୋଇଯାଇଥିଲା, ଏପରିକି ଯେଉଁ ଚଉକିରେ ଆଞ୍ଚଳିକ କାର୍ଯ୍ୟକାରୀ ସମିତିର ସଭାପତି ବସିଥିଲେ । କଣରେ ଟେବୁଲ ଗ୍ରରି ପାଖରେ ବସିଥିବା ଲୋକମାନଙ୍କର ମୁହଁସବୁ ଧୂଆଁରେ ଝାପସା ଝାପସା ଦିଶୁଥାଏ ।

ସଭାପତିଙ୍କର ଠିକ୍ ପାଖରେ ବସିଥିବା ତୋକାରେଭ୍ ବିରକ୍ତ ହୋଇ ନିଜର ଥୁଣ୍ଟାଥୁଣ୍ଟା ଦାଢ଼ିଗୁଡ଼ାକ ଟାଣିପକାଉଥିଲେ ଓ କଣେଇ କଣେଇ ମଝିରେ ମଝିରେ ଗୁଡ଼ାଏ ଲମ୍ବା ଲମ୍ବା ବାଜେ, ଅର୍ଥହୀନ, ଫମ୍ପା ଅଣ୍ଡାଭଳି କଥାସବୁ ବଡ଼ ପାଟିରେ ଅନେକ ସମୟରୁ କହିଗ୍ଲଲିଥିବା ଚନ୍ଦା ଲୋକଟିକୁ ଗ୍ରହିଁଥିଲେ ।

ପୁରୁଖା ଶ୍ରମିକର ସେ ଗ୍ରହାଣୀକୁ ଦେଖି ଆକିମ୍‌ର ମନେ ପଡ଼ୁଥିଲା, ପିଲାଦିନେ ଦେଖିଥିବା ଗୋଟାଏ ଲଢ଼ୁଆ ଗଞ୍ଜାର ଆଖି । ଗଞ୍ଜାଟା ତା' ପ୍ରତିଦ୍ୱନ୍ଦ୍ୱୀ ଉପରକୁ ଝାମ୍ପିପଡ଼ିବା ପୂର୍ବ ମୁହୂର୍ତ୍ତରେ ଠିକ୍ ଯେମିତି ଗାଢ଼େଇକରି ଅନାଏଁ, ସେମିତି ଅନାଉଁଥିଲା ତୋକାରେଭ୍ ।

ଘଣ୍ଟାକଠାରୁ ଅଧିକ ସମୟ ହେଲଣି, ଆଞ୍ଚଳିକ ପାର୍ଟି କମିଟିର ସଭା ବସିଛଣି । ଚନ୍ଦା ଲୋକଟି ରେଳବାଇ ଜାଳେଣୀ କାଠ ସମିତିର ସଭାପତି ।

ଆଗରେ ପଡ଼ିଥିବା କାଗଜଗୁଡ଼ାକୁ ନିଜର ଛୋଟ ଛୋଟ ଆଙ୍ଗୁଠିରେ ଓଲଟାଇ ଓଲଟାଇ ଚନ୍ଦା ଲୋକଟି କହିଚାଲିଥାଏ :

"ଏଭଳି ଅବସ୍ଥାରେ ଆଞ୍ଚଳିକ କମିଟିର ଓ ରେଳବାଇ ପରିଚାଳନାର ସିଦ୍ଧାନ୍ତ ମାନି ଚଳିବା ସଂପୂର୍ଣ୍ଣ ଅସମ୍ଭବ । ମୁଁ ପୁଣି ଥରେ କହୁଛି ଆଜିଠାରୁ ମାସକ ଭିତରେ ଆମେ ଚାରିଶହ କ୍ୟୁବିକ ମିଟରଠାରୁ ଅଧିକ ଜାଳେଣୀ କାଠ ଦେଇପାରିବା ନାହିଁ ଏବଂ ଯେଉଁ ଶହେ ଅଶୀ ହଜାର କ୍ୟୁବିକ ମିଟର ଜାଳେଣୀ ଯୋଗାଣ କରିବା କଥା, ମୋର ଧାରଣା, ସେକଥା ପୂରାପୂରି ..." ଠିକ୍ କେଉଁ ଶବ୍ଦ ବ୍ୟବହାର କରିବ ସେଥିପାଇଁ ବକ୍ତା ମୁହୂର୍ତ୍ତକ ପାଇଁ ଥାଥା ମାମା ହୋଇଗଲେ ଓ କହିଲେ, "ସଂପୂର୍ଣ୍ଣ ଭାବରେ କଳ୍ପନାର କଥା ।" କଥା କେଇପଦ କହିସାରିଲା ପରେ ମୁହଁ ବଙ୍କେଇ ସେ ଛିଡ଼ାହୋଇ ରହିଲେ କିଛି ସମୟ ପର୍ଯ୍ୟନ୍ତ । ଦୀର୍ଘ ନୀରବତା ଦେଖାଦେଲା ହଲଟା ସାରା ।

ଫ୍ୟୋଦୋର୍ ନିଜ ପାଇପ୍‌ଟାରେ ପୁଣି ଥରେ ଠୋକର ମାରି ପାଉଁଶଗୁଡ଼ାକୁ ଝଡ଼ାଇଦେଲା । ଶେଷକୁ ତୋକାରେଭ୍ ହିଁ ନୀରବତା ଭଗ୍ନ କରି କହିଲା :

"ଆମର ସମୟ ନଷ୍ଟ କରିବାର ଆବଶ୍ୟକତା ନାହିଁ", ସେ ଅତି ଗଭୀର ଭାବରେ କହିବାକୁ ଆରମ୍ଭ କଲା, "ରେଳବାଇ ଜାଳେଣୀ କାଠ ଯୋଗାଣ କମିଟି ନିକଟରେ କୌଣସି ଜାଳେଣୀ ନାହିଁ, କେବେ ନଥିଲା କିମ୍ବା ଭବିଷ୍ୟତ୍‌ରେ ମଧ୍ୟ ଆଶା କରିବା ଉଚିତ ନୁହଁ । କ'ଣ ଠିକ୍ ନାଁ ?"

ଚନ୍ଦା ମୁଣ୍ଡିଆ ବ୍ୟକ୍ତିଜଣକ କାନ୍ଧ ହଲାଇଲେ ।

"କ୍ଷମାକର କମ୍ରେଡ୍, ଆମେମାନେ ଜାଳେଣୀ କାଠ ଷ୍ଟକ୍‌କରି ରଖୁ, ମାତ୍ର ଯାନବାହନ ଚଳାଚଳର ଅବ୍ୟବସ୍ଥା ଯୋଗୁଁ ..." ସେ ଛେପ ଢୋକିଲେ, ରୁମାଲରେ ନିଜର ଚିକ୍‌କଣ କପାଳ ପୋଛିନେଲେ ଓ ଇଆଡ଼କୁ ସିଆଡ଼କୁ ଅନାଇ ପକେଟ୍‌ରେ ରୁମାଲଟାକୁ ପୂରାଇବାକୁ ଚେଷ୍ଟା କଲେ ଥରେ ଦୁଇଥର ଓ ଶେଷରେ ନିଜର ପୋର୍ଟ୍‌ଫୋଲିଓ ବ୍ୟାଗ ତଳେ ଗେଞ୍ଜି ଦେଲେ ରୁମାଲଟାକୁ ।

"କାଠ ଯୋଗାଇ ଦେବାକୁ କି ବ୍ୟବସ୍ଥା ତମେ କରିଛ ? ଚକ୍ରାନ୍ତରେ ଲିପ୍ତଥିବା ମୁଖିଆମାନେ ସବୁ ଗିରଫ ହେବାର ତ ଅନେକ ଦିନ ବିତିଗଲଣି ।" ଗୋଟିଏ କୋଣରୁ ପଚାରିଲା ଦେନେକୋ ।

ଚନ୍ଦା ବ୍ୟକ୍ତିଜଣକ ତା' ଆଡ଼କୁ ବୁଲି ଚାହିଁଲେ :

"ମୁଁ ରେଳବାଇ ବିଭାଗକୁ ତିନିଥର ଲେଖିଛିଣି ଯେ, ଯାନବାହନ ଚଳାଚଳର ବ୍ୟବସ୍ଥା ନହେଲା ପର୍ଯ୍ୟନ୍ତ ଆମ ପକ୍ଷରେ ଅସମ୍ଭବ ..."

ତୋକାରେଭ୍ ତାକୁ ବାଧାଦେଇ କହି ଉଠିଲା :

"ଅନେକ ବେଳୁ ସେକଥା କହି ସାରିଲଣି", କ୍ରୁର ଆଖିରେ ଚନ୍ଦା ଲୋକଟିକୁ ଅନାଇ

କହିଲା ସେ, "ତମେ ଆମ ସମସ୍ତଙ୍କୁ କ'ଣ ବୋକା ଠଉରେଇଛ ?"

ଚନ୍ଦା ଲୋକଟିର ତାଳୁରୁ ତଳିପାଯାଏ ଗୋଟାଏ ଶୀହରଣ ଖେଳିଗଲା ଯେମିତି ।

"ମୁଁ ତ ଆଉ ପ୍ରତିବିପ୍ଳବୀମାନଙ୍କର କାମଦାମ ପାଇଁ ଜବାବ ଦେଇ ପାରି ନାହିଁ", ଅନୁଚ୍ଚ ସ୍ୱରରେ କହିଲା ସେ ।

"କିନ୍ତୁ ତମେ ତ ଜାଣ, ରେଳ ଲାଇନ୍‌ଠାରୁ ଅନେକ ଦୂରରୁ କାଠଗଡ଼ଗୁଡ଼ାକ କାଟି ତଳେ ଗଡ଼ାଇ ଦିଆଯାଏ ? ନାଁ ତା' ବି ଜାଣି ନଥିଲ ?"

"ସେ କଥା ମୁଁ ଶୁଣିଥିଲି, ମାତ୍ର ମୋ ଅଞ୍ଚଳ ବାହାରେ କୌଣସିଠାରେ ଘଟୁଥିବା କୌଣସି ଅବ୍ୟବସ୍ଥା ବା ଅଘଟଣ ପ୍ରତି ମୁଁ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରାଇ ନାହିଁ ।"

"କେତେଜଣ ଲୋକ ତମର କାମ କରୁଛନ୍ତି ?" ଟ୍ରେଡ୍ ୟୁନିଅନ୍ ସଂଗଠନର ସଭାପତି ଜାଣିବାକୁ ଦାବୀ କଲେ ।

"ପ୍ରାୟ ଦୁଇଶହ ଜଣ", ଚନ୍ଦା ବ୍ୟକ୍ତିଜଣକ ଉତ୍ତର ଦେଲେ ।

"ତା'ମାନେ ତମ ଭଳି ପ୍ରତି ପରାଙ୍ଗଭୋଜୀଙ୍କ ପାଇଁ ବର୍ଷକୁ ପାଖାପାଖି ଏକ କ୍ୟୁବିକ ମିଟର ଲେଖାଏଁ !", ଚୋକାରେଭ୍ ରାଗାନ୍ୱିତ ହୋଇ ଛେପ ନଣ୍ଡାଏ ପକାଇ ଦେଲା ।

"ରେଳବାଇ ଜାଳେଣୀ କାଠ ସମିତିର ଏଥିପାଇଁ ଅଧିକା ଖାଦ୍ୟପଡ଼ି ଓ ଅନ୍ୟାନ୍ୟ ପଡ଼ି ପାଏ । ସେସବୁ ଅଧିକା ପାଇ ମଧ୍ୟ ତମେ କ'ଣ କରୁଛ, ଦେଖୁଛ ? ସେ ଯେଉଁ ଦୁଇଗାଡ଼ି ଅଟା ତମେ ଶ୍ରମିକମାନଙ୍କ ପାଇଁ ପାଇଲ, ତାକୁ କ'ଣ କଲ ?" ଟ୍ରେଡ୍ ୟୁନିଅନ୍‌ର ସଭାପତି ଦୃଢ଼ କଣ୍ଠରେ ପଚାରିଲେ ।

ଏଇଭଳି ତୀକ୍ଷ୍ଣ ପ୍ରଶ୍ନବାଣ ଚତୁର୍ଦ୍ଦିଗରୁ ବର୍ଷିବାକୁ ଲାଗିଲା ଚନ୍ଦା ବ୍ୟକ୍ତିଙ୍କ ଉପରେ ଏବଂ ସେ ହତାଶ ହୋଇ ପ୍ରତି ପ୍ରଶ୍ନର ଉତ୍ତର ଦେଉଥାନ୍ତି, ଯେମିତି କରଜ କରିଥିବା ଲୋକ ତା'ର ବହୁ ଋଣଦାତା ଏକାଠି ପହଞ୍ଚିଲେ, ଉତ୍ତର ଦିଏ ଥଙ୍ଗେଇ ଥଙ୍ଗେଇ ।

ପ୍ରଶ୍ନ ସବୁର ଉତ୍ତରକୁ ସିଧାସଳଖ ମୁହାଁମୁହିଁ ଦେବାକୁ ସାହସ ହେଉ ନଥାଏ ତା'ର, ତେଣୁ ସବୁ ବୁଲେଇବାଲେଇ କହୁଥାଏ । ବିପଦ ସନ୍ନିକଟ ଜାଣି, ପଛଘୁଞ୍ଚା ଶ୍ରେୟସର ବୋଲି ଠିକ୍ କରିସାରିଥାଏ ସେ ଓ ଭାବୁଥାଏ, କେମିତି ଏ ଚକ୍ରବ୍ୟୂହ ଭିତରୁ ଖସିଯାଇ ପାରିବ ତା'ର ସୁନ୍ଦର ଘରଟିକୁ, ଅପୂର୍ବ ସୁନ୍ଦରୀ ତରୁଣୀ ସ୍ତ୍ରୀ ପାଖକୁ । ସ୍ତ୍ରୀ ତା'ର ଏବେ ହୁଏତ ବିଛଣାରେ ପଡ଼ିରହି ପଢ଼ୁଥିବ ଗରମାଗରମ ପୋଲ୍ ଦେ କୋକ୍‌ର ଉପନ୍ୟାସଟିକୁ ।

ଚନ୍ଦା ଲୋକଟିର ସମସ୍ତ ଉତ୍ତର ମନୋଯୋଗ ସହିତ ଶୁଣୁଶୁଣୁ ଫ୍ୟୋଦୋର୍ ତା'ର ଟିପାଖାତାରେ ଲେଖୁଥିଲା, "ମୁଁ ଭାବୁଛି, ଏ ଲୋକଟାକୁ ଠିକ୍‌ଭାବରେ ତନଖି କରି ଦେଖିବା ଉଚିତ । କେବଳ ଅଯୋଗ୍ୟତା ବୋଲି ବିବେଚନା କରି ଯାକୁ ଛାଡ଼ିଦେବା ଠିକ୍ ନୁହଁ । ଯା ବିଷୟରେ ଗୋଟାଏ ଦୁଇଟା କଥା ମୋତେ ମଧ୍ୟ ଜଣାଅଛି । ତା' ସହିତ ଆଉ ଅଧିକ ଆଲୋଚନା ବନ୍ଦ କରି ତାକୁ ଯିବାକୁ ଦିଅ । ଆମେ ଆମ କାମ କରିବାକୁ ବସିବା ।"

ସଭାପତି ଫେୟାଦୋର୍‌ର ଟିପ୍‌ପଣୀ ପଢ଼ିଲେ ଏବଂ ସମ୍ମତି ଜଣାଇ ମୁଣ୍ଡ ଟୁଙ୍ଗାରିଲେ ।

ଝୁଖ୍‌ରାଇ ନିଜ ଆସନରୁ ବାରଣ୍ଡା ଆଡ଼କୁ ଉଠିଗଲା ଗୋଟାଏ ଫୋନ୍ କରିବାକୁ । ସେ ଫେରିଆସିଲା ବେଳକୁ ସଭାପତି ପ୍ରସ୍ତାବ ପାଠ କରୁଛନ୍ତି ।

"ପ୍ରସ୍ତାବ କରୁଛନ୍ତି ଯେ, ରେଳବାଇ ଜାଳେଣୀ କାଠ ସମିତିର ପରିଚାଳନାକୁ କାର୍ଯ୍ୟ ନ କରୁଥିବା ଅପରାଧରେ ତୁରନ୍ତ ବହିଷ୍କାର କରାଯାଉ ଏବଂ ତାଙ୍କର କାଠଗଡ଼ ସବୁ ଆଣିବା ନେବା କାର୍ଯ୍ୟକଳାପକୁ ଅନୁସନ୍ଧାନ କରିବା ପାଇଁ ଅନୁସନ୍ଧାନକାରୀ କର୍ତ୍ତୃପକ୍ଷଙ୍କ ଆଗରେ ପେଶ୍ କରାଯାଉ ।"

ଚନ୍ଦା ବ୍ୟକ୍ତି ଯା'ଠାରୁ ଆହୁରି ଅନେକ ଖରାପ କିଛି ଆଶା କରୁଥିଲା । ନିଜ କାମରୁ ବହିଷ୍କୃତ ହୋଇଯିବା ଫଳରେ, ନିଶ୍ଚିତଭାବରେ ସାଧାରଣରେ ତା' ଉପରେ ବିଶ୍ୱାସ ହରାଇବାର ପ୍ରଶ୍ନ ଉଠିବ । ମାତ୍ର ସେଥିରେ କିଛି ଯାଏଆସେ ନାଁ । ତା' ଛଡ଼ା ବୋୟାର୍‌କା ଘଟଣା ସଂପର୍କରେ ତା'ର ଚିନ୍ତିତ ହେବାର କିଛି ନାହିଁ—ତାହା ତା'ର ଅଞ୍ଚଳର ପରିସରଭୁକ୍ତ ନୁହେଁ । "ପୂରା ଖିଅର କରିଦେଲେ ସିନା—ସେଇ ଭଲ ମୁଁ ତ ଭାବୁଥିଲି, ଖୋଳିତାଡ଼ି ସେମାନେ ଆଉରି କ'ଣ ବାହାର କରିବେ", ମନେ ମନେ ଭାବୁଥିଲା ସେ ।

ବର୍ତ୍ତମାନ ପ୍ରାୟ ନିଶ୍ଚିନ୍ତ ହୋଇଯାଇ ସେ ନିଜର କାଗଜପତ୍ର ସବୁ ପୋର୍ଟ୍‌ଫୋଲିଓ ବ୍ୟାଗରେ ଭର୍ତ୍ତି କରୁକରୁ କହିଲା, "ଅବଶ୍ୟ ତମେ ମୋତେ ବିଶ୍ୱାସ କରିପାର ବା ନପାର, କାରଣ ମୁଁ ପାର୍ଟି ବାହାରର ବିଶେଷଜ୍ଞ । ମାତ୍ର ମୋ ବିବେକ ଅଚି ନିର୍ମଳ । ଯାହା କରିବା ପାଇଁ ମୋର ଦାୟିତ୍ୱ ଥିଲା, ସେତକ ମୁଁ କରିପାରି ନାହିଁ, କାରଣ ତାହା ସମ୍ଭବ ନଥିଲା ।"

କେହି କୌଣସି ପ୍ରତ୍ୟୁତ୍ତର ଦେଲେ ନାହିଁ । ଚନ୍ଦା ଭଦ୍ରଲୋକ ଜଣକ ତରବରିଆ ପାଦ ପକାଇ ତଳ ମହଲକୁ ଓହ୍ଲାଇଗଲା । "ଯା ହେଉ ... ଏଥର ରକ୍ଷା !" ଭାବି ସେ ରାସ୍ତା ଆଡ଼କୁ ଥିବା କବାଟ ଫିଟାଇଲା ।

"ଆପଣଙ୍କ ନାଁ ?" ଜଣେ ସୈନିକ ପ୍ରଶ୍ନକଲା ତାକୁ ।

ଡରରେ ଚନ୍ଦା ବ୍ୟକ୍ତି ଜଣକର ପାଟି ଖନି ମାରିଗଲା । ଶଙ୍କିତ ଚିତ୍ତରେ ଛେପ ଢୋକି ସେ କହିଲା, "ଚେର୍-ଭି-ନ୍-ସି ..."

ବାହାର ଲୋକଟି ଖସିଯିବା ପରେପରେ ଉପର ମହଲାରେ ଗୋଲ ଟେବୁଲ ଚାରିକଡ଼କୁ ତେରଟି ମୁଣ୍ଡ ପାଖକୁ ପାଖ ଲଗିଆସି ତଳକୁ ଝୁଙ୍କି ରହିଲା ।

"ଦେଖ", ଗୋଟିଏ ଭଙ୍ଗାଭଙ୍ଗି ହୋଇଥିବା ମାନଚିତ୍ର ଦେଖାଉ ଦେଖାଉ କହିଲା ଝୁଖ୍‌ରାଇ । "ହେଇ, ଏଠି ବୋୟାର୍‌କା ଷ୍ଟେସନ୍, ଯେଉଁଠି କାଠଗଡ଼ସବୁ କଟାଯାଏ, ତାହା ଏଠାରୁ ପ୍ରାୟ ୬ ମାଇଲ ଦୂରରେ । ସେଇଠି ଦୁଇଶହ ଦଶ ହଜାର କ୍ୟୁବିକ ମିଟର କାଠ ଗଦାମରା ହୋଇ ରହିଛି । ପୂରା ଗୋଟାଏ ବାହିନୀ ଲୋକ ଆଠମାସ କଠିନ

ପରିଶ୍ରମ କରି ତାକୁ ଗଦାମାରି ରଖିଛନ୍ତି । କିନ୍ତୁ ଫଳ କ'ଣ ହେଲା ? ବିଶ୍ୱାସଘାତକତା ଯୋଗୁଁ ରେଳବାଇରେ ଓ ସହର ସାରା ଜାଳେଣୀ କାଠ ଅଭାବ ପଡ଼ିଛି । ସେତକ କାଠଗଣ୍ଡିକୁ ରାସ୍ତା ଷ୍ଟେସନ୍ ପର୍ଯ୍ୟନ୍ତ ବୋହି ଆଣିବାକୁ ପାଞ୍ଚ ହଜାର ଶଗଡ଼କୁ ମାସକରୁ କମ୍ ସମୟ ଲାଗିବ ନାହିଁ ଏବଂ ତାହା ମଧ୍ୟ ପ୍ରତି ଶଗଡ଼ ଦିନକୁ ଦୁଇ ଥର ଲେଖାଏଁ ବୋହିଲେ ।

ସବୁଠାରୁ ନିକଟବର୍ତ୍ତୀ ଗାଁ ସେଠାରୁ ପ୍ରାୟ ୧୫ ମାଇଲ ଦୂର ଏବଂ ସେଇ ପାଖାପାଖି ଓର୍ଲିକ୍ ଓ ତା' ଦଳ ଲୁଚି ରହିଛନ୍ତି । ବୁଝିପାରୁଛ, ତା' ମାନେ କ'ଣ ? ଦେଖ, ଯୋଜନା ଅନୁସାରେ କାଠଗଡ଼ ତଳେ ପକାଇବା ଏଇଠାରୁ ଆରମ୍ଭ ହୋଇଥାନ୍ତା ଏବଂ ଷ୍ଟେସନ୍ ଦିଗକୁ ଆଗେଇ ଚାଲିଥାନ୍ତା କାମ । ମାତ୍ର ସେ ବଣ୍ଡାଚ୍ଚକ ସିଧା ଇଆଡ଼ୁ କାଠଗଡ଼ ପକାଇବା ଆରମ୍ଭ କରି, ଜଙ୍ଗଲ ମଝିକୁ ମଝିକୁ କାଟିକାଟି ଚାଲିଲେ । ଉଦ୍ଦେଶ୍ୟ ଥିଲା ଯେ, ଆମେ ଯେପରି ଚେଷ୍ଟା କଲେ ମଧ୍ୟ କାଠ ବୋହିଆଣି ନପାରୁଁ । ସେମାନେ ମଧ୍ୟ ଠିକ୍ ଜାଣିଛନ୍ତି ଯେ, ଆମକୁ ଶହେଟା ମଧ୍ୟ ଶଗଡ଼ ଏଥିପାଇଁ ମିଳିବ ନାହିଁ । ଅତି ଦାରୁଣ ଆଘାତ ଦେଇଛନ୍ତି ସେମାନେ ଆମ ଉପରେ – ମେଳି ବା ବିଦ୍ରୋହ ଯା' ତୁଳନାରେ କିଛି ନୁହେଁ ।"

ଝୁଖ୍‌ରାଇର ଉଦ୍ୟତ ମୁଷ୍ଟି ମାନଚିତ୍ର ଉପରେ ସଜୋରେ ଆଘାତ କଲା ।

ଉପସ୍ଥିତ ତେରଜଣଯାକ ପ୍ରତ୍ୟେକେ ଅବସ୍ଥାର ଭୟଙ୍କରତା, ଯା ଝୁଖ୍‌ରାଇ କହି ନାହିଁ, ସ୍ପଷ୍ଟ ଭାବରେ ଉପଲବ୍ଧି କଲେ । ଶୀତଦିନ ଆରମ୍ଭ ହେଲାଣି । ସେମାନଙ୍କ ଆଖି ଆଗରେ ଭାସିଉଠିଲା ଡାକ୍ତରଖାନା, ସ୍କୁଲ, ଅଫିସ୍ ଏବଂ ହଜାର ହଜାର ଲୋକ ଶୀତାର୍ତ୍ତ ହୋଇ ରହିଛନ୍ତି ଏ କାଲୁଆ ଥଣ୍ଡା ଦିନରେ । ରେଳ ଷ୍ଟେସନ୍‌ରେ ଲୋକ ଯିବାଆସିବାକୁ ହାଉଯାଉ ହେଉଛନ୍ତି, ମାତ୍ର ତାକୁ ନେବାଆଣିବା କରିବା ପାଇଁ ସପ୍ତାହକୁ ଗୋଟିଏ ଟ୍ରେନ୍ ଜମା ଆସୁଛି । ସାରା ଘରଟାରେ ଦୀର୍ଘ ନୀରବତା ବିରାଜୁଥିଲା, କାରଣ ପ୍ରତ୍ୟେକେ ଅବସ୍ଥା ସଂପର୍କରେ ଗଭୀର ଚିନ୍ତାମଗ୍ନ ଥିଲେ ।

କିଛି ସମୟ ପରେ ଫ୍ୟୋଦୋର୍ ହାତମୁଠା ଫିଟାଇଲା ।

"କମ୍ରେଡ୍‌ଗଣ ! ଏଥିପାଇଁ କେବଳ ଗୋଟିଏ ମାତ୍ର ରାସ୍ତା ଅଛି । ଆମକୁ ଛଅ ମାଇଲ ଏକ ନ୍ୟାରୋ-ଗଜ ରେଳ ଲାଇନ୍, ଷ୍ଟେସନ୍‌ରୁ କାଠଗଡ଼ ପଡ଼ିଥିବା ଜାଗା ପର୍ଯ୍ୟନ୍ତ କରିବାକୁ ପଡ଼ିବ", କହିଲା ସେ, "ଏହାର ପ୍ରଥମ ଅଂଶ ଛ' ସପ୍ତାହ ଭିତରେ ତିଆରି ସରିବ । ଗତ ସପ୍ତାହେ ଧରି ମୁଁ ଏଇକଥା ଚିନ୍ତା କରିଛି । ଆମର ଦରକାର ...", ଝୁଖ୍‌ରାଇର କଣ୍ଠ କହୁକହୁ ଶୁଖିଗଲା ଭଳି ହୋଇଗଲା, "ତିନିଶହ ପଚାଶ ଜଣ ଶ୍ରମିକ ଓ ଦୁଇଜଣ ଇଞ୍ଜିନିୟର । ସେଠାରେ ପୁଷ୍ଟା-ଭଦିହାରେ ଅନେକ ସ୍ଲିପର ଓ ସାତଟା ଇଞ୍ଜିନ୍ ଅଛି, ତେଣୁ ଅସୁବିଧା ହେବ ନାହିଁ । କମ୍‌ସୋମୋଲ୍ ସଦସ୍ୟମାନେ ସେସବୁକୁ ଗୋଦାମରୁ ଖୋଳି ବାହାର କରିଛନ୍ତି । ଯୁଦ୍ଧ ଆଗରୁ ଗୋଟାଏ ଯୋଜନା ଥିଲା, ପୁଷ୍ଟା-ଭଦିହାରୁ ସହରକୁ ଗୋଟାଏ ନ୍ୟାରୋ-ଗଜ ରେଳ ଲାଇନ୍ ପକାଇବା ପାଇଁ । ମାତ୍ର

ବୋୟାର୍କାରେ ଭଙ୍ଗା ଏକ ସୁଇଘର ବ୍ୟତୀତ ଶ୍ରମିକମାନଙ୍କ ପାଇଁ ରହିବାକୁ କୌଣସି ଜାଗା ନାହିଁ! ସେଇ ଯାହା ଅସୁବିଧା, ତେଣୁ ଥରକରେ ପନ୍ଦର ପନ୍ଦର ଦିନ ପାଇଁ ଛୋଟ ଛୋଟ ଦଳରେ ବିଭକ୍ତ କରି ଶ୍ରମିକମାନଙ୍କୁ ପଠାଇବାକୁ ହେବ । ତା'ଠାରୁ ଅଧିକ ଦିନ ସେଠାରେ ସେମାନେ ରହିପାରିବେ ନାହିଁ । ସେଠାକୁ କ'ଣ କମ୍‌ସୋମୋଲ୍ ସଭ୍ୟମାନଙ୍କୁ ପଠାଇବା, ଆକିମ୍ ?" ମାତ୍ର କୌଣସି ଉତ୍ତରକୁ ଅପେକ୍ଷା ନରଖି ସେ ପୁଣି କହିଗଲିଲ, "କମ୍‌ସୋମୋଲ୍ ସଭ୍ୟମାନେ ସମସ୍ତେ ସେଠାକୁ ଶୀଘ୍ର ମାଡ଼ିଯିବେ । ସୋଲ୍ଲେମେଙ୍କା ସଂଗଠନ ପ୍ରଥମେ କାମ ଆରମ୍ଭ କରିବେ ସହରର କେତେଜଣଙ୍କ ସହିତ । କାମଟା ଅତ୍ୟନ୍ତ କଷ୍ଟସାଧ୍ୟ, ମାତ୍ର ଆମ ତରୁଣମାନଙ୍କୁ ଯଦି ସଠିକ୍‌ଭାବରେ ଜଣାଇ ଦିଆଯାଏ ଯେ, ଆମେ ଯା'ଫଳରେ କ'ଣ ହରାଉଛୁ, ମୁଁ ନିଶ୍ଚିତ ଯେ, ସେମାନେ ଏ କଷ୍ଟସାଧ୍ୟ କାମ ମଧ୍ୟ କରିଦେବେ ।"

ସନ୍ଦେହାକୁଳିତ ମନରେ ରେଳବାଇର ମୁଖ୍ୟ ମୁଣ୍ଡ ଟୁଙ୍ଗାରିଲେ ।

"ମୋର ଆଶଙ୍କା ହେଉଛି, ଏଥିରେ କିଛି ଲାଭ ହେବ ନାହିଁ । ବର୍ତ୍ତମାନ ଅବସ୍ଥାରେ, ଏ ବର୍ଷାରେ ପୁଣି ଶୀତ ପଡ଼ିଆସୁଥିଲା ବେଳେ ଜଙ୍ଗଲ ଭିତରେ ୬ ମାଇଲ ରେଳ ଲାଇନ୍ ପକାଇବା ... ମୋର ସନ୍ଦେହ ହେଉଛି, ସମ୍ଭବ ହେବ ନାହିଁ ।"

ତାଙ୍କୁ ବାଧାଦେଇ ଝୁଖ୍ରାଇ କହିଲା :

"ଜାଳେଣୀ କାଠ ସମସ୍ୟା ପ୍ରତି ତମକୁ ଆହୁରି ଆଗରୁ ଏବଂ ଅଧିକ ଧ୍ୟାନ ଦେବା ଉଚିତ ଥିଲା, ଆନ୍ତ୍ରେଇ ଭାସିଲିୟେଭିଚ୍ । ସେ ଲାଇନ୍ ଆମକୁ କରିବାକୁ ହେବ ଏବଂ ଆମେ ତାହା ନିଶ୍ଚୟ କରୁଛୁ । ଶୀତରେ ହାତ ଯୋଡ଼ି କୁଙ୍କୁରିକାଙ୍କୁରି ହୋଇ ବସିରହି ମରଣକୁ ଆମେ ଅପେକ୍ଷା କରିପାରିବା ନାହିଁ । ରେଳ ଲାଇନ୍ କରିବାକୁ ହିଁ ହେବ ।"

* * *

ଯନ୍ତ୍ରପାତି, ସାଜସରଞ୍ଜାମ ସବୁ ରେଳକୁ ବୁହା ହୋଇଗଲା । ଯାତ୍ରୀମାନେ ପ୍ରତ୍ୟେକେ ନିଜ ନିଜ ଜାଗାରେ ବସିଗଲେ । ଝୁପୁଝୁପୁ ହୋଇ ବେଶ୍ ଅସରାଏ ବର୍ଷା ପଡ଼ୁଥାଏ । ରୀତାର ଚିକ୍‌କଣ ଚମଡ଼ା କୋଟ୍ ଉପରେ, ଝରଝର ବର୍ଷାବିନ୍ଦୁସବୁ ଝରି ପଡ଼ୁଥାଏ ।

ତୋକାରେଭ୍ ସହିତ ହାତ ମିଳାଇ ରୀତା କୋମଳ କଣ୍ଠରେ କହିଲା, "ତମର ଶୁଭ କାମନା କରୁଛୁ ।"

ଗହଳ ବାଦାମୀ ଭ୍ରୂଲତା ତଳୁ ବୟସ୍କ ତୋକାରେଭ୍ ସ୍ନେହପୂର୍ଣ୍ଣ ଚାହାଣୀରେ ତାକୁ ଚାହିଁଥାନ୍ତି ।

"ଆମକୁ ଅନେକ ଅସୁବିଧାରେ ପକାଇଲେଣି ସେଗୁଡ଼ାକ, ବଜ୍ଜାତ୍ ।" ନିଜ ମନକୁ ମନ କହୁଥାନ୍ତି ସେ । "ଏଠି ତୁ ସବୁଥିକି ନଜର ଦେଇଥିବୁ, ଯଦି କେତେବେଳେ କୌଣସି ଗଣ୍ଡଗୋଳ ହୁଏ, ଯାହାକୁ ଦରକାର ପଡ଼ିବ ଶାସନ କରୁଥିବୁ । ଏଠି ଦଳେ

ନାହାନ୍ତି କି, ଦେଖୁନ୍ତୁ ! ଅଯଥା କାଳ ବିଳମ୍ବ, ତାଙ୍କ ଦେଇ କିଛି ହେବ ନାହିଁ ! ହଉ, ଗାଡ଼ି ଛାଡ଼ିବ ଏଥର ... ତୁ ଥା' ଝିଅ ମୁଁ ଗାଡ଼ିରେ ଚଢ଼େଁ ।"

ବୃଦ୍ଧ ଏଥର ତାଙ୍କର ଜ୍ୟାକେଟ୍‌ର ବୋତାମ ଲଗାଇ ଚଢ଼ିବାକୁ ପ୍ରସ୍ତୁତ ହେଲେ । ଶେଷ ମୁହୂର୍ତ୍ତରେ କଥା ପ୍ରସଙ୍ଗରେ ରୀତା ପଗ୍ଭରିଲା :

"କୋର୍ଗିନ୍ କ'ଣ ଯାଉ ନାହିଁକି ତମ ସାଙ୍ଗରେ ? କାହିଁ ତାକୁ ତ ମୁଁ ଦେଖୁ ନାହିଁ ?"

"ନାହିଁ ନାହିଁ, ସିଏ ଆଉ ସୁପରିଣ୍ଟେଣ୍ଡେଣ୍ଟ ଗତକାଲିଠାରୁ ଟ୍ରଲିରେ ବସି ଗଲେଣି ଗ୍ଭଲି, ଆମ ପାଇଁ ସବୁ ବନ୍ଦୋବସ୍ତ କରିବା ପାଇଁ ।"

ଠିକ୍ ସେତିକିବେଳେ ଝାରକା, ଦୁବାଭା ଓ ଆନ୍ନା ବୋର୍ଖୋର୍ଟ ତିନିହେଁ ଆସୁଥିଲେ । ଆନ୍ନା କାନ୍ଧରେ ଖାମଖିଆଲୀ ଭାବରେ ପକାଇଛି ଜ୍ୟାକେଟ୍‌ଟାକୁ, ହାତ ଆଙ୍ଗୁଳି ଫାଙ୍କରେ ଧରିଛି ଅଧାଜଳା ସିଗାରେଟ୍‌ଟାଏ । ତାଙ୍କ ଆଡ଼କୁ ତରବର ପାଦ ପକାଇ ଆସିଲେ ସେମାନେ ।

ସେଇ ଭିତରେ ରୀତା ତୋକାରେଭ୍‌ଙ୍କୁ ଆଉ ଗୋଟିଏ ପ୍ରଶ୍ନ ପଗ୍ଭରିନେଲା :

"କୋର୍ଗିନ୍ ଆପଣଙ୍କ ପାଖେ କେମିତି ପଢ଼ାପଢ଼ି କରୁଛି ?"

ବୃଦ୍ଧ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଗ୍ଭହିଁଲେ ତା' ଆଡ଼କୁ ।

"କି ପଢ଼ାପଢ଼ି ? କିଓ ସେ ଟୋକାପରା ତମ ଦଳରେ ? ମୋତେ ସିଏ ତମ କଥା ବରାବର ଗପେ । ତମଠି ତ ସିଏ ସାରା ବିଶ୍ୱକୁ ଦେଖୁଛି !"

ରୀତା ଦ୍ୱନ୍ଦ୍ୱରେ ପଡ଼ି ପଗ୍ଭରିଲା, "ଆପଣ କ'ଣ ନିଶ୍ଚିତ କମ୍ରେଡ୍ ତୋକାରେଭ୍ ? ମୋ ପାଖେ ପଢ଼ାସାରି ସିଏ ଆପଣଙ୍କ ପାଖକୁ ବୁଝାବୁଝି କରିବାକୁ କ'ଣ ଯାଏ ନାହିଁ ?"

ହୋ ହୋ ହୋଇ ହସିଉଠି ବୃଦ୍ଧ କହିଲେ, "ମୋ ପାଖକୁ ? କାହିଁକି ? କିଓ ମୁଁ ତ ତା'ର କେଶାଗ୍ର ପର୍ଯ୍ୟନ୍ତ ଦେଖି ନାହିଁ ଏଯାଏଁ, ତାକୁ ପଢ଼ାଇଲି କେବେବେଳେ ?"

ଇଞ୍ଜିନ୍ ସିଟି ଦେଲା । କ୍ଲାଭିଚେକ୍ ଗୋଟାଏ ଡବାରୁ ଚିତ୍କାର କରି କହିଲା :

"ହେ କମ୍ରେଡ୍ ଉସ୍ତିନୋଭିଚ୍, କିଓ ଆମ ବୁଢ଼ାକୁ ଆମ ସାଙ୍ଗରେ ଛାଡ଼ ! ସିଏ ନଗଲେ ଆମ ସଂସାର ରହିବ ନାଁ ?"

ସିଏ ଆଉ କ'ଣ କହିବାକୁ ଯାଉଥିଲା, ମାତ୍ର ପଛରେ ଆସୁଥିବା ତିନିଜଣଙ୍କୁ ଦେଖି ନିଜକୁ ରୋକିନେଲା । ଆନ୍ନା ଆଖିର ଉଦ୍‌ଗ୍ରୀବ ଗ୍ଭହାଣୀ ସେ ଲକ୍ଷ୍ୟ କଲା, ଦୁବାଭା ପ୍ରତି ତା'ର ବିଦାୟ ଦେବା ବେଳର ହସଟାକୁ ଦେଖିଲା ଓ ଝରକା ନିକଟରୁ ଅପସରିଗଲା ।

* * *

ଶରତକାଳୀନ ବର୍ଷା ଝରିପଡ଼ୁଥିଲା ତା'ର ମୁହଁ ଉପରେ । ମୁହଁଟା ଧୋଇଦେଇ ଯାଉଥିଲା । ଅନେକ ତଳେ, ଜଳକଣାରେ ପୂର୍ଣ୍ଣ ହୋଇ ବାଦଲଖଣ୍ଡମାନ ଭାସି ବୁଲୁଥିଲେ ଧରିତ୍ରୀ ଉପରେ । ବିଳମ୍ବିତ ଶରତ ସାରା ବନଭୂମିର ବୃକ୍ଷରାଜିକୁ ଫୁଙ୍ଗୁଳା

କରିଦେଇଥିଲ । ଶେଷ ପତ୍ରଟି ବି ଝଡ଼ିଯାଇଥାଏ ଗଛରୁ । ପୁରୁଣା ହର୍ଣବିମ ଗଛଗୁଡ଼ାକ ଲଜରେ ତଳକୁ ମୁହଁ ପୋତି ଛିଡ଼ା ହୋଇଥାନ୍ତି । ନିର୍ଦ୍ଦୟ ଶରତ ସେମାନଙ୍କର ସୁନ୍ଦର ନୀଳ ଲୁଗାଗୁଡ଼ାକ ଅପହରଣ କରିନେଇଛି । ବଡ଼ କରୁଣଭାବରେ, ଇଙ୍ଗଳା ହୋଇ ଛିଡ଼ା ହୋଇଥାନ୍ତି ଗଛଗୁଡ଼ାକ ।

ଜଙ୍ଗଲ ମଝିରେ ଛିଡ଼ା ହୋଇଥାଏ ଏକୁଟିଆ ଛୋଟିଆ ଷ୍ଟେସନ୍ ଘରଟି । ପଥର ବନ୍ଧେଇ ପ୍ଲାଟ୍‌ଫର୍ମରୁ ଜଙ୍ଗଲ ଭିତରକୁ କିଛି ବାଟଯାଏ କଞ୍ଚାମାଟି ପଡ଼ି ଚେନାଏ ରାସ୍ତା ଲମ୍ବିଯାଇଥାଏ । ଏହି ରାସ୍ତା ଚେନାକ ଉପରେ ପିମ୍ପୁଡ଼ି ମଧା ଭଳି ମେଳାମେଳା ହେଉଥାନ୍ତି ଲୋକେ ।

ପାଦରେ କାଦୁଅ ପଚପଚ ହୋଇ ଲଗିଯାଉଥାଏ । ଅଦୂରରେ ଗଇଁଚି ଓ କୋଦାଳରେ ମାଟି ହାଣି ଗ୍ଲଇଥାନ୍ତି ଲୋକେ । ଝଣଝାଣ ହୋଇ ଶୁଭୁଥାଏ ସେମାନଙ୍କର ମାଟିହଣା ଶବ୍ଦ ।

ଆକାଶଟା ସତେ ଯେମିତି ଗୋଟାଏ ସଚ୍ଛିଦ୍ର ଗ୍ଲୁଣୀ । ଆକାଶରୁ ଝରିଲା ଅନବରତ ବର୍ଷାର ଧାରା । କାଲୁଆ କାଲୁଆ ଟୋପା ଟୋପା ପାଣି, ଜାମା ଭିତରେ ଯେମିତି ଗଳି ଯାଉଥାଏ । ସେମାନଙ୍କର ପରିଶ୍ରମଟକ ଧୋଇଦେଇଯିବାକୁ ସତେ ଯେପରି ଏ ଅକାଳ ବର୍ଷା ଆସିଛି । ଭେଦା ଭେଦା ହୋଇ କାଦୁଅ ଗଳିପଡ଼ିଲ ବନ୍ଧ ତଳକୁ ।

ଓଦା ଲୁଗା, ଦେହ ହେମକାକର, ତଥାପି ରାତି ଅନ୍ଧାର ପର୍ଯ୍ୟନ୍ତ କାମ କରିଯାଉଥାନ୍ତି ଲୋକେ । ପ୍ରତ୍ୟେକ ଦିନ ଆହୁରି ଅଧିକରୁ ଅଧିକ ଚେନାଏ ଚେନାଏ ମାଟିରାସ୍ତା ଜଙ୍ଗଲ ଭିତରକୁ ଭିତରକୁ ମାଡ଼ିଯାଉଥାଏ ।

ଷ୍ଟେସନ୍ ନିକଟରେ ପ୍ରାୟ ଦିଶୁଥାଏ ଏକ ଇଟାଘରର ଜୀର୍ଣ୍ଣ ଭଗ୍ନାବଶେଷ । ଘରଟାରୁ ଯେତେ ଯାହା ନିଆଯାଇ ପାରିବ, କଢ଼ାଇଯାଇ ପାରିବ, ସେସବୁ କାଢ଼ିନେଇଥାଆନ୍ତି ଡକାଏତ ଦଳ । ଘରଟାର ଝରକା, କବାଟ ଆଦି ଥିବା ଜାଗାରେ ଥାଏ ବଡ଼ ବଡ଼ ଗାତମାନ । ଯେଉଁଠାରେ ଦିନେ ଥିଲା ରୋଷେଇଘର, ଏବେ ସେଠାରେ ଚିମ୍‌ନି ନଥାଇ କେବଳ ଧୂଆଁ ଦାଗ ଲଗିରହିଛି । ଜୀର୍ଣ୍ଣଶୀର୍ଣ୍ଣ ଛାତର ଶତଛିଦ୍ର ଭିତରେ ଘରର ବଳକା କଡ଼ିବରଗାସବୁ କଙ୍କାଳର ପଞ୍ଜରା ହାଡ଼ ଭଳି ଦିଶୁଥାଏ ।

କେବଳ ସ୍ଟୋଟି ବଡ଼ ବଡ଼ ବଖରାର ସିମେଣ୍ଟ ଚଟାଣ ଆକସ୍ମିକଭାବରେ ଅଭଙ୍ଗା ଅବସ୍ଥାରେ ଥାଏ । ରାତିରେ ଗ୍ଲରିଶହ ଲୋକ ନିଜ ନିଜର ଓଦା ପଚପଚ ଓ କାଦୁଅ ସରସର ଜାମାଗୁଡ଼ାକ ପିନ୍ଧି ଶୁଅନ୍ତି ଏଇ ସିମେଣ୍ଟ ଚଟାଣ ଉପରେ । ସେମାନେ ଦୁଆର ମୁହଁରେ ଠିକ୍ ଚିପୁଡ଼ିଦେଲ ବେଳକୁ ନିଜ ନିଜର ଲୁଗାରୁ ଗୋଳିଆ ପଙ୍କୁଆ ପାଣିର ଗୋଟାଏ ଝରଣା ବହିଯାଏ ତାଙ୍କ ଲୁଗାପଟାରୁ । ଅଦିନିଆ ଏ ବରଷାକୁ ଆଉ ପଙ୍କୁଆ ପଚପଚିଆ ମାଟିକୁ ଅଭିସମ୍ପାତ ଦେଇ ଦେଇ ଶୋଇଯାଆନ୍ତି ସେମାନେ । ଖୁନ୍ଦିଖାନ୍ଦି ହୋଇ ଧାଡ଼ିବାନ୍ଧି ସେମାନେ ସେ ଚଟାଣ ଉପରେ ପଡ଼ିଥିବା ନଡ଼ାବିଡ଼ାଗୁଡ଼ାକ ଉପରେ ଶୋଇଯାଆନ୍ତି ଓ ଟିକେ ଉଷୁମ ପାଇବାକୁ ଆହୁରି ଜାକିଜୁକି ହୋଇଯାନ୍ତି । ଦେହରୁ ବାଙ୍ଗ

ବାହାରିଯାଏ, ମାତ୍ର ଲୁଗାଗୁଡ଼ାକ ଶୁଖେ ନାହିଁ ପୂରାପୂରି । ଫାଙ୍କା ଝରକା, କବାଟଗୁଡ଼ାକରେ ଦିଆଯାଇଥିବା ଅଖାଗୁଡ଼ାକ ବର୍ଷା ଛିଟାରେ ତିନ୍ତି ବେଳେବେଳେ ଘର ଭିତରକୁ ପାଣି ପଶିଆସେ । ଘରର ଟିଣଛାତ ଉପରେ, ଜୋର୍‌ରେ ଜୋର୍‌ରେ ଶବ୍ଦ କରି ବର୍ଷା ଝରୁଥାଏ ରାତିସାରା । ଖୋଲା କବାଟ ବାଟେ ଦଲକାଏ ଦଲକାଏ ଶୀତୁଆ ପବନ ଭୁସ୍‌କରି ପଶିଆସେ ଘର ଭିତରକୁ ।

ନଇଁ ପଡ଼ିଥିବା ବ୍ୟାରାକ୍‌ରେ ବସି ସକାଳୁ ସେମାନେ ଚା' ପିଅନ୍ତି । ବ୍ୟାରାକ୍‌ଟା ରୋଷେଇଘର କାମ ଦେଉଛି ଏବେ । ଚା ପିଇସାରି କାମକୁ ଆଗେଇଯାଆନ୍ତି ସଭିଏଁ । ପ୍ରତିଦିନର ଖାଦ୍ୟ ହେଲା, ଦେଢ଼ ପାଉଣ୍ଡ କୋଇଲା ଭଳି କଳା ରୁଟି ଓ ସିଝା ମସୁର ଡାଲି ମେଣ୍ଟାଏ । ସବୁଦିନେ ଏଇଆ ଖାଇ ଖାଇ ତିଟା ଲାଗିଗଲେ ସୁଦ୍ଧା କୌଣସି ପରିବର୍ତ୍ତନ ସମ୍ଭବ ନଥିଲା ।

ସହରରୁ ଏତିକି କେବଳ ମିଳିବା ସମ୍ଭବ ଥିଲା ।

କାମ ତନଖି କରୁଥିବା କାମ ସୁପରିଣ୍ଟେଣ୍ଡେଣ୍ଟ ଭାଲେରିଆନ୍ ନିକୋଦିମୋଭିଚ୍ ପାଟୋଶ୍‌କିନ୍ ବେଶ ଡେଙ୍ଗା ବୃଦ୍ଧ ଲୋକ, ମୁହଁରେ ଗଭୀର ରେଖାସବୁ । ଟେକ୍‌ନିସିଆନ୍ ଭାକୁଲେଙ୍କୋ ଋକ୍ଷ ଚେହେରାର, ସବୁଠାରୁ ମୋଟା ଲୋକ – ଏମାନେ ଦୁହେଁ ଷ୍ଟେସନ୍ ମାଷ୍ଟରଙ୍କ ଘରେ ରହୁଥିଲେ ।

ଖୋଭ୍ୟାରା ବୋଲି ଗେଡ଼ା, ଅସ୍ଥିରଚିତ୍ତ ସ୍ଥାନୀୟ ଚେକା ପ୍ରତିନିଧିଙ୍କର ଛୋଟିଆ ବଖରାଟିରେ ଭାଗ କରି ରହୁଥିଲା ତୋକାରେଭ୍ ।

ଲୋକେ ସମସ୍ତ ଦୁଃଖ, ଯାତନା ଓ ଦୁର୍ଗତିକୁ ଦୃଢ଼ମନୋବଳ ନେଇ ସହ୍ୟ କରିନେଉଥାଆନ୍ତି ଓ ରେଳ ଲାଇନ୍ ପ୍ରତ୍ୟେକ ଦିନ ବଢ଼ିବଢ଼ି ଚାଲିଥାଏ ଜଙ୍ଗଲ ଭିତରକୁ – ଆହୁରି ଭିତରକୁ ।

କିଛି ଲୋକ ସହି ନପାରି ଚାଲିଗଲେ ମଧ୍ୟ ପ୍ରଥମେ ନଅଜଣ ଓ ପଛକୁ ତାଙ୍କ ସାଙ୍ଗେ ସାମିଲ୍ ହେଲେ ଆଉ ପାଞ୍ଚଜଣ ।

କାମ ଆରମ୍ଭ ହେବାର ଠିକ୍ ସପ୍ତାହକ ପରେ ସବୁଠାରୁ ବେଶୀ ବିପଦ ପଡ଼ିଲା, ଯେଉଁଦିନ ରାତି ଗାଡ଼ିରେ ରୁଟି ଆସିଲା ନାହିଁ ।

ଦୁବାଭା ତୋକାରେଭ୍‌କୁ ନିଦରୁ ଉଠାଇ ସମ୍ବାଦଟା ଦେଲା ।

ପାର୍ଟି ଗ୍ରୁପ୍‌ର ସଂପାଦକ ବିଛଣା କଡ଼ରେ ନିଜ ଲୋମଶ ଗୋଡ଼ ହଲାଇ ହଲାଇ କହିଲା, "ଖେଳ ଆରମ୍ଭ ହୋଇଛି" ଓ ତରବର ହୋଇ ପୋଷାକପତ୍ର ପିନ୍ଧିପକାଇଲା ।

ଖୋଭ୍ୟାରା ତା'ର ଛୋଟ ଗୋଡ଼ ଦୁଇଟିରେ ହଲି ହଲି ଚାଲିବାକୁ ଲାଗିଲା ।

"ଯାଅ, ଯାଅ, ଟେଲିଫୋନ୍‌ଟା ପାଖକୁ ଦୌଡ଼ିଯାଅ, ବିଶେଷ ବିଭାଗକୁ ଗୋଟାଏ ଖବର ଦେଇ ଡାକ", ତୋକାରେଭ୍ ତାକୁ ନିର୍ଦ୍ଦେଶ ଦେଲା ଏବଂ ଦୁବାଭା ଆଡ଼କୁ ବୁଲିପଡ଼ି କହିଲା, "କିନ୍ତୁ ମନେରଖ, ଜଣେ ହେଲେ କାହାକୁ ସୁଦ୍ଧା ରୁଟି ବିଷୟରେ ଯେପରି ନଜଣାଅ ।"

ରେଳବାଇ ଟେଲିଫୋନ୍ ଅପରେଟରମାନଙ୍କୁ ଅଧଘଣ୍ଟାଏ ପୂରା ଖୋସାମତ କଲା ପରେ, ଖୋଲ୍ୟାଭା ବିଶେଷ ବିଭାଗର ମୁଖ୍ୟ ସହକାରୀ ଝୁଖ୍‌ରାଇକୁ ଫୋନ୍‌ରେ ପାଇଲା । ତୋକାରେଭ୍ ଅଧୈର୍ଯ୍ୟ ହୋଇ ଖୋଲ୍ୟାଭା ପାଖରେ ଛିଡ଼ା ହୋଇଥାଏ ।

"କ'ଣ ହେଲା ? ରୁଟି ପହଞ୍ଚି ନାହିଁ ? ମୁଁ ଦେଖୁଛି ଏଥିପାଇଁ ଦାୟୀ କିଏ ?" ଫୋନ୍‌ର ଅପରପାର୍ଶ୍ୱରୁ ଝୁଖ୍‌ରାଇର ଉଦ୍‌ବେଗପୂର୍ଣ୍ଣ ଗମ୍ଭୀର ଗଳା ଭାସିଆସୁଥିଲା ।

"କାଲି କିନ୍ତୁ ଆମେ ଏଠି ଲୋକମାନଙ୍କୁ କ'ଣ ଖାଇବାକୁ ଦେବୁ ?" ଉତ୍ତ୍ୟକ୍ତ ହୋଇ ତୋକାରେଭ୍ ପଚାରିଲା ।

ଅନେକ ସମୟ ନୀରବରେ କଟିଲା । ଝୁଖ୍‌ରାଇ ନିଶ୍ଚିତଭାବରେ କୌଣସି କାର୍ଯ୍ୟାନୁଷ୍ଠାନର କଥା ଚିନ୍ତା କରୁଥିଲା ।

"ତମେ ଆଜି ରାତି ଭିତରେ ରୁଟି ପାଇବ", ଶେଷରେ ପାର୍ଟି ଗ୍ରୁପ୍‌ର ସଂପାଦକ ଶୁଣି ପାରିଲେ । "ମୁଁ ଲିଟ୍‌କେକୁ କାର୍ ଦେଇ ପଠାଉଛି । ରାସ୍ତା ବି ସିଏ ଜାଣିଛି । ସକାଳ ନହେଉଣୁ ରୁଟି ତମ ପାଖରେ ପହଞ୍ଚିଯିବ ।"

ଠିକ୍ ଭୋରବେଳକୁ, କାଦୁଅ ସଲବଲ ଗୋଟିଏ କାର୍‌ରେ ରୁଟିବସ୍ତା ଲଦାହୋଇ ଆସି ଷ୍ଟେସନ୍‌ରେ ପହଞ୍ଚିଗଲା । ସାରା ରାତି ବିନିଦ୍ର ରହିଥିବା ଲିଟ୍‌କେ ଷ୍ଟିଅରିଂ ପାଖରୁ ତଳକୁ ଓହ୍ଲାଇ ଆସିଲା । ମୁହଁଟା ତା'ର ଶେଥା ପଡ଼ିଯାଇଛି ଅନିଦ୍ରା ଫଳରେ ।

ରେଳ ଲାଇନ୍ କାମ କ୍ରମଶଃ ନାନା ବାଧା ବିପତ୍ତି ବିରୁଦ୍ଧରେ ସଂଘର୍ଷମୟ ହୋଇଉଠିଲା । ରେଳବାଇ ଶାସନ ବିଭାଗ ଜଣାଇଦେଲେ ଯେ, ଆଉ ସ୍ଲିପର ନାହିଁ । ସହର କର୍ମକର୍ତ୍ତାମାନେ ଜଣାଇଦେଲେ ଯେ, ରେଳ ଲାଇନ୍ ଓ ଇଞ୍ଜିନ୍ ଯୋଗାଣ ଦେବାର ଆଉ କୌଣସି ପନ୍ଥା ନାହିଁ ଏବଂ ଇଞ୍ଜିନ୍‌ଗୁଡ଼ାକୁ ମରାମତି ଦରକାର ପଡ଼ିଲାଣି । ପ୍ରଥମ ଦଫାରେ କାମ କରିବାକୁ ଆସିଥିବା ଶ୍ରମିକମାନେ ତାଙ୍କ ଦାୟିତ୍ୱ ଥିବା କାମତକ କରିସାରିବା ପରେ ମଧ୍ୟ ତାଙ୍କ ସ୍ଥାନ ନେବାକୁ ଆଉ କୌଣସି କର୍ମୀଦଳ ଆସିଲେ ନାହିଁ । ସେମାନେ ସେତେବେଳକୁ ଏତେ ବେଶୀ ଥକ୍‌କି ଯାଇଥାଆନ୍ତି ଯେ, ତାଙ୍କୁ ଆଉ କାମ କରାଇବା ସମ୍ଭବ ନୁହେଁ ।

ଭାଙ୍ଗିପଡ଼ିଥିବା ସେଡ୍‌ରେ ପ୍ରଧାନ ପାର୍ଟି ସଭ୍ୟମାନଙ୍କର ସଭା ବସିଲା । ଘରଟିକୁ ଆଲୋକିତ କରୁଥାଏ ଗୋଟିଏ ଛୋଟ ବତୀ । ଅନେକ ରାତିଯାଏ ବସି ସେମାନେ ଅବସ୍ଥାର ପର୍ଯ୍ୟାଲୋଚନା କଲେ ।

ତା'ପରଦିନ ସକାଳୁ ତୋକାରେଭ୍, ଦୁବାଭା ଏବଂ କ୍ଲାଭିଚେକ୍ ସହରକୁ ଗଲେ ତାଙ୍କ ସାଙ୍ଗରେ ଛଅଜଣ ଲୋକଙ୍କୁ ନେଇ, ସେଠାରେ ଇଞ୍ଜିନ୍‌ଗୁଡ଼ିକୁ ମରାମତି ଏବଂ ରେଳ ଲାଇନ୍ ଯୋଗାଣ ତ୍ୱରାନ୍ୱିତ କରାଇବା ପାଇଁ । ଆଗରୁ ରୁଟି ତିଆରି କରୁଥିବା କ୍ଲାଭିଚେକ୍ ଯୋଗାଣ ବିଭାଗକୁ ପରିଦର୍ଶକ ଭାବରେ ଗଲା, ଅନ୍ୟମାନେ ସମସ୍ତେ ଗଲେ ପୁଷ୍ଟା-ଭଦିସ୍କାକୁ ।

ଅବିଶ୍ରାନ୍ତ ଭାବରେ ବର୍ଷା ବର୍ଷିବାକୁ ଲାଗିଲା ।

ବହୁ ଚେଷ୍ଟାରେ ପାଭେଲ୍ କୋର୍ଚ୍ଚାଗିନ୍ ପଙ୍କ-କାଦୁଅ ଭିତରୁ ନିଜ ପାଦ ଦୁଇଟିକୁ ଟାଣିଓଟାରି କାଢ଼ିଲା । ନିଜ ପାଦତଳିପା ହଠାତ୍ ହେମାଳ ହୋଇଉଠିବାରୁ ଜାଣିପାରିଲା ଯେ, ଜୋତାର ତଳିଟା ଖସିଯାଇ ପଙ୍କ ଭିତରେ ରହିଯାଇଛି ଓ ଉପର ଅଂଶଟି କେବଳ ତା' ଗୋଡ଼ରେ ଲାଗିରହିଛି । ଏଠାକୁ କାମକୁ ଆସିବା ଦିନଠାରୁ ନିଜର ଛିଣ୍ଡା ବୁଟ୍‌ଯୋଡ଼ାକ ପାଭେଲ୍‌କୁ ବେଶ୍ କଷ୍ଟ ଦେଉଥିଲେ । କେବେହେଲେ ସେ ଦୁଇଟାଯାକ ଶୁଖୁ ନଥିଲେ, ଓଦା ହୋଇ ରହୁଥିଲେ ଏବଂ ଜୋତା ଭିତରେ ପଶି ଯାଉଥିବା କାଦୁଅଗୁଡ଼ାକ ଘୁରିଆଢେ ଛିଟିକି ପଡ଼ୁଥିଲା ଚାଲିଲାବେଳେ । ଏବେ ଗୋଟିଏ ତଳି ସଂପୂର୍ଣ୍ଣଭାବେ ଗଲା । ଥଣ୍ଡାରେ ତା'ର ପାଦଟା ବରଫ ପାଲଟି ଯାଉଥାଏ । ପଙ୍କ-କାଦୁଅରୁ ଓଟାରି ଜୋତା ତଳିଟାକୁ ବାହାରକଲା ପାଭେଲ୍ । ଗୋଟାଏ ଗୋଡ଼ ଖୋଲାରଖି କାମ କରିବା ତା' ପକ୍ଷରେ ସଂପୂର୍ଣ୍ଣ ଅସମ୍ଭବ । ଏଣୁ ସେ ଗାଳି ନଦେବାର ତା'ର ଶପଥ ଭଙ୍ଗ କରି ରହିବା ଜାଗାକୁ ପୁଣି ଫେରିଆସିଲା ଓ ଚୁଲି ପାଖରେ ବସି, ତା'ର କାଦୁଅ ସଇବଇ ମୋଜାଟାକୁ କାଢ଼ି, ଖାଲି ପାଦଟାକୁ ଝିଙ୍କା ଉପରକୁ ଦେଖାଇଲା ।

ରାନ୍ଧୁଣିଆକୁ ସାହାଯ୍ୟ କରୁଥିବା ଲାଇନ୍‌ମ୍ୟାନ୍‌ର ସ୍ତ୍ରୀ ଓଦାର୍‌କା ସେତେବେଳେ ବିଟ୍ ମୂଳଗୁଡ଼ାକ ବନାଉଥିଲା ଟେବୁଲ ପାଖରେ ଛିଡ଼ାହୋଇ । ଓଦାର୍‌କା ସାଧାରଣଭାବେ ଦୟାବତୀ ସ୍ତ୍ରୀଲୋକଟିଏ । ଯୌବନ ତା'ର ସରି ନାହିଁ । ପୁରୁଷ ଭଳି ଚଉଡ଼ା କାନ୍ଧ, ଉନ୍ନତ ବକ୍ଷ ଏବଂ ଉଚ୍ଚ ଉଚ୍ଚ ନିତମ୍ବ । ଏତେ ଜୋର୍‌ରେ ଜୋର୍‌ରେ ବନେଇ ଚାଲିଥିଲା ସେ ଯେ, ଆରପଟେ ପରିବା କଟାହୋଇ ଗଦା ହୋଇଯାଉଥିଲା ।

ଚୁଲିମୁଣ୍ଡରେ ବସି ସେକି ହେଉଥିବା ପାଭେଲ୍ ଆଡ଼କୁ ବେଖାତିର ଠାଣିରେ ଥରଟିଏ ଚାହିଁଦେଇ ଓଦାର୍‌କା କହିଲା :

"ଖାଇବା ପାଇଁ ଆସିଛ କି ? ଏଯାଏଁ କିଛି ହୋଇ ନାହିଁ, କେମିତି ବା ଏତେ ଜଲଦି ହବ ? ତମକୁ କିଛୁ ଲାଜ ଲାଗୁ ନାହିଁ, ଏମିତି ଭାବରେ କାମ ଛାଡ଼ି ଲୁଚି ଲୁଚି ପଳାଇ ଆସିବାକୁ ? ହେଃ ... ଚୁଲିଟା ଉପରୁ ଗୋଡ଼ କାଢ଼, ଏଇଟା ଗାଧୁଆ ଘର ନୁହେଁ, ଏଟା ପରା ରୋଷେଇ ଘର ।"

ଠିକ ସେତିକିବେଳକୁ ବୟସ୍କ ରାନ୍ଧୁଣିଆ ସେ ଘରକୁ ପଶିଆସିଲା ।

"ନାଁ, ମୋ ଛିଣ୍ଡା ବୁଟ୍‌ଟା ଏକଦମ ଦି' ଖଣ୍ଡ ହୋଇଗଲା", ପାଭେଲ୍ କହିଲା ରୋଷେଇଘରକୁ ଏତେଶୀଘ୍ର ସେ କାହିଁକି ଆସିଛି, ସେଇଆ ବୁଝାଇବାକୁ ।

ବୟସ୍କ ରାନ୍ଧୁଣିଆ ଜଣକ ଛିଣ୍ଡା ଜୋତାହଳକ ଆଡ଼କୁ ଚାହିଁ କହିଲା :

"ତା' ସ୍ୱାମୀକୁ କିଛି କିଛି ମୋଚି କାମ ଆସେ । ତାକୁ ଦେଖାଇଲେ ସିଏ କରିଦେଇପାରେ । ତାକୁ ଦେଖାଅ, ନହେଲେ ତମେ ବି ଜୋତା ନଥାଇ କିଛି କାମ କରିପାରିବ ନାହିଁ ।"

ଏକଥା ସବୁ ଶୁଣି ଓଦାର୍‌କା ଆଉ ଥରେ ପାଭେଲ୍ ଆଡ଼କୁ ଚାହିଁଲା ।

"ମୁଁ ତମକୁ ଗୋଟାଏ ଛତରା ବୋଲି ଭାବିଥିଲି", ମନକୁ ମନ କହିଲା ସେ ।

ପାଭେଲ୍ ଟିକେ ହସିଦେଲା । ଜଣାଇବାକୁ ଚାହିଁଲା ଯେ, ସେ କିଛି ଖରାପ ଭାବି ନାହିଁ ଓଦାର୍କା କଥାରେ । ଜୋତା ବିଷୟରେ ସବୁ ଜାଣିଥିଲା ଭଳି ଓଦାର୍କା ତା' ଜୋତାହଳଟାକୁ ଦେଖିନେଲା ଥରେ ।

"ଏ ଜୋତାହଳକ ସିଲେଇ କଲେ କିଛି ଲାଭ ନାହିଁ । ତା' ଅପେକ୍ଷା ବରଂ ଆଉ ଗୋଟିଏ କଥା କର । ଆମ ଘରେ ପଡ଼ିଛି ଗୋଟାଏ ପୁରୁଣା ଗ୍ୟାଲୋଶ୍ । ତମେ ସେଇଟାକୁ ଏ ଜୋତା ଉପରେ ପିନ୍ଧିନିଅ । ମୁଁ ନେଇ ଆସିବି । ନହେଲେ ତ ତମର ପ୍ରାଣ ବାହାରି ଯିବ ଜୋତା ବିନା । ଯେଉଁ ଥଣ୍ଡା ହେଲାଣି ଯେକୌଣସି ଦିନ ବରଫ ପଡ଼ିପାରେ ।"

ଓଦାର୍କା ତା'ର ସମସ୍ତ ସ୍ନେହ ସହାନୁଭୂତି ସହ ଛୁରୀଟା ପକାଇଦେଲେ, ଅଳ୍ପ ସମୟ ମଧ୍ୟରେ ଫେରିଆସିଲା ଗୋଟାଏ ମୋଟା ଗ୍ୟାଲୋଶ୍ ଓ ଖଣ୍ଡେ ଟାଣ କନାର ପଟି ନେଇ ।

ଜୋତା ମିଶା ପାଦଟାକୁ ମୋଟା କନାରେ ଗୁଡ଼ାଇ, ଗ୍ୟାଲୋଶ୍ ଭର୍ତ୍ତି କରିସାରି, ଗରମ ଅନୁଭବ କଲା ପରେ, ପାଭେଲ୍ କୃତଜ୍ଞତାପୂର୍ଣ୍ଣ ଚାହାଣୀରେ ଓଦାର୍କା ଆଡ଼କୁ ଚାହିଁଲା ।

* * *

ତୋକାରେଭ୍ ଝାଳନାଳ ହୋଇ ସହରରୁ ଫେରିଲା । ଫେରିଆସିଲା ମାତ୍ରେ ଖୋଲ୍ୟାଭାର ବଖରାରେ ସେ ନେତୃସ୍ଥାନୀୟ ପାର୍ଟି ସଭ୍ୟମାନଙ୍କର ସଭା ଡାକି ଦୁଃସମ୍ବାଦଟି ଜଣାଇଦେଲା ।

"ରେଳରାସ୍ତା ସାରା କେବଳ ପ୍ରତିବନ୍ଧକ ହିଁ ପ୍ରତିବନ୍ଧକ । ଯେଉଁଠାକୁ ଗଲେ ମଧ୍ୟ ଚକା ଘୂରୁଛି, କିନ୍ତୁ ଗାଡ଼ି ଆଗଉ ନାହିଁ । ଚତୁର୍ଦ୍ଦିଗରେ ସେହି ବଜ୍ଜାତ୍ ଧଳାମୂଷା ପୂରି ରହିଛନ୍ତି । ସତେ ଯେମିତି ସେହିମାନଙ୍କୁ ଘଉଡ଼ାଇବାରେ ଓ ଏ କାମ କରିବାରେ ଆମର ଜୀବନକାଳ ବିତିଯିବ । ସବୁକିଛି ଖରାପ ହେବାରେ ଲାଗିଛି । ଆମକୁ ଅବ୍ୟାହତି ଦେବା ପାଇଁ କେହି ନାହାନ୍ତି, କେବେ ଆସିବେ ଜଣା ନାହିଁ । ଯେକୌଣସି ଦିନ ବରଫ ପଡ଼ିପାରେ । ତା' ଆଗରୁ ଆମକୁ ଏ ଜଳାଭୂଇଁ କାମଟା ସାରିବାକୁ ପଡ଼ିବ । କାରଣ ମାଟି ଓଦା ହୋଇଗଲା ପରେ ଆଉ କାମ କରିବା ସମ୍ଭବ ହେବ ନାହିଁ । ତେଣୁ ଅନ୍ୟମାନେ ସହରାଞ୍ଚଳରେ ଦସ୍ୟୁମାନଙ୍କୁ ନିପାତ କରିବାରେ ଲାଗିପଡ଼ିଲା ବେଳେ ଆମ କାମକୁ ଏଠାରେ ଦ୍ୱିଗୁଣ ବେଗରେ ଶେଷ କରିବାକୁ ହେବ । ଏ ରେଳ ଲାଇନ୍ ପକାଇବାକୁ ହିଁ ପଡ଼ିବ । ସେଥିପାଇଁ ଯଦି ଆମକୁ ଜୀବନ ପାତ କରିବାକୁ ପଡ଼େ, ଭ୍ରୂକ୍ଷେପ ନକରି, ମୃତ୍ୟୁକୁ ନଡରି ଆମକୁ ଆଗେଇଯିବାକୁ ହିଁ ପଡ଼ିବ । ଅନ୍ୟଥା ଆମେମାନେ ବଲ୍‌ଶେଭିକ୍ ନୋହୁଁ—ମେରୁଦଣ୍ଡ ବିହୀନ ଜେଲିମାଛ ।"

ତୋକାରେଭର୍ ଲୌହ କର୍କଶ ଗଳାରୁ ସତେ ଯେମିତି ନିଆ ଝରୁଥିଲା । ଗହଳ ଭୃଲତା ତଳୁ ତା' ଆଖିଦୁଇଟା ସତେକି ଜଳି ଉଠୁଥିଲା ସମସ୍ତଙ୍କୁ ଦୃଢ଼ କରିବା ପାଇଁ ।

"ଆଜି ଏକ ରୁଦ୍ଧଦ୍ୱାର ବୈଠକ ଡାକି ଆମେ ଏଠାର ସମସ୍ତ ପାର୍ଟି ସଭ୍ୟଙ୍କୁ ଏକଥା ଜଣାଇଦେବା ଏବଂ ଆଗାମୀ କାଲିଠାରୁ ସମସ୍ତଙ୍କୁ ଦୁଇଗୁଣ ବେଗରେ କାମ କରିବାକୁ ହେବ । ସକାଳୁ ଯେଉଁମାନେ ପାର୍ଟି ସଭ୍ୟ ନୁହନ୍ତି, ତାଙ୍କୁ ଛାଡ଼ିଦେବା – ବାକିମାନେ ସମସ୍ତେ ରହିଯିବା । ମୁଁ ଆଞ୍ଚଳିକ କମିଟିର ସିଦ୍ଧାନ୍ତ ସାଙ୍ଗରେ ଆଣିଛି ।" କହିବା ସଙ୍ଗେ ସଙ୍ଗେ ସେ ପାନ୍‌କ୍ରାତୋଭ୍‌କୁ ଭଙ୍ଗାରଙ୍ଗି ହୋଇଥିବା ପର୍ଦେ କାଗଜ ବଢ଼ାଇଦେଲା ।

ପାନ୍‌କ୍ରାତୋଭ୍ କାନ୍ଧ ଉପରେ ଉଁକିମାରି ପାରେଲ୍ କୋର୍ଚ୍ଚଗିନ୍ ପଢ଼ିଲା : "ବର୍ତ୍ତମାନର ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତିରେ ସେଠାରେ କାମ କରୁଥିବା ସମସ୍ତ ଯୁବ କମ୍ୟୁନିଷ୍ଟ ଲିଗ୍‌ର ସଭ୍ୟଙ୍କୁ ରହିଯିବାକୁ ହେବ । ଜାଳେଣୀ କାଠର ପ୍ରଥମ ଦଫା ନଆସିଲା ପର୍ଯ୍ୟନ୍ତ ତାଙ୍କ ବଦଳି ଆଉ କୌଣସି ଦଳ ସହରରୁ ଯିବା ସମ୍ଭବ ନୁହେଁ ।"

ସ୍ୱାକ୍ଷର କରିଛନ୍ତି ର. ଉସ୍ତିନୋଭିଚ୍, ଆଞ୍ଚଳିକ କମିଟିର ସଂପାଦକଙ୍କ ତରଫରୁ ।

ରୋଷେଇର ବାରଣ୍ଡା ଓ ସଂଲଗ୍ନ ଘରସବୁ ଭରପୂର ହୋଇଯାଇଥିଲା । ଶହେ କୋଡ଼ିଏ ଜଣ ଲୋକ ଖୁନ୍ଦାଖୁନ୍ଦି ହୋଇ ବସିଥିଲେ ସେଠି । କାନ୍ଥ, ଚଉକି, ଟେବୁଲ ଉପରେ, ଚୁଲି ଉପରେ ମଧ୍ୟ ସେମାନେ ଚଢ଼ିଯାଇ ଶୁଣୁଥିଲେ ।

ପାନ୍‌କ୍ରାତୋଭ୍ ସଭା ଆରମ୍ଭ କଲା । ତୋକାରେଭ୍ ଏକ ସଂକ୍ଷିପ୍ତ ଭାଷଣ ଦେଲା ଏକ ଘୋଷଣା ସମେତ । ଘରଟା ସତେ ଯେମିତି ଉତ୍ତେଜନାର ବୋମା ବିସ୍ଫୋରଣରେ ଫାଟିପଡ଼ିଲା ।

"ପାର୍ଟି ସଭ୍ୟମାନେ ଓ କୋମ୍‌ସୋମୋଲ୍ ସଭ୍ୟମାନେ ଆଗାମୀ କାଲି କାମ ଛାଡ଼ି ଯାଇପାରିବେ ନାହିଁ ।"

ଏ ଘୋଷଣା ଯେ ଅପରିବର୍ତ୍ତନୀୟ ଓ ଅଲଘନୀୟ ଏହା ଭାବଭଙ୍ଗୀରେ ଜଣାଇ ବୃଦ୍ଧ କମ୍ରେଡ୍ ତାଙ୍କ ବକ୍ତବ୍ୟ ଶେଷ କଲେ । ସହରକୁ ଫେରିଯିବାର ସମସ୍ତ ଆଶା ଏ ଘୋଷଣା ନିଃଶେଷ କରିଦେଲା । ଏ ଭୟଙ୍କର ନୀରନ୍ଧ୍ର ଅନ୍ଧକାର ଭିତରେ ହିଁ ରହିବାକୁ ପଡ଼ିବ । ସଂଗ୍ରାମ ଚଳାଇବାକୁ ହେବ । କିଛି ମୁହୂର୍ତ୍ତ ପାଇଁ ବିଭିନ୍ନ ଆତୁ କ୍ରୁଦ୍ଧ ଓ ଉତ୍ତେଜିତ ସ୍ୱରସବୁ ଶୁଭିବାକୁ ଲାଗିଲା ତୀବ୍ର ଭାବରେ । ଏମାନଙ୍କ ଉତ୍ତେଜିତ କଥାବାର୍ତ୍ତା ଫଳରେ ଦୁର୍ବଳ ମଳିନ ବତୀଟି ଦପ୍‌ଦପ୍ ହେବାକୁ ଲାଗିଲା । ପ୍ରାୟାନ୍ଧକାର ସେ ବଖରାରେ ଉତ୍ତେଜନା କ୍ରମଶଃ ବଢ଼ିବାକୁ ଲାଗିଲା । ସେମାନଙ୍କୁ 'ଘର'କୁ ଫେରିବାକୁ ହେବ । ତାଙ୍କର 'ଶକ୍ତି' ଅନୁସାରେ କାମ ସମସ୍ତେ କରିସାରିଲେଣି – ଆଉ କରିବା ସମ୍ଭବପର ନୁହେଁ ବୋଲି ପ୍ରତିବାଦ କଲେ ଅନେକେ । କେତେକ ଏ ସମ୍ବାଦଟିକୁ ନୀରବରେ ଗ୍ରହଣ କରିନେଲେ । ଜଣେ ଲୋକ ତୀବ୍ର ସ୍ୱରରେ ଏହାର ବିରୋଧ କରିଉଠିଲା :

"ସେ କଥା ହୋଇ ପାରେ ନାଁ, ଆଉ ମୁହୂର୍ତ୍ତେ ମଧ୍ୟ ମୁଁ ଏଠାରେ ରହିବି ନାହିଁ । ଆମେ କ'ଣ ଦୋଷ କରିଛୁ ଯେ, ଏଠି ଏ ଅବସ୍ଥାରେ ରହି ଶ୍ରମ କରିଯିବୁ ?"

ତା’ ଜାଗାରୁ ଉଠିପଡ଼ି ଚିତ୍କାର କରି କହୁଥାଏ ସେ ।

“ନିର୍ବୋଧ ଭଳି ଆମେ ଏ କାମ ଏତେ ଦିନ ପର୍ଯ୍ୟନ୍ତ କରିଯାଇଛୁ, ଆଉ ନୁହେଁ । ଦୁଇ ସପ୍ତାହ ଧରି ଆମେ ଏଠି କାମ କଲୁଣି, ଆଉ ନୁହେଁ । ଯେଉଁମାନେ ଏଭଳି ଏକ ସିଦ୍ଧାନ୍ତ ନେଇଛନ୍ତି, ସେଇମାନେ ଆସି ଏଠି ଏ କାମ କରନ୍ତୁ । ତମ ଭିତରୁ ଯାହାକୁ ଭଲ ଲାଗୁଛି ଏ ପଙ୍କ-କାଦୁଅରେ ଲଟରପଟର ହେବାକୁ, ହେଉଥାଅ । ମୋ ପାଇଁ କିନ୍ତୁ ମୋ ନିଜ ଜୀବନ ମୂଲ୍ୟବାନ । ଆସନ୍ତାକାଲି ସକାଳୁ ମୁଁ ନିଶ୍ଚେ ଫେରିଯିବି ।”

ଓକୁନେଭ୍‌ର ପଛପଟୁ ସ୍ୱରଟା ଆସୁଥିଲା । ଏଣୁ ସେ ଗୋଟାଏ ଦିଆସିଲି ମାରି ଦେଖିଲା, କିଏ କଥାଟା କହୁଛି ବୋଲି । ଜଳନ୍ତା ଦିଆସିଲିକାଠିର ନିଆଁରେ କହୁଥିବା ଲୋକର ଲାଲମୁହଁ, ଖୋଲା ଓଠ ଓ ଦାନ୍ତ, ଉତ୍ତେଜିତ ଭଙ୍ଗୀ ସମସ୍ତଙ୍କ ଆଗରେ ସ୍ପଷ୍ଟ ହୋଇଗଲା ମୁହୂର୍ତ୍ତଟିଏ ପାଇଁ । ସେହି ଦଣ୍ଡକ ଭିତରେ ଓକୁନେଭ୍ ଓ ଅନ୍ୟମାନେ ଆଞ୍ଚଳିକ ଖାଦ୍ୟ ବିଭାଗ ଅଫିସରଙ୍କ ପୁଅକୁ ଚିହ୍ନି ପାରିଲେ ।

“ମୁହଁଟାକୁ କ’ଣ ଦେଖୁଛ ? ମୁଁ କ’ଣ ଚୋର ହୋଇଛି ? ମୁଁ କାହାରିକୁ ଡରି ନାହିଁ ।”

ଦିଆସିଲିଟା ଲିଭିଗଲା । ପାନ୍‌କ୍ରାତୋଭ୍ ଉଠି ଠିଆହୋଇ ବଡ଼ ପାଟିରେ କହିଲା :

“କିଏ ସେମିତି କହୁଛି ? ପାର୍ଟିର ଦାୟିତ୍ୱକୁ କଇଦୀମାନଙ୍କର ଦଣ୍ଡ ପାଇ କାମ କରିବା ସହିତ ସମାନ କରି ଦେଖୁଛି ?” ପ୍ରଥମ ଧାଡ଼ିମାନଙ୍କ ଉପରେ ଆଖି ବୁଲାଇଆଣି ସେ କହିଲା, “ନା କମ୍ରେଡ୍‌ଗଣ, ଆମେମାନେ ସହରକୁ ଯିବା ନାହିଁ, ଏଇଠି ଆମ କାମ । ଆମେ ଚାଲିଗଲେ ଲୋକେ ଥଣ୍ଡା ବରଫପାତ ଭିତରେ ମରିଯିବେ ପୋକମାଛି ପରି । ଯେତେ ଶୀଘ୍ର ଆମେ କାମ ସାରିବା, ସେତେ ଶୀଘ୍ର ଘରକୁ ଫେରିବା । ପଛକଡ଼େ ସେ ଲୋକଟା କହିବା ଭଳି ପଳାଇଯିବା ଆଦର୍ଶ ଆମର ଶୃଙ୍ଖଳା ସହିତ ଖାପ ଖାଇବ ନାହିଁ ।”

ପାନ୍‌କ୍ରାତୋଭ୍ ଅଧିକ ଭାଷଣ ପସନ୍ଦ କରେ ନା । ସେ ଏତିକି କହିଛି ବେଳକୁ ପଛକଡ଼ରୁ ସେହି ଉତ୍ତ୍ୟକ୍ତ କ୍ରୁଦ୍ଧ ସ୍ୱର ତାକୁ ବାଧା ଦେଲା :

“ପାର୍ଟିର ସଭ୍ୟ ଯେଉଁମାନେ ନୁହନ୍ତି, ସେମାନେ ଚାଲିଯିବେ ନା ?”

“ହଁ ।”

ଛୋଟ ଓଭରକୋଟ୍ ପିନ୍ଧିଥିବା ଜଣେ ଯୁବକ ଭିଡ଼ ଠେଲିପେଲି ଆଗକୁ ଆସିଲା । ଏକ କୋମ୍‌ସୋମୋଲ୍ କାର୍ଡ ବାହାର କରି ପାନ୍‌କ୍ରାତୋଭ୍‌ଙ୍କ ଛାତି ଉପରେ ଲଗେଇଦେଲା । ଟେବୁଲ ଉପରେ ସେଇଟାକୁ ପକାଇଦେଇ କହିଲା :

“ହେଇ, ତମ କାର୍ଡ ତମେ ରଖ । ଏଇ ଛୋଟିଆ ପଟ କାଗଜ ଖଣ୍ଡକ ପାଇଁ ମୁଁ ମୋ ସ୍ୱାସ୍ଥ୍ୟ ନଷ୍ଟ କରିବାକୁ ଚାହେଁ ନା !”

ତା’ର ଶେଷ କଥା କେଇପଦ ଉତ୍ତ୍ୟକ୍ତ ଅନେକ ଗର୍ଜନ ସ୍ୱରରେ ବୁଡ଼ିଗଲା ଯେମିତି :

“ତମେ କ’ଣ ଫୋପାଡ଼ିଦେଇଛ ଜାଣ ?”

"ବିଶ୍ୱାସଘାତକ ବେଇମାନ୍ ! ଢାଉଡ !"

"ସେଇଟା କମ୍‌ସୋମୋଲ୍‌ରେ ପଶିଯାଇଥିଲା, ସୁବିଧାରେ କାମଦାମ ହାସଲ କରିପାରିବ ବୋଲି ।"

"ସେଇଟାକୁ ଶେଷ କରିଦିଅ ମାଁ !"

"ମୋତେ ଛାଡ଼ିଦେବଟି ସେ ବଜ୍ଜାତ୍‌ଟା ପାଖକୁ, ତାକୁ ଟିକେ ଦେଖି ନିଏଁ ।"

ଲୋକଟି ତଳକୁ ମୁହଁପୋତି ବାହାରକୁ ବାହାରିବା କବାଟ ଆଡ଼କୁ ଆଗେଇଗଲା । ତାକୁ ଛାଡ଼ିଦେଲେ ସମସ୍ତେ, ଘୃଣ୍ୟ କୁଷ୍ଠରୋଗୀଠାରୁ ଦୂରେଇଗଲା ଭଳି ଦୂରେଇଯାଇ ତା' ପଛରେ ଦୁଆରଟା ବନ୍ଦ ହୋଇଗଲା ଶବ୍ଦ କରି ।

ପାନ୍‌କ୍ରାତୋଭ୍ ପରିତ୍ୟକ୍ତ କାର୍ଡଟିକୁ ଧରି କିରାସିନି ଆଲୁଅ ଦେହରେ ଲଗାଇ ଦେଲା । ଜଳି ଉଠିଲା କାର୍ଡଟି, ଜଳୁଜଳୁ ବଙ୍କେଇଗଲା ।

* * *

ଜଙ୍ଗଲ ଭିତରୁ ଗୋଟିଏ ଗୁଳିର ଶବ୍ଦ ପ୍ରତିଧ୍ୱନିତ କରିଉଠିଲା । ଗୋଟିଏ ଘୋଡ଼ସବାର ଭଙ୍ଗାରୁଜା ବ୍ୟାରାକ୍ ଆଡ଼ୁ ଘୋଡ଼ା ମୁହଁ ଘୂରାଇ, ଜଙ୍ଗଲର ଅନ୍ଧାର ଆଡ଼କୁ ମୁହାଁଇଲା । ମୁହୂର୍ତ୍ତକ ପରେ ଲୋକେ ସ୍କୁଲଘର ଓ ବ୍ୟାରାକ୍ ଆଡ଼ୁ ବାହାରି ଆସିଲେ । ଜଣେ କିଏ କବାଟରେ ଲଖିଥିବା ଖଣ୍ଡେ ପଟଖା କାଠ ଆବିଷ୍କାର କଲା । ଜଣେ କିଏ ଦିଆସିଲି କାଠିଟାଏ ମାରିଲା ପବନରୁ ରକ୍ଷା କରି । ସେଇଥିରେ ପଢ଼ିଲା :

"ତମେସବୁ ଯିଏ ଯେଉଁଠୁ ଆସିଛ, ତୁରନ୍ତ ଫେରିଯାଅ । ନଗଲେ ତମମାନଙ୍କ ଭିତରୁ ପ୍ରତ୍ୟେକଙ୍କୁ ଗୁଳି କରାଯିବ । ମୁଁ ତମକୁ ଆଗାମୀକାଲି ରାତି ପର୍ଯ୍ୟନ୍ତ ସମୟ ଦେଉଛି ଏଠାରୁ ପଳାଇଯିବାକୁ ।

ଆତାମାନ୍ ଚେସ୍‌ନୋକ୍ ।"

ଚେସ୍‌ନୋକ୍ ଓର୍ଲିକ୍ ଦଳର ଜଣେ ସଦସ୍ୟ ।

* * *

ରୀତାର ପଢ଼ାଘରର ଟେବୁଲ ଉପରେ ଗୋଟିଏ ଖୋଲା ଡାଇରୀ ପଡ଼ିଥାଏ ।

"ଡିସେମ୍ବର, ୨

ଆଜି ସକାଳୁ ବର୍ଷର ପହିଲି ତୁଷାରପାତ ଆରମ୍ଭ ହେଲା । ଭୟଙ୍କର ଥଣ୍ଡା ପଡ଼ିଛି । ପାହାଚ ଉପରୁ ଓହ୍ଲାଉ ଓହ୍ଲାଉ ମୋର ଭ୍ୟାଚେସ୍ଲାଭ୍ ଓଲ୍‌ଶିନ୍‌ସ୍କିଙ୍କ ସହିତ ଦେଖାହେଲା । ଦୁହେଁ ସାଙ୍ଗ ହୋଇ ରାସ୍ତାକୁ ଆସିଲୁ ।

'ମୋତେ ପ୍ରଥମ ତୁଷାରପାତ ଭାରୀ ଭଲ ଲାଗେ', ସିଏ କହିଲେ, 'ବିଶେଷକରି ଯେତେବେଳେ ଏମିତି ସୁନ୍ଦରଭାବରେ ରାସ୍ତାଗୁଡ଼ାକ ଉପରେ ତୁଷାର ଜମିଥାଏ, ଭାରୀ ସୁନ୍ଦର ଦିଶେ ! ନୁହେଁ ?'

ମାତ୍ର ମୁଁ ବୋୟାର୍‌କା କଥା ଭାବୁଥିଲି ଏବଂ ତାଙ୍କୁ କହିଲି, ତୁଷାର ଓ ବରଫ ମୋତେ ଆଦୌ ଆନନ୍ଦ ଦିଏ ନାହିଁ । ବରଂ ମୋତେ ଭାରୀ ହତାଶ ଲାଗେ । କାହିଁକି ଲାଗେ, ତା' ମଧ୍ୟ କହିଲି ।

ସିଏ କହିଲେ, 'ଏଇଟା ସଂପୂର୍ଣ୍ଣଭାବରେ ଏକ ମନୋଗତ ଚିନ୍ତାଧାରା । ଏହି ଧାରଣା ଉପରେ ଯୁକ୍ତି କଲେ, ଧରନ୍ତୁ, ଯୁଦ୍ଧ ସମୟରେ କୌଣସି ଆନନ୍ଦ ଉତ୍ସବ ବା ଆତିଶଯ୍ୟ ତ ସମ୍ଭବ ହେବ ନାହିଁ, ମାତ୍ର ଜୀବନ ସେପରି ନୁହେଁ । ଜୀବନର ଦୁର୍ଭୋଗ ଓ ଦୁର୍ଯୋଗ ଯୁଦ୍ଧର ଛାମୁଆଁ ବାହିନୀ ମଧ୍ୟରେ ହିଁ ସୀମିତ ଥାଏ । ସେଠାରେ ଜୀବନକୁ ମୃତ୍ୟୁର ଛାୟାର କରାଳତା ଗ୍ରାସ କରିଥାଏ । ତଥାପି ସେଠାରେ ମଧ୍ୟ ଲୋକେ ହସନ୍ତି । ଏବଂ ସାମନା ଯୁଦ୍ଧର ପଶ୍ଚାଦ୍ ଭାଗରେ ଜୀବନ ନିରବଚ୍ଛିନ୍ନ ଭାବରେ ଗତି କରୁଥାଏ । ଲୋକେ ହସନ୍ତି, କାନ୍ଦନ୍ତି, କଷ୍ଟଭୋଗ କରନ୍ତି, ବିହ୍ୱଳିତ ହୁଅନ୍ତି, ପ୍ରେମ କରନ୍ତି, ଉପଭୋଗ ଖୋଜନ୍ତି, ବିନୋଦନ ଲୋଡ଼ନ୍ତି, ଉତ୍ତେଜନା ଲୋଡ଼ନ୍ତି ।'

ଓଲ୍‌ଶିନ୍‌ସ୍କିଙ୍କ କଥାରେ ଏତେ ଟିକେ ସୂକ୍ଷ୍ମ ବ୍ୟଙ୍ଗ ବା ଛଳନା ନଥିଲା । ସେ ପୁଣି ଗଣସାଲ୍ଲଖ୍ୟର ବୈଦେଶିକ ବ୍ୟାପାର ବିଭାଗର ଲୋକ । ୧୯୧୭ ମସିହାରୁ ପାର୍ଟି ସଭ୍ୟ । ଭଲ ପୋଷାକ ପିନ୍ଧନ୍ତି, ସୁନ୍ଦର ଚିକ୍‌କଣ ହୋଇ ଖିଅର ହୁଅନ୍ତି, ଏପରିକି ତାଙ୍କ ଲୁଗାପଟାରୁ ଏକ ହାଲୁକା ଅତର ଗନ୍ଧ ସଦାବେଳେ ଆସେ । ସିଏ ଆମ ଘରେ ରହନ୍ତି ସେଗାଇଙ୍କର ବଖରାରେ । କଦବା କେମିତି ସନ୍ଧ୍ୟାବେଳେ ମୋତେ ଦେଖା କରିବାକୁ ମୋ ବଖରାକୁ ବି ଆସନ୍ତି । ବେଶ ମେଳାପୀ ଲୋକ ଓ କଥାବାର୍ତ୍ତାରେ ବେଶ୍ ଜମାଇ ନିଅନ୍ତି । ୟୁରୋପ୍ ସଂପର୍କରେ ତାଙ୍କର ପ୍ରଚୁର ଅଭିଜ୍ଞତା । ପ୍ୟାରିସ୍‌ରେ ଅନେକ ବର୍ଷ ରହିଥିଲେ । ମୋର କିନ୍ତୁ ସନ୍ଦେହ ହୁଏ ତାଙ୍କ ସହିତ ମୋର ଆଦୌ ବନ୍ଧୁତା ହେବ କି ନାହିଁ ବୋଲି । କାରଣ ତାଙ୍କ ନିକଟରେ ମୁଁ ସାଧାରଣଭାବରେ ଏକ ନାରୀ । ମୁଁ ଯେ ଜଣେ ପାର୍ଟି ସଭ୍ୟ ଓ ତାଙ୍କର ପାର୍ଟି କମ୍ରେଡ୍ ଏହା ତାଙ୍କ ପକ୍ଷରେ ଏକ ଗୌଣ କଥା । ଏକଥା ସତ ଯେ, ସେ ତାଙ୍କର ଚିନ୍ତାଧାରାକୁ ଓ ପ୍ରଚେଷ୍ଟାକୁ ଗୋପନ କରିବାକୁ ଚେଷ୍ଟା କରନ୍ତି ନାହିଁ । ତାଙ୍କ କଥାକୁ ପ୍ରକାଶ କଲାଭଳି ସାହସ ତାଙ୍କର ଅଛି ଓ କାର୍ଯ୍ୟକଳାପରେ କୌଣସି ଦୁରଭିସନ୍ଧି ନାହିଁ । ଆଉ ସୁନ୍ଦରଭାବରେ ସଜାଇ ଏଇ କଥାଗୁଡ଼ାକ କହିବାର ପ୍ରତିଭା ତାଙ୍କର ମଧ୍ୟ ଅଛି, ମାତ୍ର ସ୍ପଷ୍ଟଭାବରେ ମୋତେ ତାଙ୍କୁ ଆଦୌ ଭଲ ଲାଗେ ନାହିଁ ।

ଝୁଖ୍‌ରାଇଙ୍କର ଗ୍ରାମ୍ୟ ସରଳତା, ଓଲ୍‌ଶିନ୍‌ସ୍କିଙ୍କର ୟୁରୋପୀୟ ଚିକ୍‌କଣ ବ୍ୟବହାର ଅପେକ୍ଷା ମୋ ନିକଟରେ ଲୋଭନୀୟ ।

ବୋୟାର୍‌କାରୁ ସଂକ୍ଷିପ୍ତ ରିପୋର୍ଟ୍ ଆକାରରେ ସମ୍ବାଦମାନ ଆସୁଛି । ପ୍ରତିଦିନ ୨୦୦ ଗଜ ଲେଖାଏଁ ରେଳରାସ୍ତା ତିଆରି ସରୁଛି । ସେମାନେ ବରଫ ପଡ଼ିଥିବା କାଦୁଆମାଟି ଉପରେ ହିଁ ରେଳ ସ୍ଲିପରଗୁଡ଼ାକ ପକାଇ ଯାଉଛନ୍ତି, ମାତ୍ର ଦୁଇଶହ ଛତିଶ ଜଣ ଲୋକ ଏବେ କାମରେ ଲାଗିଛନ୍ତି । ଅଧାଅଧି ଲୋକ, ଯେଉଁମାନେ ପଛରେ

ଯାଇଥିଲେ ମଧ୍ୟ ସମସ୍ତେ ପଳାଇ ଆସିଲେଣି । ସେଠାର ଅବସ୍ଥା ସତରେ ଭୟପ୍ରଦ । ମୋତେ ତ ଆଶ୍ଚର୍ଯ୍ୟ ଲାଗୁଛି, କେମିତି ସେମାନେ ଏ ବରଫ ଭିତରେ କାମ କରିବେ । ସପ୍ତାହେ ହେଲାଣି ଦୁବାଭା ଗଲେଣି । ପୁଷ୍ଟା-ଭଦିହାରେ ଅକାମୀ ହୋଇ ପଡ଼ିଥିବା ଆଠୋଟି ଇଞ୍ଜିନ୍‌ରୁ ମାତ୍ର ପାଞ୍ଚୋଟିକୁ ସଜାଡ଼ିବାକୁ ସେମାନେ ସମର୍ଥ ହେଲେ । ଅନ୍ୟଗୁଡ଼ିକୁ ସଜାଡ଼ିବାକୁ ଯେଉଁ ନୂଆ ଯନ୍ତ୍ରାଂଶଗୁଡ଼ିକ ଦରକାର, ସେଥିରୁ ଆଉ ନଥିଲା ।

ଟ୍ରାମ୍‌କାର୍ କର୍ତ୍ତୃପକ୍ଷଙ୍କ ଦ୍ୱାରା ଦ୍‌ମିତ୍ରି ବିରୁଦ୍ଧରେ ପୂରାପୂରି କ୍ରିମିନାଲ୍ ଅଭିଯୋଗ କରାଯାଇଥିଲା । ସେ ତା'ର ବାହିନୀ ଦ୍ୱାରା ଟ୍ରାମ୍ କର୍ତ୍ତୃପକ୍ଷଙ୍କର ସମସ୍ତ ଗାଡ଼ିକୁ ଅଟକାଇ ଦେଇଥିଲେ, ଯେଉଁଗୁଡ଼ିକ ପୁଷ୍ଟା-ଭଦିହାରୁ ସହରକୁ ଯାଉଥିଲା । ସେଥିରୁ ଯାତ୍ରୀମାନଙ୍କୁ କାଢ଼ି ଦେଇଥିଲେ ଏବଂ ଡବାଗୁଡ଼ିକରେ ରେଳ ଲାଇନ୍ ଲଦିଦେଇ ବୋୟାର୍‌କା ଲାଇନ୍‌ରେ ଛାଡ଼ିଦେଇଥିଲେ । ସେମାନେ ଟ୍ରାମ୍ ରାସ୍ତାରେ ପ୍ରାୟ ୧୯ ଗାଡ଼ି ରେଳଧାରଣା ଆଣିଛନ୍ତି । ଟ୍ରାମ୍ ଚାଳକମାନେ ଆନନ୍ଦିତ ହୋଇ ଏ କାମରେ ସାହାଯ୍ୟ ଓ ସହଯୋଗ କରିଛନ୍ତି ।

ସହରରେ ବାକୀ ଥିବା ସୋଲୋମେଙ୍କା କମ୍‌ସୋମୋଲ୍ ସଭ୍ୟମାନେ ରାତିସାରା ଲାଗି ରେଳଡବାରେ ଧାରଣାଗୁଡ଼ିକ ଲଦିଦିଅନ୍ତି ଏବଂ ଦ୍‌ମିତ୍ରି ଓ ତା'ର ବାହିନୀ ତାକୁ ବୋୟାର୍‌କା ଅଭିମୁଖେ ବହିନିଅନ୍ତି ।

କମ୍‌ସୋମୋଲ୍ ଦ୍ୱାରା ଦୁବାଭା ସଂପର୍କରେ କାର୍ଯ୍ୟାନୁଷ୍ଠାନ ପାଇଁ ଆକିମ୍ ମନାକରିଦେଲା । ଦ୍‌ମିତ୍ରି ଆମକୁ ଆଗରୁ ଟ୍ରାମ୍‌କାର୍ କର୍ତ୍ତୃପକ୍ଷ ନାଲିଫିତା ଶାସନ କଥା କହିସାରିଥିଲା । ତାଙ୍କର ଏଭଳି କାରବାର ଯେ ଅସହ୍ୟ ଓ ସେମାନେ ଖୋଲାଖୋଲି ଭାବରେ ଏ କାମ ପାଇଁ ଦୁଇଟି ଟ୍ରାମ୍ ବ୍ୟତୀତ ଆଉ ଦେବେ ନାହିଁ ବୋଲି କହିଥିଲେ, ଏସବୁ ଦ୍‌ମିତ୍ରି ଜଣାଇଥିଲା । ତୁଫ୍‌ତା ଘରୋଇ ଭାବରେ ଦୁବାଭାକୁ ଚେତାଇ ଦେଇଥିଲା ଓ କହିଥିଲା :

'ଏ ଭଳି ଦଳୀୟ ମନୋବୃତ୍ତି ଛାଡ଼, ନହେଲେ ତମେ କିଛି ଜାଣିବା ଆଗରୁ ଜେଲ ଭିତରେ ଥିବ । ତମେ ଅସ୍ତ୍ରଶସ୍ତ୍ରର ସାହାଯ୍ୟ ନେବା ଆଗରୁ ତ କୌଣସି ଏକ ବୁଝାମଣାରେ ନିଶ୍ଚିତ ଭାବରେ ପହଞ୍ଚି ପାରିଥାଆନ୍ତ ?'

ଦୁବାଭାକୁ ଏତେ ଉତ୍ତେଜିତ ଅବସ୍ଥାରେ ମୁଁ କେବେ ପୂର୍ବରୁ ଦେଖି ନଥିଲି ।

'ତମେମାନେ ସବୁ, ଯେଉଁମାନେ ସହରରେ ବସି କଲମ-ଘଷା ଖାଲି କରୁଛ, ତମେ ଆଗରୁ ତାଙ୍କୁ କହି ନଥିଲ କାହିଁକି ?' ସେ ଉତ୍‌କ୍ଷିପ୍ତ ହୋଇ କହିଲା, 'ତମେ ଦଳେ ଏଠି ବସି ତମ ଚଉକି ଉଷୁମ କରୁଛ ଆଉ ପାଟି ସୁଆଦିଆ କଥାବାର୍ତ୍ତା କରୁଛ । ତମେ କେମିତି ଭାବିପାରୁଛ ଯେ, ମୁଁ ବୋୟାର୍‌କାକୁ ରେଳଧାରଣାଗୁଡ଼ାକ ନନେଇ ଫେରି ପାରିଥାଆନ୍ତି ? ଏସବୁ କାମ ବନ୍ଦ କରି, ତମକୁ ସବୁ ସେଠାକୁ ଅନ୍ୟ କାମଦାମ କରାଇବାକୁ ପଠାଇବା ଉଚିତ । ଚୋକାରେଭ୍ କେବଳ ତମମାନଙ୍କର ମତିଗତି ବଦଳାଇପାରେ !' ଦ୍‌ମିତ୍ରି ଏତେ ଜୋର୍‌ରେ କହୁଥିଲା ଯେ, କୋଠାଟା ସାରା ତା'ର କଥା ଶୁଭୁଥିଲା ।

ତୁଫ୍‌ତା ଦ୍ୱାରା ବିରୁଦ୍ଧରେ କ'ଣ ଗୋଟାଏ ଅଭିଯୋଗ ଲେଖିଲା । ମାତ୍ର ଆକିମ୍ ମୋତେ ବାହାରକୁ ଯିବାକୁ ନିର୍ଦ୍ଦେଶ ଦେଇ ତା' ସହିତ ଦଶ ମିନିଟ୍ କାଳ କ'ଣ ଆଲୋଚନା କଲା ଏକାନ୍ତଭାବରେ । ତା'ପରେ ଉତ୍ତ୍ୟକ୍ତ ଓ ଗଳଦଘର୍ମ ତୁଫ୍‌ତା କ୍ରୁଦ୍ଧ ହୋଇ ସେ ଘରୁ ବାହାରି ଆସିଲା ।

ଡିସେମ୍ବର, ୩

ପରିବହନ ବିଭାଗ ନିକଟରୁ ଆଞ୍ଚଳିକ ସମିତି ଆଉ ଗୋଟିଏ ଅଭିଯୋଗ ପାଇଲେ । ଅଭିଯୋଗରେ ଥିଲା ଯେ, ପାନ୍‌କ୍ରାଟୋଭ୍, ଓକୁନେଭ୍ ଏବଂ ଆଉ କେତେଜଣ କମ୍ରେଡ୍ ମୋଟୋଭିଲୋଭ୍‌କା ଷ୍ଟେସନ୍‌କୁ ଆସି, ସେଠାର ଫାଙ୍କା କୋଠାମାନଙ୍କର କବାଟ, ଝରକା ସବୁ ତାଡ଼ି ଏକ ମାଲଗାଡ଼ିରେ ଲଦିଲା ସମୟରେ ଷ୍ଟେସନ୍ କର୍ତ୍ତୃପକ୍ଷଙ୍କର ଜଣେ ତାଙ୍କୁ ଗିରଫ କରିବାକୁ ଚେଷ୍ଟା କଲେ । ସେମାନେ ତାଙ୍କୁ ନିରସ୍ତ କରି ପିସ୍ତଲ୍‌ର ଗୁଳିଗୁଡ଼ାକ କାଢ଼ିନେଲେ ଓ ପିସ୍ତଲ୍ ଫେରାଇଦେଲେ । ମାତ୍ର ସେତେବେଳକୁ ଗାଡ଼ିଟି ଛାଡ଼ିବାକୁ ଆରମ୍ଭ କଲାଣି । ସେମାନେ ସେ କବାଟ, ଝରକା ଚଉକାଠ ସବୁ ଧରି ଚାଲିଗଲେ । ଯୋଗାଣ ବିଭାଗ ଟୋକାରେଭ୍ ବିରୁଦ୍ଧରେ ଅଭିଯୋଗ ଆଣିଲେ ଯେ, ସେ ବୋୟାର୍‌କା ରେଳବାଇ ଷ୍ଟୋର୍‌ରୁ କୋଡ଼ିଏ ପାଉଣ୍ଡ ଲୁହାକଣ୍ଟା ନେଇଯାଇଛି । ସେ କଣ୍ଟାଗୁଡ଼ାକ ନେଇ ସେ ଆଖପାଖ ଅଞ୍ଚଳର ଚାଷୀମାନଙ୍କୁ ଦେଇଛି ରେଳ ସ୍ଲିପର ଭାବରେ ବ୍ୟବହାର ହେଉଥିବା କାଠଗଡ଼ ଆଣିବାର ମୂଲ ସ୍ୱରୂପ ।

କମ୍ରେଡ୍ ଝୁଖ୍‌ରାଇଙ୍କ ସହିତ ଏ ସମସ୍ତ ଅଭିଯୋଗ ବିଷୟରେ ମୋର ଆଲୋଚନା ହେଲା । ମାତ୍ର ସେ କେବଳ ହସିଲେ । 'ସେସବୁ ପ୍ରତି ଆମେ ଦୃଷ୍ଟି ଦେବୁ'—କେବଳ ଏତିକି ମାତ୍ର ସେ କହିଲେ ।

ରେଳବାଇ କାମର ଅବସ୍ଥା ବର୍ତ୍ତମାନ ଅତି ଗୁରୁତ୍ୱପୂର୍ଣ୍ଣ ଓ ପ୍ରତିଟି ଦିନ ଅତି ମୂଲ୍ୟବାନ । ଛୋଟ ଛୋଟ କଥା ପ୍ରତି ଆମକୁ ଏଠି ଦୃଷ୍ଟି ଦେବାକୁ ପଡ଼ୁଛି ଓ ଚାପ ଦେବାକୁ ପଡ଼ୁଛି । ଏଠି ଘଟୁଥିବା ନାନା ଛୋଟ ଛୋଟ ବେଆଇନ୍ କାମ ପ୍ରତି ଆଞ୍ଚଳିକ କମିଟି ଅତି ସଜାଗ । ସେଣେ କିନ୍ତୁ କାମରେ ଥିବା କମ୍ରେଡ୍‌ମାନେ ବାରମ୍ବାର ସାଧାରଣ ନିୟମ ଭଙ୍ଗ କରି କାମ କରିଯାଉଛନ୍ତି ।

ଓଲ୍‌ଶିନ୍‌ସ୍କି ମୋ ପାଇଁ ଏକ ଛୋଟ ବିଜୁଳି-ଚୁଲି ଆଣିଦେଇଛନ୍ତି । ଓଲ୍‌ଗା ୟୁରେନେଭା ଓ ମୁଁ ଉଭୟେ ସେଥିରେ ହାତ ଉଷୁମ କରି ବସୁ । ସେଥିରେ କିନ୍ତୁ ସାରା ବଖରାଟା ଉଷୁମ ହୁଏ ନାହିଁ । ଯେଉଁ କମ୍ରେଡ୍‌ମାନେ କାମରେ ଲାଗିଛନ୍ତି, ସେମାନେ ଏ ଭୟଙ୍କର ଶୀତାର୍ତ୍ତ ରାତି ଜଙ୍ଗଲ ଭିତରେ ଯେ କେମିତି ବିତାଉଛନ୍ତି, ସେକଥା ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ଓଲ୍‌ଗା କହୁଛି, ଡାକ୍ତରଖାନାରେ ଥଣ୍ଡା ଏତେ ବେଶି ହେଉଛି ଯେ, କମ୍ବଳ ତଳେ ମଧ୍ୟ ରୋଗୀମାନେ ଥରିଉଠୁଛନ୍ତି । ଡାକ୍ତରଖାନାଟା ଦୁଇଦିନରେ ଥରେ ଲେଖାଏଁ ଗରମ କରାଯାଏ ।

ନାଁ କମ୍ରେଡ୍ ଓଲ୍ଶିନ୍ସ୍କି ! ତମ କଥା ଆଦୌ ସତ୍ୟ ନୁହେଁ । ସମ୍ମୁଖ ବାହିନୀର କୌଣସି ବିପଦ, ପଶ୍ଚାଦ୍ ଭାଗ ପାଇଁ ମଧ୍ୟ ବିପଦ !

ଡିସେମ୍ବର, ୪

ସାରା ରାତି ତୁଷାରପାତ ଲାଗିରହିଛି । ବୋୟାର୍କାରୁ ସେମାନେ ଲେଖିଛନ୍ତି ଯେ, ବରଫରେ ସବୁ ପୋତି ହୋଇଯାଇଛି ଏବଂ ସେମାନଙ୍କୁ କାମ ବନ୍ଦ କରି ବରଫ ଖୋଳି ସଫା କରିବାକୁ ପଡ଼ିବ । ଆଜି ଆଞ୍ଚଳିକ କମିଟି ଏକ ପ୍ରସ୍ତାବ ନେଇଛନ୍ତି ଯେ, କାଠଗଡ଼ ଯେଉଁଠୁ କଟା ଆରମ୍ଭ ହୋଇଛି, ସେପର୍ଯ୍ୟନ୍ତ ରେଳରାସ୍ତା ୧୯୨୨ ଜାନୁଆରୀ ପହିଲା ଭିତରେ ଆମକୁ କରିବାକୁ ହେବ । ଏ ପ୍ରସ୍ତାବ ବୋୟାର୍କାରେ ପହଞ୍ଚିଲା ମାତ୍ରେ ତୋକାରେଭ୍ କହିଲା, 'ଆମେ ନିଶ୍ଚୟ ତାହା ସଂପୂର୍ଣ୍ଣ କରିବୁ ଯଦି ମରିଯାଇ ନଥାଉ ।'

କୋର୍ଚାଗିନ୍ ବିଷୟରେ ଆଉ କିଛି ଶୁଣି ନାହିଁ ମୁଁ । ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ସିଏ କେମିତି ପାନ୍କ୍ରାତୋଭ୍ କରିଥିବା ଘଟଣାଟାକୁ ଗୋଳେଇ ମୋଳେଇ ପକାଇ ନି ! ଏବେ ମଧ୍ୟ ମୁଁ ବୁଝିପାରୁ ନାହିଁ, ସିଏ କାହିଁକି ମୋତେ ଏଡ଼େଇଯାଉଛି ।

ଡିସେମ୍ବର, ୫

ଗତକାଲି ରେଳବାଇ କାମ ଉପରେ ଡକାଏତମାନେ ଆକ୍ରମଣ କରିଥିଲେ ।"

* * *

ନରମ ବରଫ ଉପରେ ଜୋର୍‌ରେ ଜୋର୍‌ରେ କଦମ ପକାଇ ଆସୁଥାନ୍ତି ଘୋଡ଼ାଗୁଡ଼ାକ । ବରଫ ତଳେ ଲୁଚିରହିଥିବା ଇଟା ବେଳେବେଳେ ଘୋଡ଼ା ଖୁରା ଭିତରେ ପଶି ଲାଖିଯାଉଥାଏ । ଘୋଡ଼ାଟା ହ୍ରେଷାଧ୍ୱନି କରି ଅଟକି ଯାଉଥାଏ । ପରମୁହୂର୍ତ୍ତରେ ଚାବୁକ ପାହାର ଖାଇ ପୁଣି କଦମ ପକାଇ ଦୌଡ଼ିଚାଲୁଥାଏ ।

ପ୍ରାୟ ଦଶ ଜଣ ଘୋଡ଼ସବାର ପାହାଡ଼ିଆ ଚାଖ ରାସ୍ତାକୁ ଅତିକ୍ରମ କଲେ । ପାହାଡ଼ୀ ରାସ୍ତା ଆରପଟେ ଏବେ ବି କିଛି ଜମି ଅଛି, କଳା ଦେଖାଯାଉଛି, ଯେଉଁଠି ତୁଷାରପାତ ହୋଇ ନାହିଁ । ଗୋଟାଏ ଘୋଡ଼ାର ଜିନ୍ ଓ ପାଆଦାନି ସହିତ ଆଉ ଗୋଟାକର ପାଆଦାନି ବାଜି ଝଣତ୍କାର ଶବ୍ଦ କରିଉଠୁଥାଏ । ସେହି ଖାଲି ଜାଗାଟାରେ ଘୋଡ଼ସବାରମାନେ ଲଗାମ ଧରି ଘୋଡ଼ାଗୁଡ଼ାଙ୍କୁ ଅଟକାଇଲେ । ଦଳପତିଙ୍କର ବଡ଼ କଳା ଘୋଡ଼ାଟା ବହୁପଥ ଅତିକ୍ରମ କରି ଆସିଥିବାରୁ ଘର୍ମାକ୍ତ ହୋଇପଡ଼ିଥାଏ ।

"ଏଠି ସେମାନଙ୍କ ଭିତରୁ ଅନେକ ଅଛନ୍ତି", ଦଳପତି ଜଣକ ୟୁକ୍ରେନୀୟ ଭାଷାରେ କହିଲା । "ମାତ୍ର ଆମେ ତାଙ୍କୁ ଭଗବାନଙ୍କ ଅସ୍ତିତ୍ୱ ଜଣାଇଦେବା । ଆତାମାନ୍ କହିଛନ୍ତି ଯେ, ଏଗୁଡ଼ାଙ୍କୁ ଏଠୁ ଆଗାମୀ କାଲି ସକାଳ ଭିତରେ ଘଉଡ଼େଇ ଦେବାକୁ ହେବ । ସେମାନେ ଏଥର ଜାଲେଣୀର ଏକବାରେ ପାଖରେ ପ୍ରାୟ ପହଞ୍ଚିଗଲେଣି ।"

ତା'ପରେ ସେମାନେ ଜଣକିଆ ଧାଡ଼ିକରି ଷ୍ଟେସନ୍ ପର୍ଯ୍ୟନ୍ତ ଗଲେ, ସବୁ ରେଳପଥ

କଡ଼େକଡ଼େ । ପୁରୁଣା ସ୍କୁଲଘର ପାଖାପାଖି ପହଞ୍ଚିଗଲା ପରେ, ସେମାନେ ଅଳ୍ପ ଦୂରରେ ଗଛଲତା ଆଢ଼ୁଆଳରେ ଅଟକିଲେ, ବାହାରକୁ ବାହାରିବାକୁ ସାହସ ନକରି ।

ବହୁ ଗୁଳିର ଆବାଜ୍ ଗଭୀର ରାତ୍ରିର ନୀରବତାକୁ ଭଙ୍ଗ କଲା । ବାର୍ଚ୍ଚ ଗଛ ଉପରେ ମେଁଘ ମେଁଘ ବରଫ ନେସିହୋଇ ରହି ଜହ୍ନ ଆଲୁଅରେ ରୂପା ଭଳି ଚକ୍ ଚକ୍ କରୁଥିଲା, ଗୁଳିମାଡ଼ରେ ଗୁଣ୍ଡୁଚିମୂଷା ଖସିପଡ଼ିଲା ଭଳି ସେଥିରୁ ଏଠୁସେଠୁ ମେଁଘ ମେଁଘ ବରଫ ଗଳିପଡ଼ିଲା ତଳକୁ । ଗଛ ଗହଳି ଭିତର ଦେଇ ବନ୍ଧୁକର ଗୁଳିଫୁଟା ଝଲକ ଦିଶିଯାଉଥାଏ । ପୁରୁଣା ଘରର କାନ୍ଥଗୁଡ଼ାକ ଜଣା ହେବାକୁ ଲାଗିଲା ଗୁଳିମାଡ଼ରେ । ପାନ୍‌କ୍ରାତୋଭ୍‌ର ବଖରାର ଝରକା କାଚ ଗୁଳିମାଡ଼ରେ ଝଣଝାଣ ହୋଇ ଗୁଣ୍ଡ ହୋଇଗଲା ।

ସିମେଣ୍ଟ ଚଟାଣ ଉପରେ ଶୋଇଥିବା ଲୋକେ ଗୁଳିମାଡ଼ର ଶବ୍ଦରେ ଗୁରୁଣ୍ଡି ଉଠି ପୁଣି ଶୋଇଗଲେ ପେଟେଇ ଯାଇ ।

"କୁଆଡ଼େ ଯାଉଛୁ ?" ଦୁବାଭା ପାଭେଲ୍‌ର କୋଟ୍ କଲର୍ ଓଟାରି ପଗ୍ରରିଲା ।

"ବାହାରକୁ ।"

"ଜଲ୍‌ଦି ଶୋଇପଡ଼, ମୂର୍ଖ ! ବାହାରକୁ ମୁହଁ ଦେଖାଇବା ମାତ୍ରେ ସେମାନେ ଗୁଳି କରିବେ", ଫିସ୍‌ଫିସ୍ କରି କହିଲା ଦ୍‌ମିତ୍ରି ।

ଠିକ୍ ଦୁଆର ପାଖରେ ଲଗାଲଗି ହୋଇ ସେମାନେ ଶୋଇପଡ଼ିଲେ । ଦୁବାଭା ଚଟାଣରେ ପେଟେଇ ଶୋଇ ନିଜ ପିସ୍ତଲ୍‌ଟିକୁ ଦୁଆରମୁହଁକୁ ଉଞ୍ଚେଇ ରଖିଥାଏ । ପାଭେଲ୍ ଟିକେ ବଙ୍କେଇ ହୋଇ ବସି, ଉତ୍ତେଜିତ ହୋଇ ନିଜ ପିସ୍ତଲ୍‌ର ଘୋଡ଼ା ଉପରେ ଆଙ୍ଗୁଠି ରଖିଥାଏ । ସେଥିରେ ମାତ୍ର ପାଞ୍ଚ ରାଉଣ୍ଡ ଗୁଳି ଥାଏ । ଗୋଟିଏ ରାଉଣ୍ଡ ଫୁଟିଯାଇଥାଏ । ପିସ୍ତଲ୍‌ର ନଳୀଟାର ଆଉ ଗୋଟାଏ ଘର ଆଗେଇ ଆଣିଲା ସେ ।

ହଠାତ୍ ଗୁଳିର ଆବାଜ୍ ବନ୍ଦ ହୋଇଗଲା । ପରମୁହୂର୍ତ୍ତର ନୀରବତା ଭିତରେ ଉତ୍ତେଜନା ଖେଳି ବୁଲୁଥାଏ ।

"ଯାହା ଯାହା ପାଖରେ ଅସ୍ତ୍ରଶସ୍ତ୍ର ଅଛି, ଏ କଡ଼କୁ ଗ୍ରଲିଆସ", ଦୁବାଭା ଫିସ୍‌ଫିସ୍ ହୋଇ କ'ଣ ଆଦେଶ ଦେଲା ।

ପାଭେଲ୍ ସାବଧାନତା ସହକାରେ କବାଟ ଖୋଲିଲା । ଦୁଆର ମୁହଁ ନିର୍ଜ୍ଜନ । ତୁଷାରକଣା ବର୍ଷୁଛି ଧୀରେ ଧୀରେ ।

ଜଙ୍ଗଲ ଭିତରେ ଦଶଜଣ ଘୋଡ଼ସବାର ସେମାନଙ୍କ ଘୋଡ଼ାକୁ ଗ୍ଭବୁକ ମାରି ଝପଟାଇଦେଲେ ।

ତା'ପରଦିନ ସହରରୁ ଗୋଟାଏ ଟ୍ରଲି ଆସି ପହଞ୍ଚିଲା ଷ୍ଟେସନ୍‌ରେ । ଝୁଖ୍‌ରାଇ ଓ ଆକିମ୍ ଓହ୍ଲାଇଲେ ସେଥିରୁ । ତୋକାରେଭ୍ ଓ ଖୋଲ୍ୟାଭା ତାଙ୍କୁ ପାଛୋଟି ଆଣିଲେ । ପ୍ଲାଟ୍‌ଫର୍ମକୁ ବୁହାହେଲା ଗୋଟାଏ ମେସିନ୍‌ଗନ୍, କେତେ ରାଉଣ୍ଡ ଗୁଳିପୂର୍ଣ୍ଣ ବାକ୍‌ସ, ଦି' ଡଜନ୍ ବନ୍ଧୁକ ।

ରେଳ ଲାଇନ୍ ଆଡ଼କୁ ସେମାନେ ଯଥାଶୀଘ୍ର ପାଦ ପକାଇଲେ । ଫ୍ୟୋଦୋର୍ ବିରାଟ

କୋଟ୍‌ର ଲଞ୍ଜଟା ପଛରେ ଅଙ୍କାବଙ୍କା ହୋଇ ବରଫ ଭିତରେ ଝୁଲୁଥାଏ । ସେ ଏବେବି ଗ୍ଲୁଥାଏ ଜଣେ ଜାହାଜୀ ପାଦ ପକେଇ ଗ୍ଲିଲ ଭଳି । ଆକିମ୍‌ର ବଡ଼ ପାହୁଣ୍ଡ – ଫ୍ୟୋଦୋର୍‌ର କଡ଼େ କଡ଼େ ଗ୍ଲୁଥାଏ ସେ । ମାତ୍ର ତୋକାରେଭ୍‌କୁ ତାଙ୍କ ସହିତ ପାହୁଣ୍ଡ ମିଳେଇ ଗ୍ଲିବା ପାଇଁ ବେଳେବେଳେ ଡେଇଁଡେଇଁ ଯିବାକୁ ପଡ଼ୁଥାଏ ।

"କେବଳ ଏ ଡକାଏତଙ୍କ ଆକ୍ରମଣ ଆମ ପାଇଁ ବଡ଼ ଅସୁବିଧା ନୁହେଁ । ଲାଇନ୍ ଉପରେ ଠିକ୍ ଗୋଟାଏ ଜାଗାରେ ଉଞ୍ଚା ଅଛି, ଆମ ଦୁର୍ଭାଗ୍ୟକୁ । ଅନେକ ଖୋଳିବାକୁ ପଡ଼ିବ ସେ ଜାଗାଟାରେ ।"

ବୟସ୍କ ତୋକାରେଭ୍ ଅଟକିଯାଇ, ପବନ ଆସୁଥିବା ଦିଗକୁ ବୁଲିପଡ଼ି ସିଗାରେଟ୍‌ଟାଏ ଲଗାଇଲା । ଦମେ ଦି'ଦମ ଟାଣି ସାରି, ଆଗେଇଯାଇଥିବା ଅନ୍ୟମାନଙ୍କ ସହିତ ମିଶିବା ପାଇଁ ପ୍ରାୟ ଦୌଡ଼ିଗଲା । ତା ପାଇଁ ଅପେକ୍ଷା କରି ଆକିମ୍ ଅଟକି ଯାଇଥିଲା । ମାତ୍ର ଝୁଣ୍ଟାଇ ଆଗେଇ ଗ୍ଲିଥାଏ ।

"ତମେ କ'ଣ ଭାବୁଛ, ଆମେ ଠିକ୍ ସମୟରେ ଏ ଲାଇନ୍ ପକାଇବା କାମ ଶେଷ କରିପାରିବା ?" ତୋକାରେଭ୍‌କୁ ପଗ୍ଲରିଲା ଆକିମ୍ ।

ଉତ୍ତର ଦେବା ଆଗରୁ ମୁହୂର୍ତ୍ତକ ପାଇଁ ତୁନି ରହିଗଲା ତୋକାରେଭ୍ ।

"ଦେଖ, ପୁଅ", ସେ କହିଲା ଶେଷରେ, "ଠିକଭାବରେ କହିବାକୁ ଗଲେ, କାମଟା ହୋଇ ପାରିବ ନାହିଁ । ମାତ୍ର କରିବାକୁ ହିଁ ପଡ଼ିବ ।"

ସେମାନେ ଏଥର ଯାଇ ଫ୍ୟୋଦୋର୍ ପାଖରେ ପହଞ୍ଚିଲେ ଓ ସମସ୍ତେ ଆଗେଇ ଗ୍ଲିଲେ ।

"ଏଠି ଏଭଳି ଅବସ୍ଥାରେ ଯେ ଲାଇନ୍ ପକାଇବା, ପୁଣି ଅଳ୍ପ ସରଞ୍ଜାମ ଓ ସ୍ୱଳ୍ପ ଶ୍ରମିକଙ୍କୁ ନେଇ, ଅସମ୍ଭବ । ସେକଥା ପାଟୋଶ୍‌କିନ୍ ଓ ମୁଁ ଦୁଇଜଣ ଜାଣୁ କେବଳ । ମାତ୍ର ଆମ ବ୍ୟତୀତ ଆଉ ସମସ୍ତେ ଦୃଢ଼ ପ୍ରତିଜ୍ଞ ଯେ ଲାଇନ୍ ପକାଇବାକୁ ହିଁ ପଡ଼ିବ, ଯେକୌଣସି ଉପାୟରେ ହେଉ ନା କାହିଁକି । ଆଉ, ସେଇଥି ପାଇଁ ମୁଁ କହିଥିଲି ଯେ, ଆମେ ଯଦି ଏ ଥଣ୍ଡା ହେମାଳରେ ମରି ନଯାଉ, ତେବେ ଲାଇନ୍ ନିଶ୍ଚୟ ପଡ଼ିବ । ତମେ ନିଜେ ବିଗ୍ଲରି ଦେଖ, ମାସେ ହେଲାଣି ଆମେ ଏଠି ମାଟିଖୋଳା ଆରମ୍ଭ କଲୁଣି । ଚତୁର୍ଥ ଦଳ ଏଠିକି ଏବେ ଆସିବା କଥା, କାମ ବଦଳ କରିବା ପାଇଁ । ମାତ୍ର ପ୍ରଧାନ କାମ କରୁଥିବା ଦଳକ ସେଇ ଆରମ୍ଭରୁ ହିଁ ଏଠି ଅଛନ୍ତି । ସେମାନଙ୍କର ତାରୁଣ୍ୟ ହିଁ ତାଙ୍କୁ କାମ କରିବା ପାଇଁ ଶକ୍ତି ଦେଉଛି । ମାତ୍ର ସେମାନଙ୍କ ଭିତରୁ ଅଧାଅଧି ଏ ଥଣ୍ଡାରେ କାଲୁଆ ହୋଇଗଲେଣି । ତାଙ୍କୁ ସବୁ ଦେଖିଲେ ହୃଦୟ ବିଦାରି ହୋଇଯିବ । ଏଇ ତରୁଣମାନଙ୍କୁ ସୁନାରେ ତଉଲିଲେ ବି ସୁନାର ମୂଲ୍ୟଠାରୁ ବହୁ ମୂଲ୍ୟବାନ ଏମାନେ । ଏ ଅଭିଶପ୍ତ ଜାଗାରେ ସେମାନଙ୍କ ଭିତରୁ କେତେକ ପ୍ରାଣ ଦେବେ ସିନା ।"

* * *

ତିଆରି ହୋଇଯାଇଥିବା ଛୋଟ ରେଳ ଲାଇନ୍ ଷ୍ଟେସନ୍‌ଠାରୁ ଏକ କିଲୋମିଟର ପର୍ଯ୍ୟନ୍ତ ଲମ୍ବିଆସିଲା । ତା'ପରକୁ ପ୍ରାୟ ଦେଢ଼ କିଲୋମିଟର ବ୍ୟାପୀ ପଡ଼ିଥାଏ କାଠଗଡ଼ଗୁଡ଼ାକ, ସତେ ଯେମିତି ପବନରେ ବିଛିହୋଇ ପଡ଼ିଛି । ସେଗୁଡ଼ାକ କିନ୍ତୁ ରେଳ ଲାଇନ୍‌ର ସ୍ଲିପର । ନିଜ ସ୍ଥାନରେ ବେଶ୍ ଦୃଢ଼ ହୋଇ ପୋତା ହୋଇଥାଏ । ତା'ପରକୁ, ଉଠାଣି ପର୍ଯ୍ୟନ୍ତ ସମତଳ ରାସ୍ତା ଭଳି ହୋଇଥାଏ ।

ପାନ୍‌କ୍ରାଟୋଭ୍‌ଙ୍କ ଗଡ଼ାଳୀଙ୍କର ପହିଲା ନମ୍ବର ଦଳ ଏଇ ବିଭାଗରେ କାମ କରୁଥାଆନ୍ତି । ଘରିଶ ଜଣ ଲୋକ ରାସ୍ତାରେ ପହି ପକାଉଥାଆନ୍ତି । ନୂଆ ଜୋତା ପିନ୍ଧିଥିବା, ନାଲି ଦାଢ଼ିଆ ଜଣେ କୃଷକ ରାସ୍ତା ଉପରେ କାଠଗଡ଼ ଓହ୍ଲାଉଥାଏ । ଆଉ ଟିକେ ଦୂରକୁ, ଆଉ କେତେ ଗାଡ଼ି କାଠ ଓହ୍ଲାଯାଉଥାଏ । ଲମ୍ବା ହୋଇ ଦୁଇଟା ଲୁହା ଦଣ୍ଡା ଭୂଇଁ ଉପରେ ପଡ଼ିଥାଏ । ଏ ଦୁଇଟା ଦରକାର ହୁଏ ସ୍ଲିପରଗୁଡ଼ାକ ସମତୁଲ କରିଦେବା ପାଇଁ । କୁରାଢ଼ୀ, ଗଇଁତି, କୋଦାଳ, ସାବଳ ସବୁ କାମରେ ଲାଗିଥାଏ ମାଟି ଖୋଳିତାଡ଼ି, ସମାନ କରି ସ୍ଲିପର ପାଇଁ ଗାତ ଖୋଳିବାକୁ ।

ରେଳ ପହି ପକାଇବା କଷ୍ଟକର ଓ ଧୀରସୁସ୍ଥ କାମ । ପହିଗୁଡ଼ାକୁ ପୁଣି ଟାଣ କରି ଓ ସମତୁଲ କରି ମାଟିରେ ପୋତିବାକୁ ପଡ଼େ, ଫଳରେ ଲାଇନ୍ ଗଲାବେଳେ ପ୍ରତ୍ୟେକଟି ଉପରେ ସମାନ ଭାରା ରହିବ ।

ସମଗ୍ର ଦଳରେ କେବଳ ଜଣକୁ ହିଁ ସ୍ଲିପର ପକାଇବାର ବୈଷୟିକ ଜ୍ଞାନ ଜଣାଥିଲା । ସିଏ ହେଉଛି ଚାଲ୍ୟାର ବାପା ଲାଇନ୍‌ର ଫୋରମ୍ୟାନ୍ ଲାଗୁଟିନ୍ । ୫୪ ବର୍ଷ ବୟସର ମଣିଷ, ଗାଢ଼ କଳା ଦାଢ଼ିଟା ମଝିରେ ଭାଗ ହୋଇଯାଇଥାଏ, ମୁଣ୍ଡରେ ଗୋଟିଏ ହେଲେ ପାଚିଲା ବାଳ ନାହିଁ । ବୋୟାର୍କାରେ କାମ ଆରମ୍ଭ ହେଲା ଦିନଠାରୁ ସେ କାମରେ ଲାଗିଛି, ଏ ଯୁବକମାନଙ୍କ ସହିତ ସମସ୍ତ କଷ୍ଟ, ଦୁର୍ଯୋଗ, ଅସୁବିଧା ସହ୍ୟ କରି । ସମସ୍ତଙ୍କର ତା' ପ୍ରତି ଗଭୀର ଓ ଅକୁଣ୍ଠ ସମ୍ମାନ ଓ ଶ୍ରଦ୍ଧା । ସେ ପାର୍ଟି ସଦସ୍ୟ ନହେଲେ ମଧ୍ୟ ସମସ୍ତ ପାର୍ଟି ସମ୍ମିଳନୀରେ ତା ପ୍ରତି ସାଧାରଣତଃ ସମ୍ମାନ ପ୍ରକାଶ ପାଇଥାଏ । ସେଥି ପାଇଁ ସେ ଗର୍ବବୋଧ କରେ ।

"ତମେ ସବୁ ଛାଏଁଛାଏଁ କରିଯିବା ପାଇଁ କେମିତି ଛାଡ଼ିଯିବି ମୁଁ ? ଜଣେ ଅଭିଜ୍ଞ ଲୋକ ନ ରହିଲେ, ନିଶ୍ଚେ କୋଉଠି କଣ ବିଗିଡ଼ିଯିବ କାମରେ । ଆଉ ମୁଁ ତ ଏଇ ଧାରଣାଗୁଡ଼ାକ ହାତୁଡ଼ିରେ ପିଟିପିଟି ମୋର ସାରା ଜୀବନ ବିତାଇଛି", ବଦଳ ଦଳତ ପ୍ରଶ୍ନ ଉଠିଲେ, ହସିହସି ସେ କହେ । ସେଇଥି ପାଇଁ ସେ ରହିଯାଇଛି ଆରମ୍ଭରୁ ।

ପାଟୋଶ୍‌କିନ୍ ଦେଖିଛି ଯେ, ଲାଗୁଟିନ୍ ତା' କାମ ଜାଣେ ଏବଂ ତା' ବିଭାଗକୁ ଖୁବ୍ କମ୍ ତନଖି କରିବାକୁ ଆସେ । ଟୋକାରେଭ୍ ସହିତ ଆକିମ୍ ଓ ଝୁଖ୍‌ରାଇ କାମ ଉପରକୁ ଆସିଲାବେଳକୁ, ପାନ୍‌କ୍ରାଟୋଭ୍ ଶ୍ରାନ୍ତ କ୍ଲାନ୍ତ ହୋଇ ଧଇଁସଇଁ ହୋଇଯାଇ ସ୍ଲିପର ପାଇଁ ଗୋଟାଏ ଗାତ ଖୋଳୁଛି ।

ଆକିମ୍ ପାନ୍‌କ୍ରାତୋଭ୍‌କୁ ପ୍ରାୟ ଚିହ୍ନିପାରିଲା ନାହିଁ । ତା' ଓଜନ ଏଥିମଧ୍ୟରେ ଅନେକ କମିଯାଇଛି । ହନୁହାଡ଼ ବାହାରି ପଡ଼ିଲାଣି, ଦୁଃଖପୂର୍ଣ୍ଣ ଶୁଖିଲା ମୁହଁରେ ଗାଲ ଦୁଇଟି ଯୋଗୁଁ ମୁହଁ ପଶି ଯାଇଛି ।

"ଆଚ୍ଛା ଆଚ୍ଛା ... ତା'ହେଲେ ଏଥର ବଡ଼ ସାହେବମାନେ ଆସିଯାଇଛନ୍ତି !" କହି ଆକିମ୍ ସହିତ ଉଷ୍ଣ କରମର୍ଦ୍ଦନ କଲା ସେ ହସିହସି ।

କୋଡ଼ିକୋଦାଳର କ୍ଷଣତ୍କାର ନୀରବ ହୋଇଗଲା । ନିଜ ଚତୁଃପାର୍ଶ୍ୱରେ ଘେରିରହିଥିବା ଦୁର୍ବଳ ପାଣ୍ଡୁର ମୁହଁଗୁଡ଼ାକ ଉପରେ ଆଖି ବୁଲାଇଆଣିଲା ଆକିମ୍ । ସେମାନଙ୍କର କୋଟ୍ ଓ ଜ୍ୟାକେଟ୍‌ଗୁଡ଼ାକ ବରଫ ଉପରେ ଗଦା ହୋଇ ଥୁଆ ହୋଇଛି ।

ଲଗୁଡିନ୍ ସହିତ ଅଳ୍ପ ସମୟ କଥାବାର୍ତ୍ତା ପରେ ତୋକାରେଭ୍ ସେମାନଙ୍କୁ ନେଇଗଲା ମାଟି ଖୋଳା ହେଉଥିବା ସ୍ଥାନକୁ । ସାଙ୍ଗରେ ପାନ୍‌କ୍ରାତୋଭ୍‌କୁ ମଧ୍ୟ ଡାକିନେଲା । ଝୁଖ୍‌ରାଇ କଡ଼େ କଡ଼େ ଚାଲିଥାଏ ପାନ୍‌କ୍ରାତୋଭ୍ ।

"ଆଚ୍ଛା ପାନ୍‌କ୍ରାତୋଭ୍, ମୋଟୋରିଲୋଭ୍‌କାରେ କ'ଣ କ'ଣ ସବୁ ଘଟିଲା, ମୋତେ କହିଲ ଦେଖି ! ତମେ କ'ଣ ଭାବୁନ ଯେ, ସେଠାର ବିଭାଗୀୟ ଲୋକ ହାତରୁ ଅସ୍ତ୍ରଶସ୍ତ୍ର ଛଡ଼ାଇନେବା ତମ ପକ୍ଷରେ ଟିକେ ଅଧିକ ହୋଇଯାଇ ନାହିଁ ?" ପାନ୍‌କ୍ରାତୋଭ୍‌କୁ ଦୃଢ଼ଭାବରେ ପଚାରିଲା ଝୁଖ୍‌ରାଇ ।

ପାନ୍‌କ୍ରାତୋଭ୍ ଦାନ୍ତ ନିକୁଟାଇ ହସିଦେଲା ।

"ସେଠାରେ ଯାହା ଯାହା ଘଟିଛି, ସବୁ ପରସ୍ପର ବୁଝାମଣାରେ ଘଟିଛି", ବୁଝାଇଲା ସେ । "ସିଏ ଆମକୁ କହିଲା, ତା'ଠାରୁ ଅସ୍ତ୍ର ନେଇଯିବା ପାଇଁ । ଭାରୀ ଭଲ ଯୁବକଟିଏ ସେ । ତାକୁ ସବୁକଥା ବୁଝାଇଦେଲା ପରେ ସେ କହିଲା, 'ମୁଁ ତମ ଅସୁବିଧା କଥା ବୁଝିପାରୁଛି, ମାତ୍ର ଏ ଝରକା କବାଟ ତମକୁ ନେବାକୁ ଛାଡ଼ିଦେବା ମୋ ପକ୍ଷରେ ସମ୍ଭବ ନୁହଁ । ଆମକୁ କମ୍ରେଡ୍ ଢେର୍‌ଝିନ୍‌ସ୍କି ଆଦେଶ ଦେଇଛନ୍ତି, ରେଳବାଇ ଜିନିଷପତ୍ର ଲୁଟି ହୋଇଯିବାକୁ ପ୍ରତିରୋଧ କର । ଏଠାର ଷ୍ଟେସନ୍ ମାଷ୍ଟରଙ୍କର ମୋ ଉପରେ ଆଖି ଅଛି, କାରଣ ସେ ଜିନିଷପତ୍ର ଚୋରୀ କରୁଛି ଓ ମୁଁ ବାଧା ଦେଉଛି, ମୁଁ ତମକୁ ଛାଡ଼ିଦେବା କଥା ଜାଣିଲେ ସିଏ ମୋ ବିରୁଦ୍ଧରେ ଅଭିଯୋଗ କରିବ, ଆଉ ନିଶ୍ଚୟ ବିପ୍ଲବୀ ଅଦାଲତରେ ମୋର ବିଚାର ହେବ । ମାତ୍ର ତମେ ମୋତେ ନିରସ୍ତ୍ର କରି ନେଇ ପଳାଅ । ଷ୍ଟେସନ୍ ମାଷ୍ଟର ରିପୋର୍ଟ୍ ନକଲେ ତ ଭଲ ।' ଏଇଆ ହିଁ ଆମେ କରିଛୁ । ଆଉ ସେ କବାଟ ଝରକା ଆମେ ତ ଆମ ପାଇଁ ଆଣୁ ନଥିଲୁ । ଆଣୁଥିଲୁ କି ?"

ଝୁଖ୍‌ରାଇର ଆଖିର ଇସାରା ବୁଝିପାରି ସେ କହିଚାଲିଲା, "ଏଥି ପାଇଁ ତମେ ଇଚ୍ଛା କଲେ, ଆମକୁ ଦଣ୍ଡ ଦେଇପାର । ମାତ୍ର ସେ ତରୁଣଟି ପ୍ରତି କୌଣସି ଶାସ୍ତି ବିଧାନ କର ନାହିଁ, କମ୍ରେଡ୍ ଝୁଖ୍‌ରାଇ ।"

"ଦେଖ, ଯାହା ହେବାର ହୋଇଗଲାଣି, ଏଣିକି ଭବିଷ୍ୟତରେ ଆଉ ଯେମିତି ସେପରି

ନହୁଏ । ଆଉ କିଛି ହେଉ ନହେଉ , ଏସବୁ ଶୃଙ୍ଖଳାର ବିରୋଧୀ । ସଂଗଠିତ ଉପାୟରେ ନାଇଫିତାର କାରବାର ଓ ଅମଳଚବନ୍ଦ୍କୁ ଧ୍ୱଂସ କରାଯିବ , ସେଥିପାଇଁ ଆମେ ଦୃଢ଼ବଦ୍ଧ । ଛାଡ଼ , ଏବେ ଆମକୁ ଆହୁରି ଗୁରୁତ୍ୱପୂର୍ଣ୍ଣ କେତେକ କଥାବାର୍ତ୍ତା ହେବାକୁ ପଡ଼ିବ । ” ତା'ପରେ ଫ୍ୟୋଦୋର୍ ଡକାଏତମାନଙ୍କ ଆକ୍ରମଣ ବିଷୟରେ ପୁଙ୍ଖାନୁପୁଙ୍ଖ ଭାବରେ ପଗ୍ଚରିବାକୁ ଲଗିଲ ।

ବୋୟାର୍କା ଷ୍ଟେସନ୍‌ଠାରୁ ସାଢ଼େଗ୍ଚରି କିଲୋମିଟର ଦୂରରେ ଦଳେ ଲୋକ ଅଣନିଃଶ୍ୱାସୀ ହୋଇ ଉଚ୍ଚା ଜାଗାରୁ ମାଟି ଖୋଳି ଗ୍ଚଲିଥିଲେ ।

ସାତଜଣ ପହରା ଦେଉଥିଲେ , ଖୋଲ୍ୟାଭାର ବନ୍ଧୁକ , କୋର୍ଗ୍‌ଗିନ୍ , ପାନ୍‌କ୍ରାତୋଭ୍ , ଦୁବାଭା ଓ ଖୋମୁତୋଭ୍ ସେମାନଙ୍କ ଦଳର ଥିବା ସମସ୍ତ ଅସ୍ତ୍ରଶସ୍ତ୍ର ଧରି ।

ପାତୋଶ୍‌କିନ୍ ସେ ଉଚ୍ଚା ଜାଗାଟାର ଠିକ୍ ମଥାନ ଉପରେ ବସି କ'ଣ ଟିପୁଥିଲ ସବୁ । ସମଗ୍ର କାମରେ ସେ ଏକମାତ୍ର ଇଞ୍ଜିନିୟର । ଭାକୁଲେଙ୍କୋ ଏକମାତ୍ର ଟେକ୍‌ନିସିଆନ୍ । ସେ ସବାଙ୍କୁ ପଳାଇଛି । କାରଣ ତା' ବିଗ୍ଚରରେ , ବିପ୍ଳବୀ ଦରବାରରେ ବିଗ୍ଚର ହୋଇ ମରିବା ବରଂ ଭଲ , ମାତ୍ର ଏମିତି ଡକାଏତଙ୍କ ହାତରେ ମରିବାର କୌଣସି ଅର୍ଥ ହୁଏ ନାଁ ।

"ରାସ୍ତା ଉପରୁ ଏ ଛୋଟ ପାହାଡ଼କୁ ହଟାଇବା ପାଇଁ ଦୁଇ ସପ୍ତାହ ସମୟ ଲଗିବ । ମାଟିଟା ବରଫ ଜମି ଟାଣ ହୋଇଯାଇଛି", ପାତୋଶ୍‌କିନ୍ ନିକଟରେ ଛିଡ଼ା ହୋଇଥିବା ବିକ୍ଷଣ୍ଣ ଖୋମୁତୋଭ୍‌କୁ ଅନୁଚ୍ଚ ସ୍ୱରରେ କହିଲ ।

"ଏ ସାରା ଲଇନ୍ ପଚିଶ ଦିନ ଭିତରେ ପଡ଼ିବ ବୋଲି ଆମେ ଧାର୍ଯ୍ୟ କରିଛୁ । ତମେ ଏଇ କାମଟା ପାଇଁ ପନ୍ଦର ଦିନ ଲଗିବ ବୋଲି କହୁଛ", ନିଜ ମୁଞ୍ଚର ଗୋଟାଏ ଅଂଶ ଗ୍ଚଟିନେଇ କହିଲ ଖୋମୁତୋଭ୍ ।

"ମୋର ଆଶଙ୍କା ହେଉଛି , ହୋଇପାରିବ ନାହିଁ ବୋଲି । ଅବଶ୍ୟ ଆଗରୁ ଏମିତି ଅବସ୍ଥାରେ ଓ ଏଭଳି ଶ୍ରମିକ ନେଇ ମୁଁ କେବେ କିଛି କରି ନଥିଲି । ମୋର ଭ୍ରମ ହୋଇପାରେ । ସତ କହିଲେ , ଯା' ପୂର୍ବରୁ ଏଇ ସଂପର୍କରେ ମୁଁ ଦୁଇଥର ହୁଡ଼ିଲିଣି । ଭୁଲ ବିଗ୍ଚର କଲିଣି ।"

ଠିକ୍ ଏତିକିବେଳେ ଝୁଖ୍‌ରାଇ , ଆକିମ୍ ଓ ପାନ୍‌କ୍ରାତୋଭ୍ ଗଡ଼ାଣୀ ତଳୁ ଦିଶିଲେ ।

"ହେଇ ଦେଖ , ଦେଖ ତଳକୁ । କିଏ ସେଠି ଆସୁଛି ?" ରେଇବାଇ କାରଖାନାର ମେକାନିକ୍ ତ୍ରୋଫିମୋଭ୍ ପାଟି କରି କହିଲ । ପିନ୍ଧିଛି ସେ ଗୋଟାଏ ଛିଣ୍ଡା ସ୍ୱେଟର — କହୁଣୀ ପାଖରୁ ପୂରାପୂରି ଚିରିଯାଇଛି । କୋର୍ଗ୍‌ଗିନ୍‌କୁ ଢଲଇଦେଇ , ଆଙ୍ଗୁଳି ନିର୍ଦ୍ଦେଶ କରି ସେ ଦେଖାଇଦେଲ ନବାଗତମାନଙ୍କୁ । ପରମୁହୂର୍ତ୍ତରେ ହାତରେ କୋଡ଼ିଟା ସେମିତି ଧରି କୋର୍ଗ୍‌ଗିନ୍ ଦଉଡ଼ିଗଲ ତଳକୁ । ଶିରସ୍ତ୍ରାଣ ତଳେ ତା' ଆଖି ଟେକି ଫ୍ୟୋଦୋର୍‌କୁ ଦେଖିଲ ସେ ହସିହସି । ଅନେକ ସମୟ ଯାଏ ହାତ ମିଳାଇଲେ ସେ ପରସ୍ପର ସହିତ ।

"ଆରେ ପାଭେଲ୍ ! ତୋତେ ଏ ଛିଣ୍ଡା ଜାମାପଟାରେ ତ ଜମା ଚିହ୍ନି ହେଉ ନାହିଁ ।"

"ଛିଣ୍ଡିଛି କ'ଣ ? ପବନ ପଶିବାକୁ ସବୁ ଜଳାକବାଟ ହୋଇଛି ନା ଁ ଜାମାରେ ?" ପାନ୍‌କ୍ରାଟୋଭ୍ କହିଲ । "ପଳାତକମାନେ ତା' ଓଭରକୋଟ୍‌ଟି ନେଇଯାଇଛନ୍ତି । ଓକୁନେଭ୍ ଏଇ ଜ୍ୟାକେଟ୍‌ଟି ତାକୁ ଦେଇଛି । ତାଙ୍କର ଗୋଟାଏ କମ୍ୟୁନ୍ ଅଛି ... ତମେ ଜାଣିଛ ବୋଧହୁଏ । ପାଭେଲ୍ କିନ୍ତୁ ଠିକ୍ ଅଛି । ତା' ଶିରାରେ ବେଶ୍ ଗରମ ଲହୁ ଅଛି । ଏ ସିମେଣ୍ଟ ଚଟାଣ ଉପରେ ଆଉ ସପ୍ତାହେ ଦୁଇ ସପ୍ତାହ ପର୍ଯ୍ୟନ୍ତ ସେ ବେଶ୍ ଗରମରେ କଟାଇଦେବ, ତା'ପରେ ସୁନ୍ଦର ପାଇନ୍‌କାଠର କଫିନ୍ ତା' ପାଇଁ ଦରକାର ହେବ", କରୁଣତାମିଶା ବ୍ୟଙ୍ଗରେ ଶେଷ କଲ ପାନ୍‌କ୍ରାଟୋଭ୍ ।

ଚେପ୍‌ଟା ନାକା, କଳା କଳା ଭ୍ରୂସଂପନ୍ନ ଓକୁନେଭ୍ ପ୍ରତିବାଦ କଲ, "ତମେ କିଛି ବ୍ୟସ୍ତ ହୁଅ ନାହିଁ । ପାଭେଲ୍ କଥା ଆମେ ବୁଝିବୁ । ତା' ପାଇଁ ଆମେ ରୋଷେଇଘରେ ଗୋଟାଏ କିଛି କାମ ପାଇଁ ପ୍ରସ୍ତାବ ଦେବୁ ଓଦାର୍‌କାକୁ ସାହାଯ୍ୟ କରିବାକୁ । ବୋକା ନ ହୋଇଥିଲେ, ଓଦାର୍‌କାକୁ ମନେଇ ନେଇ ଅଳ୍ପ ଦିନ ଭିତରେ, ବେଶ୍ ମୋଟାସୋଟା ହୋଇଯିବ ଅଧିକା ଖାଦ୍ୟ ଟିକେ ଟିକେ ବାଗେଇନେଇ । ଚୁଲି ପାଖରେ ଉଷୁମ ପାଇବ, ନହେଲେ ଓଦାର୍‌କା ପାଖରେ ବି ବେଶ୍ ଉଷୁମ ପାଇବ ।"

ସମସ୍ତେ ହୋ ହୋ ହୋଇ ହସିଉଠିଲେ ଏତେ ଦୁଃଖ ସତ୍ତ୍ୱେ ମଧ୍ୟ ।

ସେଦିନ ଏଇ ପ୍ରଥମ ଥର ପାଇଁ ହସିଲେ ସେମାନେ ।

* * *

ଫେ୍ୟାଦୋର୍ ଉଠାଣି ଜାଗାଟା ଦେଖିସାରି ତୋକାରେଭ୍ ଓ ପାଟୋଶ୍‌କିନ୍‌ଙ୍କୁ ସାଙ୍ଗରେ ନେଇ, କାଠଗଡ଼ କଟାହୋଇ ପଡ଼ିଥିବା ସ୍ଥାନକୁ ଆଗେଇଗଲ ସ୍ଲେଜ୍‌ଗାଡ଼ିରେ । ସେମାନେ ଫେରିଲବେଳକୁ ମଧ୍ୟ ପ୍ରାଣାନ୍ତକ ଉଦ୍ୟମରେ ଲୋକମାନେ ପାହାଡ଼ଟାକୁ ଖୋଳି ଚାଲିଛନ୍ତି । ସେମାନଙ୍କର କୋଡ଼ିକୋଦାଳ ଇତ୍ୟାଦି ଟାଣୁଆ ଉଠାପଡ଼ା ଲକ୍ଷ୍ୟ କଲ ଫେ୍ୟାଦୋର୍ । ଲକ୍ଷ୍ୟ କଲ କିପରି ଦାରୁଣ ପରିଶ୍ରମ ଭିତରେ ସେମାନଙ୍କର ମେରୁଦଣ୍ଡ ବଙ୍କେଇଯାଇଛି । ଆକିମ୍ ଆଡ଼କୁ ବୁଲିପଡ଼ି ଅନୁଚ୍ଚ ସ୍ୱରରେ କହିଲ ସେ :

"ଦେଖ, ସଭାସମିତି କରିବା ଆବଶ୍ୟକ ନାହିଁ । ଏମାନଙ୍କ ଭିତରେ ଆଉ କୌଣସି ଉତ୍ତେଜନା ଲୋଡ଼ା କ'ଣ ? ତୋକାରେଭ୍‌ର କଥା ସତ—ଏମାନଙ୍କୁ ସୁନା ସହିତ ତଉଲିଲେ ବି ସମାନ ଓଜନର ସୁନାର ମୂଲ୍ୟ ଊଣା ହୋଇଯିବ । ଏଇଠି ସତରେ ଇସ୍‌ପାତ ଗଢ଼ାଯାଉଛି !"

ଆଖିରେ ଉଚ୍ଛ୍ୱସିତ ପ୍ରଶଂସା ଓ ଶ୍ରଦ୍ଧା ନେଇ ଝୁଖିରାଇ ଚାହିଁଲ ଖୋଳାଳୀମାନଙ୍କୁ । ମନରେ ତା'ର ଅଜଣା ଗର୍ବବୋଧର ପୁଲକ । ସେମାନଙ୍କ ମଧ୍ୟରୁ କେଇଜଣ, ଅଳ୍ପ କେତେଦିନ ତଳେ, ତା' ଆଗରେ ବନ୍ଧୁକ ଓ ବାୟୋନେଟ୍‌ର ଇସାରକୁ ଦେଖାଇ ଛିଡ଼ା

ହୋଇଥିଲେ । ଠିକ୍ ସହରରେ ଅଭ୍ୟୁତ୍‌ଥାନ ଘଟିବାର ପୂର୍ବ ରାତିରେ । ଏବଂ ବର୍ତ୍ତମାନ ଗୋଟିଏ ଅଦମ୍ୟ ଆଶା ଓ ଉଦ୍ଦୀପନା ମନରେ ଧରି ସେଇମାନେ ମାଟି ଖୋଳି ଗ୍ଲଲିଛନ୍ତି, ରେଳବାଇର ଲୁହାର ଶିରାପ୍ରଶିରା ପକାଇ ଗ୍ଲଲିଛନ୍ତି, ଯାହା ମଧ୍ୟ ଦେଇ ଗତି କରିବ ଜନସାଧାରଣଙ୍କ ପାଇଁ ଜୀବନର ଉତ୍ତାପ ।

* * *

ବିନମ୍ର ଅଥଚ ଦୃଢ଼ଭାବରେ ପାଚୋଶ୍‌କିନ୍ ଫ୍ୟୋଦୋର୍‌କୁ ଜଣାଇଲେ ଯେ, ଏ ଉଚ୍ଚା ଜାଗାଟାକୁ ଖୋଳି ସମତୁଲ କରିବା କିପରି ଅସମ୍ଭବ ବ୍ୟାପାର ଏଇ ପନ୍ଦର ଦିନ ମଧ୍ୟରେ । ମନରେ ଆଉ କ'ଣ ସବୁ ଭାବୁ ଭାବୁ ଫ୍ୟୋଦୋର୍ ତା'କଥା ଶୁଣୁଥିଲା । ତା' ମନ ନିଜସ୍ୱ କୌଣସି ସମସ୍ୟାରେ ନିମଗ୍ନ ଥିଲା ।

"ଏ ଉଠାଣିଟା ଉପର ସବୁ କାମ ବନ୍ଦ କରିଦିଅ । ଯା' ଆଗକୁ ଲାଇନ୍ ପକେଇଗ୍ଲଲ । ଏ ପାହାଡ଼ଟାକୁ ଅନ୍ୟ କୌଣସି ପନ୍ଥା ନେଇ ଆମେ ଶେଷ କରିବୁ ।"

ଷ୍ଟେସନ୍‌କୁ ଆସି ଅନେକ ସମୟ ସେ ବିତାଇଲା ଟେଲିଫୋନ୍ କରି । ବାହାରେ ଜଗିରହିଥିବା ଖୋଲ୍ୟାଭା ଫ୍ୟୋଦୋର୍‌ର କଣ୍ଠସ୍ୱର ଶୁଣୁଥାଏ :

"ସେନାବାହିନୀ ଅଞ୍ଚଳର ମୁଖ୍ୟଙ୍କୁ ଶୀଘ୍ର ଟେଲିଫୋନ୍ କରି ଜଣାଅ, ମୋ ନାଁ କହି, ପୁଜିରେଭ୍‌ସ୍କିଙ୍କ ବାହିନୀକୁ ରେଳବାଇ କାମକୁ ବଦଳି କରିବା ପାଇଁ । ଆଉ କାଳ ବିଳମ୍ବ ନକରି ତକାଏତମାନଙ୍କୁ ଏ ଅଞ୍ଚଳରୁ ଚଡ଼ିବାକୁ ପଡ଼ିବ । ଅସ୍ତ୍ରଶସ୍ତ୍ର ସହ ବିସ୍ଫୋରଣ ଘଟାଇବା ଲୋକଙ୍କୁ ଶୀଘ୍ର ଏଠାକୁ ପଠାଅ । ବାକି ସବୁର ଦାୟିତ୍ୱ ମୋର । ମୁଁ ଟିକିଏ ବିଳମ୍ବରେ ଫେରିବି । ଲିଚ୍‌କେକୁ କହିବ, ଅଧରାତି ବେଳକୁ କାର୍ ନେଇ ଷ୍ଟେସନ୍‌ରେ ଅପେକ୍ଷା କରିବା ପାଇଁ ।"

ସେମାନଙ୍କ ଛାଉଣୀରେ ଆକିମ୍ ଏକ ସଂକ୍ଷିପ୍ତ ବକ୍ତୃତା ଦେଇସାରିଲା ପରେ ଝୁଖ୍‌ରାଇ ଭାଷଣ ଦେବା ପାଇଁ ଉଠି ଛିଡ଼ାହେଲା । କମ୍ରେଡ୍‌ମାନଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ଆଲୋଚନାରେ ପ୍ରାୟ ଘଣ୍ଟାଏ ବିତିଗଲା । ଫ୍ୟୋଦୋର୍ ତାଙ୍କୁ ଜଣାଇଲା ଯେ, କାମ ଶେଷ କରିବା ତାରିଖକୁ ଜାନୁଆରୀ ପହିଲାରୁ ସେଆଡ଼କୁ, ଆଉ ଘୁଞ୍ଚାଇନେବାର କୌଣସି ପ୍ରଶ୍ନଉଠେ ନାଁ ।

"ବର୍ତ୍ତମାନଠାରୁ ବାକି କାମକୁ ଆମକୁ ସେନାବାହିନୀର ତତ୍ପରତା ସହିତ କରିବାକୁ ପଡ଼ିବ । ପାର୍ଟି ସଭ୍ୟମାନେ ଏକ ବିଶେଷ ସେନା ଦଳରେ ପରିଣତ ହେବେ କମ୍ରେଡ୍ ଦୁବାଭାଙ୍କ ଅଧିନାୟକତ୍ୱରେ । ଛଅଟି ଦଳଙ୍କୁ ବିଶେଷ ବିଶେଷ କାମର ଦାୟିତ୍ୱ ଭାଗ କରି ଦିଆଯିବ । ବାକି କାମତକ ସମାନ ଛଅ ଭାଗରେ ମଧ୍ୟ ବିଭକ୍ତ କରାଯିବ, ପ୍ରତ୍ୟେକଙ୍କ ପାଇଁ ଗୋଟିଏ ଗୋଟିଏ କରି । ଜାନୁଆରୀ ପହିଲା ସୁଦ୍ଧା କାମ ଶେଷ କରିବାକୁ ହେବ । ଯେଉଁ ଦଳ ଆଗ କାମ ଶେଷ କରିବେ, ତାଙ୍କୁ ସହରକୁ ଫେରିଯିବାର ଅନୁମତି ମିଳିବ । ଆଉ ମଧ୍ୟ ଆଞ୍ଚଳିକ କାର୍ଯ୍ୟକାରୀ ସମିତିର ସଭାପତିମଣ୍ଡଳୀ ସର୍ବଶ୍ରେଷ୍ଠ ଶ୍ରମିକକୁ

'ଲାଲ ପତାକା ସମ୍ମାନ'ରେ ଭୂଷିତ କରିବା ପାଇଁ ସରକାରଙ୍କୁ ସୁପାରିସ କରିବେ ।"

ନିମ୍ନଲିଖିତ ଭାବରେ ବିଭିନ୍ନ ଦଳର ଦଳପତି ନିଯୁକ୍ତ ହେଲେ । ପ୍ରଥମ ଦଳର ଦଳପତି କମ୍ରେଡ୍ ପାନ୍‌କ୍ରାତୋଭ୍, ଦୁଇ ନମ୍ବର ଦଳର – କମ୍ରେଡ୍ ଦୁବାଭା, ତିନି ନମ୍ବରର – କମ୍ରେଡ୍ ଖୋମୁତୋଭ୍, ଚାରି ନମ୍ବର ଦଳପତି କମ୍ରେଡ୍ ଲାଗୁତିନ୍, ପାଞ୍ଚ ନମ୍ବର ଦଳର ଦଳପତି କମ୍ରେଡ୍ କୋର୍ଚ୍ଚାଗିନ୍, ଛଅ ନମ୍ବରର – କମ୍ରେଡ୍ ଓକୁନେଭ୍ ।

"ସମସ୍ତ ଦଳର ଶାସନତାନ୍ତ୍ରିକ ଓ ରାଜନୈତିକ ମୁଖ୍ୟ ହେଲେ ପୂର୍ବର ଅଧିନାୟକ କମ୍ରେଡ୍ ଆଣ୍ଟୋନ୍ ନିକିଫୋରୋଭିଚ୍ ତୋକାରେଭ୍", ଝୁଖ୍‌ରାଇ ଶେଷ କଥାଟାକୁ ବକ୍ତୃତା ଭଙ୍ଗୀରେ ଲମ୍ବେଇ କହି ଭାଷଣ ଶେଷ କଲା ।

ପକ୍ଷୀଦଳ ହଠାତ୍ ଡେଣା ଫଡ଼ ଫଡ଼ କରି ଝାଡ଼ିଉଠିଲା ଭଳି ଘରଟା ସାରା କରତାଳିରେ ପୂର୍ଣ୍ଣ ହୋଇଗଲା ଏବଂ ସେମାନଙ୍କ କଠିନ, ପାଣ୍ଡୁର ମୁଖମଣ୍ଡଳ ସବୁ ହସରେ ପ୍ରାଣପ୍ରାଚୁର୍ଯ୍ୟରେ ଭରପୂର ହୋଇଉଠିଲା ।

ଆକିମ୍ ଓ ଫ୍ୟୋଦୋର୍‌କୁ ବାଟେଇ ଦେଇ ଆସିବାକୁ କୋଡ଼ିଏ ଜଣ ସରିକି ବାହାରିଲେ ଷ୍ଟେସନ୍‌କୁ ।

ଗଲାବେଳକୁ କୋର୍ଚ୍ଚାଗିନ୍ ସହିତ ହାତ ମିଳାଇଲାବେଳେ ଫ୍ୟୋଦୋର୍‌ର ଆଖି ପଡ଼ିଲା ତା'ର ବରଫାଚ୍ଛାଦିତ ରବର ଜୋତାପିନ୍ଧା ପାଦଯୋଡ଼ିକ ଉପରେ ।

"ତୋ ପାଇଁ ହଳେ ବୁଟ୍ ମୁଁ ପଠାଇଦେବି । ଗୋଡ଼ ଏଯାଏଁ ବରଫ ପାଲଟି ଯାଇ ନାହିଁ ତ ?" ନିମ୍ନସ୍ୱରରେ କହିଲା ସେ ପାଭେଲ୍‌କୁ ।

"ଟିକେ ଫୁଲିଯାଇଛି", ପାଭେଲ୍ ଉତ୍ତର ଦେଲା । ତା'ପରେ ଅତୀତରେ ସେ ଝୁଖ୍‌ରାଇକୁ ମାଗିଥିବା ଗୋଟାଏ କଥା ମନେପକାଇ, ଫ୍ୟୋଦୋର୍‌ର ବାହା ଝିଙ୍କି ଧରି ଆବଦାର ସ୍ୱରରେ କହିଲା :

"ମୋ ରିଭଲଭର ପାଇଁ କେଇଟା କାର୍ଟ୍ରିଜ୍ ଦେଇପାରିବ ତମେ ? ମୋ ପାଖରେ ମୋଟେ ତିନୋଟି ଭଲ କାର୍ଟ୍ରିଜ୍ ଅଛି ।"

ଦୁଃଖରେ ଝୁଖ୍‌ରାଇ ମନାକରି ମୁଣ୍ଡ ହଲାଇଲା, ମାତ୍ର ପାଭେଲ୍‌ର ହତାଶ ମୁହଁକୁ ଚାହିଁ ସେ ଧୀରେ ଧୀରେ ନିଜର ମାଉଜରର ବେଲ୍‌ଟ ଫିଟାଇଲା ଅଣ୍ଟାରୁ ।

"ନେ, ଏଇଟା ତୋତେ ଉପହାର !" ପାଭେଲ୍ ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ ଯେ, ଏତେଦିନ ଧରି ଚାହିଁଆସିଥିବା ଜିନିଷଟା ସେ ଆଜି ପାଉଛି ବୋଲି । କିନ୍ତୁ ଝୁଖ୍‌ରାଇ ତା' କାନ୍ଧରେ ବେଲ୍‌ଟଟା ଝୁଲାଇଦେଇ କହିଲା, "ଆରେ ନେ, ମୁଁ ଜାଣେ ବହୁତ ଦିନ ହେଲା, ତୁ ଏଇଟା ଉପରେ ଆଖି ରଖିଥିଲୁ । ସାବଧାନ ! ଏଥିରେ ଯେମିତି ଆଉ ନିଜ ଲୋକଙ୍କୁ ଗୁଳି କରି ନଦେଉ । ନେ, ଏଥିରେ ତିନିଟା ପୂରା ବେଲ୍‌ଟ ଗୁଳି ଅଛି ।"

ତା'ଉପରେ ପଡ଼ିଥିବା ଅନ୍ୟମାନଙ୍କର ଈର୍ଷାତୁର ଆଖିଗୁଡ଼ାକୁ ଅନୁଭବ କଲା ପାଭେଲ୍ ।

"ହେ ପାଉ୍କା !" କିଏ ଜଣେ କହିଉଠିଲା, "ମୋତେ ସେଇଟା ଦେଇଦେ ରେ, ମୁଁ ତୋତେ ହଳେ ବୁଟ୍ ଆଉ ଗୋଟାଏ ମେଣ୍ଢା ଚମଡ଼ାର ଓଭରକୋଟ ଦେବି ।"

ପାଉେଲ୍ ପିଠିରେ ଟିହାଇଲା ଭଳି କେଞ୍ଚିଦେଇ ପାନ୍କ୍ରାଟୋଭ୍ କହିଲା, "ଆ, ମୁଁ ତୋତେ ଏଥି ପାଇଁ ବଢ଼ିଆ ହଳେ ବୁଟ୍‌କୋଟା ଦେବି । ତୋର ସେଥିରେ ଲାଭ ହେବ । ତା'ଛଡ଼ା ଏଇଟା କ'ଣ ତୋ କାମରେ ଆସିବ ? ସେ ରବର ଜୋତାରେ ତ ତୁ ଆସନ୍ତା ଖ୍ରୀଷ୍ଟମାସ ଆଗରୁ ମରି ଯାଇଥିବୁ ।"

ଟ୍ରଲି ଉପରେ ଗୋଟାଏ ଗୋଡ଼ ରଖି, ସେମିତି ଠିଆରେ ଠିଆରେ ମାଉଜର ବ୍ୟବହାର ପାଇଁ ଗୋଟାଏ ଅନୁମତିପତ୍ର ଲେଖିଦେଲା ଝୁଖ୍‌ରାଇ ।

* * *

ତା' ଆରଦିନ ସକାଳୁ ସୁଇଚ୍ ସବୁକୁ ଖଡ଼ ଖଡ଼ କରି, ଗୋଟାଏ ସାନ୍ତୁଆ ରେଳଗାଡ଼ି ଷ୍ଟେସନ୍‌ରେ ଅଟକିଲା । ଇଞ୍ଜିନ୍‌ରୁ ଭସ୍‌ଭସ୍ ହୋଇ ବାହାରୁଥିବା ହଂସ ପର ପରି ଧଳା ଧୂଆଁଗୁଡ଼ାକ ଉପରକୁ ଉଠିଯାଇ ସ୍ଫଟିକସ୍ୱଚ୍ଛ କାକୁଆ ପବନରେ ମିଳେଇଗଲା । ଚମଡ଼ା ପୋଷାକ ପିନ୍ଧା ମଣିଷମାନେ ଲୁହାରେ ତିଆରି ରେଳଡବାମାନଙ୍କରୁ ଓହ୍ଲେଇପଡ଼ିଲେ । ତା'ର କେଇ ଘଣ୍ଟା ପରେ ରେଳରୁ ଆସିଥିବା ତିନିଜଣ ବିସ୍ଫୋରଣ ଘଟେଇବା ଲୋକ, ଲମ୍ବା ତାରଲଗା ଦିଇଟା ବଡ଼ ବଡ଼ ଲାଉ ଭଳି ଗୋଲ ଜିନିଷ ନେଇ ଲାଇନ୍‌ର ପଥରୁଦ୍ଧ କରୁଥିବା ଉଚ୍ଚା ପାହାଡ଼ ତଳେ ମାଟିରେ ପୋତିଲେ । ସେମାନେ ସାବଧାନ କରିଦେବାକୁ ଦି'ତିନି ଥର ଗୁଳି ଫୁଟାଇଲେ । ଲୋକମାନେ ଘୁରିଆଡ଼େ ଛିନ୍ନଛତ୍ର ହୋଇ ଦୂରେଇଗଲେ । ଫ୍ୟୁଜ ଶେଷଭାଗରେ ଗୋଟିଏ ଦିଆସିଲି କାଠି ଜଳାଇ ନିଆଁ ଲଗାଇଦେଲେ ସେମାନେ । ନିଆଁଟା ଫସ୍‌କରି ଜଳିଉଠିଲା ।

କିଛି ସମୟ ପାଇଁ ଦମ୍ ବନ୍ଦ କରି ସମସ୍ତେ ଅପେକ୍ଷା କଲେ । ମିନିଟିଏ କି ଦୁଇମିନିଟ୍ ଏହିଭଳି ଉଦ୍‌ବେଗରେ କଟିଗଲା । ତା'ପରେ ଭୂଇଁ କଂପିଉଠିଲା ଏବଂ ଏକ ଭୀଷଣ ଶବ୍ଦ କରି ପାହାଡ଼ଟା ଛିନ୍ନଛତ୍ର ହୋଇ ଧସେଇ ପଡ଼ିଲା । ଆକାଶକୁ ଗଦାଗଦା ମାଟି ଉଠିଯାଇ, ପଡ଼ିଲା ତଳକୁ । ଦ୍ୱିତୀୟ ବିସ୍ଫୋରଣଟା ପ୍ରଥମଠାରୁ ଆହୁରି ଭୟଙ୍କର ହେଲା । ତା'ର ପ୍ରଚଣ୍ଡ ଶବ୍ଦରେ ଆଖପାଖର ଜଙ୍ଗଲ ଚତୁର୍ଦ୍ଦିଗ ଥରିଉଠିଲା ।

ଧୂଆଁ ଓ ଧୂଳିର ଝଡ଼ ଥମିଗଲା ପରେ, ଯେଉଁଠାରେ ଉଚ୍ଚା ମୁଣ୍ଡିଆଟା ଛିଡ଼ା ହୋଇଥିଲା, ସେଠାରେ ଥିଲା ବିରାଟ ଗହ୍ୱରଟାଏ । ମାଟି ସହିତ ଚିନି ଭଳି ଧଳା ଧଳା ତୁଷାର ମଧ୍ୟ ଚତୁର୍ଦ୍ଦିଗରେ ବିଞ୍ଚି ହୋଇଯାଇଛି ।

ଗଇଁତି ଓ ସାବଳ ସବୁ ଧରି ସେଇ ଗହ୍ୱରଟା ପାଖକୁ ଦୌଡ଼ି ଆସିଲେ ଲୋକମାନେ ।

* * *

ଝୁଖ୍‌ରାଇ ଫେରିଗଲେ ପରେ, ବିଭକ୍ତ ହୋଇଯାଇଥିବା ଦଳମାନଙ୍କ ଭିତରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଚାଲିଲା କାମରେ, କିଏ ସର୍ବପ୍ରଥମ ଦଳ ରୂପେ ବିବେଚିତ ହେବ ବୋଲି। କିଏ ଆଗ କାମ ସାରିବ।

ଭୋର ହେବାର ଅନେକ ଆଗରୁ କୋର୍ଷ୍‌ଗିନ୍ ନିଦରୁ ଉଠେ ଓ ସାବଧାନ ରହେ, ଅନ୍ୟମାନେ ଯେପରି ନ ଉଠିଯାନ୍ତି। ତା'ପରେ ପାଦ ଚିପିଚିପି ରୋଷେଇଘରକୁ ଯାଏ ସେ। ସେଠି ଚା' କରିବା ପାଇଁ ପାଣି ଗରମ କରିନିଏ ଓ ତା'ପରେ ତା' ଦଳକୁ ଡାକିଡାକି ଉଠାଇଦିଏ।

ଅନ୍ୟମାନେ ସମସ୍ତେ ଉଠିଲାବେଳକୁ ଦିନ ହୋଇଯାଇଥାଏ।

ସେଦିନ ସକାଳୁ, ଗହଳି ହୋଇଯାଇଥିବା ରୋଷେଇଘର ଭିତରେ ଠେଲିପେଲି ପାନ୍‌କ୍ରାଟୋଭ୍ ଯାଇ ପହଞ୍ଚିଲା, ଦୁବାଭା ଓ ତା' ଦଳ ଜଳଖିଆ ଖାଉଥିବା ସ୍ଥାନରେ।

"ଶୁଣିଲୁଣି ମିତ୍ୟାୟ?" ସେ ଉତ୍ତେଜିତ ହୋଇ କହୁଥାଏ, "ପାଭ୍‌କା ରାତିଟାରୁ ତା' ଲୋକଙ୍କୁ ଉଠାଇନେଇଛି କାମକୁ। ଆରେ, ବର୍ତ୍ତମାନ ତ ସେମାନେ ପାଖାପାଖି କୋଡ଼ିଏ ଗଜ ସରିକି ଆଗେଇ ଯିବେଣି କାମରେ। ସମସ୍ତେ କହୁଛନ୍ତି, ସିଏ ତା' ରେଳବାଇ ମରାମତି କାରଖାନାର ଟୋକାଙ୍କୁ ନେଇ, ପଚିଶ ତାରିଖ ସୁଦ୍ଧା କାମ ସାରିଦେବ। ଆରେ, ଆମକୁ ସବୁ ତ ସେ ଫାଙ୍କା ହୁରୁଡ଼େଇଦେବ ଦେଖୁଛି। ମାତ୍ର ସେମିତି ହୋଇପାରିବ ନାହିଁ, କହିରଖୁଛି!" ବିରକ୍ତିର ସହିତ ସେ କହିଲା।

ଦୁବାଭା ଟିକେ ବକ୍ରହାସ୍ୟ କଲା। ସେ ବୁଝିପାରୁଥିଲା ନଦୀବନ୍ଦର କମ୍‌ସୋମୋଲ୍‌ର ମୁଖ୍ୟ, ରେଳବାଇ କାରଖାନା ଟୋକାଙ୍କର କାମ ଉପରେ କାହିଁକି ଚିଡ଼ୁଛନ୍ତି। ସତରେ କହିଲେ, ପାଭେଲ୍ ସମସ୍ତଙ୍କ ଅଜ୍ଞାତରେ ଅନେକ ଆଗେଇଯାଇଛି ପାନ୍‌କ୍ରାଟୋଭ୍ ଦଳଠାରୁ, ଏପରିକି ଦୁବାଭାର ନିଜ ଦଳଠାରୁ ମଧ୍ୟ। କାହାକୁ କିଛି ନକହି ମଧ୍ୟ ସେ ସମସ୍ତଙ୍କୁ ଆହ୍ୱାନ ଦେଇଛି।

"ବନ୍ଧୁ ହଉ କି ନହଉ, ଯିଏ ଜିତିବ ସେଇ ହିଁ ଶ୍ରେଷ୍ଠ ବୋଲି ବିବେଚିତ ହେବ", ପାନ୍‌କ୍ରାଟୋଭ୍ କହିଲା।

ପ୍ରାୟ ମଧ୍ୟାହ୍ନ ବେଳକୁ କୋର୍ଷ୍‌ଗିନ୍‌ର ଦଳ ଯେତେବେଳେ କାମ ଭିତରେ ବୁଡ଼ିରହିଛନ୍ତି, ହଠାତ୍ ସେମାନେ ଆକସ୍ମିକ ବାଧା ପାଇଲେ। ଜଗୁଆଳଭାବରେ ରହିଥିବା ଲୋକଟି, ଜଙ୍ଗଲ ଭିତରୁ କେତେକ ଘୋଡ଼ସବାରଙ୍କୁ ଦେଖି ସତର୍କ କରିଦେବା ପାଇଁ ଗୋଟାଏ ଗୁଳି ଫୁଟାଇଲା।

"ସମସ୍ତେ ଅସ୍ତ୍ରଶସ୍ତ୍ର ଧରିନିଅ!" ପାଭେଲ୍ ଚିତ୍କାର କରିଉଠିଲା। ସେ ନିଜେ ମଧ୍ୟ କୋଡ଼ିଟାକୁ ଫୋପାଡ଼ିଦେଇ, ଗଛରେ ଓହଳା ହୋଇଥିବା ମାଉଜରଟାକୁ ତା'ର ଧରିନେଲା।

ଅନ୍ୟମାନେ ସେମାନଙ୍କ ରାଇଫଲକୁ ଟାଣି ନେଇ ଲାଇନ୍‌ର ଧାରକୁ ସିଧାସଳଖ

ବରଫ ଉପରକୁ ଡେଇଁ ପଡ଼ିଲେ । ଆଗୁଆ ଘୋଡ଼ସବାରମାନେ ସେମାନଙ୍କ ଟୋପିଗୁଡ଼ିକୁ ହଲାଇଲେ ।

"ସାବଧାନ ହୋଇ ରହ କମ୍ରେଡ୍ମାନେ ! ଗୁଳି କର ନାହିଁ କେହି ! ଆମେ ତମ ଲୋକ", ଜଣେ କିଏ କହିଲା ।

ପ୍ରାୟ ପଚାଶ ଜଣ ସରିକି ଘୋଡ଼ସବାର ବୁଦ୍ୟୋନି୍ ଟୋପି ପିନ୍ଧିଛନ୍ତି, ଉଜ୍ଜ୍ୱଳ ରକ୍ତ ତାରକା ଲାଗିରହିଛି ସେଥିରେ, ରାସ୍ତା ଉପରକୁ ଉଠିଲେ ।

ପୁଜିରେଭ୍ସିଙ୍କର ଗୋଟିଏ ବାହିନୀ କାମ ତଦାରଖ କରିବା ପାଇଁ ଆସିଛନ୍ତି । ଦଳର ଅଧିନାୟକଙ୍କର ସୁନ୍ଦର ଘୋଡ଼ୀଟିକୁ ଲକ୍ଷ୍ୟ କଲା ପାଭେଲ୍ । ବାଦାମୀ ରଙ୍ଗର, କପାଳ ଉପରେ ଧଳା ଚିହ୍ନଟିଏ, ଗୋଟିଏ କାନ ନାହିଁ ତା'ର । ସବାରକୁ ପିଠିରେ ବସାଇ ସେ ଅସ୍ୱସ୍ତିକର ଭାବରେ ଗୋଡ଼ ଉଠାଉଛି ପକାଉଛି । ପାଭେଲ୍ ଦୌଡ଼ିଦୌଡ଼ି ଯାଇ ତା' ଲଗାମ ଧରିପକାଇବା ମାତ୍ରେ ସେ ତ୍ରସ୍ତ ହୋଇ ପାଦେ ଦି' ପାଦ ପଛକୁ ହଟିଗଲା ।

"ଆଚ୍ଛା, ଲିସ୍କା ସୁନ୍ଦରୀ, ତୁମେ ତେବେ ବଞ୍ଚିଛ ? ଗୁଳି ତା'ହେଲେ ତମ ମୁଣ୍ଡରେ ବାଜି ନାହିଁ ? ଆ...ହା ମୋ ଏକକାନିଆ ସୁନ୍ଦରୀ !"

ଘୋଡ଼ୀଟିର ପିଠି ଥାପୁଡ଼ାଇ ତାକୁ ଟିକେ ଆଦର କଲା ପାଭେଲ୍ । ଦଳର ଅଧିନାୟକ କଣେଇ ଚାହିଁଲେ ପାଭେଲକୁ ମୁହୂର୍ତ୍ତକ ପାଇଁ । ତା'ପରେ ଆଶ୍ଚର୍ଯ୍ୟ ହୋଇ ଚିତ୍କାର କରି ଉଠିଲେ :

"ଆରେ ... ତୁ କୋର୍ଚ୍ଚାଗିନ୍ ନା ? ହଇରେ ତୁ ତୋ ଘୋଡ଼ୀଟାକୁ ଚିହ୍ନିପାରୁଛୁଟି ? ଆଉ ତୋ ପୁରୁଣା ସାଙ୍ଗ ସେରେଦାକୁ ଚିହ୍ନିପାରୁ ନାହୁଁ ? ଅଭିବାଦନ ନିଅ ଭାଇ !"

* * *

ଇତ୍ୟବସରରେ ସହରରେ ଚତୁର୍ଦ୍ଦିଗରୁ ଚାପ ପଡ଼ୁଥାଏ ରେଳ ଲାଇନ୍ କାମ ତ୍ୱରାନ୍ୱିତଭାବରେ ସାରିବା ପାଇଁ ଏବଂ ଏ ଦାବୀ ମଧ୍ୟ ତୁରନ୍ତ ଆସି ପହଞ୍ଚି ଯାଉଥାଏ କାମ ପାଖରେ ।

ବସ୍ତୁତଃ କମ୍ସୋମୋଲ୍ର ସମସ୍ତ ପୁରୁଷ ସଭ୍ୟଙ୍କୁ ଶେଷ ଜଣକ ପର୍ଯ୍ୟନ୍ତ ମଧ୍ୟ କାମ ଉପରକୁ ପଠାଇ ସାରିଥାଏ ଝାର୍କୀ । ସୋଲେମେଙ୍କାରେ କେବଳ ଝିଅମାନେ ଅବଶେଷ ଥାଆନ୍ତି । ରେଳବାଇ ସ୍କୁଲରୁ ଆଉ ଗୋଟିଏ ଦଳ ପଠାଇବା ପାଇଁ ନିର୍ଦ୍ଦେଶ ଦେଲା ଝାର୍କୀ ।

"ଏଠାରେ କେବଳ ସର୍ବହରା ନାରୀମାନଙ୍କ ସହିତ ବାକି ରହିଲି ମୁଁ", ନିଜ କାମ ସଂପର୍କରେ ଆକିମ୍କୁ ଜଣାଉ ଜଣାଉ ହସି ହସି କହିଲା ସେ । "ଭାବୁଛି, ତାଲ୍ୟା ଲଗୁତିନାକୁ ମୋ ଜାଗାରେ ରଖି, କବାଟରେ 'ନାରୀ ବିଭାଗ' ବୋଲି ଟାଙ୍ଗି ମୁଁ ମଧ୍ୟ ବୋୟାର୍କାକୁ ଯିବି । ଏଠି ସବୁ ନାରୀମାନଙ୍କ ଭିତରେ ମୁଁ ଏକା ରହିବାକୁ ଭଲ ଲାଗୁ ନାହିଁ । ପ୍ରମୀଳା ରାଜ୍ୟରେ ସେମାନେ ବି ଯେମିତି ଆଖିରେ ମୋତେ ଅନାଉଛନ୍ତି,

ଯେମିତି କହୁଛନ୍ତି, 'ଦେଖ, ସମସ୍ତଙ୍କୁ ହଟେଇଦେଇ ନିଜେ କେମିତି ରହିଛି ଏକାକୀ ।' କି ଯା'ଠାରୁ ଆହୁରି କିଛି ଖରାପ କଥା କହୁଥିବେ ସେମାନେ । ନାଁ, ମୋତେ ଯିବାକୁ ଦିଅ ।"

ତା' କଥାରେ ଆକିମ୍ କେବଳ ହସିଲା ।

ନୂଆ ନୂଆ ଶ୍ରମିକମାନେ ବୋୟାର୍କାରେ ଆସି ପହଞ୍ଚିଗଲେ । ସେମାନଙ୍କ ଭିତରେ ଥିଲେ ରେଳବାଇ ସ୍କୁଲର ଷାଠିଏ ଜଣ ଛାତ୍ର ।

ରେଳବାଇ କର୍ମକର୍ତ୍ତାଙ୍କୁ ଝୁମ୍ପ୍ରାଇ ଅନୁରୋଧ ଜଣାଇଲା, ସେମାନଙ୍କ ରହିବା ପାଇଁ ଘରୋଟି ରେଳଡବା ଦେବାକୁ ।

ଦୁବାଭାର ଦଳଙ୍କୁ କାମରୁ ଖଲାସ କରି ପୁଷ୍ଟା-ଭଦିଷାକୁ ପଠାହେଲା ଇଞ୍ଜିନ୍‌ଗୁଡ଼ାକୁ ଓ ପଞ୍ଚଷାଠିଟି ନ୍ୟାରୋ-ଗଜ ରେଳ ବଗି ଆଣିବାକୁ । ଏତକ କାମକୁ ତାଙ୍କ ଦଳକୁ ଦିଆଯାଇଥିବା କାମ ବୋଲି ମଧ୍ୟ ଗ୍ରହଣ କରାଗଲା ।

ଯିବା ଆଗରୁ ଦୁବାଭା ତୋକାରେଭ୍‌କୁ ପରାମର୍ଶ ଦେଲା, ସହରରୁ କ୍ଲାଭିଚେକ୍‌କୁ ଡକାଇଆଣି ଆଗନ୍ତୁକଙ୍କର ନବଗଠିତ ଦଳଟିର ଦାୟିତ୍ୱ ଦେବା ପାଇଁ । ତୋକାରେଭ୍ ତାହାହିଁ କଲା । ଦୁବାଭାର ଏ ଅନୁରୋଧର ସତ୍ୟ କାରଣ କ'ଣ, ତୋକାରେଭ୍ ଜାଣି ନଥିଲା । ସୋଲେମେଙ୍କାରୁ ଆସିଥିବା ନୂଆ ଦଳ ଭିତରୁ ଜଣେ ଆନ୍ନାଠାରୁ ଗୋଟିଏ ଚିଠି ଆଣିଥିଲା ।

ଆନ୍ନା ଲେଖିଥିଲା :

"ଦମିତ୍ରି ! କ୍ଲାଭିଚେକ୍ ଓ ମୁଁ ତମ ପାଇଁ ଏଠାରେ ଗଦାଏ ବହି ସଂଗ୍ରହ କରି ରଖିଛୁ । ତମେ ଓ ବୋୟାର୍କାରେ କାର୍ଯ୍ୟରତ ସମସ୍ତ କମ୍ରେଡ୍ ଆମର ଉଷ୍ମ ଅଭିବାଦନ ନିଅ । ତମ କାମ ଶେଷ ହେବା ପର୍ଯ୍ୟନ୍ତ ତମର ବନ୍ଧୁମାନଙ୍କର ଅଦମ୍ୟ ଶକ୍ତି ଓ ଉତ୍ସାହ ଆମେ କାମନା କରୁଛୁ । ଗତକାଲି, ସର୍ବଶେଷ ଜାଳେଣୀ କାଠ ବଣ୍ଟା ହୋଇଗଲା । କ୍ଲାଭିଚେକ୍ ମୋତେ କହୁଛି, ତମକୁ ତା'ର ଅଭିନନ୍ଦନ ଜଣାଇଦେବାକୁ । ସେ ଭାରୀ ଭଲ ! ବୋୟାର୍କା ପାଇଁ ଯେତେ ରୁଟି ସବୁ ସେ ଏଠି କରୁଛି ନିଜେ । ନିଜେ ଅଟା ଦଳୁଛି । ଛାଞ୍ଚ କରୁଛି ଓ ଭାଟିରେ ବସାଉଛି । ଏ କାମରେ ତା'ର କାହା ପ୍ରତି ବିଶ୍ୱାସ ନାହିଁ, କାଳେ ଖରାପ କରିଦେବେ । ସେ ବଢ଼ିଆ ଅଟା ଯୋଗାଡ଼ କରିଛି । ତା' ରୁଟି ସତରେ ଭାରୀ ଭଲ ! ଅନ୍ତତଃ ମୋ ରୁଟିଠାରୁ ତ ନିଶ୍ଚୟ । ସନ୍ଧ୍ୟାରେ ସବୁ ବନ୍ଧୁ ମୋ ବସାରେ ଏକାଠି ହେଉଛୁ—ଲଗୁତିନା, ଆର୍ତ୍ୟୁଖିନ୍, କ୍ଲାଭିଚେକ୍, ବେଳେବେଳେ ଝାର୍କୀ । କିଛି କିଛି ପଢ଼ୁ, ମାତ୍ର ଅଧିକାଂଶ ସମୟରେ ତମମାନଙ୍କ କଥା ପଡ଼େ, ବୋୟାର୍କା କଥା । ଏଠାର ଝିଅମାନେ ତୋକାରେଭ୍‌ଙ୍କ ଉପରେ ଭୟଙ୍କର ଉତ୍କ୍ଷିପ୍ତ, କାରଣ ସେ ଝିଅମାନଙ୍କୁ ରେଳବାଇ କାମ ପାଇଁ ନେଲେ ନାହିଁ ବୋଲି । ସେମାନେ କହୁଛନ୍ତି ଯେ, ଅନ୍ୟମାନଙ୍କ ଭଳି ଯେକୌଣସି କଷ୍ଟ ସେମାନେ ମଧ୍ୟ ସହ୍ୟ କରିପାରିବେ । ତାଲ୍ୟା ତ କହୁଛି ଯେ, ସେ ତା' ବାପାର ପୋଷାକ ପିନ୍ଧି ବୋୟାର୍କାକୁ ପଳେଇଯିବ,

କାମରେ ଯୋଗ ଦେବା ପାଇଁ । 'ଦେଖିବା ସେ କେମିତି ମୋତେ କାମରୁ କାଢ଼ି ଦେଉଛି !' ବୋଲି ସେ କହୁଛି ପରା ।

ସିଏ ଯଦି ସେଠାକୁ ଚାଲିଯାଏ , ମୁଁ ଆଦୌ ଆଶ୍ଚର୍ଯ୍ୟ ହେବି ନାହିଁ । ତମର କୃଷ୍ଣଚକ୍ଷୁ ବନ୍ଧୁଙ୍କୁ ମଧ୍ୟ ମୋର ଶୁଭେଚ୍ଛା ଦେବାକୁ ଭୁଲିବ ନାହିଁ । ଇତି ...

ତମର ବନ୍ଧୁ

ଆନ୍ନା ।"

ହଠାତ୍ ସେମାନଙ୍କ ଉପରେ ନଇଁଆସିଲା ବରଫ ଝଡ଼ । ଆକାଶ ତଳେ କଳା କଳା ବାଦଲ ଖଣ୍ଡ ଭାସିବୁଲିଲେ , ସାରା ଆକାଶରୁ ଝରିଝରି ପଡ଼ିଲା ବହଳ ତୁଷାର । ରାତିରେ ଶାଣଦିଆ ଛୁରୀ ଭଳି ତୀବ୍ରବେଗରେ ଘରଗୁଡ଼ାକର ଚିମ୍ନି ଦେଇ ପବନ ବହିବାକୁ ଲାଗିଲା । ବଡ଼ ବଡ଼ ଗଛଗୁଡ଼ାକ ପବନ ବେଗରେ ଗର୍ଜନ କରିଉଠିଲେ । ଝରି ପଡ଼ୁଥିବା ତୁଷାରସବୁ ପବନରେ ଇତଃସ୍ତତଃ ଭାସିବୁଲିଲା । ସୁ ସୁ ଶବ୍ଦରେ ଜଙ୍ଗଲର ଗଛଲତା କଂପି ଉଠୁଥାନ୍ତି । ସାରା ଜଙ୍ଗଲ ପ୍ରତିଧ୍ୱନିତ ହେଲା ।

ସାରା ରାତି ଝଡ଼ ଗର୍ଜନ କରି ପ୍ରଚଣ୍ଡବେଗରେ ବହିଚାଲିଲା , ପ୍ରଶମିତ ହେଲା ନାହିଁ । ରାତିସାରା ଚୁଲି ଜଳାଇ ରଖିଲେ ମଧ୍ୟ ଲୋକମାନେ ଥଣ୍ଡାରେ ଥରିବାକୁ ଲାଗିଲେ । ଭଗ୍ନ ଷ୍ଟେସନ୍ କୋଠାଟି ପ୍ରଚଣ୍ଡ ଶୀତ-ହେମାଳ ପବନ ଦାଉରୁ ରକ୍ଷା କରିବା ପାଇଁ ସମର୍ଥ ନଥିଲା ।

ସକାଳୁ ସେମାନଙ୍କୁ ନିଜ ନିଜ ବିଭାଗର କାମ ପାଖରେ ପହଞ୍ଚିବା ପାଇଁ ରାସ୍ତା ଖୋଳିଖୋଳି ଯିବାକୁ ହେଲା । ଗଛର ମଥାନ ଉପରେ ଅନେକ ଉଚ୍ଚରେ ସୂର୍ଯ୍ୟଟା ଜଳୁଥାଏ ନୀଳ ଆକାଶ ଛାତିରେ । ଗୋଟିଏ ବି ବାଦଲ ନଥାଏ ତାକୁ ଢାଙ୍କି ଦେବାକୁ ।

କୋର୍ଚ୍ଚଗିନ୍ ଓ ତା' ଦଳର ଲୋକ ଯାଇ ନିଜର କାର୍ଯ୍ୟସ୍ଥଳୀରେ ପହଞ୍ଚି ବରଫ ସଫା କରିବାରେ ଲାଗିଗଲେ ସକାଳୁ । ଆଜି ପାଭେଲ୍ ଅନୁଭବ କଲା , ଥଣ୍ଡା-କାକରରେ ଜଣେ ଲୋକ ସତରେ କି ଭୟଙ୍କର କଷ୍ଟ ପାଇପାରେ । ଓଭରକୋଟ୍‌ର ପୁରୁଣା ଜ୍ୟାକେଟ୍‌ଟି ଶୀତ ଅଟକାଇ ପାରୁ ନଥାଏ । ରବରର ଜୋତାଟା ଭିତରେ ବରଫ ପ୍ରାୟ ପଶିଯାଉଥାଏ । ବରଫ ଭିତରେ ବେଳେବେଳେ ଗଳି ଯାଉଥାଏ ସେଇଟା । ଅନ୍ୟ ଗୋଡ଼ରେ ପିନ୍ଧିଥିବା ଛିଣ୍ଡା ଚମଡ଼ା ବୁଟ୍‌ଟା ଅଧିକ ଛିଡ଼ିଯାଉଥାଏ , ବେକଷଣ୍ଢାରେ ଠିକ୍ ବାହାରିଥାଏ ତା'ର ବଡ଼ ବଡ଼ ଦୁଇଟା ବଥ, ଥଣ୍ଡାରେ ଖାଲି ଚଟାଣ ଉପରେ ଶୋଇବା ଫଳ । ସ୍କାର୍ଫ ଜାଗାରେ ପିନ୍ଧିବାକୁ ତୋକାରେଭ୍ ତାକୁ ତାଁ'ର ତଉଲିଆଟା ଦେଇଥାଏ ।

ରକ୍ତ ଚକ୍ଷୁ , ଶୀର୍ଣ୍ଣକାୟ ପାଭେଲ୍ ପ୍ରଚଣ୍ଡ ବେଗରେ ତା'ର ବରଫତଡ଼ା କାଠ କୋଦାଳଟାକୁ ଉଠାଉଥାଏ ପକାଉଥାଏ , ଠିକ୍ ଏତିକିବେଳେ ପ୍ଲାଟ୍‌ଫର୍ମ ଭିତରକୁ ଆସିଲା ଯାତ୍ରୀବାହୀ ରେଳଟିଏ , ମନ୍ଥର ଗତିରେ । ଧୂମ ଉଦ୍‌ଗୀରଣ କରି ଇଞ୍ଜିନ୍‌ଟି ରହିଗଲା । ଇଞ୍ଜିନ୍‌ରେ ଜଳିବା ପାଇଁ ଆଉ କାଠ ନଥାଏ । ଶେଷ କାଠଗଡ଼ଟି ଜଳୁଥାଏ ।

"ଆମକୁ ଆଗେଇଯିବାକୁ କିଛି ଜାଳେଣୀ ଦିଅ, ନହେଲେ ଗାଡ଼ିଟାକୁ ଗୋଟାଏ କଡ଼କୁ କୋଉଠିକି ନେଇଯିବାକୁ ଜାଗା ଦେଖାଅ, ନହେଲେ ଆଉ ମୁହୂର୍ତ୍ତେ ପରେ ସଂପୂର୍ଣ୍ଣଭାବରେ ଅଚଳ ହୋଇଯିବ ।" ଷ୍ଟେସନ୍‌ମାଷ୍ଟରଙ୍କୁ ଇଞ୍ଜିନ୍ ଡ୍ରାଇଭର କ୍ରୋଧାନ୍ୱିତ ହୋଇ ବଡ଼ ପାଟିରେ କହିଲେ ।

ରେଳଟାକୁ ଗୋଟାଏ କଡ଼କୁ ରଖିଦିଆଗଲା । ବିକ୍ଷୁବ୍ଧ ଯାତ୍ରୀମାନଙ୍କୁ ଗାଡ଼ି ବନ୍ଦ କରିବାର କାରଣ ଜଣାଇ ଦିଆଗଲା ମଧ୍ୟ । ଜନଗହଳ ଡବାମାନଙ୍କରୁ ନାନା ଅଭିଯୋଗ, ଦୋଷାରୋପ, ଅଭିଶାପ ବର୍ଷିବାକୁ ଲାଗିଲା ।

"ଯାଅ, ସେ ବୁଢ଼ା ସାଙ୍ଗରେ କଥାବାର୍ତ୍ତା କର! ସେ ହେଉଛି ଏଠାକାର କାମର ମୁଖ୍ୟ । ସେମାନେ ରେଳ ପଟି ତିଆରି କରିବା ପାଇଁ କାଠଗଡ଼ସବୁ ବ୍ୟବହାର କରୁଛନ୍ତି । ସେମାନେ ଇଞ୍ଜିନ୍ ପାଇଁ କିଛି କାଠ ହୁଏତ ତାଙ୍କ ସ୍ଲେଜ୍‌ଗାଡ଼ିରେ ଦେଇପାରନ୍ତି ।" ଚୋକାରେଭ୍ ଆଡ଼କୁ ଦେଖାଇଦେଇ ଗାର୍ଡମାନଙ୍କୁ କହିଲା ଷ୍ଟେସନ୍‌ମାଷ୍ଟର । ଚୋକାରେଭ୍ ପ୍ଲାଟ୍‌ଫର୍ମ ଉପରେ ବୁଲିବୁଲି ଯାଉଥିଲା ।

"ହଁ, ମୁଁ ତମକୁ କାଠ ଦେଇପାରେ, ମାତ୍ର ତମକୁ ସବୁ ସେଥିପାଇଁ କାମ କରିବାକୁ ପଡ଼ିବ", ଚୋକାରେଭ୍ କଣ୍ଡକ୍ଟରମାନଙ୍କ ଆବେଦନର ପ୍ରତ୍ୟୁତ୍ତରରେ କହିଲା, "ମୁଁ ଆମ କାମ ପାଇଁ ଦରକାରୀ କାଠରୁ କିଛି ଦେଇଦେବି । ବରଫ ପାଇଁ ଆମ କାମଦାମ ବନ୍ଦ ହୋଇଯାଇଛି । ତମ ରେଳରେ ନିଶ୍ଚିତଭାବରେ ଛଅ କି ସାତ ଶହ ଯାତ୍ରୀ ଅଛନ୍ତି । ସ୍ତ୍ରୀଲୋକ ଓ ପିଲାମାନେ ଗାଡ଼ିରେ ରହିଯାନ୍ତୁ, ମାତ୍ର ଆଉ ସମସ୍ତେ ଆସି ବରଫ ସଫା କରିବାରେ ସାହାଯ୍ୟ କରନ୍ତୁ, ଅନ୍ତତଃ ସନ୍ଧ୍ୟା ପର୍ଯ୍ୟନ୍ତ । ତା' ହେଲେ ମୁଁ କାଠ ଦେବି । ମନା କଲେ, ସେମାନେ ସମସ୍ତେ ଏଇଠି ଏମିତି ରହନ୍ତୁ ନବବର୍ଷ ପର୍ଯ୍ୟନ୍ତ ।"

* * *

"ଆରେ, ଦେଖ ରେ, ଦେଖ, କେତେ ଲୋକ ଇଆଡ଼େ ଆସୁଛନ୍ତି! ଏଁ, ସେଥିରେ ସ୍ତ୍ରୀଲୋକ ମଧ୍ୟ ଅଛନ୍ତି!" ପଛଆଡ଼ୁ ଆଶ୍ଚର୍ଯ୍ୟସୂଚକ କଥା ଶୁଣିଲା କୋର୍ଚ୍ଚାଗିନ୍ ।

ବୁଲିପଡ଼ିଲା ସେ । ଚୋକାରେଭ୍ ନିକଟକୁ ଆସିଲା ତା'ର ।

"ଶହେ ଜଣ ସହକାରୀ ଦେଲି ତୋତେ । ଦେଖ୍, ସେମାନେ ସମସ୍ତେ ଯେମିତି କାମରେ ଲାଗନ୍ତି, କେହି ବସନ୍ତି ନାହିଁ ।" କୋର୍ଚ୍ଚାଗିନ୍‌କୁ କହିଲା ସେ ।

ଆଗନ୍ତୁକମାନଙ୍କୁ କାମରେ ଲଗାଇଦେଲା କୋର୍ଚ୍ଚାଗିନ୍ । ଡେଙ୍ଗା ହୋଇ ଜଣେ ଲୋକ, ସୁନ୍ଦର ରେଳବାଇ ପୋଷାକ ପିନ୍ଧିଛି, ଫର କଲର୍ କାନ୍ଧରେ ତା'ର, ସୁନ୍ଦର ଫର୍‌ଟୋପି । ଅନିଚ୍ଛାକୃତଭାବରେ କୋଦାଳ ଉଠାଉଥାଏ । ନିକଟରେ ଥିବା ତା'ର ସହଚରୀ ଆଡ଼କୁ ବୁଲିପଡ଼ିଲା । ସହଚରୀଟି ସିଲମାଛ ଚମଡ଼ାର ନରମ ରେଶମଗୁଚ୍ଛ ଖୋସା ହୋଇଥିବା ଟୋପି ପିନ୍ଧିଛି ।

"ମୁଁ ବରଫ ଖୋଳିବି ନାହିଁ, କି ଏଥିପାଇଁ କେହି ମୋତେ ବାଧ୍ୟ କରିପାରିବେ

ନାହିଁ । କାହାର ଅଧିକାର ନାହିଁ । ମୁଁ ଜଣେ ରେଳବାଇ ଇଞ୍ଜିନିୟର, ମୋତେ କହିଲେ, ମୁଁ ଏ କାମର ଦାୟିତ୍ୱ ନେଇପାରେ, କିନ୍ତୁ ତମେ କି ମୁଁ ବରଫ ଖୋଳିବା ସମ୍ଭବ ନୁହଁ । ଏହା ସଂପୂର୍ଣ୍ଣଭାବରେ ବେଆଇନ୍ । ବୁଢ଼ା ଆଇନ ଭଙ୍ଗ କରୁଛି । ତାକୁ ମୁଁ ଗିରଫ କରାଇ ଦେଇପାରିବି । ତମର ଫୋରମ୍ୟାନ୍ କାହିଁ ?" ତା' ନିକଟବର୍ତ୍ତୀ କାମ କରୁଥିବା ଲୋକଟିକୁ ପଗ୍ଭରିଲା ସେ ।

କୋର୍ଚ୍ଚଗିନ୍ ପାଖକୁ ଆସିଲା ।

"ତମେ କାହିଁକି କାମ କରୁ ନାହଁ ?"

ସନ୍ଦିଗ୍ଧ ଚକ୍ଷୁରେ ପାଭେଲ୍‌କୁ ତାଳୁରୁ ତଳିପାଯାଏ ଅନାଇଗଲା ଲୋକଟି ।

"ତମେ କିନ୍ତୁ କିଏ ?"

"ମୁଁ ଜଣେ ଶ୍ରମିକ ।"

"ତା'ହେଲେ ମୋର ତମକୁ କିଛି କହିବାର ନାହିଁ । ତମ ଫୋରମ୍ୟାନ୍ ପାଖକୁ ମୋତେ ନେଇଚ୍ଲ, କିମ୍ବା ଯେଉଁ ନାଁରେ ତମେ ତାକୁ ଡାକୁଥିବ ... ତା'ରି ପାଖକୁ ।"

କୋର୍ଚ୍ଚଗିନ୍ ଗର୍ଜ୍ଜନ କରିଉଠିଲା ।

"ତମେ ଇଚ୍ଛା ନହେଲେ କାମ ନ କରିପାର, ମାତ୍ର ମନେରଖ, ତମ ଟିକେଟ୍ ଉପରେ ଆମେ ଦସ୍ତଖତ ନକଲେ ତମେ ସେ ରେଳରେ ଆଉ ଯାଇପାରିବ ନାହିଁ । ଏହାହିଁ ହେଉଛି ଏଠା କାର୍ଯ୍ୟର ଦାୟିତ୍ୱରେ ଥିବା ମୁଖ୍ୟଙ୍କର ଆଦେଶ ।"

"ତମେ ବି କ'ଣ କାମ କରିବାକୁ ଚାହଁ ନାହଁ ?" ପ୍ରଶ୍ନଟାରେ ପାଭେଲ୍ ପ୍ରଶ୍ନକାରିଣୀ ଆଡ଼କୁ ବୁଲି ଚାହିଁଲା ଓ ବିସ୍ମୟରେ ମୂକ ହୋଇ ଛିଡ଼ା ହୋଇ ରହିଲା । ତା' ଆଗରେ ଛିଡ଼ା ହୋଇଛି ତୋନ୍ୟା ତୁମାନୋଭା ।

ତୋନ୍ୟା ନିଜ ଆଖିକୁ ବିଶ୍ୱାସ କରିପାରୁ ନଥିଲା ଯେ, ଏଇ ଯେଉଁ ଜଣକ ତା' ସମ୍ମୁଖରେ ଛିଡ଼ାହୋଇଛି ଛିଣ୍ଡା ମଇଳା ଜାମାପିନ୍ଧି, ଗୋଡ଼ରେ ଛିଡ଼ା ଜୋତା, ବେକରେ ଗୋଟାଏ ମଇଳା କୋଚଟ ତଉଲିଆ ଗୁଡ଼ାଇ, ଲୋକଟାର ମୁହଁ ଅନେକ ଦିନ ଧରି ହୁଏତ ଧୁଆ ହୋଇ ନାହିଁ, ସେଇ ଅତୀତରେ ତୋନ୍ୟା ସହ ପରିଚୟ ଥିବା କୋର୍ଚ୍ଚଗିନ୍ । କେବଳ ଆଖି ଦୁଇଟି ତା'ର ପୂର୍ବ ଭଳି ତୀବ୍ର ଜ୍ୟୋତି ଫୁଟି ଉଠୁଛି । ଏ ହେଉଛି ସେଇ ପାଭେଲ୍‌ର ଆଖି, ଯେଉଁ ପାଭେଲ୍ କଥା ଯାହାକୁ ସେ ମନେ ପକାଉଥିଲା । ଏବଂ ସେ ବିଶ୍ୱାସ କରି ପାରୁନି ଯେ, ଏହି କୋଚଟ ପ୍ରାଣୀଟିକୁ ସେ ଅଳ୍ପ ଦିନ ଆଗେ ଭଲ ପାଉଥିଲା । ସବୁ କିଛି କେମିତି ବଦଳି ଗଲା !

ତୋନ୍ୟା ସଂପ୍ରତି ବିବାହ କରିଛି । ସେ ଏବଂ ତା'ର ସ୍ୱାମୀ ଏକ ବଡ଼ ସହରକୁ ଯାଉଛନ୍ତି । ସେଠାରେ ରେଳବାଇର ପରିଚ୍ଭଳନା ବିଭାଗରେ ତା'ର ସ୍ୱାମୀ ଜଣେ ବଡ଼ ଅଫିସର । କିଏ ଭାବିଥିଲା ଯେ, ତା' କିଶୋରୀ ଜୀବନର ପ୍ରେମାସ୍ପଦଟିକୁ ଏମିତି ରୂପରେ, ଏଇ ପରିବେଶରେ ଭେଟିବ ବୋଲି ? ତା' ସହିତ ହାତ ମିଳାଇବା ପାଇଁ ମଧ୍ୟ ଘୃଣା ଲାଗିଲା ତୋନ୍ୟାକୁ । ଭାସିଲି କ'ଣ ଭାବିବ ? ଇସ୍, କୋର୍ଚ୍ଚଗିନ୍ କେତେ

ତଳକୁ ଓହ୍ଲାଇ ଆସିଛି ! ନିଶ୍ଚିତ ଭାବରେ, ଛୋଟ କାମରୁ ଅଧିକ କିଛି କାମ ପାଇଁ ଯୋଗ୍ୟ ହୋଇପାରି ନାହିଁ ।

ଦ୍ୱିଧା, ଦ୍ୱନ୍ଦ୍ୱ ଭିତରେ ଛିଡ଼ା ହୋଇଥିଲା ସେ । ମୁହଁ ତା'ର ଲାଜ, ଘୃଣାରେ ଜଳି ଯାଉଥିଲା । ଇତ୍ୟବସରରେ ରେଳବାଇ ଇଂଜିନିୟର ଏ ଛୋଟ ଲୋକଟାର କଥାରେ ଉତ୍ତ୍ୟକ୍ତ ହୋଇ, ନିଜ ସ୍ତ୍ରୀ ଆଡ଼କୁ ରାଗରେ ଅନାଇ ଏବଂ କୋଦାଳଟାକୁ ଫୋପାଡ଼ି ଦେଇ ସ୍ତ୍ରୀ ପାଖରେ ଯାଇ ଛିଡ଼ା ହୋଇଗଲା ।

"ଆସ ଯିବା ତୋନ୍ୟା– ଏ ଲୋଫରଟାର ଚେହେରା ଦେଖିବାକୁ ମୋତେ ଭଲ ଲାଗୁ ନାହିଁ ।"

କୋର୍ଚ୍‌ଗିନ୍ ଲୋଫର ଶବ୍ଦଟାର ଅର୍ଥ ବୁଝିଥିଲା, କାରଣ ଜୁସେପେ ଗାରିବଲ୍‌ଡି ପଢ଼ିଛି ସେ ।

"ମୁଁ ଲୋଫର ହୋଇପାରେ, ମାତ୍ର ତମେ ଜଣେ ପଚରା ବୁର୍ଜୁଆ ବ୍ୟତୀତ ଆଉ କିଛି ନୁହଁ ।" ସେ ରକ୍ଷଭାବରେ କହିଲା ଓ ତୋନ୍ୟା ଆଡ଼କୁ ବୁଲିପଡ଼ି ଆଦେଶ ଦେଲା, "ନିଅ, ଏ କୋଦାଳ ଧର, କମ୍ରେଡ୍ ତୁମାନୋଭା ଏବଂ ଯାଇ ଧାଡ଼ିରେ ମିଶି କାମ କର । ଏ ପୁରସ୍କାର ବିଜେତା ଷଣ୍ଢକୁ ଆଦର୍ଶ ରୂପେ ଗ୍ରହଣ କର ନାହିଁ । ଦେଖ, ସିଏ ଯଦି ତମର କିଛି ହୋଇଥାଏ, ମୋତେ କ୍ଷମା କରିବ ।"

ତୋନ୍ୟାର ଫର୍‌କୋଟ ଆଡ଼କୁ ଲକ୍ଷ୍ୟ କରି କରୁଣ ହସ ହସି ପାଭେଲ୍ କହିଲା ସାଧାରଣଭାବରେ, "ଦେଖ, ଏଠି ଅଟକି ରହିବା ତମ ପକ୍ଷରେ ଉଚିତ ହେବ ନାହିଁ । ଏଇ ସେଦିନ ଆମକୁ ଡକାଏତମାନଙ୍କର ଆକ୍ରମଣ ସାମନା କରିବାକୁ ହୋଇଥିଲା ।"

ଏତିକି କହି ସେ ଆଗେଇଗଲା ତା ରବର ଜୋତା ଯୋଡ଼ାକୁ ଫଟ୍ ଫଟ୍ କରି । ତା'ର ଶେଷ କଥାପଦକ ବୋଧହୁଏ ରେଳବାଇ ଇଂଜିନିୟରଙ୍କ ମନକୁ ପାଇଲା ।

ତୋନ୍ୟା ମଧ୍ୟ ତାକୁ କାମ କରିବାକୁ ବୁଝାଇବାକୁ ସମର୍ଥ ହେଲା ।

ସେଦିନ ସନ୍ଧ୍ୟାରେ କାମ ସବୁ ସରିଲା ପରେ ଜନଗହଳ ଷ୍ଟେସନ୍ ଆଡ଼କୁ ଫେରିଗ୍ଲଲିଲା । ତୋନ୍ୟାର ସ୍ୱାମୀ ଆଗରେ ଚାଲି ଗଲେ, ଟ୍ରେନ୍‌ରେ ଗୋଟିଏ ଜାଗା ଅନ୍ତତଃ ଦଖଲ କରି ରଖିବାକୁ । ତୋନ୍ୟା ଟିକେ ଅଟକିଯାଇ, ଦଳେ ଶ୍ରମିକ ଆଗେଇଗଲା ପରେ ପାଭେଲ୍‌କୁ ଦେଖିଲା, ନିଜ କୋଦାଳ ଉପରେ ଭାରା ଦେଇ ଚାଲୁଛି ।

"ପାଭ୍‌ଲୁଶା ! ତମକୁ ମୁଁ ଏପରି ଅବସ୍ଥାରେ ଦେଖିବି ବୋଲି ଆଦୌ ଆଶା କରି ନଥିଲି ।" ତା' ସହିତ ପାଦ ମିଳାଇ ଚାଲୁଚାଲୁ କହିଲା ତୋନ୍ୟା, "କର୍ତ୍ତୃପକ୍ଷ ନିଶ୍ଚୟ ଜାଣନ୍ତି ଯେ, ଏ ଛୋଟ କାମ କରିବା ଅପେକ୍ଷା ତମେ ଅନେକ ଯୋଗ୍ୟ । ମୁଁ ତ ଭାବିଥିଲି, ବର୍ତ୍ତମାନ ତମେ ଜଣେ ଅଧିନାୟକ ବା ସେମିତି କିଛି ହୋଇ ଯିବଣି । କି ଦୁର୍ଭାଗ୍ୟର କଥା, ଜୀବନ ତମ ପ୍ରତି ଏତେ କଠୋର !"

ଅଟକିଯାଇ ଆଶ୍ଚର୍ଯ୍ୟାନ୍ୱିତ ଆଖିରେ ତୋନ୍ୟାକୁ ଚାହିଁଲା ପାଭେଲ୍ ।

"ମୁଁ ମଧ୍ୟ ତମକୁ ଏମିତି ରୂପରେ... ଜାକଜମକ ଭିତରେ ଦେଖିବାକୁ ଆଶା

କରି ନଥିଲି ।" ଚେଷ୍ଟା କରି ସବୁଠାରୁ ନରମ ଭାବରେ ନିଜ ଭାବ ପ୍ରକାଶ କରିଲା ପାଭେଲ୍ ।

ତୋନ୍ୟାର କାନମୂଳ ଜଳିଗଲା ।

"ତମେ ଆଗ ଭଳି ସେମିତି ରକ୍ଷ ଅଛ", କହିଲା ସେ ।

କାନ୍ଧ ଉପରେ କୋଦାଳ ପକେଇ କେଇ ପାହୁଣ୍ଡ ଆଗେଇଗଲା କୋର୍ଚ୍ଚାଗିନ୍ । ତା'ପରେ ରହିଯାଇ କହିଲା :

"କମ୍ରେଡ୍ ତୁମାନୋଭା, ମୋର ରକ୍ଷତାକୁ ତୁଳନା କଲେ, ତମର ତଥାକଥିତ ନମ୍ରତାର ଅଧା ବି ହେବ ନାହିଁ । ଆଉ ମୋ ଜୀବନ କଥା ଯାହା ପଗ୍ଭରିଲ, ଦୟାକରି ସେ ବିଷୟରେ ତମେ ଚିନ୍ତା ନକଲେ ଭଲ । ମୋର କିଛି ଖରାପ ହୋଇ ନାହିଁ । ତମ ଜୀବନରେ ବରଂ ତ୍ରୁଟି ଦେଖାଦେଇଛି । ଏପରିକି ମୁଁ ଯାହା ଭାବିଥିଲି, ତା'ଠାରୁ ଆହୁରି ଖରାପ ହୋଇଛି । ଦୁଇବର୍ଷ ତଳେ ତମେ ଭଲ ଥିଲ । ସେତେବେଳେ ଜଣେ ସାଧାରଣ ଶ୍ରମିକ ସହିତ ହାତ ମିଳାଇବାକୁ ତମକୁ ଘୃଣା ଲାଗୁ ନଥିଲା ଅନ୍ତତଃ । ସତ କହିଲେ, ତମେ ଏବେ କୀଟଦଷ୍ଟ ଦୁର୍ଗନ୍ଧ ପୋଚରା ହୋଇଯାଇଛ ନିଜେ ନିଜେ । ତମର ମୋର ଆଉ କୌଣସି କଥାବାର୍ତ୍ତା ହେବା ଉଚିତ ନୁହେଁ ।"

* * *

ପାଭେଲ୍ ଆର୍ତେମ୍‌ଠାରୁ ଖଣ୍ଡେ ଚିଠି ପାଇଲା । ଆର୍ତେମ୍ ବାହା ହେବାକୁ ଯାଉଛି ଓ ପାଭେଲ୍‌କୁ ଅନୁରୋଧ ଜଣାଇଛି, ଯେପରି ବିଭାଘରରେ ନିଷ୍ଚୟ ଯାଇ ପହଞ୍ଚି ଯୋଗ ଦିଏ ।

ପବନରେ ଛୋଟ କାଗଜଖଣ୍ଡିକ ଉଡ଼ିଗଲା ଦୂରକୁ । ତା' ପାଇଁ କୌଣସି ବିବାହ ଉତ୍ସବରେ ଯୋଗ ଦେବା ସମ୍ଭବ ନୁହଁ । ତା' ଛଡ଼ା କେମିତି ବା ସେ ଛାଡ଼ିବ ଏଠା ? ଗତକାଲି ପାନ୍‌କ୍ରାଟୋଭ୍ ଭାଲୁଟା ତା' ଦଳକୁ ତୀବ୍ର ବେଗରେ ଟପିଯାଇଛି, ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରି । ପାନ୍‌କ୍ରାଟୋଭ୍ ପ୍ରଥମ ହେବାକୁ ପ୍ରାଣମୂର୍ଚ୍ଛା ପ୍ରଚେଷ୍ଟା କରୁଛି । ତା'ର ଗର୍ବ ଉପରେ ଆଞ୍ଚ ଆସିଛି ଓ ତା' ଦଳର ସମସ୍ତଙ୍କୁ ସେ ଉତେଜିତ ହୋଇ, ଗ୍ଭବୁକ ମାରିଲା ଭଳି ଖଟାଇ ଗ୍ଭଲିଛି ।

ନୀରବରେ ଓ ପ୍ରଚଣ୍ଡ ବେଗରେ କାମ କରିଯାଉଥିବା ଲୋକମାନଙ୍କୁ ଅନାଇ ବିହ୍ୱଳ ପାଟୋଶ୍‌କିନ୍ ଭାବୁଥିଲା, "ଏମାନେ ସତରେ ମଣିଷ ନା ଦୈତ୍ୟ ? କୋଉଠୁ ସେମାନେ ଏ ଅଦମ୍ୟ ଶକ୍ତି ପାଉଛନ୍ତି ? ଆଉ ମାତ୍ର ଆଠଟି ଦିନ ଯଦି ପାଗ ଭଲ ରହେ, ଆମେ ଯାଇ କାଠକଟା ଜାଗାରେ ପହଞ୍ଚିଯିବୁ । ବଞ୍ଚି ରହିଲେ ମଣିଷ ଶିଖେ, ଦେଖେ । ଏମାନେ ସତରେ ସବୁ ହିସାବପତ୍ର, ସବୁ ରେକର୍ଡକୁ ଭାଙ୍ଗିଚୂରି ଆଗେଇ ଯାଉଛନ୍ତି ।"

ଶେଷ ଭାରିକ ଛୁଟି ଧରି, କ୍ଲାଭିଚେକ୍ ଆସି ସହରରୁ ପହଞ୍ଚିଛି । ତୋକାରେଭ୍ ସହିତ କଥାବାର୍ତ୍ତା ସାରି କୋର୍ଚ୍ଚାଗିନ୍‌କୁ ଖୋଜିବାକୁ ବାହାରିଲା ସେ । ଦିହେଁ ହାତ

ମିଳାଇଲେ ଆନନ୍ଦରେ । ମୁହଁରେ ପ୍ରଶାନ୍ତ ହସ ଖେଳାଇ ନିଜ ମୁଣିରୁ କାଢ଼ିଲେ ଗୋଟାଏ ପରଭରା ସ୍ୱିଡେନ୍ ତିଆରି ଜ୍ୟାକେଟ୍ ।

ଚମତ୍କାରଟାକୁ ସାଉଁଳେଇ ସାଉଁଳେଇ ସେ କହିଲେ, "ଏଇଟା ତୋ ପାଇଁ ଆଣିଛି । କହିଲୁ ଦେଖି, କାହାଠାରୁ ଆଣିଛି ? କହିପାରୁନୁଁଟି ? ଆରେ ମୂର୍ଖ, କମ୍ରେଡ୍ ଉସ୍ପିନୋଭିଚ୍ ଦେଇଛନ୍ତି ଏଇଟା, ତୋତେ ଯେମିତି ଥଣ୍ଡା ନଧରେ ବୋଲି । ଓଲ୍ଗିନ୍‌ସ୍କି ଏଇଟା ତାଙ୍କୁ ଦେଇଥିଲେ । ତା'ଠାରୁ ନେଇ ସିଧାସଳଖ ସେ ମୋତେ ଦେଇ ଆଦେଶ ଦେଲେ, ତୋ ପାଖକୁ ନେଇଆସିବାକୁ । ଆକିମ୍ ତାଙ୍କୁ କହିଥିଲେ ଯେ, ଏ ଥଣ୍ଡାରେ ତୋର କିଛି ପୋଷାକପତ୍ର ନାହିଁ, କେବଳ ଗୋଟିଏ ପତଳା ଜ୍ୟାକେଟ୍ ବ୍ୟତୀତ । ଓଲ୍‌ଗିନ୍‌ସ୍କି ମୁହଁ ନେଫେଡ଼ାଇ କହିଲେ, 'ମୁଁ ସେ କମ୍ରେଡ୍‌ଙ୍କ ପାଖକୁ ଗୋଟାଏ ମିଲିଟାରୀ କୋଟ୍ ପଠାଇ ଦେଇପାରିବି ।' ମାତ୍ର ରୀତା ହସିହସି କହିଲେ, 'ସେଥିରେ କ'ଣ ଅଛି ? ଏ ଜ୍ୟାକେଟ୍ ପିନ୍ଧିଲେ ସେ ଅଧିକ କାମ କରିପାରିବ ।'"

ବିସ୍ମୟାଭିଭୂତ ପାଭେଲ୍ ଦାମିକା ଓ ସୁନ୍ଦର ଜ୍ୟାକେଟ୍‌ଟିକୁ ଦ୍ୱିଧାର ସହିତ ଦେଖିଲେ ଓ ତା' ପରେ ନିଜର କାଲୁଆ ଦେହରେ ଘଳାଇଦେଲେ ସଙ୍ଗେ ସଙ୍ଗେ, ଉଷୁମ ଅନୁଭବ କଲେ । ନରମ ପରଗୁଡ଼ାକ ତା' ଛାତିରେ, କାନ୍ଧରେ, ଦେହରେ ଲାଗିଯାଉଥାଏ ।

* * *

ରୀତା ଡାଇରୀରେ ଲେଖିଛି :

"ଡିସେମ୍ବର, ୨୦

ତୁହାକୁ ତୁହା ବରଫ ଝଡ଼ ଏବେ ଲାଗିରହିଛି । ପବନ ଓ ବରଫ । ବୋୟାର୍‌କାରେ ସେମାନେ ପ୍ରାୟ ତାଙ୍କର ଲକ୍ଷ୍ୟସ୍ଥଳରେ ପହଞ୍ଚି ଯାଇଥିଲେ, ଝଡ଼ ଯୋଗୁଁ ଅଟକିଗଲେ ବାଧ୍ୟହୋଇ । ବେକଯାଏ ସେମାନେ ନିଜେ ନିଜେ ପ୍ରାୟ ପୋତିହୋଇ ପଡ଼ିଛନ୍ତି । ବରଫ ପଡ଼ି ମାଟି ଏତେ ଟାଣ ହୋଇଯାଇଛି ଯେ, ଖୋଳି ହେଉ ନାହିଁ । ଆଉ ମୋଟେ କିଲୋମିଟରରୁ ତିନିପା ମାତ୍ର ବାକି ଅଛି । ମାତ୍ର ଏଇଟା ସବୁଠାରୁ କଷ୍ଟକର କାମ ।

ତୋକାରେଭ୍ ରିପୋର୍ଟ୍ ଦେଇଛନ୍ତି ଯେ, ସେଠାରେ ଟାଇଫସ୍ ଆରମ୍ଭ ହୋଇଛି, ତିନିଜଣ ସେଥିରେ ବେମାର ।

ଡିସେମ୍ବର, ୨୨

ଆଞ୍ଚଳିକ କମ୍‌ସୋମୋଲ୍ ସମିତିର ଏକ ଅଧିବେଶନ ବସିଥିଲେ । ମାତ୍ର ସେଥିରେ ବୋୟାର୍‌କାରୁ କେହି ଯୋଗ ଦେଇ ନଥିଲେ । ଡକାଏତମାନେ ସେଠାରୁ ମୋଟେ ସତର କିଲୋମିଟର ଦୂରରେ ଏକ ଖାଦ୍ୟଶସ୍ୟ ବୋଝାଇ ରେଳକୁ ଓଲଟାଇ ପକାଇଛନ୍ତି । ଖାଦ୍ୟ ବିଭାଗର ପ୍ରତିନିଧିମଣ୍ଡଳୀ, ସବୁ କାମ କରୁଥିବା ଲୋକଙ୍କୁ ସେଠାକୁ ଯିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ଡିସେମ୍ବର, ୨୩

ବୋୟାର୍‌କାଣ୍ଟୁ ଆହୁରି ସାତଜଣଙ୍କୁ ଟାଇଫସ୍ ହେବାର ଖବର ଆସି ସହରରେ ପହଞ୍ଚିଛି । ସେଥିମଧ୍ୟରୁ ଜଣେ ଓକୁନେଭ୍ । ଷ୍ଟେସନ୍‌କୁ ମୁଁ ଯାଇଥିଲି । ଖାର୍‌କୋଭ୍‌ରୁ ଆସୁଥିବା ରେଳରେ, ଉପରେ ଚଢ଼ି ଆସୁଥିବା ଲୋକମାନେ ଥଣ୍ଡାରେ ମୁର୍ଦ୍ଦାର ପାଲଟି ଯାଇଥିବାର ଦେଖିଲି । ଡାକ୍ତରଖାନା ସବୁ ମଧ୍ୟ ଗରମ ହେଉ ନାହିଁ । ଏ ଅଭିଶପ୍ତ ଝଡ଼ ! କେବେ ବନ୍ଦ ହେବ କେଜାଣି ?

ଡିସେମ୍ବର, ୨୪

ଟିକେ ଆଗରୁ ଝୁଖ୍‌ରାଇକୁ ଭେଟିଲି । ସେ ନିର୍ଭର ଦେଇ କହିଲା ଯେ, ଗତ ରାତିରେ ବୋୟାର୍‌କାଠାରେ ଓର୍ଲିକ୍‌ର ଡକାଏତ ଦଳ ଆକ୍ରମଣ କରିଥିବାର ଯେଉଁ ଗୁଜବ ଶୁଣାଯାଉଛି, ତାହା ସତ୍ୟ । ଦୁଇଘଣ୍ଟା ପାଇଁ ଯୁଦ୍ଧ ହୋଇଛି ।

ଯୋଗାଯୋଗ ସବୁ ବିଛିନ୍ନ ହୋଇଯାଇଛି । ଆଜି ସକାଳ ସୁଦ୍ଧା ସେଥିପାଇଁ ଝୁଖ୍‌ରାଇ ସଠିକ୍ ସମ୍ବାଦ ପାଇପାରି ନଥିଲା । ଡକାଏତ ଦଳ ହାରିଯାଇ ଫେରିଯାଇଛନ୍ତି, ତୋକାରେଭ୍ ଆଘାତପ୍ରାପ୍ତ ହୋଇଛି । ତା' ଛାତି ଭିତର ଦେଇ ଠିକ୍ ଗୋଟାଏ ବୁଲେଟ୍ ଗଳି ବାହାରି ଯାଇଛି । ଆଜି ତାକୁ ସହରକୁ ଅଣାହେବ । ଫ୍ରାନ୍‌ସ କ୍ଲାଭିଚେକ୍ ସେ ରାତିରେ ଜଗୁଆଳୀ ଥିଲା । କୁରାଢ଼ିରେ ହାଣି ତାକୁ କିଏ ମାରି ଦେଇଛି । ସେହି ହିଁ ଡକାଏତ ଦଳକୁ ଦେଖି, ଆମ ଲୋକମାନଙ୍କୁ ସତର୍କ କରି ଦେଇଥିଲା । ଘୋଡ଼ସବାରମାନଙ୍କ ଉପରକୁ ଗୁଳି କରିଥିଲା ସେ । କିନ୍ତୁ ସ୍କୁଲଘର ପାଖରେ ପହଞ୍ଚିବା ଆଗରୁ ତାକୁ ଖଣ୍ଡା ଆଘାତରେ ହତ୍ୟା କଲେ ସେମାନେ । ଏଗାର ଜଣ ଶ୍ରମିକ ଆହତ ହୋଇଛନ୍ତି । ଦୁଇଟି ଅଶ୍ୱାରୋହୀ ବିଭାଗ ଓ ସଶସ୍ତ୍ର ରେଳ ବର୍ତ୍ତମାନ ପାଇଁ ସେଠାରେ ଅଛି ।

ପାନ୍‌କ୍ରାତୋଭ୍ କାମର ଦାୟିତ୍ୱ ନେଇଛି । ଆଜି ଗ୍ଲୁବୋକି ବୋଲି ଗାଁରେ ପୁଜିରେଭ୍‌ସି ଡକାଏତ ଦଳଙ୍କ ଭିତରୁ ସମସ୍ତଙ୍କୁ ଧରି ନିପାତ କରିଛନ୍ତି । କେତେକ ପାର୍ଟିସଭ୍ୟ ନଥିବା ଶ୍ରମିକ ରେଳକୁ ଅପେକ୍ଷା ନକରି ସହରକୁ ବାହାରି ଆସିଛନ୍ତି । ସେମାନେ ରେଳଲାଇନ୍ କଡ଼େକଡ଼େ ପଳାଇ ଆସିଛନ୍ତି ।

ଡିସେମ୍ବର, ୨୫

ତୋକାରେଭ୍ ଓ ଅନ୍ୟାନ୍ୟ ଆହତ ବ୍ୟକ୍ତି ଅଣାହେଲେ । ସେମାନେ ହାସ୍‌ପାତାଳରେ ଭର୍ତ୍ତି ହୋଇଛନ୍ତି । ବୃଦ୍ଧକୁ ବଞ୍ଚାଇ ରଖିବାକୁ ପ୍ରତିଶ୍ରୁତି ଦେଇଛନ୍ତି ଡାକ୍ତରମାନେ । ଏବେ ମଧ୍ୟ ଜ୍ଞାନ ଆସି ନାହିଁ ତାଙ୍କର । ଅନ୍ୟମାନଙ୍କ ଜୀବନ ମଧ୍ୟ ସଙ୍କଟାପନ୍ନ ।

ବୋୟାର୍‌କାରୁ ଗୋଟିଏ ତାର ଆମ ଠିକଣା ଓ ଆଞ୍ଚଳିକ ସମିତି ଠିକଣାରେ ଆସିଲା :

'ଡକାଏତ ଆକ୍ରମଣର ପ୍ରତ୍ୟୁତ୍ତର ପାଇଁ ଆମେ ନ୍ୟାରୋ-ଗଜ ଲାଇନ୍ ନିର୍ମାଣରତ କର୍ମୀଗଣ, ସଶସ୍ତ୍ର ରେଳର ସୈନିକଗଣ ଓ ଲାଲବାହିନୀର ଅଶ୍ୱାରୋହୀ ସୈନିକଗଣ

ଏକତ୍ର ଏହି ସଭାରେ ମିଳିତ ହୋଇ, ଦୃଢ଼ ପ୍ରତିଜ୍ଞାବଦ୍ଧ ହୋଇ ଜଣାଉଛୁ ଯେ, ଯେକୌଣସି ବାଧା, ପ୍ରତିବନ୍ଧକ ଆସିଲେ ମଧ୍ୟ ସାରା ସହର ଜାନୁଆରୀ ପହିଲା ସୁଦ୍ଧା ଜାଳେଣୀ କାଠ ପାଇବ। ଆମର ସମସ୍ତ ଶକ୍ତି ବିନିଯୋଗ କରି କାମରେ ଲାଗୁଛୁ ଆମେ। ଆମକୁ ପଠାଇଥିବା କମ୍ୟୁନିଷ୍ଟ ପାର୍ଟି ଦୀର୍ଘଜୀବୀ ହେଉ!

ସଭାର ସଭାପତି କୋର୍ଚ୍ଚାଗିନ୍ ଓ ସଂପାଦକ ବେର୍ଜିନ୍ ।'

ସୋଲେମେଙ୍କାରେ ସେନାବାହିନୀର ସମ୍ମାନ ପ୍ରଦର୍ଶନ ସହ କ୍ଲାଭିଚେକ୍‌କୁ କବର ଦିଆଗଲା ।"

* * *

ସେହି ବହୁ ଇପ୍‌ସିତ ଲକ୍ଷ୍ୟ ଆଖି ଆଗରେ! ମାତ୍ର ଦୁର୍ଭାଗ୍ୟର କଥା, ସେଠି ପହଞ୍ଚିବା ପାଇଁ ଗତି ଅତି ମନ୍ଥର। ପତିଦିନ ଡର୍ଜନରୁ ଅଧିକ ଅତି ପରିଶ୍ରମୀ କର୍ମୀ ଟାଇଫସ୍‌ର କରାଳ କବଳରେ ପଡ଼ୁଛନ୍ତି ।

ଦିନେ କାମରୁ ଷ୍ଟେସନ୍‌କୁ ଫେରୁଫେରୁ କୋର୍ଚ୍ଚାଗିନ୍‌ର ପାଦ ମଦୁଆଙ୍କ ଭଳି ଏଠିସେଠି ଟଳମଳଭାବରେ ପଡ଼ିଲା। କଷ୍ଟରେ ପାଦ ଚଳୁ ନଥାଏ ତା'ର । କୋଉଦିନୁଁ ତାକୁ ଜ୍ୱର ଲାଗୁଥିଲା। ସେଥିରେ ବି ସେ କାମ କରୁଥିଲା। ଆଜି କିନ୍ତୁ ଜ୍ୱର ସଂପୂର୍ଣ୍ଣଭାବରେ ଗ୍ରାସ କରିଛି ତାକୁ ।

ଲାଇନ୍ ଗଢ଼ୁଥିବା କର୍ମୀମାନଙ୍କ ଭିତରୁ ଅନେକଙ୍କୁ ଗ୍ରାସ କରିସାରିଲା ପରେ, ଟାଇଫସ୍ ନୂଆ ବଳି ଖୋଜୁଥିଲା। ଲଗ୍‌ଲଗ୍ ପାଞ୍ଚଦିନ ଧରି ପାଭେଲ୍‌କୁ ଆକ୍ରମଣ କରିବାକୁ ଚେଷ୍ଟା କରୁଥିଲେ ମଧ୍ୟ ପାଭେଲ୍‌ର ଟାଣୁଆ ଦେହକୁ କାବୁ କରିପାରୁ ନଥିଲା। କୁଟା ବିଛଣାରୁ ଉଠି ପାଭେଲ୍ ସମସ୍ତଙ୍କ ସହିତ ଜରୁଆ ଦେହରେ ମଧ୍ୟ କାମରେ ଯୋଗ ଦେଇପାରୁଥିଲା। ବର୍ତ୍ତମାନ କିନ୍ତୁ ଗରମ ଜ୍ୟାକେଟ୍ ବା ବରଫ ଲାଗି ଘା ହୋଇ ଯାଇଥିବା ପାଦରେ ପିନ୍ଧା ଫେ୍ୟାଦୋର୍ ଦେଇଥିବା ଚମଡ଼ା ବୁଟ୍ କୌଣସି ସାହାଯ୍ୟ ତାକୁ କରିପାରିଲେ ନାହିଁ ।

ପ୍ରତି ପଦକ୍ଷେପରେ ଏକ ଭୟଙ୍କର ଯନ୍ତ୍ରଣାରେ ତା'ର ଛାତି ଯେମିତି ବିଦାରି ହୋଇଯାଉଥିଲା । ଦାନ୍ତ ବାଜିଲା ଠକ୍‌ଠକ୍ ହୋଇ, ଜଳକା ଦିଶିଲା ଆଖିକୁ, ମୁଣ୍ଡ ବୁଲେଇଦେଲା । ତାକୁ ଦେଖାଗଲା, ଯେମିତି ଗଛଗୁଡ଼ାକ ତା' ଚାରିକଡ଼େ ଘୂରି ବୁଲୁଛନ୍ତି ଉପରୁ ତଳକୁ ।

ବହୁ କଷ୍ଟରେ ସେ ନିଜକୁ ଷ୍ଟେସନ୍ ପର୍ଯ୍ୟନ୍ତ ଘୋଷାଡ଼ି ଘୋଷାଡ଼ି ନେଲା । ସେଠାରେ ଅସହ୍ୟ ଯନ୍ତ୍ରଣା ଯୋଗୁଁ ଆଉ ଆଗେଇପାରିଲା ନାହିଁ । ଜରର ଜ୍ୱାଳାରେ ଜଳକା ଆଖିରେ ଝାପସା ଝାପସା ଭାବରେ ତାକୁ ଦିଶିଲା ଏକ ଲମ୍ବା ଟ୍ରେନ୍ ପ୍ଲାଟ୍‌ଫର୍ମରେ ରହିଛି । ଟ୍ରେନ୍‌ଟାରେ ଆସିଥିବା ଲୋକେ ସେଥିରୁ ନ୍ୟାରୋ-ଗଜ ଲାଇନ୍‌ର ଇଞ୍ଜିନ୍, ଧାରଣା, ପହିସବୁ ଓହ୍ଲାଉଛନ୍ତି । ପାଦ ଟଳମଳ ହୋଇଉଠିଲା ତା'ର, ମୁଣ୍ଡଟା ଘୂରାଇଦେଲା ଓ ସେ ଢଳିପଡ଼ିଲା ଭୂଇଁ ଉପରେ । ମୁଣ୍ଡଟା ମାଟିରେ ବାଡ଼େଇ ହୋଇଗଲା ଏବଂ

ଅସାଢ଼ ଯନ୍ତ୍ରଣା ତା'ର ଜରପୋଡ଼ା ଗାଲ ଉପରେ ମେଁ ଗ୍ରମେଁଗ୍ର ଥଣ୍ଡା ବରଫ ଲଗିଯାଇଥିବାର ଅନୁଭବ କରୁଥିଲ ସେ ଶେଷରେ ।

କେଇଘଣ୍ଟା ପରେ ତାକୁ ସେଇ ଅବସ୍ଥାରେ ଦେଖିବାକୁ ମିଳିଲା ଏବଂ ଛାଉଣିକୁ ସ୍ଥାନାନ୍ତରିତ କରାଗଲା । ନିଃଶ୍ୱାସ ଉଠୁଥିଲା ପଡୁଥିଲା ତା'ର, ଜ୍ଞାନ ନଥିଲା । ସଶସ୍ତ୍ର ରେଳରୁ ଡକାହୋଇ ଆସିଥିବା ଡାକ୍ତରଙ୍କ ସହକାରୀ ଆସି ଦେଖିସାରି କହିଲେ, ତାକୁ ନିଉମୋନିୟା ଓ ଟାଇଫସ୍ ଉଭୟ ହୋଇଛି । ଉତ୍ତାପ ୧୦୬ ଡିଗ୍ରୀ ଥିଲା । ଡାକ୍ତରଙ୍କ ସହକାରୀ ଗଣ୍ଠିଗୁଡ଼ାକ ଫୁଲିଯାଇଥିବା ଓ ବେକରେ ଘା' ହୋଇଯାଇଥିବା ଲକ୍ଷ୍ୟ କଲେ । ମାତ୍ର କହିଲେ ଯେ, ନିଉମୋନିୟା ଓ ଟାଇଫସ୍ ତୁଳନାରେ ଇଏ କିଛି ନୁହଁ । ଏଥିରୁ ଯେକୌଣସି ଗୋଟିକ ଜଣକୁ ମାରିଦେବା ପାଇଁ ସମର୍ଥ ।

ସହରରୁ ସଦ୍ୟ ଆସି ପହଞ୍ଚିଥିବା ପାନ୍‌କ୍ରାତୋଭ୍ ଓ ଦୁବାଭା ପାଭେଲ୍‌କୁ ବଞ୍ଚାଇବାକୁ ଯଥାସାଧ୍ୟ ଚେଷ୍ଟା କଲେ ।

ଆଲ୍ୟୋଶା କୋଖାନୋଭ୍‌ସି, ଯେ କି ପାଭେଲ୍‌ର ଏକା ସହରରୁ ଆସିଥିଲା, ତାକୁ ଦାୟିତ୍ୱ ଦିଆହେଲା, ପାଭେଲ୍‌କୁ ନିଜ ଲୋକଙ୍କ ପାଖରେ ପହଞ୍ଚାଇ ଦେବା ପାଇଁ ।

କୋର୍ଚ୍ଚଗିନ୍ ଦଳର ସମସ୍ତଙ୍କ ସହଯୋଗରେ ଓ ମୁଖ୍ୟତଃ ଖୋଲ୍ୟାଭା ସାହାଯ୍ୟରେ ପାନ୍‌କ୍ରାତୋଭ୍ ଏବଂ ଦୁବାଭା ପାଭେଲ୍‌କୁ ଓ ଆଲ୍ୟୋଶାକୁ ଲୋକ ଖୁନ୍ଦାଖୁନ୍ଦି ହୋଇଥିବା ରେଳଡବା ଭିତରେ ପୂରେଇ ଦେଇପାରିଲେ । ଟାଇଫସ୍ ବୋଲି ସନ୍ଦେହ କରି ଯାତ୍ରୀମାନେ ତୀବ୍ରଭାବରେ ବିରୋଧ କରି ଉଠିଲେ ଓ ଅଚେତ ରୋଗୀକୁ ରେଳ ଲାଇନ୍‌ରେ ପକାଇଦେବୁ ବୋଲି ଧମକାଇଲେ ।

ଖୋଲ୍ୟାଭା ସେମାନଙ୍କ ମୁହଁ ଉପରେ ନିଜ ପିସ୍ତଲ୍ ହଲାଇ ହଲାଇ କହିଲା, "ଦେଖ, ତା'ର କୌଣସି ଡିଆଁ ରୋଗ ନୁହଁ, ଆଉ ଦରକାର ପଡ଼ିଲେ ତମ ସମସ୍ତଙ୍କୁ କାଢ଼ି ଫୋପାଡ଼ିଦେଇ ମଧ୍ୟ ତାକୁ ଆମେ ପଠାଇବୁ ଏ ଗାଡ଼ିରେ । ମନେରଖ, ତମ ଭିତରୁ କେହି ଯଦି ଟିପ ଛୁଆଁଇଛ ତା' ଦେହରେ, ସମସ୍ତଙ୍କୁ ଗୋଟି ଗୋଟି କରି ନେଇ ହାଜତ୍‌ରେ ପୂରାଇବୁ । ଦେଖ୍ ଆଲ୍ୟୋଶା, ପାଭେଲ୍‌ର ମାଉଜର ଅଛି, କେହି ଯଦି ତା' ପାଖେ ଲାଗେ, ଗୁଳି କରିବୁ", ଅଧିକ ଜୋର୍ ଦେଇ ଶେଷ କଥାଗୁଡ଼ାକ କହିଲା ଖୋଲ୍ୟାଭା ।

ଧୂଆଁ ଭସ୍‌ଭସ୍ କାଢ଼ି ରେଳଗାଡ଼ି ଗ୍ରଲିଲା । ଶୂନ୍ୟ ପ୍ଲାଟ୍‌ଫର୍ମ ଉପରେ ଛିଡ଼ା ହୋଇଥିବା ଦୁବାଭା ପାଖକୁ ଆସି ପାନ୍‌କ୍ରାତୋଭ୍ କହିଲା :

"କ'ଣ ଭାବୁଛ, ସିଏ ବଞ୍ଚିବ କି ନାହିଁ ?"

କୌଣସି ପ୍ରତ୍ୟୁତ୍ତର ମିଳିଲା ନାହିଁ ।

"ଛାଡ଼ ମିଚ୍ୟାୟ, ଯାହା ହେବାର ହେଲାଣି, ଏବେ ଆମକୁ ସବୁ କଥାର ଉତ୍ତର ଦେବାକୁ ପଡ଼ିବ । ଆଜି ରାତି ଭିତରେ ଏ ଇଞ୍ଜିନ୍‌ଗୁଡ଼ାକ ଗାଡ଼ିରୁ ଓହ୍ଲାଇବାକୁ ପଡ଼ିବ । ସକାଳୁ ଷ୍ଟାର୍ଟକରି ଚଳାଇବା ।"

ରେଳ ରାସ୍ତାର ସମସ୍ତ କର୍ତ୍ତୃପକ୍ଷର ବନ୍ଧୁମାନଙ୍କୁ ଫୋନ୍ କରି ଖୋଲ୍ୟାଭା ଜଣାଇଲା, ଯେପରି କୋର୍ଚ୍ଚାଗିନ୍‌କୁ କୌଣସିଠାରେ ବାଟରେ ଓହ୍ଲାଇ ନ ଦିଅନ୍ତି ଦେଖିବା ପାଇଁ । ଦୃଢ଼ ଜବାବ ପାଇଲା ପରେ ସେ ଶୋଇବାକୁ ଗଲା ।

* *

କୌଣସି ଏକ ରେଳବାଇ ଜଙ୍କ୍‌ସନ୍‌ରେ, ଅଜଣା ଗୋଟିଏ ସୁନ୍ଦର ସୁନେଲୀ କେଶସଂପନ୍ନ ଯୁବକକୁ ଡବାରୁ ତଳକୁ ଲୋକେ ଓହ୍ଲାଇଆଣି ପ୍ଲାଟ୍‌ଫର୍ମ ଉପରେ ଶୁଆଇଦେଲେ । ସିଏ କିଏ ଏବଂ କିପରି ମଲା, କେହି ଜାଣନ୍ତି ନାହିଁ । ଷ୍ଟେସନ୍‌ର କର୍ତ୍ତୃପକ୍ଷଙ୍କ ମଧ୍ୟରୁ ଖୋଲ୍ୟାଭାର ଅନୁରୋଧ ମନେ ପକାଇ, ସେ ଡବା ପାଖକୁ ଦୌଡ଼ିଆସିଲେ । ମାତ୍ର ତରୁଣଟିକୁ ମୃତ ଦେଖି, ଶବକୁ ଶବାଗାରକୁ ପଠାଇବାକୁ ନିର୍ଦ୍ଦେଶ ଦେଲେ ଏବଂ ସଙ୍ଗେ ସଙ୍ଗେ ଖୋଲ୍ୟାଭାକୁ ଫୋନ୍‌ରେ ଜଣାଇଲେ, ତା'ର ବନ୍ଧୁର ମୃତ୍ୟୁ ସମ୍ବାଦ, ଯାହାକୁ ବଞ୍ଚାଇବା ପାଇଁ ସେ ଏତେ ଅଧୀର ଥିଲା ।

ବୋୟାର୍‌କାରୁ ଆଞ୍ଚଳିକ କମିଟି ପାଖକୁ ଏକ ସଂକ୍ଷିପ୍ତ ଟେଲିଗ୍ରାମ୍ ଆସିଲା— କୋର୍ଚ୍ଚାଗିନ୍‌ର ମୃତ୍ୟୁ ସମ୍ବାଦ ବହନ କରି ।

ଇତ୍ୟବସରରେ କିନ୍ତୁ ଆଲ୍ୟୋଶା କୋଖାନୋଭ୍‌ସି ରୁଗ୍‌ଣ କୋର୍ଚ୍ଚାଗିନ୍‌କୁ ନେଇ, ତା'ର ଲୋକଙ୍କୁ ପାଖରେ ପହଞ୍ଚାଇ ଦେଇଥିଲା ଓ ନିଜେ ଜ୍ୱରରେ ପଡ଼ିଗଲା ।

*

"ଜାନୁଆରୀ, ୯

ମୋ ହୃଦୟ କାହିଁକି ଅଧୀର ହେଉଛି ? ଲେଖିବାକୁ ବସିବା ଆଗରୁ ଠିକ୍ ମୁଁ କଇଁକଇଁ ହୋଇ କାନ୍ଦୁଥିଲି । କିଏ ବା ବିଶ୍ୱାସ କରିବ ଯେ, ରୀତା କାନ୍ଦୁଥିଲା ଓ ଏପରି ଅଧୀରା ହୋଇ କାନ୍ଦୁଥିଲା ? ଲୁହ କ'ଣ ସବୁବେଳେ ଦୁର୍ବଳତାର ପ୍ରତୀକ ? ଆଜି ମୋ ଲୁହ ଦୁର୍ବଳତାର ନୁହଁ—ବେଦନାର, ଦୁଃଖର । ଆଜିର ଏ ବିଜୟ ଦିନରେ ଦୁଃଖ ବା କାହିଁକି ? ଶୀତ ଅପସରି ଯାଇଛି ରେଳବାଇ ଷ୍ଟେସନ୍‌ରେ ଗଦାଗଦା ଜାଳେଣୀ କାଠକୁ ଦେଖି । ମୁଁ ଏଇମାତ୍ର ବିଜୟ ଉତ୍ସବରୁ ଫେରୁଛି । ବିରାଟ ଏକ ପୂର୍ଣ୍ଣାଙ୍ଗ ବୈଠକରେ ରେଳବାଇ କର୍ମୀଙ୍କ ମଧ୍ୟରୁ ବୀରମାନଙ୍କୁ ସେଠାରେ ସମ୍ବର୍ଦ୍ଧିତ କରାଯାଉଥିଲା । ଏହା ସୁନିଶ୍ଚିତ ବିଜୟ । ମାତ୍ର ଦୁଇଜଣ ଜୀବନ ଦାନ କଲେ : କ୍ଲାଭିଚେକ୍ ଓ କୋର୍ଚ୍ଚାଗିନ୍ ।

ପାଭେଲ୍‌ର ମୃତ୍ୟୁ ମୋ ଆଖି ଖୋଲିଦେଇଛି । ସେ ମୋର ଅତି ଆପଣାର ଥିଲା, ଏପରିକି ମୁଁ ଯେତେ ଭାବିଥିଲି, ତା'ଠାରୁ ନିଜର ।

ଏବେ ମୋର ଡାଇରୀ ଲେଖା ବନ୍ଦ କରିବି । ଜାଣେ ନାଁ, ଭବିଷ୍ୟତରେ କେବେ ମୁଁ ଆଉ ଏ ଡାଇରୀ ଲେଖିବି କି ନାହିଁ । ୟୁକ୍ରେନୀୟ କମ୍‌ସୋମୋଲ୍‌ର କେନ୍ଦ୍ର କମିଟି ମୋତେ ଦେଇଥିବା କାମ ମୁଁ ଗ୍ରହଣ କରୁଛି ବୋଲି ଜଣାଇ କାଲି ମୁଁ ଖାର୍‌କୋଭ୍‌କୁ ଚିଠି ଲେଖିବି ।"

# ତୃତୀୟ ପରିଚ୍ଛେଦ

ତାରୁଣ୍ୟର ବିଜୟ ହେଲା । ପାଭେଲ୍ ଟାଇଫସ୍ ରୋଗରୁ ମୁକ୍ତିଲାଭ କଲା । ଚତୁର୍ଥ ଥର ପାଇଁ ମୃତ୍ୟୁର ସୀମାରେଖା ଟପି ସେ ଜୀବନକୁ ଫେରିଲା । ପୂରାମାସେ ଲାଗିଗଲା ତାକୁ ବିଛଣା ଛାଡ଼ିବାକୁ । ଶୁଖିଲା ଓ ରକ୍ତହୀନ ହୋଇ, ଦୁର୍ବଳ ଦେହରେ କାନ୍ଥ ଧରିଧରି, ଘର ଭିତରେ ଟଳମଳ ହୋଇ ଚାଲିବାକୁ ସେ ସମର୍ଥ ହେଲା । ମା'କୁ ଧରିଧରି ସେ ଝରକା ପାଖରେ ପହଞ୍ଚି, ଅନେକ ସମୟ ଧରି ରାସ୍ତାକୁ ଚାହିଁରହିଲା । ତରଳି ଯାଉଥିବା ବରଫ ଉପରେ ସୂର୍ଯ୍ୟ କିରଣ ପଡ଼ି ଚିକ୍‌ଚିକ୍ କରୁଛି ବାହାରେ । ସେ ବର୍ଷର ପ୍ରଥମ ଉଷ୍ଣ ପବନ ବହିବାକୁ ଆରମ୍ଭ କରିଥିଲା ।

ଠିକ୍ ଝରକା ଆଗରେ, ଗୋଟାଏ ଚେରୀଗଛ ଶାଖାରେ ବସି ଛୋଟ ଘରଚଟିଆଟାଏ ପାଭେଲ୍ ଆଡ଼କୁ ଅନାଇ ନିଜ ଦେହକୁ ଖୁମ୍ପି ଖୁମ୍ପି ଝାଡ଼ୁଥାଏ ।

"ତା'ହେଲେ, ତୁ ଆଉ ମୁଁ ଏ ଶୀତରେ ବଞ୍ଚିଯାଇଛେ ନାଁ ?" ପାଭେଲ୍ କହିଲା ଝରକା କାଚ ଉପରେ ହାତ ମାରି ।

ମା' ଆଶ୍ଚର୍ଯ୍ୟ ହୋଇ ଅନାଇଲେ ତାକୁ ।

"କାହା ସାଙ୍ଗରେ ଗପୁଛୁ ତୁ ?"

"ଗୋଟାଏ ଘରଚଟିଆ... ଏବେ ସେଇଟା ଉଡ଼ିଗଲା । ଛୋଟିଆଟିଏ !" ଫିକା ହସ ହସିଲା ପାଭେଲ୍ ।

ପୂର୍ଣ୍ଣ ବସନ୍ତ ଆସିଗଲା ପରେ ପାଭେଲ୍ ସ୍ଥିର କଲା ସହରକୁ ଫେରିବାକୁ । ଏବେ ଚାଲିବା ପାଇଁ ଶକ୍ତି ହେଲାଣି ତା'ର । ମାତ୍ର କୌଣସି ଅଜ୍ଞାତ ରୋଗ ତା'ର ଶକ୍ତିକୁ ଊଣା କରାଇଦେଉଛି । ଦିନେ ବଗିଚାରେ ବୁଲବୁଲା କରୁକରୁ ହଠାତ୍ ମେରୁଦଣ୍ଡରେ ଅସହ୍ୟ ଯନ୍ତ୍ରଣା ହେଲା ତା'ର । କୌଣସି ମତେ ପାଦଚଳାଇ ଘରକୁ ଫେରିଆସିଲା । ତା'ର ପରଦିନ ଡାକ୍ତରୀ ପରୀକ୍ଷା କରାଇଲା । ତା' ମେରୁଦଣ୍ଡ ପରୀକ୍ଷା କରି ଏକ ଗଭୀର କ୍ଷତ ଆବିଷ୍କାର କଲେ ଡାକ୍ତର ।

"କେମିତି ହେଲା ଏଇଟା ?" ପଚାରିଲେ ସେ ।

"ରୋଭ୍‌ନୋ ନିକଟରେ ଯୁଦ୍ଧ କଲାବେଳେ । ଆଗରେ ତିନିଇଞ୍ଚିଆ ବନ୍ଧୁକଟାଏ ରାସ୍ତା ଉପରେ ଫୁଟିଲା ଓ ଗୋଟାଏ ବଡ଼ ପଥର ପିଠିରେ ବାଜିଲା ମୋର ।"

"ତମେ କିନ୍ତୁ ଚାଲିଲ କେମିତି ? ଏଯାଏଁ କ'ଣ କୌଣସି କଷ୍ଟ ଦେଇ ନାହିଁ ଏଇଟା ?"

"ନାଁ, ଏଇଟା ଘଟିବାର ଘଣ୍ଟା ଦି'ଘଣ୍ଟା ପର୍ଯ୍ୟନ୍ତ ମୁଁ ଉଠିପାରି ନଥିଲି । ତା'ପରେ କିନ୍ତୁ କିଛି ହେଲା ନାହିଁ । ଉଠିପଡ଼ି ଘୋଡ଼ାରେ ଚଢ଼ିବସିଲି ମୁଁ । ଏଯାଏଁ ତ କୌଣସି କଷ୍ଟ ଲାଗି ନଥିଲା ମୋତେ ।"

ଡାକ୍ତରଙ୍କର ମୁଖମଣ୍ଡଳ ଗମ୍ଭୀର ହୋଇଗଲା, ଅତି ସାବଧାନତା ସହକାରେ କ୍ଷତ ଗାତଟିକୁ ପରୀକ୍ଷା କରୁକରୁ ।

"ଭାରୀ ଖରାପ ଏଇଟା ବନ୍ଧୁ! ମେରୁଦଣ୍ଡଟା ଏମିତି ହେବା କଥା ନୁହଁ, ଭଲ ହୋଇଯିବ ବୋଲି ଆଶା କରୁଛି ।"

ମନର ଭାବ ଗୋପନ ନରଖି, ଆଶଙ୍କାସୂଚକ ଆଖିରେ ରୋଗୀକୁ ଗ୍ହହିଁଲେ ଡାକ୍ତର ।

* * *

ପାଭେଲ୍ ଦିନେ ଦେଖିବାକୁ ଯାଇଥିଲା ତା' ଭାଇ ଆର୍ତେମ୍‌କୁ । ଆର୍ତେମ୍ ଏବେ ତା' ସ୍ତ୍ରୀ ଘର ଲୋକଙ୍କ ସାଙ୍ଗରେ ରହୁଛି । ଆର୍ତେମ୍‌ର ସ୍ତ୍ରୀ ସ୍ତେଶା, ଦରିଦ୍ର କୃଷକ ପରିବାରର ଝିଅ । ପାଭେଲ୍ ଘର ଭିତରକୁ ପଶିଲାବେଳକୁ ଦେଖିଲା, ଅପରିଚ୍ଛନ୍ନ ଅଗଣାରେ ଅସନା ଟେରା ଆଖିଆ ପିଲାଟାଏ ଖେଳୁଥିଲା । ପିଲାଟା ନାକ ସୁଁ ସୁଁ କରି ତାକୁ ଅନାଇଲା ।

"କିଏରେ ତୁ ? ଚୋର କି ?" ପଚାରିଲା ସେ ପିଲାଟା, "ପଳା ଏଠୁ, ନ ହେଲେ ମା' ଏଇନେ ଆସି ମଜା ଛଡ଼େଇଦବ ତୋର ।"

ଛୋଟ ଝରକାଟାଏ ଖୋଲିଗଲା ଏବଂ ଆର୍ତେମ୍ ବାହାରକୁ ଗ୍ହହିଁଲା ।

"ଆରେ ପାଭେଲ୍! ଆ, ଆ ଭିତରକୁ ।"

ଶୁଖିଲା ହଳଦିଆ ଭୂର୍ଜପତ୍ର ଭଳି ମୁହଁର ବୁଢ଼ୀଟିଏ ଚୁଲି ପାଖରେ ବସି କ'ଣ ରାନ୍ଧୁଥିଲା । ପାଭେଲ୍ ଆଡ଼କୁ ସେ ଅନାଇଲା ସନ୍ଦିଗ୍ଧ ଆଖିରେ ଓ ତା'ପରେ ବାସନପତ୍ର ଝଣଝାଣ କରି ନିଜ କାମରେ ଲାଗିଗଲା ।

ଛୋଟ ଛୋଟ ବେଣୀବନ୍ଧା ଝିଅ ଦିଓଟି ଚୁଲିମୁଣ୍ଡ ପର୍ଯ୍ୟନ୍ତ ଉଠିଆସି ଆଗନ୍ତୁକକୁ ଆଶ୍ଚର୍ଯ୍ୟ ପ୍ରଶ୍ନବାଚକ ଆଖିରେ ଅନାଇଲେ ।

ଆର୍ତେମ୍ ଚଉକିରେ ବସିଥିଲା ଓ ଅସ୍ୱସ୍ତିକର ଭାବରେ ଦେଖୁଥିଲା । ସେ ଜାଣେ ଯେ, ତା'ର ମା' ବା ଭାଇ କେହି ଏ ବିବାହକୁ ପସନ୍ଦ କରି ନାହାନ୍ତି । ସେମାନେ ଏପର୍ଯ୍ୟନ୍ତ ବି ବୁଝିପାରି ନଥିଲେ, ଯୁଗ ଯୁଗ ଧରି ସର୍ବହରା ପରିବାରର ପିଲା ଆର୍ତେମ୍ କାହିଁକି ରାଜମିସ୍ତ୍ରୀର ସୁନ୍ଦରୀ ଝିଅ ଗାଲ୍ୟାକୁ, ଯାହାକୁ ସେ ତିନିବର୍ଷ ଧରି ଭଲ ପାଉଥିଲା, ତାକୁ ଛାଡ଼ି ସ୍ତେଶା ଭଳି ନିର୍ବୋଧ ଓ ବୁଦ୍ଧୁ ଝିଅକୁ ବାହାହେଲା । କାହିଁକି ବା ଏ ପାଞ୍ଚଜଣିଆ ପରିବାରର ପ୍ରତିପୋଷଣ ପାଇଁ ଆଗେଇ ଆସିଛି । ଏବେ ପୁଣି ରେଳବାଇ କାରଖାନାରେ ଦିନସାରା ହାଡ଼ଭଙ୍ଗା ଖଟଣୀ ପରେ ତାକୁ ହଳ ଧରିବାକୁ ପଡ଼ୁଛି, ଅଳ୍ପ ଜମି ଯାହା ଅଛି, ତାକୁ ଚାଷ କରିବାକୁ ।

ଆର୍ତେମ୍ ଜାଣେ ଯେ, ପାଭେଲ୍ ତା'ର ଏ ବିଚ୍ୟୁତିକୁ ପସନ୍ଦ କରୁ ନାହିଁ ଓ ଯାକୁ ସେ କହିଥାଏ 'ପେଟି-ବୁର୍ଜୁଆ ମନୋଭାବ' ବୋଲି । ତା ଭାଇର ପରିବେଶକୁ ପାଭେଲ୍ କିପରିଭାବେ ବିଚ୍ଚର କରୁଛି, ଆର୍ତେମ୍ ଲକ୍ଷ୍ୟ କଲା ।

କିଛି ସମୟ ଏକାଠି ବସି ସେ ଦୁହେଁ ସୁଖଦୁଃଖ ହେଲେ । ପାଭେଲ୍ ଏଥର ବିଦାୟ ମାଗିଲା । ଆର୍ତେମ୍ କିନ୍ତୁ ଅଟକାଇଲା ତାକୁ ।

"ଆରେ ରହିଥା, ଆମ ସାଙ୍ଗରେ କ'ଣ ଟିକେ ପାଟିରେ ପକା ! ସ୍ତେଶା ଯାଇଛି, ଦୁଧ ନେଇ ବର୍ତ୍ତମାନ ଫେରିବ । ଆଉ... ତୁ ତା' ହେଲେ କାଲି ପୁଣି ବାହାରୁଛୁ ସହରକୁ ? ତୋର ଟିକେ ଦେହ ଦମ୍ଭ ହେଲଣି ତ ରେ ପାଭ୍କା ?"

ସ୍ତେଶା ପଶିଆସିଲା ଭିତରକୁ । ପାଭେଲ୍‌କୁ ଅଭିବାଦନ ଜଣାଇଲା ସେ ଆଉ ଆର୍ତେମ୍‌କୁ ଡାକିଲା, ତା' ସାଙ୍ଗେ ଖଳାକୁ ଯାଇ କ'ଣ ଗୋଟାଏ ଆଣିବାକୁ । ଆର୍ତେମ୍ ବାହାରକୁ ଗଲା ପରେ ପାଭେଲ୍ ଏକାକୀ ରହିଗଲା ସେ ଗେନ୍ଦରାମୁହାଁ ବୁଢ଼ୀ ସହିତ । ଝରକାବାଟ ଦେଇ ଗିର୍ଜା ଘଣ୍ଟି ବାଜିବାର ଶବ୍ଦ ଭାସିଆସିଲା । ବୁଢ଼ୀ ସାଙ୍ଗେସାଙ୍ଗେ ନିଆଁ ଖୁଣ୍ଟାଟାକୁ ରଖି ବିରକ୍ତିକର ଗଳାରେ ବିଡ଼ବିଡ଼ କରି ଉଠିଲା :

"ହେ ଭଗବାନ୍, ଘର ଗୋଟାକର ଜଞ୍ଜାଳ ମୁଣ୍ଡରେ ମୁଣ୍ଡାଇ, କେତେବେଳେ ଟିକେ ଫୁରସତ୍ ପାଉଛି ତମ ନାଁ ନବାକୁ", ଦେହରୁ ଶାଲଟା କାଢ଼ିଦେଲା ସେ, କଣେଇକରି ଚାହିଁଲା ଆଗନ୍ତୁକକୁ । ତା'ପରେ ଉଠିଆସିଲା ଘରର ଗୋଟିଏ କଣକୁ, ଯେଉଁଠି ସବୁ ଠାକୁର ଦେବତାଙ୍କ ଫଟୋ ଟଙ୍ଗା ହୋଇଥିଲା । ନିଜର ତିନୋଟି ହାଡ଼ୁଆ ହାଡ଼ୁଆ ଆଙ୍ଗୁଠିରେ ନିଜ ଛାତିରେ କ୍ରୁଶଚିହ୍ନ ଅଙ୍କନ କଲା ।

"ହେ ପ୍ରଭୁ ! ତମ ନାମର ଜୟ ହେଉ", ଅସ୍ଫୁଟ ସ୍ୱରରେ କହିଲା ବୁଢ଼ୀ ।

ଅଗଣାରେ ଖେଳୁଥିବା ପିଲାଟା ଗୋଟାଏ କଳା କାନଝୁଲା ଘୁଷୁରିକୁ ଘୋଷାରି ଆଣି ତା'ଉପରେ ଚଢ଼ିବସିଲା । ତା'ପରେ ଦୌଡ଼ି ପଳାଉଥିବା ଘୁଷୁରିଟାକୁ "ଗ୍ଲା-ଗ୍ଲା-ଗ୍ଲା" ବୋଲି ଚିତ୍କାର କରିଉଠିଲା ।

ପିଠିରେ ପିଲାଟାକୁ ବସାଇ ଘୁଷୁରିଟା ଉନ୍ମତ୍ତ ହୋଇ ଅଗଣାସାରା ଦୌଡ଼ିବାକୁ ଲାଗିଲା, ପିଲାଟାକୁ କୌଣସି ମତେ ପିଠିରୁ ପକାଇଦେବାର ଚେଷ୍ଟାରେ । ମାତ୍ର ବଜ୍ଜାତ୍ ପିଲାଟା ଟାଣ କରି ଧରି ବସିଥାଏ ।

ବୁଢ଼ୀ ଏ ଶବ୍ଦରେ ପ୍ରାର୍ଥନା ବନ୍ଦ ରଖି, ଝରକାବାଟେ ମୁହଁ ଗଳାଇ ଚାହିଁଲା ।

"ଘୁଷୁରିଟା ପିଠିରୁ ଓହ୍ଲାଉଛୁ ନାଁ... ଦେଖିବୁ ? ପିଠିରୁ ଛାଲ ଉଭାରିଦେବି । ବଜାରୀ କୋଉଠିକାର !"

ଶେଷକୁ ଘୁଷୁରିଟା ପିଲାଟାକୁ ଗଡ଼ାଇ ପକାଇଲା ପିଠି ଉପରୁ । ବୁଢ଼ୀ ଶାନ୍ତ ହୋଇ ତା' ପ୍ରାର୍ଥନା ଜାଗାକୁ ଫେରିଆସି ପୁଣି ପ୍ରାର୍ଥନା ଆରମ୍ଭ କଲା :

"ଭଗବାନ... ତମ ପବିତ୍ର ରାଜ୍ୟ..."

ଠିକ୍ ଏତିକିବେଳେ, ପିଲାଟା ଦୁଆରମୁହଁକୁ ଆସିଲା ଲୁହ ଛଳଛଳ ଆଖିରେ । ନାକରୁ ବୋହିଆସୁଥିବା ସିଂଘାଣିକୁ ଜାମା ହାତରେ ପୋଛିପୋଛି, କାନ୍ଦି କାନ୍ଦି ଆସିଲା ସେ, କହି କହି :

"ଜେଜେମା, ମୋତେ ଖଣ୍ଡେ ପିଠା ଦେ !"

ଚିଡ଼ିଉଠି, ରାଗରେ ବୁଢ଼ୀ ଅନାଇଲା ତା' ଆଡ଼କୁ । "ତୋତେ ଦିଶୁ ନାହିଁ କି ମୁଁ ପୂଜା କରୁଛି ବୋଲି ? ତୋତେ ଏତିକିବେଳେ ଯାଇ ପିଠା ଦେବି ନାଁ ?" କହି ବେଞ୍ଚ ତଳୁ ଗୋଟାଏ ଛାଟ ଘୋଷାରି ଆଣିଲା । ପିଲାଟା ଦୌଡ଼ି ପଳାଇଲାଣି ସେତେବେଳକୁ । ଝିଅ ଦୁଇଟି ଚୁଲୀ ଉପରେ ବସି ଫେଁ ଫେଁ କରି ହସୁଥିଲେ ।

ବୁଢ଼ୀ ପୁଣି ପୂଜା ଆରମ୍ଭ କଲା ତୃତୀୟ ଥର ପାଇଁ ।

ପାଭେଲ୍ ଭାଇକୁ ଅପେକ୍ଷା ନକରି ବାହାରକୁ ବାହାରି ଆସିଲା ସିଧାସଳଖ । ବାହାରକୁ ଗଲାବେଳେ ଫାଟକଟା ବନ୍ଦ କରିଦେବା ଶବ୍ଦରେ ଲକ୍ଷ୍ୟ କଲା, ବୁଢ଼ୀ ତାକୁ ସନ୍ଦେହମିଶା ଆଖିରେ ଚାହିଁଛି ।

"ଆର୍ତେମ୍‌କୁ ଏଠିକି ଆସିବାକୁ କି ଭୂତ ଲାଗିଲା ?" ମନେ ମନେ କ୍ଷୁବ୍ଧ ହୋଇ ଭାବୁଥିଲା ସେ, "ଏବେ ସାରା ଜୀବନଟା ସେ ଏଇଠି ଏଇ ବନ୍ଧନରେ ପଡ଼ିଥିବ । ବର୍ଷକୁ ବର୍ଷ ସେଣ୍ଠାର ଛୁଆଟିଏ ହେଉଥିବ । ଆର୍ତେମ୍ ଧୀରେ ଧୀରେ ଏଇଥିରେ ଜଡ଼ିତ ହୋଇଯାଉଥିବ ମାଛି ଭଳି । ରେଳବାଇ କାମଟା ତ ସିଏ ଛାଡ଼ିଦେଇପାରେ", ଚାଲୁଚାଲୁ ମନକୁ ମନ କହୁଥିଲା ସେ, "ଏଥିରେ ପୁଣି ମୁଁ ଭାବିଥିଲି ତାକୁ କିଛି କିଛି ରାଜନୈତିକ କାମ କରାଇବି ବୋଲି ।"

ମନ ତା'ର ଉତ୍‌ଫୁଲ୍ଲ ହୋଇଉଠିଲା, ଆଗାମୀ କାଲି ପୁଣି ସେ ବଡ଼ ସହରକୁ ଫେରିଯାଉଛି ବୋଲି । ପୁରୁଣା ବନ୍ଧୁ, କମ୍ରେଡ୍‌ମାନଙ୍କୁ ଭେଟିବ, ଯେଉଁମାନେ ତା'ର ଅତି ଆପଣାର । ବଡ଼ ସହରଟାର କର୍ମତତ୍ପରତା, ଜୀବନର ଉଚ୍ଛଳତା, ପ୍ରାଣପ୍ରାଚୁର୍ଯ୍ୟ, ମାନବିକତାର ସ୍ରୋତ, ଟ୍ରାମ୍, ବସ୍, ଟ୍ରେନ୍ ସବୁ ଯେମିତି ଚୁମ୍ବକ ଭଳି ଟାଣିଲେ ତାକୁ । ବେଶି ଆକର୍ଷଣ କରୁଥିଲେ, ଇଟା-ଚୂନ ଗଢ଼ା କାରଖାନାଗୁଡ଼ାକ, ତା'ର ଯନ୍ତ୍ରପାତି, ବିରାଟ ଚକାଗୁଡ଼ାକ, ଟ୍ରାନ୍‌ସମିସନ୍ ବେଲ୍ଟ । କାରଣ ସେସବୁ ତା'ର ଜୀବନର ଅଙ୍ଗ ଭଳି ହୋଇଯାଇଥିଲେ । ଏ ଛୋଟ ସହରର ନିସ୍ତରଙ୍ଗ ଜୀବନ, ଯାହାର ରାଜ ରାସ୍ତାରେ ଏଇ ବର୍ତ୍ତମାନ ଚାଲୁଛି ସେ, କେମିତି ହତାଶା ଆଣିଦେଉଥିଲା ମନରେ । ତାକୁ ଲାଗୁଥିଲା, ଏଠି ଯେମିତି ସେ ଜଣେ ଅଚିହ୍ନା ଆଗନ୍ତୁକ । ନୂଆ ଲୋକ । ଏଣେତେଣେ ବୁଲିବା ମଧ୍ୟ କଷ୍ଟକର ଏଠି—ଗଲାବେଳେ ରାସ୍ତାରେ, ରାସ୍ତାକଡ଼ ଘରମାନଙ୍କର ଘରଣୀମାନଙ୍କ ଭୁଟୁରୁଭାଟୁରୁ କଥାବାର୍ତ୍ତା କାନରେ ବାଜିଯାଏ ।

"କିଏ ମ ଏଇ ଧେଡ଼େଙ୍ଗାଟା ?"

"ଅନେକ ଦିନ ଧରି ବୋଧହୁଏ ଭୋଗୁଥିଲା ରୋଗରେ । ସେଇଥି ପାଇଁ ଧେଡ଼େଙ୍ଗା ହୋଇଯାଇଛି ।"

"ଏଡ଼େ ସୁନ୍ଦରିଆ ଜ୍ୟାକେଟ୍‌ଟା ... ଯା'ର ହୋଇ ନଥିବ ମ । କୋଉଠୁ ନିଶ୍ଚେ ଚୋରେଇ ଆଣିଛି ।"

ଏବଂ ଏଇଭଳି ଆହୁରି ଅନେକ ବାଜେ କଥା । ଏସବୁ ପାଭେଲ୍‌କୁ ଭଲ ଲାଗେ ନାହିଁ ।

ଅନେକ ଆଗରୁ ସେ ନିଜକୁ ଏଭଳି ଅର୍ଥହୀନ କଥାରୁ ବାହାର କରିନେଇଛି । ସେଇଥି ପାଇଁ ସହରର ମଜଦୁର, ନିଜର କମ୍ରେଡ୍‌ମାନଙ୍କ ସହିତ ତା'ର ଅଚ୍ଛେଦ୍ୟ ବନ୍ଧନ ତାକୁ ସଦାସର୍ବଦା ଆକୃଷ୍ଟ କରେ । ସେମାନଙ୍କ ସହିତ ତା'ର ସଂପର୍କ ନିବିଡ଼ ।

ଚାଲୁ ଚାଲୁ ସେ ପାଇନ୍‌ବଣ ପାଖରେ ପହଞ୍ଚିଗଲାଣି କେତେବେଳେ । ନିମିଷକ ପାଇଁ ରାସ୍ତାବାଙ୍କ ନିକଟରେ ଠିଆ ହେଲା ସେ । ଆଗରେ, ଡାହାଣ କଡ଼କୁ ତା'ର ଡାହାଣରେ ପୁରୁଣା ଜେଲ୍‌ଖାନା – ଚାରିପାଖରେ ଉଚ୍ଚ ଉଚ୍ଚ କାଠ ବେଢ଼ା ଦ୍ୱାରା ବଣଠାରୁ ବିଚ୍ଛିନ୍ନ । ପଛକୁ ଡାକ୍ତରଖାନାର ବଡ଼ ଧଳା କୋଠାଟା ।

ଠିକ୍ ଏହିଠାରେ ଭାଲ୍ୟା ଓ ତା'ର କମ୍ରେଡ୍‌ମାନଙ୍କୁ ପ୍ରକାଶ୍ୟରେ ଫାଶି ଦିଆହୋଇଥିଲା । ଫାଶିଖୁଣ୍ଟ ଯେଉଁଠି ଥିଲା, ଠିକ୍ ସେହି ଜାଗାରେ ପାଭେଲ୍ କିଛି ସମୟ ପାଇଁ ଛିଡ଼ା ହୋଇ ରହିଲା । ତା'ପରେ ଆଗେଇଯାଇ, ଯେଉଁ ଛୋଟିଆ କବର ଗଛିରେ ସେମାନଙ୍କୁ ପୋତା ଯାଇଥିଲା, ସେଠାରେ ପହଞ୍ଚିଲା ।

କିଏ ଯେମିତି ଅସୀମ ଶ୍ରଦ୍ଧାରେ ଏବେ ତା' ଉପରେ ବିଛେଇ ଦେଇଛି ଫାର୍‌ଗଛର କଣ୍ଟାଡାଳ ଏବଂ ଚାରିପଟେ କରିଦେଇଛନ୍ତି ଛୋଟ ଘନ ସବୁଜ ବାଡ଼ । କୂଦଟି ଉପରେ ଉଠିଯାଇଛନ୍ତି ପାଇନ୍ ଗଛ ସବୁ ସିଧାସଳଖ ହୋଇ ଏବଂ ବିଛେଇ ହୋଇ ପଡ଼ିଛି କଣ୍ଟା ଘାସର ରେଶମୀ ସବୁଜ ଗାଲିଚ୍ଚ ।

ସହର ବାହାରେ ଏକ ବିଷଣ୍ଣ ନିରବତା । ନବୀନା ଧରିତ୍ରୀ ବକ୍ଷରୁ ନବ ବସନ୍ତର ହିଲ୍ଲୋଳ ବହିଆସୁଥାଏ । ଏଇଠି ଠିକ୍ ପାଭେଲ୍‌ର କମ୍ରେଡ୍‌ମାନେ ବୀରର ମରଣ ବରଣ କରିଛନ୍ତି, ଦାରିଦ୍ର୍ୟ ମଧ୍ୟରେ ଜନ୍ମିଥିବା ଏବଂ ଦାସତ୍ୱର ଶୃଙ୍ଖଳରେ ସଢ଼ୁଥିବା ଲୋକମାନଙ୍କର ଜୀବନକୁ ସରସ ସୁନ୍ଦର କରିବା ପାଇଁ ।

ବେଦନାରେ ଭାରାକ୍ରାନ୍ତ ହୋଇଉଠିଲା ପାଭେଲ୍‌ର ହୃଦୟ । ମୁଣ୍ଡରୁ ଟୋପି କାଢ଼ି ସଶ୍ରଦ୍ଧ ପ୍ରଣତି ଜଣାଇଲା ସେ ।

ମଣିଷର ଜୀବନ ବହୁ ମୂଲ୍ୟବାନ । ଜୀବନ ଥରେ ଆସେ । ତେଣୁ ତାକୁ ଏପରିଭାବରେ ବଞ୍ଚିବାକୁ ହେବ, ଯେପରି ସେ ମହାର୍ଘ ଜୀବନ ବ୍ୟର୍ଥ ନ ହୋଇଯାଏ, ଯେପରି ଅତୀତର ହତାଶା, ବ୍ୟର୍ଥତାର ପୁଞ୍ଜିଭୂତ ଗ୍ଲାନି ତାକୁ ଅବସାଦଗ୍ରସ୍ତ ନକରେ ! ତାକୁ ଏଭଳି ବଞ୍ଚିବା ପାଇଁ ପଡ଼ିବ, ଯେପରି ମୃତ୍ୟୁ ସମୟରେ ସେ ହସିହସି କହିପାରିବ, ମୋର ସମଗ୍ର ଜୀବନ, ସମସ୍ତ ଶକ୍ତି, ମୁଁ ବିଶ୍ୱର ସର୍ବଶ୍ରେଷ୍ଠ କାମ ପାଇଁ ନିୟୋଜିତ କରିଛି – ମାନବ ସମାଜର ମୁକ୍ତି ପାଇଁ ବିନିଯୋଗ କରିଛି ! ଜୀବନର ପ୍ରତିଟି ମୁହୂର୍ତ୍ତ ଏଣୁ ଭଲଭାବରେ ବିତାଇବାକୁ ପଡ଼ିବ, ନଚେତ୍ କାଳେ, ଅକସ୍ମାତ୍ କୌଣସି ବ୍ୟାଧି କିମ୍ବା ମର୍ମନ୍ତୁଦ ଦୁର୍ଘଟଣାରେ ସେ ମୂଲ୍ୟବାନ ଜୀବନ ନିଃଶେଷ ହୋଇଯାଏ !

ଏହି ସଂକଳ୍ପ ନେଇ କୋର୍ଚ୍ଚାଗିନ୍ ଫେରିଲା ଶହୀଦମାନଙ୍କର କବରରୁ ।

* * *

ଘରେ ତା'ର ମା ମନଦୁଃଖରେ ପୁଅ ଯିବ ବୋଲି ଜିନିଷପତ୍ର ସଜଡ଼ାସଜଡ଼ି କରୁଥିଲେ । ତାଙ୍କୁ ଲକ୍ଷ୍ୟ କରି ପାଭେଲ୍ ଦେଖିଲା, ସେ ଉଦ୍‌ଗତ ଅଶ୍ରୁକୁ ତା' ନିକଟରୁ ଲୁଗାଇ ରଖୁଛନ୍ତି ।

"ତୁ ରହିଯିବୁ କି ପୁଅ ?" ସାହସ କରି ପଗ୍ଭରିଲେ ସେ, "ଏ ବୁଢ଼ାଦିନରେ ଏକୁଟିଆ ବଞ୍ଚିବାକୁ ମୋତେ ଭାରୀ କଷ୍ଟ ହୋଇଛି । ଯେତେ ପୁଅ ଥିଲେ କ'ଣ ହେବ ? ବଡ଼ ହେଲେ ଯେଝା ବାଟ ଯିଏ ଧରନ୍ତି । କାହିଁକି ଭଲା ତୁ ସହରକୁ ଧାଇଁଛୁ ? ଏଠି ତ ତୁ ରହିପାରନ୍ତୁ । ସେଠି କ'ଣ କୋଉ ବବ୍‌କଟା ସୁକେଶୀ ମାଗ୍‌ପାଇ ପକ୍ଷୀ ତୋଠେଇଁ ଲେଳିକି ଇଗେଇଛି କିରେ ? ଆରେ ... ତମେ ଟୋକାଗୁଡ଼ାକ ତମ ବୁଢ଼ୀ ମା'ଟାକୁ ଲୁଗ୍ଭଉଛ କାହିଁକି ? ଆର୍ଟେମ୍ ତ ମୋତେ ପଦେ ବି ନକହି ବାହା ହେଲା ତା'ର । ତମେ ଅସୁବିଧା ଭୋଗିଲେ କେବଳ ମୁଁ ସିନା ଦେଖିବି ?"

ସଫାସୁତୁରା ବ୍ୟାଗଟିରେ ଅଳ୍ପ ଜିନିଷ ତା'ର ଭର୍ତ୍ତି କରୁ କରୁ ମା' ଦୁଃଖରେ କହୁଥାନ୍ତି ।

"ନା କୌଣସି ମାଗ୍‌ପାଇ ପକ୍ଷୀ ଫକ୍ଷୀ ନାହିଁ ମା' । ତୁ କ'ଣ ଜାଣିନୁଁ, ଚଢ଼େଇମାନେ ବି ତାଙ୍କ ନିଜ ଜାତି ମଧ୍ୟରୁ ସାଙ୍ଗ ବାଛି ନିଅନ୍ତି । ତୁ କ'ଣ କହୁଛୁ ମୁଁ ଗୋଟାଏ ମାଗ୍‌ପାଇ ?"

ଏତେ ଦୁଃଖରେ ବି ମା' ହସିଲେ ।

"ନାହିଁ ମଁ ମା ... ମୁଁ ପରା ମୋ ସାଙ୍ଗକୁ ସବୁ ପ୍ରତିଜ୍ଞା କରି କହିଛି, ସାରା ପୃଥିବୀରୁ ଏ ବୁର୍ଜୁଆଗୁଡ଼ାକୁ ଶେଷ ନକଲା ଯାଏ ଝିଅଙ୍କ ମୁହଁକୁ ଅନାଇବି ନାହିଁ । ସେଥିପାଇଁ ତ ଅନେକ ଦିନ ଲାଗିବ ... କହୁନୁ ? ନାଁ ନାଁ ... ସେମାନଙ୍କର ଆଉ ବେଶି ଦିନ ନୁହେଁ । ଆଉ ଅଳ୍ପଦିନ ପରେ ଦୁନିଆର ସବୁ ମଣିଷଙ୍କ ପାଇଁ ଗୋଟାଏ ସାଧାରଣତନ୍ତ୍ର ପ୍ରତିଷ୍ଠିତ ହେବ । ତମେ ସବୁ ବୁଢ଼ାବୁଢ଼ୀ, ଯେଉଁମାନେ ସାରା ଜୀବନ ଖଟିଛ, ତମକୁ ଇଟାଲୀକୁ ପଠାଯିବ – ସମୁଦ୍ର କୂଳର ସୁନ୍ଦର, ଉଷ୍ମ ରାଜ୍ୟ । ସେଠି ଜମା ଶୀତ ନାହିଁ । ଆଉ ତମକୁ ଆମେ ନେଇ ରଖିବୁ ଧନୀଲୋକଙ୍କର ବଡ଼ ବଡ଼ ଘରମାନଙ୍କରେ । ବୁଝିଲୁ ମା ? ତମେ ଖରା ପୋହିବ । ତୁମର ହାଡ଼ରୁ ସବୁ ଛଡ଼ାଇବ ଶୋଇଶୋଇ । ଆମେ ଯାଇ ଆମେରିକାରୁ ସବୁ ବୁର୍ଜୁଆଙ୍କୁ ନିପାତ କରିବୁ ।"

"ଇଏତ ବେଶ୍ ସୁନ୍ଦର ଆଇମା କାହାଣୀ ରେ ପୁଅ । ମୁଁ ସେତେବେଳକୁ ବଞ୍ଚିଥିଲେ ହେଲା ! ତୋ ଜାହାଜୀ ଜେଜେ ଭଳିଆ ତୁ ବି ବଡ଼ ବଡ଼ କଥା କହୁ ସବୁବେଳେ । ସିଏ ବି ତୋ'ରି ଭଳି ଗପୁଥିଲା । ପୂରାପୂରି ଗୁଣ୍ଡାଟାଏ । ଦିନେ ସେଭାସ୍ତୋପୋଲ୍ ଯୁଦ୍ଧରୁ ଫେରିଲାବେଳକୁ ଛାତିରେ ଦିଇଟା କ୍ରୁଶ ଆଉ ଦିଇଟା ରୂପା ପଦକ ଝୁଲାଇ ଫେରିଲା । କିନ୍ତୁ ହରାଇ ଆସିଥିଲା ଗୋଟାଏ ଗୋଡ଼ ଆଉ ଗୋଟାଏ ହାତ । ମରିଗଲା ବିଚରା ଦାରିଦ୍ର୍ୟ ଭିତରେ । ବଦ୍‌ମିଜାଜୀ ଏମିତି ଯେ ଦିନେ ତା' କ୍ରଚ୍‌ରେ ଗୋଟାଏ ଅଫିସର

ମୁଣ୍ଡ ଫଟେଇ ବର୍ଷେ ଜେଲ ଭୋଗିଲ । ତା' ମିଲିଟାରୀ କୁଣ୍ଡ ବି ସେଥିରେ ତାକୁ ସାହାଯ୍ୟ କଲା ନାହିଁ । ତୁ ଯେ ତୋ ଜେଜେ ଭଳିଆ ହୋଇଛୁ, ଏଥିରେ ଟିକିଏ ସନ୍ଦେହ ନାହିଁ ।"

"ହଉ ମା', ଏମିତି ଦୁଃଖରେ ଗୋଟାଏ ବିଦାବିଦି ହେବି ନାଁ ? ମୋ ଆକର୍ଡିଆନ୍‌ଟା ଆଣିଦେଲୁ ମୋତେ । କୋଉ କାଳରୁ ସେଥିରେ ହାତ ଦେଇ ନାହିଁ ।"

ଆକର୍ଡିଆନ୍‌ର ଗ୍ରବିଗୁଡ଼ିକ ଉପରକୁ ଝୁଙ୍କିପଡ଼ି, ସେ ବଜେଇବାକୁ ଆରମ୍ଭ କରିଦେଲ । ଶୁଣୁଶୁଣୁ ମା' ତା'ର ଅନୁଭବ କରୁଥିଲ ଯେ, ସେ ଆଜି ଏକ ନୂଆ ସୁର ବଜାଉଛି ।

ମନମଚାଣିଆ, ମଉଜିଆ, ଗହଳି କଲରଳି ସୁରସବୁ, ଯେଉଁଥିପାଇଁ ତାକୁ ସମସ୍ତେ ଏତେ ଭଲ ପାଉଥିଲେ ପିଲଦିନେ । ସବୁ ବୁଆଡ଼େ ମରିହଜି ଗଲେଣି, ତା'ର ଆଙ୍ଗୁଳିରେ ସେହି ଶକ୍ତି ଅଛି । ମନରେ ସେଇ ସାମର୍ଥ୍ୟ ଅଛି । ହେଲେ ବର୍ତ୍ତମାନର ସୁର ଆହୁରି ଗଭୀର, ଅନେକ ଗମ୍ଭୀର ।

* * *

ଏକାଟିଆ ଷ୍ଟେସନ୍‌କୁ ଗଲ ପାଭେଲ୍ । ମା'କୁ ଯିବାକୁ ବାରଣ କଲ ସେ, କାରଣ ସେଠାରେ ବିଦାୟ ନେଲବେଳେ ମା' ସହିପାରିବ ନାହିଁ ଆଦୌ ।

ଅପେକ୍ଷମାଣ ଜନତା ଠେଲପେଲ ହୋଇ ରେଳଗାଡ଼ି ଭିତରକୁ ପଶିଗଲେ । ଗୋଟାଏ ତବାର ସବା ଉପର ସିଟ୍‌ରେ ଚଢ଼ି, ଲୋକଙ୍କର ପାଟିଗୋଳ ଓ ଗହଳଚହଳ ଦେଖିବାକୁ ଲଗିଲ । ଉତ୍ତେଜିତ ହୋଇ ଯାତ୍ରୀମାନେ ନାନା ଅଙ୍ଗଭଙ୍ଗୀ କରି, କିଏ କାହାକୁ ସବୁ କ'ଣ କହିଯାଉଥାନ୍ତି ।

ସାଧାରଣଭାବରେ, ଯିଏ ଯେଝାର ମାଲପତ୍ର ସବୁ ବଡ଼ ବଡ଼ ଗଣ୍ଠିରି କରି ଆଣିଥାନ୍ତି, ତାକୁ ସବୁ ସିଟ୍ ତଳକୁ ଠେଲି ଦେଉଥାନ୍ତି ।

ରେଳ ଗ୍ରଳିବା ମାତ୍ରେ ଗହଳି ଥମିଗଲ । ଯାତ୍ରୀମାନେ ନିଜ ନିଜର ଜାଗାରେ ବସି ଖାଦ୍ୟ ପୁଡ଼ିଆ ଫିଟାଇ ଖାଇବା ଆରମ୍ଭ କରିଦେଲେ । ପାଭେଲ୍ ଶୋଇପଡ଼ିଲ ।

* * *

କିଏଭ୍‌ରେ ପହଞ୍ଚି ପାଭେଲ୍ ପ୍ରଥମେ ଗଲ ସହରର କେନ୍ଦ୍ର କ୍ରେଷ୍ଟାତିକ୍ ଷ୍ଟ୍ରିଟ୍‌କୁ । ଧୀରେ ଧୀରେ ପୋଲ ଉପରେ ଚଢ଼ିଲ ସେ । ସବୁ ଯେମିତି ଥିଲ, ସେମିତି ଅଛି । କିଛି ପରିବର୍ତ୍ତନ ହୋଇ ନାହିଁ । ପୋଲର ବାଡ଼ାରେ ହାତ ଦେଇ ଦେଇ ଅତିକ୍ରମ କଲ ସେ । ତା' ବ୍ୟତୀତ ଦ୍ୱିତୀୟ ବ୍ୟକ୍ତି କେହି ପୋଲ ଉପରେ ନଥିଲେ ।

ଓହ୍ଲାଇଲ ବେଳେ ଦଣ୍ଡେ ଅଟକିଯାଇ ସେ ପୋଲ ଉପରୁ ଗ୍ରରିଆଡ଼ର ମନୋରମ ଦୃଶ୍ୟ ଉପରେ ଆଖି ବୁଲଇ ଆଣିଲ । ଦିଗ୍‌ବଳୟ କଳା ଭେଲ୍‌ଭେଟ୍ ପରଦାରେ ଢାଙ୍କି ହୋଇଯାଇଛି । ତାରାଗୁଡ଼ାକ ଆଖିମିଟିକା ମାରୁଛନ୍ତି । ବହୁ ଦୂରରେ ଯେଉଁଠି ଆକାଶ ଧରିତ୍ରୀ ଛାତିରେ ମିଶିଯାଇଛି, ସେହିଠାରୁ ସତେ ଯେମିତି କିଏଭ୍ ସହରର ଶତ ସହସ୍ର

ଆଲୋକ ବିଚ୍ଛୁରିତ ହେଉଛି । ଅନ୍ଧକାର ବିଦୀର୍ଣ୍ଣ ହେଉଛି, ସହରର ଲକ୍ଷ ଆଲୋକରେ ।

ଯୁକ୍ତିତର୍କ କରି କେଇଜଣ ବଡ଼ପାଟିରେ କ'ଣ ଗପୁଥିଲେ । ସେମାନଙ୍କ କଥୋପକଥନ ରାତିର ନୀରବତା ଭଙ୍ଗ କରୁଥିଲା । ପାଭେଲ୍‌ର ଧ୍ୟାନଭଗ୍ନ ହେଲା । କିଏ ଜଣେ ଆଗେଇ ଆସୁଛି ସେହି ବାଟରେ । ରାତିର ସହରର ଦୃଶ୍ୟ ଉପରୁ ଆଖି ଫେରାଇ, ଆଗକୁ ପାଦ ବଢ଼ାଇଲା ପାଭେଲ୍ ।

ଆଞ୍ଚଳିକ ବିଶେଷ ବିଭାଗର ଡିଉଟି ଦେଉଥିବା ଲୋକଟି ଜଣାଇଲା ଯେ, ଝୁଖ୍‌ରାଇ ଅନେକ ଦିନ ଆଗରୁ ସହର ଛାଡ଼ିଲାଣି ।

ପାଭେଲ୍‌କୁ ସନ୍ଦେହ କରି, ନାନା ପ୍ରଶ୍ନ ପଗ୍ଭରି ପଗ୍ଭରି ସେ ଆଶ୍ୱସ୍ତ ହେଲା ଜାଣିକରି ଯେ, ଇଏ ଝୁଖ୍‌ରାଇର ଜଣେ ବ୍ୟକ୍ତିଗତ ବନ୍ଧୁ । ପରିଶେଷରେ ଜଣାଇଲା ଯେ, ଫ୍ୟୋଦୋର୍‌କୁ ତାସ୍‌ଖନ୍ଦକୁ ପଠାଯାଇଛି, ବିଶେଷକରି ତୁର୍କୀସ୍ଥାନ ସାମ୍ମୁଖ୍ୟରେ କାମ କରିବା ପାଇଁ । ବିବ୍ରତ ହୋଇ, ଆଉ କୌଣସି ପ୍ରଶ୍ନ ନପଗ୍ଭରି ସେଠାରୁ ବାହାରି ଆସିଲା ପାଭେଲ୍ । ହଠାତ୍ ଦୁର୍ବଳତା ଯୋଗୁଁ ଥକା ହୋଇ ସେ ବାହାର ଦୁଆର ମୁହଁରେ ବସିପଡ଼ିଲା ଟିକେ ବିଶ୍ରାମ ନେବାକୁ ।

ଗୋଟିଏ ଟ୍ରାମ୍ ଅତିକ୍ରମ କରି ଗ୍ଭଲିଗଲା । ଏକ ଅସରନ୍ତି ଜନସ୍ରୋତ ତାକୁ ଟପି ଗ୍ଭଲିଗଲେ । ପାଭେଲ୍ ବସିବସି ଲକ୍ଷ୍ୟ କଲା, କେଉଁ ହର୍ଷୋତ୍‌ଫୁଲ୍ଲ ନାରୀମାନଙ୍କର ହସ, କାହାର ଗମ୍ଭୀର ସ୍ୱର, କେଉଁ ତରୁଣର କଣ୍ଠସ୍ୱର, କେଉଁ ବୃଦ୍ଧର କଣ୍ଠର କର୍କଶ ଧ୍ୱନି । ଦ୍ରୁତଗତିରେ ଯାଉଥିବା ଜନଗହଳିର ଜୁଆରଭଟାର ଯେମିତି ଅନ୍ତ ନାହିଁ । ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ ଟ୍ରାମ୍, ମଟରକାର୍‌ର ଆଲୋକ, ଇଲେକ୍‌ଟ୍ରିକ୍‌ର ଝଲକ, ପାଖ ସିନେମା ଘରର ପ୍ରବେଶ ପଥର ଉଜ୍ଜ୍ୱଳ ଆଲୋକ... ସବୁ ଦେଖିଲା ପାଭେଲ୍ । ସବୁଠାରେ ଜୀବନର ଉତ୍ତେଜନା । ଲୋକେ ସାରା ସହରକୁ କଥାବାର୍ତ୍ତା ହସ ଖୁସିରେ ମତେଇ ରଖିଛନ୍ତି ଯେମିତି ।

ଫ୍ୟୋଦୋର୍ ଅନୁପସ୍ଥିତି ସମ୍ବାଦର ହତାଶା, ସହରର ଏ ଜନଗହଳି, ଏ କୋଳାହଳ, ଧୀରେ ଧୀରେ ପୋଛିଦେଲା ପାଭେଲ୍ ମନରୁ । ବର୍ତ୍ତମାନ କିନ୍ତୁ ସେ କେଉଁଠିକି ଯିବ ? ସୋଲୋମେଙ୍କା, ଯେଉଁଠି ତା'ର ବନ୍ଧୁମାନେ ରହୁଛନ୍ତି, ଏଠାରୁ ବହୁଦୂର । ହଠାତ୍ ତା'ର ମନେପଡ଼ିଲା ବିଶ୍ୱବିଦ୍ୟାଳୟ ଷ୍ଟ୍ରିଟ୍‌ର ଘର କଥା, ଏଠାରୁ ବେଶି ଦୂର ନୁହେଁ, ସେଇଠିକି ନିଶ୍ଚୟ ଯିବ ସେ । ଫ୍ୟୋଦୋର୍ ପରେ ଆଉ ଯାହାକୁ ଦେଖିବାକୁ ଗ୍ଭହୁଁଥିଲା ସେ ହେଉଛି ରୀତା । ରାତିଟା ଆକିମ୍ କିମ୍ବା ମିଖାଇଲେ ଘରେ ବିତାଇ ଦେବା ପାଇଁ ବନ୍ଦୋବସ୍ତ ସେ ନିଶ୍ଚୟ କରିପାରିବ ।

ଦୂରରୁ ଶେଷ ଆଲୋକିତ ଝରକାଟି ଦିଶୁଥିଲା ତାକୁ । ନିଜର ଆବେଗକୁ କୌଣସିମତେ ଦମନ କରି ବିରାଟ ଓକ୍‌କାଠର କବାଟଟାକୁ ଫିଟାଇଲା ସେ । କେଇ ମୁହୂର୍ତ୍ତ ପର୍ଯ୍ୟନ୍ତ ଅପେକ୍ଷା କଲା ଦ୍ୱାର ଦେଶରେ । ରୀତାର ବଖରାରୁ କିଛି ଶବ୍ଦ ଭାସି ଆସୁଥିଲା । ଜଣେ କିଏ ଗୀଟାର ବଜାଉଛି ।

"ଓହୋଃ ... ଆଜିକାଲି ତା'ହେଲେ ରୀତା ଗୀଟାର ବଜାଇଲଣି ? ଶାସନ ହୁଗୁଳା କରିଦେଲଣି ତେବେ", ମନକୁ ମନ କହିଲ ସେ । ହାଲୁକାଭାବରେ କବାଟରେ ଠକ୍‌ଠକ୍ କଲ ସେ, ନିଜର ମନଭିତରର ଉତ୍ତେଜନା ପ୍ରକାଶ ନକରିବା ପାଇଁ ଓଠଟାକୁ କାମୁଡ଼ି କାମୁଡ଼ି ।

କୁଞ୍ଚିତକେଶୀ ତରୁଣୀଟିଏ କବାଟ ଫିଟାଇଲ । ପ୍ରଶ୍ନବାଚକ ଆଖିରେ କୋର୍ଚ୍ଚଗିନ୍‌କୁ ଗ୍ରହିଁଲ ସେ ।

"କାହାକୁ ଖୋଜୁଛନ୍ତି ?"

କବାଟ ଅଧାମେଲ ରଖିଥିଲ ସେ ଓ ଭିତରକୁ ଥରେ ଅନାଇଦେଲ ପରେ ପାଭେଲ୍ ବୁଝିପାରିଲ ଯେ, ଏଠିକି ଆସିବା ମଧ୍ୟ ତା'ର ନିଷ୍ଫଳ ହୋଇଛି ।

"ରୀତା ଉସ୍ତିନୋଭିଚ୍ ଅଛନ୍ତି ?"

"ସିଏ ତ ଏଠି ନାହାନ୍ତି । ଗତ ଜାନୁଆରୀ ମାସରେ ସେ ଖାର୍‌କୋଭ୍ ଯାଇଥିଲେ ଏବଂ ଏବେ ମୁଁ ଶୁଣିଛି ଯେ, ସେ ମସ୍କୋରେ ଅଛନ୍ତି ।"

"କମ୍ରେଡ୍ ଆକିମ୍ ଏବେ ଏଠାରେ ରହୁଛନ୍ତି, ନାଁ ସିଏ ବି ଏଠା ଛାଡ଼ିଗଲେଣି ?"

"ନାଁ, ସିଏ ବି ଏଠି ନାହାନ୍ତି । ଏବେ ସିଏ ଓଡେଶା ଆଞ୍ଚଳିକ କମ୍‌ସୋମୋଲ୍ ସମିତିର ସଂପାଦକ ।"

ଆଉ କୌଣସି ଗତ୍ୟନ୍ତର ନାହିଁ । ଫେରିବାକୁ ହେବ । ସହରକୁ ଆସିବାର ଆନନ୍ଦ ତା'ର ମିଳାଇ ଗଲ ।

ବର୍ତ୍ତମାନ ସମସ୍ୟା ହେଉଛି, ରାତିଟା ବିତାଇବା ପାଇଁ କେଉଁଠାରେ ଟିକିଏ ସ୍ଥାନ ।

"ଯେଉଁ ବନ୍ଧୁମାନେ ନାହାନ୍ତି ଏଠି, ତାଙ୍କୁଇ ଖୋଜିଖୋଜି ମିଛରେ ବାଟ ଗ୍ରଲୁଥା", ମନକୁମନ ବିରକ୍ତିରେ କହୁଥିଲ ସେ ହତାଶ ହୋଇ । ଶେଷ ଚେଷ୍ଟା କରି ପାନ୍‌କ୍ରାତୋଭ୍ ଏବେ ସହରରେ ଅଛି କି ନାହିଁ ଜାଣିବାକୁ ସ୍ଥିର କଲ ସେ ମନେ ମନେ । ସୋଲେମେଙ୍କା ଖପାଖ ଅଞ୍ଚଳରେ ଜାହାଜ ଘାଟର ଅଦୂରରେ ଜାହାଜର ମାଇଖଲସୀଟି ରହେ ।

ପାନ୍‌କ୍ରାତୋଭ୍ ବସା ପାଖରେ ପହଞ୍ଚିଲ ବେଳକୁ ସେ ରୀତିମତ ଶ୍ରାନ୍ତ, କ୍ଲାନ୍ତ ହୋଇଗଲଣି । "ସିଏ ବି ଯଦି ଏଠି ନଥିବ ତେବେ ଆଉ କାହାରିକୁ ଖୋଜିବି ନାହିଁ ।" ତା' ଦୁଆର କଡ଼ା ଖଡ଼୍‌ଖଡ଼୍ କରି ଭାବୁଥିଲ ସେ, "ତା' ଅପେକ୍ଷା ବରଂ ରାତିଟା ବିତେଇ ଦେବି ଗୋଟାଏ ଡଙ୍ଗାତଳେ ଶୋଇ ।"

କବାଟ ଖୋଲିଲେ ମୁଣ୍ଡରେ ରୁମାଲ ଗୁଡ଼ାଇଥିବା ଜଣେ ବୁଢ଼ୀ, ପାନ୍‌କ୍ରାତୋଭ୍‌ର ତା' ।

"ଇଗ୍‌ନାତ୍ ଘରେ ଅଛି ମାଉସୀ ?"

"ହଁ, ଏଇ ସାଙ୍ଗେସାଙ୍ଗେ ତ ଫେରୁଛି ।"

ପାଭେଲ୍‌କୁ ଚିହ୍ନିପାରିଲେ ନାହିଁ ସେ । ବୁଲିପଡ଼ି ଡାକିଲେ, "ଇଗ୍‌ନାତ୍, କିଏ ଜଣେ ତୋତେ ଖୋଜୁଛି ।"

ତାଙ୍କୁ ଅନୁସରଣ କରି ଘର ଭିତରକୁ ପଶି, ନିଜ ବ୍ୟାଗଟାକୁ ତଳେ ପକାଇଦେଲା ପାଭେଲ୍ । ଟେବୁଲରେ ବସି ରାତ୍ରିଭୋଜନ କରୁକରୁ ବୁଲିପଡ଼ି ଆଗନ୍ତୁକକୁ ଥରେ ଚାହିଁଦେଲା ପାନ୍‌କ୍ରାଟୋଭ୍ । "ମୋ ପାଖକୁ ଯଦି ଆସିଛ, ତେବେ ବସିପଡ଼ି ଯାହା ତମର କହିବାର ଅଛି କହିଯାଅ । ମୁଁ କିଛି ସୁପ୍ ଖାଇ ନିଏ, ସକାଳୁ କିଛି ପେଟରେ ମୋର ପଡ଼ିନି", କହି ବିରାଟ କାଠ ଚାମଚଟିଏ ଧରିନେଲା ସେ ।

"ମୁଁ କ'ଣ ସତେ ଏତେ ବଦଳିଯାଇଛି ଯେ, ଇଗ୍‌ନାତ୍ ବି ମୋତେ ଚିହ୍ନି ପାରିଲା ନାହିଁ ?"

ଗୋଟାଏ ନଡ଼ବଡ଼ିଆ ଚଉକିରେ ବସିଲା ପାଭେଲ୍ ମୁଣ୍ଡରୁ ଟୋପିଟା କାଢ଼ି । ତା'ର ପୁରୁଣା ଅଭ୍ୟାସ ବଶତଃ ସେଇଟା କପାଳରେ ଘଷିବାକୁ ଲାଗିଲା ।

ଚାମଚେ ଦି'ଚାମଚ ଝୋଳ ପିଇସାରି ପାନ୍‌କ୍ରାଟୋଭ୍ ମୁହଁ ବୁଲାଇ ପୁଣି ଅନାଇଲା । ତା' ଅତିଥି କିଛି ନ କହୁଥିବାର ଲକ୍ଷ୍ୟ କରି ପଚାରିଲା :

"ହଁ, କହୁନ କ'ଣ କହିବାର ।"

ତା'ପରେ ତା' ହାତରେ ରୁଟି ଖଣ୍ଡକ ସେମିତି ରହିଗଲା । ବିସ୍ମୟାଭିଭୂତ ହୋଇ ଆଗନ୍ତୁକକୁ ଅନାଇରହିଲା ସେ ।

"ହେ... ଇଏ କ'ଣ ? ଆଚ୍ଛା... ତା'ହେଲେ ?"

ବିସ୍ମୟ, ଆଶ୍ଚର୍ଯ୍ୟ ଓ ବିହ୍ୱଳତା ପାନ୍‌କ୍ରାଟୋଭ୍ ଆଖିରେ, ମୁହଁରେ ଏତେ ବେଶି ପ୍ରକାଶ ପାଉଥିଲା ଯେ, ପାଭେଲ୍ ହସି ପକାଇଲା ।

"ପାଭ୍‌କା ? ଆରେ, ଆମେ ସମସ୍ତେ ଜାଣିଛୁ, ତୁ ଆଉ ନାହୁଁ ବୋଲି !.. ଆଚ୍ଛା, ଏବେ ତୋ ନାଁ କ'ଣ ପୁଣି ?"

ପାଟି ଶୁଣି ପାନ୍‌କ୍ରାଟୋଭ୍ ବଡ଼ ଭଉଣୀ ଓ ମା' ଆରଘରୁ ଦୌଡ଼ିଆସିଲେ । ତା'ପରେ ତିନିହେଁ ମିଶି ପାଭେଲ୍ ଉପରେ ନାନା ପ୍ରଶ୍ନବାଣ ବର୍ଷାଇବାକୁ ଲାଗିଲେ । ଇଏ ଯେ ଆଉ କେହି ନୁହଁ, ପାଭେଲ୍ କୋର୍ଚାଗିନ୍ ନିଶ୍ଚିତଭାବରେ, ଏକଥା ଜାଣିସାରିବା ପରେ ଆଶ୍ୱସ୍ତ ହେଲେ ।

ସେଦିନ ରାତିରେ ଘରର ସମସ୍ତେ ଶୋଇଯିବାର ଅନେକ ପରେ ମଧ୍ୟ ପାନ୍‌କ୍ରାଟୋଭ୍‌ର ବିବରଣୀ ଦେବା ସରି ନଥିଲା । ଗତ ଚାରି ମାସ ଧରି ଯାହା ଯାହାସବୁ ଘଟିଛି, ଯିଏ ଯୁଆଡ଼େ ଯାଇଛନ୍ତି, ସବୁ ଟିକିନିଖି କରି କହିଲା ସେ ।

"ଗତ ଶୀତରେ ଝାର୍‌କୀ, ମିଖାଇଲୋ ଆଉ ମିତ୍ୟାୟ ଖାର୍‌କୋଭ୍ ଯାଇଛନ୍ତି । ଆଉ କୁଆଡ଼େ ଯାଇଛନ୍ତି ଜାଣିଛୁ ? କମ୍ୟୁନିଷ୍ଟ ବିଶ୍ୱବିଦ୍ୟାଳୟକୁ । ଝାର୍‌କୀ ଆଉ ମିତ୍ୟାୟ ପ୍ରାଥମିକ ପାଠ୍ୟକ୍ରମ ପଢ଼ିବାକୁ ଆଉ ମିଖାଇଲୋ—ପ୍ରଥମ କୋର୍ସ ପଢ଼ିବାକୁ । ପ୍ରଥମେ ଆମେ ପନ୍ଦର ଜଣ ଯିବାର ଥିଲୁ । ମୁଁ ବି ଦରଖାସ୍ତ କରିଥିଲି, ଭାବିଥିଲି ଏଇଥର ମୁଣ୍ଡରେ ଥିବା ଅଳିଆଗୁଡ଼ାକୁ ସଫା କରିନେବି । କିନ୍ତୁ ତୁ ବିଶ୍ୱାସ କରିବୁ ନାହିଁ, ପରୀକ୍ଷା ବୋର୍ଡ଼ରୁ କଟିଗଲି ପରାରେ !"

ଘଟଣାଟା ମନେ ପଡ଼ିଯିବାରୁ ରାଗରେ ଏକ ଶବ୍ଦ କରି କହି ଗ୍ଭଲିଥିଲା ପାନ୍‌କ୍ରାଟୋଭ୍ :

"ପ୍ରଥମେ ସବୁ ଠିକ୍ ଥିଲା । ସବୁଆଡ଼ୁ ପ୍ରସ୍ତୁତି ହୋଇଯାଇଥିଲି ମୁଁ । ମୋ ପାର୍ଟି କାର୍ଡ ବି ଆଣି ସାରିଥିଲି । ଆଗରୁ ତ ଅନେକ କାଳ କମ୍‌ସୋମୋଲ୍‌ରେ ଥିଲି । ମୋ କାର୍ଯ୍ୟକଳାପରେ ବି କେବେ କିଛି ଖରାପ ରିପୋର୍ଟ୍ ନଥିଲା । ମୋର ବଂଶ ଆଉ ପରିବାରର ଚରିତ୍ର ମଧ୍ୟ ମୋ ଅନୁକୂଳରେ ଥିଲା । କିନ୍ତୁ ରାଜନୈତିକ ଜ୍ଞାନ କଥା ଯେତେବେଳେ ପଡ଼ିଲା ନାଁ, ମୁଁ ତ ହଡ଼ବଡ଼େଇ ଗଲି ।

ପରୀକ୍ଷା ବୋର୍ଡର ଜଣକ ସାଙ୍ଗେ ମୋର ବି କଳି ଲାଗିଗଲା । ସିଏ ମୋତେ ପଗ୍ଭରିଲା, 'କମ୍ରେଡ୍ ପାନ୍‌କ୍ରାଟୋଭ୍, ଦର୍ଶନ ବିଷୟରେ ଆପଣ କ'ଣ ଜାଣନ୍ତି କହିଲେ ?' ମୁଁ ତ ସତରେ ଦର୍ଶନର ନାଁ ଗନ୍ଧ ସୁଦ୍ଧା ଜାଣି ନାହିଁ । ଆମ ସାଙ୍ଗେ ଗୋଟାଏ ଟୋକା କାମ କରୁଥିଲା, ଛତରାଟାଏ । କେବଳ ମଜାକୁ ଆସି ସିଏ ସେଥିରେ ପଶିଥିଲା । ସିଏ ସ୍କୁଲରେ ପଢ଼ିଥିଲା କି କ'ଣ ... ମନେ ପଡ଼ିଲା ସେଇ ମୋତେ କହିଥିଲା ଯେ, ଗ୍ରୀସ୍‌ର କେତେଜଣ ବୁଢ଼ିଆ ଲୋକ ସବୁକଥାର ଉତ୍ତର ଜାଣିଥିଲେ । ସେମାନଙ୍କୁ ସମସ୍ତେ ଦାର୍ଶନିକ ବୋଲି କହୁଥିଲେ । ସେମାନଙ୍କ ନାଁ ମୋର ଏବେ ବି ମନେ ନାହିଁ । ଜଣକର ନାଁ ସେଥିରୁ ଡାଇଆଗେନିସ୍ କି କ'ଣ । ଲୋକଟା ସାରା ଜୀବନ କଟେଇଥିଲା ଗୋଟାଏ ପିମ୍ପା ଭିତରେ । ତାଙ୍କ ଭିତରୁ ସବୁଠୁଁ ଯେଉଁ ଲୋକଟା ବୁଢ଼ିଆ, ସେଇଟା କାଳେ ଗ୍ଭଳିଶଥର ପ୍ରମାଣ କରିଥିଲା ଯେ, କଳାଟା ଧଳା, ଆଉ ଧଳାଟା କଳା । ସବୁଗୁଡ଼ାକ ଧପ୍‌ପାବାଜ । ଛାତ୍ରଟି ଯାହା କହିଥିଲା ସେସବୁ ମୋର ମନେ ପଡ଼ିଗଲା । ଭାବିଲି, ଲୋକଟା ମୋତେ ବୋକା ବନେଇବାକୁ ବସିଛି । ମୋ ଆଡ଼କୁ ସେ କୌତୁକରେ ଗ୍ଭହିଁଥାଏ । ରୋକ୍‌ଠୋକ୍ ତାକୁ ଶୁଣେଇ ଦେଲି, 'ଦର୍ଶନ ହେଉଛି ଧପ୍‌ପାବାଜି, ଆଖିରେ ଧୂଳି ପକାଇବା ଭଳି । ସେଥିରେ ମାଖୁନାରେ ମୁଣ୍ଡ ପୂରେଇବାକୁ ମୁଁ ଗ୍ଭହେଁ ନା । ମୋତେ ପାର୍ଟି ଇତିହାସ ପଗ୍ଭର ।' ସେମାନେ ମୋତେ ବୁଝାଇ ଶୁଝାଇ ପଗ୍ଭରିଲେ, କୋଉଠୁ ଏ ସବୁ କଥା ଜାଣିଲି ମୁଁ । ତାଙ୍କୁ ସେ ପିଲା କଥା କହିଦେଲି । ଆଉ ତା' କହିବା କଥା ବି କିଛି କିଛି କହିଦେଲି । ହୋ ହୋ ହସିଲେ ସମସ୍ତେ, ରାଗିମାଗି ବାହାରି ଆସିଲି ମୁଁ ।

ତା'ପରେ ପରୀକ୍ଷକଙ୍କ ଭିତରୁ ଜଣେ ମୋତେ ଦେଖିଲା ଆଞ୍ଚଳିକ ପାର୍ଟି କମିଟି ଅଫିସ୍‌ରେ, ଆଉ ତିନି ଘଣ୍ଟା କାଳତ ବକ୍ତୃତା ଦେଲା, ଆଉ ... ଆରେ ... ସେଠୁଁ ଜାଣିଲି ଯେ, ଜାହାଜ ଘାଟର ସେ ଛାତ୍ରଟା ସବୁ ଗୋଳେଇ ମେଳେଇ ପକାଇଥିଲା । ଦର୍ଶନ ଜିନିଷଟା ଭଲ ବୋଲି ମନେ ହେଲା ।

ଦୁବାଭା ଆଉ ଝାର୍‌କୀ ପରୀକ୍ଷାରେ ପାଶ୍ କଲେ । ମିତ୍ୟାୟ ତ ସବୁବେଳେ ପଢ଼ାପଢ଼ିରେ ଭଲ, ଝାର୍‌କୀ ତ ମୋଠୁଁ କିଛି ଅଧିକ ନୁହେଁ । ନିଶ୍ଚୟ ତା' ସେ ମେଡାଲଟା ପାଇଁ ସେ ବାଗେଇ ନେଲା ତାଙ୍କୁ । ସିଏ ଯାହାହଉ, ମୁଁ ବିଚରା ଏଇଠି ରହିଗଲି । ସେମାନେ ଗଲା ପରେ ମୋତେ ଗୋଟାଏ ବଡ଼ ପାହିଆ ମିଳିଛି ପରିଗ୍ଭଳନା

ବିଭାଗରେ । ମୁଁ ବର୍ତ୍ତମାନ ମାଲ ବୋଝେଇ ଜେଟିର ସହକାରୀ ପରିଗ୍ରାଳକ । ଆଗରୁ ସବୁବେଳେ ମୁଁ ପରିଗ୍ରାଳକମାନଙ୍କ ସହିତ ଯୁବକମାନଙ୍କ ବିଷୟରେ ଝଗଡ଼ା ଲଗାଉଥିଲି, ଆଉ ଏବେ ମୁଁ ନିଜେ ଜଣେ ମ୍ୟାନେଜର, ପରିଗ୍ରାଳକ । ବର୍ତ୍ତମାନ ଯଦି ମୁଁ କାହାକୁ ଧପ୍‌ପା ଦେବାର ଦେଖୁଛି କି କାମ ଖିଲାପ କରିବାର ଦେଖୁଛି, ମ୍ୟାନେଜର ଭାବରେ ଓ କମ୍‌ସୋମୋଲ୍ ସମିତିର ସଂପାଦକଭାବରେ ତାକୁ ଆଚ୍ଛାକରି ପାନେ ଦେଉଛି । ମୋ ଆଖିରେ କେହି ଧୂଳି ପକାଇ ପାରିବେ ନାହିଁ ।

ହଉ ... ମୋ କଥା ତ ଅନେକ ଶୁଣିଲୁ ଏବେ କି ଖବର ତତେ ଦେବି ? ଆକିମ୍ କଥା ତ ଜାଣିଛୁ । ପୁରୁଣା ଆଞ୍ଚଳିକ କମିଟିର କେବଳ ଚୁଫ୍‌ତା ହିଁ ବାକି ଅଛି ଏଠି । ତୋକାରେଭ୍ ବର୍ତ୍ତମାନ ସୋଲେମେଙ୍କାର ଜିଲ୍ଲା ପାର୍ଟି ସେକ୍ରେଟାରୀ । ତୋ କମ୍ୟୁନ୍‌ର ସଭ୍ୟ ଓକୁନେଭ୍ ଏବେ କମ୍‌ସୋମୋଲ୍‌ର ଜିଲ୍ଲା କମିଟିରେ । ତାଲ୍ୟା ରାଜନୈତିକ ଶିକ୍ଷା ବିଭାଗରେ କାମ କରୁଛି । ମରାମତି କାରଖାନାର ଏବେ ତୋ ଜାଗାରେ କାମ କରୁଛି ଶ୍ୱେଚାୟେଭ୍ । ତା' ସାଙ୍ଗେ ମୋର ବିଶେଷ ଜଣାଶୁଣା ନାହିଁ । ଆମର କଦବା କେମିତି ସେଇ ଆଞ୍ଚଳିକ କମିଟିରେ ଯାହା ଦେଖା ସାକ୍ଷାତ୍ ହୁଏ । ବେଶ୍ ବୁଦ୍ଧିଆ ଲୋକ ଜଣାପଡ଼େ ସେ । ଟିକିଏ ଯାହା ଅସହିଷ୍ଣୁ । ଆନ୍ନା ବୋର୍ଖାର୍ଟ୍‌କୁ ମନେ ଅଛି ନା ତୋର ? ସିଏ ବି ସୋଲେମେଙ୍କାରେ ଅଛି । ଜିଲା ପାର୍ଟି କମିଟିର ନାରୀ ବିଭାଗର ଅଧ୍ୟକ୍ଷା । ହଉ, ସମସ୍ତଙ୍କ କଥା ତ ଶୁଣିଲୁ । ପାର୍ଟି ଅନେକଙ୍କୁ ପଢ଼ାପଢ଼ି ପାଇଁ ପଠାଇଛି, ପୁରୁଣା କର୍ମୀମାନଙ୍କ ମଧ୍ୟରେ ଅନେକେ ଆଞ୍ଚଳିକ ସୋଭିଏତ୍‌ର ପାର୍ଟି ସ୍କୁଲରେ ପଢ଼ୁଛନ୍ତି । ମୋତେ ବି ଆସନ୍ତା ବର୍ଷ ପଠାଇବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି ।"

ସେମାନେ ଶୋଇଲାବେଳକୁ ରାତି ଗଭୀର ହେଲାଣି । ତା' ପରଦିନ ସକାଳୁ ପାଭେଲ୍ ଉଠିଲା ବେଳକୁ ପାନ୍‌କ୍ରାତୋଭ୍ ମାଲ ବୋଝେଇ ଜେଟିକୁ ଗଲାଣି ଗ୍ଲି । ତା'ରି ମୁହଁଭଳି ଦେଖିବାକୁ ସୁନ୍ଦରିଆ ଝିଅଟିଏ ତା' ଭଉଣୀ ଦୁସ୍ୟା ପାଭେଲ୍‌କୁ ଚା' ଜଳଖିଆ ଦେଲା, ତା' ମନ ବହଲେଇବାକୁ ହସଖୁସି ଗପ କରି କରି । ଜାହାଜ ଇଂଜିନିୟର ବୃଦ୍ଧ ପାନ୍‌କ୍ରାତୋଭ୍ ବାହାରକୁ ଯାଇଥାନ୍ତି ।

ପାଭେଲ୍ ବାହାରକୁ ବାହାରିବା ପାଇଁ ପ୍ରସ୍ତୁତ ହେଲାବେଳକୁ ଦୁସ୍ୟା ଆସି ମନେ ପକାଇ ଦେଲା :

"ଖାଇଲା ବେଳକୁ ଫେରିବ । ଆମେ ସମସ୍ତେ ଅପେକ୍ଷା କରିଥିବୁ ।"

* * *

ଆଞ୍ଚଳିକ ପାର୍ଟି କମିଟି ଅଫିସ୍ ନିତିଦିନିଆ କୋଳାହଳରେ ମୁଖରିତ ହୋଇ ଉଠିଥାଏ । କବାଟଟା ଖୋଲି ଯାଉଥାଏ, ବନ୍ଦ ହେଉଥାଏ, ଯିବା ଆସିବା ଲାଗିରହିଥିବା ଯୋଗୁଁ । ଅଫିସ୍ ବାରଣ୍ଡାରେ ଲୋକ ଗହଳି ଜମାଇଥାଆନ୍ତି । ଶାସନ ବିଭାଗ ଅଫିସ୍ ଭିତରୁ ଟାଇପ୍ରାଇଟରର ଖଟ୍ ଖଟ୍ ଶବ୍ଦ ଭାସି ଆସୁଥାଏ ।

ବାରଣ୍ଡାରେ ଛିଡ଼ାହୋଇ ପାଭେଲ୍ ଅପେକ୍ଷା କରୁଥିଲା କୌଣସି ଚିହ୍ନା ମୁହଁ ଦେଖିବ ବୋଲି । ମାତ୍ର କାହାରିକୁ ନପାଇ ସିଧାଯାଇ ପହଞ୍ଚିଲା ସଂପାଦକଙ୍କ ପାଖରେ । ବିରାଟ ଗୋଟାଏ ଟେବୁଲ ପଛରେ, ଗୋଟାଏ ନୀଳରଙ୍ଗର ଛୁଷାୟ ତୁର୍ଣ୍ଣା ପିନ୍ଧି ସେ ବସି ଥାଆନ୍ତି । ପାଭେଲ୍ ଘର ଭିତରକୁ ପଶିବା ମାତ୍ରକେ ମୁହଁ ଟେକି ସେ ଗ୍ଭହିଁଲେ । ତାପରେ ଲେଖିବାରେ ଲାଗିଗଲେ ।

ତାଙ୍କ ଆଗରେ ପଡ଼ିଥିବା ଗୋଟିଏ ଟୁଲ୍ ଉପରେ ବସି ପାଭେଲ୍ ଅକିମ୍‌ର ଉତ୍ତରାଧିକାରୀଙ୍କୁ ନିରିଖି ନିରିଖି ଦେଖୁଥିଲା ।

କିଛି ଗୋଟାଏ ଅର୍ଦ୍ଧସମାପ୍ତ ଲେଖା ସାରି, ମୁହଁଟେକି ଗ୍ଭହିଁ ସେ ପାଭେଲ୍‌କୁ ପଗ୍ଭରିଲେ :

"କହନ୍ତୁ, ଆପଣଙ୍କୁ କି ସାହାଯ୍ୟ କରିପାରେ ?"

ବିସ୍ତୃତ ଭାବରେ ପାଭେଲ୍ ତାଙ୍କୁ ଶୁଣାଇଲା ତା' କାହାଣୀ ।

"ମୁଁ ଗ୍ଭହୁଁଛି, ଆପଣ ମୋ ସଭ୍ୟପଦ ତାଲିକାରେ ରଖନ୍ତୁ ଓ ମୋତେ ରେଳବାଇ କାରଖାନାକୁ ପଠାନ୍ତୁ । ସେଥି ପାଇଁ ଆବଶ୍ୟକୀୟ ନିର୍ଦ୍ଦେଶ ଦିଅନ୍ତୁ", କଥା ସମାପ୍ତ କଲା ସେ ଏତକ କହି ।

ସଂପାଦକ ନିଜ ଚଉକିର ପଛକୁ ଢଳିବସିଲେ । "ଆପଣଙ୍କୁ ପୁଣି ଥରେ ତାଲିକାରେ ତ ନିଶ୍ଚୟ ରଖିବି । ସେଥିରେ କୌଣସି ସନ୍ଦେହ ନାହିଁ", ସାମାନ୍ୟ ଦ୍ୱିଧା ପ୍ରକାଶ କରି ସେ କହିଲେ । "ମାତ୍ର ଆପଣଙ୍କୁ ପୁଣି ରେଳବାଇ କାରଖାନାକୁ ପଠାଇବାରେ ଟିକେ ଅସୁବିଧା ହେବ । ଶ୍ୱେତାୟେଭ୍ ସେଠାରେ ଯୋଗ ଦେଇଛି । ସିଏ ବି ଆଞ୍ଚଳିକ କମିଟିର ଜଣେ ସଭ୍ୟ । ଆପଣଙ୍କ ପାଇଁ ଆଉ ଗୋଟାଏ କିଛି କାମ ଖୋଜିବା ପାଇଁ ପଡ଼ିବ ।"

କୋର୍ଚ୍ଚଗିନ୍ ଆଖି ବୁଜି ଆଣିଲା ଭଳି କରି କହିଲା, "ମୁଁ ଶ୍ୱେତାୟେଭ୍‌ର କାମରେ ହସ୍ତକ୍ଷେପ କରିବାକୁ ଆଦୌ ଗ୍ଭହୁଁ ନାହିଁ । ମୁଁ ମୋ ପେଶାକୁ ଫେରିଯିବାକୁ ଗ୍ଭହେଁ– ସଂପାଦକ ହିସାବରେ ନୁହେଁ । ଆଉ ତା' ଛଡ଼ା ମୋ ସ୍ୱାସ୍ଥ୍ୟ ମଧ୍ୟ ଖରାପ ହୋଇ ଯାଇଛି । ତେଣୁ ମୁଁ ଆପଣଙ୍କୁ ଅନୁରୋଧ କରିବି ଆଉ କୌଣସି କାମର ଦାୟିତ୍ୱ ମୋତେ ନଦେବା ପାଇଁ ।"

ସଂପାଦକ ରାଜିହୋଇ ଖଣ୍ଡେ କାଗଜରେ ଦି'ଧାଡ଼ି ନିର୍ଦ୍ଦେଶ ଲେଖିଦେଲେ ।

"ଏଇଟାକୁ ନେଇ କମ୍ରେଡ୍ ତୁଫ୍‌ତାକୁ ଦିଅନ୍ତୁ । ସିଏ ସବୁ ବନ୍ଦୋବସ୍ତ କରିଦେବେ ।"

କର୍ମସଂସ୍ଥାନ ବିଭାଗରେ ତୁଫ୍‌ତା ସହିତ ଭେଟ ହେଲା । ନିଜ ସହକାରୀକୁ ସିଏ କ'ଣ ବୁଝାଉଥିଲା ଉତ୍ତେଜିତ ଭାବରେ । ମିନିଟିଏ କି ଦୁଇମିନିଟ୍ ପର୍ଯ୍ୟନ୍ତ ସେମିତି ଠିଆହୋଇ ରହି ପାଭେଲ୍ ତାଙ୍କର ଗରମାଗରମ କଥାବାର୍ତ୍ତା ଶୁଣିଲା । କଥାବାର୍ତ୍ତା ତାଙ୍କର ଆହୁରି ଅନେକ ସମୟ ଏମିତି ଗ୍ଭଲିବ ଲକ୍ଷ୍ୟ କରିସାରିଲା ପରେ ସେ କହିଲା, "ତମ

ଯୁକ୍ତିତର୍କ ଆଉ ଟିକିଏ ପରେ କଲେ ଚଳିବ, ତୃପ୍ତା । ତୋ ପାଇଁ ଗୋଟାଏ ଚିଠି ଆଣିଛି ମୋ କାଗଜପତ୍ର ଠିକ୍ କରି ଦେବାକୁ ।"

ତୃପ୍ତା ଅନାଇଲା, କାଗଜରୁ ମୁହଁ ଟେକି । ଶେଷକୁ ଜାଣି ପାରିଲା ଯେ, ସେ କୋର୍ଗିନ୍‌କୁ ଦେଖୁଛି ।

"ଆରେ, ଏଇଟ ବଡ଼ ଆଶ୍ଚର୍ଯ୍ୟ କଥା ! ତୁ ତା'ହେଲେ ମରି ଯାଇ ନୁଁ ? ଆଚ୍ଛା କଥା ହେଲା ... ଏବେ କ'ଣ କରାଯାଇ ପାରିବ ? ତୋ ନାଁ ତ ତାଲିକାରୁ କଟି ଗଲାଣି । ମୁଁ ନିଜେ ତୋ ନାଁ କାଟି କେନ୍ଦ୍ର କମିଟିକୁ ପଠାଇଛି । ତା'ଛଡ଼ା ଏଥର ଜନଗଣନାରେ ତୋ ନାଁ ବି ନାହିଁ । କମ୍‌ସୋମୋଲ୍ କେନ୍ଦ୍ର କମିଟିର ନିର୍ଦ୍ଦେଶ ଆସିଛି ଯେ, ଯେଉଁମାନେ ଜନଗଣନାରେ ତାଲିକାଭୁକ୍ତ ହୋଇ ନାହାନ୍ତି, ସେମାନେ କଟିଗଲେ । ତୁ ଏବେ ଗୋଟିଏ କଥା କରିପାରୁ – ନୂଆ ଦରଖାସ୍ତ କର, ବିଧିବିଦ୍ଧ ଭାବରେ ।"

ତା' କଥାରୁ ଜଣା ପଡୁଥିଲା ଯେମିତି ସେ ଆଉ କୌଣସି ଯୁକ୍ତିତର୍କ ଶୁଣିବାକୁ ପ୍ରସ୍ତୁତ ନୁହେଁ ।

ପାଭେଲ୍ ବିରକ୍ତ ହୋଇ କହିଲା :

"ଦେଖୁଛି ତୁ ତ ଆଦୌ ବଦଳି ନାହୁଁ ! ସେଇ ପୁରୁଣା ବ୍ୟୁରୋକ୍ରାଟ୍ ହୋଇ ରହିଯାଇଛୁ । ଆରେ, କେବେ ତୁ ମଣିଷ ହେବାକୁ ଶିଖିବୁ ?"

ମହୁମାଛି କାମୁଡ଼ିଲା ଭଳି ତୃପ୍ତା ମୁହଁ ଛିଞ୍ଚାଡ଼ି କହିଲା :

"ମୋତେ ଆଉ ଭାଷଣ ଶୁଣା ନାହିଁ ! ମୁଁ ଏଠି ଦାୟିତ୍ୱରେ ଅଛି । ଯେତେ ସବୁ ନିର୍ଦ୍ଦେଶପତ୍ର ଆସେ, ତାକୁ ସବୁ ମାନିବା ପାଇଁ ଆସେ, ଏଡ଼ାଇ ଦେବା ପାଇଁ ନୁହେଁ । ଯାହାସବୁ କହିଯାଉଛୁ ଭାବିଚିନ୍ତି କହ !"

ଏତିକି କହିଦେଇସାରି ତୃପ୍ତା ବସିପଡ଼ିଲା ଓ ଦେଖାଇ ହୋଇ ସେଦିନର ଚିଠିଗଦା ଖେଳାଇବାକୁ ଲାଗିଲା ।

ନୀରବରେ ଦୁଆର ମୁହଁକୁ ଫେରିଆସୁଥିଲା ପାଭେଲ୍ । ହଠାତ୍ ସଂପାଦକଙ୍କ ଚିଠିକଥା ମନେପଡ଼ିବାରୁ ଫେରିଯାଇ, ଟେବୁଲ ଉପରୁ ତୃପ୍ତା ଆଗରେ ପଡ଼ିଥିବା କାଗଜ ଖଣ୍ଡିକ ଉଠାଇଆଣିଲା । ତୃପ୍ତା ତାକୁ ଲକ୍ଷ୍ୟ କରୁଥିଲା । ଛୋଟ ଲୋକଟାଏ, ଅପରିଚ୍ଛନ୍ନିଆ ଆଉ ହାସ୍ୟକର । ବୃଦ୍ଧ ଭଳି ବ୍ୟବହାର ତା'ର । ବଡ଼ ବଦ୍‌ରାଗୀ, ଖିଟିଖିଟିଆ । କାନ ଦିଇଟା ସବୁବେଳେ ଠିଆ, ସତେ ଯେମିତି ଯେତେ ବାଜେ କଥା ଶୁଣିବା ପାଇଁ ସଦାଜାଗ୍ରତ ।

"ଠିକ୍ ଅଛି", ପାଭେଲ୍ ଥଟାଳିଆ ଶାନ୍ତ ଗଳାରେ କହିଲା, "ତୁ ମୋତେ ତୋ ହିସାବପତ୍ରସବୁ ଗଣ୍ଡଗୋଳିଆ କରିଦେଲି ବୋଲି ଦୋଷାରୋପ କରିପାରୁ, କିନ୍ତୁ ମୋତେ ଟିକିଏ ବୁଝାଇଦେଲୁ, ଯେଉଁମାନେ ଏଠୁ ଯାଇ, ଆଗତୁରା ନୋଟିସ୍ ନଦେଇ ମରନ୍ତି ତାଙ୍କ ପାଇଁ ତୋ କାଗଜପତ୍ରରେ କ'ଣ ଲେଖା ଅଛି ? କେହି ତ ବାଧିକାରେ

ପଡ଼ିପାରେ । ମରି ବି ଯାଇପାରେ, ଇଚ୍ଛା ହେଲେ ...। ଏକଥା ତ ନିଶ୍ଚିତ ଯେ, ଏଭଳି ଲୋକଙ୍କ ପାଇଁ ତୋ ନିର୍ଦ୍ଦେଶନାମାମାନଙ୍କରେ କିଛି ଉଲ୍ଲେଖ ନଥିବ ।"

"ହାଃ ... ହାଃ ... ହାଃ", ତୃପ୍‌ତାର ସହକାରୀ ଏପର୍ଯ୍ୟନ୍ତ ନିରପେକ୍ଷ ଦର୍ଶକ ଭାବରେ ରହିଲେ ମଧ୍ୟ ଆଉ ହସ ଚାପି ପାରିଲା ନାହିଁ ।

ତୃପ୍‌ତାର ପେନସିଲ ମୁନଟା ଭାଙ୍ଗିଗଲା । ସେଟାକୁ ସେ ଫିଙ୍ଗି ଦେଲା ତଳକୁ । ମାତ୍ର ସେ ପ୍ରତ୍ୟୁତ୍ତର ଦେବା ଆଗରୁ ଘରଭିତରକୁ ଅନେକ ଲୋକ ପଶି ଆସିଲେ କଥାବାର୍ତ୍ତା କରି କରି ଓ ହସି ହସି । ସେମାନଙ୍କ ଭିତରେ ଓକୁନେଭ୍ ମଧ୍ୟ ଥିଲା । ପାଭେଲ୍‌କୁ ଚିହ୍ନିସାରିଲା ପରେ ସମସ୍ତେ ଅସଂଖ୍ୟ ପ୍ରଶ୍ନ କରିଗଲେ ତାକୁ । କିଛି ସମୟ ପରେ ଆଉ ଦଳେ ତରୁଣ ସେ ବଖରାକୁ ପଶିଆସିଲେ । ତାଙ୍କ ସହିତ ଥିଲା ଓଲ୍‌ଗା ୟୁରେନେଭା । ପାଭେଲ୍‌କୁ ଦେଖିବାର ବିସ୍ମୟ ଓ ଆନନ୍ଦରେ ଅଭିଭୂତ ହୋଇ ସେ ବହୁ ସମୟ ଧରି ପାଭେଲ୍ ହାତ ଚାପି ଧରିଲା ।

ସମସ୍ତଙ୍କ ଆଗରେ ପୁଣିଥରେ ନିଜ କାହାଣୀକୁ ଦୋହରେଇବାକୁ ପଡ଼ିଲା ପାଭେଲ୍‌କୁ । କମ୍ରେଡ୍‌ମାନଙ୍କର ଅକୃତ୍ରିମ ବନ୍ଧୁତ୍ୱ, ସମବେଦନା, ସ୍ନେହବୋଳା ପିଠିଥାପୁଡ଼ା, ଉଷ୍ମ କରତାଳି ସବୁ ମିଶି ପାଭେଲ୍‌କୁ କ୍ଷଣକାଳ ପାଇଁ ତୃପ୍‌ତାର ବ୍ୟବହାରକୁ ଭୁଲେଇ ଦେଲା ।

ମାତ୍ର ତା' କାହାଣୀ ସାରି ତୃପ୍‌ତା ସହିତ ହୋଇଥିବା କଥୋପକଥନ ସବୁ ଶୁଣାଇଲା ପରେ, ଚାରିଆଡ଼ୁ ଅଜସ୍ର ଗାଳିବର୍ଷଣ ହେବାକୁ ଲାଗିଲା ତୃପ୍‌ତା ଉପରେ । ତୃପ୍‌ତାକୁ କ୍ରୁଦ୍ଧ ଆଖିରେ ଅନାଇ ଓଲ୍‌ଗା ସଂପାଦକଙ୍କ ଅଫିସ୍‌ରେ ଟମ ଟମ ହୋଇ ପ୍ରବେଶ କଲା ।

"ଚାଲିଆ, ଆମେ ନେଝଦାନୋଭ ପାଖକୁ ଯିବା", ଓକୁନେଭ୍ ବଡ଼ପାଟିରେ କହିଲା । "ସେଇଯାକୁ ସାବାଡ଼ କରିବ ।" ପାଭେଲ୍‌କୁ ବାହାଧରି ଟାଣି ନେଲା ଓକୁନେଭ୍ ଏବଂ ଓଲ୍‌ଗା ପଛରେ ଦଳଟାଯାକ ଯୁବକ ଯାଇଁ ସଂପାଦକଙ୍କ ଅଫିସ୍ ଭିତରେ ପଶିଲେ ।

"ସେ ତୃପ୍‌ତାକୁ ଏଠୁ ବାହାର କରି ମାଲ ବୋଝେଇ ଜେଟିକୁ କାମ କରିବାକୁ ପଠାଯାଉ । ବର୍ଷକ ପାଇଁ ସେଠାରେ ସେ ପାନ୍‌କ୍ରାତୋଭ୍ ଅଧୀନରେ କାମ କରୁ । ସେଇଟା ଗୋଟାଏ ଧରାବନ୍ଧା ବ୍ୟୁରୋକ୍ରାଟ୍ ।"

ଓଲ୍‌ଗା, ଓକୁନେଭ୍ ଓ ଅନ୍ୟମାନେ ଯେତେବେଳେ ତୀବ୍ରଭାବରେ କର୍ମସଂସ୍ଥାନ ବିଭାଗରୁ ତୃପ୍‌ତାର ବହିଷ୍କାର ଦାବୀ କରୁଥିଲେ, ଆଞ୍ଚଳିକ ପାର୍ଟି କମିଟିର ସଂପାଦକ ସହାସ୍ୟ ବଦନରେ ଶୁଣୁଥିଲେ ତାଙ୍କ କଥା ।

"କୌଣସି ସନ୍ଦେହ ନାହିଁ ଯେ, କୋର୍ଚ୍ଚାଗିନ୍‌କୁ ପୁଣି ପାର୍ଟିକୁ ନିଆଯିବ", ସେ ଓଲ୍‌ଗାକୁ ଦୃଢ଼ ପ୍ରତିଶ୍ରୁତି ଦେଲେ । "ତୁରନ୍ତ ତାକୁ ନୂଆ କାର୍ଡ ଦିଆଯିବ । ତୁମ ସହିତ ମୁଁ ଏକମତ ଯେ, ତୃପ୍‌ତା ଅତି ମାତ୍ରାରେ ବିଧିବିଧାନ ଜାଣେ । ସେଇଟା ତା'ର ସବୁଠୁ ବଡ଼ ଦୋଷ । କିନ୍ତୁ ତମେ ତ ସ୍ୱୀକାର କରିବ ଯେ, ତାକୁ ଦିଆହୋଇଥିବା ଦାୟିତ୍ୱ ସେ ଠିକ୍ ଭାବେ ତୁଲାଏ ?" ସଂପାଦକ କହିଚାଲି ଥାଆନ୍ତି, "ମୁଁ ଯେଉଁଠି କାମ କରିଛି,

କମ୍‌ସୋମୋଲ୍ କମିଟିର ଲୋକଙ୍କର ହିସାବ କୌଣସିଠାରେ ଠିକ୍ ନାହିଁ । ତା' ଉପରେ ଭରସା କରି ହେବ ନାହିଁ । କିନ୍ତୁ ଆମ ସଂସ୍ଥାନ ଅଫିସ୍‌ରେ ହିସାବ ବିଲକୁଲ ଠିକ୍ ଅଛି । ତମେ ନିଜେ ସବୁ ଜାଣିଛ ଯେ, ଅନେକ ଦିନ ସେ ରାତିରେ ବସି କାମକରେ । ଦେଖ, ମୋ ମତରେ, ତାକୁ ସେ ଜାଗାକୁ ହଟାଇ ଆଉଜଣେ ସହଜିଆ ଯୁବକକୁ ସେଠି ବସାଇଲେ ବ୍ୟୁରୋକ୍ରାସୀର ପରୀ ରହିବ ନାହିଁ, ଏକଥା ସତ । ମାତ୍ର ଆମ ହିସାବ ବି କିଛି ନଥିବ । ସିଏ ତା' ଜାଗାରେ ଥାଉ, ମୁଁ ତାକୁ ବି ଧମକ ଦେବି । ଏତିକିରେ କିଛି ଦିନ ଚଳୁ । ତା'ପରେ ଦେଖିବା ... କ'ଣ ?"

"ଠିକ୍ ଅଛି, ଥାଉ", ଓକୁନେଭ୍ କହିଲା, "ଆ, ପାଭେଲ୍ ସୋଲୋମେଙ୍କାକୁ ଯିବା ଆମେ । ଆଜି ରାତିରେ କ୍ଲବ୍‌ରେ ଗୋଟିଏ ସଭା ଅଛି । ତୁ ଫେରିଛୁ ବୋଲି କେହି ଜାଣି ନାହାନ୍ତି । ଭାବିଲୁ ଦେଖି, ତୋ କଥା ଘୋଷଣା କଲେ, ସମସ୍ତେ କେତେ ଆଶ୍ଚର୍ଯ୍ୟ ହୋଇଯିବେ ! 'କୋର୍ଚ୍‌ଗିନ୍ ପୁଣି ଭାଷଣ ଦେବ !' ଓଃ ... ଭାରୀ ବଢ଼ିଆ ହେଲା ପାଭେଲ୍, ତୋର ମୃତ୍ୟୁ ହୋଇ ନାହିଁ । ଅନ୍ୟଥା ତୁ ସର୍ବହରାଙ୍କର କାମ କିପରି କରିଥାନ୍ତୁ!" କାନ୍ଧରେ ହାତ ପକାଇ, ତାକୁ ପ୍ରାୟ ବାରଣ୍ଡା ଉପରେ ଘୋଷାରି ନେଲା ଓକୁନେଭ୍ ।

"ଓଲ୍‌ଗା, ତମେ ଆସୁଛ ନା ?"

"ନିଶ୍ଚୟ ଯିବି ।"

* * *

ସେଦିନ ଖାଇଲାବେଳକୁ ପାନ୍‌କ୍ରାଟୋଭ୍ ଘରକୁ ଫେରିଲା ନାହିଁ ପାଭେଲ୍ । ସେ ଦିନଟାଯାକ ପ୍ରାୟ ଯାଇ ନାହିଁ ସେଠାକୁ । ଗ୍ରାମ ସୋଭିଏତ୍ କୋଠାର ନିଜ ବଖରାକୁ ତାକୁ ଟାଣିଆଣିଲା ଓକୁନେଭ୍ । ନିଜ ଶକ୍ତି ଅନୁସାରେ ସବୁଠାରୁ ଭଲ ଖାଦ୍ୟ ଦେଲା ପାଭେଲ୍‌କୁ । ତା' ଆଗରେ ବିଡ଼ାଏ ଖବରକାଗଜ ଓ ଜିଲା କମ୍‌ସୋମୋଲ୍ ସଭାମାନଙ୍କର ପ୍ରସ୍ତାବର ଗୋଟାଏ ମୋଟା ଫାଇଲ୍ ଆଣି ଥୋଇଦେଲା ସେ ।

"ଏଥିରେ ଆଖି ବୁଲାଇ ନେ । ତୁ ଟାଇଫସ୍ ଭୋଗିଲା ବେଳେ ଅନେକ କଥା ଘଟିଯାଇଛି ଏଣେ ସବୁ । ମୁଁ ସନ୍ଧ୍ୟା ସୁଦ୍ଧା ଫେରି ଆସିବି । ସାଙ୍ଗ ହୋଇ କ୍ଲବ୍‌କୁ ଯିବା । କ୍ଲାନ୍ତି ଲାଗିଲେ ଟିକିଏ ଗଡ଼ପଡ଼ ବି ହୋଇଯିବୁ ।"

ପକେଟ୍‌ରେ ସବୁ ନାନା ନଥିପତ୍ର, କାଗଜ ପୂରାଇ ଓକୁନେଭ୍ ପ୍ରତିଜ୍ଞାବଦ୍ଧ ହୋଇ କେବେ ପୋର୍ଟ୍‌ଫୋଲିଓ ବ୍ୟବହାର କରେ ନାହିଁ । ସେଇଟା ଅବ୍ୟବହୃତ ହୋଇ ସେମିତି ବିଛଣା ତଳେ ପଡ଼ିଥାଏ, ଜିଲା କମିଟି ସଂପାଦକ ବିଦାୟ ସଂଭାଷଣ ଜଣାଇ ବାହାରିଗଲା ।

ସେଦିନ ସଞ୍ଜକୁ ସେ ଫେରିଲାବେଳକୁ ତା' ଘରସାରା ଖବରକାଗଜଗୁଡ଼ାକ ବିଛାଇହୋଇ ପଡ଼ିଛି ଏଣେତେଣେ । ବିଛଣା ତଳୁ ଗଦାଏ ବହି କଢ଼ାହୋଇ ତଳେ ଥୁଆହୋଇଛି । କେତେକ ଟେବୁଲ ଉପରେ ରହିଛି । ପାଭେଲ୍ ଖଟ ଉପରେ ବସି କେନ୍ଦ୍ର

କମିଟିରୁ ଶେଷଆଡ଼କୁ ଆସିଥିବା ଚିଠିସବୁ ପଢ଼ୁଛି, ସେଗୁଡ଼ାକ ସବୁ ବନ୍ଧୁର ତକିଆ ତଳୁ କାଢ଼ିଛି ସେ ।

"କିରେ ବଜ୍ଜାତ୍... ଘରଟାକୁ ତ ବେଶ୍ ଜଙ୍ଗଲ ବନେଇ ବସିଛୁ ? ହେଃ ହେଃ, ରହ ରହ... ସେଗୁଡ଼ାକସବୁ ଗୁପ୍ତ ଦଲିଲ । ତୋ ଭଳିଆ ବାଳେଙ୍ଗେଳ ତାକୁ ପଢ଼ିବା ଯୋଗ୍ୟ ନାଁ ?" ଥଟ୍ଟାରେ କହୁଥିଲା ଓଲୁନେଭ୍ ।

ପାଭେଲ୍ ଚିଠିଗୁଡ଼ାକ କଢ଼େଇ ଥୋଇଦେଲା । "ଦେଖ୍ ମୁଁ ଯାହା ପଢ଼ୁଛି, ସେଥିରେ ତ ଜମାରୁ ଗୁପ୍ତ କିଛି ନାହିଁ । ଆଉ ତୁ ଯେଉଁଟା ଲ୍ୟାମ୍ପ ଉପରେ ଢାଙ୍କୁଣୀ ଦେଇଛୁ ସେଥିରେ 'ଗୁପ୍ତ ଦଲିଲ୍' ବୋଲି ଲେଖା ହୋଇଛି । ଦେଖ୍ ସେଟା ଗରିକଡ଼ରୁ ପୋଡ଼ିଯାଇଛି ।"

ସେ କାଗଜ ଖଣ୍ଡକ ଟେକିଆଣି ଦେଖିଲା ଓଲୁନେଭ୍ ।

"ତିନିଦିନ ହେଲା ମୁଁ ଏଇଖଣ୍ଡକ ଖୋଜୁଛି ! କିଛି ଭାବି ପାରୁ ନଥିଲି, କୁଆଡ଼େ ଗଲା ବୋଲି ? ଏବେ ମନେପଡ଼ୁଛି—ଭୋଲିନ୍‌ହେଭ୍ ସେଦିନ ଆସି, ଏଇଟାକୁ ଲ୍ୟାମ୍ପ ଢାଙ୍କୁଣୀ କରିଦେଇଛି । ପୁଣି ନିଜେ ଉପରତଳ କରି ସବୁ ଜାଗାରେ ଖୋଜିଛି ।" କାଗଜଖଣ୍ଡକ ଚଉତେଇ ଦେଇ ବିଛଣାତଳେ ଗୁଞ୍ଜିଦେଲା ଓଲୁନେଭ୍ । "ଠିକ୍ ଅଛି, ଆମେ ଏଥର ସବୁ ଠିକ୍‌ଠାକ୍ କରି ରଖିବା, ଏବେ ଆଇଲୁ ଏଠିକି, ଯାହା ଗଣ୍ଡାଏ ଖାଇ ସିଧା କ୍ଲବ୍‌କୁ ଯିବା !"

ଗୋଟାଏ ପାଖ ପକେଟ୍‌ରୁ ଖବରକାଗଜରେ ଗୁଡ଼ାହୋଇଥିବା ମାଛରଜା ଓ ଆଉ ଗୋଟାଏ ପକେଟ୍‌ରୁ ପାଉଁରୁଟି କାଢ଼ିଲା ସେ । ତା'ପରେ ଟେବୁଲ ଉପରେ ଖବରକାଗଜଟା ବିଛାଇଦେଇ ମାଛରଜାଟାକୁ ନରମ କରିବା ପାଇଁ ଧୀରେ ଧୀରେ ଟେବୁଲ କଡ଼ରେ ବାଡ଼େଇଦେଲା ।

ମାଛଭଜା ଓ ପାଉଁରୁଟି ଗ୍ରେବାଉ ଗ୍ରେବାଉ ଖୁସ୍‌ମିଜାଜ୍ ଓଲୁନେଭ୍ ଥଟ୍ଟା ଟାପରା ଭିତରେ ପାଭେଲ୍‌କୁ ଅନେକ ଖବର ଦେଇଗଲା ।

କ୍ଲବ୍‌ରେ ପହଞ୍ଚିଲା ପରେ କୋର୍ଚ୍ଚାଗିନ୍‌କୁ ମଞ୍ଚର ପଛ ଦୁଆର ବାଟେ ଭିତରକୁ ନେଲା ଓଲୁନେଭ୍ । ବିରାଟ ହଲ ଘରର ଗୋଟିଏ କୋଣରେ ମଞ୍ଚର ଡାହାଣ କଡ଼କୁ, ପିଆନୋ ପାଖରେ ବସିଥିଲେ ତାଲ୍ୟା ଲଗୁଟିନା ଆଉ ଆନ୍ନା ବୋର୍ଖାର୍ଟ୍ । ତାଙ୍କ ସାଙ୍ଗରେ ଥିଲେ ରେଳବାଇ ବିଭାଗର କମ୍‌ସୋମୋଲ୍ କମିଟିର ସଭ୍ୟମାନେ । ଆନ୍ନା ବିପରୀତରେ ବସିଥିଲା ଭୋଲିନ୍‌ହେଭ୍, ରେଳବାଇ କାରଖାନା କମ୍‌ସୋମୋଲ୍ କମିଟିର ସଂପାଦକ । ତା' ମୁହଁଟା ଆପେଲ୍ ଭଳି ଟକ୍ ଟକ୍ ଲାଲ । ପାଚିଲା ଧାନକେଣ୍ଡା ଭଳି ଭୂଲଟା ଓ କେଶର ବର୍ଣ୍ଣ । ଆଗରୁ କଳାରଙ୍ଗର ଥିବା ଚମଡ଼ା ଜ୍ୟାକେଟ୍‌ଟା ତା'ର ଅପରିଚ୍ଛନ୍ନ ହୋଇଗଲାଣି ।

ତା' ପାଖକୁ ଲଗି ଖାମଖିଆଲି ଭାବରେ ପିଆନୋ ରିଡ୍‌ଗୁଡ଼ାକ ଉପରେ କହୁଣୀ ଭାରାଦେଇ ବସିଛି ଶ୍ୱେତାୟେଭ୍, ବେଶ୍ ସୁନ୍ଦର ଚେହେରାର ତରୁଣଟିଏ । ବାଦାମୀ

ରଙ୍ଗର କେଶରାଶି ତା'ର, ସୁନ୍ଦର ସୁନ୍ଦର ଓଠ । ଗଳା ପାଖରେ ସାର୍ଟ ବୋତାମ ଦିଆହୋଇ ନାହିଁ ।

ପାଖକୁ ଲାଗି ଆସିଲାବେଳକୁ ଓକୁନେଭ୍ ଶୁଣିଲା ଆନ୍ନା କହୁଛି, "କେଇଜଣ ମିଛରେ ନୂଆ ସଭ୍ୟ ଆସିବା ବ୍ୟବସ୍ଥାକୁ ଲାଗିପଡ଼ି ଜଟିଳ କରୁଛନ୍ତି । ଶ୍ୱେତାୟେଭ୍ ସେଥିରୁ ଜଣେ ।"

"କମ୍‌ସୋମୋଲ୍ ସଙ୍ଗଠନଟା ବଣଭୋଜୀ ଜାଗା ନୁହେଁ", ଶ୍ୱେତାୟେଭ୍ ମଧ୍ୟ ଦୃଢ଼ସ୍ୱରରେ କହିଲା ।

"ନିକୋଲାଇକୁ ଦେଖ ମଁ !" ତାନ୍ୟା ବଡ଼ ପାଟିରେ କହିଲା ଓକୁନେଭ୍‌କୁ ଦେଖି । "ସେ ଗୋଟାଏ ଚକ୍ ଚକ୍ କରୁଥିବା ସାମୋଭାର୍ ପରି ଦିଶୁଛି !"

ସେମାନଙ୍କ ମଝିକୁ ଆକୃଷ୍ଟହୋଇ ଆସିଲା ଓକୁନେଭ୍ ଏବଂ ପ୍ରଶ୍ନବାଣରେ ଜର୍ଜରିତ ହୋଇଉଠିଲା ।

"କୁଆଡ଼େ ଯାଇଥିଲ ତମେ ?"

"ତା' ହେଲେ ଆରମ୍ଭ ହେଉ ?"

ସମସ୍ତଙ୍କୁ ନୀରବ ରହିବା ପାଇଁ ସଙ୍କେତ ଦେଇ ଓକୁନେଭ୍ ହାତ ଉଠାଇଲା ଉପରକୁ ।

"ଠିକ୍ ଅଛି, ତୋକାରେଭ୍ ଆସିଲା ମାତ୍ରେ ଆମେ ଆରମ୍ଭ କରିବା ।"

"ହେଇ, ତୋକାରେଭ୍ ଆସିଲେଣି", ଆନ୍ନା କହିଲା ।

ଜିଲା ପାର୍ଟି କମିଟିର ସଂପାଦକ ଆଗେଇ ଆସିଲେ । ଆଗେଇଯାଇ ଓକୁନେଭ୍ ସାକ୍ଷାତ୍ କଲା ତାଙ୍କୁ ।

"ଇଆଡ଼େ ଆସ, ତମକୁ ମଞ୍ଚ ପଛକଡ଼କୁ ନେବି ତମର ଜଣେ ବନ୍ଧୁଙ୍କ ସାଙ୍ଗେ ଦେଖା କରାଇବାକୁ । ଚମକି ଯିବାକୁ ପ୍ରସ୍ତୁତ ହୁଅ !"

"କିରେ କଥା କ'ଣ ? କୁଆଡ଼େ ନଉଛୁ ମୋତେ ?" ସିଗାରେଟ୍ ଧୂଆଁ ଛାଡ଼ୁ ଛାଡ଼ୁ କହୁଥିଲେ ତୋକାରେଭ୍ । ମାତ୍ର ଓକୁନେଭ୍ ତାଙ୍କ ଜାମାଧରି ଟାଣୁଥିଲା ।

* * *

ସଭାପତିଙ୍କ ଘଣ୍ଟିଟା ଓକୁନେଭ୍ ଏତେ ଜୋର୍‌ରେ ବଜାଇଲା ଯେ, ସବୁଠାରୁ ବେଶୀ ପାଟି କରୁଥିବା ସଭ୍ୟ ମଧ୍ୟ ତୁନି ହୋଇଗଲେ ।

ତୋକାରେଭ୍‌ଙ୍କ ପଶ୍ଚାଦ୍‌ଭାଗରେ କମ୍ୟୁନିଷ୍ଟ ଇସ୍ତାହାରର ମହାନାୟକଙ୍କର ମସ୍ତକର ତୈଳଚିତ୍ର ଫାର୍ ଗଛର ସବୁଜ ଶାଖା ଦେଇ ନିର୍ମିତ ଫ୍ରେମ୍‌ରେ ଶୋଭା ପାଉଥିଲା । ଓକୁନେଭ୍ ସଭା ଆରମ୍ଭ ବୋଲି ଘୋଷଣା କରିବାବେଳେ ପରଦାର ଆଢ଼ୁଆଳରେ ଛିଡ଼ା ହୋଇଥିବା କୋର୍ଚ୍ଚାଗିନ୍‌କୁ ଅନାଇ ରହିଥିଲେ ତୋକାରେଭ୍ ।

"କମ୍ରେଡ୍‌ଗଣ, ସାଂପ୍ରତିକ ସାଂଗଠନିକ ସମସ୍ୟା ସଂପର୍କରେ ଆଲୋଚନା ଆରମ୍ଭ

ହେବା ପୂର୍ବରୁ କହିବେ ବୋଲି ଜଣେ ବନ୍ଧୁ ଅନୁରୋଧ ଜଣାଇଛନ୍ତି । ମୁଁ ଏବଂ ତୋକାରେଭ୍ ପ୍ରସ୍ତାବ କରୁଛୁ ଯେ, ତାଙ୍କୁ କହିବା ପାଇଁ ଅନୁମତି ଦିଆଯାଉ", ଓକୁନେଭ୍ କହିଲା ।

ସାରା ହଲ୍ ଭିତରୁ ସମ୍ମତି ସୂଚକ ଗୁଞ୍ଜରଣ ଉଠିଲା । ତା'ପରେ ଓକୁନେଭ୍ କହିଉଠିଲା :

"ମୁଁ ବର୍ତ୍ତମାନ ପାଭେଲ୍ କୋର୍ଚ୍ଚାଗିନ୍‌କୁ ଭାଷଣ ଦେବା ପାଇଁ ଆହ୍ୱାନ ଜଣାଉଛି ।"

ହଲ୍ ଭିତରେ ଉପସ୍ଥିତଥିବା ଶହକରୁ ଅଶୀ କୋର୍ଚ୍ଚାଗିନ୍‌କୁ ଜାଣିଥିଲେ । ତା'ର ପରିଚିତ ରୂପ ମଧ୍ୟ ପାଦପ୍ରଦୀପ ସମ୍ମୁଖରେ ଉପସ୍ଥିତ ହେଲା । ଉଚ୍ଚ ଓ ରୋଗପାଣ୍ଡୁର ତରୁଣ ଭାଷଣ ଦେବାକୁ ଆରମ୍ଭ କଲାମାତ୍ରେ ସଂବର୍ଦ୍ଧନାର ଉଚ୍ଛ୍ୱଳତା ଓ କରତାଳିରେ ସାରା ହଲ୍‌ଟା କଂପି ଉଠିଲା ।

କୋର୍ଚ୍ଚାଗିନ୍‌ର କଣ୍ଠସ୍ୱର ସ୍ଥିର ଥିଲେ ମଧ୍ୟ ସେ ତା'ର ଭାବାବେଗକୁ ରୋଧ କରିପାରୁ ନଥିଲା । ସେ କହିଲା :

"ପ୍ରିୟ କମ୍ରେଡ୍‌ଗଣ ! ମୁଁ ଫେରିଆସିଛି ଆଜି ଆପଣମାନଙ୍କ ଭିତରେ ମୋ ସ୍ଥାନ ଖୋଜିନେବାକୁ । ଫେରିଆସି ମୁଁ ଆନନ୍ଦିତ । ମୋର ଅନେକ କମ୍ରେଡ୍‌ଙ୍କୁ ଆଜି ମୋ ସମ୍ମୁଖରେ ଦେଖିବାକୁ ପାଉଛି । ମୁଁ ଜାଣିଲି ଯେ, ସୋଲେମେଙ୍କା କମ୍‌ସୋମୋଲ୍‌ର ସଭ୍ୟସଂଖ୍ୟା ଶତକଡ଼ା ତିରିଶ ଭାଗ ବୃଦ୍ଧିପାଇଛି । ଆଉ ମଧ୍ୟ ଜାଣିଲି ଯେ, ସେମାନେ କାରଖାନା ଏବଂ ୟାର୍ଡରେ ଆଉ ସିଗାରେଟ୍ ଲାଇଟର ତିଆରି କରୁ ନାହାନ୍ତି । ବଡ଼ ବଡ଼ ଇଞ୍ଜିନ୍‌ସବୁ ସଜଡ଼ା ହେବାକୁ ଲାଗିଲାଣି, ଯାହାର ଅର୍ଥ—ଆମର ଦେଶ ନୂଆ ଜୀବନ ପାଇଁ, ଅଧିକାର ପାଇଁ ଶକ୍ତି ସଂଗ୍ରହ କରୁଛି । ଏଥି ପାଇଁ ବଞ୍ଚି ରହିବା ଆବଶ୍ୟକ ! ଏଭଳି ଏକ ଶୁଭ ମୁହୂର୍ତ୍ତରେ ମୁଁ ମରି ପାରିଥାନ୍ତି କିପରି ?" କୋର୍ଚ୍ଚାଗିନ୍‌ର ଆଖି ଆନନ୍ଦଉଜ୍ଜ୍ୱଳ ହୋଇ ଉଠିଲା । ମୁହଁରେ ତା'ର ଦୃପ୍ତ ହସରେଖା ।

କରତାଳି ଓ ଶୁଭାଭିଳାଷର ଝଡ଼ ଭିତରେ ସେ ମଞ୍ଚ ଉପରୁ ଓହ୍ଲାଇ ଆସିଲା, ଆନ୍ନା ଓ ତାଲ୍ୟା ବସିଥିବା ସ୍ଥାନକୁ । ତାକୁ ଅଭିବାଦନ ଜଣାଇବା ପାଇଁ ଉତ୍ତୋଳିତ ହାତଗୁଡ଼ିକ ସହିତ ହାତ ମିଳାଇଲା ସେ । ଅନ୍ୟମାନେ ଉଠିଯାଇଁ ତାଲ୍ୟା ଓ ଆନ୍ନାଙ୍କ ମଝିରେ ଜାଗା କରିଦେଲେ ତା' ପାଇଁ । ତା' ହାତ ଉପରେ ହାତରଖି ଚାପଦେଲା ତାଲ୍ୟା ।

ଆନ୍ନାର ଆଖିରେ ସେତେବେଳେ ପର୍ଯ୍ୟନ୍ତ ବିସ୍ମୟ ବୋଳିହୋଇ ରହିଥିଲା । ପାଭେଲ୍‌କୁ ଉଷ୍ଣସ୍ୱାଗତ ଜଣାଇବା ଉଦ୍ଦେଶ୍ୟରେ ତା' ଭ୍ରୂଲତା ଥରିଉଠିଲା, ଓଠରେ ହସ ସଞ୍ଚରିଗଲା ।

* * *

ଦିନଗୁଡ଼ିକ ଦ୍ରୁତ ଗତିରେ ଅତିକ୍ରାନ୍ତ ହୋଇଥିଲା । ପ୍ରତିଟି ନୂତନ ସକାଳ ଏକ ନୂତନ ସନ୍ଦେଶ ବହନକରି ଆସୁଥିଲା । ଏଣୁ ଦିହଘଷରା ଲାଗୁ ନଥିଲା । ଦିନଟାଯାକ କ'ଣ

କରିବ ତା'ର ଯୋଜନାକରି କାମ ଆରମ୍ଭ କଲେ ମଧ୍ୟ ଶେଷକୁ ପାଭେଲ୍ ଦେଖେ, ସାରାଦିନଟା ଏତେ ଛୋଟ ଯେ, ଅନେକ କାମ ବାକି ରହିଯାଇଛି ।

ପାଭେଲ୍ ଓକୁନେଭ୍ ସହିତ ରହୁଛି । ରେଳବାଇ କାରଖାନାରେ ସହକାରୀ ଇଲେକ୍‌ଟ୍ରିକ୍ ଫିଟର ଭାବରେ କାମ କରୁଛି ସେ ।

କମ୍‌ସୋମୋଲ୍‌ର ନେତୃତ୍ୱରୁ ପାଭେଲ୍ ସାମୟିକ ଅବ୍ୟାହତି ନେବ – ଏଥିରେ ଓକୁନେଭ୍‌କୁ ରାଜି କରାଇବା ପାଇଁ ତାକୁ ଅନେକ ଯୁକ୍ତି କରିବାକୁ ପଡ଼ିଥିଲା ।

"ଦେଖ ପାଭେଲ୍, କାରଖାନାରେ କେବଳ କାମ କରାଇ ଆମେ ତୋ ଇଚ୍ଛା ପୂରଣ କରି ପାରିବୁ, ଏ କଥା ମୁଁ ବିଶ୍ୱାସ କରୁ ନାହିଁ ।" କହି ଓକୁନେଭ୍ ତା'ର ଅବ୍ୟାହତି ନେବାକୁ ବିରୋଧ କରୁଥିଲା । "ତୋ ଦେହ ଖରାପ ବୋଲି ମୋତେ ମିଛରେ ଗାଲୁ କରନା । ମୁଁ ବି ଟାଇଫସ୍‌ରେ ଭୋଗିଛି, ମାସେ ବାଡ଼ି ଧରି ବୁଲିଛି । ମୋତେ ବୋକା ବନେଇ ପାରିବୁନି ପାଭେଲ୍ । ଯା' ପଛରେ ତୋର ଆଉ କିଛି ଅଛି, କ'ଣ ସେଇଟା ? କହିଲୁ ଦେଖି ।"

"ତୁ ଠିକ୍ କହିଛୁ କୋଲ୍ୟା – ପାଠ ପଢ଼ିବା ପାଇଁ ।"

"ଠିକ୍ କଥା ! ମୁଁ ଠିକ୍ ଏୟା ଭାବିଥିଲି । ତୁ କ'ଣ ଭାବିଛୁ, ମୁଁ ବି ପଢ଼ିବା କଥାଟା ମୋ ନିଜ ପାଇଁ ଚିନ୍ତା କରୁ ନାହିଁ ? ଏଇଟା ତୋ ପକ୍ଷରେ ପୂରାପୂରି ଗୋଟାଏ ତୁଚ୍ଛା ଆତ୍ମବଡ଼ିମାର କଥା । କିରେ ତୁ ଆଗେଇ ଗଲେ, ଆମେ କ'ଣ ପଛରୁ ଟାଣି ଧରିବୁ ? ସେଥିରେ ଚଳିବ ନାହିଁ ବନ୍ଧୁ, ତମକୁ କାଲିଠାରୁ ସଂଗଠନର ଦାୟିତ୍ୱ ନେବାକୁ ପଡ଼ିବ ।"

ଏସବୁ ସତ୍ତ୍ୱେ, ବହୁ ସମୟ ଆଲୋଚନା ପରେ ଓକୁନେଭ୍ ତାକୁ ଛାଡ଼ିଦେଲା ।

"ଠିକ୍ ଅଛି, ତୋତେ ଦୁଇମାସ ପାଇଁ ମୁଁ ଏକୁଟିଆ ଛାଡ଼ିଦେଉଛି । ଦୟାକରି ବୋଲି ସ୍ପଷ୍ଟ ଜାଣିରଖିଥା ! ମାତ୍ର ଶ୍ୱେତାୟେଭ୍ ସହିତ ତୁ ଚଳି ପାରିବୁ ବୋଲି ମୋତେ ଲାଗୁ ନାହିଁ । ସେ ଗୋଟାଏ ବଡ଼ ଆତ୍ମାଭିମାନୀ ।"

କାରଖାନାକୁ କୋର୍ଚ୍ଚାଗିନ୍‌ର ପ୍ରତ୍ୟାବର୍ତ୍ତନ ଶ୍ୱେତାୟେଭ୍‌କୁ ଅଧିକ କର୍ମଚଞ୍ଚଳ କରିଛି । କାରଣ ସେ ଜାଣିଥିଲା ଯେ, କୋର୍ଚ୍ଚାଗିନ୍‌ର ଆଗମନ ନେତୃତ୍ୱ ପାଇଁ କନ୍ଦଳର ଆରମ୍ଭ । ତା'ର ଆତ୍ମମର୍ଯ୍ୟାଦା ଉପରେ ଆଘାତ ଆସିଥିଲା ଓ ସେ ଦୃଢ଼ ପ୍ରତିରୋଧ ପାଇଁ ବଦ୍ଧପରିକର ଥିଲା । ମାତ୍ର ଅଳ୍ପଦିନ ପରେ ଜାଣିଲା ଯେ, ତା'ର ଧାରଣା ସଂପୂର୍ଣ୍ଣ ଭ୍ରାନ୍ତ । କମ୍‌ସୋମୋଲ୍‌ର ପରିଷଦର ସଭ୍ୟ ହେବା ପାଇଁ କୋର୍ଚ୍ଚାଗିନ୍‌ର ନାମ ଉଠିଲାମାତ୍ରେ ସିଧାସଳଖ ସଂପାଦକଙ୍କ ଅଫିସ୍‌କୁ ଯାଇ, କୋର୍ଚ୍ଚାଗିନ୍ ତା' ନିଜ ନାମ କାର୍ଯ୍ୟସୂଚୀରୁ କାଟିଦେବାକୁ କହିଲା । ତା'ର ଓକୁନେଭ୍ ସହିତ ଆଲୋଚନାଟାକୁ ହିଁ କାରଣ ବୋଲି ଜଣାଇଲା । କାରଖାନାରେ ଥିବା କମ୍‌ସୋମୋଲ୍‌ର ସେଲ୍ ବା ୟୁନିଟ୍‌ରେ କୋର୍ଚ୍ଚାଗିନ୍ ଏକ ରାଜନୈତିକ ଶିକ୍ଷା କ୍ଲାସ୍ ନେଲା । ମାତ୍ର ବ୍ୟୁରୋରେ କାମ କରିବାକୁ ଚାହିଁଲା ନାହିଁ । ନେତୃତ୍ୱରେ ଭାଗ ନଥିଲେ ମଧ୍ୟ ପାଭେଲ୍‌ର ପ୍ରଭାବ ସମ୍ମିଳିତ କାର୍ଯ୍ୟକ୍ରମର

ପ୍ରତ୍ୟେକଟି ବିଭାଗରେ ପ୍ରତିଫଳିତ ହେବାକୁ ଲାଗିଲା । କମ୍ରେଡ୍‌ର ବନ୍ଧୁତ୍ୱପୂର୍ଣ୍ଣ ସୌହାର୍ଦ୍ଦ୍ୟ ଭିତରେ ପାଭେଲ୍ ଏକାଧିକବାର ଶ୍ୱେତାୟେଭ୍‌କୁ ତା' ଦାୟିତ୍ୱ ପାଳନରେ ସାହାଯ୍ୟ କଲା ।

ଦିନେ ରେଳବାଇ କାରଖାନା ଭିତରକୁ ପଶି ଆସିବା ମାତ୍ରେ ଶ୍ୱେତାୟେଭ୍ ବିସ୍ମିତ ହୋଇଗଲା । ସେ ଦେଖି ଆଶ୍ଚର୍ଯ୍ୟ ହେଲା ଯେ, କମ୍‌ସୋମୋଲ୍ ସଂଗଠନର ପ୍ରତ୍ୟେକ ସଭ୍ୟ ଏବଂ ଏପରିକି ପ୍ରାୟ ତିରିଶ ଜଣ ଖଣ୍ଡ ଅଣସଭ୍ୟ ଯୁବକ ମଧ୍ୟ ଲାଗି ଯାଇଛନ୍ତି । ଝରକା, କବାଟ ଓ ମେସିନ୍ ଉପରେ ଯୁଗ ଯୁଗ ଧରି ଜମି ରହିଥିବା ମଇଳାସବୁ ପରିଷ୍କାର କରିବାରେ ଲାଗିଛନ୍ତି ଓ ଅଗଣାରେ ବୋଝ ବୋଝ ମଇଳା ଗଦାଇବାରେ ଲାଗିଛନ୍ତି । ପାଭେଲ୍ ଗୋଟାଏ ପୋଛା ଧରି ଚଟାଣଟା ଉପରେ ଘଷି ଘଷି ଲାଗିଥିବା ତେଲ ଅଠା ଦାଗକୁ ପରିଷ୍କାର କରୁଛି ।

"କଥା କ'ଣ ? ବସନ୍ତ ଆଗମନରେ ଏ ସଫାଇ ? କି ଉଦ୍ଦେଶ୍ୟରେ ଏସବୁ ?" ପାଭେଲ୍‌କୁ ପ୍ରଶ୍ନକଲା ଶ୍ୱେତାୟେଭ୍ ।

"ଏ ମଇଳାରେ ଭୟଙ୍କର ଅପରିଚ୍ଛନ୍ନ ଲାଗୁଛି । କୋଡ଼ିଏ ବର୍ଷ କି ତା'ଠାରୁ ବେଶୀକାଳ ହେଲାଣି ଜାଗାଟା ସଫା ହୋଇ ନାହିଁ । ଏ ସପ୍ତାହକ ଭିତରେ ଦେଖିବ ବିଲକୁଲ୍ ନୂଆଭଳି ଦିଶିବ", କୋର୍ଚ୍ଚାଗିନ୍ ସଂକ୍ଷିପ୍ତ ଉତ୍ତର ଦେଲା ।

ଶ୍ୱେତାୟେଭ୍ ଟିକିଏ କାନ୍ଧ ହଲାଇ ଦେଇ ଚାଲିଗଲା ।

କେବଳ କାରଖାନା ସଫେଇରେ ସନ୍ତୁଷ୍ଟ ନହୋଇ ଇଲେକ୍‌ଟ୍ରିସିୟାନ୍‌ମାନେ ସାରା ରେଳବାଇ ୟାର୍ଡଟାକୁ ପରିଷ୍କାର କରିବାରେ ଲାଗିଗଲେ । ବର୍ଷ ବର୍ଷ ଧରି ବିରାଟ ପ୍ରାଙ୍ଗଣଟା କେବଳ ନାନା ଅବ୍ୟବହୃତ ମାଲପତ୍ର ଗଦେଇ ଦେବାରେ ସାହାଯ୍ୟ କରୁଥିଲା । ଶହ ଶହ ରେଳଚକା, ଅଖ, ପର୍ବତ ଭଳି କଳଙ୍କିଲଗା ଲୁହା ଧାରଣା, ସ୍ପ୍ରିଂ, ଅଖାରଖା ବାକ୍ସ, ଲକ୍ଷ ଲକ୍ଷ ମହଣ ଲୁହାସବୁ ସେମିତି ପଡ଼ିରହିଛି ଓ ଖୋଲା ଆକାଶତଳେ ରହି ରହି ଧୀରେ ଧୀରେ କଳଙ୍କି ଖାଉଛି ।

ମାତ୍ର କାରଖାନା ପରିଚାଳକ ତରୁଣମାନଙ୍କର ଏ ଉଦ୍ଦୀପନାକୁ ରୋଧ କରିଦେଲେ ।

"ଅନେକ ଗୁରୁତ୍ୱପୂର୍ଣ୍ଣ କାମ କରିବାର ଅଛି, ୟାର୍ଡ ସଫେଇ ଆଉ କିଛିଦିନ ପରେ ହେଲେ ଚଳିବ", ସେମାନଙ୍କୁ କୁହାଗଲା ।

ତେଣୁ ବାଧ୍ୟହୋଇ ୟାର୍ଡ ଅଳ୍ପ କିଛି ଅଂଶ ସଫା କରିଦେଲେ ସେମାନେ, ଚଳାଚଳ ହେବାର ପ୍ରଧାନ ରାସ୍ତାଟକ । ମୁଖ୍ୟ ପ୍ରବେଶପଥକୁ ସଫାକରି ତା'ଆଗରେ ଚାରବାଡ଼ ଦେଇଦେଲେ ଓ ସେତିକିରେ ନିରସ୍ତ ହେଲେ । ମାତ୍ର କାରଖାନା ଭିତରର ସଫାଇ କାମ ସମୟ ବାହାରେ ଚାଲୁ ରହିଲା । ସପ୍ତାହକ ପରେ ମୁଖ୍ୟ ଇଂଜିନିୟର ସ୍‌ଟ୍ରିଝ କାରଖାନା ଭିତରେ ପଶିଯାଇ ଦେଖିଲେ ସାରା କାରଖାନାରେ ଆଲୋକ ଲହଡ଼ି ଭାଙ୍ଗୁଛି । ବିରାଟ ବିରାଟ ଝରକାଗୁଡ଼ାକରୁ ଧୂଳି ଓ ତେଲଚିକିଟା ପୋଛାଯାଇଛି । ଫଳରେ ଅପର୍ଯ୍ୟାପ୍ତ ସୂର୍ଯ୍ୟକିରଣ ଆସୁଛି ଓ ଇଞ୍ଜିନ୍‌ଗୁଡ଼ିକର ପାଲିଶ୍ କରାହୋଇଥିବା ତମ୍ବା

ଅଂଶରେ ପ୍ରତିଫଳିତ ହୋଇ ଦୁଇଗୁଣ ହୋଇଯାଉଛି । ସେସିନ୍‌ଗୁଡ଼ାକର ଅନେକ ଓଜନିଆ ଅଂଶରେ ନୂଆ ନୀଳରଙ୍ଗ ଦିଆଯାଇଛି । ଏପରିକି ଚକାଗୁଡ଼ାକରେ ହଳଦିଆ ତୀରଚିହ୍ନ ମଧ୍ୟ ଅଙ୍କାଯାଇଛି ।

"ଆଚ୍ଛା ... ଆଚ୍ଛା", ସ୍ତ୍ରିଝ ବିସ୍ମିତହୋଇ ଏତିକି କହି ରହିଗଲେ ।

କାରଖାନାର ଗୋଟିଏ ଦୂରବର୍ତ୍ତୀ କୋଣରେ କେତେକ ଲୋକ ତାଙ୍କ କାମ ଶେଷକରି ବାହାରୁଥିଲେ । ସ୍ତ୍ରିଝ ବୁଲି ବୁଲି ଦେଖୁ ଦେଖୁ କୋର୍ଗ୍‌ଗିନ୍‌କୁ ରଙ୍ଗ ହାତରେ ଆସୁଥିବାର ଦେଖିଲେ ।

"ଗୋଟିଏ ମିନିଟ୍ ବନ୍ଧୁ", କୋର୍ଗ୍‌ଗିନ୍‌କୁ ଅଟକାଇ କହିଲେ ସେ । "ତମେ ଏଠାରେ ଯାହାସବୁ କରିଛ, ସେଥିରେ ମୋର ସବୁଥିରେ ସମ୍ମତି ଅଛି । ମାତ୍ର ତମେ ଏ ରଙ୍ଗସବୁ କେଉଁଠୁ ପାଇଲ ? ମୁଁ ଆଦେଶ ଦେଇଥିଲି ନାଁ, ମୋ ବିନାନୁମତିରେ ରଙ୍ଗ କେହି ବ୍ୟବହାର କରିପାରିବେ ନାହିଁ ବୋଲି ? ଏସବୁ କାମରେ ରଙ୍ଗ ଖର୍ଚ୍ଚ କରିବା ଆମ ପକ୍ଷରେ ସମ୍ଭବ ନୁହଁ । ଯାହା ଅଛି ସେତିକ କେବଳ ଇଞ୍ଜିନ୍ ପାର୍ଟରେ ଦିଆଯିବ ।"

"ଫୋପାଡ଼ି ଦିଆଯାଇଥିବା ରଙ୍ଗଡବା ଚଳୁ ଏ ରଙ୍ଗଚକ ସଂଗ୍ରହ କରାଯାଇଛି । ଦୁଇ ଦିନ ଭିତରେ ଏମିତି ରଙ୍ଗ ପ୍ରାୟ ପଚିଶ ପାଉଣ୍ଡ ଆମେ ପାଇଛୁ । ଆମେ କୌଣସି ଆଇନ ଭଙ୍ଗ କରି ନାହୁଁ କମ୍ରେଡ୍ ଇଞ୍ଜିନିୟର ।"

ଇଂଜିନିୟର ଏଥର ନାକକୁ ଟେକିଦେଲେ, କିନ୍ତୁ ମନେ ହେଲା, ସେ ଯେମିତି ଟିକେ ସଂକୁଚିତ ।

"ତା'ହେଲେ ଠିକ୍ ଅଛି । ଆଚ୍ଛା ... ଆଚ୍ଛା ... ଭାରି ମଜାର କଥା ଇଏ । ଏ କାମ କିନ୍ତୁ କେମିତି ସବୁ ହେଲା ? ଯା'କୁ କି ନାଁରେ କୁହାଯିବ ? ସ୍ୱେଚ୍ଛାପ୍ରଣୋଦିତ କାରଖାନା ସଫାଇ, ନାଁ ? ଏସବୁ କାମ କାମ ସମୟ ବାହାରେ ନିଶ୍ଚୟ ହୋଇଛି ?"

ଇଂଜିନିୟରଙ୍କ କଣ୍ଠରେ ବିହ୍ୱଳତା ଓ ବିସ୍ମୟ ଲକ୍ଷ୍ୟ କଲା କୋର୍ଗ୍‌ଗିନ୍ ।

"ନିଶ୍ଚୟ, ଆଉ କ'ଣ ବୋଲି ଆପଣ ଭାବୁଛନ୍ତି ?"

"ହଁ, କିନ୍ତୁ ?"

"ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ କମ୍ରେଡ୍ ସ୍ତ୍ରିଝ । କିଏ ଆପଣଙ୍କୁ କହିଲା ଯେ, ବଲ୍‌ଶେଭିକ୍‌ମାନେ ମଇଳା ଅସନା ଭିତରେ ରହନ୍ତି ? ସବୁ କାମ ସରିଲା ଯାଏଁ ଅପେକ୍ଷା କରନ୍ତୁ, ଦେଖିବେ ଆପଣଙ୍କୁ ଆଉରି ଆଶ୍ଚର୍ଯ୍ୟ ଲାଗିବ ।"

ଇଂଜିନିୟରଙ୍କ ଦେହରେ ଯେପରି ରଙ୍ଗ ନଲାଗେ, ସେଥି ପ୍ରତି ସାବଧାନ ରହି ତାଙ୍କ ପାଖ ଦେଇ କୋର୍ଗ୍‌ଗିନ୍ ଆଗେଇଗଲା ନିଜ କାମରେ ।

ପ୍ରତି ସନ୍ଧ୍ୟାରେ ପାଭେଲ୍ ସର୍ବସାଧାରଣ ପାଠାଗାରକୁ ଯାଏ ଓ ଅନେକ ଡେରିଯାଏ ରହେ । ତିନିଜଣଯାକ ଗ୍ରନ୍ଥାଗାରିକଙ୍କ ସହିତ ତା'ର ବନ୍ଧୁତା ଜମି ଯାଇଥାଏ । ତାଙ୍କୁ ବହୁ ପ୍ରକାରରେ ବୁଝାଇ ଶୁଝାଇ କ୍ଷମତା ପାଇଥାଏ ଯେ କୌଣସି ବହି ଆଣି ବ୍ୟବହାର କରିବା ପାଇଁ । ଉଚା ଉଚ୍ଚା ବହିଥାକ କଡ଼ରେ ସିଡ଼ି ଉପରେ ବସି ସେ ଘଣ୍ଟା ପରେ ଘଣ୍ଟା

ମୋଟା ମୋଟା ବହିଗୁଡ଼ାକର ପୃଷ୍ଠା ପରେ ପୃଷ୍ଠା ଓଲଟାଇ ଗଲେ । ଅଧିକାଂଶ ବହି ପୁରୁଣା । କେବଳ ଗୋଟିଏ ଛୋଟିଆ ବହିଥାକରେ ଆଧୁନିକ ସାହିତ୍ୟ ଥାଏ । କିଛି ପୁରୁଣା ଗୃହଯୁଦ୍ଧ ବିଷୟକ ପୁସ୍ତିକା । ମାର୍କସ୍‌ଙ୍କର "ପୁଞ୍ଜି", ଜାକ୍ ଲଣ୍ଡନ୍‌ଙ୍କର "ଲୌହ ପାଦ" ଆଉ ଏମିତି କେତେକ ବହି । ପୁରୁଣା ବହିଥାକ ଖେଳାଉ ଖେଳାଉ "ସ୍ପାର୍ଟାକସ୍" ଖଣ୍ଡକ ପାଇଲା ସେ । ଦିଇଟି ରାତି ଭିତରେ ଶେଷକରି ତାକୁ ଆଣି ପୁଣି ମାକ୍‌ସିମ୍ ଗୋର୍କିଙ୍କ ବହି ସାଙ୍ଗରେ ଥାକରେ ଥୋଇଦେଲା । ନୂଆ ବିପ୍ଳବର କାହାଣୀ ବହନ କରିଥିବା ଅଧିକ ଆଗ୍ରହପ୍ରଦ ବହିସବୁ ବାଛିବା କିଛି ଦିନ ଗ୍ଲଲିଲା ।

ଗ୍ରନ୍ଥାଗାରିକ ବାଧା ଦେଲେ ନାହିଁ ।

* * *

କମ୍‌ସୋମୋଲ୍‌ର ଧରାବନ୍ଧା ଗତାନୁଗତିକ ଶାନ୍ତ ଜୀବନରେ ହଠାତ୍ ଗ୍ଲଞ୍ଚଲ୍ୟ ଦେଖାଦେଲା । ପ୍ରଥମେ ଘଟଣାଟା ଏକ ଅତ୍ୟନ୍ତ ସାଧାରଣ ଗୁରୁତ୍ୱହୀନ ଭଳି ଲାଗୁଥିଲା । ମରାମତିକାରୀ ଶ୍ରମିକ କୋସ୍ତ୍ୟା ଫିଦିନ୍ କମ୍‌ସୋମୋଲ୍‌ର ସେଇ ବ୍ୟୁରୋର ସଦସ୍ୟ । ବସନ୍ତ ମୁହାଁ, ଚେପ୍‌ଟାନାକା ଅଳସୁଆ ଲୋକଟାଏ ସେ । ସେଇ ଫିଦିନ୍ ବାହାରୁ ଆମଦାନିକରି ଅଣାଯାଉଥିବା ଗୋଟିଏ ଅତି ଦାମିକା ଡ୍ରିଲିଂ ମେସିନ୍‌କୁ ଖଣ୍ଡେ ଲୁହାରଡ଼ରେ ପିଟି ଭାଙ୍ଗିଦେଲା । ଏ ଦୁର୍ଘଟଣାଟା ସଂପୂର୍ଣ୍ଣ ଭାବରେ ଅସାବଧାନତା ଯୋଗୁଁ ହିଁ ଘଟିଲା । ମାତ୍ର ସବୁଠାରୁ ଦୁଃଖର କଥା ଜଣାପଡ଼ୁଥିଲା ଯେପରି ଫିଦିନ୍ ଜାଣିଶୁଣି କାମଟା ଇଚ୍ଛାକୃତ ଭାବରେ କରିଛି । ଘଟଣାଟା ସକାଳବେଳା ଘଟିଲା । ପୁରୁଣା ମରାମତିକାରୀ ଫୋରମ୍ୟାନ୍ ଖୋଦୋରୋଭ୍ ଫିଦିନ୍‌କୁ ଗୋଟିଏ ଲୁହାପଟା ଉପରେ କେତୋଟି ଛିଦ୍ର ଡ୍ରିଲିଂ କରିଦେବାକୁ ନିର୍ଦ୍ଦେଶ ଦେଲେ । ପ୍ରଥମେ କୋସ୍ତ୍ୟା ମନା କରୁଥିଲା । ମାତ୍ର ଫୋରମ୍ୟାନ୍ ବାଧ୍ୟ କରିବାରୁ ରାଜିହୋଇ ଡ୍ରିଲିଂ କାମ ଆରମ୍ଭ କଲା । ଫୋରମ୍ୟାନ୍ ବେଶ୍ କଡ଼ା, କାମ ଆଦାୟ କଲାବାଲା । ସେଇଥି ପାଇଁ ଶ୍ରମିକମାନେ ତାକୁ ଭଲ ପାଆନ୍ତି ନାହିଁ । ପୁଣି ପୁରୁଣା ମେନ୍‌ଶେଭିକ୍ ହୋଇଥିବାରୁ କାରଖାନାର ସାମାଜିକ ଜୀବନରେ ସେ କୌଣସି ଭାଗ ନିଏ ନାହିଁ ଏବଂ ତରୁଣ କମ୍ୟୁନିଷ୍ଟମାନଙ୍କୁ ମଧ୍ୟ ଭଲ ପାଏ ନାହିଁ । ମାତ୍ର ନିଜ କାମରେ ଅତି ଦକ୍ଷ ଓ ବେଶ୍ ମନଯୋଗ ସହକାରେ ନିଜ ଦାୟିତ୍ୱ ତୁଲାଏ ସେ । ଖୋଦୋରୋଭ୍ ଦେଖିଲା, କୌଣସି ପ୍ରକାର ତେଲ ବ୍ୟବହାର ନକରି କୋସ୍ତ୍ୟା ମେସିନ୍‌ଟାକୁ 'ଶୁଖିଲା' ଚଳାଉଛି ଓ ଦଉଡ଼ିଯାଇ ମେସିନ୍ ବନ୍ଦ କରିଦେଲା ।

"ଅନ୍ଧଟାଏ ନାଁ କ'ଣ ? ଡ୍ରିଲିଂ ମେସିନ୍‌ଟା ବ୍ୟବହାରକରି ଜାଣିନି ଆଜିଯାଏଁ ?" ସେ କୋସ୍ତ୍ୟା ଉପରେ ପାଟିକଲା । କାରଣ ସେ ଜାଣିଥିଲା ଯେ, ଏପରି ବ୍ୟବହୃତ ହେଲେ ଡ୍ରିଲିଂ ମେସିନ୍‌ର କାର୍ଯ୍ୟକାଳ ବେଶୀ ଦିନ ନୁହେଁ ।

କୋସ୍ତ୍ୟା କିନ୍ତୁ ଗୋଟାଏ ପ୍ରତିଶବ୍ଦ କରି ପୁଣି ମେସିନ୍ ଚଳାଇଦେଲା ।

ଖୋଦୋରୋଭ୍ ବିଭାଗୀୟ ମୁଖ୍ୟଙ୍କ ପାଖକୁ ଅଭିଯୋଗ କରିବାକୁ ଗଲା । ଇତ୍ୟବସରରେ କୋସ୍ତ୍ୟା ମେସିନ୍‌ଟାକୁ ଚାଲୁ ରଖି ଦୌଡ଼ିଗଲା ତେଲକ୍ୟାନ୍‌ଟା ଆଣିବାକୁ, ତା'ହେଲେ ମୁଖ୍ୟ ଆସିଲାବେଳକୁ ସବୁ ଠିକ୍‌ଠାକ୍ ହୋଇଯାଇଥିବ । ସେ ତେଲକ୍ୟାନ୍ ନେଇ ଫେରିଲାବେଳକୁ ଡ୍ରିଲିଂ ମେସିନ୍‌ଟା ଭାଙ୍ଗିସାରିଲାଣି । ଫିଦିନ୍‌କୁ କାର୍ଯ୍ୟରୁ ଅନ୍ତର କରିବାକୁ ସୁପାରିସକରି ମୁଖ୍ୟ ଏକ ରିପୋର୍ଟ୍ ଦେଲେ । ମାତ୍ର କମ୍‌ସୋମୋଲ୍‌ର ସେଲ୍ ବ୍ୟୁରୋ ଫିଦିନ୍ ସପକ୍ଷରେ ଅଳ୍ପ ଉତ୍ତେଜନାକରି ଯୁକ୍ତି ବାଢ଼ିଲେ ଯେ, ସକ୍ରିୟ କମ୍‌ସୋମୋଲ୍‌ର ସଦସ୍ୟମାନଙ୍କ ବିରୁଦ୍ଧରେ ଖୋଦୋରୋଭ୍‌ର ଆକ୍ରୋଶ ଅଛି । ପରିଚାଳନା ବିଭାଗ ଅଡ଼ିବସିଲେ ଫିଦିନ୍‌କୁ ବାହାର କରିଦେବାକୁ । କଥାଟା ଯାଇ ପଡ଼ିଲା ସାରା କାରଖାନାର କମ୍‌ସୋମୋଲ୍‌ର ବ୍ୟୁରୋରେ । ସଂଘର୍ଷ ଲାଗି ରହିଲା ।

ବ୍ୟୁରୋର ପାଞ୍ଚଜଣ ସଦସ୍ୟଙ୍କ ଭିତରୁ ତିନିଜଣ ମତ ଦେଲେ, କୋସ୍ତ୍ୟାକୁ ଆନୁଷ୍ଠାନିକ ଭାବରେ ଚେତାଇ ଦିଆଯାଇ, ଅନ୍ୟକୌଣସି କାମ ପାଇଁ ବଦଳି କରି ଦିଆଯାଉ । ସେ ତିନିଜଣଙ୍କ ଭିତରେ ଶ୍ୱେତାୟେଭ୍ ମଧ୍ୟ ଥିଲା । ବାକି ଦୁଇଜଣ ମତ ଦେଲେ ଫିଦିନ୍‌କୁ କୌଣସି ଦଣ୍ଡ ନଦେବା ପାଇଁ ।

ଶ୍ୱେତାୟେଭ୍‌ର ଅଫିସ୍‌ରେ ଆଲୋଚନା ପାଇଁ ବୈଠକ ଡକରାହେଲା । ବଢ଼େଇ କାରଖାନାମାନଙ୍କରେ କାମ କରୁଥିବା କମ୍‌ସୋମୋଲ୍ ସଭ୍ୟମାନଙ୍କ ଦ୍ୱାରା ନିର୍ମିତ ବିରାଟ ନାଲି କନା ପଡ଼ିଥିବା ଏକ ଗୋଲ ଟେବୁଲ ଚାରିକଡ଼େ ଟୁଲ୍ ଆଉ ବେଞ୍ଚ କେତୋଟି ପଡ଼ିଥାଏ । କାନ୍ଥରେ ଟଙ୍ଗା ହୋଇଥାଏ ନେତାମାନଙ୍କର ଚିତ୍ର । ଟେବୁଲ ପଛକଡ଼ କାନ୍ଥସାରା ଥାଏ ରେଳବାଇ ଶ୍ରମିକଙ୍କର ବିରାଟ ଏକ ପତାକା ।

ଶ୍ୱେତାୟେଭ୍ ଏବେ 'ସଦାବେଳିଆ' କମ୍‌ସୋମୋଲ୍ କର୍ମୀ । ପେସାରେ ସେ କମାର । ମାତ୍ର ଭଲ ସଂଗଠକ ହୋଇଥିବା ହେତୁ ତାକୁ କମ୍‌ସୋମୋଲ୍‌ର ଏକ ନେତୃସ୍ଥାନୀୟ ପାହିଆକୁ ଉନ୍ନୀତ କରାଯାଇଥାଏ । ସେ ବର୍ତ୍ତମାନ କମ୍‌ସୋମୋଲ୍‌ର ଜିଲ୍ଲା କମିଟିର ବ୍ୟୁରୋର ସଦସ୍ୟ ଓ ଆଞ୍ଚଳିକ କମିଟିର ମଧ୍ୟ । ରେଳବାଇ କାରଖାନାକୁ ଆଗନ୍ତୁକ ସେ । ପ୍ରଥମରୁ ସେ ପରିଚାଳନାର ଲଗାମ ବେଶ୍ ଦୃଢ଼ଭାବରେ ଧରିଥାଏ । ନିଜ ଉପରେ ଆସ୍ଥାବାନ୍ ଓ ତୁରୁତୁରିଆ ହୋଇଥିବାରୁ ସେ ମୂଳରୁ ଅନ୍ୟାନ୍ୟ କମ୍‌ସୋମୋଲ୍ ସଦସ୍ୟଙ୍କର କାମ କରିବାର ଆଗ୍ରହକୁ ଚାପି ଦେଇଥାଏ । ସବୁ ନିଜେ ନିଜେ କରିବ ବୋଲି ବିଚାରୁଥିଲା ସେ । ମାତ୍ର ଯେତେବେଳେ କାମ କରିପାରି ଉଠେ ନାହିଁ, ଅଯଥା ନିଜ ସହକାରୀମାନେ କିଛି କାମ କରୁ ନାହାନ୍ତି ବୋଲି ଚିଡ଼ିଉଠେ, ଗାଳି ଦିଏ ।

କାର୍ଯ୍ୟାଳୟଟା ମଧ୍ୟ ତା'ର ନିଜ ତତ୍ତ୍ୱାବଧାନରେ ସଜାଯାଇଥିଲା ।

କ୍ଳବ୍‌ରୁ ଅଣାହୋଇ ଘରେ ପଡ଼ିଥିବା ଗଦିପକା ଆରାମ ଚଉକିରେ ବସି ସେ ସଭା ପରିଚାଳନା କରୁଥିଲା । ସଭା ଦ୍ୱାର ବନ୍ଦ । ପାର୍ଟି ସଂଗଠକ ଖୋମୁତୋଭ୍ କ'ଣ କହୁଥାଆନ୍ତି ଅନୁମତି ନେଇ ଘର କବାଟ କିଏ ଖଡ଼୍ ଖଡ଼୍ କଲା । ବାଧା ପାଇଁ

ଉତ୍କ୍ଷିପ୍ତ ହୋଇଉଠିଲା ଶ୍ୱେତାୟେଭ୍ । ପୁଣି ଖଡ଼୍ ଖଡ଼୍ ହେଲା । କାତ୍ୟା କେଲେନୋଭା ଉଠିଯାଇ କବାଟ ଫିଟାଇଦେଲା । ଦୁଆରମୁହଁରେ କୋର୍ଗ୍ଗିନ୍ ଠିଆହୋଇଥିଲା । ତାକୁ ଆସିବାକୁ ଡାକିଲା କାତ୍ୟା ।

ଖାଲି ଜାଗାଟିରେ ବସିବାକୁ ଯାଉଥିଲା ବେଳେ ଶ୍ୱେତାୟେଭ୍ ତା' ଉଦ୍ଦେଶ୍ୟରେ କହିଲା :

"କୋର୍ଗ୍ଗିନ୍, ଏଇଟା କେବଳ ବ୍ୟୁରୋ ସଦସ୍ୟମାନଙ୍କର ସଭା ।"

ପାଭେଲ୍ ମୁହଁରେ ରକ୍ତ ଚହଟିଗଲା । ସେ ଧୀରେ ଟେବୁଲଆଡ଼କୁ ମୁହଁକରି କହିଲା :

"ମୁଁ ଜାଣେ ସେ କଥା । କେବଳ ଫିଦିନ୍ ଘଟଣାରେ ତମ ମତାମତ ଜାଣିବାକୁ ଆସିଛି । ଏ ସଂକ୍ରାନ୍ତରେ ମୋର ଗୋଟାଏ କଥା କରିବାର ଅଛି । କିନ୍ତୁ କଥା କ'ଣ ? ତମେ କ'ଣ ମୋ ଉପସ୍ଥିତିକୁ ବାଧା ଦେବାକୁ ଚାହଁ ?"

"ବାଧା ଦେଉ ନାହିଁ, ମାତ୍ର ତମେ ଜାଣିବା ଉଚିତ ଯେ, କେବଳ ବ୍ୟୁରୋର ସଭ୍ୟମାନେ ହିଁ ବ୍ୟୁରୋ ସଭାରେ ରହିପାରିବେ । ଯେତେ ଅଧିକା ଲୋକ ହେବେ, କୌଣସି ସମସ୍ୟାର ସୁସମାଧାନ ହୋଇପାରିବ ନାହିଁ । ଠିକ୍ ଅଛି, ତମେ ଆସିଲଣି ଯେତେବେଳେ, ରହିପାର ।"

ଏଭଳି ଅପମାନ ଜୀବନରେ କେବେ ସହିନଥିଲା ପାଭେଲ୍ । ତା'ର ଭ୍ରୂ କୁଞ୍ଚିତ ହୋଇଆସିଲା ।

"ଏତେସବୁ କାଇଦା କଟକଣାର ମାନେ କ'ଣ ?" ଖୋମୁତୋଭ୍ କହିଉଠୁଥିଲା । ମାତ୍ର କୋର୍ଗ୍ଗିନ୍ ତାକୁ ବନ୍ଦ ରହିବାକୁ ଇସାରା ଦେଇ ବସିଲା । "ହଁ, ମୁଁ କହିବାକୁ ଚାହୁଁଥିଲି", ଖୋମୁତୋଭ୍ କହିଚାଲିଲା, "ଏକଥା ସତ ଯେ, ଖୋଦୋରୋଭ୍ ପୁରୁଣା କାଳିଆ ଲୋକ । ମାତ୍ର ଶୃଙ୍ଖଳା ସଂପର୍କରେ ଆମକୁ ସଜାଗ ରହିବାକୁ ପଡ଼ିବ । ଯଦି କମ୍‌ସୋମୋଲ୍‌ର ସଭ୍ୟମାନେ ସବୁ ଡ୍ରିଲିଂ ମେସିନ୍ ଭାଙ୍ଗି ଚାଲିବେ, କାମ କରିବେ କ'ଣ ନେଇ ? ସବୁଠାରୁ ବଡ଼ କଥା, ପାର୍ଟି ବାହାରର ଶ୍ରମିକମାନଙ୍କ ଆଗରେ ଏହାଫଳରେ ଏକ ଖରାପ ଉଦାହରଣ ଦେଉଛୁ । ମୋ ମତରେ ତାକୁ ବେଶ୍ କରି ଧମକ ଦେବା ଦରକାର ।"

ତାକୁ ଶେଷ କରିବାକୁ ନଦେଇ ଶ୍ୱେତାୟେଭ୍ ନିଜର ବିରୋଧ ମତ କହିବାକୁ ଆରମ୍ଭ କଲା । ଦଶ ମିନିଟ୍ ଅତିବାହିତ ହୋଇଗଲା । ଏଥିମଧ୍ୟରେ କୋର୍ଗ୍ଗିନ୍ ମଧ୍ୟ ଲକ୍ଷ୍ୟ କଲା ପବନ କେଉଁ ଆଡ଼କୁ ବହୁଛି । ଶେଷକୁ, ଯେତେବେଳେ ଭୋଟ ଉପରକୁ ଗଲା, ସେ ଠିଆହୋଇ କିଛି କହିବାକୁ ଅନୁମତି ମାଗିଲା । ଅନିଚ୍ଛାସତ୍ତ୍ୱେ ତାକୁ କହିବାକୁ ଅନୁମତି ଦେଲା ଶ୍ୱେତାୟେଭ୍ ।

"କମ୍ରେଡ୍‌ଗଣ, ଫିଦିନ୍ ଘଟଣା ସଂପର୍କରେ ମୁଁ ଆପଣମାନଙ୍କୁ ମୋ ମତାମତ ଦେବାକୁ ଯାଉଛି", ପାଭେଲ୍ ଆରମ୍ଭ କଲା, ନିଜ ଅଲକ୍ଷ୍ୟରେ ତା'ର କଣ୍ଠସ୍ୱର ଗମ୍ଭୀର ହୋଇଉଠିଲା ।

"ଫିଦିନ୍‌ର ଘଟଣା ଆମ୍ଭମାନଙ୍କ ପାଇଁ ଏକ ସଂକେତ ଭଳି ଏବଂ ଏଥିରେ କୋସ୍ତ୍ୟା

କ'ଣ କଲ ବା ନକଲ ସେଇଟା କେବଳ ବିଗ୍ରରର ବିଷୟ ନୁହେଁ । ଗତକାଲି ମୁଁ କେତେକ ହିସାବ ସଂଗ୍ରହ କରିଛି ।" ନିଜ ପକେଟ୍‌ରୁ ଏକ ଟିପାଖାତା କାଢ଼ିଲ ପାଭେଲ୍ । "ଏସବୁ ମୁଁ ସମୟରକ୍ଷକଠାରୁ ପାଇଛି । ମନଯୋଗ ସହକାରେ ଶୁଣନ୍ତୁ । ଆମ କମ୍‌ସୋମୋଲ୍‌ର ସଭ୍ୟମାନଙ୍କ ମଧ୍ୟରୁ ଶତକଡ଼ା ତେଇଶ ଜଣ ପ୍ରତିଦିନ ଦଶ ପନ୍ଦର ମିନିଟ୍ ଡେରିରେ କାମକୁ ଆସନ୍ତି । ଏଇଟା ନିୟମରେ ପରିଣତ ହେଲଣି । ମାସରେ ଦିନେ ଦୁଇଦିନ, ଶତକଡ଼ା ସତର ଭାଗ ସଭ୍ୟ ଆଦୌ କାମକୁ ଆସନ୍ତି ନାହିଁ । ମାତ୍ର ପାର୍ଟି ସଭ୍ୟ ନଥିବା ଲୋକଙ୍କ ଭିତରୁ ଶତକଡ଼ା ଚଉଦ ଭାଗ ଏପରି କାମ କରନ୍ତି । ଏ ହିସାବ ଗ୍ରବୁକ ମାଡ଼ଠାରୁ ମଧ୍ୟ କଷ୍ଟକର । କମ୍ରେଡ୍‌ଗଣ! ମୁଁ ଆହୁରି କେତୋଟି ତଥ୍ୟ ମଧ୍ୟ ଟିପି ଆଣିଛି । ମାସକରେ ଦିନେ ଆମ ପାର୍ଟି ମେମ୍ବରମାନଙ୍କ ମଧ୍ୟରୁ ଶତକଡ଼ା ଗ୍ରରିଜଣ କାମକୁ ଆସନ୍ତି ନାହିଁ । ଆହୁରି ଶତକଡ଼ା ଗ୍ରରିଜଣ ବିଳମ୍ବରେ ଆସନ୍ତି । ଅଣପାର୍ଟି ଶ୍ରମିକମାନଙ୍କ ଭିତରୁ ମାସକୁ ଦିନେ ଲେଖାଏଁ ଶତକଡ଼ା ଏଗାର ଜଣ କମେଇ କରନ୍ତି ଓ ଶତକଡ଼ା ତେରଜଣ ଧାରାବାହିକ ଭାବରେ ବିଳମ୍ବରେ ଆସନ୍ତି । ଭଙ୍ଗାରୁଜାର ଶତକଡ଼ା ନବେଭାଗ ତରୁଣ ଶ୍ରମିକମାନଙ୍କ ଯୋଗୁଁ ଘଟୁଛି ଓ ସେଥିରୁ ମାତ୍ର ଶତକଡ଼ା ସାତଜଣ ନବାଗତ । ଏଥିରେ ଗୋଟିଏ ଉପସଂହାରରେ ଆମେ ପହଞ୍ଚି ପାରିବା ଯେ, ଆମେ କମ୍‌ସୋମୋଲ୍‌ର ସଭ୍ୟମାନେ ପାର୍ଟି ସଭ୍ୟ ଓ ପୁରୁଖା ଶ୍ରମିକମାନଙ୍କଠାରୁ ବାଜେ କାମ କରୁଛେଁ । ମାତ୍ର ଏ ଅବସ୍ଥା ସବୁଜାଗାରେ ନୁହଁ । ଫାଉଣ୍ଡରୀର ରେକର୍ଡ ଅତି ଚମତ୍କାର । ଇଲେକ୍‌ଟ୍ରିସିୟାନ୍‌ମାନଙ୍କ ମଧ୍ୟରେ ତତ୍ପରତା ବହୁତ । ମାତ୍ର ଅନ୍ୟ ସବୁଠାରେ ଅଳ୍ପବେଶୀ ଏହି ଏକ ଅବସ୍ଥା ଗ୍ରଲୁରହିଛି । ଶୃଙ୍ଖଳା ସମ୍ବନ୍ଧରେ ଯାହା କୁହାଯିବା କଥା କମ୍ରେଡ୍ ଖୋମୁତୋଭ୍ ତା'ର କିଛି ଅଂଶ ମାତ୍ର କହିଲେ । ଆମ ଆଗରେ ବର୍ତ୍ତମାନର ପ୍ରଧାନ ସମସ୍ୟା ହେଲ ଏହି ସମସ୍ତ ଅଡ଼୍‌ଆଡ଼୍‌ଆକୁ ସୁଧାରିବା । ମୁଁ ଏଠାରେ ଆନ୍ଦୋଳନ ଚଲଇବା ପାଇଁ ଏହା କହୁ ନାହିଁ । ମାତ୍ର ଆମକୁ ଅସାବଧାନତା ଓ ଶିଥିଳତାକୁ ନିଃଶେଷ କରିବା ପାଇଁ ପଡ଼ିବ । ପୁରୁଣା ଶ୍ରମିକମାନେ କହୁଛନ୍ତି ଯେ, ସେମାନେ ତାଙ୍କ ମାଲିକ, ପୁଞ୍ଜିବାଦୀମାନଙ୍କ ପାଇଁ ଏହାଠାରୁ ଅନେକ ବେଶୀ ପରିଶ୍ରମ କରୁଥିଲେ । ଏବେ ଆମେ ନିଜେ ଆମର ମାଲିକ ଏବଂ ଏବେ କାମ ନକରିଲେ କୌଣସି କ୍ଷମା ନାହିଁ । କୋସ୍ତ୍ୟା ବା ଅନ୍ୟ କୌଣସି ଶ୍ରମିକକୁ ଦୋଷ ଦେବାରେ କୌଣସି କାରଣ ନାହିଁ । ଆମେ ସମସ୍ତେ ଦୋଷୀ । କାରଣ ଏ ଦୋଷ ତ୍ରୁଟିଗୁଡ଼ିକୁ ଦୂର କରିବାରେ ସାହାଯ୍ୟ ନକରି ବେଳେ ବେଳେ ଆମେ କୌଣସି ନା କୌଣସି ବାହାନାରେ କୋସ୍ତ୍ୟା ଭଳି ଶ୍ରମିକଙ୍କୁ ସହାୟତା କରୁ ।

ସାମୋଖିନ୍ ଏବଂ ବୁଟିଲ୍ୟାକ୍ ଏବେ କହିଛନ୍ତି ଯେ, ଫିଦିନ୍ ଗୋଟିଏ ଭଲମଣିଷ । ଜଣେ ସକ୍ରିୟ କମ୍‌ସୋମୋଲ୍ ସଭ୍ୟ ଇତ୍ୟାଦି ଇତ୍ୟାଦି । ସିଏ ଗୋଟାଏ ଡ୍ରିଲିଂ ମେସିନ୍ ଭାଙ୍ଗିଦେଲେ କ'ଣ ହେଲ ? ଯେକୌଣସି ଲୋକ ଏଭଳି ଦୁର୍ଘଟଣା ଘଟାଇପାରେ । ସେ ଆମ ଭିତରୁ ଜଣେ । ଫୋରମ୍ୟାନ୍ ନୁହେଁ ... ମାତ୍ର ଆମ ଭିତରୁ କେହି କେବେ

ଖୋଦୋରୋଭ୍ ସହିତ ଏ ବିଷୟରେ ଆଲୋଚନା କରିବାକୁ ଚେଷ୍ଟା କରିଛନ୍ତି ? ଭୁଲିଗଲେ ଚଳିବ ନାହିଁ ଯେ, ତା'ର ତିରିଶ ବର୍ଷର କାମର ଅଭିଜ୍ଞତା ରହିଛି । ତା' ରାଜନୀତି କଥା କହିଦେଲେ ଚଳିବ ନାହିଁ । ଏ ଘଟଣାରେ ସେ ସଂପୂର୍ଣ୍ଣ ଭାବରେ ଠିକ୍ କାମ କରିଛି । କାରଣ ଜଣେ ବାହାରର ଲୋକ ହୋଇ ମଧ୍ୟ ସେ ରାଷ୍ଟ୍ରର ସମ୍ପତ୍ତିକୁ ରକ୍ଷାକଲାବେଳେ ଆମେ ସେସବୁ ମୂଲ୍ୟବାନ ଯନ୍ତ୍ରପାତିକୁ ଭାଙ୍ଗିରୁଜି ବିନଷ୍ଟ କରୁଛୁ । ଏ ଘଟଣାକୁ ଆପଣମାନେ କ'ଣ କହିବେ ? ମୋର ବିଶ୍ୱାସ ଏ ଘଟଣାରେ ପ୍ରଥମ ଆଘାତ ଦେବା ଦରକାର ଓ ଏ ଦିଗରେ ଆଗୁଆ କାମ ଆରମ୍ଭ ହେବା ଦରକାର ।

ମୁଁ ପ୍ରସ୍ତାବ କରୁଛି ଯେ, ଫିଦିନ୍‌କୁ କମ୍‌ସୋମୋଲ୍‌ରୁ କାମ ଖିଲାପକାରୀ ଓ ଉତ୍ପାଦନ ନଷ୍ଟକାରୀ ଭାବରେ ବହିଷ୍କାର କରାଯାଉ । ତା'ର ଘଟଣାର ବିବରଣୀ ପ୍ରାଚୀର ସମ୍ବାଦପତ୍ରରେ ଆଲୋଚିତ ହେଉ । ଏ ସମସ୍ତ ହିସାବ ମଧ୍ୟ ଖୋଲାଖୋଲି ଭାବରେ, ପରିଣତି କଥା ଚିନ୍ତା ନକରି ପ୍ରକାଶ କରାଯାଉ ଏକ ଅଗ୍ରଲେଖାରେ । ଆମେମାନେ ଶକ୍ତିଶାଳୀ ଓ ଆମ ଶକ୍ତି ଉପରେ ଆମେ ବିଶ୍ୱାସ କରୁ । କମ୍‌ସୋମୋଲ୍‌ର ଅଧିକାଂଶ ସଭ୍ୟ ବେଶ୍ ଟାଣୁଆ କର୍ମୀ ଓ କର୍ମଠ ଶ୍ରମିକ । ସେଥିରୁ ଷାଠିଏ ଜଣ ବୋୟାର୍‌କାରେ କାମ କରିଛନ୍ତି ଓ ସେଠାରେ ବିରାଟ ପରୀକ୍ଷାରେ ସଫଳ ହୋଇଛନ୍ତି । ସେମାନଙ୍କର ସାହାଯ୍ୟ ଓ ସହଯୋଗିତାରେ ଆମେ ଯେତେ ଯାହା କଷ୍ଟ ଆସୁ ପଛେ ତାକୁ ସାମନା କରିପାରିବା । ମାତ୍ର ଆମ ପକ୍ଷରେ ଏସବୁ ଘଟଣା ପ୍ରତି ଆମ ଆଭିମୁଖ୍ୟର ଆରମ୍ଭ ଓ ଶେଷଥର ପାଇଁ ଏକ ପରିବର୍ତ୍ତନ ଲୋଡ଼ା ।"

କୋର୍ଚ୍ଚାଗିନ୍ ସାଧାରଣତଃ ଶାନ୍ତ ଓ ଗମ୍ଭୀର । ସେ ଏଭଳି ଆବେଗତାର ସହିତ କହିପାରିବାର ଦେଖି ଶ୍ୱେତାୟେଭ୍ ବିସ୍ମିତ ହେଲା । ପାଭେଲ୍‌କୁ ଆଜି ନିଜ ରୂପରେ ପ୍ରଥମଥର ପାଇଁ ଦେଖିଲା ସେ । ସେ ହୃଦୟଙ୍ଗମ କଲା ଯେ, ପାଭେଲ ଠିକ୍ କଥା କହୁଛି । ମାତ୍ର ତା ସହିତ ଖୋଲାଖୋଲି ଭାବରେ ରାଜି ହୋଇଯିବା ପାଇଁ ସାବଧାନତା ଅବଲମ୍ବନ କରୁଥିଲା ସେ । ସାଧାରଣ ସଂଗଠନ ଉପରେ କୋର୍ଚ୍ଚାଗିନ୍‌ର ଭାଷଣ ଏକ ରକ୍ଷ ସମାଲୋଚନା ଭାବରେ ଗ୍ରହଣ କଲା ସେ । ତା'ର ଅର୍ଥାତ୍ ଶ୍ୱେତାୟେଭ୍‌ର କର୍ତ୍ତୃତ୍ୱକୁ ଊଣାକରି ଦେଖିବା ଫଳରେ ଏହା ହୋଇଛି । ଏଣୁ ତା'ର ବିରୋଧୀକୁ ଆଘାତ କରିବ ବୋଲି ସିଦ୍ଧାନ୍ତ କରି ସେ କୋର୍ଚ୍ଚାଗିନ୍‌କୁ ଦୋଷାରୋପ କଲା ଜଣେ ମେନ୍‌ଶେଭିକ୍‌କୁ ସମର୍ଥନ କରୁଛି ବୋଲି ।

ତିନିଘଣ୍ଟା ପର୍ଯ୍ୟନ୍ତ ଘମାଘୋଟ ଆଲୋଚନା ଚାଲିଲା । ଅନେକ ରାତିରେ ସିଦ୍ଧାନ୍ତ ଗୃହୀତ ହେଲା । ଅକାଟ୍ୟ ଯୁକ୍ତିର ପ୍ରଭାବରେ ଓ କୋର୍ଚ୍ଚାଗିନ୍‌ଠାରୁ ଭୋଟରେ ସଂଖ୍ୟାରେ ମଧ୍ୟ ହାରିଯାଇ ଶ୍ୱେତାୟେଭ୍ ଏକ ଭୁଲ ପଦକ୍ଷେପ ନେଲା । ଠିକ୍ ଶେଷ ଭୋଟ ଗ୍ରହଣ ହେବା ଆଗରୁ ସେ କୋର୍ଚ୍ଚାଗିନ୍‌କୁ ଗଣତନ୍ତ୍ରର ସମସ୍ତ ସାଧାରଣ ନିୟମ ଲଙ୍ଘନ କରି ବାହାରିଯିବାକୁ ଆଦେଶ ଦେଲା ।

"ଠିକ୍ ଅଛି ମୁଁ ବାହାରି ଯାଉଛି, ଯଦିଓ ତମର ଏ ବ୍ୟବହାର ତମକୁ ସମ୍ମାନିତ

କରୁ ନାହିଁ, ଶ୍ୱେତାୟେଭ୍ । ମୁଁ ତମକୁ ସାବଧାନ କରାଇଦେଉଛି, ଯଦି ତମେ ଏଇଭଳି ଭାବରେ ନିଜର କଥାକୁ ଘୁପିଦେବାକୁ ଚେଷ୍ଟାକର, କାଲି ସାଧାରଣ ସଭାରେ ମୁଁ ଏକଥା ପକାଇବି । ମୁଁ ନିଶ୍ଚିତ ଯେ, ତମେ ସେଠାରେ ଆଦୌ ସଂଖ୍ୟାଗରିଷ୍ଠ ହୋଇପାରିବ ନାହିଁ । ତମେ ଭୁଲ କରୁଛ ଶ୍ୱେତାୟେଭ୍ । କମ୍ରେଡ୍ ଖୋମୁତୋଭ୍, ମୁଁ ଭାବୁଛି ତମର ଦାୟିତ୍ୱ ସାଧାରଣ ସଭା ହେବା ଆଗରୁ ଏ ଘଟଣାକୁ ପାର୍ଟି ଗ୍ରୁପ୍ ବୈଠକରେ ଆଲୋଚନା କରିବା ।"

"ତମେ ସେ ବାଜେ କଥାଗୁଡ଼ାକ ମୋତେ ଶୁଣାଅ ନାହିଁ", ଶ୍ୱେତାୟେଭ୍ ଦୃଢ଼ ଭାବରେ କହିଲା । "ମୁଁ ନିଜେ ପାର୍ଟି ଗ୍ରୁପ୍ ସଭାକୁ ଯାଇ ପାରିବି ଆଉ ମୋର ମଧ୍ୟ ସେମାନଙ୍କୁ ତୁମ ବିଷୟରେ ଅନେକ କଥା କହିବାର ଅଛି । ଦେଖ, ତମେ ନିଜେ ଯଦି କିଛି କାମ କରିବାକୁ ଚାହଁ ନାହିଁ, ତେବେ ଅନ୍ୟମାନେ କାମ କଲାବେଳେ ବାଧା ଦିଅ ନାହିଁ ।"

ପାଭେଲ୍ ବାହାରିଯାଇ କବାଟ ବନ୍ଦ କରିଦେଲା । ନିଜର ଉତ୍ତପ୍ତ କପାଳରେ ହାତ ଘଷି ଘଷି ସେ ଶୂନ୍ୟ ଅଫିସ୍‌ଟା ବାଟଦେଇ ପ୍ରସ୍ଥାନ ଦ୍ୱାରରେ ପହଞ୍ଚିଲା । ବାହାରେ ରାଜପଥ ଉପରେ ଖୋଲା ପବନରେ ନିଃଶ୍ୱାସ ମାରିଲା । ଖଣ୍ଡେ ସିଗାରେଟ୍ ଲଗାଇଲା ଓ ତା'ପରେ ବାତିୟ ପାହାଡ଼ ଉପରେ ଛୋଟିଆ ଘରଆଡ଼କୁ ଆଗେଇଲା, ଯେଉଁଠି ତୋକାରେଭ୍ ରୁହେ ।

ପୁରୁଣା ମେକାନିକ୍ ରାତ୍ରିଭୋଜନ କରୁଥିଲାବେଳେ ପହଞ୍ଚିଲା ସେ ।

"ଆ ... ଆ ... ଶୁଣିବା କ'ଣ ସବୁ ହେଲା । ହେ ଦାରୟା, ଟୋକା ପାଇଁ ଟିକେ ଜାଉ ଆଣ ।" ପାଭେଲକୁ ତୋକାରେଭ୍ ଟେବୁଲ ପାଖକୁ ଡାକି କହିଲେ ।

ତୋକାରେଭ୍‌ଙ୍କର ସ୍ତ୍ରୀ ଦାରୟା ଫୋମିନିଶ୍ନା ତୋକାରେଭ୍ ଯେମିତି ଶେଢା ଓ ଦୁର୍ବଳିଆ ସେ ସେତିକି ଉଚ୍ଚା ଓ ସ୍ୱାସ୍ଥ୍ୟବତୀ । ଥାଳିଆଏ ବାଜରା ଜାଉ ଆଣି ଥୋଇଲେ ସେ ପାଭେଲ୍ ଆଗରେ । ସଫେଦ ଆପ୍ରନ୍‌ରେ ଭିଜା ଓଠଦୁଇଟିକୁ ପୋଛି କହିଲେ, "ଏତକ ଖାଇନିଅ, ପୁଅ ।"

* * *

କାରଖାନାରେ ତୋକାରେଭ୍ କାମ କରୁଥିବା ସମୟରେ ଏମାନଙ୍କ ପାଖକୁ ପାଭେଲ୍ ସବୁବେଳେ ଆସୁଥିଲା ଓ ବୁଢ଼ା ବୁଢ଼ୀଙ୍କ ସହିତ ଏକାଠି ଅନେକ ମଧୁର ସନ୍ଧ୍ୟା ବିତାଇଛି ସେ । ମାତ୍ର ସହରକୁ ଆସିବା ପରେ ସେ ଏ ପହିଲିଥର ପାଇଁ ଆସୁଛି ।

ବୃଦ୍ଧ ମେକାନିକ୍ ପାଭେଲ୍‌ର କଥା ମନଯୋଗ ସହିତ ଶୁଣିଲେ । ମାତ୍ର ଜାଉ ହାପୁଡ଼ୁ ହାପୁଡ଼ୁ କୌଣସି ମତାମତ ଦେଉନଥାନ୍ତି, କେବଳ ସାମୟିକ 'ହୁଁ ହାଁ' ବ୍ୟତୀତ । ଖାଇସାରିଲା ପରେ ରୁମାଲରେ ନିଶ ପୋଛି ସେ ଗଳା ସଫାକଲେ ।

"ତୁ ଠିକ୍ କହିଛୁ । ଏ ପ୍ରଶ୍ନ ଏଯାଏଁ ନ ଉଠିବା ଅନୁଚିତ ହୋଇଛି । ସାରା ଜିଲାରେ ଅନ୍ୟ କେଉଁଠା ଅପେକ୍ଷା ଆମ କାରଖାନାରେ ହିଁ କମ୍‌ସୋମୋଲ୍ ସଭ୍ୟ ଅଧିକ

ସଂଖ୍ୟାରେ ଅଛନ୍ତି ଓ ସେହିଠାରୁ ହିଁ ଆରମ୍ଭ କରିବାକୁ ହେବ । ତୁ ଆଉ ଶ୍ୱେତାୟେଭ୍ ଶେଷକୁ ହାତ ଉଠାଉଠି ହୋଇଗଲ ନା ? ଭାରୀ ଖରାପ କଥା । ସେଇଟା ଗୋଟାଏ ବଦ୍‌ମିଜାଜୀ ଲୋକଟାଏ , ତୁ ତ ସମସ୍ତଙ୍କ ସହିତ ମିଶି ଚଳିପାରୁ, ନୁହିଁ ? ହଁ ... ଆଚ୍ଛା କାରଖାନାରେ ତୁ କି କାମ କରୁଚି ?"

"ମୁଁ ଗୋଟାଏ ବିଭାଗରେ କାମକରେ । ସାଧାରଣତଃ ଯେଉଁଠାରେ ଯାହା ହୁଏ , ସବୁଥିରେ ଭାଗ ନିଏ । ମୋ ନିଜ ସେଲ୍‌ରେ ମୁଁ ଏକ ରାଜନୈତିକ ଆଲୋଚନା ଚକ୍ର ଚଳାଏ ।"

"ମାତ୍ର ବ୍ୟୁରୋରେ ତୁ କ'ଣ କରୁ ?"

କୋର୍ଚ୍ଚାଗିନ ଇତସ୍ତତଃ ବୋଧ କଲା ।

"ମୁଁ ଟିକେ ଦୁର୍ବଳ ଅନୁଭବ କରୁଛି । ଏଇ ସମୟ ଭିତରେ ଟିକିଏ ପଢ଼ାପଢ଼ି ମଧ୍ୟ କରୁଛି । ଏଣୁ କିଛି କାଳ ପାଇଁ ଆନୁଷ୍ଠାନିକ ଭାବରେ ନେତୃତ୍ୱରେ କୌଣସି ଭାଗ ନେବା ପାଇଁ ଚାହୁଁ ନାହିଁ ।"

"ଓଃ ଏଇଥି ପାଇଁ ? ଦେଖ୍ ତୋ ଦେହ କଥା ହୋଇ ନଥିଲେ ଆଚ୍ଛାକରି ଗାଳିଦେଇ ଥାଆନ୍ତି ଏଇନେ" , ତୋକାରେଭ୍ ବଡ଼ ପାଟିରେ କହିଲେ , "ଆଚ୍ଛା ବର୍ତ୍ତମାନ କେମିତି ଲାଗୁଛି ? ଟିକେ ଟାଣୁଆ ହେଲୁଣି ନା ?"

"ହଁ ।"

"ଭଲ କଥା , ଏବେ ମନଦେଇ କାମରେ ଲାଗିଯା । ଏମିତି ଏକ କଡ଼କିଆହୋଇ ରହିବାରେ କିଛି ଲାଭ ନାହିଁ । ଏମିତି ବସିଲେ ଚଳିବ ନାହିଁ । ତୁ ଯେ ଦାୟିତ୍ୱ ଏଡ଼େଇ ଯିବାକୁ ଚାହୁଁଛୁ , ତାହା ସମସ୍ତେ କହିବେ । କାଲିଠୁଁ ତତେ ସବୁ କିଛି ସଜାଡ଼ି ନେବାକୁ ହେବ , ମୁଁ ଓକୁନେଭ୍‌କୁ କହିବି ଏ ବିଷୟରେ ।" ତୋକାରେଭ୍‌ର କଣ୍ଠସ୍ୱର ବିରକ୍ତିପୂର୍ଣ୍ଣ ।

"ତାକୁ କିଛି କହିବେ ନାହିଁ ।" ପାଭେଲ୍ ବିରୋଧ କଲା । "ମୁଁ ନିଜେ ତାକୁ କହିଥିଲି , ମୋତେ କୌଣସି ଦାୟିତ୍ୱ ନଦେବାକୁ ।"

ତୋକାରେଭ୍ ତାଚ୍ଛଲ୍ୟରେ ହସି ଉଠି କହିଲେ :

"ତୁ କହିଥିଲୁ ବୋଲି , ସିଏ ତୋତେ ଛାଡ଼ିଦେଲା ନା ? ଆଚ୍ଛା , ଆଚ୍ଛା ... ହଉ ପୁଅ ମୋ ପାଇଁ ଟିକେ ଖବରକାଗଜଟା ପଢ଼ିଦେଲୁ । ଆଖିକି ଭଲ ଦେଖାଯାଉ ନାହିଁ ଆଉ ।"

* * *

କାରଖାନାର ପାର୍ଟି ବ୍ୟୁରୋ , କମ୍‌ସୋମୋଲ୍ ବ୍ୟୁରୋର ସଂଖ୍ୟାଗରିଷ୍ଠ ମତକୁ ହିଁ ଗ୍ରହଣ କଲେ । ପାର୍ଟି ଏବଂ ଯୁବସଂଗଠନ ଉଭୟ କଠିନ ଓ ମୁଖ୍ୟ ଦାୟିତ୍ୱ ବହନ କଲେ ଶ୍ରମଶୃଙ୍ଖଳାର ଏକ ଉଦାହରଣ ଦେଖାଇବା ପାଇଁ । ଶ୍ୱେତାୟେଭ୍‌କୁ ପାର୍ଟି ବ୍ୟୁରୋରେ ଆଚ୍ଛାକରି ସାବଧାନ କରି ଦିଆହେଲା । ପ୍ରଥମେ ପ୍ରଥମେ ସେ ଗୁମ୍ଭୁରେଇ ଦେବାକୁ ଚେଷ୍ଟା କରୁଥିଲା । ମାତ୍ର ପାର୍ଟି ସଂପାଦକ ଲୋପାଖିନ୍‌ଙ୍କ ନିକଟରେ କଣଠେଷା ହୋଇ

ସମାଲୋଚନାଟାକୁ ମାନିନେଲା ଓ ନିଜ ଦୋଷ କିଛି ପରିମାଣରେ ସ୍ୱୀକାର କରିନେଲା । ଲେପାଖିନ୍‌ଙ୍କର ବୟସ ହୋଇଛି, ଦେହର ରଙ୍ଗ ମହଣଭଳି ବିବର୍ଣ୍ଣ । ଦେଖିଲେ ମନେ ହୁଏ ଯକ୍ଷ୍ମାରେ ଯେପରି କ୍ଷୟ ହୋଇ ଯାଉଛନ୍ତି ।

ପରଦିନ ପ୍ରାଚୀର ସମ୍ବାଦପତ୍ରମାନଙ୍କରେ ପ୍ରଚାରିତ ଖବରସବୁ ରେଳବାଇ କାରଖାନାରେ ଗୁଞ୍ଜନ ସୃଷ୍ଟିକଲା । ସମସ୍ତେ ବଡ଼ ପାଟିରେ ତାକୁ ପଢ଼ୁଥାଆନ୍ତି ଓ ସରଗରମ ଆଲୋଚନା ହେଉଥାଏ । ସେଦିନ ସନ୍ଧ୍ୟାରେ ଆଶାତୀତ ଭାବରେ ବହୁସଂଖ୍ୟାରେ ଯୋଗ ଦେଇଥିବା ଯୁବସଭାରେ ଏହି ସମସ୍ୟା ସଂପର୍କରେ ହିଁ ଆଲୋଚନା ହେଲା କେବଳ ।

କମ୍‌ସୋମୋଲ୍‌ରୁ ଫିଦିନ୍‌କୁ ବହିଷ୍କାର କରାଗଲା । ବ୍ୟୁରୋରେ ରାଜନୈତିକ ଶିକ୍ଷା ପାଇଁ ଜଣେ ନୂଆ ସଭ୍ୟଙ୍କୁ ନିଆଗଲା । ସେ ହେଉଛି କୋର୍ଚ୍ଚାଗିନ୍ ।

ଏ ନୂତନ ପରିସ୍ଥିତିରେ ରେଳବାଇ କାରଖାନାମାନଙ୍କୁ ଯେଉଁ ନୂଆ ଦାୟିତ୍ୱର ସମ୍ମୁଖୀନ ହେବାକୁ ହେଉଛି, ସେସବୁର ବିବରଣୀ ନେଝଦାନୋଭ୍ ଦେଲାବେଳେ ସାରା ହଲ୍‌ଟାରେ ପୂର୍ଣ୍ଣ ନୀରବତା ବିରାଜୁଥାଏ ।

ସଭା ଶେଷରେ ଶ୍ୱେତାୟେଭ୍ ଦେଖିଲା ବାହାରେ ତାକୁ ଅପେକ୍ଷାକରି ଛିଡ଼ା ହୋଇଛି କୋର୍ଚ୍ଚାଗିନ୍ ।

"ତମକୁ ମୋର କିଛି କହିବାର ଅଛି", ପାଭେଲ୍ କହିଲା ।

"କେଉଁ ବିଷୟରେ ?" ମୁହଁ ଛିଞ୍ଚାଡ଼ି କହିଲା ଶ୍ୱେତାୟେଭ୍ । ପାଭେଲ୍ ତା'ର ବାହାକୁ ଧରି ଝିଙ୍କିନେଲା । କିଛି ବାଟ ଆଗେଇ ଗଲା ପରେ ଗୋଟିଏ ବେଞ୍ଚ ପାଖରେ ଅଟକିଲେ ।

"ଏଠି ଟିକିଏ ବସିବା ?" କହି ବସି ପଡ଼ିଲା ସେ । ଶ୍ୱେତାୟେଭ୍ ମଧ୍ୟ ବସିଲା । ଶ୍ୱେତାୟେଭ୍‌ର ସିଗାରେଟ୍‌ର ଜ୍ୱଳନ୍ତ ଅଗ୍ରଭାଗ ଜଳି ଉଠୁଥାଏ, ପୁଣି ଲିଭି ଯାଉଥାଏ ।

"ମୋ ବିରୁଦ୍ଧରେ ତମର କ'ଣ କହିବାର ଅଛି, ଶ୍ୱେତାୟେଭ୍ ?"

କିଛି ସମୟ ପାଇଁ ନୀରବ ହୋଇଗଲେ ଦୁହେଁ ।

"ଏଇ କଥା ? ମୁଁ ଭାବିଲି ତମେ ଗୋଟାଏ କିଛି କାମର କଥା ପାଇଁ ଡାକିଛ ।" ଶ୍ୱେତାୟେଭ୍ ଆଶ୍ଚର୍ଯ୍ୟ ହୋଇଗଲା ଭଳି ଭଙ୍ଗୀରେ କହିଲା । ମାତ୍ର ତା'ର କଣ୍ଠସ୍ୱର ଥରୁଥିଲା ।

ତା' ଜଙ୍ଘ ଉପରେ ହାତ ପକାଇଲା ପାଭେଲ୍ ।

"ତୋ ଉଚ୍ଚା ଘୋଡ଼ାରୁ ଓହ୍ଲାଇ ଆସ, ଦିମ୍‌କା । ଏମିତି କଥାସବୁ ଡିପ୍ଲୋମାଟ୍‌ମାନେ କରନ୍ତି । ମୋତେ ତୁ କହନ୍ତୁ । କହିଲୁ ଦେଖି, ମୋ ଉପରେ ତୁ ଏମିତି ରାଗିଛୁ କାହିଁକି ?"

ଶ୍ୱେତାୟେଭ୍ ଅସ୍ୱସ୍ତିକର ଭାବରେ ନିଜ ବସିବା ଜାଗାରେ ହଲ୍‌ଚଲ୍ ହେଲା ।

"କ'ଣ ବାଜେକଥା କହୁଚୁ ? ତୋ ଉପରେ ରାଗିବି କାହିଁକି ? ମୁଁ ପରା ତୋତେ

କାମ ଯାଚିଛି, ନୁହଁ ? ତୁ ମନାକଲୁ ଆଉ ଏବେ ମୋତେ ଦୋଷ ଦେଉଛୁ", ଶ୍ୱେତାୟେଭ୍ କହିଲା ।

ତା'ର ମନୋଭାବ ସେଥିରେ ପ୍ରକଟିତ ହେଉ ନଥିଲା । ପାରେଲ୍ ସେମିତି ହାତ ତା' ଜଙ୍ଘ ଉପରେ ରଖି ସମସ୍ତ ଆବେଗ ଦେଇ କହିଲା :

"ତୁ ନକହିଲେ ବି ମୁଁ କହୁଛି ଶୁଣ । ତୁ ଭାବୁଛୁ ଯେ, ମୁଁ ତୋତେ ତଳକୁ ପକାଇ ଦେବାକୁ ଚାହୁଁଛି । ତୋର କାମଟି ଉପରେ ଆଖି ମୋର । ସେକଥା ନ ହୋଇଥିଲେ କୋଷ୍ଟ୍ୟା ଘଟଣାରେ ତୁ ମୋ ସାଙ୍ଗେ କଳି ଲଗାଇ ନଥାନ୍ତୁ । ଏଭଳି ସଂପର୍କ ଆମ ଉଭୟଙ୍କର କାମ ଧ୍ୱଂସ କରିଦେବ । କେବଳ ଆମ ଦୁହିଁଙ୍କ କଥା ହୋଇଥିଲେ ବି ମୁଁ କିଛି ଭାବନ୍ତି ନାହିଁ କିମ୍ବା ତୁ ମୋ ବିଷୟରେ କ'ଣ ଭାବୁଛୁ, ସେ କଥାକୁ ଭ୍ରୂକ୍ଷେପ କରନ୍ତି ନାହିଁ । ମାତ୍ର କାଲିଠାରୁ ଆମକୁ ଏକାଠି କାମ କରିବାକୁ ହେବ । ଏମିତି ହେଲେ ଆମେ କିପରି କାମ କରିବା ? ଆମ ଆମ ଭିତରେ କୌଣସି ବିବାଦ ରହିବା ଉଚିତ ନୁହେଁ । ତୁ ଓ ମୁଁ ଦୁହେଁ ଶ୍ରମଜୀବୀ । ଯଦି ଆମର ଲକ୍ଷ୍ୟ ତୋ ନିକଟରେ ସବୁଠାରୁ ବଡ଼ ବୋଲି ବିଚାରୁଥାଉ, ତେବେ ହାତ ମିଳା ! କାଲିଠାରୁ ଦୁହେଁ ବନ୍ଧୁଭାବେ କାମ କରିବା । କିନ୍ତୁ ତୁ ଏସବୁ ତୋ ମୁଣ୍ଡରୁ କାଢ଼ି ଫୋପାଡ଼ି ନଦେଲେ, କି ଯେତେସବୁ ବାଜେକଥା ମନରେ ଅଛି ତାକୁ ନ କାଢ଼ିଲେ, କାମରେ ଯେତେ ଥର ଅସୁବିଧା ଦେଖାଦେବ ଆମେ ଦିହେଁ ଏମିତି ଲଢ଼େଇ କରୁଥିବା । ଏବେ ବି ତୋ ପ୍ରତି ମୋର ବନ୍ଧୁତ୍ୱ ଅଛି, ହାତ ମିଳା । ବନ୍ଧୁଭାବରେ ବଢ଼ାଉଛି ମୁଁ ।"

କୋର୍ଶିଗନ୍ ଓ ଶ୍ୱେତାୟେଭ୍‌ଙ୍କର ହାତ ପରସ୍ପର ମୁଠାରେ ଥିଲା । କୋର୍ଶିଗନ୍‌ର ମନରେ ଥିଲା ଗଭୀର ପ୍ରଶାନ୍ତି ।

* *

ସପ୍ତାହେ ବିତିଗଲା । ପାର୍ଟିର ଜିଲା କମିଟିରେ କାମଦିନ ଶେଷ ହୋଇ ଆସୁଥିଲା ।

ଅଫିସ୍ ସବୁ ନୀରବ ନିଷ୍ପନ୍ଦ । ଡୋକାରେଭ୍‌ର କାମ ସରି ନଥାଏ । ଆରାମଚଉକିରେ ବସି ସେ ସର୍ବଶେଷ ରିପୋର୍ଟ ସବୁ ପଢ଼ୁଥାଏ । କିଏ ଜଣେ କବାଟ ଠକ ଠକ୍ କଲା ।

"ଭିତରକୁ ଆସ ।"

କୋର୍ଶିଗନ ପଶିଆସିଲା ଓ ସେକ୍ରେଟାରୀଙ୍କ ଟେବୁଲ ଉପରେ ପୂରଣ ହୋଇଥିବା ଦୁଇଟି ଫର୍ମ ଥୋଇଲା ।

"କ'ଣ ଏଇଟା ?"

"ଦାୟିତ୍ୱହୀନତାର ପରିସମାପ୍ତି । ଅନେକ ବିଳମ୍ବ ହେଲଣି ମୋ ମତରେ । ତମର ଯଦି ମତ ସେଇଆ ହୁଏ, ତେବେ ତମ ସମର୍ଥନ ପାଇଲେ କୃତଜ୍ଞ ରହିବି ।"

କାଗଜଟାର ହେଡିଂ ଉପରେ ଆଖି ବୁଲାଇଆଣି ଡୋକାରେଭ୍ ଚାହିଁଲା ତରୁଣଟିକୁ । ତାପରେ କଲମ ଉଠାଇଲା । ଯେଉଁଠି ଲେଖା ହୋଇଥିଲା – ରୁଷିଆର କମ୍ୟୁନିଷ୍ଟ ପାର୍ଟିର

(ବଲ୍‌ଶେଭିକ୍) ସଭ୍ୟପଦ ପ୍ରାର୍ଥୀ ହିସାବରେ ପାଭେଲ୍ ଆନ୍ଦ୍ରେୟେଭିଚ୍ କୋର୍ଚ୍ଚାଗିନ୍‌କୁ ସୁପାରିସ୍ କରୁଛନ୍ତି, ସେ ପାର୍ଟିରେ କେବେଠୁଁ ଅଛନ୍ତି – ସେଠାରେ ତୋକାରେଭ୍ ଦୃଢ଼ ହସ୍ତରେ ଲେଖିଲା '୧୯୦୩' ଓ ନିଜ ଦସ୍ତଖତ୍ କଲା ।

"ଠିକ୍ ଅଛି ପୁଅ, ମୁଁ ଜାଣେ ତୁ ମୋ ପାଚିଲା ବାଳ ଉପରେ କେବେ କୌଣସି ଅସମ୍ମାନ ଆଣି ଦେବୁ ନାହିଁ । ମୋ ମର୍ଯ୍ୟାଦା ରଖିବୁ ।"

* * *

ପ୍ରକୋଷ୍ଠ ଭିତରେ ଅସହ୍ୟ ଗରମ ହେଉଥାଏ । ସମସ୍ତଙ୍କ ମନରେ ଗୋଟିଏ ଚିନ୍ତା ଥାଏ, କେମିତି ସୋଲୋମେଙ୍କାର ଚେଷ୍ଟନଟ୍ ତରୁଶାଖାଘେରା ଶୀତଳ ପରିବେଶକୁ ଫେରିଯିବେ ।

"ଶେଷକର ପାଭେଲ୍ । ଆଉ ମିନିଟିଏ ମଧ୍ୟ ମୁଁ ସହ୍ୟ କରି ପାରିବି ନାହିଁ ।" ଦେହରୁ ଗମ ଗମ ହୋଇ ଝାଳ ବାହାରୁଥିବା ଶ୍ୱେତାୟେଭ୍ କହିଲା । କାତ୍ୟୁଶା ସହିତ ଅନ୍ୟମାନେ ତା' କଥାକୁ ସମର୍ଥନ କଲେ ।

ପାଭେଲ କୋର୍ଚ୍ଚାଗିନ୍ ବହି ବନ୍ଦକଲା ଓ ପାଠଚକ୍ର ଶେଷ ହେଲା ।

ସେମାନେ ଉଠୁଛନ୍ତି, ଏହି ସମୟରେ ପୁରୁଣାକାଳିଆ ଠିଆ ଟେଲିଫୋନ୍‌ଟା ଝଣ ଝଣ ହୋଇ ବାଜିଉଠିଲା । ଫୋନ୍‌ରେ ଶ୍ୱେତାୟେଭ୍ କଥାବାର୍ତ୍ତା କଲା ଖୁବ୍ ବଡ଼ ପାଟିରେ। କାରଣ ଘରଟାରେ ଗୋଳଚହଳ ଲାଗିଥିଲା ବେଳେ ତାକୁ ଜୋରରେ କହିବାକୁ ପଡ଼ିଥିଲା ।

ରିସିଭର ଝଟକାଇଦେଇ ସେ ପାଭେଲ୍ ଆଡ଼କୁ ବୁଲିପଡ଼ି କହିଲା :

"ପୋଲାଣ୍ଡୀୟ ଦୂତାବାସର ଦୁଇଟି କୂଟନୀତିଜ୍ଞବାହୀ ରେଳଡବା ଷ୍ଟେସନ୍‌ରେ ଅଛି । ସେଥିରେ ଆଲୋକ ଲିଭିଯାଇଛି । ବୋଧହୁଏ ତାରରେ କୌଣସି ଗଣ୍ଡଗୋଳ ଅଛି । ଘଣ୍ଟାକ ଭିତରେ ଟ୍ରେନ୍ ଛାଡ଼ିବ । କିଛି ଯନ୍ତ୍ରପାତି ଧରି ଜଲଦି ଦୌଡ଼ ଷ୍ଟେସନ୍‌କୁ । ଭାରି ଜରୁରୀ ପାଭେଲ୍ ।"

ପ୍ରଥମ ପ୍ଲାଟ୍‌ଫର୍ମରେ ଶାୟିକା ରେଳଡବା ଦିଓଟି । ବଡ଼ ବଡ଼ ଝରକା ସମେତ ସେଲୁନ୍-ଡବାଟି ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ ହେଉଥିଲା । ମାତ୍ର ପାଖ ଡବାଗୁଡ଼ାକସବୁ ଅନ୍ଧାରରେ ବୁଡ଼ି ରହିଥିଲା ।

ଆରାମପ୍ରଦ ସେ ରେଳଡବାଗୁଡ଼ିକର ପାହାଚ ପାଖକୁ ଗଲା ପାଭେଲ୍ ଓ ଭିତରେ ପଶିବା ପାଇଁ ଡବାର ହ୍ୟାଣ୍ଡେଲ ଧରି ଘୂରାଇଲା ।

ଷ୍ଟେସନ୍ ଭିତରୁ ଜଣେ କିଏ ତରବର ହୋଇ ଆସି ତା' କାନ୍ଧ ଧରିଲା ।

"କୁଆଡ଼େ ଯାଉଛ ତମେ ?" ପଚାରିଲା ସେ ।

ଜଣାଶୁଣା ସ୍ୱର । ବୁଲିପଡ଼ି ଚଉଡ଼ା ଟୋପି ପିନ୍ଧା, ଚମଡ଼ା ଜ୍ୟାକେଟ୍‌ପିନ୍ଧା ଆଙ୍କୁଶିନାକିଆ ପୁରୁଷଟିକୁ ଅନାଇଲା । ଲୋକଟିର ନାମ ଆର୍‌ଟ୍ୟୁଖିନ୍ ।

ଆର୍‌ଟ୍ୟୁଖିନ କିନ୍ତୁ ପାଭେଲ୍‌କୁ ଚିହ୍ନି ପାରି ନାହିଁ ପ୍ରଥମେ । ବର୍ତ୍ତମାନ ସେ

ପାଭେଲ୍‌ର କାନ୍ଧ ଉପରୁ ହାତଟିକୁ କାଢ଼ିନେଲା । ତା' ମୁହଁର ସନ୍ଦିଗ୍ଧ ଗ୍ଯହାଣୀ ବଦଳିଗଲେ ମଧ୍ୟ ପ୍ରଶ୍ନବାଚକ ଆଖିରେ ସେ ପାଭେଲ୍ ହାତରେ ଥିବା ଯନ୍ତ୍ରପାତିକୁ ଗ୍ଯହୁଁଥିଲା ।

"କୁଆଡ଼େ ଯାଉଛ ତମେ ?" ପଗ୍ଯରିଲା ସେ ଆହୁରି ଟିକିଏ ଭଣା କରି ।

ଅଳ୍ପକେ ବୁଝାଇଦେଲା ପାଭେଲ୍ । ଏତିକିବେଳେ ଆଉଜଣେ କିଏ ଡବାର କଡ଼ରୁ ବାହାରି ଆସିଲା ।

"ଟିକିଏ ଅପେକ୍ଷାକର, ମୁଁ ତାଙ୍କ ଗାର୍ଡକୁ ଡାକି ଆଣେ ।"

ଗାର୍ଡ ପଛେ ପଛେ ଡବା ଭିତରେ କୋର୍ଗ୍‌ଗିନ୍ ପଶିଲାବେଳକୁ ଦାମିକା ପୋଷାକପତ୍ର ପିନ୍ଧା କେତେକ ଲୋକ ସେଥିରେ ବସିରହିଥିଲେ । ଦୁଆର ମୁହଁକୁ ପିଠିକରି ସ୍ତ୍ରୀ ଲୋକଟିଏ ବସିଥିଲା ଟସର କପଡ଼ାଢଙ୍କା ଟେବୁଲ ପାଖକୁ । ପାଭେଲ୍ ପ୍ରବେଶ କଲାବେଳକୁ ଜଣେ ଡେଙ୍ଗା ଅଫିସର ସହିତ ସେ କ'ଣ କଥାବାର୍ତ୍ତା କରୁଥିଲା । ବିଜୁଳୀ ମିସ୍ତ୍ରୀ ପହଞ୍ଚିଲା ମାତ୍ରେ ସେମାନେ ତାଙ୍କର କଥୋପକଥନ ବନ୍ଦ କରିଦେଲେ ।

ଶେଷ ବତୀଠାରୁ ଡବାର କରିଡର ପର୍ଯ୍ୟନ୍ତ ଯାଇଥିବା ତାରକୁ ଶୀଘ୍ର ଶୀଘ୍ର ପରୀକ୍ଷା କରିନେଲା ପାଭେଲ୍ । ସେଗୁଡ଼ାକୁ ଠିକ୍ ଥିଲା । ସେ ବାହାରି ଆସିଲା କେଉଁଠାରେ ଖରାପ ହୋଇଛି ଲକ୍ଷ୍ୟକରିବା ପାଇଁ । ପୋଲାଣ୍ଡ ଇଗଲ୍ ଚିହ୍ନିତ ପିତଳ ବୋତାମଲଗା ଜାମା ପିନ୍ଧିଥିବା ବଳଦ ଭଳି ମୋଟା ବେକ ଥିବା ଗାର୍ଡ ତା' ପଛେ ପଛେ ଅନୁସରଣ କରୁଥିଲା ।

"ଏଠି ସବୁ ଠିକ୍ ଅଛି । ଆର ଡବାରେ ଦେଖିବା, ସେଠାରେ କିଛି ବିଗିଡ଼ିଥାଇ ପାରେ ।"

ଗାର୍ଡ ଦୁଆରମୁହଁର ଗ୍ଯବି ଫିଟାଇଲେ ଓ ଅନ୍ଧାରିଆ କରିଡର ଭିତରେ ପ୍ରବେଶକଲେ ସେମାନେ । ତାର ଉପରେ ଟର୍ଚ୍ଚ ପକାଇ ପକାଇ ଯାଇ ଯାଇ, ପାଭେଲ୍ ବାହାର କରିନେଲା ଖରାପ ହୋଇଥିବା ଜାଗାଟାକୁ । କେଇ ମିନିଟ୍ ପରେ ଡବା ଭିତରର ପ୍ରଥମ ବତୀଟି ଜଳିଉଠିଲା । ସ୍ଥାନଟିକୁ ସାମାନ୍ୟ ଆଲୋକିତ କରିଦେଲା ।

"ଡବା ଭିତରର ବଲ୍‌ବଗୁଡ଼ାକ ପୋଡ଼ିଯାଇଛି । ବଦଳାଇବାକୁ ପଡ଼ିବ", କୋର୍ଗ୍‌ଗିନ୍ ସାଙ୍ଗରେ ଥିବା ଲୋକଟିକୁ କହିଲା ।

"ତା'ହେଲେ ତ ମୋତେ ସେ ଭଦ୍ରମହିଳାକୁ ଡାକିବାକୁ ପଡ଼ିବ । ମୋ ପାଖରେ ଗ୍ଯବି ନାହିଁ ।" ତା'ପରେ ବିଜୁଳୀ ମିସ୍ତ୍ରୀକୁ ଡବାଟା ଭିତରେ ଏକାକୀ ଛାଡ଼ିଦେବାକୁ ଉଚିତ ନମଣି, ଗାର୍ଡଜଣକ ତାକୁ ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଲେ ।

ଭଦ୍ରମହିଳାଜଣକ ଡବା ଭିତରେ ପ୍ରଥମେ ପ୍ରବେଶ କଲେ ଓ କୋର୍ଗ୍‌ଗିନ୍ ତାଙ୍କ ପଛେ ପଛେ ଆସିଲା । ଗାର୍ଡ ଦୁଆରମୁହଁରେ ଛିଡ଼ା ହୋଇ ରହିଲେ ପ୍ରବେଶପଥ ରୁନ୍ଧକରି । ଦୁଇଟି ସୁନ୍ଦର ଭ୍ରମଣକାରୀଙ୍କର ଚମଡ଼ା ବ୍ୟାଗ ଦେଖିଲା ପାଭେଲ୍ । ଦେଖିଲା ସିଲ୍କ ଲୁଗାଟାଏ ଅବିନ୍ୟସ୍ତ ହୋଇ ପଡ଼ିଛି ସିଟ୍ ଉପରେ, ଶିଶିଏ ଅତର, ଛୋଟ ପାଉଡର

କେସ୍ ମଧ୍ୟ ପଡ଼ିଛି ଝରକା ତଳର ଟେବୁଲ ଉପରେ । ନାରୀଜଣକ ଗଦିପକା କୋଚ୍‌ର ଗୋଟିଏ କୋଣରେ ବସିପଡ଼ିଲେ । ସୁନ୍ଦର କେଶରାଶି ଉପରେ ଦୁଇଥର ହାତ ଚଳାଇ ଆଣିଲେ ଓ ବସି ବସି କାର୍ଯ୍ୟରତ ବିଜୁଳୀ ମିସ୍ତ୍ରୀକୁ ଦେଖିଲେ ।

"ମୋତେ ଟିକିଏ ବାହାରକୁ ଯିବା ପାଇଁ ଅନୁମତି ଦେବେ କି ? ମେଜର ଗୋଟିଏ ଥଣ୍ଡା ବିଅର ବୋତଲ ଆଣିବାକୁ କହିଛନ୍ତି", ଷଣ୍ଢଭଳିଆ ମୋଟା କାନ୍ଧଟାକୁ ନୁଆଁଇ ଗାର୍ଡଜଣକ ସନ୍ତ୍ରସ୍ତ ଭଙ୍ଗୀରେ ପଚାରିଲା ଭଦ୍ରମହିଳାଙ୍କୁ ।

"ଯାଆନ୍ତୁ", ନରମ ଗଳାରେ କହିଲେ ମହିଳା ।

କଥାବାର୍ତ୍ତା ପୋଲଣ୍ଡୀୟ ଭାଷାରେ ହେଉଥିଲା ସେମାନଙ୍କର ।

କରିଡରରୁ ମେଣ୍ଟାଏ ଆଲୁଅ ଆସିପଡ଼ିଲା ମହିଳାଟିର କାନ୍ଧ ଉପରେ । ପ୍ୟାରିସ୍‌ର ସବୁଠାରୁ ଭଲ ଦରଜୀ ହାତରେ ତିଆରି, ଦାମୀ ସିଲ୍‌କ ଗାଉନ୍ ପିନ୍ଧା, କାନ୍ଧ ଦ୍ୱୟ ତା'ର ଫୁଲୁଲା ଥିଲା । କାନରେ ପିନ୍ଧିଥିବା ହୀରାମାଳ ଝଟକୁଥିଲା । କୋର୍ଚ୍ଚଗିନ୍ କେବଳ ତା'ର ବାହୁମୂଳ ଓ ହାତୀଦାନ୍ତରେ ଗଢ଼ା ହେଲାଭଳି କାନ୍ଧ ଦେଖିପାରୁଥିଲା । ମୁହଁରେ ଛାଇ ପଡ଼ିଥିଲା । ସ୍କ୍ରୁଡ୍ରାଇଭର ଧରି ଶୀଘ୍ର ଶୀଘ୍ର କାମକରି ଛାତରୁ ଓହଳିଥିବା ବଲ୍‌ବଟାକୁ ବଦଳେଇଦେଲା ପାଭେଲ୍ । ମୁହୂର୍ତ୍ତକ ମଧ୍ୟରେ ଡବା ସାରା ଆଲୋକର ବନ୍ୟାରେ ଉଦ୍‌ଭାସିତ ହୋଇଉଠିଲା । କେବଳ ବାକୀ ରହିଥିଲା ମହିଳାଟି ବସିଥିବା ସିଟ୍ ଠିକ୍ ଉପରର ବଲ୍‌ବଟି ପରୀକ୍ଷା କରିବା ।

"ସେ ବଲ୍‌ବଟା ପରୀକ୍ଷା କରିବି", ତାଙ୍କ ଆଗରେ ଠିଆହୋଇ କହିଲା କୋର୍ଚ୍ଚଗିନ୍ ।

"ଆରେ ହଁ, ମୁଁ ଏଠି ବାଟ ବନ୍ଦକରି ବସିଛି", ବୋଲି ସ୍ପଷ୍ଟ ରୁଷୀୟ ଭାଷାରେ କହିଲା ମହିଳାଟି । ହାଲୁକା ଭାବରେ ଉଠି, ତାକୁ ପ୍ରାୟ ଲାଗି ଛିଡ଼ାହେଲା । ଏବେ ପାଭେଲ୍ ତାକୁ ସ୍ପଷ୍ଟଭାବରେ ଦେଖିପାରିଲା । ଧନୁଭଳି ବଙ୍କା ଭୂଲତା, ବଙ୍କା ବହଳ ଓଠ, ବେଶ୍ ଚିହ୍ନା ଚିହ୍ନା ପାଭେଲ୍‌ର । କୌଣସି ସନ୍ଦେହ ନାହିଁ ଯେ, ସେ ନେଲୀ ଲେଷ୍ଟିନ୍‌ସାୟା . ଓକିଲଙ୍କର ଝିଅ । ସେ ମଧ୍ୟ ପାଭେଲ୍‌ର ଆଶ୍ଚର୍ଯ୍ୟାନ୍ୱିତ ଚାହାଣୀକୁ ଲକ୍ଷ୍ୟ କରିପାରିଲା । ପାଭେଲ୍ ତାକୁ ଚିହ୍ନି ପାରିଲେ ମଧ୍ୟ ଏ ଚାରିବର୍ଷ ଭିତରେ ସେ ଏତେ ବଦଳିଯାଇଥିଲା ଯେ, ସେଇ ତା'ର ଦୁଷ୍ଟ ପଡ଼ୋଶୀ ପିଲାଟି ବୋଲି ନେଲୀ ଚିହ୍ନି ପାରୁ ନଥିଲା ।

ତା'ର ବିସ୍ମୟାଭିଭୂତ ଚାହାଣୀରେ ବିରକ୍ତହୋଇ ସେ ଡବାଟିର ଦ୍ୱାରମୁହଁକୁ ଚାଲିଯାଇ ଛିଡ଼ାହେଲା ଓ ଅଧୈର୍ଯ୍ୟ ଭାବରେ ନିଜର ପେଟେଣ୍ଟ ଚମଡ଼ା ଜୋତାର ଗୋଇଠିକୁ ବାଡ଼େଇବାକୁ ଲାଗିଲା । ପାଭେଲ୍ ଦ୍ୱିତୀୟ ବଲ୍‌ବଟି ଆଡ଼କୁ ଦୃଷ୍ଟି ପକାଇଲା । ବଲ୍‌ବଟିକୁ ଖୋଲିଲା । ଆଲୁଅ ପାଖକୁ ଟେକି ଧରି ନିଜକୁ ଏବଂ ତାକୁ ଆଶ୍ଚର୍ଯ୍ୟ କରେଇଦେଇ ପୋଲଣ୍ଡୀୟ ଭାଷାରେ ପ୍ରଶ୍ନକଲା :

"ଭିକ୍‌ଟର ବି କ'ଣ ଏଇଠି ଅଛି ?"

କହିଲାବେଳେ ପାଭେଲ୍ ବୁଲି ନଥିଲା । ତେଣୁ ନେଲୀର ମୁଖଭଙ୍ଗୀ ସେ ଲକ୍ଷ୍ୟ

କରିପାରି ନାହିଁ । ମାତ୍ର ତା' ପ୍ରଶ୍ନ ପରର ବିଳମ୍ବିତ ନୀରବତା ଜଣାଇ ଦେଇଥିଲା ଯେ, ନେଲୀ ବିସ୍ମିତା ହୋଇଯାଇଛି ।

"କାହିଁକି ? ତମେ କ'ଣ ତାକୁ ଜାଣିଛ ?"

"ହଁ, ଖୁବ୍ ଭଲ ଭାବରେ । ଆମେ ପଡ଼ୋଶୀ ଥିଲୁ, ତମେ ଜାଣ ।" ତା' ଆଡ଼କୁ ମୁହଁ ବୁଲାଇ ପାଭେଲ୍ କହିଲା ।

"ତମେ ... ତମେ ପାଭେଲ୍ ?... ଙ୍କ ପୁଅ ?" ଦ୍ୱନ୍ଦ୍ୱରେ ପଡ଼ି କହିଲା ନେଲୀ ।

"ହଁ, ତମ ରାନ୍ଧୁଣୀର ପୁଅ", ତାକୁ ସାହାଯ୍ୟ କରି କହିଲା ପାଭେଲ୍ ।

"ଆରେ ! ତମେ କେତେ ବଡ଼ ହୋଇଯାଇଛ ! ତମକୁ ମୁଁ ଯେତେବେଳେ ଦେଖିଥିଲି, ତମେ ସେତେବେଳେ ଥିଲ ଭାରୀ ଦୁଷ୍ଟପିଲା ।"

ତା'ର ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ଅନାଇଗଲା ନେଲୀ ।

"କିନ୍ତୁ ଭିକ୍ଟରର କଥା କାହିଁକି ପଚାରୁଛ ? ମୋର ଯେତେଦୂର ମନେପଡ଼ୁଛି, ସେ ତ ତମର ବନ୍ଧୁ ନଥିଲା ।" କୋମଳ କଣ୍ଠରେ କହୁଥିଲା ସେ । ଜଣାପଡ଼ୁଥିଲା ଯେ, ଏ ଅପ୍ରତ୍ୟାଶିତ ପରିଚିତି ତାକୁ ଆମୋଦିତ କରିଛି ।

କାନ୍ଧରେ ସ୍ମୃତି ଦ୍ରୁତ ବସିଗଲା ।

"ଏ ଯାଏଁ ଭିକ୍ଟରର ମୋତେ ଗୋଟାଏ ଧାର ସୁଝି ନାହିଁ । ତାକୁ ଦେଖିଲେ କହିଦେବ ଯେ, ଯେବେହେଲେ ସେ ଧାର ଫେରାଇ ନେବାର ଆଶା ମୁଁ ଏବେ ବି ସୁଦ୍ଧା ହରାଇ ନାହିଁ ।"

"ଆରେ ... ସେ ତମଠାରୁ କେତେ କ'ଣ ନେଇଛି ମୋତେ କୁହ ! ମୁଁ ସୁଝିଦେବି ତା' ପାଇଁ ।" ସେ ଭଲଭାବରେ ବୁଝିପାରୁଥିଲା କୋର୍ଚ୍ଚାଗିନ୍ କେଉଁ ଧାରକଥା ମନରେ ରଖିଛି । ସେ ଜାଣିଥିଲା ଯେ, ତା' ଭାଇ ପାଭେଲ୍‌କୁ ପେଟ୍ଲ୍ୟୁରା ଲୋକଙ୍କ ହାତରେ ଧରାଇ ଦେଇଥିଲା । ମାତ୍ର ପାଭେଲ୍‌ର ଏ କଥାରେ ଟିକେ ମଜା କରିବାକୁ ଭଲ ଲାଗୁଥିଲା ତାକୁ ।

କୋର୍ଚ୍ଚାଗିନ୍ କିଛି କହିଲା ନାହିଁ ।

"ଆଚ୍ଛା, କହିଲ ଦେଖି, ଆମ ଘରଟା କ'ଣ ଲୁଟିହୋଇ ଯାଇଛି ? ଏବେ କ'ଣ ସେଇଟା ଭାଙ୍ଗିରୁଜି ଗଲାଣି ? ସେ ଖରାଦିନିଆ ଘର, ଗଛଲତା ଏସବୁ ନିଶ୍ଚେ ନଷ୍ଟ ହୋଇଯିବଣି, ନା ?" ନେଲୀ ଆଗ୍ରହସହକାରେ ପଚାରିଲା ।

"ଘରଟା ଆଉ ତମର ନୁହଁ ... ଆମର, ଏବଂ ଆମେ ଆମ ଘରଟାକୁ ଭାଙ୍ଗିଦେବୁ କାହିଁକି ?"

ନେଲୀ ପରିହାସରେ ହସିଲା ।

"ଓଃ, ବେଶ୍ ଶିଖିଛତ ଦେଖୁଛି ! ତମେ ବୋଧେ ଜାଣି ପାରୁଥିବ ଯେ, ଏ ଗାଡ଼ିଟା ପୋଲାଣ୍ଡ କୂଟନୀତିଜ୍ଞଙ୍କର ଏବଂ ଏଠାରେ ମୁଁ ମାଲିକ ଓ ତମେ ଚାକର, ଠିକ୍ ଆଗଭଳି । ଦେଖ, ତମେ ଏବେ ଆଲୁଅ ଲଗାଇବାକୁ ଚେଷ୍ଟା କରୁଛ, କାରଣ ମୁଁ

ମଉଜରେ କୋଟ୍‌ରେ ଖୋଇପାରିବି ଓ ପଢ଼ିବି । ତମ ମା ମୋ ଲୁଗା କାଚୁଥିଲେ ଆଉ ତମେ ପାଣି ବୋହୁଥିଲ । ଏବେ ମଧ୍ୟ ଠିକ୍ ସେଇ ପରିବେଶ ଭିତରେ ଆମର ଭେଟ ହୋଇଛି ।"

ଉଦ୍ଦେଶ୍ୟମୂଳକ ଭାବରେ ଆଘାତ କରିବା ପାଇଁ କହୁଥିଲେ ସେ । ଛୁରୀରେ ତାରର ଶେଷଭାଗର ଇନ୍‌ସୁଲେସନ୍ କାଢ଼ୁକାଢ଼ୁ, ପାଭେଲ୍ ତାକୁ ଘୃଣାରେ ଅନାଇଲେ ।

"ତମ ପାଇଁ ଗୋଟିଏ ହେଲେ କଳଙ୍କିଇଗା କଣ୍ଟା ବି ବାଡ଼େଇବାକୁ ମୁଁ ଆସି ନାହିଁ ଏଠିକି । ମାତ୍ର ତମ ବୁର୍ଜୁଆମାନେ ଏ କୂଟନୀତିଜ୍ଞ ବୋଲି ଗୋଟାଏ ଜିନିଷ ତିଆରି କରିଛନ୍ତି, ତେଣୁ ଏତକ କରୁଛି । ତାଙ୍କ ମୁଣ୍ଡଟାକୁ ଆମେ କାଟୁ ନାଁ, ବରଂ ତାଙ୍କ ପ୍ରତି ସତରେ ଅନେକ ସଦୟ ବ୍ୟବହାର କରୁ, ଯାହାକି ତମମାନଙ୍କଠାରୁ ମୋଟେ ଆଶା କରାଯାଏ ନା ।"

ନେଲୀର ଗାଲ ଦୁଇଟା ଉତ୍ତେଜନାରେ ଲାଲ ହୋଇଗଲା ।

"ତମେ ଯଦି ଓ୍ୱାର୍ସା ଦଖଲ କରିଥାନ୍ତ, ତେବେ ମୋର କ'ଣ କରିଥାନ୍ତ ? ମୋତେ କାଟି ଖଣ୍ଡ ଖଣ୍ଡ କରି ଦିଅନ୍ତ ବୋଲି ଭାବୁଛି, କି ମୋତେ ନେଇ ତମ ରକ୍ଷିତା କରି ରଖିଥାନ୍ତ ବୋଧହୁଏ ।"

ବେଶ ଔଦ୍ଧତ୍ୟପୂର୍ଣ୍ଣ ଭଙ୍ଗୀରେ ଦୁଆର ପାଖରେ ଛିଡ଼ା ହୋଇଥାଏ ସେ । ତା'ର କୋକେନ୍ ଗନ୍ଧରେ ଅଭ୍ୟସ୍ତ ନାକପୁଡ଼ା ଦୁଇଟା ଫୁଲି ଫୁଲି ଉଠୁଥାଏ । କୋଚ୍ ଉପର ଆଲେକ ଜଳି ଉଠିଲା । ପାଭେଲ୍ ସଳଖହୋଇ ଛିଡ଼ା ହେଲେ ।

"ତମକୁ ? ତମଭଳି ଲୋକଙ୍କୁ ମାରି କି ଲାଭ ? ତମେ ତ କୋକେନ୍ ଖାଇ ଯେମିତିହେଲେ ମରିବ । ତାଛଡ଼ା ରକ୍ଷିତା ହିସାବରେ ତମକୁ ମୁଁ ଗ୍ରହଣ କରିବି ନାହିଁ ।"

ନିଜର ଯନ୍ତ୍ରପାତି ଧରି ସେ ଦ୍ୱାର ପାଖକୁ ଆସିଲେ । ତାକୁ ବାଟ ଛାଡ଼ି ଦେବାକୁ ନେଲୀ ଘୁଞ୍ଚିଗଲା ଟିକିଏ । ଅନ୍ତବାଟ ଯାଇଛି, ଶୁଣିଲେ ସେ ପଛଆଡ଼ୁ ଛେପ ପକାଇ କହୁଛି :

"ବଦ୍ଜାତ୍ ବଲ୍‌ଶେଭିକ୍ !"

* *

ତା' ପରଦିନ ସନ୍ଧ୍ୟାରେ ଲାଇବ୍ରେରୀକୁ ଯିବା ବାଟରେ ସେ ଭେଟିଲେ କାତ୍ୟୁଶା ଜେଲେନୋଭାକୁ । ଛୋଟ ହାତରେ ସେ ପାଭେଲ୍‌ର ଜାମାଟାକୁ ଭିଡ଼ିଧରି ହସି ହସି ରାସ୍ତା ଓଗାଳି ରହିଲା ।

"କୁଆଡ଼େ ଦଉଡ଼ିଛ, ପୁରୁଣା ରାଜନୀତିଜ୍ଞ, ଜ୍ଞାନବୃଦ୍ଧ ?"

"ଲାଇବ୍ରେରୀକୁ ଯାଉଛି, ମାଉସୀ, ମୋତେ ବାଟ ଛାଡ଼ି ଦିଅନ୍ତୁ", ପାଭେଲ୍ ସମାନ ଭାବରେ ବ୍ୟଙ୍ଗୋକ୍ତିଭରା କଣ୍ଠରେ କହିଲେ । ଭଦ୍ରଭାବରେ ତାଙ୍କ କାନ୍ଧଧରି ଅପସରେଇ ଦେଲେ ସେ । ନିଜକୁ ମୁକ୍ତକରି ତା' ସାଙ୍ଗେ ସାଙ୍ଗେ ଆଗେଇଲା କାତ୍ୟୁଶା ।

"ହେଇ ଶୁଣ ପାଭେଲ୍, ସଦାବେଳେ କ'ଣ ଗୋଟାଏ ପଢ଼ୁଛୁ ? ମୁଁ କ'ଣ କହୁଛି

କି ? ଗ୍ଲ ଆଜି ରାତିରେ ଗୋଟାଏ ପାର୍ଟିକୁ ଯିବା । ଜିନା ଗ୍ଲାଦିଶ୍ ଘରେ ସମସ୍ତେ ମିଳୁଛନ୍ତି ରାତିରେ । ଝିଅମାନେ ମୋତେ ସବୁଦିନେ ପଗ୍ଗରନ୍ତି ତୋତେ ଆଣିବା ଲଗି । ତୁ କିନ୍ତୁ ଆଜିକାଲି ତୋ ରାଜନୈତିକ ପଢ଼ାପଢ଼ି ଛଡ଼ା ଆଉ କିଛି ଭାବୁନୁ । କିରେ ! ମନଟା ହସଖୁସିରେ ରଖିବାକୁ ଟିକେ ମଉଜ ବି ତୋର ଦରକାର ନାହିଁ ? ଭାରି ଭଲ ଲଗିବ ତୋତେ । ଆଜିକ ପାଇଁ ପଢ଼ାପଢ଼ି ବନ୍ଦକର ।"

"କି ପାର୍ଟି ହଉଛି ? ସେଠିକି ଗଲେ କ'ଣ କରିବା ?"

"କ'ଣ କରିବା ?", ଥଟ୍ଟାକରି ତାକୁ ଅନାଇ ହସିଲା କାତ୍ୟୁଶା । "ପ୍ରାର୍ଥନା କରିବା ନାହିଁ ମଁ । ମଉଜ କରିବାକୁ ଯିବା ଆଉ କ'ଣ ? ତୁ ତ ଭଲ ଆକର୍ଡିଆନ୍ ବଜାଉ ? ମୁଁ କିନ୍ତୁ କେବେ ଶୁଣି ନାହିଁ ତୋ ବାଜା । ଆ ... ଆଜିକ ଆମକୁ ଟିକେ ବଜାଇ ଶୁଣା । କ'ଣ ହବ ନାହିଁ ? ମୋତେ ଖୁସି କରିବା ପାଇଁ । ଜିନାର ଦାଦିର ଗୋଟାଏ ଆକର୍ଡିଆନ୍ ଅଛି । ସେଇଟା କିନ୍ତୁ ବଜାଏ ନାହିଁ । ଝିଅଗୁଡ଼ାକ ତୋ କଥା ଜାଣିବା ପାଇଁ ଭାରି ଆଗ୍ରହୀ । ତୁତ ପୋଟାମୁହାଁ ... ବହି ଭଲ କି ତୁ ଭଲ ! କିଏ ଲଲ କହିଛି ଯେ, କମ୍‌ସୋମୋଲ୍‌ର ସଭ୍ୟମାନେ ଟିକେ ମଉଜ ମଜଲିସ୍ ବି କରିବେ ନାହିଁ ବୋଲି ? ତୁ ଆସିଲୁ । ମୁଁ ଆଉ ତୋତେ ବୁଝାଇ ପାରିବି ନାହିଁ, ନଗଲେ କିନ୍ତୁ କଳି ଲଗିବ ଆଉ ମାସେଯାଏ ତୋ ସାଙ୍ଗେ କଥା ବାର୍ତ୍ତା ବନ୍ଦ ।"

ବଡ଼ ଆଖିଆ କାତ୍ୟୁଶା ଜଣେ ଘରଚିତ୍ରକାର, ଭଲ କମ୍ରେଡ୍ ଓ ପ୍ରଥମ ଶ୍ରେଣୀର କମ୍‌ସୋମୋଲ୍ ସଦସ୍ୟା । ତାଙ୍କ ମନ ଭାଙ୍ଗିଦେବାକୁ ଗ୍ହୁଁନଥିଲ ପାଭେଲ୍ । ତେଣୁ ରାଜିହେଲ । ତାକୁ ଯଦିଓ ଏସବୁ ପାର୍ଟି ଫାର୍ଟିରେ ଯୋଗ ଦେବାକୁ ଭଲ ଲଗେନା, ଅଜାଗାକୁ ଆସିଯାଇଛି ବୋଲି ମନେକରେ ।

ଇଂଜିନ୍ ଡ୍ରାଇଭର ଗ୍ଲାଦିଶ୍‌ଙ୍କ ଘରେ ଅନେକ ତରୁଣ ତରୁଣୀଙ୍କର ଗହଳଚହଳ ଲଗିଛି । ବୟସ୍କ ବୟସାମାନେ ଆଉ ଗୋଟିଏ ଘରକୁ ଗ୍ଲଲିଗଲେ, ପନ୍ଦର ଜଣ ତରୁଣ ତରୁଣୀଙ୍କ ପାଇଁ ଲମ୍ବା ରହିବା ଘର ଓ ବଗିଗ୍ଭକୁ ଲମ୍ବି ଯାଇଥିବା ବାରଣ୍ଡାଟିକୁ ଛାଡ଼ିଦେଇ । "ପାରା ଖୁଆଇବା" ଖେଳ ବୋଲି ଗୋଟିଏ ଖେଳ ଗ୍ଲଲିଥିଲ, କାତ୍ୟୁଶା ପାଭେଲ୍‌କୁ ଧରି ବଗିଗ୍ଭ ଦେଇ ବାରଣ୍ଡାରେ ପହଞ୍ଚିଲବେଳକୁ । ପିଠିକୁ ପିଠି ହୋଇ ଦୁଇଟି ଚଉକି ଅଗଣା ମଝିରେ ପଡ଼ିଥିଲ । ଖେଳ ପରିଗ୍ଭଳନା କରୁଥିବା ତରୁଣୀଙ୍କ ନିର୍ଦ୍ଦେଶରେ ଗୋଟିଏ ପୁଅ ଓ ଗୋଟିଏ ଝିଅ ପିଠିକୁ ପିଠି ଲଗାଇ ବସୁଥିଲେ ଚଉକି ଦିଓଟିରେ । ସେ, "ବର୍ତ୍ତମାନ ପାରା ଖୁଆଅ !" ବୋଲି ଚିତ୍କାର କରି ଡାକିଲ ପରେ, ସେମାନେ ଢଳି ପଡ଼ୁଥିଲେ, ଜଣଙ୍କର ଓଠ ଆଉ ଜଣଙ୍କର ଓଠ ସହିତ ମିଶିଲ ପର୍ଯ୍ୟନ୍ତ । ଆଉମାନେ ଆମୋଦିତ ହୋଇ ଦେଖୁଥାନ୍ତି ଏ ଦୃଶ୍ୟ । ତା'ପରେ ସେମାନେ ଖେଳିଲେ 'ରିଙ୍ଗ୍' ଓ 'ଡାକପିଅନ୍‌ର ଡାକରା'—ଦୁଇଟିଯାକ ସେହି ଚୁମ୍ବନର ଖେଳ । ଉଜ୍ଜ୍ୱଳ ଆଲୋକିତ ଅଗଣାରେ ଚୁମା ନଦେଇ, ଖେଳାଳୀମାନେ ଲୁଗ୍ଭଇ ଅନ୍ଧାର ଘରଟା ଭିତରକୁ ଯାଆନ୍ତି ଗ୍ଭଲି । ଯେଉଁମାନେ ଏଥିରେ ସନ୍ତୁଷ୍ଟ ନୁହନ୍ତି, ତାଙ୍କ ପାଇଁ ଏକ ଛୋଟ ଗୋଲ ଟେବୁଲ୍ ଉପରେ "ଫୁଲରାଣୀ"

ତାସ୍ ମୁଠାଏ ପଡ଼ିଥାଏ । ପାଭେଲ୍ ପାଖରେ ବସିଥିବା ଷୋଡ଼ଶୀଟିଏ ନୀଳ ନୀଳ, ପାଣ୍ଡୁର ଆଖି ତା'ର, ନିଜ ନାଁ ମୁରା ବୋଲି କହି ପରିଚିତ ହୋଇଥିଲା ପାଭେଲ୍ ସହିତ । ପାଭେଲ୍‌କୁ ପଟେ ତାସ୍ ବଢ଼ାଇଦେଇ, ଅପାଙ୍ଗ ହାଣି କଅଁଳେଇ କହିଲା 'ବାଇଗିଣୀ' ।

କେଇବର୍ଷତଳେ ପାଭେଲ୍ ଏଭଳି ପାର୍ଟିରେ ଯୋଗ ଦେଇଛି । ଏ ଚପଳତାରେ ଭାଗ ନ ନେଇଥିଲେ ମଧ୍ୟ ସେ ଏସବୁକୁ ସାଧାରଣ ଭିତରୁ ବାହାର ନୁହଁ ବୋଲି ବିଚାର କରିଛି । ଏବେ କିନ୍ତୁ ଛୋଟିଆ ସହରର ପେଟି-ବୁର୍ଜୁଆ ଜୀବନରୁ ଚିରଦିନ ପାଇଁ ବିଛିନ୍ନ ହୋଇ ଆସିଲା ପରେ, ତାକୁ ଏସବୁ ବିରକ୍ତିପ୍ରଦ ଓ ଅର୍ଥହୀନ ଲାଗିଲା ।

ତା' ହାତରେ ଥିଲା 'ଫୁଲ' ତାସ୍‌ରୁ ପଟେ ।

'ବାଇଗିଣୀ' ତାସ୍ ପଟକର ପଛପଟେ ସେ ପଢ଼ିଲା । ଲେଖା ଅଛି : "ମୁଁ ତମକୁ ଭାରି ଭଲପାଏ ।"

ପାଭେଲ୍ ଝିଅଟିକୁ ଚାହିଁଲା । ଟିକିଏ ବିବ୍ରତ ହୋଇ ସେ ମଧ୍ୟ ଚାହାଣୀ ଫେରାଇଲା ।

"କାହିଁକି ?"

ତା'ର ପ୍ରଶ୍ନ ଅତି ମାମୁଲୀ । ମୁରା କିନ୍ତୁ ଉତ୍ତର ପ୍ରସ୍ତୁତ କରି ରଖିଥିଲା ।

'ଗୋଲାପ' ବୋଲି ଗୁଣୁଗୁଣୁ କରି କହି ସେ ଆଉ ପଟେ ତାସ୍ ବଢ଼ାଇଲା ପାଭେଲ୍ ହାତକୁ ।

'ଗୋଲାପ' ତାସ୍ ପଛକଡ଼େ ଲେଖାଥିଲା :

"ତମେ ମୋର ଆଦର୍ଶ ।"

ଝିଅଟି ଆଡ଼କୁ ବୁଲି ନିଜ କଣ୍ଠକୁ ଯଥାସାଧ୍ୟ ମୋଲାୟମ କରି ପାଭେଲ୍ ପଚାରିଲା :

"ଏସବୁ ବାଜେ କାମରେ କାହିଁକି ଲାଗିଛ ?"

ଏତେ ଆଚମ୍ବିତ ହୋଇ ଯାଇଥିଲା ଯେ, କ'ଣ କହିବ ମୁରା ଠିକ୍ କରି ପାରିଲା ନାହିଁ ।

"ତମକୁ କ'ଣ ମୋ ସମ୍ବାଦ ଭଲ ଲାଗିଲା ନାହିଁ ?" କହିଲା ସେ ।

ଏ ପ୍ରଶ୍ନ ଏଡ଼ାଇଗଲା ପାଭେଲ୍ । ମାତ୍ର ସେ ଝିଅଟି ବିଷୟରେ ଅଧିକ ଜାଣିବାକୁ ଆଗ୍ରହୀ ଥିଲା । ସେ ତାକୁ ଅନେକ ପ୍ରଶ୍ନ କରିଗଲା ଓ ଝିଅଟି କୌଣସି ଅନିଚ୍ଛା ପ୍ରକାଶ ନକରି ସେ ସବୁର ଉତ୍ତର ଦେଲା । ମାତ୍ର କେଇ ମିନିଟ୍ ଭିତରେ ପାଭେଲ୍ ଜାଣିନେଲା ଯେ, ସେ ସେକେଣ୍ଡରୀ ସ୍କୁଲରେ ପଢ଼ୁଛି । ତା' ବାପା ମଧ୍ୟ ମରାମତି କାରଖାନାରେ କାମକରେ । ସେ ପାଭେଲ୍‌କୁ ଅନେକ ଦିନରୁ ଜାଣିଛି । ତା' ସହିତ ଚିହ୍ନା ପରିଚୟ ହେବାକୁ ଚାହୁଁଥିଲା ।

"ତମ ସାଙ୍ଗିଆ କ'ଣ ?"

"ଭୋଲିନ୍‌ସେଭା ମୁରା ।"

"ତମ ଭାଇ କ'ଣ ୟାର୍ଡ କମ୍‌ସୋମୋଲ୍ ସେଲ୍‌ର ସଂପାଦକ ?"

"ହଁ ।"

ଏବେ ସେ ଜାଣିଲା ଯେ, ଜିଲାର ଜଣେ ସବୁଠାରୁ ସକ୍ରିୟ ସଭ୍ୟ ଭୋଲିନ୍‌ସେଭ୍ ନିଜ ଭଉଣୀକୁ ଏଭଳି ଏକ ଅଜ୍ଞ ଓ ହାଲୁକା ସ୍ୱଭାବର ଝିଅ ହିସାବରେ ବଢ଼ି ଉଠିବାକୁ ଦେଉଛି । ସେ ଓ ତା' ସାଙ୍ଗମାନେ ଗତବର୍ଷମାନଙ୍କରେ ଏଭଳି ଅସଂଖ୍ୟ ଡ୍ରମନ ପାର୍ଟିରେ ଯୋଗ ଦେଇଛନ୍ତି । ସେ ମଧ୍ୟ ପାଭେଲ୍‌କୁ କହିଲା ଯେ, ଅନେକ ଥର ତା' ଭାଇ ସାଙ୍ଗରେ ତାକୁ ଦେଖିଛି ସେ ।

ପାଭେଲ୍ ଯେ ତା' କାମକୁ ପସନ୍ଦ କରୁ ନାହିଁ, ଏକଥା ଅନୁଭବ କରିପାରିଲା ମୁରା । ତା' ମୁହଁରେ ବ୍ୟଙ୍ଗପୂର୍ଣ୍ଣ ହସ ଦେଖି ସେ 'ପାରାଙ୍କୁ ଖୁଆଅ' ବୋଲି ଡାକରାକୁ ସ୍ପଷ୍ଟ ଭାବରେ ପ୍ରତ୍ୟାଖ୍ୟାନ କରି ଗଲା ନାହିଁ ।

ସେମାନେ ଆଉ କେତେ ସମୟ ବସି ଗପିଲେ । ମୁରା ନିଜ ବିଷୟରେ କେତେ କଥା କହିଗଲା ତାକୁ । କାତ୍ୟୁଶା ତାଙ୍କ ପାଖକୁ ଆସିଲା ଏଥର ।

"ଆକର୍ଡିଆନ୍ ଆଣିବି ?" ପଚାରିଲା ସେ । ତା'ପରେ ମୁରା ଆଡ଼କୁ ଦୁଷ୍ଟାମୀଭରା ଚହାଣୀରେ ଅନାଇ କହିଲା, "ଦେଖୁଛି ତା'ହେଲେ ତୁ ବେଶ୍ ବନ୍ଧୁ କରି ସାରିଲୁଣି ।"

କାତ୍ୟୁଶାକୁ ପାଖରେ ବସାଇ ଗହଳିର ସୁଯୋଗ ନେଇ ସେ କହିଲା, "ମୁଁ ବଜାଇବି ନାହିଁ । ମୁରା ଓ ମୁଁ ଯାଉଛୁ ।"

"ଓହୋଃ ! ତା' ସାଙ୍ଗେ ମଜ୍ଜି ଯାଇଛୁ ନା ?" ତାକୁ ଚାହିଁକରି କହିଲା କାତ୍ୟୁଶା ।

"ସେ କଥା ଠିକ୍ । ମୋତେ କହିଲ କାତ୍ୟୁଶା, ଏଠି କେବଳ ଆମେ କମ୍‌ସୋମୋଲ୍‌ର ସଭ୍ୟ ଅଛେ ନା ଆଉ କେତେଜଣ ଏମିତି 'ପାରା ଖୁଆଇଲାବାଲା' ସଭ୍ୟ ସଭ୍ୟା ଅଛନ୍ତି ?"

"ସେଗୁଡ଼ା ବନ୍ଦ ହେଲାଣ ଏବେ ଆମେ ସବୁ ନାଚ ଆରମ୍ଭ କରିବୁ ।"

କୋର୍ଚ୍ଚାଗିନ୍ ଉଠିଲା ।

"ଠିକ୍ ଅଛି ଲୋ ବୁଢ଼ୀ ! ତମେ ନାଚୁଥାଅ, କିନ୍ତୁ ମୁଁ ଆଉ ମୁରା ଏଠୁ ଯାଉଛୁ ।"

* * *

ଦିନେ ସନ୍ଧ୍ୟାରେ ଓକୁନେଭ୍ ଘରକୁ ଆସି ଆନ୍ନା ବୋର୍ହାର୍ଟ୍ ସେଠି ଏକାକୀ କେବଳ ପାଭେଲ୍‌କୁ ଦେଖିଲା ।

"ତମେ କ'ଣ ଖୁବ୍ ବ୍ୟସ୍ତ ଅଛ ପାଭେଲ୍ ? ମୋ ସାଙ୍ଗରେ ଟାଉନ୍ ପଞ୍ଚାୟତର ଖୋଲା ଅଧିବେଶନକୁ ଯାଇପାରିବ ଟିକିଏ ? ମୁଁ ଏକୁଟିଆ ଯାଇପାରିବି ନାହିଁ । କାରଣ ଫେରିଲାବେଳକୁ ଅନେକ ଡେରି ହେବ ।"

ସାଙ୍ଗେ ସାଙ୍ଗେ ରାଜି ହୋଇଗଲା କୋର୍ଚ୍ଚାଗିନ୍ । ବିଛଣା ଉପରେ କଣ୍ଟାରେ ଲଟକା ହୋଇଥିବା ନିଜର ମାଉଜର ବନ୍ଧୁକଟାକୁ ନେବାକୁ ଯାଉଥିଲା ସେ । ଭାବିଲା ଏଇଟା ଓଜନିଆ ହେବ । ତେଣୁ ସେଇଟାକୁ ଛାଡ଼ି ଓକୁନେଭ୍‌ର ପିସ୍ତଲ୍‌ଟାକୁ ଡ୍ରୟାରରୁ କାଢ଼ି

ପକେଟ୍‌ରେ ପୂରାଇଲା । ଓକୁନେଭ୍ ପାଇଁ ରଖି ଦେଲା ଖଣ୍ଡେ ଚିରିକୁଟି । ଘର ବନ୍ଦକରି ଗ୍ରଚାବିଟା ଗୋଟାଏ ଠଣାରେ ଲୁଗ୍ରଇ ରଖିଲା, ଯେଉଁଠୁ ତା' ବନ୍ଧୁ ସେଇଟାକୁ ପାଇପାରିବ ।

ଅଧିବେଶନରେ ପାନ୍‌କ୍ରାତୋଭ୍ ଓ ଓଲ୍‌ଗା ୟୁରେନେଭାଙ୍କୁ ଭେଟିଲେ ସେମାନେ । ସେମାନେ ସମସ୍ତେ ଏକାଠି ବସିଲେ ଓ ମଧ୍ୟାନ୍ତର ସମୟରେ ଗ୍ଲୋକରେ ଏକାଠି ବୁଲୁଥାନ୍ତି । ଆନ୍ନା ଠିକ୍ ଭାବିଥିଲା, ସଭା ଅନେକ ଡେରିରେ ଶେଷ ହେଲା ।

"ଆଜି ରାତିରେ ତୁ ମୋ ଘରେ ବରଂ ରହିଯା", ଓଲ୍‌ଗା କହିଲା । "ଡେରି ହୋଇଗଲାଣି । ତୋତେ ବି ଅନେକଗୁଡ଼ାଏ ବାଟ ଯିବାକୁ ହେବ ।"

ଆନ୍ନା ମନାକଲା । କହିଲା, "ପାଭେଲ୍ ରାଜି ହୋଇଛି ମୋତେ ଘରେ ଛାଡ଼ିଦେଇ ଯିବାକୁ ।"

ପାନ୍‌କ୍ରାତୋଭ୍ ଓ ଓଲ୍‌ଗା ପ୍ରଧାନ ରାଜ ରାସ୍ତାରେ ଗ୍ରଲିଗଲେ ଓ ଅନ୍ୟ ଦୁଇଜଣ ପାହାଡ଼ିଆ ରାସ୍ତାରେ ସୋଲେମେଙ୍କା ଆଡ଼କୁ ଆଗେଇଲେ ।

ନିଶୂନ୍ ଅନ୍ଧାର ରାତି । ତରୁଣତରୁଣୀ ଦୁହେଁ ନିର୍ଜନ ରାଜପଥରେ ଆଗେଇଗଲା ବେଳେ ସାରା ସହର ଗଭୀର ନିଦ୍ରାରେ ମଗ୍ନ । ଧୀରେ ଧୀରେ ସେମାନଙ୍କର କଣ୍ଠସ୍ୱର ଓ ପାଦଶବ୍ଦ ହଜିଗଲା । ସହର ମଝିରୁ ପାଭେଲ୍ ଓ ଆନ୍ନା ଗୋଟିଏ ଚଲାରାସ୍ତା ଧରିଲେ ଅଳ୍ପ ବାଟ ହେବ ବୋଲି । ବଜାର ଭିତରେ ରାତି ଡିଉଟିରେ ଥିବା ପ୍ରହରୀ ତାଙ୍କୁ ଅଟକେଇ ତାଙ୍କ କାଗଜପତ୍ର ତନଖି କରି ଛାଡ଼ିଦେଲା । ଦୁଇ ପାଖରେ ଗଛଥିବା ରାସ୍ତାକୁ ଅତିକ୍ରମ କରି ସେମାନେ ଏଥର ଏକ ଅନ୍ଧକାରାଚ୍ଛନ୍ନ ନିଶବ୍ଦ ସରୁ ଗଳି ଭିତରେ ପଶିଲେ । ଆଗରେ ଗୁଡ଼ାଏ ଖୋଲା ଜାଗା । ବାଁକୁ ମୋଡ଼ି ସେମାନେ ପ୍ରଧାନ ସଡ଼କର ସମାନ୍ତରାଳ ଭାବରେ ରେଳବାଇ ଗୋଦାମଘରଗୁଡ଼ାକ କଡ଼େ କଡ଼େ ଗ୍ରଲିଥାନ୍ତି । ଧାଉଡ଼ି ଧାଉଡ଼ି ଲମ୍ବା ଫାଙ୍କା ଘରଗୁଡ଼ାକ ଅତିକ୍ରମ କରୁଥାନ୍ତି । ଆନ୍ନାର ଛାତି ଅଜଣା ଆଶଙ୍କାରେ ପୂରିଉଠୁଥାଏ । ଉଦ୍‌ଗ୍ରୀବ ହୋଇ ଅନ୍ଧାର ଭିତରକୁ ଆଖି ମେଲାଇ ଗ୍ରହୁଁଥାନ୍ତି ସେ, ସଙ୍ଗୀର ପ୍ରଶ୍ନର ଉତ୍ତରରେ ଭୟଭୀତ ହୋଇ ଛୋଟ ଛୋଟ ଉତ୍ତର ଦେଇ ଦେଇ । ବିରାଟ ଛାଇଟାଏ ଯେତେବେଳେ ଆଗରେ ଥିବା ଟେଲିଫୋନ୍ ଖୁଣ୍ଟିରେ ପରିଣତ ହେଲା, ହସିଉଠି ନିଜ ଭିତରର ଭୟ ସେ ପ୍ରକାଶ କଲା ପାଭେଲ୍ ଆଗରେ । ତା'ର ବାହାକୁ ଧରି ପାଭେଲ୍ ଆଗେଇଲା ଏଥର ।

"ମୋତେ ମୋଟେ ତେଇଶ ବର୍ଷ ବୟସ, କିନ୍ତୁ ବୁଢ଼ୀଙ୍କ ଭଳି ସ୍ନାୟବିକ ଉତ୍ତେଜନାରେ ମୁଁ ଭୋଗୁଛି । କିନ୍ତୁ ମୋତେ ଭୀରୁ ବୋଲି ଭାବିଲେ ଭୁଲ କରିବ । କାହିଁକି କେଜାଣି, ଆଜି ରାତିରେ ମୋ ଛାତିଟା ଦପ୍‌ଦପ୍ ହୋଇଛି । ତମ ସାଙ୍ଗରେ ମୁଁ ନିଜକୁ ଭାରି ନିରାପଦ ମନେ କରୁଛି । ଭୟ ପାଉଛି ବୋଲି ମୁଁ ସତରେ ଲଜ୍ଜିତା ।"

ପାଭେଲ୍‌ର ଶାନ୍ତ ଚେହେରା, ମଝିରେ ମଝିରେ ଜଳି ଉଠୁଥିବା ତା' ସିଗାରେଟ୍ ଆଲୁଅରେ ତା' ମୁହଁର ଦୃଢ଼ଭଙ୍ଗୀ – ସବୁ ମିଳିମିଶି ସେ ଅନ୍ଧକାର ରାତ୍ରିର ଭୟଙ୍କରତାକୁ ଦୂରୀଭୂତ କରିଦେଉଥାନ୍ତି ତା' ମନରୁ । ସେ ସ୍ଥାନର ନିକାଞ୍ଚନତା ଓ ସଭାରେ ଶୁଣିଥିବା

ଗତରାତିର ଗୋଟାଏ ବୀଭତ୍ସ, ଭୟଙ୍କର ଖୁଣ୍ର କାହାଣୀ ସବୁର ଭୟ ଅପସରି ଯାଉଥାଏ ।

ଗୋଦାମଘରଗୁଡ଼ାକ ପଛରେ ରହିଗଲା । ସେମାନେ ଏଥର ଛୋଟ ଏକ ନଦୀ ଉପରେ ପଡ଼ିଥିବା ପୋଲ ପାର ହୋଇ ସଡ଼କ ଦେଇ ରେଳ ଲାଇନ୍ ତଳେ ଯାଇଥିବା ଟନେଲ୍ ନିକଟରେ ପହଞ୍ଚିଲେ, ଯେଉଁଟା ସହରର ଏହି ଅଂଶକୁ ରେଳବାଇ ଜିଲ୍ଲା ସହିତ ସଂଯୁକ୍ତ କରୁଛି ।

ଡାହାଣ ପଟେ ଅନେକ ଦୂରକୁ ରହିଗଲାଣି ଷ୍ଟେସନ୍ ବିଲ୍ଡିଂଟା । ଟନେଲ୍‌ଟା ଆସି ମିଶିଛି ଏକ ଅନ୍ଧଗଳିରେ । ଡିପୋର ଆର ପାଖ କଡ଼ରେ ଟ୍ରେନ୍‌ଟା ରହିବାକୁ ଯାଉଛି । ସେମାନେ ଏଥର ନିଜର ପରିଚିତ ଜାଗାରେ ପହଞ୍ଚିଗଲେଣି । ରେଳବାଇ ରାସ୍ତାରେ, ସିଧା ଅନେକ ଦୂରରେ ରଙ୍ଗ ବେରଙ୍ଗୀ ଆଲୁଅସବୁ ଅନ୍ଧାର ଭିତରେ ବି ଦପ୍‌ଦପ୍ ହେଉଛି । ସେଠ୍‌କୁ ଫେରୁଥିବା ଗୋଟାଏ ସଫା ହେଉଥିବା ଇଂଜିନ୍‌ର ଗର୍ଜନ ଶୁଭୁଛି ।

କଳଙ୍କିଲଗା ହୁକ୍‌ଟା ଦେହରୁ ଗୋଟିଏ ରାସ୍ତାକଡ଼ ବତୀ ଝୁଲୁଛି ଠିକ୍ ଟନେଲ୍ ମୁହଁରେ । ପବନରେ ଧୀରେ ଧୀରେ ଦୋହଲୁଛି ବତୀଟା । ଫଳରେ ତା'ର ସ୍ୱଳ୍ପାଲୋକ ଟନେଲ୍ କାନ୍ଥରେ ଦୋହଲି ଦୋହଲି ପଡ଼ୁଛି ।

ଟନେଲ୍ ପ୍ରବେଶ ପଥଠାରୁ ଦଶଗଜ ଖଣ୍ଡେ ଛାଡ଼ି ଗୋଟାଏ କୁଡ଼ିଆଘର ଛିଡ଼ା ହୋଇଛି ନିର୍ଜନ ପରିବେଶରେ । ଦୁଇବର୍ଷ ତଳେ ବଡ଼ ଗୋଟାଏ ଗୋଳା ବାଜି ତା' ଭିତରଟା ଜଳିଯାଇଥିଲା ଓ ବାହାରଟା ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିଲା । ବିରାଟ ଗୋଟାଏ କଣା ହୋଇଯାଇଛି କାନ୍ଥରେ । ରାସ୍ତାକଡ଼ର ଭିକାରୀ ନିଜର ବିକଳାଙ୍ଗ ଦେଖାଇ ଛିଡ଼ାହେଲା ଭଳି ଛିଡ଼ା ହୋଇଛି ଘରଟା । ଉପରର ପୋଲ ଉପରେ ଗୋଟାଏ ରେଳଗାଡ଼ି ଗର୍ଜନ କରିଉଠିଲା ।

"ଆମେ ଘର ପାଖାପାଖି ହୋଇଗଲେଣି", ଆଶ୍ୱସ୍ତିରେ ଦୀର୍ଘଶ୍ୱାସ ପକାଇ ଆନ୍ନା କହିଲା ।

ପାଭେଲ୍ ଅଲକ୍ଷ୍ୟରେ ତା'ର ବାହୁରୁ ନିଜ ବାହୁ ମୁକୁଳାଇ ଆଣିବାକୁ ଚେଷ୍ଟା କଲା ।

ମାତ୍ର ଆନ୍ନା ତାକୁ ମୁକ୍ତ କଲା ନାହିଁ ।

ସେ ଭଗ୍ନ ଘରଟା ବାଟ ଦେଇ ଦୁହେଁ ଆଗେଇଗଲେ ।

ହଠାତ୍ ତାଙ୍କ ପଛରେ କ'ଣ ଗୋଟାଏ ପଡ଼ିଲା । କିଏ ଜଣେ ଦୌଡ଼ିଆସୁଛି ଭାରି ନିଃଶ୍ୱାସ ପକାଇ । ତା'ପରେ ଦୌଡ଼ିବା ଲୋକ ତାଙ୍କୁ ଅତିକ୍ରମ କରିଗଲା ।

କୋର୍ଗିନ୍ ନିଜ ବାହୁକୁ ମୁକୁଳାଇ ଆଣିବାକୁ ଚେଷ୍ଟା କଲା ପୁଣି । ମାତ୍ର ଭୟଭୀତା ହୋଇ ଆନ୍ନା ଆହୁରି ଜୋର୍‌ରେ ଜାବୁଡ଼ି ଧରିଲା ତାକୁ । ପାଭେଲ୍ ନିଜ ହାତକୁ ମୁକ୍ତ କଲାବେଳକୁ ଅନେକ ଡେରି ହୋଇଗଲାଣି । କିଏ ଜଣେ ଖୁବ୍ ଜୋର୍‌ରେ ତା' ବେକକୁ ଚିପି ଧରିଲା । ପର ମୁହୂର୍ତ୍ତରେ ସେ ତା'ର ଆଘାତକାରୀ ମୁହାଁମୁହିଁ ଛିଡ଼ାହେଲେ । ମାତ୍ର ହାତଟା ତା'ର ଜାମା କଲର୍ ସହିତ ତାକୁ ଅର୍ଦ୍ଧନିଃଶ୍ୱାସୀ କଲାପର୍ଯ୍ୟନ୍ତ ବେକଟାକୁ

ଚିପିଧରିଲା । ତା' ଆଖି ଆଗରେ ପିସ୍ତଲ୍‌ର ନଳୀଟା ଝଲକା ହୋଇ ଦିଶୁଥାଏ ।

ପାରେଲ୍‌ର ଆଖି ପିସ୍ତଲ୍‌ନଳୀକୁ ଲକ୍ଷ୍ୟ କରିଥାଏ । ମୃତ୍ୟୁ ସେହି ପଥ ଦେଇ ତା' ଆଡ଼କୁ ଗହିଁରହିଛି । ମାତ୍ର ତା'ର ଇଛା ବା ଶକ୍ତି ନଥାଏ ପିସ୍ତଲ୍‌ର ସେ ନଳୀଟାରୁ ଆଖି ଫେରାଇ ଆଣିବା ପାଇଁ । ଶେଷକୁ ଅପେକ୍ଷା କରି ରହିଥାଏ ସେ । ତା ହନ୍ତାକାରୀ କିନ୍ତୁ ଗୁଳି ଫୁଟାଇଲା ନାହିଁ । ପାରେଲ୍‌ର ତ୍ରସ୍ତ ଆଖି ତା' ମୁହଁକୁ ଦେଖିଲା ... ଦେଖିଲା ତା'ର ବିରାଟ ମୁଣ୍ଡ, ଚଉଡ଼ା ଚଉଡ଼ା ଗାଲପାଟି, ଦାଢ଼ିଗୁଡ଼ାକ ତା'ର ବଢ଼ିଯାଇଛି । ତା'ର ଆଖିଦୁଇଟା କିନ୍ତୁ ବିରାଟ ଟୋପିଟା ତଳୁ ଆଦୌ ଦିଶୁ ନଥାଏ ।

ମୁହୂର୍ତ୍ତକର ଜଣେଇ ଗହିଁବା ଭିତରେ ପାରେଲ୍ ଦେଖିଲା ଆନ୍ନାର ଚକ୍ ଭଳି ରକ୍ତଶୂନ୍ୟ ମୁହଁ । ସେତେବେଳକୁ ସେ ତିନିଜଣଙ୍କ ଭିତରୁ ଜଣେ ତାକୁ ସେଇ ଭଙ୍ଗା ଘରଟାର ଅନ୍ଧକାରାଛନ୍ନ ଗହ୍ୱରଟା ଭିତରକୁ ଟାଣି ନେଉଥାଏ । ତା'ର ହାତଟାକୁ ମୋଡ଼ିଦେଇ ଜଣେ ଅତି ନିଦାରୁଣଭାବରେ ଆନ୍ନାକୁ ଚଳେ ପକାଇଦେଲା । ଆଉ ଗୋଟାଏ ଛାଇ ସେମାନଙ୍କ ଆଡ଼କୁ ମାଡ଼ିଆସିଲା । ତା' ଛାଇଟା ପାରେଲ୍ ଦେଖିବାକୁ ପାଇଲା ଟନେଲ୍ କାନ୍ଥ ଦେହରେ । ପଛ ପାଖ ଭଙ୍ଗା ଘରଟାରେ ଧସ୍ତାଧସ୍ତିର ଶବ୍ଦ ଶୁଣା ଯାଉଥାଏ । ଆନ୍ନା ବେପରୁଆ ଭାବେ ଲଢ଼ୁଥାଏ ରକ୍ଷା କରିବାକୁ ନିଜକୁ । ତା'ର ଆର୍ତ୍ତଚିତ୍କାର ହଠାତ୍ ବନ୍ଦ ହୋଇଗଲା, ତା' ପାଟି ଭିତରେ ଜୋର୍‌ରେ ଟୋପିଟାଏ ମାଡ଼ିଦେବାରୁ । କୋର୍ଗିନ୍‌କୁ ନିଜ ଦୟା ଉପରେ ରଖିଥିବା ସେ ବଡ଼ମୁଣ୍ଡିଆ ଲୋକଟା ଧର୍ଷଣ କ୍ଷେତ୍ରକୁ ଆଗେଇଗଲା ହିଂସ୍ର ପଶୁ ଶିକାର ନିକଟକୁ ଗଲା ଭଳି । ସେହି ହିଁ ଏ ଦଳର ନେତା ଏଣୁ । ଏପରି କ୍ଷେତ୍ରରେ କେବଳ ଦୂରରେ ରହି ଦେଖଣାହାରୀ ହେବାଟା ପସନ୍ଦ ହେଲା ନାହିଁ ତାକୁ । ଏ ଟୋକା, ଯାହାକୁ ସେ ଅଟକାଇଛି, ସେଇଟା କିଛି ନୁହଁ, ଅନାଡ଼ିଟାଏ । ବୋଧହୁଏ ଉପରର ସେଇସବୁ ଡେଙ୍ଗଡ଼ା ଟୋକାଙ୍କ ମଧ୍ୟରୁ ଜଣେ ହେବ । ଏଭଳି ଲୋକଟାକୁ ଡରିବାର କୌଣସି କାରଣ ନାହିଁ । ତାକୁ ଗୋଟାଏ ଦିଇଟା ମୁଖି ଦେଇ ସିଧା ସିଧା ପଡ଼ିଆ ଦେଇ ସହରକୁ ଦୌଡ଼ି ପଳାଇବାକୁ କହିଲେ, ସେ ପଛକୁ ନ ଅନାଇ ପଳେଇଯିବ । ଏଣୁ ସେ ତା' ମୁଠା କୋହଳ କଲା ।

"ଠିକ୍ ଅଛି ... ପଳା ଏଠୁ, ଯେଉଁ ବାଟେ ଆସିଥିଲୁ, ସେଇ ବାଟେ ବାଟେ । ଯାଟିଫାଟି କରିବୁ ନାହିଁ! ନହେଲେ ମୁଣ୍ଡକୁ ଠିକ୍ ଗୁଳି କରିବି", କହି ପିସ୍ତଲ୍ ନଳୀଟାକୁ ସେ କୋର୍ଗିନ୍ କପାଳରେ ଦାବି ଦେଲା ।

"ଯା' ପଳା", ସେ ଜୋର୍‌ରେ ମାତ୍ର ଫିସ୍‌ଫିସ୍ କରି କହିଲା ଓ ପିସ୍ତଲ୍ ନଳୀ ତଳକୁ କଲା ଜଣାଇବାକୁ ଯେ, ପଛରୁ ସେ ଗୁଳି କରିବ ନାହିଁ ।

ପଛକୁ ଦି'ପାଦ ଆସି, ନିଜ ହନ୍ତାକାରୀ ଉପରେ ଆଖି ରଖି ରଖି କୋର୍ଗିନ୍ ଦୌଡ଼ିବାକୁ ଲଗିଲା କଡ଼େଇ କଡ଼େଇ । ଟୋକାଟା ଭାରି ଡରିଯାଇଛି ବୋଲି ମନରେ ଭାବି ଗୁଣ୍ଡାଟା ଭଙ୍ଗା ଘରଆଡ଼କୁ ଆଗେଇଗଲା ।

କୋର୍ଗିନ୍ ନିଜ ହାତ ପକେଟ୍‌ରେ ପୂରାଇଲା । ଓଃ ... ଆଉରି ଜଲ୍‌ଦି ହାତଟା

ବାହାରନ୍ତା କି ! ତା'ପରେ ସେ ନିଜ ବାଁ ହାତ ଉପରକୁ ଟେକି, ତୁରନ୍ତ ଲକ୍ଷ୍ୟ କରି ଗୁଳି ଚଳାଇଲା ।

ଡକାଏତଟା ତା' ଭୁଲ ବହୁତ ଡେରିରେ ବୁଝିପାରିଲା । ସେ ହାତ ଉଠାଇବାକୁ ସମୟ ପାଇବା ପୂର୍ବରୁ ଗୁଳିଟା ତା' ପିଠିରେ ବସି ବକ୍ଷ ବିଦୀର୍ଣ୍ଣ କଲା ।

ଆକୁଳ ସ୍ୱରରେ ଚିତ୍କାର କରି ଟନେଲ୍ କାନ୍ଥରେ ଧକ୍କା ଖାଇ ଟଳିପଡ଼ିଲା ସେ । ଗୁଳିଖାଇ କାନ୍ଥଟାକୁ ଧରିବାକୁ ଚେଷ୍ଟା କରୁଥିଲା, କିନ୍ତୁ ପାରିଲା ନାହିଁ । ଘରଟା ଭିତରୁ ଗୋଟାଏ ଛାଇ ବାହାରି ଆସି, ତଳେ ଥିବା ନାଳ ଆଡ଼କୁ ଛୁଟିଲା । କୋର୍ସଗିନ୍ ଆହୁରି ଗୋଟାଏ ଗୁଳି ଫୁଟାଇଲା । ଏଥର ମଧ୍ୟ ଦ୍ୱିତୀୟ ଛାଇଟି ନଇଁ ନଇଁ ଟନେଲର ଅନ୍ଧାରିଆ ଗଳିର କଳା ଅନ୍ଧାର ଭିତରକୁ ଛୁଟିଗଲା । ତୃତୀୟ ଗୁଳି ଫୁଟିଲା । ଗୁଳିବିଦ୍ଧ କଂକ୍ରିଟ୍‌ରୁ ବାହାରି ଆସୁଥିବା ଧୂଳିରେ ଆଛନ୍ନ କଳା ଛାଇଟା ଅନ୍ଧକାର ଭିତରେ ଅଦୃଶ୍ୟ ହୋଇଗଲା । ପୁଣିଥରେ ବ୍ରାଉନିଂ ପିସ୍ତଲ୍‌ର ଆବାଜରେ ନୀରବତା ଭାଙ୍ଗିଗଲା । କାନ୍ଥ କଡ଼ରେ ବଡ଼ ମୁଣ୍ଡିଆ ଡକାଏତଟା କେବଳ ଧକଉଥାଏ ମୃତ୍ୟୁ ଯନ୍ତ୍ରଣାରେ ।

ଆନ୍ନାକୁ ଉଠାଇ ଛିଡ଼ା କରାଇବାରେ ସାହାଯ୍ୟ କଲା ପାଭେଲ୍ । ସ୍ତମ୍ଭୀଭୂତା ଓ ତ୍ରସ୍ତା ହୋଇ ଆନ୍ନା ଦେଖୁଥିଲା, ଡକାଏତଟାର ଯନ୍ତ୍ରଣାଗ୍ରସ୍ତ ମୃତ୍ୟୁ ପୂର୍ବର ଚେହେରାଟାକୁ । ସେ ଯେ ବର୍ତ୍ତମାନ ନିରାପଦ, ଏକଥା କଳ୍ପନା କରିପାରୁ ନଥିଲା ।

କୋର୍ସଗିନ୍ ତାକୁ ପଛକୁ ସହର ଆଡ଼କୁ ଯିବା ରାସ୍ତାର ଅନ୍ଧାର ଭିତରକୁ ଓଟାରି ଆଣିଲା । ସେମାନେ ରେଳ ଷ୍ଟେସନ୍‌ରେ ଦୌଡ଼ିଦୌଡ଼ି ଆସି ପହଞ୍ଚିଲା ପରେ ଦେଖିଲେ, ବନ୍ଧ ଉପରେ ଆଲୁଅଗୁଡ଼ିକ ମିଞ୍ଜିମିଞ୍ଜି ହେଲଣି, ଠିକ୍ ସେ ଟନେଲ୍ ଉପରେ ବନ୍ଧୁକ ଗଳିଟାଏ ଫୁଟିଉଠିଲା ।

ଆନ୍ନା ଘରେ ସେମାନେ ପହଞ୍ଚିଲାବେଳକୁ ବାତିଘ ମୁଣ୍ଡିଆ ଉପରେ କୁକୁଡ଼ା ବୋବାଇଲେଣି । ଆନ୍ନା ବିଛଣାରେ ଗଡ଼ି ପଡ଼ିଲା । ଟେବୁଲ ପାଖରେ ବସି ଖଣ୍ଡେ ସିଗାରେଟ୍ ଟାଣିଟାଣି, କୋର୍ସଗିନ୍ ଊର୍ଦ୍ଧ୍ୱଗାମୀ ଧୂଆଁର କୁଣ୍ଡଳୀକୁ ଲକ୍ଷ୍ୟ କରୁଥିଲା ନୀରବରେ । ତା' ଜୀବନରେ ଆଉ ଟିକିଏ ଆଗରୁ ସେ ଚତୁର୍ଥ ଥର ପାଇଁ ମଣିଷ ମାରିଲା ।

ସତରେ, ସାହସ ବୋଲି କ'ଣ ଗୋଟାଏ କିଛି ଅଛି ? ସେ ବିସ୍ମିତ ହେଉଥିଲା, ଯାହା ସବୁବେଳେ ଠିକ୍ ରୂପରେ ଦେଖାଦିଏ ଆବଶ୍ୟକ ବେଳେ । ନିଜ ମନର ସମସ୍ତ ଗଣ୍ଠିଳ୍ୟ ଦୂର କରି ସେ ଭାବୁଥିଲା ସେଇ ପ୍ରଥମ କେତୋଟି ମୁହୂର୍ତ୍ତର କଥା, ଯେତେବେଳେ ପିସ୍ତଲ୍ ନଳୀର ହିମଶୀତଳ ସ୍ପର୍ଶ ତାକୁ ଧୀରେ ଧୀରେ ଭୀତିର ହିମଶୀତଳତା ଆଡ଼କୁ ଓଟାରି ନେଉଥିଲା । କେବଳ କ'ଣ ତା'ର ଖରାପ ଦୃଷ୍ଟିଶକ୍ତି ଯୋଗୁଁ ବା ସେ ବାଁ ହାତରେ ଗୁଳି ଫୁଟାଇବା ଯୋଗୁଁ ବାକି ଦିଇଟା ଡକାଏତ ପଳାଇ ଯାଇପାରିଲେ ? କେବେ ନୁହେଁ, ସେତିକି ଦୂରରୁ ତା' ବୁଲେଟ୍‌ଗୁଡ଼ାକ ନିଶ୍ଚିତଭାବରେ ଲକ୍ଷବିଦ୍ଧ କରିଥାନ୍ତା, ମାତ୍ର ମାନସିକ ଉଦ୍‌ବେଗ, ଚଞ୍ଚଳତା ଓ ନିଶ୍ଚିତ ଭୟ ଯୋଗୁଁ ତା' ହାତ ଥରି ଉଠିଛି ।

ଟେବୁଲ ବତୀର ଆଲୋକ ତା' ମୁହଁରେ ପଡ଼ିଲା । ଆନ୍ନା ତା' ମୁହଁର ଉଦ୍‌ବେଗ ଅନୁଧ୍ୟାନ କରୁଥିଲା । ତା' ଚକ୍ଷୁ ସ୍ଥିର, ପ୍ରଶାନ୍ତ । କେବଳ କୁଞ୍ଚିତ କପାଳ ରେଖାରୁ ବୁଝାପଡ଼ୁଥିଲା ଯେ, ସେ ଗଭୀର ଚିନ୍ତାମଗ୍ନ ।

"କ'ଣ ଭାବୁଛ ପାଭେଲ୍ ?"

ହଠାତ୍ ଏ ପ୍ରଶ୍ନରେ ବିଚଳିତ ହୋଇ ତା' ଚିନ୍ତାର ଖିଅଛିନ୍ନ ହୋଇଗଲା । ଆଲୋକ ବଳୟରେ ଧୂମ କୁଣ୍ଡଳୀ ମିଳାଇଗଲା ଭଳି ଉଭେଇଗଲା କୁଆଡ଼େ । ପ୍ରଥମେ ଯାହା ତା' ମନକୁ ଆସିଲା, କହିଲା ସେ :

"ମୋତେ କମାଣ୍ଡାଣ୍ଟଙ୍କ ଅଫିସ୍‌କୁ ଯାଇ ଏ କଥା ରିପୋର୍ଟ୍ କରିଦେବାକୁ ହେବ ।"

ଦ୍ୱିଧାଗ୍ରସ୍ତ ହୋଇ ଟଳିଟଳି ଉଠିଲା ସେ ଅବସନ୍ନତା ଓ କ୍ଳାନ୍ତି ଯୋଗୁଁ ।

ପୁଣି ଏକାକୀ ହୋଇଯିବ ବୋଲି ଆନ୍ନା ତା' ହାତ ଭିଡ଼ିଧରିଲା । ତା'ପରେ ଆସି ଦୁଆରମୁହଁ ପର୍ଯ୍ୟନ୍ତ ପହଞ୍ଚି ବାଟେଇଦେଲା ତାକୁ ଓ ପାଭେଲ୍‌ର ଛାଇ ରାତି ଅନ୍ଧାର ଭିତରେ ହୋଇଯିବା ପର୍ଯ୍ୟନ୍ତ ଦୁଆରବନ୍ଧରେ ଛିଡ଼ା ହୋଇ ରହିଲା । ପାଭେଲ୍ ଏବେ ତା ପକ୍ଷରେ ବଡ଼ ଆତ୍ମୀୟ ଭଳି ମନେହେଲା ।

ରେଳବାଇ ଗାର୍ଡମାନଙ୍କୁ ବିହ୍ୱଳିତ କରିଥିବା ଏ ଖୁନ୍‌କେସ୍‌ର ରହସ୍ୟ, ପାଭେଲ୍‌ର ରିପୋର୍ଟ୍ ଫଳରେ ଦୂରୀଭୂତ ହୋଇଗଲା । ଲାଶ୍ ସନାକ୍ତ ଫଳରେ ଜଣାଗଲା ଯେ, ସେଇଟା ଏକ କୁଖ୍ୟାତ ଡାକୁ ଫିମ୍‌କା ଚେରେପ୍ ମୃତ୍ୟୁ ଦାନବର, ଯିଏ ଖୁଣ୍ ଓ ଡକାଏତି କରିବା ପାଇଁ ଅନେକ ବର୍ଷ ସଜା ଭୋଗିଛି ।

ତା' ପରଦିନ ସକାଳୁ ଟନେଲ୍ ଘଟଣା ବିଷୟରେ ସମସ୍ତେ ଆଲୋଚନା କରୁଥାନ୍ତି । ଏ ଘଟଣା ଫଳରେ ପାଭେଲ୍ ଓ ଶ୍ୱେତାୟେଭ୍ ଭିତରେ ଏକ ଅନାହୂତ କଳି ଲାଗିଗଲା ମଧ୍ୟ ।

ଶିଫଟ କାମ ଚାଲିଥିଲା ବେଳେ କର୍ମଶାଳା ମଧ୍ୟକୁ ଶ୍ୱେତାୟେଭ୍ ଆସି ପାଭେଲ୍‌କୁ ବାହାରକୁ ଆସିବା ପାଇଁ କହିଲା । ନିରବରେ ପାଭେଲ୍‌କୁ ସେ ବାଟ କଢ଼େଇ କଢ଼େଇ ଘେନି ଆସିଲା ବାରଣ୍ଡାର ଶେଷ କଣକୁ । ସେ ଖୁବ୍ ଉତ୍ତେଜିତ ମନେ ହେଉଥାଏ । ତା ମନର କଥାଟାକୁ କିପରି ପ୍ରକାଶ କରିବାକୁ ସେ ଠିକ୍ କରିପାରୁ ନଥାଏ । ଶେଷକୁ ସେ ହଠାତ୍ କହି ପକାଇଲା :

"ଗତକାଲି କ'ଣ କ'ଣ ଘଟିଲା, ସବୁ କହ ମୋତେ ।"

"ତୁ କ'ଣ ଜାଣି ନୁ ?"

ଶ୍ୱେତାୟେଭ୍ ନ ଜାଣିବାର ଭଙ୍ଗୀ କରି ନିଜ କାନ୍ଧ ଦୋହଲାଇଲା । ପାଭେଲ୍ ଜାଣି ନଥିଲା ଯେ, ଟନେଲ୍‌ର ସେ ଘଟଣା ଅନ୍ୟମାନଙ୍କ ଅପେକ୍ଷା ଶ୍ୱେତାୟେଭ୍‌କୁ ଅଧିକ ବିଚଳିତ କରୁଥିଲା । ସେ ଜାଣି ନଥିଲା ଯେ, ବାହାରକୁ ନ ଜଣାଇଲେ ମଧ୍ୟ କମାର ଶ୍ୱେତାୟେଭ୍, ଆନ୍ନା ବୋର୍ହାର୍ଟ୍‌କୁ ଗଭୀରଭାବରେ ଭଲପାଏ । କେବଳ ସେଇ ଜଣେ ଯେ ଆନ୍ନା ପ୍ରତି ଆକୃଷ୍ଟ ତା' ନୁହେଁ, ମାତ୍ର ସେ ଗଭୀରଭାବରେ ଅଭିଭୂତ ହୋଇ ପଡ଼ିଛି । ଆଉ ଟିକକ

ଆଗରୁ ଟନେଲ୍ ଭିତରର ଘଟଣାସବୁ ତାକୁ ବିସ୍ତାରିତଭାବରେ କହିଯାଇଛି ଲଗୁଡିନା । ମାତ୍ର ଗୋଟିଏ ପ୍ରଶ୍ନ, ଯାହା ଅପ୍ରକାଶ୍ୟ ରହିଯାଇଛି, ତାହାହିଁ ତାକୁ ବିଚଳିତ କରୁଥିଲା । ସେ ପ୍ରଶ୍ନଟା ସିଧାସିଧି ପାଭେଲ୍‌କୁ ପଗ୍ଭରି ପାରୁ ନଥିଲା ସେ । ମାତ୍ର ସେ ଜାଣିବାକୁ ଗ୍ଭହୁଁଥିଲା ସେଇ କଥାଟା । ଭଲ ମନରେ ସେ ଭାବୁଥିଲା ଯେ, ତା'ର ଏ ପ୍ରଶ୍ନ ଅତି ସ୍ୱାର୍ଥପର ଓ ଅତି ନୀଚ । ମନ ଭିତରର ଭାବାବେଗ ତାକୁ କିନ୍ତୁ ଉଦ୍‌ବେଳିତ କରୁଥିଲା ଏକ ଆଦିମ, ହିଂସ୍ର ପଶୁ ଭଳି ।

"ଶୁଣ କୋର୍ଗ୍ଗିନ୍", କର୍କଶଭାବରେ ପ୍ରଶ୍ନ କଲା ସେ, "ଇଏ କେବଳ ତୋ ମୋ ଭିତରର କଥା । ମୁଁ ଜାଣେ, ଆନ୍ନା ପାଇଁ ତୁ ଏକଥା କହିବାକୁ ଗ୍ଭହିଁବୁ ନାହିଁ, କିନ୍ତୁ ମୋତେ ବିଶ୍ୱାସ କରି କହ ଏକଥା ... ସେ ଡକାଏତଟାଠାରୁ ତୁ ନିଜକୁ ମୁକ୍ତ କଲାବେଳକୁ ଅନ୍ୟମାନେ ତା' ଉପରେ ଅତ୍ୟାଗ୍ଭର କରିଥିଲେ କି ନାହିଁ ?"

ଦ୍ୱନ୍ଦ୍ୱରେ ପଡ଼ି କଥାତକ କହିସାରି ସେ ଆଖି ନୁଆଇଁ ଆଣିଲା ।

କୋର୍ଗ୍ଗିନ୍ ତା' ମନ ଭିତରଟାକୁ ଅସ୍ପଷ୍ଟଭାବରେ ଦେଖିପାରିଲା, "ଯଦି ଆନ୍ନା ପ୍ରତି ତା'ର ସାଧାରଣ ମନୋଭାବ ଥାନ୍ତା, ତେବେ ସେ ଏଭଳି ବିଚଳିତ ହୁଅନ୍ତା ନାହିଁ । ମାତ୍ର ଆନ୍ନା ଯଦି ତା'ର ପ୍ରେମାସ୍ପଦା ... ତେବେ ?" ଏବଂ ଆନ୍ନା ପ୍ରତି ଏ ପ୍ରଶ୍ନରେ ଥିବା ଅପମାନ ପାଭେଲ୍‌ର ଦେହମୁହଁ ଜଳାଇଦେଲା ।

"କ'ଣ ତୁ ପଗ୍ଭରିବାକୁ ଗ୍ଭହୁଁ ?"

କ'ଣଗୁଡ଼ାଏ ବିଡ଼ିବିଡ଼ି ହୋଇ ଅସଂଲଗ୍ନଭାବରେ କହିଲା ଶ୍ୱେତାୟେଭ । ତା'ପରେ ପାଭେଲ୍ ଯେ ତା' ପ୍ରଶ୍ନଟା ବୁଝିପାରିଛି, ଏକଥା ଜାଣିପାରି ସେ ଉତ୍ତେଜିତ ହୋଇଉଠିଲା ।

"ବାଜେ କଥା ବକ୍‌ବକ୍ କର ନାହିଁ । ମୁଁ ସିଧାସଳଖ ମୋ ପ୍ରଶ୍ନର ଉତ୍ତର ଗ୍ଭହେଁ ।"

"ତୁ ଆନ୍ନାକୁ ଭଲ ପାଉ ?"

ଅନେକ ସମୟ ନୀରବତା ପରେ ଶ୍ୱେତାୟେଭ୍ ବାଧ୍ୟ ହୋଇ କହିଲା, "ହଁ ।"

କୌଣସିମତେ ନିଜର କ୍ରୋଧ ଦମନ କରି, କୋର୍ଗ୍ଗିନ୍ ଲମ୍ବା ବାରଣ୍ଡା ଉପରେ ଜୋର୍‌ରେ ପାଦ ପକେଇ ଆଗେଇ ଗଲା, ପଛକୁ ଫେରି ସୁଦ୍ଧା ଗ୍ଭହିଁଲା ନାହିଁ ଥରେ ହେଲେ ।

ଦିନେ ରାତିରେ ଓକୁନେଭ୍ ବନ୍ଧୁ ପାଭେଲ୍‌ର ବିଛଣା ଗ୍ଭରିକଡ଼େ କିଛି ସମୟ ପାଇଁ କାହିଁକି କେଜାଣି ବୁଲୁଥିଲା । ହଠାତ ସେ ପାଭେଲ୍‌ର ବିଛଣା ଧାରରେ ବସିପଡ଼ି ପାଭେଲ୍ ପଢ଼ୁଥିବା ବହିଟାକୁ ଧରିପକେଇ କହିଲା :

"ଶୁଣ ପାଭେଲ୍, ମୋର ତୋତେ କେଇଟା କଥା କହି ମୋ ମନର ଭାରା ଉଶ୍ୱାସ କରିବାର ଅଛି । କଥାଗୁଡ଼ାକ ତୋତେ ହୁଏତ ଆଦୌ ଗୁରୁତ୍ୱପୂର୍ଣ୍ଣ ହୋଇ ନପାରେ । ତାଇୟା ଲଗୁଟିନା ଓ ମୋ ଭିତରେ ମନ ଫଟାଫଟି ହୋଇଛି । ତୁ ତ ଜାଣିଛୁ, ପ୍ରଥମେ ମୁଁ ତାକୁ କେତେ ଭଲ ପାଉଥିଲି ?" ଓକୁନେଭ୍ ଲକ୍ଷ୍ୟ କଲା ବନ୍ଧୁକୁ ଓ ଯେତେବେଳେ

ଦେଖିଲା, ନହସି ସେ ଗଭୀର ହୋଇ ଶୁଣୁଛି, ପୁଣି କହିଲା ସାହସ ସଞ୍ଚୟ କରି "କିନ୍ତୁ ତାଲ୍ୟା ... ଦେଖ୍ ତୁ ସବୁ ଜାଣିଛୁ, ଯଦିଓ ମୁଁ ତୋତେ ଟିକିନିଖି ସବୁ ବିଷୟ ଜଣାଇ ନାହିଁ । ଗତକାଲି ଆମେ ଦୁହେଁ ସିଦ୍ଧାନ୍ତ କଲୁ ସବୁ ତୁଟେଇଦେବାକୁ ଓ କିଭଳି ହେଉଛି ଦେଖିବାକୁ । ଦେଖ୍ ମୋତେ ବାଇଶ ବର୍ଷ । ତା'ର ବି ବୟସ ହେଲାଣି । ଆମେ ଦୁହେଁ ସମାନ ସମାନ ହୋଇ ରହିବାକୁ ଚାହୁଁ । ତୁ କ'ଣ ଭାବୁଛୁ ?"

ପ୍ରଶ୍ନଟାର ଉତ୍ତର ଖୋଜି ପାଉ ନଥିଲା କୋର୍ଚ୍ଚାଗିନ୍ ।

"କୋଲ୍ୟା, ଏ ବିଷୟରେ ମୁଁ କ'ଣ କହିବି ରେ ? ତମେ ଦୁହେଁ ମୋର ବନ୍ଧୁ । ତା' ଛଡ଼ା ତମେ ଏକା ଗୋଷ୍ଠୀର । ଆମର ଅନେକ କଥା ସମାନ । ତାଲ୍ୟା ବି ବେଶ୍ ସୁନ୍ଦର ଝିଅଟିଏ । ଇଏତ ଭଲ କଥା ।"

ତା' ଆରଦିନ କୋର୍ଚ୍ଚାଗିନ୍ ଏକ ଶ୍ରମିକ ଆବାସକୁ ଚାଲିଆସିଲା । ତା'ର କିଛି ଦିନ ପରେ ଆନ୍ନା ଗୋଟାଏ ପାର୍ଟି ଦେଲା । କମ୍ୟୁନିଷ୍ଟମାନଙ୍କ ଭଳି ପାର୍ଟି—ଖାଦ୍ୟ ଓ ପେୟ ବ୍ୟତୀତ । ପାର୍ଟିଟା ତାଲ୍ୟା ଓ ନିକୋଲାଇଙ୍କ ପାଇଁ । ସୁନ୍ଦର ସଂଧ୍ୟାଟିଏ । ଅନେକ ସ୍ମୃତିଚାରଣ, ବଛା ବଛା ପ୍ରିୟ ପୁସ୍ତକର ଅଂଶ ପଠନ ହେଲା । ସମସ୍ତେ ଅନେକ ଗୀତ ବୋଲିଲେ । ସଂଗୀତର ମୂର୍ଚ୍ଛନା ଦୂରଦୂରାନ୍ତକୁ ଭାସିଗଲା । ପରେ କାତ୍ୟୁଶା ଜେଲେନୋଭା ଓ ଭୋଲିନ୍‌ସେଭା ଗୋଟାଏ ଆକର୍ଡିଆନ୍ ଆଣିଲେ । ଆକର୍ଡିଆନ୍‌ର ଧ୍ୱନି, ସ୍ୱରତରଙ୍ଗ ପ୍ରକୋଷ୍ଠଟିରେ ଅନୁରଣିତ ହେବାକୁ ଲାଗିଲା । ସେ ସଂଧ୍ୟାରେ ପାଭେଲ୍ ସାଧାରଣ ଦିନଠାରୁ ଅନେକ ଭଲଭାବରେ ବଜାଇଲା । ଯେତେବେଳେ ସମସ୍ତେ ଆନନ୍ଦରେ ଦେଖିଲେ ଯେ, ପ୍ରକାଣ୍ଡକାୟ ପାନ୍‌କ୍ରାତୋଭ୍ ବି ନାଚ କରିବାକୁ ଆରମ୍ଭ କଲେଣି, ପାଭେଲ୍ ତା'ର ନୂଆ ଆବିଷ୍କୃତ ବିଷାଦ ରାଗିଣୀ ଭୁଲିଗଲା । ତା'ର ପୁରୁଣା ଦିନର ପାସୋରି ଦେଇଥିବା ତାରୁଣ୍ୟର ଉଦ୍ଦୀପନାର ସ୍ୱର ବଜାଇବାକୁ ଲାଗିଲା ।

"ଦେନିକିନ ଯେବେ ଜାଣିବ
ବୃଦ୍ଧ କୋଇଚାକର ବିତାଡ଼ନ ...
ପାଗଳ ଭଳି ସେ ଡେଇଁବ ।"

ଆକର୍ଡିଆନ୍‌ର ମୂର୍ଚ୍ଛନାରୁ ଝରୁଥିଲା ପୁରୁଣା ହଜିଲା ଦିନଗୁଡ଼ିକର କାହାଣୀ, ଝଡ଼ ଓ ସଂଘର୍ଷର କାହାଣୀ ଏବଂ ବର୍ତ୍ତମାନର ସୌଭ୍ରାତୃତ୍ୱର ଗାଥା, ସଂଘର୍ଷ ଓ ଆନନ୍ଦୋଜ୍ଜ୍ୱଳ ଦିନଗୁଡ଼ିକର କଥା ।

ଭୋଲିନ୍‌ସେଭ ତା'ପରେ ଆକର୍ଡିଆନ୍ ଧରି 'ୟାବ୍ଲୋଚ୍‌କୋ' ନାଚର ସ୍ୱର ବଜାଇଲା ମାତ୍ରେ ସମସ୍ତଙ୍କୁ ବିସ୍ମିତ କରି କୋର୍ଚ୍ଚାଗିନ୍ ଉନ୍ମତ୍ତ ଟାପନୃତ୍ୟ ଆରମ୍ଭ କରିଦେଲା । ତା' ଜୀବନର ତୃତୀୟ ଓ ସର୍ବଶେଷ ଥର ପାଇଁ ନୃତ୍ୟ କଲା ସେ ।

# ଚତୁର୍ଥ ପରିଚ୍ଛେଦ

ସୀମାନ୍ତ ଅଞ୍ଚଳ ... । ଦୁଇଟି ପୋଷ୍ଟ ପରସ୍ପର ପ୍ରତି ନିରବଚ୍ଛିନ୍ନ ଶତ୍ରୁତା ଜଣାଇ, ସାମନାସାମନି ହୋଇ ଠିଆହୋଇ ରହିଛନ୍ତି । ଉଭୟେ ଗୋଟିଏ ନିଜସ୍ୱ ପୃଥିବୀର ପ୍ରତୀକ । ସେଥିରୁ ଗୋଟିଏ ପୁଲିସ୍ ବାକ୍‌ସ ଭଳି ପାଲିଶ୍‌କରା ହୋଇଛି ଓ କଳାଧଳା ରଙ୍ଗରେ ଚିତ୍ରିତ ହୋଇଛି । ଉପରେ ତା'ର ଲାଞ୍ଛିତ ଏକ ଈଗଲ୍ । ଡେଣା ବିସ୍ତୃତ କରି, ପଞ୍ଝା ମେଲାଇ ଓ ତା'ର ଉତ୍‌କ୍ଷିପ୍ତ ଶାଣିତ ଚଞ୍ଚୁ ଟେକି ଆରପଟ ପୋଷ୍ଟରେ ଥିବା ଜଳେଇ ଲୁହାରେ ତିଆରି ଦାଆ ଓ ହାତୁଡ଼ିକୁ ଗ୍ରହିଁରହିଛି, ସତେ ଯେମିତି ଗ୍ରାସ କରିବାକୁ । ଆର ଖୁଣ୍ଟଟି ଅତଞ୍ଜା ଓକ କାଠର ଗୋଲେଇ ହୋଇ ଗଣ୍ଡିଖଣ୍ଡେ ମାଟିରେ ଦୃଢ଼ଭାବରେ ପୋତା ହୋଇଛି ଓ ସେଥିରେ ଲୁହାରେ ତିଆରି ଦାଆ-ହାତୁଡ଼ି ଚିହ୍ନ ଲଗିଛି ।

ଭୂଇଁ ଉପରେ ସମାନ୍ତରାଳ ଭାବରେ ଗଲେ ଉଭୟ ଖୁଣ୍ଟ ଭିତରେ ମାତ୍ର ଛଅ ପାହୁଣ୍ଡର ଦୂରତ୍ୱ । ମାତ୍ର ସେ ଦୁଇଟି ଖୁଣ୍ଟ ମଧ୍ୟରେ ରହିଛି ଏକ ଗଭୀର ବ୍ୟବଧାନ – ଦୁଇଟି ଦୁନିଆ ପାଇଁ ସେମାନେ ଦଣ୍ଡାୟମାନ ।

ଏହା ସୀମାନ୍ତ ।

କୃଷ୍ଣସାଗରଠାରୁ ହଜାର ହଜାର ମାଇଲ ପରେ ଆର୍କଟିକ୍ ସାଗର ପର୍ଯ୍ୟନ୍ତ, ଉତ୍ତର ଦିଗକୁ ଛିଡ଼ାହୋଇ ରହିଛି ସୋଭିଏତ୍ ସମାଜବାଦୀ ଗଣତନ୍ତ୍ରର ଏ ନୀରବ ପ୍ରତୀକ ... ଦେହରେ ତା'ର ଲୁହାରେ ଶ୍ରମର ସଙ୍କେତ ସ୍ୱରୂପ ଦାଆ-ହାତୁଡ଼ିର ପ୍ରତୀକ ଲାଞ୍ଛିତ ହୋଇ । କ୍ଷୁଧିତ ଈଗଲ୍‌ର ପ୍ରତୀକ ନେଇ ସେ ଖୁଣ୍ଟ ସୋଭିଏତ୍ ୟୁକ୍ରାଇନ୍ ଓ ବୁର୍ଜୁଆ ପୋଲାଣ୍ଡର ସୀମା ଚିହ୍ନିତ କରୁଛି । ବେରେଜ୍‌ଦୋଭ୍ ନାମକ ଛୋଟ ସହରଠାରୁ ଏହା ଦଶ କିଲୋମିଟର ଦୂରରେ ଅବସ୍ଥିତ । ୟୁକ୍ରାଇନ୍‌ର ଉପାନ୍ତରେ ସହରଟି ସତେ ଯେମିତି ହଜି ଯାଇଛି । ଏହାର ବିପରୀତ ପାର୍ଶ୍ୱରେ ପୋଲାଣ୍ଡୀୟ କ୍ଷୁଦ୍ର ସହର କୋରେଜ୍ । ସ୍ଲାଭୁଟାଠାରୁ ଆନାପୋଲ୍ ପର୍ଯ୍ୟନ୍ତ ଏହି ସୀମାନ୍ତ ରେଖାକୁ ସୀମାନ୍ତରକ୍ଷୀ ବାହିନୀର ଗୋଟିଏ ବାଟାଲିଅନ୍ ପହରା ଦିଅନ୍ତି ।

ସୀମାନ୍ତ ଖୁଣ୍ଟଗୁଡ଼ିକ ବରଫାଚ୍ଛାଦିତ ଖେତ ଉପରେ ମାର୍ଚ୍ଚିଂ କରି ଯାଆନ୍ତି, ଆଗେଇଯାଆନ୍ତି ନିଘଞ୍ଚ ଜଙ୍ଗଲ କଟା ହୋଇ ସୃଷ୍ଟି ହୋଇଥିବା ସରୁ ପାଦଚଲା ରାସ୍ତାରେ । ଉପତ୍ୟକା ସବୁ ଅତିକ୍ରମ କରି ଅଦୃଶ୍ୟ ହୋଇଯାଆନ୍ତି କେଉଁ ପାହାଡ଼ ଖୋଲରେ । କେଉଁଠି କେଉଁ ନଦୀର ଉଚ୍ଚ ପଠା ଉପରେ ଛିଡ଼ା ହୋଇ ଦଣ୍ଡଟିଏ ଗ୍ରହିଁ ଦେଖନ୍ତି ସହଯୋଗୀ କେଉଁ ଦେଶର ବରଫାଚ୍ଛାଦିତ ବିସ୍ତୃତ ଭୂମି ।

ହାଡ଼ଭଙ୍ଗା କନକନିଆ ଶୀତ, ଯେତେବେଳେ ଫେଲ୍‌ଟବୁଟ୍ ଜୋତାଗୁଡ଼ାକୁ ଗ୍ରଲିଗ୍ରଲେ ରଚ୍ ରଚ୍ କରେ ବରଫ, ସେଇ ଦିନଗୁଡ଼ିକରୁ ଗୋଟିଏ । ବିରାଟକାୟ ଜଣେ ଲାଲ ବାହିନୀର ସୈନିକ ପ୍ରାଚୀନ ପୁରାକଥାର ଅସୁର ଭଳି ବଡ଼

ଶିରସ୍ତ୍ରାଣ ପିନ୍ଧି , ହାତରେ ଦାଆ-ହାତୁଡ଼ି ଚିହ୍ନିତ ତାଇଟାଏ , ଭାରୀ ଭାରୀ ପାଦ ପକାଇ ଆଗେଇ ଯାଉଛି ତା' ପହରାରେ । ପିନ୍ଧିଛି ଗୋଟାଏ ପାଉଁଶିଆ ରଙ୍ଗର ଓଭରକୋଟ୍ । କଲର୍‌ରେ ତା'ର ସବୁଜ ବୋତାମ , ପାଦରେ ଫେଲ୍ଟବୁଟ୍ । ବିରାଟ କଲର୍‌ବାଲା ମେଣ୍ଢାଚମଡ଼ାର ଓଭରକୋଟ୍‌ଟାଏ ଗୋଇଠିଯାଏ ଲମ୍ବିଛି । ଏଭଳି କୋଟ୍ ଯେକୌଣସି ଲୋକଙ୍କୁ ସବୁଠାରୁ ନିଦାରୁଣ ବରଫ ଝଡ଼ରେ ମଧ୍ୟ ଗରମ କରି ରଖିପାରେ । ହାତରେ ମେଣ୍ଢାଚମଡ଼ାର ଦସ୍ତାନା । କାନ୍ଧରେ ବନ୍ଧୁକ ଝୁଲୁଛି । ସେ ସେଣ୍ଟ୍ରିଯିବା ରାସ୍ତାରେ ଆଗେଇବା ବେଳେ ତା' ବଡ଼କୋଟ୍‌ର ଲଞ୍ଜଟା ବରଫ ଉପରେ ଦାଗ କାଟିକାଟି ଯାଉଥାଏ । ହାତଚିଆରି ସିଗାରେଟ୍‌କୁ ଜୋର୍‌ରେ ଦମେ ଟାଣିଦେଇ ବେଶ ଆମେଜ ପାଉଥାଏ ସେ । ଖୋଲା ଜାଗାରେ ଠିକ୍ ଏକ କିଲୋମିଟର ତଫାତ୍‌ରେ ସୋଭିଏତ୍ ସୀମାନ୍ତରକ୍ଷୀ ଜଣେ ଜଣେ ଥାଆନ୍ତି , ଯାହା ଫଳରେ କି ପରସ୍ପର ପରସ୍ପରକୁ ଦେଖିପାରିବେ । ପୋଲାଣ୍ଡ ପଟରେ ଏକ କିଲୋମିଟରରେ ଦୁଇଜଣ ରକ୍ଷୀ ନିଯୁକ୍ତ ଥାଆନ୍ତି ।

ପୋଲାଣ୍ଡ ପଦାତିକ ବାହିନୀର ଜଣେ ତା'ର ସେଣ୍ଟ୍ରିଯିବା ରାସ୍ତାଦେଇ ଲାଲ ବାହିନୀ ରକ୍ଷୀ ଆଡ଼କୁ ଆଗେଇ ଆସୁଛି । ପିନ୍ଧିଛି ମୋଟାମୋଟା ସୈନ୍ୟବାହିନୀ ବ୍ୟବହାର କରୁଥିବା ବୁଟ୍ । ଧୂସର ସବୁଜ ରଙ୍ଗର ୟୁନିଫର୍ମ । କଳାରଙ୍ଗର ବିରାଟ କୋଟ୍ ପିନ୍ଧିଛି , ଯେଉଁଥିରେ ଲାଗିଛି ପାଲିଶ୍‌କରା ବୋତାମଗୁଡ଼ିକ ଧାଡ଼ିହୋଇ । ମଣ୍ଡରେ ଚାରିକଣିଆ ଭାଙ୍ଗକରା ଫୌଜୀ ଟୋପି ଓ ସେଥିରେ ଲାଗିଛି ଧଳା ଈଗଲ୍‌ର ପ୍ରତୀକ । କାନ୍ଧପଟି ଆଉ କଲାର୍‌ରେ ମଧ୍ୟ ଈଗଲ୍ ପ୍ରତୀକ ଲାଗିଛି । ମାତ୍ର ତାକୁ ଉଷୁମ ଲାଗୁ ନାହିଁ ଏଥିରେ ସବୁ । କୁହୁଡ଼ିରେ ବିଚରା ଜଡ଼ ପାଇଟିଗଲଣି । ଚାଲିଲାବେଳେ କୋଲମାରି ଯାଉଥିବା କାନ ଦୁଇଟାକୁ ମଳିମଳି ଓ ଜୋତାରେ ଜୋତା ବଜାଇ ବଜାଇ ଚାଲିଛି ସେ । ପତଳା ଦସ୍ତାନା ଭିତରେ ହାତଟା ବି ତା'ର ଥଣ୍ଡା ହୋଇଯାଉଛି । ପୋଲାଣ୍ଡୀୟ ଲୋକଟି ମୂହୂର୍ତ୍ତେଟିଏ ବି ସ୍ଥିର ହୋଇ ରହୁ ନାହିଁ । ବେଳେବେଳେ ପୁଣି ଦୌଡ଼ୁଛି । କାରଣ ଅନ୍ୟଥା କୁହୁଡ଼ି ଓ ବରଫରେ ତା' ଅଙ୍ଗପ୍ରତ୍ୟଙ୍ଗ, ଜୋତାଗୁଡ଼ାକ ସବୁ ଜଡ଼ ପାଲଟି ଯିବ । ପହରା ଦେଉଁ ଦେଉଁ ଦୁଇଜଣଯାକ ପ୍ରହରୀ ଯେତେବେଳେ ପରସ୍ପରର ପାଖକୁ ଆସିଗଲେ ପୋଲାଣ୍ଡୀୟ ପ୍ରହରୀଟି ବୁଲିପଡ଼ି ଲାଲ ଫୌଜ ସୈନିକଟିର ପାଖେ ପାଖେ ଚାଲିବାକୁ ଆରମ୍ଭ କରିଦେଲା ।

ସୀମାନ୍ତରେ ପରସ୍ପର ସହିତ କଥାବାର୍ତ୍ତା କରିବା ନିଷିଦ୍ଧ । ମାତ୍ର କିଲୋମିଟରକ ଭିତରେ କେହି କୁଆଡ଼େ ନଥିଲେ । କିଏ ବା କହିବ , ଦୁହେଁଯାକ ନିରବରେ କେବଳ ପହରା ଦେଉଛନ୍ତି ନା' ଆନ୍ତର୍ଜାତୀୟ ଆଇନ ଭଙ୍ଗ କରୁଛନ୍ତି ?

ପୋଲାଣ୍ଡ ପକ୍ଷର ପ୍ରହରୀର ସିଗାରେଟ୍‌ଟାଏ ଟାଣିବାକୁ ମନ ହେଲା , କିନ୍ତୁ ସେ ଛାଡ଼ି ଆସିଛି ଦିଆସିଲିଟା ବ୍ୟାରାକ୍‌ରେ । ସୋଭିଏତ୍ ପଟରୁ ତମାଖୁର ମାଦକତାଭରା ଗନ୍ଧ ଭାସିଆସୁଥାଏ ପବନରେ । ପୋଲାଣ୍ଡର ସୈନିକ ତା' କାନମୂଳ ଘଷିବା ବନ୍ଦ କରି ଆଗକୁ

ପଛକୁ କନକନ ହୋଇ ଅନାଏ । କିଏ ଜାଣେ କାଳେ କିଏ ଉଣ୍ଡୁଥିବ । କେତେବେଳେ କପ୍ତାନ, କେତେବେଳେ ଅବା ପ୍ୟାନ୍ ଲେଫଟ୍‌ନାଣ୍ଟ ନିଜେ ତନଖି କରିବାକୁ ଆସିଥିବ । କିନ୍ତୁ ଆଖିରେ ତା'ର ସୂର୍ଯ୍ୟ କିରଣରେ ଝକଝକ କରି ଜଳକା କରୁଥିବା ଶୁଭ୍ର ବରଫରାଶି ବ୍ୟତୀତ ଆଉ କିଛି ପଡ଼େ ନାହିଁ । ଆକାଶରେ ମେଘର ଛାଇଟିଏ ବି ସୁଦ୍ଧା ନାହିଁ ।

"କମ୍ରେଡ୍ ନିଆଁ ଅଛି ?" ପ୍ରଥମ କରି ଆଇନ ଉଘନ କରେ ପୋଲଣ୍ଡୀୟ ଜଣକ । ଆଉ ସଙ୍ଗିନ୍‌ଲଗା ତା'ର ଫରାସୀ ମ୍ୟାଗାଜିନ୍ ବନ୍ଧୁକକୁ କାନ୍ଧ ପଛକୁ ଠେଲି, ବହୁ କଷ୍ଟରେ ଶସ୍ତା ସିଗାରେଟ୍ ପ୍ୟାକେଟ୍‌ଟିଏ କାଢ଼େ ତା' କୋଟ୍ ପକେଟ୍ ଭିତରୁ ।

ଲାଲବାହିନୀ ସୈନିକ ତା' କଥା ଶୁଣେ । ମାତ୍ର ସୀମାନ୍ତ ରକ୍ଷୀବାହିନୀର ଆଇନ କାନୁନରେ କଥାବାର୍ତ୍ତା ନିଷିଦ୍ଧ । ତା'ଛଡ଼ା ସେ ବୁଝି ପାରେ ନାହିଁ ମଧ୍ୟ ଅପରପକ୍ଷର ସୈନିକଟି କ'ଣ କହିବାକୁ ଚାହୁଁଛି । ତେଣୁ ସେ ନିଜ ପଥରେ ଆଗେଇଯାଏ, ଜୋତାରେ ନରମ ବରଫକୁ ଦଳିଦଳି ।

"କମ୍ରେଡ୍ ବଲ୍‌ଶେଭିକ୍, ନିଆଁ ଅଛି ? ଦିଆସିଲି ପକେଇଦବ ଟିକିଏ ।" ଏଥର ପୋଲଣ୍ଡୀୟ ଜଣକ ରୁଷୀୟ ଭାଷା କୁହେ ।

ଲାଲ ବାହିନୀ ସୈନିକ ତା' ଆଡ଼କୁ ନିକଟରୁ ଚାହିଁ ଦେଖେ ଓ ମନେ ମନେ ଭାବେ, " 'ପ୍ୟାନ୍' ବାହିନୀର ସୈନିକଟା ଶୀତରେ ଥରିଗଲାଣି । ବିଚରାଟା ବୁର୍ଜୁଆଙ୍କର ସୈନିକ ହୋଇପାରେ, ମାତ୍ର କୁକୁରର ଜୀବନ ବିତାଉଛି । ଏ ଭୟଙ୍କର ଥଣ୍ଡା ଭିତରକୁ କି ପୋଷାକ ପିନ୍ଧି ଆସିଛି ! ଠେକୁଆ ଭଳି ଖପ୍‌ଖପ୍ ହୋଇ ଡେଇଁବା ବ୍ୟତୀତ ଆଉ କ'ଣ ବା ସିଏ କରିବ ? ସେଥିରେ ପୁଣି ଧୂଆଁ ଟିକିଏ ନ ଟାଣିଲେ..." ନବୁଲି, ଲାଲ ଫୌଜର ସୈନିକଟି ଦିଆସିଲିଟା ପକାଏ ଅପର ଜଣକ ପାଖକୁ । ସୈନିକଟି ତାକୁ ଉପରୁ ଧରିନିଏ ଓ ଥରେ ଦୁଇଥର ଦିଆସିଲି କାଠି ଲିଭାଇ ସିଗାରେଟ୍ ଧରାଏ ଓ ଦିଆସିଲି ଫେରାଇ ପକାଇଦିଏ ।

"ତମେ ସେଇଟା ରଖ । ମୋ ପାଖରେ ଆଉ ଗୋଟାଏ ଦିଇଟା ଅଛି", ଲାଲ ଫୌଜର ସୀମାନ୍ତରକ୍ଷୀ କୁହେ ନିୟମକୁ ଭୁଲିଯାଇ ।

ସୀମାନ୍ତ ଆରପଟରୁ ଉତ୍ତର ଆସେ :

"ନାହିଁ ଭାଇ, ଧନ୍ୟବାଦ, ମୋ ପାଖେ ସେଇଟିକି ଦେଖିଲେ, ଖୁବ୍ କମ୍‌ରେ ମୋତେ ଦୁଇବର୍ଷ ଜେଲ ଭୋଗିବାକୁ ପଡ଼ିବ ।"

ଲାଲ ଫୌଜୀ ଦିଆସିଲିଟିକୁ ଦେଖେ । ସେଥିରେ ଅଛି ଗୋଟାଏ ଉଡ଼ାଜାହାଜ, ଯାହାର ପ୍ରପେଲର ଜାଗାରେ ଗୋଟାଏ ବଜ୍ରମୁଷ୍ଟି ଲେଖା 'ଚରମପତ୍ର' ବୋଲି ମାର୍କାରେ ।

"ଠିକ୍ ଅଛି, ଏଇଟା ତାଙ୍କୁ ପୋଷେଇବ ନାହିଁ ।"

ସୈନିକ ଚାଲିବାକୁ ଆରମ୍ଭ କରେ, ଲାଲ ଫୌଜୀ ସହିତ ପାଦ ମିଳାଇ । ଏ ଭୟଙ୍କର ନିକାଞ୍ଚନ ଜାଗାରେ ଏକୁଟିଆ ରହିବାକୁ ଭଲ ଲାଗେ ନାହିଁ ତାକୁ ।

* * *

ଘୋଡ଼ା ଗୋଡ଼ ଉଠାପକା ଫଳରେ ଜିନ୍‌ଗୁଡ଼ାକ ଏକ ଛନ୍ଦରେ ଶବ୍ଦ କରି ବାଜିଉଠିଲା । ତାଙ୍କର ସମ୍ମିଳିତ ନିଃଶ୍ୱାସ କୁହୁଡ଼ି ଆଚ୍ଛନ୍ନ ପବନଭିତରେ ଏକ ଧୂଆଁରେଖା ସୃଷ୍ଟିକରି ଉଠୁଥିଲା ମଝିରେ ମଝିରେ । ବଡ଼ କଳାଘୋଡ଼ାଟାର ନାକପୁଡ଼ା ଚାରିକଡ଼େ ଲାଗିରହିଛି ବଳ ବଳ ହୋଇ ମେଁଚାଏ ଫେଣ । ତା'ର ସୁନ୍ଦର ବେକ ବଙ୍କେଇ ଯାଇଛି । କାରଣ ବାଟାଲିଅନ୍‌ର କମାଣ୍ଡରଙ୍କର ଘୋଡ଼ୀଟା ତା' ସହିତ ଖେଳୁଛି । ଉଭୟ ଘୋଡ଼ସବାର ପିନ୍ଧିଛନ୍ତି ଲମ୍ବା କୋଟ୍ , ଯେଉଁଟା ଅଣ୍ଟା ପାଖରେ କମରପଟିରେ ଭିଡ଼ାଯାଇଛି । କାନ୍ଧ ଉପରେ ତିନୋଟି ଲେଖାଏଁ ଲାଲବର୍ଗର ଫଳକ । କେବଳ ଏତିକି ମାତ୍ର ଫରକ ଥିଲା ଯେ , କମାଣ୍ଡର ଗାଭ୍ରିଲେଭ୍‌ଙ୍କର କାନ୍ଧ ପଟିଟା ସବୁଜ ଓ ତାଙ୍କ ସହକର୍ମୀଙ୍କର ଲାଲ୍ । ଗାଭ୍ରିଲେଭ୍ ରହିଛନ୍ତି ସୀମାନ୍ତରକ୍ଷୀ ବାହିନୀରେ । ଏହି ସତୁରୀ କିଲୋମିଟର ଲମ୍ବ ସୀମାନ୍ତର ରକ୍ଷକ ହେଉଛନ୍ତି ଯାଙ୍କର ବାଟାଲିଅନ୍ । ତାଙ୍କ ବନ୍ଧୁ ବେରେଜ୍‌ଦୋଭ୍‌ରୁ ଆସିଛନ୍ତି ପରିଦର୍ଶକ ଭାବରେ । ସେ ହେଉଛନ୍ତି ୟୁନିଭର୍ସାଲ୍ ମିଲିଟାରୀ ପ୍ରଶିକ୍ଷଣ ପଦ୍ଧତିର ବାଟାଲିଅନ୍ କମିସାର କୋର୍ଚ୍ଚାଗିନ୍ ।

ଗତ ରାତିସାରା ବରଫ ପଡ଼ିଛି ଏବଂ ବର୍ତ୍ତମାନ ସୁଦ୍ଧା କପା ଫୁଲ ଭଳି ବରଫର ସଫେଦ ଆସ୍ତରଣ ପଡ଼ିରହିଛି । ମଣିଷ ବା ପଶୁପକ୍ଷୀଙ୍କର ପାଦଚିହ୍ନ ମଧ୍ୟ ନାହିଁ ତା' ଉପରେ । ଦୁହେଁଯାକ ଜଙ୍ଗଲ ଭିତରୁ ବାହାରି ଆସି ସୀମାନ୍ତରେଖାଠାରୁ ଚାଳିଶ ପାହୁଣ୍ଡ ଦୂରରେ ଗୋଟିଏ ଖୋଲା ଜାଗାକୁ ଅତିକ୍ରମ କରିବାକୁ ଯାଉଛନ୍ତି । ହଠାତ୍ ଗାଭ୍ରିଲେଭ୍ ତାଙ୍କର ଘୋଡ଼ାର ଲଗାମ ଟାଣି ଅଟକାଇଲେ । ବୁଲିପଡ଼ି କୋର୍ଚ୍ଚାଗିନ୍ ଦେଖିଲେ , ଗାଭ୍ରିଲେଭ୍ ନିଜ ଜିନ୍ ଉପରେ ନଇଁପଡ଼ି ବରଫ ଉପରେ ପଡ଼ିଥିବା ଓ ଛୋଟ ଚକା ଗଡ଼ାଇ ନେଇଯାଇଥିବା ଭଳି ଚିହ୍ନକୁ ଲକ୍ଷ୍ୟ କରୁଛନ୍ତି । କୌଣସି ଏକ ଧୂର୍ତ୍ତ ଜନ୍ତୁ ହୁଏତ ଏଭଳି ଜଟିଳ ଆଉ ଧନ୍ଦାକଟା ନକ୍ସା ଦାଗ କାଟି ଆଗେଇ ଯାଇଛି । କେଉଁ ଦିଗକୁ ଜନ୍ତୁଟି ଯାଇଛି , ଚିହ୍ନରୁ ସେକଥା ବାରିବା କଷ୍ଟକର । ସେ ଚିହ୍ନ ପାଇଁ କିନ୍ତୁ ବାଟାଲିଅନ୍ କମାଣ୍ଡର ଅଟକି ନଥିଲେ । ଦି' ହାତ ଛାଡ଼ି ଝୁରୁଝୁରିଆ ବରଫ ଉପରେ ପଡ଼ି ପଡ଼ି ଯାଇଛି ଗୋଟିଏ ମଣିଷର ପାଦଛାପ । ସେ ପାଦ ଚିହ୍ନିବାରେ କୌଣସି କଷ୍ଟ ହେଉ ନାହିଁ । ଏଥିରେ ମଧ୍ୟ ତିଳେହେଲେ ସନ୍ଦେହ ନାହିଁ ଯେ , ଏ ପାଦଚିହ୍ନଗୁଡ଼ାକ ଆସିଛି ପୋଲଣ୍ଡ ପଟରୁ । ବାଟାଲିଅନ୍ କମାଣ୍ଡର ଘୋଡ଼ା ବୁଲାଇ ଚିହ୍ନକୁ ଅନୁସରଣ କରି ଚାଲିଲେ ସେଣ୍ଟ୍ରି ପୋଷ୍ଟ ପର୍ଯ୍ୟନ୍ତ । ସେଠାରୁ ପୋଲଣ୍ଡ ସୀମା ଭିତରେ ଦଶବାର ପାଦ ପର୍ଯ୍ୟନ୍ତ ଚିହ୍ନଟା ସ୍ପଷ୍ଟଭାବରେ ଦେଖାଯାଉଛି ।

"ଗତ ରାତିରେ କେହି ଜଣେ ସୀମାନ୍ତ ଅତିକ୍ରମ କରିଛି" , ମନକୁ ମନ ବିଡ଼ିବିଡ଼ି କରି କହୁଥିଲେ ବାଟାଲିଅନ କମାଣ୍ଡର , "ତୃତୀୟ ପ୍ଲାଟୁନ୍‌ଟା ପୁଣି ଦେଖିବାକୁ ମିଳୁନି । ସକାଳର ରିପୋର୍ଟ୍‌ରେ ତ ଏକଥାର ଉଲ୍ଲେଖ ନାହିଁ ।" ଗାଭ୍ରିଲେଭ୍‌ଙ୍କର ପାଚି ଆସୁଥିବା ନିଶ ଉପରେ ତାଙ୍କର ନିଃଶ୍ୱାସ ପ୍ରଶ୍ୱାସର ପ୍ରଖରତାରେ ଜମି ଯାଇଥିବା ଜଳବିନ୍ଦୁର ଏକ

ରୂପେଲୀ ସ୍ତର ଝପଟକି ଉଠିଲା । ଓଠ ଉପରକୁ ନଇଁ ଆସିଥିବା ସେ ନିଶ ଯୋଗୁଁ ସେ ଗମ୍ଭୀର ଦିଶୁଥାନ୍ତି ।

ଦୂରରେ ଦୁଇଟି ଛାଇ ପାଖେଇ ଆସୁଥିଲେ । ଜଣେ ଖର୍ବକାୟ ଲୋକ କଳା ପୋଷାକ ପିନ୍ଧିଛି । ହାତରେ ତା'ର ଫରାସୀ ତିଆରି ସଙ୍ଗିନ୍ , ଖରାରେ ଚିକ୍‌ଚିକ୍ କରୁଛି । ଅପର ଜଣକ ହଳଦିଆ ରଙ୍ଗର ମେଣ୍ଢା ଚମଡ଼ାର କୋଟ୍‌ପିନ୍ଧା ବିରାଟ ଲମ୍ବା ଚଉଡ଼ା ମଣିଷଟାଏ । ଉଭୟ ଘୋଡ଼ସବାର ସେମାନଙ୍କ ପାଖକୁ ଆଗେଇଗଲେ । ସେମାନେ ପହଞ୍ଚିବା ମାତ୍ରେ ଲାଲ ଫୌଜର ସୈନିକଟି ନିଜ କାନ୍ଧରେ ଝୁଲୁଥିବା ବନ୍ଧୁକକୁ ସଳଖି ଧରି ମୁହଁରୁ ସିଗାରେଟ୍ ଟୁକୁରାଟା ପକାଇଦେଲା ତଳକୁ ।

"ଆଚ୍ଛା କମ୍ରେଡ୍ , ତମ ବିଭାଗର କାମଦାମ କେମିତି ଚାଲିଛି ?" କହି ବାଟାଲିଅନ୍ କମାଣ୍ଡର ହାତ ମିଳାଇବାକୁ ହାତ ବଢ଼ାଇଦେଲେ । ସୈନିକଟି ତରବରରେ ହାତମୋଜା ଖୋଲି ଆଗେଇ ଆସିଲା ହାତ ମିଳାଇବାକୁ । ସୀମାନ୍ତରକ୍ଷୀ ଜଣକ ଏତେ ଡେଙ୍ଗା ଯେ , ତା' ସହିତ ହାତ ମିଳାଇବାକୁ ବାଟାଲିଅନ୍ କମାଣ୍ଡରଙ୍କୁ ନିଜ ଘୋଡ଼ା ପିଠିରେ ଟିକେ ଝୁଙ୍କିବାକୁ ବି ପଡ଼ିଲା ନାହିଁ ।

ଦୂରରେ ଛିଡ଼ାହୋଇ ଏ ଦୃଶ୍ୟ ଦେଖୁଥିଲା ପୋଲାଣ୍ଡ ବାହିନୀର ସୈନିକଟି । ଦୁଇଜଣ ଲାଲ ଫୌଜୀ ଅଫିସର ଜଣେ ସାଧାରଣ ସୈନିକକୁ ଅଭିବାଦନ ଜଣାଉଛନ୍ତି ଘନିଷ୍ଠ ବନ୍ଧୁ ଭଳି । ମେଜର ଡାକ୍ରଝେଭ୍‌ସ୍କିଙ୍କ ସହିତ ହାତ ମିଳାଉଥିବାର ଦୃଶ୍ୟ କଳ୍ପନା କଲା ସେ ମନକୁ ମନ । ଏ ଭାବନା ମଧ୍ୟ ଏତେ ଭୀତିପ୍ରଦ ଯେ , ସେ ଚମକିପଡ଼ି ପଛକୁ ମୁହଁ ଫେରାଇଲା ।

"ଏଇମାତ୍ର ମୁଁ ପହରା ଦେବାକୁ ଆରମ୍ଭ କରିଛି , କମ୍ରେଡ ବାଟାଲିଅନ୍ କମାଣ୍ଡର" , ଲାଲ ଫୌଜୀ ରକ୍ଷୀ କହୁଥିଲା ।

"ସେ ପାଦଚିହ୍ନ ଦେଖିଛ ?"

"ନାଁ , ଏଯାଏଁ ଦେଖିନି ମୁଁ ।"

"ରାତି ଦୁଇରୁ ଛଅଟା ପର୍ଯ୍ୟନ୍ତ କାହାର ଡିଉଟି ଥିଲା ?"

"ସୁରୋଟେଙ୍କୋର ଡିଉଟି ଥିଲା , କମ୍ରେଡ୍ କମାଣ୍ଡର ।"

"ଠିକ୍ ଅଛି , ଟିକେ ହୁସିଆର ରୁହ ।"

ଘୋଡ଼ା ଝପଟାଇବା ଆଗରୁ ସାବଧାନ କରାଇଦେଲେ ବାଟାଲିଅନ୍ କମାଣ୍ଡର :

"ସେ ଲୋକଗୁଡ଼ାଙ୍କ ନିକଟରୁ ଦୂରେଇ ରୁହ ।"

ସୀମାନ୍ତରୁ ବେରେଜ୍‌ଦୋଭ୍ ପର୍ଯ୍ୟନ୍ତ ପଡ଼ିଥିବା ପ୍ରଶସ୍ତ ରାସ୍ତାରେ ଘୋଡ଼ା ଝପଟାଇବା ବେଳେ କମାଣ୍ଡର ତାଙ୍କ ବନ୍ଧୁକୁ କହୁଥାନ୍ତି , "ଏ ସୀମାନ୍ତରେ ତମକୁ ସବୁବେଳେ ହୁସିଆର ରହିବାକୁ ହେବ । ସାମାନ୍ୟ ଅସାବଧାନତା ବା ବିଚ୍ୟୁତିର ଫଳାଫଳ ଏଠାରେ ଭୟଙ୍କର ହୋଇପାରେ । ଆମ କାମରେ ଟିକିଏ ବି ଗଫଲତ୍ ଚଳିବ ନାହିଁ । ଦିନବେଳା ସୀମାନ୍ତ ଟପିଆସିବା ସଂଭବ ନୁହଁ , କିନ୍ତୁ ରାତିରେ ଆମକୁ ସଜାଗ ରହିବାକୁ ପଡ଼ିବ । ତମେ

ନିଜେ ବିଗ୍ରର କର କମ୍ରେଡ୍ , କୋର୍ଗିନ୍ । ମୋ ଦାୟିତ୍ୱରେ ଥିବା ସୀମାନ୍ତର ଅଂଶତକରେ ସୀମାରେଖା ଗ୍ରରିଟି ଗାଁ ଉପରେ ଯାଇଛି । ଯାହା ଫଳରେ ଅବସ୍ଥାଟା ଆହୁରି ଜଟିଳ ହୋଇଯାଇଛି । ଯେତେ ଲଗାଲଗି ହୋଇ ସୀମାନ୍ତ ପହରା ରଖିଲେ ବି ତମେ ଦେଖିବ , ଗୋଟିଏ ପଟର ବାହାଘର କି ମେଳା ମଉଛବରେ ଆରପଟର ସମସ୍ତେ ଯାଇ ଯୋଗ ଦେଉଛନ୍ତି । ଗୋଟିଏ କୁଡ଼ିଆଠାରୁ ଆଉ ଗୋଟିକର ଦୂରତା ଦଶବାର ପାହୁଣ୍ଡ ହେବ କି ନାହିଁ । ମଝିରେ ଥିବା ଛୋଟ ନଦୀଟିକୁ କୁକୁଡ଼ା ଛୁଆ ବି ଡେଇଁ ଯାଇପାରିବ । କିଛି କିଛି ଗ୍ରେରା କାରବାର ମଦ ଗ୍ରଲିଛି । ଅବଶ୍ୟ ସେଗୁଡ଼ାକ ସବୁ ଅତି ଛୋଟକାଟିଆ କାମ । ବୁଢ଼ୀଟାଏ ପୋଲଣ୍ଡ ଭୋଦ୍‌କା ବୋତଲେ ଦି' ବୋତଲ ଗ୍ରେରାଇ ଆଣୁଛି ... ଏମିତି ସବୁ । ମାତ୍ର ବିରାଟ ଧରଣର ନିଷିଦ୍ଧ କାମଦାମ ଗ୍ରଲୁଛି । ପଛରେ ତା'ର ରହିଛନ୍ତି ବଡ଼ ବଡ଼ ଧନୀଲୋକ ଟଙ୍କାଥଳି ଧରି , କାମ ଗ୍ରଲୁରଖିବା ପାଇଁ । ଆଉ ତମେ ଜାଣିଛ ନା , ଏ ସୀମାନ୍ତ ଗାଁଗୁଡ଼ାକରେ ପୋଲଣ୍ଡୀୟମାନେ ଦୋକାନସବୁ ଖୋଲିଦେଇଛନ୍ତି , ଯେଉଁଠାରେ ଯାହା ଖୋଜିବ ତା' ମିଳିବ । ଏକଥା ନିଶ୍ଚିତ ଯେ , ସେ ଦୋକାନଗୁଡ଼ାକ ତାଙ୍କର କାଙ୍ଗାଳ , ଦରିଦ୍ର କୃଷକଙ୍କ ପାଇଁ ନୁହେଁ ।"

ବାଟାଲିଅନ୍ କମାଣ୍ଡରଙ୍କ କଥା ଶୁଣି କୋର୍ଗିନ୍ ଜଣାଇଲେ ଯେ , ସୀମାନ୍ତରେ ଜୀବନ ହେଉଛି ସବୁବେଳେ ଏକ ସତର୍କ ପହରା ଭଳି ।

"ଗ୍ରେରା କାରବାର ବ୍ୟତୀତ ଆହୁରି ଅନେକ ବଡ଼ ବଡ଼ କାମ ବି ଗ୍ରଲିଛି ବୋଧହୁଏ ... କ'ଣ କହୁଛ କମ୍ରେଡ୍ ଗାଭ୍ରିଲୋଭ୍ ?"

"ସେଇଆ ତ ଅସଲ କଥା" , ମୁହଁ ଶୁଖାଇ କହିଲେ ବାଟାଲିଅନ୍ କମାଣ୍ଡର ।

* * *

ବେରେଜ୍‌ଦୋଭ୍ ଏକ ଜଙ୍ଗଲପାଖିଆ ଛୋଟ ସହର । ଯେଉଁଠାରେ କି ଇହୁଦୀ ଅଧିବାସୀଙ୍କର ଘର ଅଧିକ । ଇତସ୍ତତଃ ହୋଇଥିବା ଦୁଇଶ କି ତିନିଶ ଛୋଟ ଘର ଏବଂ ଏକ ବିରାଟ ବଜାର ଛକ ମଝିରେ ଯାହାର ବାରଚଉଦଟି ମାତ୍ର ଦୋକାନ ଅଛି । ସେଠାରେ ସମଗ୍ର ଛକ ଅଞ୍ଚଳଟା ଗୋବର ପଡ଼ି ଅଳିଆ ଅସନା ହୋଇଛି । ମୂଳ ସହର ଗ୍ରରିକଡ଼ଯାକ ବିଛେଇହୋଇ ରହିଛି ଗ୍ରଷୀମାନଙ୍କର କୁଡ଼ିଆସବୁ । ଇହୁଦୀମାନେ ରହୁଥିବା ଅଞ୍ଚଳରେ କଂସେଇଖାନାକୁ ପଡ଼ିଥିବା ରାସ୍ତାରେ ଛିଡ଼ାହୋଇଛି ଏକ ପ୍ରାଚୀନ ସିନାଗୋଗ୍ * – ଦରଭଙ୍ଗା , ଅସୁନ୍ଦରିଆ କୋଠାଟିଏ । ଶନିବାରମାନଙ୍କରେ ସିନାଗୋଗ୍‌ରେ ଲୋକ ସମାଗମ ହେଲେ ମଧ୍ୟ ତା'ର ପ୍ରାଚୀନ ମହିମା ନାହିଁ । ଇହୁଦୀଙ୍କର ଉପାସକ ଅତି ଦୁଃସ୍ଥ ଅବସ୍ଥାରେ ବାସ କରନ୍ତି । କାରଣ ୧୯୧୭ ମସିହାରେ ଯାହାସବୁ ଘଟିଗଲା , ତା' ଫଳରେ ଏ ପାଣ୍ଡବବିବର୍ଜିତ ଜାଗାରେ ମଧ୍ୟ ସେହି ପ୍ରଭାବରେ ଆଜିକାଲିକା

---

* ଇହୁଦୀମାନଙ୍କ ଉପାସନା ମନ୍ଦିର – ସଂପାଦକ ।

ଟୋକାମାନେ ତାଙ୍କୁ ପୂର୍ବଭଳି ଖାତିର କରୁ ନାହାନ୍ତି, ସମ୍ମାନ ଦେଖାଉ ନାହାନ୍ତି। ବୁଢ଼ାବୁଢ଼ୀମାନେ ଏବେବି ଧର୍ମ ନିର୍ଦ୍ଦେଶାନୁଯାୟୀ ଶାସ୍ତ୍ରସମ୍ମତ ଖାଦ୍ୟ ଖାଉଛନ୍ତି। ମାତ୍ର ତରୁଣତରୁଣୀମାନେ ଭଗବାନ ଅଭିଶାପ ଦେଇଥିବା ଘୁଷୁରି ମାଂସର ସସେଜ ଖାଉଛନ୍ତି! ଏକଥାଗୁଡ଼ାକ ଭାବିଲାବେଳକୁ ଉପାସକଙ୍କର ମୁଣ୍ଡ ଖରାପ ହୋଇଯାଏ। ମୁଣ୍ଡକୁ ପିତ ଚଢ଼ିଯାଏ।

ଉପାସକ ରେବି ବୋରୁଖ୍ * ସେମିତି ଏକ ଉତ୍ତ୍ୟକ୍ତ ଅବସ୍ଥାରେ ଗୋବରଗୁଡ଼ାକ ଖେଳାଇ ଖେଳାଇ କ'ଣ ଖାଇବାକୁ ଖୋଜୁଥିବା ଘୁଷୁରିଟାକୁ ଗୋଟାଏ ଗୋଇଠା ପକାଇଲେ। ବେରେକ୍‌ଦୋଭ୍ ଯେ ଗୋଟାଏ ଜିଲ୍ଲା କେନ୍ଦ୍ରରେ ପରିଣତ ହୋଇଛି, ଏକଥାରେ ରେବିଙ୍କ ଦିହ ଜଳିଯାଉଥିଲା। ପୁଣି କୋଉଠୁ କେମିତି ଏ କମ୍ୟୁନିଷ୍ଟଗୁଡ଼ାକ ଆସିଲେ କେଜାଣି, ସବୁକଥା ଓଲଟପାଲଟ କରିଦେଉଛନ୍ତି। ପ୍ରତିଦିନ ନୂଆ ନୂଆ ଅପ୍ରୀତିକର ଘଟଣାର ଖବର ପହଞ୍ଚୁଛି। ଉଦାହରଣ ସ୍ୱରୂପ, ଗତକାଲି ଧର୍ମଯାଜକଙ୍କ ଘର ଆଗରେ ସେ ନୂଆ ଏକ ନାମଫଳକ ଦେଖିଲେ:

'ୟୁକ୍ରେନୀୟ ତରୁଣ କମ୍ୟୁନିଷ୍ଟ ଲିଗ୍‌ର ବେରେକ୍‌ଦୋଭ୍ ଜିଲ୍ଲା ସମିତି'

ଏଭଳି ଗୋଟାଏ ଚିନ୍ତା କେବଳ ମଣିଷ ମନରେ ଘୃଣା ଛଡ଼ା ଆଉ କିଛି ଆଣିବ ନାହିଁ। ସେ ନିଜ ଚିନ୍ତାରେ ଏତେ ବୁଡ଼ିଯାଇଥିଲେ ଯେ, ତାଙ୍କ ସିନାଗୋଗ୍ ଦୁଆରମୁହଁରେ ଯେଉଁ ଘୋଷଣାପତ୍ର ମରାଯାଇଥିଲା, ତାକୁ ପଢ଼ି ନଥିଲେ:

"ତରୁଣ ମଜ୍‌ଦୁରମାନଙ୍କର ଏକ ସାଧାରଣ ସଭା ଆଜି କ୍ଲବ୍‌ଠାରେ ଅନୁଷ୍ଠିତ ହେବ। ସେଠାରେ କାର୍ଯ୍ୟକାରୀ ସମିତିର ସଭାପତି ଲିସିହିନ୍ ଏବଂ କମ୍‌ସୋମୋଲ୍‌ର କାର୍ଯ୍ୟକାରୀ ଜିଲ୍ଲା ସଂପାଦକ କୋର୍ଗିନ୍ ଭାଷଣ ଦେବେ। ସଭା ଶେଷରେ ନ' ବର୍ଷିଆ ସ୍କୁଲର ପିଲାମାନଙ୍କ ଦ୍ୱାରା ଏକ ବିଚିତ୍ରା କାର୍ଯ୍ୟକ୍ରମ ମଧ୍ୟ ଅନୁଷ୍ଠିତ ହେବ।"

ଉତ୍ତ୍ୟକ୍ତ ହୋଇ ରେବି ସେ କାଗଜଖଣ୍ଡକ ଚିକିଟିକି କରି ଚିରି ଫୋପାଡ଼ିଦେଲେ। ସଂଘର୍ଷ ଆରମ୍ଭ ହୋଇଗଲାଣି।

ସ୍ଥାନୀୟ ଗିର୍ଜା ସଂଲଗ୍ନ ଏକ ବିରାଟ ବଗିଚା ମଝିରେ ଅତୀତରେ ଧର୍ମଯାଜକ ରହୁଥିବା ପୁରୁଣା ଘରଟାଏ ଛିଡ଼ା ହୋଇଛି। ପୁରୁଣା ଘରଟାର କନ୍ଦିବିକନ୍ଦିରେ ଏକ ଭୟଙ୍କର ଶୂନ୍ୟତା ଖେଳି ବୁଲୁଥିଲା। ସେ ଘରେ ଧର୍ମଯାଜକ ଓ ତାଙ୍କର ସ୍ତ୍ରୀ ରହୁଥିଲେ। ବୁଢ଼ାବୁଢ଼ୀ ଦିହେଁ, ସେ ଘରଟା ଭଳି ପ୍ରାଚୀନ ଓ ବୃଦ୍ଧ ଏବଂ ସ୍ପନ୍ଦନହୀନ ଜୀବନ ବିତାଉଥିଲେ, ପରସ୍ପର ପ୍ରତି ଅଶ୍ରଦ୍ଧାରେ।

ସେ ଫାଙ୍କାଘରର ଶୂନ୍ୟତା, ହତାଶା ଘରଟିର ନବାଗନ୍ତୁକ ମାଲିକମାନେ ପ୍ରବେଶ କଲାମାତ୍ରେ କାହିଁ କୁଆଡ଼େ ଉଭେଇଗଲା। ଅତୀତରେ ଛୁଟିଦିନମାନଙ୍କରେ ଯେଉଁ ବଡ଼ ହଲ୍‌ଘରଟାରେ ଧାର୍ମିକ ଦଂପତି ଅତିଥି ଅଭ୍ୟାଗତଙ୍କୁ ବସାଉଥିଲେ, ସେଇ ହଲ୍‌ଟାରେ ଏବେ

---

* ଇହୁଦୀ ଧର୍ମ ଉପାସକ – ସଂପାଦକ।

ସଦାସର୍ବଦା ଗହଳଚହଳ ଲାଗିରହିଛି । କାରଣ ସେଇଟା ଏବେ ବେରେଜ୍‌ଦୋଭ୍ କମ୍ୟୁନିଷ୍ଟ ପାର୍ଟି କମିଟିର କାର୍ଯ୍ୟାଳୟ । ଡାହାଣ କଡ଼କୁ ଯିବାକୁ କବାଟ ଉପରେ ଚକ୍‌ରେ ଲେଖାହୋଇଛି 'କମ୍‌ସୋମୋଲ୍‌ର ଜିଲ୍ଲା କମିଟି' । ଏଇଠି ନିଜ କାର୍ଯ୍ୟମୟ ଦିନର କିଛି ଅଂଶ ବିତାଏ କୋର୍ଚ୍ଚାଗିନ୍ । ଦ୍ୱିତୀୟ ସାର୍ବଜନୀନ ମିଲିଟାରୀ ଟ୍ରେନିଂ ବାଟାଲିଅନ୍‌ର କମିସାର ହେଲେ ସୁଦ୍ଧା ସେ ନବ-ସଂଗଠିତ କମ୍‌ସୋମୋଲ୍ ଜିଲ୍ଲା କମିଟିର ମଧ୍ୟ କାର୍ଯ୍ୟକାରୀ ସଂପାଦକ ।

ଆନ୍ନା ଘରେ ଏକତ୍ର ହେବାର ଆଜିକି ଆଠମାସ ବିତିଗଲାଣି । ହେଲେ, କାଲି ପରି ଲାଗୁଛି । ଆଗରେ ଗଦା ହୋଇଥିବା କାଗଜଗୁଡ଼ାକୁ ଗୋଟାଏ ପାଖକୁ ପେଲିଦେଇ ନିଜ ଚଉକିରେ ଢଳେଇ ବସି କୋର୍ଚ୍ଚାଗିନ୍ ନିଜ ଭାବନାରେ ବୁଡ଼ିଗଲା ।

ଘରଟା ଭିତରେ ନିରବଚ୍ଛିନ୍ନ ନୀରବତା । ରାତି ଅନେକ ହେଲାଣି ଓ ପାର୍ଟି କମିଟି ଅଫିସ୍ ଫାଙ୍କା ହୋଇଗଲାଣି । ଟିକିଏ ଆଗରୁ ପାର୍ଟିର ଆଞ୍ଚଳିକ କମିଟିର ସଂପାଦକ ଟ୍ରୋଫିମୋଭ୍ ଘରକୁ ଗଲେ, ସାରା ଘରଟାରେ କୋର୍ଚ୍ଚାଗିନ୍‌କୁ ଏକାକୀ ଛାଡ଼ି । ଘରର ଝରକା କାଚ ଉପରେ କୁହୁଡ଼ି ପଡ଼ି ଏକ ଅଦ୍ଭୁତ ଚିତ୍ରରେ ପରିଣତ ହୋଇଛି, ମାତ୍ର ଘରଟା ଭିତରେ ବେଶ୍ ଉଷୁମ । ଟେବୁଲ ଉପରେ ଜଳୁଛି ଗୋଟିଏ କିରାସିନି ଲ୍ୟାମ୍ପ । ନିକଟ ଅତୀତର କଥା ମନେ ପଡ଼ୁଥିଲା କୋର୍ଚ୍ଚାଗିନ୍‌ର । ମନେ ପଡ଼ିଲା ତା'ର କିପରି ଗତ ଅଗଷ୍ଟ ମାସରେ ରେଳବାଇ କାରଖାନାର କମ୍‌ସୋମୋଲ୍ ସଂଗଠନ, ଜଣେ ସଂଗଠକଭାବରେ ତାକୁ ଗୋଟିଏ ମରାମତ ରେଳ ସହିତ ୟେକାଟେରିନୋସ୍ଲାଭ୍‌କୁ ପଠାଇଥିଲେ । ଶେଷ ଶରତ ପର୍ଯ୍ୟନ୍ତ ରେଳର ଦେଢ଼ଶହ ଯାତ୍ରୀଙ୍କ ସହିତ ଷ୍ଟେସନ୍‌ରୁ ଷ୍ଟେସନ୍‌କୁ ଯିବାକୁ ପଡ଼ିଲା ଯୁଦ୍ଧ ପରବର୍ତ୍ତୀ କାଳର ବିଶୃଙ୍ଖଳ ଅବସ୍ଥାକୁ ଶୃଙ୍ଖଳିତ କରିବା ପାଇଁ । ଭଙ୍ଗାରୁଜାକୁ ସଜାଡ଼ି, ପୋଡ଼ିଯାଇଥିବା ରେଳଡବା ଗଦାଗୁଡ଼ାକୁ ସଫା କରିବାକୁ ତାକୁ ଯିବାକୁ ପଡ଼ିଲା ସିନେଲ୍‌ନିକୋଭୋରୁ ପୋଲୋଗ୍ ଅଞ୍ଚଳ ମଧ୍ୟ ଦେଇ, ଯେଉଁଠାରେ ମାଖ୍‌ନୋ ଡକାଏତଦଳ ଆକ୍ରମଣ କରି ଧ୍ୱଂସାବଶେଷ ଛାଡ଼ିଯାଇଛି ପଛରେ । ଗୁଲ୍ୟାୟ-ପୋଲେଠାରେ ଇଟାତିଆରି ଓ୍ୱାଟର୍ ଟାଓ୍ୱାର୍‌କୁ ମରାମତି କରିବାରେ ଓ ଡିନାମାଇଟ୍‌ରେ ବିଧ୍ୱସ୍ତ ଟାଓ୍ୱାର୍‌ର କଡ଼ଗୁଡ଼ାକୁ ଲୁହାପାତ ଦେଇ ଝଲେଇବାରେ ତାକୁ ପୂରା ସପ୍ତାହେ ଲାଗିଗଲା । ଫିଟର ନ ହୋଇଥିଲେ ମଧ୍ୟ ଓଜନଦାର କାମରେ ଅନଭ୍ୟସ୍ତ ଥିଲେ ବି ପାଭେଲ୍ ଅସଂଖ୍ୟ ଫଟା ଝଲେଇକରିଛି ଓ ଜଙ୍କଖିଆ ବୋଲ୍ଟ ମରାମତି କରିଛି ଏଇ ସମୟ ମଧ୍ୟରେ ।

ଶରତର ଶେଷକାଳରେ ରେଳଟି ଫେରିଲା ସ୍ୱସ୍ଥାନକୁ ଓ ରେଳବାଇ କାରଖାନା ଦେଢ଼ଶ କର୍ମୀଙ୍କୁ ପାଇ ପୁଣି ସରଗରମ ହୋଇଉଠିଲା ।

ପାଭେଲ୍ ଏବେ ଆନ୍ନା ଘରକୁ ଅନେକ ସମୟରେ ଯା'ଆସ କରେ । ତା' କପାଳର କୁଞ୍ଚନ ମିଳାଇଯାଇଛି ଓ ତା'ର ସଂକ୍ରାମକ ହସ ପୁଣି ଶୁଭିବାକୁ ଲାଗିଛି । ରେଳବାଇ କାରଖାନାର ବନ୍ଧୁ ଶ୍ରମିକମାନେ ପୁଣି ପାଭେଲ୍‌କୁ ଘେରି ଏକାଠି ବସିବାକୁ ଆରମ୍ଭ

କରିଦେଲେ, ସଂଗ୍ରାମର ସେ ବିଗତ ଦିନଗୁଡ଼ିକର କାହାଣୀ, କୃଷିଜୀବୀ ରୁଷ୍ କାନ୍ଧରେ ଭାରହୋଇ ବସିଥିବା ଦାସତ୍ୱର ଦାରୁଣ ଦୈତ୍ୟକୁ ହଟାଇ ଫୋପାଡ଼ି ଦେବା ପାଇଁ, ବିପ୍ଳବୀ ରୁଷ୍‌ର ମହାନ୍ ସଂଗ୍ରାମର କାହାଣୀ ଓ ଷ୍ଟେପାନ୍ ରାଜିନ୍ ଏବଂ ପୁଗାଶ୍ଚେଭ୍‌ଙ୍କ ବିଦ୍ରୋହର କାହାଣୀ ଶୁଣିବା ପାଇଁ ।

ଦିନେ ସନ୍ଧ୍ୟାରେ ଅନ୍ୟ ଦିନଠାରୁ ଅଧିକ ତରୁଣତରୁଣୀ ଆନ୍ନା ଘରେ ଜମା ହୋଇଥିଲେ ବେଳେ, ପାଭେଲ୍ ଘୋଷଣା କରିଥିଲା ଯେ, ସେ ସିଗାରେଟ୍ ଟାଣିବା ଛାଡ଼ିଦେବ । ସିଗାରେଟ୍ ଟାଣିବା ଭଳି ଅସ୍ୱାସ୍ଥ୍ୟକର ଅଭ୍ୟାସ ପିଲାକାଳରୁ ତା'ର ହୋଇଯାଇଛି ।

"ମୁ ଆଉ ସିଗାରେଟ୍ ଟାଣିବି ନାହିଁ", ସେ ଦୃଢ଼ କଣ୍ଠରେ କହିଲା ।

ହଠାତ୍ ଏହି ଘଟଣାଟି ଘଟିଗଲା ଅପ୍ରତ୍ୟାଶିତ ଭାବେ । ଉପସ୍ଥିତ ଥିବା ଜଣେ ତରୁଣ କହିଥିଲା ଯେ, ଅଭ୍ୟାସ ନିଜର ଇଚ୍ଛାଶକ୍ତିଠାରୁ ମଧ୍ୟ ଦୃଢ଼ତର – ଯଥା, ଧୂମପାନ ଅଭ୍ୟାସ । ସେମାନଙ୍କର ମତାମତ ଦୁଇଭାଗରେ ବିଭକ୍ତ ହୋଇଗଲା । ପ୍ରଥମେ ପାଭେଲ୍ କିଛି କହୁ ନଥିଲା । ମାତ୍ର ତାଇ୍ୟା ତାକୁ ତା'ର ମତାମତ ବିଷୟରେ ପଚାରିବାରୁ ଏ ବିତର୍କ ଭିତରକୁ ସେ ଟାଣି ହୋଇ ଆସିଲା । ଏବଂ ଯାହା ସେ ଭାବୁଥିଲା ସେଇଆ କହିଲା ।

"ମଣିଷ ନିଜ ଅଭ୍ୟାସକୁ ପରିଚାଳିତ କରେ, ବିପରୀତ କଥା ସତ୍ୟ ନୁହେଁ । ନଚେତ୍ ଆମେ ଥାଆନ୍ତୁ କେମିତି ?"

"ଭାରି ଭଲ ଶୁଭୁଛି କଥାଗୁଡ଼ାକ, ନୁହେଁ ?" ଶ୍ୱେତାୟେଭ୍ ଗୋଟାଏ କଣରୁ କହିଲା, "କୋର୍ଗିନ୍ ବେଶ୍ ବଡ଼ ବଡ଼ କଥା କହିବାକୁ ଭଲପାଏ । ମାତ୍ର ସେ ନିଜେ ନିଜ କଥା ମନେପକାଏ ନାହିଁ । ସିଏ ଧୂମପାନ କରେ ତ ! ସିଏ ଜାଣେ ଯେ, ଏଇଟା ବଦଭ୍ୟାସ – ଖରାପ କଥା । ହେଲେ, ସେ ଅଭ୍ୟାସ ଛାଡ଼ିପାରେ ନାହିଁ ।" ତା'ପରେ ନିଜ ସ୍ୱରକୁ ବ୍ୟଙ୍ଗପୂର୍ଣ୍ଣ କରି କହିଲା, "ସିଏତ ଆଲୋଚନା ଚକ୍ରମାନଙ୍କରେ ବେଶ୍ 'ସଂସ୍କୃତି ବିସ୍ତାର' କରି ଚାଲିଥିଲା । ହେଲେ ଗାଳିଗୁଲଜ କରିବାର ଅଭ୍ୟାସ ସେ କ'ଣ ଛାଡ଼ି ଥିଲା ? ପାଭେଲ୍‌କୁ ଯିଏ ଜାଣେ, ସିଏ କହିବ ଯେ, ପାଭେଲ୍ ଘନ ଘନ ଗାଳିଗୁଲଜ କରେ ନାହିଁ, କିନ୍ତୁ ଥରେ ଆରମ୍ଭ କରିଦେଲେ ନିଜକୁ ଆଉ ସମ୍ଭାଳି ପାରେ ନାହିଁ । ନିଜେ ସାଧୁ ହେବା ଅପେକ୍ଷା ଅନ୍ୟକୁ ବକ୍ତୃତା ଦେବାଟା ଅନେକ ସହଜ ।"

ଘରଟା ନୀରବ ହୋଇଗଲା କିଛି ସମୟ ପରେ । ଶ୍ୱେତାୟେଭ୍‌ର ସ୍ୱର ସମସ୍ତଙ୍କୁ ଆଚ୍ଛନ୍ନ କରିଦେଲା କିଛି ସମୟ ପାଇଁ । କୋର୍ଗିନ୍ ହଠାତ୍ କିଛି କହିଲା ନାହିଁ । ଧୀରେ ଧୀରେ ସେ ନିଜ ଆଙ୍ଗୁଠିର ସନ୍ଧିରୁ ସିଗାରେଟଟାଏ କାଢ଼ି ପକେଇଦେଲା ଓ ନୀରବରେ କହିଲା :

"ଆଉ ମୁଁ ସିଗାରେଟ୍ ଖାଇବି ନାହିଁ ।" ତା'ପରେ ଟିକିଏ ଅଟକିରହି କହିଲା : "ଆଉ ଏ କାମ ମୁଁ ଦିମ୍‌କା କହିଲା ବୋଲି କରୁ ନାହିଁ – ମୋ ନିଜ ପାଇଁ କରୁଛି । ଯେଉଁ ଲୋକ ଗୋଟାଏ ବଦଭ୍ୟାସ ଛାଡ଼ିପାରେ ନାହିଁ, ସିଏ ମଣିଷ ନୁହେଁ । ଏଥର ଏହି

ଗାଳିଗୁଲଜ କରିବା ପ୍ରତି ନଜର ଦେବାକୁ ହେବ । ମୁଁ ଜାଣେ ମୁଁ ଏବେ ସୁଦ୍ଧା ସେ ଲଜ୍ଜାକର ଅଭ୍ୟାସ ଛାଡ଼ିପାରି ନାହିଁ । ମାତ୍ର ଦିମ୍‌କା ମଧ୍ୟ ସ୍ୱୀକାର କରିବ ଯେ, ସେ ମୋତେ ସବୁବେଳେ ଗାଳି ଦେବାର ଦେଖି ନାହିଁ । ସିଗାରେଟ୍ ଟାଣିବା ଛାଡ଼ିବା ଅପେକ୍ଷା ମୁହଁରୁ ଗୋଟାଏ ଖରାପ କଥା ବାହାରିଯିବାକୁ ରୋକିବା କଷ୍ଟକର ନିଶ୍ଚୟ । ତେଣୁ ବର୍ତ୍ତମାନ ମୁଁ କହିପାରୁ ନାହିଁ, ସେ ଅଭ୍ୟାସଟାକୁ ମୁଁ ଏତେ ଶୀଘ୍ର ଛାଡ଼ିପାରିବି କି ନାହିଁ ବୋଲି । ତଥାପି ସେଇଟା ମଧ୍ୟ ଛାଡ଼ିବି ମୁଁ ।"

* * *

ବରଫ ପଡ଼ିବାର ଠିକ୍ ପୂର୍ବରୁ ଜାଳେଣୀ କାଠର ଗଣ୍ଡିଗୁଡ଼ାକ ନଈ ପାଣିର ସୁଅରେ ଭାସିଯାଇ ମୁହାଣରେ ଅଟକିଲା । ପରେ ପରେ ଆସିଗଲା ଶାରଦୀୟ ବନ୍ୟା ଓ ବହୁ ଦରକାରୀ ଜାଳେଣୀସବୁ ବଢ଼ି ପାଣିରେ ଭାସିଗଲା । ପୁଣି ଥରେ ସୋଲୋମେଙ୍କା ଲୋକଙ୍କୁ ଟା'ର ପଠାଇଲା ଜାଳେଣୀ କାଠ ରକ୍ଷା କରିବାକୁ ।

ସପ୍ତାହେ ହେଲା ପାଭେଲ୍ ଥଣ୍ଡା ରୋଗରେ ଭୋଗୁଛି । କିନ୍ତୁ ଅନ୍ୟମାନଙ୍କ ପଛରେ ପଡ଼ିଯିବ ବୋଲି ସମସ୍ତଙ୍କ ଆଗରେ ସେକଥା ଲୁଚାଇଲା । କାଠଗୁଡ଼ାକୁ ନଈ ଧାରରେ ଗଦା କରିବାକୁ ପ୍ରାୟ ସପ୍ତାହେ ଖଣ୍ଡେ ଲାଗିଗଲା । ସେପର୍ଯ୍ୟନ୍ତ ଦିହ କଥାଟାକୁ ଲୁଚାଇଲା ସେ । ମାତ୍ର ବରଫ, ହେମକାକର ପାଣି, ଶରତର କାକୁଆପବନ ମିଶି ଟା' ଦେହରେ ଲୁଚିରହିଥିବା ଶତ୍ରୁଟାକୁ ଜାଗ୍ରତ କଲା ଏବଂ ଭୟଙ୍କର ଜ୍ୱରରେ ପଡ଼ିଲା ସେ । ଦୀର୍ଘ ଦୁଇ ସପ୍ତାହ ଧରି କଠିଣ ଆଣ୍ଠୁଗଣ୍ଠିବାତରେ ଟା'ଦେହ ଭାଙ୍ଗିଗଲା ଓ ଡାକ୍ତରଖାନାରୁ ଫେରିଲାବେଳକୁ ସେ କେବଳ ବେଞ୍ଚ ଧରି ଧରି, ଉଠବସ କରି କାମ କରିପାରୁଛି ମାତ୍ର । ଫୋରମ୍ୟାନ୍ ଟା' ଆଡ଼କୁ ଚାହିଁ ଅତି ଦୁଃଖରେ ମୁଣ୍ଡ ଟୁଙ୍ଗାରେ । କିଛି ଦିନ ପରେ ମେଡିକାଲ ବୋର୍ଡ ଟାକୁ କାର୍ଯ୍ୟ କରିବା ପାଇଁ ଅକ୍ଷମ ବୋଲି ଘୋଷଣା କଲେ ଓ ଟାକୁ କାମରୁ ବରଖାସ୍ତ କରି ବରଖାସ୍ତ ଦରମା ଦିଆହେଲା ଏବଂ ଏକ ସାର୍ଟିଫିକେଟ୍ ଦିଆଗଲା ସେ ପେନ୍‌ସନ ପାଇବାକୁ ହକ୍‌ଦାର ବୋଲି । ଏ ପେନ୍‌ସନ କାଗଜକୁ ରାଗରେ ଗ୍ରହଣ କଲା ନାହିଁ ସେ ।

ବେଦନାସିକ୍ତ ହୃଦୟରେ କାରଖାନା ପରିତ୍ୟାଗ କଲା ପାଭେଲ୍ । ଧୀରେ ଧୀରେ ନିଜ ବାଡ଼ିଟିରେ ଭାରାଦେଇ ଆଗେଇଲା ସେ । ମାତ୍ର ପ୍ରତିଟି ପଦକ୍ଷେପରେ ଗଭୀର ଯନ୍ତ୍ରଣା ହେଉଥାଏ ଟାକୁ । ମା' ଦି'ଖରିଟି ଚିଠି ଦେଇଥାନ୍ତି ଟାକୁ ଘରକୁ ଆସିଲେ ଟିକେ ଦେଖିବେ ବୋଲି । କିନ୍ତୁ ଯେତେବେଳେ ମା'ଙ୍କ କଥା ମନେପଡ଼େ ସେତେବେଳେ ଟା'ର ମନକୁ ଆସେ, ବିଦାୟବେଳର ମା'ଙ୍କର ଶେଷ କେଇପଦ କଥା :

"ଆରେ, ତୋ ଦେହ ଖରାପ ହୋଇ କାବୁ ନହେଲା ଯାଏ ତୁ କ'ଣ ମୋ ପାଖକୁ ଆଉ ଆସିବୁ ?"

ଆଞ୍ଚଳିକ କମିଟିରେ ସେ ଟା'ର କମ୍‌ସୋମୋଲ୍ ଓ ପାର୍ଟିର ସଭ୍ୟପତ୍ର ଦାଖଲ

କରି, କାହାଠାରୁ ବିଦାୟ ନନେଇ ଗାଁ ଅଭିମୁଖେ ଗ୍ଲଲିଲ ସହର ଛାଡ଼ି । ଦି' ସପ୍ତାହ କାଳ ମା ତା'ର ଫୁଲିଲା ଗୋଡ଼କୁ ମାଲିସ୍ କଲେ ଓ ସେକ ଦେଲେ ।

ମାସକରେ ସେ ବାଡ଼ିଟାକୁ ଛାଡ଼ି ପୁଣି ଚ୍ଲଇବୁଲ କରିପାରିଲା ବୋଲି ଆନନ୍ଦରେ ଅଧୀର ହୋଇଉଠିଲା । ପୁଣି ଥରେ ଅନ୍ଧକାରକୁ ବିଦୀର୍ଣ୍ଣ କରି ଦେଖାଦେଲା ସୂର୍ଯ୍ୟାଲୋକର ଆଭା । ଅଚିରେ ସେ ଆଞ୍ଚଳିକ କେନ୍ଦ୍ରରେ ପହଞ୍ଚିଲା ଓ ତା'ର ତିନିଦିନ ପରେ ସାଂଗଠନିକ ବିଭାଗ ତାକୁ ଆଞ୍ଚଳିକ ସେନାବାହିନୀ କାର୍ଯ୍ୟାଳୟକୁ ରାଜନୈତିକ କର୍ମୀ ଭାବରେ ଗୋଟିଏ ମିଲିଟାରୀ ପ୍ରଶିକ୍ଷଣ ୟୁନିଟ୍‌କୁ ପଠାଇଦେଲେ ।

ଆଉ ଗୋଟିଏ ସପ୍ତାହ ପରେ ପାଭେଲ୍ ଗୋଟିଏ ଛୋଟିଆ ବରଫଘେରା ସହରରେ ଦ୍ୱିତୀୟ ବାଟାଲିୟନ୍‌ର ମିଲିଟାରୀ କମିସାର ଭାବରେ ପହଞ୍ଚିଲା । କମ୍‌ସୋମୋଲ୍‌ର ଆଞ୍ଚଳିକ ସମିତି ମଧ୍ୟ ତାକୁ କିଛି ଦାୟିତ୍ୱ ଦେଲେ, ଅଞ୍ଚଳର ବିକ୍ଷିପ୍ତ ହୋଇ ରହିଥିବା କମ୍‌ସୋମୋଲ୍ ସଦସ୍ୟମାନଙ୍କୁ ଏକତ୍ର କରି ଜିଲ୍ଲାସ୍ତରରେ ଏକ ଯୁବ ଲିଗ୍ ସଂଗଠନ ଗଠନ କରିବା ପାଇଁ । ଜୀବନ ଏକ ନୂତନ ରୂପ ପରିଗ୍ରହଣ କଲା ।

* * *

ବାହାରେ ଅସହ୍ୟ ଗରମ ପଡ଼ିଛି । କାର୍ଯ୍ୟକାରୀ ସମିତିର ସଭାପତିଙ୍କର ବଖରାର ଖୋଲା ଝରକାବାଟେ ଉଁକି ମାରୁଛି ଗୋଟାଏ ଚେରୀ ଗଛର ଶାଖା । ରାସ୍ତାର ଅପର ପାର୍ଶ୍ୱରେ ପୋଲାଣ୍ଡୀୟ ଗିର୍ଜାର ଗଥିକ୍ ଶୈଳୀର ଘଣ୍ଟାଘର ଉପରେ ସୁନେଲୀ କ୍ରୁଶଟି ସୂର୍ଯ୍ୟାଲୋକରେ ଚିକ୍‌ଚିକ୍ କରୁଛି । ଝରକା ବାହାରକୁ ଦିଶୁଥିବା ଅଗଣାରେ ଛୋଟ ଛୋଟ ସବୁଜ ବତକ ଛୁଆଗୁଡ଼ାକ ଚ୍ଲରିକଡ଼େ ଥିବା ଘାସ ରଙ୍ଗ ସହିତ ମିଶିଗଲା ଭଳି ହୋଇ ଖାଦ୍ୟ ଅନ୍ୱେଷଣରେ ଘୂରି ବୁଲୁଛନ୍ତି । ଜଗୁଆଳୀର ସଂପତ୍ତି ସେଗୁଡ଼ିକ ।

କାର୍ଯ୍ୟନିର୍ବାହିକା ସମିତିର ସଭାପତି ସଦ୍ୟ ଆସି ପହଞ୍ଚିଥିବା ଚିଠି ପଢ଼ୁଥାନ୍ତି । ମୁହଁରେ ତାଙ୍କର ଚିନ୍ତାର ଛାଇ ଖେଳିଗଲା ଓ ଅଯତ୍ନବର୍ଦ୍ଧିତ ଗହଳ କେଶରାଶି ଉପରେ ହାତ ବୁଲାଇ ଆଣିଲେ ସେ ।

ବେରେଜ୍‌ଦୋଭ୍ କାର୍ଯ୍ୟକାରୀ ସମିତିର ସଭାପତି ନିକୋଲାଇ ନିକୋଲାୟେଭିଚ୍ ଲିସିସିନ୍‌ଙ୍କୁ ଜମାରୁ ଚବିଶ ବର୍ଷ ବୟସ ବୋଲି ତାଙ୍କ ଅଫିସ୍‌ର କର୍ମଚ୍ଲରୀ ବା ସ୍ଥାନୀୟ ପାର୍ଟି ସଭ୍ୟମାନେ କେହି ଜାଣନ୍ତି ନାହିଁ । ବିରାଟ ଟାଣୁଆ ମଣିଷ ଓ ନିଜ କଥାରେ ଦୃଢ଼ । ତାଙ୍କ ଚେହେରାକୁ ଯେ କେହି ଦେଖିଲେ, ଅନ୍ୟୂନ ପଇଁତ୍ରିଶ ବର୍ଷ ବୋଲି କହିବ । ଶକ୍ତିଶାଳୀ ଦେହର ଗଢ଼ଣ ତାଙ୍କର । ମୋଟା କାନ୍ଧ ଉପରେ ବିରାଟ ମୁଣ୍ଡଟି ଦୃଢ଼ଭାବେ ଅଣ୍ଟା । ତୀକ୍ଷ୍ଣ ଧୂସର ଆଖି । ଟାଣୁଆ ଶକ୍ତ ମାଢ଼ି ତାଙ୍କର । ସେ ନାଳ ବ୍ରିଚେସ୍ ଓ ଧୂସର ଜାମା ପ୍ରାୟ ପିନ୍ଧନ୍ତି ଓ ଛାତିରେ ବାଁପଟେ ଝୁଲୁଥାଏ ଲାଲ ପତାକାର ସମ୍ମାନର ପଦକ ।

ତାଙ୍କ ପିତୃ ପିତାମହଙ୍କ ଭଳି ଲିସିହିନ୍ ମଧ୍ୟ ପିଟ୍ସବେର୍ଗ୍ଧାତୁ ଶ୍ରମିକ କାମ କରୁଥିଲେ । ଅକ୍ଟୋବର ବିପ୍ଳବର ଅବ୍ୟବହିତ ପୂର୍ବରୁ ସେ ତୁଲାଠାରେ ଥିବା ଅସ୍ତ୍ରଶସ୍ତ୍ର କାରଖାନାରେ ଏକ ଲେଦ୍ ଯନ୍ତ୍ରକୁ ଚଳାଉଥିଲେ ।

ସେହି ଶରତର ଏକ ରାତିରୁ, ଯେଉଁଦିନଠାରୁ ତୁଲାର ଏହି କମାଣ କାରିଗର ଗୋଟିଏ ବନ୍ଧୁକ କାନ୍ଧରେ ପକାଇ ଶ୍ରମିକଙ୍କର ଶାସନ ପାଇଁ ଯୁଦ୍ଧ କରିବାକୁ ବାହାରିଗଲେ, ସେହିଦିନରୁ ତାଙ୍କ ଜୀବନ ବହୁ ଘଟଣାର ଘୂର୍ଣ୍ଣିରେ ଆବର୍ତ୍ତିତ ହୋଇଆସିଛି । ବିପ୍ଳବ ଓ ପାର୍ଟି ଲିସିହିନ୍‌କୁ ଗୋଟିଏ କଠିଣ କାମରୁ ଆଉ ଏକ କଠିଣ କାମ ପାଇଁ ପଠାଇଛନ୍ତି ଓ ସେ ଗୌରବୋଜ୍ଜ୍ୱଳ ପଥ ଦେଖିଛି, ସାଧାରଣ ଲାଲ ବାହିନୀର ସୈନିକ କିପରି ଉପରକୁ ଉଠିଉଠି କମାଣ୍ଡର ଓ ଶେଷରେ କମିସାରରେ ପରିଣତ ହୋଇଛି ।

ଯୁଦ୍ଧର ନିଆଁ ଓ କମାଣର ଗର୍ଜ୍ଜନ ଏବେ ପୁରୁଣା ହୋଇଗଲଣି । ନିକୋଲାଇ ଲିସିହିନ୍ ଏବେ କାମ କରୁଛନ୍ତି ସୀମାନ୍ତର ଏକ ଜିଲାରେ । ଜୀବନ ଏକ ନୀରବ ସନ୍ତତ ଗତିରେ ଆଗେଇ ଚାଲିଛି ଏବଂ କାର୍ଯ୍ୟକାରୀ ସମିତିର ସଭାପତି ଅଧରାତିଯାଏ କାର୍ଯ୍ୟାଳୟରେ ବସି ଫସଲ ଅମଳର ରିପୋର୍ଟ ତନଖି କରୁଛନ୍ତି । ସଦ୍ୟ ଆସିଥିବା ରିପୋର୍ଟଟି ମୁହୂର୍ତ୍ତକ ପାଇଁ ଅନ୍ତତଃ ତାଙ୍କୁ ଅତୀତ କଥା ସ୍ମରଣ କରାଇଦେଲା । ଟେଲିଗ୍ରାମ୍‌ରେ ଆସିଥିବା ଏକ ବିପଦ ସଂକେତ ସେଇଟି :

“ସଂପୂର୍ଣ୍ଣ ଗୋପନୀୟ । ବେରେଜ୍‌ଦୋଭ୍ କାର୍ଯ୍ୟକାରୀ ସମିତିର ସଭାପତି ଲିସିହିନ୍‌କୁ। ଏକ ବିରାଟ ଦଳ ପଠାଇ ସୀମାନ୍ତ ଜିଲାମାନଙ୍କରେ ଭୟ ସୃଷ୍ଟି କରିବା ପାଇଁ ପୋଲାଣ୍ଡ ପକ୍ଷର ଆୟୋଜନ ସୀମାନ୍ତ ନିକଟରେ ଲକ୍ଷ୍ୟ କରାଯାଇଛି । ଏଥିପାଇଁ ଆନୁଷଙ୍ଗିକ କାର୍ଯ୍ୟାନୁଷ୍ଠାନ କର । ଅର୍ଥ ବିଭାଗର ଯାହା ମୂଲ୍ୟବାନ, ଏପରିକି ସଂଗୃହୀତ ଟିକସ୍ ପର୍ଯ୍ୟନ୍ତ କେନ୍ଦ୍ର ଅଞ୍ଚଳକୁ ପଠାଇବାକୁ ନିର୍ଦ୍ଦେଶ ଦିଅ ।”

କାର୍ଯ୍ୟକାରୀ ସମିତି ଘର ଭିତରକୁ ଯେଉଁମାନେ ସବୁ ପ୍ରବେଶକଲେ ସମସ୍ତଙ୍କୁ ଝରକାବାଟେ ଦେଖିପାରିଲେ ଲିସିହିନ୍ । ଉପରକୁ ଚାହିଁ ସେ ପାହାଚ ଉପରକୁ ଚଢ଼ୁଥିବା ପାଭେଲ୍ କୋର୍ଚ୍ଚାଗିନ୍‌କୁ ମଧ୍ୟ ଦେଖିଲେ । ମୁହୂର୍ତ୍ତକ ପରେ କବାଟ ଖଟଖଟ ହେଲା ।

“ବସ, ତମକୁ ମୋର କିଛି କହିବାର ଅଛି”, ପାଭେଲ୍ ସହିତ ହାତ ମିଳାଇ ସାରି କହିଲେ ଲିସିହିନ୍ ।

ପୂରା ଘଣ୍ଟାଏ ପର୍ଯ୍ୟନ୍ତ ଦୁହେଁ ଯାକ ସେଇ ଅଫିସ୍ ଘରେ ଏକାଠି ବସି କ’ଣ ଗୁପ୍ତ ମନ୍ତ୍ରଣା କଲେ ।

କୋର୍ଚ୍ଚାଗିନ ବାହାରିଲା ବେଳକୁ ମଧ୍ୟାହ୍ନ ହେଲାଣି । ବାହାରକୁ ଆସୁଛି ଲିସିହିନ୍‌ର ଝିଅ ଭଉଣୀ ଆନ୍ୟୁଟ୍‌କା । ତା’ ଆଡ଼କୁ ଦୌଡ଼ି ଆସିଲା ବଗିଚା ଭିତରୁ । ଆନ୍ୟୁଟ୍‌କା ନିଜ ବୟସ ତୁଳନାରେ ଗମ୍ଭୀର ପ୍ରକୃତିର ଓ କୋର୍ଚ୍ଚାଗିନ୍‌କୁ ଦେଖିଲେ ଫିକ୍‌କିନା ହସିଦିଏ । ମୁହଁ ଉପରକୁ ପଡ଼ି ଆସିଥିବା ଚୂର୍ଣ୍ଣ କୁନ୍ତଳକୁ ଉପରକୁ ଟେକିଦେଇ ପାଭେଲ୍‌କୁ ଲାଜରା ହସଟିଏ ହସି ସମ୍ଭାଷଣ ଜଣାଇ ସେ ପଚାରିଲା :

"କୋଲ୍ୟା କ'ଣ କାମ କରୁଛି ଏ ଯାଏଁ ? ମାରିୟା ମିଖାଇଲୋଭ୍‌ନା ରନ୍ଧାରନ୍ଧି ସାରି, କେତେବେଳୁ ତା' ପାଇଁ ଅପେକ୍ଷା କରି ବସିଛନ୍ତି ।"

"ନାଇଁ ନାଇଁ ସେ ଏକାଟିଆ ବସିଛି । ଯାଅ ତାକୁ ଡାକିଆଣ ।"

ତା' ପରଦିନ ପାହାନ୍ତା ପହରକୁ ହୃଷ୍ଟପୁଷ୍ଟ ଘୋଡ଼ା ଯୋଖ ହୋଇଥିବା ତିନୋଟି ଗାଡ଼ି କାର୍ଯ୍ୟନିର୍ବାହିକା ଅଫିସ୍ ଆଗରେ ପହଞ୍ଚିଲା । ଗାଡ଼ିଗୁଡ଼ିକ ସହିତ ଆସିଥିବା ଲୋକମାନେ ଅନୁଚ୍ଚ ସ୍ୱରରେ କ'ଣ କଥାବାର୍ତ୍ତା କଲେ ଓ ତା'ପରେ ଅର୍ଥ ବିଭାଗରୁ କେତୋଟି ଜଉମୁଦ ଦିଆ ଅଖା ବାହାରି ଗାଡ଼ିଗୁଡ଼ିକରେ ଲଦାହେଲା । କିଛି ସମୟ ପରେ ଘଡ଼ଘଡ଼ ଶବ୍ଦ କରି ଗାଡ଼ିଗୁଡ଼ିକ ରାସ୍ତାରେ ଗଡ଼ିବାକୁ ଲାଗିଲା । କୋର୍ଚ୍ଚାଗିନ୍‌ଙ୍କ ନେତୃତ୍ୱରେ ଗୋଟିଏ ଦଳ ଗାଡ଼ିଗୁଡ଼ିକୁ ଜଗି ଜଗି ଗଲେ । ଆଞ୍ଚଳିକ କେନ୍ଦ୍ର ପର୍ଯ୍ୟନ୍ତ ପହଞ୍ଚିବା ପାଇଁ ଚାଳିଶ କିଲୋମିଟର ରାସ୍ତାରୁ ପଚିଶ କିଲୋମିଟର ଜଙ୍ଗଲିଆ, ମାତ୍ର ନିର୍ବିଘ୍ନରେ ଆଞ୍ଚଳିକ ଅର୍ଥ ବିଭାଗରେ ସେଗୁଡ଼ିକ ଜମା ଦିଆହେଲା ।

ତା'ର କିଛି ଦିନ ପରେ ସୀମାନ୍ତଆଡ଼ୁ ଜଣେ ଅଶ୍ୱାରୋହୀ ଘୋଡ଼ା ଝପଟାଇ ବେରେଜ୍‌ଦୋଭ୍‌ରେ ପହଞ୍ଚିଲା । ସହରର ରାସ୍ତାମାନଙ୍କରେ ଆସିଲାବେଳେ ଶହ ଶହ ବିସ୍ମିତ ଆଖି ତାକୁ ଚାହିଁ ଦେଖୁଥାନ୍ତି ।

କାର୍ଯ୍ୟକାରୀ ସମିତି ଅଫିସ୍ ଆଗରେ ଅଶ୍ୱାରୋହୀ ଘୋଡ଼ା ପିଠିରୁ ଡେଇଁ ପଡ଼ିଲା ତଳକୁ ଓ ନିଜ ତରବାରି ଉପରେ ଭରାଦେଇ ଓହ୍ଲାଇ, ଓଜନଦାରିଆ ବୁଟ୍‌ର ଶବ୍ଦ କରି ପାହାଚ ଉପରେ ଚଢ଼ିବାକୁ ଲାଗିଲା । ଲିସିତ୍‌ସିନ୍ ଚିନ୍ତାକୁଳିତ ମନରେ ତା' ହାତରୁ ଚିଠି ପ୍ୟାକେଟ୍‌ଟି ନେଲେ । ରସିଦ୍ ଖାତାରେ ଦସ୍ତଖତ୍ କଲେ । କେଇ ମିନିଟ୍ ପରେ ସମ୍ବାଦବାହକ ଯେଉଁଦିଗରୁ ଆସିଥିଲା ସେହି ଦିଗକୁ ଘୋଡ଼ା ଝପଟାଇ ଫେରିଗଲା ।

କେବଳ ସଭାପତି ଜାଣନ୍ତି ସେ ସମ୍ବାଦ କ'ଣ । ମାତ୍ର ଏଭଳି ଖବର କେମିତି ହେଲେ ପ୍ରଚାରିତ ହୋଇଯାଏ । ବିଶେଷକରି ସ୍ଥାନୀୟ ଛୋଟକାଟର ଚୋରା ବେପାରରେ ଲିପ୍ତଥିବା ଛୋଟ ଛୋଟ ଦୋକାନଦାରମାନଙ୍କ ମଧ୍ୟରେ । ଏହି କାରବାର କରିବା ଫଳରେ ବିପଦ ଆସନ୍ନ ବୋଲି ଜାଣିବାର କେମିତି ଗୋଟାଏ ସହଜ ପ୍ରବୃତ୍ତି ଥାଏ ସେମାନଙ୍କର ।

ମିଲିଟାରୀ ଟ୍ରେନିଂ ବାଟାଲିୟନ୍‌ରୁ ହେଡ୍‌କ୍ୱାର୍ଟରସ୍ ପର୍ଯ୍ୟନ୍ତ ପଡ଼ିଥିବା ରାସ୍ତାରେ ଦୁଇଜଣ ଲୋକ ଚାଲିଥାନ୍ତି ଦ୍ରୁତପଦରେ । ସେଥିଭିତରୁ ଜଣେ ପାଭେଲ୍ କୋର୍ଚ୍ଚାଗିନ୍ ଓ ସିଏ ଯେ ବନ୍ଧୁକଟାଏ ସବୁବେଳେ ସାଙ୍ଗରେ ନେଇଥାଏ ଏକଥା ଦେଖଣାହାରୀଏ ଜାଣନ୍ତି । ମାତ୍ର ତା' ସହଚର ପାର୍ଟି କମିଟିର ସଂପାଦକ ତ୍ରୋଫିମୋଭ୍ ବି ଆଜି ଅଣ୍ଟାପଟିରେ ପିସ୍ତଲଟାଏ ଝୁଲାଇ ଯାଉଛି, ଏକଥା ସମସ୍ତଙ୍କୁ ଆଚମ୍ବିତ କଲା ।

ତା'ର କେଇ ମିନିଟ୍ ପରେ ହେଡ୍‌କ୍ୱାର୍ଟରସ୍ ଭିତରୁ କେତେ ଜଣ ଲୋକ ସଙ୍ଗିନ୍‌ଲଗା ବନ୍ଧୁକ ଧରି ବାହାରିଲେ ଓ ଦ୍ରୁତଗତିରେ ଛକ ଉପରେ ଥିବା ମିଲ୍ ଆଡ଼କୁ ଚାଲିଲେ । ବାକି ସ୍ଥାନୀୟ କମ୍ୟୁନିଷ୍ଟ ପାର୍ଟି ସଦସ୍ୟ ଓ କମ୍‌ସୋମୋଲ୍‌ର ସଦସ୍ୟମାନଙ୍କୁ

ପାର୍ଟି କମିଟି ଅଫିସ୍‌କୁ ଅସ୍ତ୍ରଶସ୍ତ୍ର ଯୋଗାଇ ଦିଆଗଲା । କାର୍ଯ୍ୟକାରୀ ସମିତିର ସଭାପତି ମୁଣ୍ଡରେ ଏକ କସାକ୍ ଟୋପି ପିନ୍ଧି ଓ କାନ୍ଧରେ ମାଉଜର ବନ୍ଧୁକ ଝୁଲାଇ ଘୋଡ଼ା ଝପଟାଇ ଆଗେଇଗଲେ । ନିଶ୍ଚିତ କିଛି ଗୋଟାଏ ଘଟିବାକୁ ଯାଉଛି । ଏଣୁ ସଙ୍ଗେ ସଙ୍ଗେ ପ୍ରଧାନ ରାଜପଥ ଓ ଗଳିମାନଙ୍କର ଦୋକାନଗୁଡ଼ିକ ଦ୍ୱାରମୁହଁରେ ପୁରୁଣାକାଳିଆ ତାଲାସବୁ ଝୁଲିଲା । ସହରର ପ୍ରଧାନ ଛକ ଓ ଗଳିସବୁ ମୁହୂର୍ତ୍ତକ ଭିତରେ ଜନଶୂନ୍ୟ ହୋଇଗଲା । ଝରକାଗୁଡ଼ିକର କିଳିଣୀ ପଡ଼ିଗଲା । ସହରର ରାସ୍ତା ଉପରେ କେବଳ କେତୋଟି ନିର୍ଭୀକ କୁକୁଡ଼ା ଓ ଘୁଷୁରି ଅଳିଆଗଦା ଖେଳାଇବାକୁ ଲାଗିଲେ ।

ଜଗୁଆଳୀମାନେ ବଗିଚ୍ଚ ଭିତରେ ଲୁଚିଛପି ରହିଲେ । ସେଠାରୁ ଆଗରେ ଥିବା ବିସ୍ତୃତ ଖୋଲାଜାଗା ଓ ଦୂରର ସଳଖ ରାସ୍ତାଟା ପୂରାପୂରି ଦେଖାଯାଉଥାଏ ।

ଲିସିହିନ୍ ଏକ ସଂକ୍ଷିପ୍ତ ସମ୍ବାଦ ପାଇଲେ :

"ଗତକାଲି ରାତିରେ ପୋଦ୍‌ଦୁବେସ୍କ ଅଞ୍ଚଳରେ ଶହେଜଣ ଲୋକଙ୍କର ଗୋଟିଏ ଅଶ୍ୱାରୋହୀ ଦଳ ଦୁଇଟି ହାଲୁକା ମେସିନ୍‌ଗନ୍ ସହିତ ସୋଭିଏତ୍ ଅଞ୍ଚଳ ଭିତରକୁ ସୀମାନ୍ତ ଆରପଟୁ ପଶିଆସିଛନ୍ତି, ସେଠାରେ ଯୁଦ୍ଧ କରି । ତମେ ତୁରନ୍ତ ସାବଧାନ ହୋଇ କାର୍ଯ୍ୟାନୁଷ୍ଠାନ କର । ସ୍ଲାବୁଟା ଜଙ୍ଗଲ ଭିତରୁ ତାଙ୍କର ପାଦଚିହ୍ନ ଆଉ ମିଳୁ ନାହିଁ । ଲାଲ କସାକ୍‌ଙ୍କର ଏକ ଫୌଜ ତାଙ୍କୁ ଅନୁସରଣ କରିବା ପାଇଁ ପଠାହୋଇଛନ୍ତି । ଏମାନେ ଦିନ ଭିତରେ ବେରେଜ୍‌ଦୋଭ୍ ଅଞ୍ଚଳ ଦେଇ ଅତିକ୍ରମ କରିବେ । ତାଙ୍କୁ ଯେପରି ଶତ୍ରୁ ବୋଲି ଭ୍ରମରେ ନପଡ଼ ।

—ଗାବ୍ରିଲେଭ୍, ସ୍ୱତନ୍ତ୍ର ସୀମାନ୍ତ ରକ୍ଷୀ ବାଟାଲିୟନ୍ କମାଣ୍ଡର ।"

ପ୍ରାୟ ଘଣ୍ଟାଏ ବିତିଛି କି ନାହିଁ ସହର ଆଡ଼କୁ ପଡ଼ିଥିବା ରାସ୍ତାରେ ଜଣେ ଅଶ୍ୱାରୋହୀ ଦେଖାଦେଲା । ପଛରେ ପ୍ରାୟ ଏକ କିଲୋମିଟର ଦୂରରେ ଆଉ ଦଳେ ଅଶ୍ୱାରୋହୀ ଅନୁସରଣ କରୁଛନ୍ତି । କୋର୍ଚ୍ଚାଗିନ୍‌ର ସନ୍ଦିଗ୍ଧ ଆଖି ସେମାନଙ୍କ ଗତିବିଧି ଲକ୍ଷ୍ୟ କରୁଥାଏ । ଜଣକିଆ ଅଶ୍ୱାରୋହୀଟି ସପ୍ତମ ଲାଲ କସାକ୍ ବାହିନୀର ଜଣେ ତରୁଣ ସୈନିକ । ଆଗୁଆ ବାହିନୀରେ ଯିବା ବିଷୟରେ ଅନଭିଜ୍ଞ ସେ । ଏଣୁ ଅତି ସାବଧାନତା ସହକାରେ ନିଜ ରାସ୍ତାରେ ଯାଉଥିଲେ ମଧ୍ୟ ରାସ୍ତା କଡ଼ ବଗିଚ୍ଚରେ ଲୁଚିଛପି ରହିଥିବା ଜଗୁଆଳୀମାନଙ୍କୁ ଲକ୍ଷ୍ୟ କରିପାରିଲା ନାହିଁ । ଜାଣିବା ପୂର୍ବରୁ ବଗିଚ୍ଚ ଭିତରୁ ବାହାରିଆସି ସଶସ୍ତ୍ର ଲୋକମାନେ ତାକୁ ଘେରିକଡ଼ୁ ଘେରିଗଲେ । ସେମାନଙ୍କ ଜାମାରେ କମ୍‌ସୋମୋଲ୍‌ର ସଙ୍କେତ ଦେଖି ଅଶ୍ୱାରୋହୀଟି ମୁହଁ ଶୁକୁଟାଇ ଟିକିଏ ହସିଦେଲା । ଅଳ୍ପକ୍ଷଣ ଆଲୋଚନା ପରେ ସେ କଦମ୍ ପକାଇ ଆସୁଥିବା ପଛରେ ତା'ର ଦଳଙ୍କ ନିକଟକୁ ଫେରିଗଲା । ଜଗୁଆଳୀମାନେ କସାକ୍ ଲାଲଫୌଜଟିକୁ ରାସ୍ତାରେ ଯିବାକୁ ଛାଡ଼ିଦେଇ ପୁଣି ନିଜ ନିଜର ଜଗିଲା ଜାଗାକୁ ଫେରିଆସିଲେ ।

ସୀମାନ୍ତ ଭିତରକୁ ପଶିଆସିଥିବା ଦଳର ଆକ୍ରମଣ ବ୍ୟର୍ଥ ହୋଇଛି ବୋଲି ସମ୍ବାଦ ଲିସିହିନ୍ ପାଇବା ପୂର୍ବରୁ କେତୋଟି ଉଦ୍‌ବେଗପୂର୍ଣ୍ଣ ଦିନ ଅତିବାହିତ ହୋଇଗଲାଣି ।

ଲାଲ ଅଶ୍ୱାରୋହୀ ବାହିନୀର ପଶ୍ଚାଦ୍‌ଧାବନ ଫଳରେ ଆକ୍ରମଣକାରୀମାନେ ଅନନ୍ୟୋପାୟ ହୋଇ ପୁଣି ସୀମାନ୍ତ ଭିତରକୁ ପଛଘୁଞ୍ଚା ଦେବାକୁ ବାଧ୍ୟ ହେଲେ ।

ଜିଲାରେ ସୋଭିଏତ୍ ଜୀବନ ଗଢ଼ିତୋଳିବା ପାଇଁ ଅଳ୍ପସଂଖ୍ୟକ, ମାତ୍ର ଉତ୍ସାହୀ ଜଣ ବଲ୍‌ଶେଭିକ୍ ଉତ୍ସାହୀ ହୋଇ ଲାଗି ପଡ଼ିଲେ । ଏଠାରେ ନୂଆ ପ୍ରଶାସନ ଅଞ୍ଚଳ ପ୍ରତିଷ୍ଠିତ ହୋଇଛି । ଏଣୁ ସବୁ କାମ ମୂଳରୁ ଆରମ୍ଭ କରିବା ପାଇଁ ପଡ଼ିବ । ତା' ଛଡ଼ା ସୀମାନ୍ତ ନିକଟବର୍ତ୍ତୀ ହୋଇଥିବାରୁ ସଦାସର୍ବଦା ସଜାଗ ରହିବାକୁ ମଧ୍ୟ ପଡ଼ିବ ।

ଲିସିହିନ୍ , ତ୍ରୋଫିମୋଭ୍ , କୋର୍ଶ୍‌ଗିନ୍ ଓ ଅଳ୍ପସଂଖ୍ୟକ ସକ୍ରିୟ ନିଷ୍ଠାପର କର୍ମୀଙ୍କର ଦଳଟି ଲାଗିପଡ଼ିଥାନ୍ତି ସକାଳୁ ସଞ୍ଜ ପର୍ଯ୍ୟନ୍ତ ସୋଭିଏତ୍‌ମାନଙ୍କର ପୁନଃନିର୍ବାଚନ ଲାଗି, ଡକାଏତମାନଙ୍କ ସହିତ ଲଢ଼େଇ କରିବାରେ, ସାଂସ୍କୃତିକ କାର୍ଯ୍ୟକ୍ରମ ସବୁ କରିବାରେ, କଳାବଜାରୀ ନିରୋଧ କରିବାରେ ଓ ସର୍ବୋପରି ପାର୍ଟି ଓ କମ୍‌ସୋମୋଲ୍ ସଂଗଠିତ କରି ଦେଶରକ୍ଷା ବିଭାଗକୁ ସୁଦୃଢ଼ କରିବାରେ ।

ଘୋଡ଼ାପିଠିରୁ ଅଫିସ୍ ଟେବୁଲକୁ, ଅଫିସ୍‌ରୁ ମଇଦାନକୁ, ଯେଉଁଠି ସାଧାରଣ ଲୋକଙ୍କ ଭିତରୁ ବାହାରିଥିବା ସେନାବାହିନୀର ତରୁଣ ଶିକ୍ଷାର୍ଥୀମାନଙ୍କର ଧୈର୍ଯ୍ୟର ସହିତ ଡ୍ରିଲ୍ କରନ୍ତି, ସେଠାରୁ କ୍ଲବ୍‌କୁ, ତା'ପରେ ସ୍କୁଲକୁ ଓ ଦିନକୁ ଦୁଇ ତିନୋଟି କମିଟି ସଭାକୁ ଯିବା, ଦ୍ୱିତୀୟ ବାଟାଲିୟନ୍‌ର କମିସାରଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟ ଥିଲା । ଅନେକ ଦିନ ସାରାରାତି ତାଙ୍କର ଘୋଡ଼ାପିଠିରେ ହିଁ କଟିଯାଏ । କମରରେ ମାଉଜର ବନ୍ଧୁକ । ରାତିର ନିର୍ଜନତା ଭଙ୍ଗ କରି ପ୍ରହରୀର ଡାକ ଶୁଣାଯାଏ, "କିଏ ସେ ଆସୁଛି, ଠିଆ ହୁଅ !" ସୀମାନ୍ତର ଆରପଟରୁ କଳାବଜାରକୁ ଜିନିଷ ବହିଆଣୁଥିବା ଗାଡ଼ିର ଦ୍ରୁତ ଘର୍ଘର ଶବ୍ଦ କଦବା କେମିତି ବିଜନତା ଭଙ୍ଗ କରେ ।

ବେରେଜ୍‌ଦୋଭ୍ କମ୍‌ସୋମୋଲ୍‌ର ଜିଲା କମିଟିରେ ଅଛନ୍ତି କୋର୍ଶ୍‌ଗିନ୍ , ନାରୀ ବିଭାଗର ଦାୟିତ୍ୱରେ ଥିବା ଭଲ୍‌ଗା ଅଞ୍ଚଳର ଝିଅ ଲିଦା ପୋଲେଭିଖ୍ ଓ କିଛି ଦିନ ଆଗରୁ ଜିମ୍‌ନାସିଅମ୍‌ର ଛାତ୍ର ଥିବା ଝେନ୍‌କା ରାଜ୍‌ଭାଲିଖିନ୍ ବୋଲି ଡେଙ୍ଗା ହୋଇ ସୁନ୍ଦର ଚେହେରାର ତରୁଣଟିଏ । ରାଜ୍‌ଭାଲିଖିନ୍‌ର ରୋମାଞ୍ଚକର କାହାଣୀ ପ୍ରତି ଭୟଙ୍କର ଦୁର୍ବଳତା ଓ ଶେରଲକ୍ ହୋଲ୍‌ମସ୍ ଏବଂ ଲୁଇ ବୁସେନାର୍ଡଙ୍କ ଉପରେ ତା'ର ଦକ୍ଷତା ଅଛି । ଆଗରୁ ପାର୍ଟିର ଜିଲା କମିଟିର ଅଫିସ୍ ପରିଗ୍ରାଳକ ଥିଲା ସେ ଏବଂ କମ୍‌ସୋମୋଲ୍‌ରେ ମାତ୍ର ଚାରିମାସ ହେଲା ଯୋଗ ଦେଇଥିଲେ ମଧ୍ୟ 'ପୁରୁଖା ବଲ୍‌ଶେଭିକ୍'ଙ୍କ ଭଳି କଥା କୁହେ । ରାଜନୈତିକ ଶିକ୍ଷାର ଦାୟିତ୍ୱ ନେବା ପାଇଁ ବେରେଜ୍‌ଦୋଭ୍‌ରେ ଜଣେ ଲୋକ ଦରକାର ହେଉଥିଲେ ଏବଂ ଆଉ କାହାକୁ ନପାଇ, ବହୁ ଦ୍ୱିଧାର ସହିତ ଆଞ୍ଚଳିକ କମିଟି ରାଜ୍‌ଭାଲିଖିନ୍‌କୁ ବାଛିଛନ୍ତି ।

* * *

ସୂର୍ଯ୍ୟ ମଥାନ ଉପରେ । ଖରାତାତିରେ ସବୁ ପ୍ରାଣୀ ଛାଇଟିକେ ଖୋଜୁଛନ୍ତି ମୁଣ୍ଡ ଗୁଞ୍ଜିବାକୁ । ଏପରିକି କୁକୁରଗୁଡ଼ାକ ମଧ୍ୟ ଘୁସୁରି ଘୁସୁରି ଯାଇ ଛାଇତଳେ ନେପଟେଇ

ପଶିଯାଇଥାନ୍ତି, ଧକଉଥାନ୍ତି ପଡ଼ି । କୂଅ ପାଖରେ କାଦୁଅ ପଚପଚ କରି ମାଟି ଚାଡ଼ୁଥିବା ଘୁଷୁରିଟାଏ କେବଳ ସାରା ଗାଁର ଜୀବନର ଚିହ୍ନ ଥିଲା ।

କୋର୍ଗିନ୍ ନିଜ ଘୋଡ଼ା ଅଟକାଇଲେ ଓ ଆଣ୍ଠୁରେ ଭୀଷଣ ଯନ୍ତ୍ରଣା ହେଉଥିବା ଯୋଗୁଁ ଦାନ୍ତ କାମୁଡ଼ି, ପାଆଦାନିରେ ପାଦ ଦେଇ ଚଢ଼ିଲେ । ସ୍କୁଲଘର ଦୁଆରମୁହଁରେ ହାତରେ ଖରାଧାସରୁ ମୁହଁକୁ ଢାଙ୍କି ଛିଡ଼ା ହୋଇଥିଲେ ଶିକ୍ଷୟିତ୍ରୀ ଜଣକ ।

"ପୁଣି ଦେଖା ହେବ କମ୍ରେଡ୍ ମିଲିଟାରୀ କମିସାର", କହି ହସିଲେ ଶିକ୍ଷୟିତ୍ରୀ ଜଣକ ।

ଘୋଡ଼ାଟା ଅଧୈର୍ଯ୍ୟ ହୋଇ ଖୁରା ବାଡ଼େଇଲା ଓ ଲଗାମ ଓଟାରିଲା ।

"ବିଦାୟ କମ୍ରେଡ୍ ରାକିତିନା ! ତା'ହେଲେ ଏକଥା ଠିକ୍ ହେଲା, କାଲି ତମେ ପ୍ରଥମ ପାଠପଢ଼ା ଆରମ୍ଭ କରିବ ।"

ହୁଗୁଳା ହୋଇ ଘୋଡ଼ାଟା ଦ୍ରୁତଗତିରେ କଦମ୍ ପକାଇଲା ଆଗକୁ । ହଠାତ୍, ଭୟଙ୍କର ବିକଳ ଚିତ୍କାର ପାରେଲ୍ କାନରେ ପଡ଼ିଲା, ଘର ପୋଡ଼ିଗଲେ ସ୍ତ୍ରୀଲୋକମାନେ ଯେମିତି ପାଟି କରନ୍ତି । ଘୋଡ଼ାକୁ ପଛକୁ ବୁଲାଇ ମିଲିଟାରୀ କମିସାର ଦେଖିଲେ, ଗୋଟିଏ କୃଷକ ରମଣୀ ଅଣନିଃଶ୍ୱାସୀ ହୋଇ ଗାଁ ଭିତରକୁ ଧାଉଁଛି । ରାସ୍ତା ଉପରକୁ ଦୌଡ଼ି ଆସି ରାକିତିନା ତାକୁ ଅଟକାଇଲା । ଆଖପାଖର ଘରମାନଙ୍କରୁ ଲୋକେ ଅନାଉଛନ୍ତି । ମାତ୍ର ସେମାନେ ଅଧିକାଂଶ ବୁଢ଼ାବୁଢ଼ୀ, କାରଣ ପାରିଲାର ଲୋକେ ସମସ୍ତେ ଖେତକୁ ଯାଇଛନ୍ତି କାମ କରିବା ପାଇଁ ।

"ଧାଇଁପଡ଼ ହୋ ... କିଏ କୋଉଠି ଅଛ ... ସେମାନେ ସେଠି ହଣାମରା ହୋଇଗଲେ, ନିଜ ଭିତରେ !"

କୋର୍ଗିନ୍ ପହଞ୍ଚିଲାବେଳକୁ ଲୋକେ ସ୍ତ୍ରୀଲୋକଟି ଘରିପଟେ ଘେରିଗଲେଣି ଓ ତା'ର ଧଳା ବ୍ଲାଉଜ୍‌ଟାକୁ ଟାଣିଓଟାରି ଉଦ୍‌ବେଗରେ ନାନାପ୍ରକାର ପ୍ରଶ୍ନ କରିଲାଗିଥାନ୍ତି । କିନ୍ତୁ ତା'ର ଅସଂଲଗ୍ନ କାନ୍ଦଣା ଭିତରୁ ଠିକ୍ କଥାଟା କ'ଣ ଠଉରେଇ ପାରୁ ନଥାନ୍ତି ।

"ଖୁନ୍ ... ଖୁନ୍ ... ସେମାନେ ତାଙ୍କୁ ସବୁ ଖୁନ୍ କରିଦେଲେ ।" ଏତିକି ମାତ୍ର କହୁଥାଏ ସେ ।

ବୁଢ଼ା ଜଣେ, ଥୁରୁଥୁରିଆ ଦାଢ଼ି ଉଡ଼ୁଛି ତା'ର, ନିଜ ହାତବୁଣା ଲୁଗାରେ ତିଆରି ପ୍ୟାଣ୍ଟ ଟେକିଟେକି ଦୌଡ଼ିଆସିଲା ।

"ଏଃ, ପାଟି ବନ୍ଦକର", ସ୍ତ୍ରୀଲୋକଟିକୁ ବଡ଼ପାଟିରେ କହିଲା ସେ, "କିଏ କାହାକୁ ଖୁନ୍ କରୁଛି ? କ'ଣ ସବୁ କହୁଛୁ ? ପାଟି ବନ୍ଦ କରି ଭଲ କରି କହବେ ।"

"ଆମ ଲୋକ ଆଉ ପୋଦ୍‌ଦୁବେସ୍କର ଲୋକମାନେ । ସେମାନେ ପୁଣି ଥରେ ଜମି ସୀମା ପାଇଁ ଲଢ଼େଇ ଲଗେଇଛନ୍ତି । ଆମ ଲୋକଗୁଡ଼ାଙ୍କୁ କାଟି ପକାଉଛନ୍ତି !"

ଏତିକିରେ ସମସ୍ତେ ବୁଝିଗଲେ । ସ୍ତ୍ରୀଲୋକମାନେ କାନ୍ଦଣା ଆରମ୍ଭ କରିଦେଲେ । ବୁଢ଼ାମାନେ ଉତ୍ତ୍ୟକ୍ତ ହୋଇ ଗର୍ଜନ କରିବାକୁ ଲାଗିଲେ । ସମ୍ବାଦଟା ସଙ୍ଗେ ସଙ୍ଗେ

ଚତୁର୍ଦ୍ଦିଗରେ ବ୍ୟାପିଗଲା 'ପୋଦ୍‌ଦୁବେଷର ଲୋକମାନେ ଆମ ଗାଁ ଲୋକଙ୍କୁ ଦାଆରେ କାଟି ପକାଉଛନ୍ତି । ପୁଣି ଥରେ ସେଇ ସରହଦ୍ ପାଇଁ କଳି ଲାଗିଛି !' କେବଳ ଅସୁସ୍ଥ ଲୋକମାନେ ଘରେ ରହିଗଲେ । ବାକି ସମସ୍ତେ ଗାଁ ଦାଣ୍ଡକୁ ବାହାରିପଡ଼ିଲେ ହାତରେ ଠେଙ୍ଗା, ବାଡ଼ି, କୁରାଢ଼ୀ, କଟୁରୀ ଧରି ଓ କଣ୍ଟାବାଡ଼ ଡେଇଁ ଖେତ ଆଡ଼କୁ ଧାଇଁଲେ, ଯେଉଁ ଦୁଇ ଗାଁର ଅଧିବାସୀମାନେ ସୀମା ପାଇଁ ପରସ୍ପର ସହିତ ବାର୍ଷିକ ରକ୍ତାକ୍ତ ଦ୍ୱନ୍ଦ୍ୱ ଯୁଦ୍ଧ ଲଗାଇଛନ୍ତି ଧାନଖେତରେ ।

କୋଶ୍‌ଗିନ୍ ନିଜ ଘୋଡ଼ା ଝପଟାଇଲା । ଘୋଡ଼ାଟା ଦୌଡ଼ୁଥିବା ଉନ୍ମତ୍ତ ଗ୍ରାମବାସୀଙ୍କୁ ତୁରନ୍ତ ଅତିକ୍ରମ କରିଗଲା ଓ ଉତ୍ତେଜିତ ହୋଇ କାନ ପଛକୁ କରି ଜୋର୍‌ରେ କଦମ୍ ପକାଇ ନିଜର ଗତି ବଢ଼ାଇଲା । ଛୋଟ ମୁଣ୍ଡିଆଟି ଉପରେ ଗୋଟାଏ ପବନକଳ ଡେଣା ମେଲାଇ ରହିଛି, ସତେ ଯେମିତି ବାଟ ଓଗାଳିବ ବୋଲି । ଡାହାଣ ପଟରେ ନଦୀବନ୍ଧ ତଳକୁ ନୀଚ ତୃଣଭୂଇଁ । ବାଁ ପଟକୁ ଲମ୍ବିଯାଇଛି ଦିଗନ୍ତ ବିସ୍ତୃତ ବାଜରା ଖେତ । ପବନରେ ପାଚିଲା ଶସ୍ୟଗୁଡ଼ାକର ଅଗ ଲହଡ଼ି ଭାଙ୍ଗୁଛି । ରାସ୍ତାକଡ଼କୁ ଉଡ଼ିଆସୁଛି ପପି ଫୁଲର ଲାଲ ଛିଟାସବୁ । ମାତ୍ର ଦୂରରେ ଯେଉଁଠି ନଈର ରୂପାଧାର ସୂର୍ଯ୍ୟ କିରଣରେ ଚିକ୍‌ଚିକ୍ କରୁଛି, ସେଇଠାରୁ ଭାସିଆସୁଛି ଚିତ୍କାର ଧ୍ୱନି ।

ଉନ୍ମତ୍ତ ଗତିରେ ଆରୋହୀକୁ ଘୋଡ଼ାଟି ଆଗେଇନେଲା ଖେତ ଆଡ଼କୁ । "ଯଦି ତା' ଗୋଡ଼ ଖସିଯାଏ, ଆମ ଦୁହିଁଙ୍କର ଇତି ହୋଇଯିବ ଏଇଠି", ପାଭେଲ୍ ଭାବୁଥିଲା । କିନ୍ତୁ ଏବେ ଆଉ ଅଟକିବା ସମ୍ଭବ ନୁହେଁ । ଘୋଡ଼ା ପିଠିରେ ନଇଁପଡ଼ି, କାନରେ ଶୁଣୁଥିଲା ପବନର ଝଙ୍କାର ।

ଝଡ଼ଭଳି ଦୁରନ୍ତ ବେଗରେ ଖେତ ଭିତରେ ରକ୍ତାକ୍ତ ଲଢ଼େଇ ଲାଗିଥିବା ଜାଗାରେ ପହଞ୍ଚିଲା ସେ । ସେତେବେଳକୁ କେଇଜଣ ରକ୍ତାକ୍ତ ହୋଇ ତଳେ ଲୋଟିଲେଣି ।

ଘୋଡ଼ାଟା ଯାଇ ଗୋଟାଏ ଦାଢ଼ିଆ ଲୋକ ପାଖରେ ପହଞ୍ଚିଲା । ଲୋକଟି ହାତରେ ଦାଆ ବେଣ୍ଟଟାଏ ଧରି ଗୋଟାଏ ଟୋକା ପଛରେ ଧାଉଁଥିଲା । ଟୋକାଟାର ମୁହଁଟା ଚିରିଯାଇ ରକ୍ତ ଝରୁଥିଲା । ପାଖରେ ଖରାରେ ସିଝିଯାଇଥିବା ଅସୁର ଭଳି ଲୋକଟାଏ ନିଜର ଚଉଡ଼ା ଚଉଡ଼ା ବୁଟ୍ ଜୋତାରେ ଜଣକ ଉପରେ ଗୋଇଠା ପରେ ଗୋଇଠା କଷିଦେଇ ଯାଉଥାଏ, ତା'ର କୋଡ଼ ସନ୍ଧିକୁ ।

ବାଡ଼ିଆପିଟା ଲଗାଇଥିବା ଲୋକଗୁଡ଼ାଙ୍କ ଭିତରକୁ ଦ୍ରୁତ ଗତିରେ ପଶିଯାଇ ସେମାନଙ୍କୁ ଇତଃସ୍ତତଃ କରିଦେଲା କୋଶ୍‌ଗିନ୍ । ସେମାନେ ହଠାତ୍ ଆକ୍ରମଣର ଧକା ସମ୍ଭାଳି ଉଠିଲା ପୂର୍ବରୁ ଗୋଟାକ ପରେ ଗୋଟାକୁ, ତା'ପରେ ଆଉ ଜଣକୁ, ଏମିତି କରି ଘଉଡ଼େଇ ନେଇଗଲା ସେ । କାରଣ ସେ ବୁଝିଥିଲା, ଏ ପାଶବିକ ମଣିଷଗୁଡ଼ାଙ୍କୁ କେବଳ ଭୟ ଦେଖାଇ ଘଉଡ଼େଇ ଦିଆଯାଇପାରିବ । କ୍ରୋଧରେ ସେ ଚିତ୍କାର କରି ଉଠିଲା :

"ଯାଅ ! ପଳାଅ ଏଠୁ ! ବଜ୍ଜାତ୍‌ଗୁଡ଼ାକ ... ନହେଲେ ଶେଷ ଲୋକଟି ପର୍ଯ୍ୟନ୍ତ ଗୁଳିରେ ଉଡ଼ାଇଦେବି ମୁଁ ! ଖୁଣୀ, ଡକାଏତ ଦଳ !"

ନିଜର ମାଉଜରର ବନ୍ଧୁକଟି କାଢ଼ି ଲୋକଟାର ମୁଣ୍ଡ ଉପରକୁ ଗୁଳି ମାରିଲା । ଘୋଡ଼ାଟା ଚରକି ଭଳି ଘୂରିଗଲା ଓ ପୁଣିଥରେ ଗୁଳି ଫୁଟିଲା । କେଇ ଜଣ ଲଢ଼ୁଆଙ୍କ ଦାଆ ଫୋପାଡ଼ିଦେଇ ଦୌଡ଼ିବାକୁ ଆରମ୍ଭ କଲେ । ଖେତଟାର ଏମୁଣ୍ଡରୁ ସେମୁଣ୍ଡ ଯାଏ ଦୌଡ଼ି, ଗୁଳି ଫୁଟାଇ, ଶେଷକୁ ପରିସ୍ଥିତିକୁ ସମ୍ଭାଳି ଆଣିଲେ ମିଲିଟାରୀ କମିସାର । ଚାଷୀମାନେ ପ୍ରାଣ ବିକଳରେ ଯିଏ ଯେଉଁଆଡ଼େ ପାରିଲେ ଦୌଡ଼ିବାକୁ ଲାଗିଲେ । ସେମାନେ ଦୌଡ଼ୁଥିଲେ, ପ୍ରଥମତଃ ନିଜକୁ ଏ ରକ୍ତାକ୍ତ ଲଢ଼େଇ କରିଥିବା ଅଭିଯୋଗରୁ ମୁକ୍ତ କରିବାକୁ ଓ ଦ୍ୱିତୀୟରେ ଉତ୍ତେଜିତ ହୋଇ ଗୁଳି ଫୁଟାଉଥିବା ଏ ଘୋଡ଼ସବାର ହାତରୁ ନିଜକୁ ରକ୍ଷା କରିବା ପାଇଁ ।

ସୌଭାଗ୍ୟବଶତଃ ଜଣେ କେହି ମରି ନଥିଲେ ଓ ଆହତମାନେ ଭଲ ହୋଇଗଲେ ଶୁଶ୍ରୂଷା ପରେ । ପରେ ପରେ ପୋଦ୍‌ଦୁବେଦ୍ନ ଜିଲ୍ଲା କୋର୍ଟର ଏକ ଅଧିବେଶନ ବସିଲା ଶୁଣାଣି ପାଇଁ, ମାତ୍ର ଏ ଘଟଣାର ନେତାସବୁ କିଏ, ସେକଥା ବାହାର କରିବା ପାଇଁ ବିଚାରକମାନଙ୍କର ସମସ୍ତ ପ୍ରଚେଷ୍ଟା ବ୍ୟର୍ଥ ହେଲା । ଅସୀମ ଧୈର୍ଯ୍ୟ ଓ ପ୍ରବର୍ତ୍ତନା ସହିତ ବିଚାରକ ତାଙ୍କ ଆଗରେ ଥିବା ଶୁଖୁଟାମୁହାଁ ଚାଷୀମାନଙ୍କୁ ବୁଝାଇଲେ, ଏ ଘଟଣା କେତେ ହୀନ ଓ ପାଶବିକ, ଏବଂ ଜଣାଇଲେ ଯେ, ଭବିଷ୍ୟତରେ ଏଭଳି କୌଣସି ଘଟଣା ବରଦାସ୍ତ କରାଯିବ ନାହିଁ ।

"ସବୁ ଦୋଷ ହେଉଛି ସେ ଜମିରେ ଥିବା ହିଡ଼ଗୁଡ଼ାକର, କମ୍ରେଡ୍ ବିଚାରକ । ସେଗୁଡ଼ାକ କେମିତି ଗୋଳେଇ ମୋଳେଇ ହୋଇଯାଉଛି । ଆଉ ପ୍ରତିବର୍ଷ ସେଇଥି ପାଇଁ ଆମ ଭିତରେ ଗଣ୍ଡଗୋଳ ଲାଗିଯାଉଛି", ସେମାନେ କହିଲେ ।

ତା'ଛଡ଼ା କେତେକ ଚାଷୀଙ୍କୁ ମଧ୍ୟ ଏ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଉତ୍ତର ଦେବାକୁ ପଡ଼ିଲା ।

ତା'ର ସପ୍ତାହେ ପରେ ପ୍ରଶ୍ନ ଉଠୁଥିବା ସେ ଶୂନ୍ୟ ଖେତକୁ ଆସି ବିବାଦୀୟ ଜମିଗୁଡ଼ିକୁ ମାପଚୁପ କରିବାକୁ ଆରମ୍ଭ କଲେ ।

"ଗତ ତିରିଶ ବର୍ଷ ଧରି ମୁଁ ଏଇ ମାପଚୁପ କରୁଛି ଆଉ ଦେଖୁଛି ସବୁଠାରେ ଏଇ ଭାଗ ଭାଗ କରୁଥିବା ହିଡ଼ ହିଁ ସବୁ ଗଣ୍ଡଗୋଳର ମୂଳ କାରଣ", ନିଜ ଫିତା ଗୁଡ଼ାଉ ଗୁଡ଼ାଉ କମିଶନ୍ ସହିତ ଆସିଥିବା ବୁଢ଼ା ଅମିନ କୋର୍ଗିନ୍‌କୁ କହିଲେ । ଅତ୍ୟଧିକ ଗରମ ଓ କ୍ଳାନ୍ତି ଯୋଗୁଁ ବିଚରା ବୁଢ଼ା ଦେହରୁ ଗମଗମ ହୋଇ ଝାଳ ବାହାରୁଥିଲା । "ଏ ଗୋଚରଟା ଯେମିତି ଭାଗ ହୋଇଛି, ତମେ ଆଖିରେ ଦେଖିଲେ ବି ବିଶ୍ୱାସ କରିବ ନାହିଁ । ମଦୁଆଟାଏ ବି ଯା'ଠାରୁ ସଳଖ ରେଖା ଟାଣିପାରିବ, ଦେଖୁନ ! ଖେତଗୁଡ଼ାକ ତ ତା'ଠାରୁ ହୀନ—ତିନି ପାହୁଣ୍ଡ ଛାଡ଼ି ବିଲ ଖଣ୍ଡେ ପୁଣି ଖଣ୍ଡେ ବିଲ ଆଉ ଖଣ୍ଡକ ଭିତରକୁ ପଶିଯାଇଛି । ଯାକୁ ସବୁ ଅଲଗା କରିବାକୁ ହେଲେ ମଣିଷ ପାଗଳା ହୋଇଯିବ ! ପ୍ରତିବର୍ଷ ପୁଣି ଏଗୁଡ଼ାକ ଭାଗ ଭାଗ ହୋଇଯାଏ । ଗୋଟାଏ ବାପର ଯେତେଟା ପୁଅ, ସେଇ ଅନୁସାରେ ଭାଗ ଭାଗ ହୋଇ ଆଉରି ଛୋଟିଆ ଖଣ୍ଡ ଖଣ୍ଡ ହୋଇଯାଉଛି । ବିଶ୍ୱାସ କର, ଆଉ କୋଡ଼ିଏ ବର୍ଷ ଗଲେ ଆଉ ଜମି ନଥିବ ଚାଷ କରିବା ପାଇଁ—ସବୁ ହିଡ଼

ହୋଇଯାଇଥିବ । ଏମିତିରେ ତ ଶତକଡ଼ା ଦଶଭାଗ ଜମି ଯାଉଛି ହିଡ଼ରେ ।"

କୋର୍ଶ୍‌ଗିନ୍ ହସିଲା ।

"କମ୍ରେଡ୍ , ଆଉ କୋଡ଼ିଏ ବର୍ଷ ପରେ ଆମେ ଗୋଟିଏ ବି ହିଡ଼ ବାକି ରଖି ନଥିବୁ ।"

ସନ୍ଦିଗ୍ଧ ଦୃଷ୍ଟିରେ ତାକୁ ଅନାଇଲେ ବୃଦ୍ଧ ।

"ମାନେ ତମେ ସାମ୍ୟବାଦୀ ସମାଜ କଥା କହୁଛ ? ସେକଥା କ'ଣ ସତରେ କେବେ ହବ ? ଭବିଷ୍ୟତ କଥା ସିଏ !"

"ତମେ ବୁଦାନୋଭ୍‌କାର କୋଠାଖମାର କଥା ଶୁଣିନ ?"

"ହଁ , ମୁଁ ପରା ବୁଦାନୋଭ୍‌କାରେ ଥିଲି ! ହେଲେ ସେଇଟା ଗୋଟାଏ ବ୍ୟତିକ୍ରମ, କମ୍ରେଡ୍ କୋର୍ଶ୍‌ଗିନ୍ ।"

ଖଣ୍ଡିଖଣ୍ଡିକିଆ ଖେତକୁ ମାପିଲଗିଲେ କମିଶନ୍‌ର ଲୋକମାନେ । ଦୁଇଜଣ ଯୁବକ ଖୁଣ୍ଟି ପୋତିବାକୁ ଲଗିଲେ ଏବଂ ଦୁଇପାଖରେ ଚାଷୀମାନେ ଛିଡ଼ାହୋଇ ଘାସ ଭିତରେ ଅଧା ପୋତିହୋଇ ଯାଇଥିବା ଖୁଣ୍ଟିଗୁଡ଼ିକୁ ଅନାଇ ଦେଖୁଥିଲେ ପୁରୁଣା ମାପର ଗାର ସହିତ ନୂଆ ଗାର ଯାଉଛି କି ନାହିଁ !

* * *

ବୃଦ୍ଧ ଘୋଡ଼ାଟାକୁ ଚାବୁକରେ ପିଟିପିଟି ଚାଳକ ବକର ବକର ହୋଇ ଯାତ୍ରୀମାନଙ୍କୁ କହୁଥିଲ :

"ମୋତେ ଆଚମ୍ବିତ ଲଗୁଛି ଏ କମ୍‌ସୋମୋଲ୍ ଟୋକାଗୁଡ଼ାକ କୋଉଠୁ ଆସିଲେ ? ଆଗରୁ ତ କାହିଁ ଶୁଣା ନଥିଲ ଏକଥା । ଏଇ ଯୋଉ ମାଷ୍ଟ୍ରାଣୀ ମାଇକିନିଆଟା , ସେଇ ଏସବୁ ଆରମ୍ଭ କରିଛି ଏଠି । ତା ନାମ ରାକିତିନା , ତମେମାନେ ହୁଏତ ତାକୁ ଚିହ୍ନିଥିବ । ଟୋକୀ ଖଣ୍ଡକ ଭାରୀ ଜଣେ , ଯେତେସବୁ ଗଣ୍ଡଗୋଳର ମୂଳ ସେଇ । ଗାଁ ଯାକର ସ୍ତ୍ରୀଲୋକଙ୍କୁ ଏକାଠି କରି ଯେତେସବୁ ବାଜେକଥା ତାଙ୍କ ମୁଣ୍ଡରେ ପୂରାଉଛି ସେ ଟୋକୀ ଆଉ ସେଇଥିରୁ ଏସବୁ ଆରମ୍ଭ ହେଉଛି । ଘଟଣା ଏତେ ଦୂର ଗଲଣି ଯେ , ଲୋକେ ଆଉ ସେମାନଙ୍କ ସ୍ତ୍ରୀମାନଙ୍କ ଦେହରେ ହାତ ଦେଇ ପାରୁ ନାହାନ୍ତି । ଆଗ ଦିନମାନଙ୍କରେ ବୁଢ଼ୀ ଟିକିଏ ତୁଡ଼ିକରି କହିଲେ , ଯାଉଣୁ ଆସୁଣୁ ଦିଇଟା ଥୋଇଦେଲ ମନଇଛା । ସିଏ ସେତିକିରେ ଦବିଯାଉଥିଲ ଆଉ ଏବେ ବୁଢ଼ୀ ଏମିତି ଶୁଣାଉଛି ଯେ , ତମେ ଦିହରେ ଟିପ ଛୁଆଁଇବାକୁ ଡରିଯିବ । ଜନତା ଦରବାର , ଏମିତି ସବୁ କେତେ କଥା କହି ଯୋଉ ଧମକାଣ ଦେଉଛନ୍ତି । ଆଉ ଅଳ୍ପ ବୟସୀ ସ୍ତ୍ରୀମାନଙ୍କ କଥା ଛାଡ଼ । ସେମାନେ ତ କଥା କଥାକେ ଛାଡ଼ ପତ୍ର , ଆଉ ଯେତେସବୁ ଆଇନର କଥା ଶୁଣାଉଛନ୍ତି । ଦେଖୁନ ମୋ ଏହି ଗାଙ୍କାକୁ ... ସବୁଠାରୁ ଶାନ୍ତଶିଷ୍ଟ ଟୋକୀଟା , ଯାଇ ଏବେ କ'ଣ ପ୍ରତିନିଧି ହୋଇଛି । ବୋଧହୁଏ ସମସ୍ତଙ୍କଠାରୁ ବଡ଼ କଥା ସେଇଟା କି କ'ଣ ! ଗାଁଟା ଯାକର ସ୍ତ୍ରୀଲୋକ ତା'ରି ପାଖକୁ ଆସୁଛନ୍ତି ପରା । ମୁଁ ତ ଭାବିଥିଲି ଯାଇ ଚାବୁକ ଲଗେଇବି

ତାକୁ, ଏସବୁ ଶୁଣିସାରି ଆଉ ଶେଷକୁ ଭାବିଛି କିଏ ଯାଏ, ଯାଉ ଜାହାନ୍ନାମାକୁ ... ବକ୍‌ବକ୍ କରୁଥାଉ ଘରକାମ କଲାବେଳେ କିନ୍ତୁ ବେଶ୍ ସ୍ୱୀଟାଏ । ସେଥିରେ ଟିକିଏ ଅଡ଼ୁଆ ନାହିଁ !"

କୋଚ୍‌ମ୍ୟାନ୍ ତା'ର ହାତବୁଣା ଜାମା ଖୋଲିଦେଇ ବାଳବାଳୁଆ ଛାତି ମେଲାଇଦେଲା ଓ ଛାଟେ ପିଟିଲା ଘୋଡ଼ାଟାକୁ । ଗାଡ଼ିରେ ବସିଥିଲେ ରାଜ୍‌ଭାଲିଖିନ୍ ଓ ଲିଦା । ସେମାନଙ୍କର ପୋଦ୍‌ଦୁବେସ୍ୱରେ କାମ ଥିଲା । ଲିଦା ସ୍ଥିର କରିଥିଲା ନାରୀ ପ୍ରତିନିଧିମାନଙ୍କର ଏକ ସମ୍ମିଳନୀ ଡାକିବା ପାଇଁ ଓ ରାଜ୍‌ଭାଲିଖିନ୍‌କୁ ପଠାଯାଇଥିଲା ସ୍ଥାନୀୟ ସେଲ୍‌କୁ ସଂଗଠିତ କରିବାରେ ସାହାଯ୍ୟ କରିବା ପାଇଁ ।

"ତମେ ତା'ହେଲେ କମ୍‌ସୋମୋଲ୍‌ର ଲୋକଙ୍କୁ ଭଲ ପାଅ ନାହିଁ, ନାଁ ?" ଥଟ୍ଟା କରି ପଚାରିଲା ଲିଦା ।

ନିଜର ସଂକ୍ଷିପ୍ତ ଦାଢ଼ିକୁ ଟିକେ ଟେକିଦେଇ ସେ ଉତ୍ତର ଦେବା ଆରମ୍ଭ :

"ଓଃ ... ସେମାନଙ୍କୁ ପସନ୍ଦ ନା ପସନ୍ଦ କରିବାର କଥା ଉଠୁ ନାହିଁ । ମୁଁ ବୁଝେ ଯେ, ପିଲାଏ ତାଙ୍କର ମନଖୁସି ପାଇଁ ଖେଳୁଛନ୍ତି ବୁଲୁଛନ୍ତି, ନାଟକ କି ସେମିତି ସବୁ କ'ଣ କରନ୍ତି । ମୋତେ ବି ଭଲ ହେଉଥିଲେ ହସ କଥା ଭଲ ଲାଗେ । ପ୍ରଥମରୁ ତ ଆମେ ଭାବୁଥିଲୁ ଯେ, ଏଥିରେ ଆମ ଟୋକାଏ ଏକାବେଳେକେ ନାଶ ଗଲେ, କିନ୍ତୁ ତା' ନୁହେଁ । ସମସ୍ତେ କହୁଛନ୍ତି ସେମାନେ ମଦ ପିଇବା, ଦଙ୍ଗା ହାଙ୍ଗାମା କରିବା, କାମ ନ କରିବା ପ୍ରତି ଭାରୀ କଡ଼ା ନଜର ଦିଅନ୍ତି । ସେମାନେ ସବୁ ପଢ଼ାପଢ଼ି କରୁଛନ୍ତି । କିନ୍ତୁ ଭଗବାନ ମାନୁ ନାହାନ୍ତି ଆଉ ଏ ଗିର୍ଜାଗୁଡ଼ାକ ନେଇ କୁଦ୍ କରି ପକାଉଛନ୍ତି ହେ ! ଏକଥା ଭଲ ନୁହେଁ । ଏମିତି ହେଲାକ୍ଷଣି ବୁଢ଼ାଏ ତାଙ୍କୁ ସବୁ ବିରୋଧ କରୁଛନ୍ତି । ମାତ୍ର ମୋଟାମୋଟି ସେମାନେ ଖରାପ ନୁହନ୍ତି । ମୋତେ ତ ପଚାରିଲେ ମୁଁ କହିବି, ସେମାନେ ଗୋଟାଏ ବଡ଼ ଭୁଲ କରୁଛନ୍ତି, ଏ ଗାଁର ଅତି ଗରିବ ବାରବୁଲା ଅକାମିକା ଟୋକାଗୁଡ଼ାକୁ, ଯେଉଁମାନେ ମଜୁରି ଲାଗନ୍ତି, ନିଜର ଖେତ ଖମାର ଚଳେଇ ପାରନ୍ତି, ସେମାନଙ୍କୁ ସାଥିରେ ନେଉଛନ୍ତି ଖାଲି, କିନ୍ତୁ ଧନୀ ଚାଷୀଙ୍କ ପିଲାମାନଙ୍କୁ ଛାଡ଼ି ଦେଉଛନ୍ତି ।"

ଗାଡ଼ିଟା ପାହାଡ଼ ତଳକୁ ଗଡ଼ିଯାଇ ସ୍କୁଲଘର ଆଗରେ ଛିଡ଼ା ହେଲା ।

* * *

ଜଗୁଆଳୀ ସ୍ୱୀଲେକଟା ନୂଆ ଅତିଥିମାନଙ୍କୁ ସେ ଘରେ ରହିବାର ବ୍ୟବସ୍ଥା କରିଦେଇ ନିଜେ କୁଟା ରହୁଥିବା ଗୁଳିଆକୁ ଗଲା ଶୋଇବାକୁ । ଲିଦା ଓ ରାଜ୍‌ଭାଲିଖିନ୍ ଡେରିରେ ସରିଥିବା ଗୋଟାଏ ସଭାରୁ ବର୍ତ୍ତମାନ ଫେରୁଛନ୍ତି । କୁଡ଼ିଆଘର ଭିତରଟା ଅନ୍ଧାର । ଲିଦା ତୁରନ୍ତ ଜାମାପଟା ଖୋଲି ବିଛଣାକୁ ଯାଇ ପ୍ରାୟ ସଙ୍ଗେ ସଙ୍ଗେ ଶୋଇ ପଡ଼ିଲା ନିଦରେ । ସେ ଅକସ୍ମାତ୍ ଉଠିପଡ଼ିଲା, ତା ଫୁଲୁଳା ଦେହ ଉପରେ ରାଜ୍‌ଭାଲିଖିନ୍‌ର

ହାତର ସ୍ଥୂଳ ସର୍ଶ ଅନୁଭବ କରି । ରାଜ୍‌ରାଲିଖିନ୍‌ର ଉଦ୍ଦେଶ୍ୟ ତା' ନିକଟରେ ସ୍ପଷ୍ଟ ହୋଇଗଲା ।

"କ'ଣ ଦରକାର ତମର ?"

"ସୁସ୍ ... ଲିଦା ପାଟି କର ନାହିଁ ସେମିତି । ଏମିତି ଏକାଟିଆ ଶୋଇବାକୁ ମୋତେ ଖରାପ ଲାଗୁଛି । ତମକୁ ଏମିତି ଘୁଙ୍ଗୁଡ଼ିମାରି ଶୋଇବା ଅପେକ୍ଷା ଆଉ କିଛି କରିବାକୁ ଇଛା ହେଉ ନାହିଁ ?"

"ମୋତେ ସେମିତି ଅଣ୍ଡାଳ ନାହିଁ । ଆଉ ତମେ ମୋ ବିଛଣାରୁ ଉଠିଯାଅ !" ତୀବ୍ର ସ୍ୱରରେ କହିଲା ଲିଦା ତାକୁ ଠେଲି ଦେଇ । ରାଜ୍‌ରାଲିଖିନ୍‌ର ତେଲିଆ ହସ ତାକୁ ସବୁବେଳେ ବିରକ୍ତ ଲାଗେ, କିଛି ଅପମାନସୂଚକ ଓ ଥଟ୍ଟା କରି କହିବାକୁ ଇଛା ହେଉଥିଲା ଲିଦାର । କିନ୍ତୁ ନିଦରେ ଆଖି ବୁଜି ହୋଇଗଲା ।

"ହେଃ ... ଆସ ! ତମେ କ'ଣ ମଠରେ ବଢ଼ିଛ ନାଁ କ'ଣ ? ସତେ ଯେମିତି କିଛି ଜାଣିନି ? ବୋକା ଠଉରେଇଛ ମୋତେ ? ତମେ ତ ବେଶ୍ ପ୍ରଗତିଶୀଳା ଝିଅ । ମୋ ପାଖକୁ ଆସି ମୋ ଇଛା ପୂରଣ କରି ଯେତେ ଇଛା ସେତେ ଶୁଅ !"

ଲିଦା ସବୁ କଥା ବୁଝିପାରିଛି ବୋଲି ନିଶ୍ଚିତ ହୋଇ, ସେ ପୁଣି ଆସି ତା' ବିଛଣା ଧାରରେ ବସି ତା କାନ୍ଧ ଉପରେ ହାତ ଥୋଇଲା ତାକୁ ଧରିବା ଭଙ୍ଗୀରେ ।

"ମଲୁନି ତମେ ?" ଲିଦାର ନିଦ ଏଥର ପୂରାପୂରି ଭାଙ୍ଗିଯାଇଥିଲା, "କାଲି ସକାଳୁ କୋର୍ଗିନ୍‌କୁ ସବୁ କହିବି ମୁଁ ।"

ତା' ହାତ ଧରି, ବଶ କରିବା ଭଂଗୀରେ ଫୁସଫୁସ କରି ରାଜ୍‌ରାଲିଖିନ୍ ବିରକ୍ତ ହୋଇ କହିଲା :

"ତମ କୋର୍ଗିନ୍‌କୁ ଖାତିର କରେ ନା ମୁଁ । ଆସିବ ଯଦି ଆସ, ନହେଲେ ବଲାତ୍କାର କରି ... ।"

କିଛି ସମୟ ଧକମଧକ୍‌କା ଲାଗିଲା ଓ ଦିଇଟା ଜୋର୍ ଚଟକଣାର ଶବ୍ଦ ଶୁଭିଲା । ରାଜ୍‌ରାଲିଖିନ୍ ଆଣ୍ଠେଇ ପଡ଼ିଲା ତଳେ । ଲିଦା ନିଜକୁ କବାଟ ପାଖକୁ ଘୋଷାଡ଼ିନେଇ ବାହାର ଅଗଣାକୁ ଦୌଡ଼ିଆସିଲା । ବିରକ୍ତ ଓ କ୍ରୁଦ୍ଧ ହୋଇ ବାହାରେ ଜହ୍ନ ଆଲୁଅରେ ଛିଡ଼ା ହେଲା ସେ ।

"ଭିତରକୁ ଯାଅ, ନିର୍ବୋଧ କୋଉଠିକାର", ଉତ୍ତ୍ୟକ୍ତ ହୋଇ ରାଜ୍‌ରାଲିଖିନ୍ କହିଲା ତାକୁ ।

ନିଜ ବିଛଣା ବାହାରକୁ ଗଛଛାଇକୁ ଉଠାଇଆଣିଲା ସେ ଓ ବାକି ରାତିତକ ସେଇଠି ବିତାଇଦେଲା । ଲିଦା ଭିତରୁ କିଳିଣୀ ଦେଇ, ବିଛଣାରେ ମୋଡ଼ିମାଡ଼ି ହୋଇ ପୁଣି ଶୋଇପଡ଼ିଲା ।

ସକାଳୁ ସେମାନେ ଘରକୁ ବାହାରିଲେ । ରାଜ୍‌ରାଲିଖିନ୍ ମୁହଁକୁ ହାଣ୍ଡିଭଳି କରି ବୁଢ଼ା କଚୁଆନ ପାଖରେ ବସି ଗୋଟାକ ପରେ ଗୋଟାଏ ସିଗାରେଟ୍ ଟାଣି ଚାଲିଥାଏ ।

"ଏ ଛୁଚିକିଆ ରୋଗୀ ଟୋକୀ ନିଶ୍ଚେ କୋର୍ଗିନ୍‌କୁ କହିଦେବ ସବୁ !" ମନେ ମନେ ଭାବୁଥାଏ ସେ । "କିଏ ଜାଣିଥିଲା ସେ ଏମିତି ହବ ବୋଲି ? ଦେଖିବାକୁ ତ ସିମିଚି କିଛି ନୁହେଁ , କିନ୍ତୁ ଦେଖାଇ ହୁଏ , ସେ ଯେମିତି ଭାରି ସୁନ୍ଦରୀ । ତା ଅପେକ୍ଷା ତା' ସାଙ୍ଗରେ ମିଳାମିଶା ହୋଇଯିବା ଭଲ । ନହେଲେ ଅସୁବିଧା ହୋଇଯାଇପାରେ । ପୁଣି କୋର୍ଗିନ୍ ବି ମୋ ଉପରେ ନଜର ରଖିଛି ।"

ଲିଦା ପାଖକୁ ଲାଗିଆସିଲା ସେ । ନିଜେ ଲଜ୍ଜିତ ବୋଲି ଛଳନା କଲା ଓ ନୀଚ ଭଳି ଅଭିନୟ କଲା । କେଇପଦ କ୍ଷମା ପ୍ରାର୍ଥନା ବାଣୀ ଶୁଣାଇଗଲା ଲିଦାକୁ ।

ସେତିକିରେ କାମ ହୋଇଗଲା । ଗାଁ ମୁଣ୍ଡରେ ପହଞ୍ଚିଲାବେଳକୁ ଲିଦା ତା ଆଗରେ ପ୍ରତିଜ୍ଞା କରିସାରିଥାଏ ଗତ ରାତିର ଘଟଣା ଆଉ କାହା ଆଗରେ ନ କହିବା ପାଇଁ ।

* * *

ସୀମାନ୍ତରେ ଗାଁମାନଙ୍କରେ ଗୋଟାଏ ପରେ ଗୋଟାଏ କମ୍‌ସୋମୋଲ୍ ସେଲ୍ ସଂଗଠନ ଗଢ଼ିଉଠୁଥାଏ । କମ୍ୟୁନିଷ୍ଟ ଆନ୍ଦୋଳନର ଏ ନବାଙ୍କୁରଗୁଡ଼ିକୁ ଜିଲା କମିଟିର ସଭ୍ୟମାନେ ସଯତ୍ନରେ ବର୍ଦ୍ଧିତ କରିବାରେ ଲାଗିଥାଆନ୍ତି । କୋର୍ଗିନ୍ ଓ ଲିଦା ପୋଲେଭିଖ୍ ବିଭିନ୍ନ ଅଞ୍ଚଳରେ ଅନେକ ସମୟ ବିତାଉଥାଆନ୍ତି , ସ୍ଥାନୀୟ କମ୍‌ସୋମୋଲ୍ ସଦସ୍ୟମାନଙ୍କ ସହିତ କାମ କରିବାରେ ।

ଗାଁ ଗହଳ ଭିତରକୁ ଯିବା ପାଇଁ ରାଜ୍‌ଭାଲିଖିନ୍ ପସନ୍ଦ କରେ ନାହିଁ । କୃଷକ ତରୁଣମାନଙ୍କର ବିଶ୍ବାସଭାଜନ ହେବ କିପରି ତାକୁ ଜଣା ନଥାଏ । କେବଳ ସବୁ ଗଣ୍ଡଗୋଳିଆ କଥା କରିବାରେ ପାରଂଗମ ସେ । ବିପରୀତ ପକ୍ଷରେ ଲିଦା ଓ ପାଭେଲ୍‌ଙ୍କ ପକ୍ଷରେ ଏହି କୃଷକ ତରୁଣ ତରୁଣୀଙ୍କ ସହିତ ବନ୍ଧୁତା କରିବାରେ କୌଣସି ଅସୁବିଧା ନଥିଲା । ଝିଅମାନେ ଲିଦାକୁ ସାଙ୍ଗେ ସାଙ୍ଗେ ଗ୍ରହଣ କରିନେଇ ନିଜ ଭିତରର ଜଣେ ବୋଲି ବିଗ୍ରରନ୍ତି ଓ ଲିଦା ସେମାନଙ୍କର କମ୍‌ସୋମୋଲ୍ ପ୍ରତି ଆଗ୍ରହ ସୃଷ୍ଟି କରିବାରେ ଧୀରେ ଧୀରେ ଲାଗିଯାଏ । ଆଉ ଜିଲାର ପ୍ରତ୍ୟେକ ତରୁଣ କୋର୍ଗିନ୍‌କୁ ଜାଣିଥାନ୍ତି । ସେନା ବାହିନୀରେ ଚାକିରୀ କରିବା ପାଇଁ ପ୍ରସ୍ତୁତ ହେଉଥିବା ହଜାରେ ଛଅଶହ ଜଣ ତରୁଣ ତା' ବାଟାଲିୟନ୍‌ରେ ଟ୍ରେନିଂ ପାଆନ୍ତି । ପ୍ରଚାର ପାଇଁ ତା' ଆକର୍ଡିଆନ୍ ଏ ଗାଁରେ ଯେପରି ସହାୟକ ହେଲା , ଆଗରୁ ସେପରି କେବେ ହୋଇ ନଥିଲା । ବାଦ୍ୟଯନ୍ତଟି ଗ୍ରାମ୍ୟ ତରୁଣମାନଙ୍କ ଭିତରେ କୋର୍ଗିନ୍‌କୁ ଅସମ୍ଭବ ଭାବରେ ଲୋକପ୍ରିୟ କଲା । ତରୁଣମାନେ ସଞ୍ଜବେଳେ ଗାଁ ଦାଣ୍ଡରେ ଏକତ୍ର ହୁଅନ୍ତି ମଉଜମଜଲିସ କରିବା ପାଇଁ ଓ ଅନେକ ତରୁଣଙ୍କ ପାଇଁ ଏହିଠାରୁ କୋର୍ଗିନ୍‌ର ବାଜା ଶୁଣିଶୁଣି କମ୍‌ସୋମୋଲ୍‌କୁ ଯିବା ପାଇଁ ପଥ ପ୍ରସ୍ତୁତ ହୁଏ । ତା'ର ମନୋମୁଗ୍ଧକର ସ୍ୱର ବେଳେବେଳେ ଉଦାର , ବେଳେବେଳେ କରୁଣ , ମଧୁର , କେତେବେଳେ ପୁଣି ଅସୀମ ଉତ୍ସାହର ଉଚ୍ଛ୍ୱାସରେ ଭରିଉଠେ , ଠିକ୍ ୟୁକ୍ରେନୀୟ ସ୍ୱରର ଲହରୀରେ ତାଳ ମିଳାଇ । ସେମାନେ ଶୁଣନ୍ତି ଆକର୍ଡିଆନ୍‌କୁ ଓ ଶୁଣନ୍ତି

ବଜାଉଥିବା ତରୁଣଟିକୁ । ଦିନେ ଯିଏ ଥିଲା ରେଳବାଇ କାରଖାନାର ଶ୍ରମିକ, ଆଜି ମିଲିଟାରୀ କମିସାର ଓ କମ୍‌ସୋମୋଲ୍‌ର ସଂପାଦକ । ତରୁଣ କମିସାର ତାକୁ ଯାହା କହିବାକୁ ଚାହେଁ, ଆକର୍ଡିଆନ୍‌ର ମଧୁର ମୂର୍ଚ୍ଛନା ଯେମିତି ହଠାତ୍ ତାହା ଗାଇଉଠେ । ପରେ ନୂଆ ନୂଆ ସଙ୍ଗୀତମାନ ଗାଁ ସାରା ଖେଳିଯାଏ ଓ କୁଟୀରମାନଙ୍କରେ ବାଇବେଲ, ଅନ୍ୟାନ୍ୟ ଉପାସନା ପୁସ୍ତିକା ସହିତ ନୂଆ ନୂଆ ବହି ଦେଖାଯାଏ ।

ଚୋରାବେପାରୀମାନେ ଏବେ କେବଳ ସୀମାନ୍ତରକ୍ଷୀମାନଙ୍କୁ ସାମନା କରୁ ନଥିଲେ, ତାଙ୍କୁ ବାଧା ଦେବାକୁ ଥିଲେ କମ୍‌ସୋମୋଲ୍‌ର ସଭ୍ୟମାନେ – ସୋଭିଏତ୍ ସରକାରଙ୍କର ଅତି ଘନିଷ୍ଠ ବନ୍ଧୁ ଓ ନିଷ୍ଠାପର ସହକର୍ମୀ । ବେଳେବେଳେ ସୀମାନ୍ତ ସହରମାନଙ୍କର କମ୍‌ସୋମୋଲ୍ ସଦସ୍ୟମାନେ ଅଧିକ ଉତ୍ସାହ ଦେଖାଇ ଶତ୍ରୁପକ୍ଷଙ୍କର ପଶ୍ଚାଦ୍‌ଧାବନ କରନ୍ତି । ସେତେବେଳେ କୋର୍ଚ୍ଚାଗିନ୍‌କୁ ଆସିବାକୁ ପଡ଼ୁଥିଲା ତା'ର ତରୁଣ କମ୍ରେଡ୍‌ମାନଙ୍କୁ ସାହାଯ୍ୟ କରିବାକୁ । ପୋଦ୍‌ଦୁବେସ୍ସର ସଂଗଠନର ସଂପାଦକ ଖୋରୋଭୋଦ୍‌କୋ ଗ୍ରୀଶୁତ୍‌କା – ନାଲିଆଖି ଟୋକାଟିର ଓ ବେଶ୍ ବଦ୍‌ରାଗୀ ଧର୍ମବିରୋଧୀ ଆନ୍ଦୋଳନରେ ଭାରି ଜୋର୍‌ରେ ଆଗଭର ଓ ଉପରେ ପଡ଼ି ଯୁକ୍ତିତର୍କ କରେ ସେ । ଦିନେ ସେ ଘରୋଇ ସୂତ୍ରରୁ ସମ୍ବାଦ ପାଇଲା ଯେ, ସେଦିନ ରାତିରେ ମିଲ୍ ପାଖକୁ ଚୋରାଜିନିଷ ଚାଲାଣ ହୋଇ ଆସିବ । କମ୍‌ସୋମୋଲ୍‌ର ସଭ୍ୟମାନଙ୍କୁ ଏକଜୁଟ କରି, ଗୋଟାଏ ଟ୍ରେନିଂ ରାଇଫଲ ଓ ଦୁଇଟା ସଙ୍ଗିନ୍ ଧରି ସେମାନେ ଅଧରାତିରେ ନୀରବରେ ମିଲ୍ ପାଖରେ ଛକି ରହିଲେ ଓ ଅପେକ୍ଷା କଲେ ମାଲ ସରବରାହ ସମୟକୁ । ସୀମାନ୍ତର କେନ୍ଦ୍ର ମଧ୍ୟ ଏ ସମ୍ବାଦ ପାଇ ନିଜ ତରଫରୁ ଦଳଙ୍କୁ ପଠାଇଥିଲେ ଚୋରାକାରବାରୀମାନଙ୍କୁ ଧରିବା ପାଇଁ । ଅନ୍ଧାରରେ ଦୁଇ ଦଳଙ୍କ ଭିତରେ ସଂଘର୍ଷ ହୋଇଗଲା ଓ ସୀମାନ୍ତରକ୍ଷୀମାନେ ସାବଧାନ ନ ହୋଇଥିଲେ ତରୁଣ ଦଳଟି ଭିତରୁ ଅନେକ କ୍ଷୟକ୍ଷତି ଘଟିଥାନ୍ତା । ତରୁଣମାନଙ୍କୁ ନିରସ୍ତ୍ର କରି ଚାରି କିଲୋମିଟର ଦୂର ଏକ ଗାଁକୁ ନେଇ ବନ୍ଦ କରି ରଖାଗଲା ।

ସେତେବେଳକୁ କୋର୍ଚ୍ଚାଗିନ୍ ଗାଭ୍ରିଲୋଭ୍ ପାଖକୁ ଯାଇଥାଏ । ବାଟାଲିୟନ୍ କମାଣ୍ଡର ତାକୁ ଏ ଖବର ଦେବାମାତ୍ରେ ତା' ଆରଦିନ ସକାଳୁ ପାରେଇ ତା' ଘୋଡ଼ାରେ ଚଢ଼ି ପିଲାଗୁଡ଼ାଙ୍କୁ ଉଦ୍ଧାର କରିବା ପାଇଁ ବାହାରିଲା ।

ସୀମାନ୍ତ ପ୍ରହରୀଟି ତାକୁ ସବୁକଥା ହସିହସି କହିଲା :

"ମୁଁ ଯାହା କହୁଛି, ସେଇଆ କରନ୍ତୁ କମ୍ରେଡ୍ କୋର୍ଚ୍ଚାଗିନ୍, ଏମାନେ ସମସ୍ତେ ଭାରୀ ବଢ଼ିଆ ପିଲା । ସେମାନଙ୍କୁ ଅସୁବିଧାରେ ପକାଇବା ନାହିଁ ଆମେ । ଆପଣ ବରଂ ସେମାନଙ୍କୁ ଟିକିଏ ଧମକଚମକ ଦିଅନ୍ତୁ, ଯେମିତି ସେମାନେ ଭବିଷ୍ୟତରେ ଏମିତି ଆମ କାମ କରିଦେବା ପାଇଁ ବାହାରି ଆସିବେ ନାହିଁ ।"

କବାଟ ଫିଟାଇଦେବା ମାତ୍ରେ ଏଗାର ଜଣ ଯୁବକ ଦୁଃଖପୂର୍ଣ୍ଣଭାବରେ ଉଠି ଧୀରେ ଧୀରେ ଛିଡ଼ା ହେଲେ ।

"ସେମାନଙ୍କୁ ଦେଖନ୍ତୁ, ଯାଇ ପହଞ୍ଚି ସେଠି, ମିଛରେ ସବୁ ଗଣ୍ଡଗୋଳ କରିଦେଲେ ।

ମୁଁ କ'ଣ କରିବି, ସେମାନଙ୍କୁ ଏବେ ଆଞ୍ଚଳିକ ପ୍ରଧାନ କାର୍ଯ୍ୟାଳୟକୁ ପଠାଇଦେବାକୁ ପଡ଼ିବ ମୋତେ ।" ଛଳନା କରି କହିଲା ପ୍ରହରୀ ଜଣକ ।

ତା'ପରେ ଗ୍ରୀଶୁଟ୍କା କହିଲା ଉତ୍ତେଜିତ ସ୍ୱରରେ, "କିନ୍ତୁ ଆମେ କି ଦୋଷ କରିଛୁ କମ୍ରେଡ୍ ସାଖାରୋଭ୍ ? ଅନେକ ଦିନରୁ କୁଲକ୍‌ଟି ଉପରେ ଆମେ ଆଖି ରଖିଛୁ । ଆମେ କେବଳ ସୋଭିଏତ୍ କର୍ତ୍ତୃପକ୍ଷଙ୍କୁ ସାହାଯ୍ୟ କରିବାକୁ ଚାହୁଁଥିଲୁ ଆଉ ସେଇଥିରେ ତମେ ଆମକୁ ଡକାଏତଙ୍କ ଭଳିଆ ଆଣି ଗିରଫ କରି ପକାଇ ରଖିଛ ?"

ଶେଷ କଥାଗୁଡ଼ାକରେ ତା'ର କ୍ଷୋଭ ମିଶି ରହିଥିଲା ।

ବହୁ କଷ୍ଟରେ ମିଥ୍ୟା ଗାମ୍ଭୀର୍ଯ୍ୟ ବଜାୟ ରଖି, ସାଖାରୋଭ୍ ଓ କୋର୍ଗିନ୍ ପରସ୍ପର ସହିତ ମନ୍ତ୍ରଣା କଲେ ଯେ, ଏମାନଙ୍କୁ ଯଥେଷ୍ଟ ହେଲାଣି ।

"ଠିକ୍ ଅଛି, ଆପଣ ଯଦି ସେମାନଙ୍କ ପାଇଁ ମୁଚୁଲିକା ଦେବେ ଯେ, ସେମାନେ ପ୍ରତିଜ୍ଞା କରୁଛନ୍ତି ଆଉ କେବେ ସୀମାନ୍ତ ଅଞ୍ଚଳକୁ ଆସି ଏମିତି ବୁଲାବୁଲି କରିବେ ନାହିଁ, ତେବେ ମୁଁ ଏମାନଙ୍କୁ ଛାଡ଼ିଦେବି ।" ସାଖାରୋଭ୍ ପାଭେଲ୍‌କୁ କହିଲା, "ପିଲାଏ ଆମକୁ ଅନେକ ସାହାଯ୍ୟ କରିବେ ଭବିଷ୍ୟତରେ ଅନ୍ୟଭାବେ ।"

"ଠିକ୍ ଅଛି, ମୁଁ ତାଙ୍କ ପାଇଁ ଲେଖିଦେଉଛି ଆଉ ଆଶା କରୁଛି, ମୋ ସମ୍ମାନ ରକ୍ଷା କରି ଏମାନେ ଏକାମ ଆଉ କେବେ କରିବେ ନାହିଁ ।"

ତରୁଣ ଦଳଟି ଗୀତ ଗାଇଗାଇ ପୋଦ୍‌ଦୁବେସ୍‌କୁ ଫେରିଗଲେ । ଘଟଣାଟା ଛପିଗଲା ଆଉ ତା'ପରେ ପରେ ମିଲ୍ ମାଲିକ ମଧ୍ୟ ଧରାପଡ଼ିଲା ଏବଂ ଏଥରକ ଆଇନ ବଳରେ ।

* * *

ମଇଦାନ୍-ଭିଲା ଜଙ୍ଗଲ ଭିତରେ ଧନୀ ଜର୍ମାନ୍ କୃଷକମାନଙ୍କର ଗୋଟିଏ ବାସସ୍ଥଳୀ ଥିଲା । ସେମାନେ ସେଠାରେ ରହନ୍ତି । କୁଲକ୍‌ମାନଙ୍କର କୃଷି-ଖମାର ପରସ୍ପରଠାରୁ ଅଧ କିଲୋମିଟର ଲେଖାଁ ଛାଡ଼ି ଛାଡ଼ି ରହିଥାଏ ଏବଂ ଏଗୁଡ଼ିକ ସବୁ ଛୋଟ ଛୋଟ ଦୁର୍ଗ ଭଳି ସୁଦୃଢ଼ କରି ଘେରାହୋଇ ରହିଥାଏ । ସେହି ମଇଦାନ୍-ଭିଲାରୁ ଆନ୍ତନ୍ୟୁକ୍ ଓ ତା' ଡକାଏତ ଦଳ ବାହାରି ରାହାଜାନି କରନ୍ତି । ଏକଦା ଜାର୍ ସେନାବାହିନୀର ସର୍ଜେଣ୍ଟ ମେଜର ଥିଲା ଆନ୍ତନ୍ୟୁକ୍ । ତା' ଜ୍ଞାତିପରିଜନଙ୍କ ଭିତରୁ ସାତଜଣ ଗୁଣ୍ଡିକଟାଙ୍କୁ ଯୋଗାଡ଼ କରି, ପିସ୍ତଲ୍ ଆଦି ଅସ୍ତ୍ରଶସ୍ତ୍ର ଧରି ସେ ମଫସଲ ରାସ୍ତାରେ ଲୋକଙ୍କ ଉପରେ ଆକ୍ରମଣ କରେ । ରକ୍ତପାତ ପାଇଁ ତା'ର ତିଳେହେଲେ ଦ୍ୱିଧା ନାହିଁ । ଧନୀ ବେପାରୀଙ୍କୁ ଲୁଣ୍ଠନ କରିବାରେ ପଛାଏ ନାହିଁ ସେ । ମାତ୍ର ବେଳେବେଳେ ସାଧାରଣ ସୋଭିଏତ୍ ଶ୍ରମିକଙ୍କୁ ବି ଧରିବା ପାଇଁ ପଛାଏ ନାହିଁ । ଆନ୍ତନ୍ୟୁକ୍‌ର ପଦ୍ଧତିଟା ହେଲା ଚଟ୍‌ପଟ୍ କାମ ହାସଲ କରିନେବା । ଆଜି ଏଠି ଦୁଇଜଣ ସମବାୟ ଭଣ୍ଡାରର କିରାଣୀଙ୍କୁ ଧରିଲାଣି ତ କାଲି କୋଡ଼ିଏ ମାଇଲ ଦୂରରେ ଡାକବିଭାଗର କର୍ମଚାରୀଟିକୁ ଲୁଣ୍ଠନ କଲାଣି । ଲୋକଟିର ଦେହରେ ଯାହା ଥାଏ ସେତକ, ଶେଷ ପଇସାଟି ପର୍ଯ୍ୟନ୍ତ ନେଇଯାଏ ସେ । ଏଥିରେ

ସେ ପ୍ରତିଦ୍ୱନ୍ଦ୍ୱିତା କରେ ତା' ସହଚର ଓ ସମଧର୍ମୀ ଗୋର୍ଦି ସହିତ । ଦୁହେଁ ଜଣେ ଜଣକଠାରୁ ବଳି ଓ ଉଭୟେ ଅଞ୍ଚଳର ସେନାବାହିନୀଙ୍କୁ ଓ ସୀମାନ୍ତରକ୍ଷୀଙ୍କୁ ବ୍ୟସ୍ତ କରି ରଖିଥାନ୍ତି ସଦାବେଳେ ଆପଣାର କାମ ଦ୍ୱାରା । ଆନ୍ତନ୍ୟୁକ୍ ଠିକ୍ ବେରେଜ୍‌ଦୋଭ୍ ବାହାରେ ଡକାଏତି କରେ । ଫଳରେ ସହରକୁ ପଡ଼ିଥିବା ରାସ୍ତାରେ ବାହାରିବାକୁ ସମସ୍ତେ ଆପଦ ମଣିଲେ । ଡକାଏତ ନିଜକୁ ବଞ୍ଚାଇରଖି ସବୁ କରିଗଲେ । ଅବସ୍ଥା ତା' ପାଇଁ ସରଗରମ ହୋଇ ଉଠିଲେ ସେ ଦିନାକେତେ ପାଇଁ ସୀମାନ୍ତର ଆରପଟକୁ ଚାଲିଯାଏ, ଆତ୍ମଗୋପନ କରେ । ପୁଣି ସବୁ ଶାନ୍ତ ପଡ଼ିଗଲେ ହଠାତ୍ ବାହାରି ପଡ଼ି ଆକ୍ରମଣ କରେ । ସେ ଏକ ଆତଙ୍କରେ ପରିଣତ ହୋଇଗଲା ସେ ଅଞ୍ଚଳରେ । ତା'ର ଡକାଏତିର ପ୍ରତିଟି ନୂଆ ରିପୋର୍ଟ ପାଇବା ମାତ୍ରେ ଲିସିହିନ୍ କ୍ରୋଧରେ ଫାଟିପଡ଼ି ଓଠ କାମୁଡ଼େ ।

"କେତେ ଦିନ ଯାଏ, ସେ ଧଣ୍ଡସାପ ଆମକୁ ଏମିତି କାମୁଡ଼ୁଥିବ ? ମୋତେ ତ ନିଜେ ଏଥର ବାହାରିବାକୁ ପଡ଼ିବ ତା' ପାଇଁ ଦେଖୁଛି ।" ଦାନ୍ତ କାମୁଡ଼ି କହେ ସେ । ଜିଲା କାର୍ଯ୍ୟକାରୀ ସମିତିର ସଭାପତି, କୋର୍ଶୁଗିନ୍ ଓ ଆଉ ତିନିଜଣ କମ୍ୟୁନିଷ୍ଟଙ୍କୁ ଧରି ତିନିଥର ତା'ପିଛା ନେଇଥିଲେ । ହେଲେ ତିନିଥର ଯାକ ଆନ୍ତନ୍ୟୁକ୍ ଖସି ପଳାଇଛି ।

ଆଞ୍ଚଳିକ କେନ୍ଦ୍ରରୁ ଏକ ସ୍ପେଶିଆଲ୍ ବାହିନୀ ଡକାଏତମାନଙ୍କ ସହିତ ଲଢ଼େଇ କରିବା ପାଇଁ ପଠା ହେଲେ । ଏହି ବାହିନୀର କମାଣ୍ଡର ଥିଲା ଫିଲଟୋଭ୍ ବୋଲି ଗୋଟାଏ ତହରା ଟୋକା । ସୀମାନ୍ତର ନିୟମ ଅନୁଯାୟୀ ତାକୁ କାର୍ଯ୍ୟକାରୀ ସମିତି ସଭାପତିଙ୍କ ଆଗରେ ପ୍ରଥମେ ନପହଞ୍ଚି ସେ ଟୋକା ପ୍ରଥମେ ସେମାକି ନାମକ ପାଖର ଗୋଟାଏ ଗାଁକୁ ଚାଲିଗଲା ଏବଂ ରାତି ଅଧରେ ପହଞ୍ଚି, ଗାଁ ମୁଣ୍ଡରେ ତା'ଦଳର ଅନ୍ୟମାନଙ୍କୁ ଧରି ରହିଗଲା । ସଶସ୍ତ୍ର ଲୋକଙ୍କର ଏପରି ଆକସ୍ମିକ ଆବିର୍ଭାବ ଦେଖି, ପାଖଘରେ ଥିବା ଜଣେ କମ୍‌ସୋମୋଲ୍ ସଭ୍ୟ ତରବର ହୋଇ ଦୌଡ଼ିଲା ଗ୍ରାମ ସୋଭିଏତ୍‌ର ସଭାପତିଙ୍କୁ ଖବର ଦେବା ପାଇଁ । ସଭାପତି ଏ ସୈନ୍ୟମାନଙ୍କ ବିଷୟରେ ଆଗରୁ କିଛି ନ ଜାଣିଥିବାରୁ ସେମାନଙ୍କୁ ଡକାଏତ ବୋଲି ଭାବି, ସଙ୍ଗେ ସଙ୍ଗେ ଜିଲା କେନ୍ଦ୍ରକୁ ସାହାଯ୍ୟ ପାଇଁ ଖବର ପଠାଇଲା । ଫିଲଟୋଭ୍‌ର ନିର୍ବୋଧତା ଯୋଗୁଁ ଅନେକ ଜୀବନ ପ୍ରାୟ ଯାଉଥିଲା ସେ ରାତିରେ । ଲିସିହିନ୍ ସଙ୍ଗେ ସଙ୍ଗେ ସେଇ ରାତିରେ ନିଜର ସୈନ୍ୟମାନଙ୍କୁ ଡକାଇ ବାରଜଣଙ୍କୁ ଧରି ଶୀଘ୍ର ଆସିଲା ସେମାକିରେ "ଡକାଏତମାନଙ୍କ" ସହିତ ଲଢ଼ିବା ପାଇଁ । ଘୋଡ଼ାରେ ଚଢ଼ି ସେମାନେ ଘରଟା ପର୍ଯ୍ୟନ୍ତ ଆସିଲେ ଓ ସେଠାରେ ଓହ୍ଲାଇ ବାଡ଼ ଉପରେ ଚଢ଼ି ଧୀରେ ଧୀରେ ଅତି ସନ୍ତର୍ପଣରେ ଘରପାଖକୁ ଗଲେ । ମୁଣ୍ଡ ଉପରେ ରିଭଲଭରର ଗୋଟାଏ ପାହାରରେ ଜଗି ରହିଥିବା ପ୍ରହରୀ ଟଳିପଡ଼ିଲା । ଛାତରୁ ଝୁଲୁଥିବା ଓ ମିଞ୍ଜିମିଞ୍ଜି ହୋଇ ଜଳୁଥିବା ଗୋଟିଏ ଆଲୁଅରେ ସ୍ୱଳ୍ପାଲୋକିତ ଘରଟା ଭିତରକୁ ଲିସିହିନ୍ ଓ ତା' ଲୋକେ ଧସେଇ ପଶିଲେ । କାନ୍ଧରେ ଧକ୍‌କା ମାରିମାରି ଲିସିହିନ୍ ପ୍ରଥମେ ଘରର କବାଟଟାକୁ ଭାଙ୍ଗିଦେଲା । ଗୋଟାଏ ହାତରେ ଗୋଟାଏ ହାତବୋମା ଓ ଅନ୍ୟ ହାତରେ ନିଜ ମାଉଜର ବନ୍ଧୁକକୁ ବାଗେଇ ଧରି ଲିସିହିନ୍ ଗର୍ଜ୍ଜନ କରି ଉଠିଲା :

"ଆତ୍ମସମର୍ପଣ କର, ନହେଲେ ତମ ସମସ୍ତଙ୍କୁ ଧୂଳିରେ ମିଶାଇଦେବି ଆଜି!"

ତା' ଚିହ୍ନାର ଶବ୍ଦରେ ଘରର ଝରକାଗୁଡ଼ାକ ଥରିଉଠିଲା ।

ଆଖି ମଳିମଳି ସେମାନେ ଉଠିଲେ ଓ ଆଉ ମୁହୂର୍ତ୍ତକ ପରେ ଅସଂଖ୍ୟ ବୁଲେଟ୍ ସେମାନଙ୍କ ବକ୍ଷ ବିଦୀର୍ଣ୍ଣ କରିଥାନ୍ତା । ମାତ୍ର ହାତରେ ହାତବୋମା ଧରିଥିବା ଜଣକୁ ଦେଖି, ସେମାନେ ସମସ୍ତେ ଉପରକୁ ହାତ ଟେକିଲେ । କେଇ ମିନିଟ୍ ପରେ "ଡକାଏତ"ମାନଙ୍କୁ ଯେତେବେଳେ ବାହାରକୁ ଅଧାଲଙ୍ଗଳା ଅବସ୍ଥାରେ ଅଣାଗଲା ସେତେବେଳେ ଫିଲଚୋଭ୍‌ର ଆଖି ପଡ଼ିଲା ଲିସିହିନ୍‌ର ଜାମା ଉପରେ ପଦକ ଓ ସେ ତରବର ହୋଇ ସବୁକଥା ବୁଝାଇବାକୁ ଲାଗିଲା ।

ଲିସିହିନ୍ ରାଗରେ ଉନ୍ମତ୍ତ ହୋଇ ଉଠି କହିଲା, "ନିର୍ବୋଧ!"

* * *

ଜର୍ମାନୀ ବିପ୍ଳବର ସୁଅ ଓ ହାମ୍‌ବୁର୍ଗ ପ୍ରତିରୋଧ ବ୍ୟୁହରେ ବନ୍ଧୁକର ଆବାଜ୍, କ୍ଷୀଣଭାବରେ ହେଲେ ମଧ୍ୟ ସୀମାନ୍ତ ଅଞ୍ଚଳରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । ସାରା ସୀମାନ୍ତର ଆବ୍‌ହାଓ୍ୱା ସଶଙ୍କିତ ହୋଇ ରହିଲା । ଆଗ୍ରହର ସହିତ ଲୋକେ ଖବର କାଗଜ ପଢ଼ିଲେ । ପଶ୍ଚିମଆଡ଼ୁ ବିପ୍ଳବର ପବନ ବହିବାକୁ ଲାଗିଲା । କମ୍‌ସୋମୋଲ୍‌ର ଜିଲା କମିଟି କାର୍ଯ୍ୟାଳୟରେ ଲାଲ ବାହିନୀରେ ଯୋଗ ଦେବାକୁ ଇଚ୍ଛୁକ ଥିବା ସଦସ୍ୟମାନଙ୍କର ଦରଖାସ୍ତ ଗଦା ହୋଇଗଲା । କୋର୍ଚ୍ଚାଗିନ୍ କେବଳ ତରୁଣମାନଙ୍କୁ ବୁଝାଇବାରେ ଲାଗିଲା ଯେ, ସୋଭିଏତ୍ ୟୁନିଅନ୍ ଶାନ୍ତି ନୀତିରେ ଅଟଳ ଏବଂ ପଡ଼ୋଶୀ ରାଷ୍ଟ୍ରମାନଙ୍କ ସହିତ ଯୁଦ୍ଧରେ ଲିପ୍ତ ହେବାର ସ୍ପୃହା ତା'ର ନାହିଁ । ମାତ୍ର ସେଥିରେ କିଛି ଫଳ ହେଉ ନଥାଏ । ଧର୍ମଯାଜକ ଘରର ବଡ଼ ବଗିଚା ଭିତରେ ପ୍ରତି ରବିବାର ଦିନ ସାରା ଜିଲାର କମ୍‌ସୋମୋଲ୍ ସଦସ୍ୟମାନେ ସଭା କରନ୍ତି । ଦିନେ ଖରାବେଳେ ପୋଦ୍‌ଦୁବେହ୍ସ କମ୍‌ସୋମୋଲ୍ ସେଲ୍‌ର ସଦସ୍ୟମାନେ ଜିଲା କମିଟି କାର୍ଯ୍ୟାଳୟର ପ୍ରାଙ୍ଗଣରେ ରୀତିମତ ମାର୍ଚ୍ଚିଂ କରି ଆସି ହାଜର ହେଲେ । ଝରକାବାଟେ ସେମାନଙ୍କୁ ଦେଖି କୋର୍ଚ୍ଚାଗିନ୍ ତଳକୁ ଓହ୍ଲାଇ ଆସିଲା । ଖୋରୋଭୋଦ୍‌କୋ ନେତୃତ୍ୱରେ ଏଗାରଜଣ ତରୁଣ ଚଢ଼ଉ ଜୋତା ମାଡ଼ି, କ୍ୟାନ୍‌ଭାସ୍ ନ୍ୟାପ୍‌ସ୍ୟାକ୍ ଧରି ଯାଉଁଯାଉଁ ଫାଟକ ପାଖରେ ଅଟକି ରହିଲେ ।

"ଗ୍ରୀଶା! ଇଏ ସବୁ କ'ଣ ହଉଛି?" ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିଲା କୋର୍ଚ୍ଚାଗିନ୍ ।

ତାକୁ କୌଣସି ଉତ୍ତର ନଦେଇ ଖୋରୋଭୋଦ୍‌କୋ ଆଖିରେ ଇସାରା ଦେଇ ଅଫିସ୍‌ଘର ଭିତରକୁ ପଶିଲା ତା' ସାଙ୍ଗରେ । ଲିଦା, ରାଜ୍‌ଭାଲିଖିନ୍ ଓ ଆଉ ଦୁଇଜଣ କମ୍‌ସୋମୋଲ୍ ସଭ୍ୟ, ନବାଗତଠାରୁ ଉତ୍ତର ଦାବୀ କରି ଘେରିବସିଲେ । ଖୋରୋଭୋଦ୍‌କୋ ପ୍ରଥମେ ଉଠିଯାଇ କବାଟ ବନ୍ଦ କରିଦେଇ ଫିକା ଭୂଲତା ଦୁଇଟିକୁ କୁଞ୍ଚିତ କରି କହିଲା :

"ଏ ହେଲା, ଏକ ପରୀକ୍ଷାମୂଳକ ସୈନ୍ୟସମାବେଶ, କମ୍ରେଡ୍‌ଗଣ । ମୋ ମୁଣ୍ଡକୁ ଏକଥା ଜୁଟିଛି । ମୁଁ ଆଜି ସକାଳେ ଏମାନଙ୍କୁ କହିଲି ଯେ, ଜିଲା ସଦରରୁ ଟେଲିଗ୍ରାମ୍

ଆସିଛି । ଅବଶ୍ୟ ଗୋପନୀୟ ଭାବରେ ଯେ, ଆମର ଜର୍ମାନ୍ ବୁର୍ଜୁଆଙ୍କ ସହିତ ଯୁଦ୍ଧ ଆରମ୍ଭ ହୋଇ ଯାଉଛି । ତା' ସହିତ ଏବଂ ପୋଲଣ୍ଡ ପ୍ୟାନ୍‌ମାନଙ୍କ ସହିତ ମଧ୍ୟ ଆମକୁ ଲଢ଼େଇ କରିବାକୁ ପଡ଼ିବ ଅତିଶୀଘ୍ର । ତାଙ୍କୁ କହିଲି ଯେ, ମସ୍କୋର ନିର୍ଦ୍ଦେଶ ଅନୁଯାୟୀ କମ୍‌ସୋମୋଲ୍‌ର ପ୍ରତି ସଦସ୍ୟଙ୍କୁ ଯିବାକୁ ପଡ଼ିବ । ଯିଏ ଡରିବ, ସିଏ ଦରଖାସ୍ତ ଦେଇ ଘରେ ରହିପାରେ । ଏ ଯୁଦ୍ଧ ବିଷୟରେ ପଦେ କଥା ବି କାହାକୁ ନ କହିବା ପାଇଁ ମୁଁ ତାଙ୍କୁ ସବୁ ନିର୍ଦ୍ଦେଶ ଦେଇଥିଲି । ଆଉ ଯିଏ ଯାହା ପାରୁଛ, ଖଣ୍ଡେରୁଟି, ଟିକିଏ ଲହୁଣୀ କି ପିଆଜଟାଏ କି ରସୁଣଟାଏ ଧରି ବାହାରିଆସ । ଆମକୁ ସବୁ ଗାଁ ବାହାରେ ଗୁପ୍ତଭାବରେ ଘଣ୍ଟାକ ପରେ ଏକାଠି ହେବାକୁ ପଡ଼ିବ ଓ ତାପରେ ଜିଲ୍ଲା କେନ୍ଦ୍ରକୁ ଯିବାକୁ ହେବ । ତାପରେ ସେଠାରୁ ଯିବା ଆଞ୍ଚଳିକ କେନ୍ଦ୍ରକୁ । ସେଠାରେ ଅସ୍ତ୍ରଶସ୍ତ୍ର ଦିଆଯିବ ଆମକୁ । ଦେଖିଲ ଭଲ, କେତେ ଚମତ୍କାର ପ୍ରଭାବ ପକାଇଛି ଏକଥା ! ମୋତେ ସେମାନେ ନାନାପ୍ରକାର ପ୍ରଶ୍ନ କରିବାକୁ ଚେଷ୍ଟା କରୁଛନ୍ତି । ମାତ୍ର ମୁଁ ତାଙ୍କୁ କହିଲି – ପ୍ରଶ୍ନ ନକରି କାମରେ ଲାଗିପଡ଼ । ଯେଉଁମାନେ ଯିବାକୁ ଚାହାନ୍ତି ନାହିଁ, ସେମାନେ ଲେଖନ୍ତୁ । ଆମର ତ ସ୍ୱେଚ୍ଛାସେବକ ଦରକାର । ଆମ ସେଲ୍‌ର ପିଲାମାନେ ଚାଲିଗଲେ ଏବଂ ସେମାନେ ସବୁ ଗଲାପରେ ମୋର ତ ଚିନ୍ତା ଘୋଟିଗଲା ଗୋଟାଏ । ଯଦି କେହି ନ ଆସନ୍ତି ? ସେଇଆ ଯଦି ଘଟିଥାଆନ୍ତା ନାଁ, ତେବେ ପୂରା ସେଲ୍‌ଟାକୁ ମୁଁ ଭାଙ୍ଗି ଦେଇଥାଆନ୍ତି, ଅନ୍ୟ ଏକ ଜାଗାକୁ ବଦଳି ହୋଇଯାଆନ୍ତି । ଗାଁ ବାହାରେ ଯାଇ ଅପେକ୍ଷା କଲି । ଛାତି ମୋର ଖାଲି ଉଠୁଥାଏ ପଡ଼ୁଥାଏ । କିଛି ସମୟ ପରେ ସେମାନେ ଜଣକ ପରେ ଜଣେ ଆସିବାକୁ ଲାଗିଲେ । ସେଥିଭିତରୁ କେଇଜଣ ବି କାନ୍ଦୁଥିଲେ । ତମେ ତାଙ୍କ ଆଖିକୁ ଦେଖି ନାଁ । ଲୁଚେଇବାକୁ ଚେଷ୍ଟାକଲେ ବି ଜଣା ପଡ଼ିଯାଉଥିଲା । ଦଶରୁ ଦଶଜଣଯାକ ଆସିଲେ – ଜଣେ ବି ରହିଲେ ନାହିଁ । ଦେଖ, ଆମର ପୋଦ୍‌ଦୁବେଟ୍ସ ସେଲ୍‌କୁ ତମ ପାଇଁ କେମିତି ପ୍ରସ୍ତୁତ କରି ରଖିଛି ।" ବିଜୟ ଗର୍ବରେ ଉଲ୍ଲସିତ ହୋଇ କହିଲା ସେ ।

ଲିଦା ପୋଇେଭିଖ୍ ଏକଥାରେ ଦୁଃଖିତା ହୋଇ, ତାକୁ ଗାଳିଦେବାକୁ ଆରମ୍ଭ କଲାକ୍ଷଣି, ସେ ଆଶ୍ଚର୍ଯ୍ୟ ହୋଇ ଚାହିଁଲା ।

"କ'ଣ ତମେ କହୁଛ ଯେ ? ୟା'ଠାରୁ ଆଉ କୌଣସି ଭଲ ପନ୍ଥା ଅଛି, ତାଙ୍କୁ ସବୁ ପରୀକ୍ଷା କରିବା ପାଇଁ ? ସେଥିରେ ଟିକେ ବି ହେଲେ ଧପ୍‌ପାବାଜି ନାହିଁ । ମୁଁ ତ ତାଙ୍କୁ ପୂରାପୂରି ଆଞ୍ଚଳିକ କେନ୍ଦ୍ରକୁ ନେବାକୁ ଯାଉଥିଲି । ହେଲେ ବିଚରାଗୁଡ଼ାକ ଭାରୀ ଥକ୍‌କି ଯାଇଛନ୍ତି । ସେମାନଙ୍କୁ ଘରକୁ ଯିବାକୁ ଦିଅ । କୋର୍ଚ୍ଚାଗିନ୍ ତମେ ଏବେ ଆସିଲ, ଗୋଟାଏ ବକ୍ତୃତା ଶୁଣାଇଲ ତାଙ୍କୁ ସବୁ । ଗୋଟାଏ ଭାଷଣ ନହେଲେ କିଛି ହେବ ନାହିଁ । ତାଙ୍କୁ ଟିକିଏ ଯାଇ କହିଦିଅ ଯେ, ଯେଉଁ ଡାକରା ଦିଆଯାଇଥିଲା, କୌଣସି କାରଣରୁ ତାହା କିଛି ଦିନ ପାଇଁ ସ୍ଥଗିତ ରଖାଯାଉଛି । ଆଉ ଆମେମାନେ ସମସ୍ତେ ତାଙ୍କ ପାଇଁ ଗର୍ବିତ ।"

କୋର୍ଚ୍ଗିନ୍ ଆଞ୍ଚଳିକ କେନ୍ଦ୍ରକୁ ଖୁବ୍ କମ୍ ଯାଏ । କାରଣ, ଯିବା ଆସିବାରେ ତ ଦିନାକେତେଯାଏ, ପୁଣି ଏତେ କାମ ଯେ, ଜିଲ୍ଲାରେ ତାକୁ ସବୁବେଳେ ରହିବାକୁ ପଡ଼େ । ଏଣେ ରାଜ୍‌ଭାଲିଖିନ୍ କିଛି ଗୋଟାଏ କାମର ଆଳରେ କେନ୍ଦ୍ରକୁ ଘୋଡ଼ା ଝପଟାଇବା ପାଇଁ ସବୁବେଳେ ଗୋଡ଼ ଟେକି ରଖିଥାଏ । ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଅସ୍ତ୍ରଶସ୍ତ୍ରରେ ସଜାଇ ନିଜକୁ ଫେନେମୋ କୁପରଙ୍କ ଉପନ୍ୟାସର ଏକ ନାୟକ ରୂପେ କଳ୍ପନା କରି ବାହାରିଯାଏ ସେ । ପୁଣି ଗଲାବେଳେ, ଜଙ୍ଗଲ ଭିତରେ କାଉଟାକୁ କି ଗୁଣ୍ଡୁଚିମୂଷାଟାକୁ ଗୁଳି କରି ଝଡ଼ାଇଦିଏ । ଅକସ୍ମାତ୍ ପଥଚାରୀମାନଙ୍କୁ ଅଟକାଇ ସେମାନେ କିଏ, କୋଉଠୁ ଆସିଲେ, କୁଆଡ଼େ ଯାଉଛ ବୋଲି କଡ଼ା ଗଳାରେ ପଚାରେ । ସହରରେ ପହଞ୍ଚିବା ଆଗରୁ ଠିକ୍ ଅସ୍ତ୍ରଶସ୍ତ୍ର ସବୁ ଲୁଚାଇ ପକାଏ । ବନ୍ଧୁକଟାକୁ ଗାଡ଼ିର କୁଟା ଭିତରେ, ପିସ୍ତଲ୍‌ଟାକୁ ପକେଟ୍‌ରେ ପୂରାଏ, ସାଧାସିଧା ଚେହେରାରେ କମ୍‌ସୋମୋଲ୍‌ର ଆଞ୍ଚଳିକ କେନ୍ଦ୍ର କାର୍ଯ୍ୟାଳୟ ଭିତରକୁ ପଶେ ।

ଦିନେ ରାଜ୍‌ଭାଲିଖିନ୍ ଅଫିସ୍‌ରେ ପଶିଲାବେଳେ ଆଞ୍ଚଳିକ କେନ୍ଦ୍ରର ସଂପାଦକ ଫେଦୋତୋଭ୍ ପ୍ରଶ୍ନ କଲେ :

"ଆଚ୍ଛା, ତମ ବେରେଜ୍‌ଦୋଭ୍ ଖବର ସବୁ କ'ଣ ଆଉ ?"

ଫେଦୋତୋଭ୍ ଅଫିସ୍‌ରେ ସବୁବେଳେ ଅନେକ ଲୋକ ଥାଆନ୍ତି ଓ ସେମାନେ ସମସ୍ତେ ଏକାଠି କଥା କହୁଥାନ୍ତି । ଚାରିଜଣ ଲୋକଙ୍କ କଥା ଏକାସାଙ୍ଗରେ ଶୁଣିବା, ପୁଣି ପଞ୍ଚମ ଲୋକଙ୍କୁ ଜବାବ ଦେବା ଓ ତତ୍ ସଙ୍ଗେ ସଙ୍ଗେ କିଛି ଲେଖିବା — ଏମିତି ଅବସ୍ଥା ଭିତରେ କାମ କରିବା କଷ୍ଟକର । ଫେଦୋତୋଭ୍ ଅତି କମ୍ ବୟସର ହେଲେ ମଧ୍ୟ ୧୯୧୯ରୁ ପାର୍ଟି ସଭ୍ୟ ସେ । ସେତେବେଳର ଝଡ଼ପୂର୍ଣ୍ଣ ଅବସ୍ଥା ଭିତରେ ହିଁ କେବଳ ପନ୍ଦରବର୍ଷ ବୟସର ବାଳକକୁ ପାର୍ଟି ସଭ୍ୟ କରି ନିଆଯାଇଥିଲା ।

"ଅନେକ ଖବର ଦେବାକୁ ଅଛି", ନିର୍ଲିପ୍ତଭାବେ ଜବାବ ଦେଲା ରାଜ୍‌ଭାଲିଖିନ୍, "ଏକାଥରକେ କ'ଣ ସବୁ କହିହେବ ? କେଜାଣି ଦିନେ ସକାଳୁ ସନ୍ଧ୍ୟାଯାଏ ବସିଲେ ସରିବ ଅବା ! ସେଠି ଆମର ଅନେକ କାମ । ଜାଣିଛନ୍ତି ତ ଆମକୁ ସବୁକାମ ଏକାବେଳେକେ ମୂଳରୁ ଆରମ୍ଭ କରିବାକୁ ପଡ଼ୁଛି ସେଠି । ମୁଁ ଦିଇଟା ନୂଆ ସେଲ୍ ଗଠନ କରିଛି । ହଉ, ସେକଥା ଥାଉ । ମୋତେ କାହିଁକି ଡକାଇଥିଲେ କୁହନ୍ତୁ ?" କହିଲା ରାଜ୍‌ଭାଲିଖିନ୍ ଗୋଟାଏ ହାତବାଲା ଚଉକିରେ ବସି, ମୁହଁରେ ଗାମ୍ଭୀର୍ଯ୍ୟ ରଖି ।

ଅର୍ଥନୈତିକ ବିଭାଗର ମୁଖ୍ୟ କ୍ରିମ୍‌ସି, ନିଜର କାଗଜ ଗଦା ଭିତରୁ ମୁଣ୍ଡଟେକି ତାକୁ ଅନାଇଲେ ଦଣ୍ଡକ ପାଇଁ ଓ କହିଲେ, "ଆମେ ତମକୁ ଡାକି ପଠାଇନୁଁ, କୋର୍ଚ୍ଗିନ୍‌କୁ ଡାକିଥିଲୁ ।"

ରାଜ୍‌ଭାଲିଖିନ୍ ଧୂଆଁର ଏକ ବିରାଟ କୁଣ୍ଡଳୀ ସୃଷ୍ଟି କଲା ବସି ବସି, କହିଲା,

"କୋର୍ଚ୍ଗିନ୍ ଏଠିକି ଆସିବାକୁ ଭଲ ପାଉ ନାହିଁ । ସେଇଥି ପାଇଁ ତ ମୋତେ ସବୁକାମ ପଛକୁ ରଖି ଆସିବାକୁ ପଡ଼ିଲା । ସେକ୍ରେଟାରୀମାନଙ୍କର ତ ମଜା — ଆମ ଭଳିଆ

ରାଧଙ୍କୁ ସବୁ କାମ କରିବାକୁ ପଡ଼େ । କୋର୍ଣ୍ଣିଗିନ୍ ଥରେ ସୀମାନ୍ତକୁ ଗଲେ ଦୁଇ କି ତିନି ସପ୍ତାହ ଧରି ଫେରିବାର ନାଁ ନାହିଁ । ମୋତେ ତ ସବୁ କାମ କରିବାକୁ ପଡ଼େ ତା' ପାଇଁ ।"

ମୋଟାମୋଟିଭାବରେ ରାଜ୍‌ଭାଲିଖିନ୍ ଯେଉଁ ଧାରଣା ସେମାନଙ୍କ ମନରେ ଉପୁଜାଇବାକୁ ଚାହୁଁଥିଲା – ସେଇହିଁ କେବଳ ଜିଲ୍ଲା ସଂପାଦକ ପଦ ପାଇଁ ଯୋଗ୍ୟ – ସେମାନେ ସେକଥାଟାକୁ ଯେ ଧରି ପାରି ନାହାନ୍ତି, ତା ନୁହେଁ ।

ରାଜ୍‌ଭାଲିଖିନ୍ ଗଲାପରେ ଫେଦୋତୋଭ୍ ତାଙ୍କ ସହକର୍ମୀମାନଙ୍କୁ କହିଲେ, "ଏ ଲୋକଟା ମୋତେ ଭଲ ଲାଗେ ନାହିଁ!"

ରାଜ୍‌ଭାଲିଖିନ୍‌ର ଏ ଚାତୁରୀ କିନ୍ତୁ ଆକସ୍ମିକଭାବରେ ଧରାପଡ଼ିଗଲା ଦିନେ । ଲିସିଷିନ୍ ହଠାତ୍ ଫେଦୋତୋଭ୍‌ଙ୍କ ଅଫିସ୍ ଭିତରକୁ ପଶି ଆସିଲା, ଚିଠିପତ୍ର ଯାହା ଥିବ ନେଇଯିବା ପାଇଁ । ଯିଏ ବି ଜିଲ୍ଲାରୁ ଆସିଲେ ଚିଠିପତ୍ର ନେଇଯା'ନ୍ତି । ସେଇ ଅବସରରେ ଦୁହିଁଙ୍କ ଭିତରେ କଥାବାର୍ତ୍ତା ହେଉଁ ହେଉଁ ରାଜ୍‌ଭାଲିଖିନ୍ କଥା ଧରାପଡ଼ିଗଲା ।

"ଯେମିତି ହେଲେ କୋର୍ଣ୍ଣିଗିନ୍‌କୁ ଏଠିକି ଟିକିଏ ପଠାଅ । ଆମେ ତ ତାକୁ ଦେଖିବାକୁ ବି ପାଉନୁ", ଫେଦୋତୋଭ୍ କହିଲେ ବିଦାୟ ଦେଉଁ ଦେଉଁ ।

"ଠିକ୍ ଅଛି, ପଠାଇଦେବି ତାଙ୍କୁ । ହେଲେ ତାକୁ ଆମ ପାଖରୁ ନେଇ ଆସିବାକୁ ଆଉ ଚେଷ୍ଟା କର ନାହିଁ । ଆମେ ତାକୁ ଛାଡ଼ିବୁ ନାହିଁ ।"

* * *

ଅନ୍ୟ ବର୍ଷମାନଙ୍କ ତୁଳନାରେ ଆହୁରି ଅଧିକ ଉତ୍ସାହ, ଉଦ୍ଦୀପନା ଓ ଜାକଜମକରେ ଏବର୍ଷ ଅକ୍ଟୋବର ବିପ୍ଳବ ଦିବସ ପାଳିତ ହେଲା ସୀମାନ୍ତ ଅଞ୍ଚଳରେ । ସୀମାନ୍ତ ଗ୍ରାମମାନଙ୍କରେ ଉତ୍ସବ ପାଳନ ପାଇଁ କମିଟିର ସଭାପତି ନିର୍ବାଚିତ ହେଲା କୋର୍ଣ୍ଣିଗିନ୍ । ପୋଦ୍‌ଦୁବେସ୍ତରେ ସଭା ସରିଲା ପରେ ତିନୋଟି ସୀମାନ୍ତ ଗ୍ରାମର ପାଞ୍ଚ ହଜାର କୃଷକ ଅଧକିଲୋମିଟର ଲମ୍ବା ଏକ ଶୋଭାଯାତ୍ରାରେ ସୀମାନ୍ତ ପର୍ଯ୍ୟନ୍ତ ଆସିଲେ । ଶୋଭାଯାତ୍ରାର ସମ୍ମୁଖରେ ଥିଲା ଶିକ୍ଷାର୍ଥୀ ବାଟାଲିଅନ୍ । ସୀମାନ୍ତର ସୋଭିଏତ୍ ପଟରେ, ଚମତ୍କାରଭାବରେ ଧାଡ଼ିବାନ୍ଧି ସୀମାନ୍ତ ଖୁଣ୍ଟଗୁଡ଼ିକ ସହିତ ସମାନ୍ତରାଳ ଭାବରେ ଲାଲ ପତାକା ଓ ମିଲିଟାରୀ ବ୍ୟାଣ୍ଡବାଜା ଧରି ଆଗେଇବାକୁ ଲାଗିଲେ । ସୀମାନ୍ତରେ ପୋଲଣ୍ଡ ଲୋକେ ଆଗରୁ କେବେ ଏ ଦୃଶ୍ୟ ଦେଖି ନଥିଲେ । ଦୁଇଧାଡ଼ିରେ ଯାଉଥିବା ଶୋଭାଯାତ୍ରା ଆଗରେ ଘୋଡ଼ାରେ ବସି ଯାଉଥାନ୍ତି ବାଟାଲିଅନ୍ କମାଣ୍ଡର ଗାବ୍ରିଲେଭ୍ ଓ କୋର୍ଣ୍ଣିଗିନ୍ । ତାଙ୍କର ଠିକ୍ ପଛରେ ବ୍ୟାଣ୍ଡ ବାଜୁଥାଏ । ପବନରେ ଫରଫର ହୋଇ ଉଡ଼ୁଥାଏ ଲାଲ ପତାକା । ଲୋକଙ୍କର ସମ୍ମିଳିତ ଐକ୍ୟତାନ ଓ ସଂଗୀତ ବହୁଦୂରକୁ ପ୍ରତିଧ୍ୱନିତ ହେଉଥାଏ । ନିଜ ନିଜର ପେଡ଼ିଭୁଗା ପିନ୍ଧି କୃଷକ ତରୁଣତରୁଣୀମାନେ ଉଲ୍ଲସିତ ହୋଇ ଚାଲିଥାନ୍ତି । ଗ୍ରାମ୍ୟ ବାଳିକାମାନେ ଆନନ୍ଦରେ ହସି ଉଠୁଥାନ୍ତି ଉତ୍‌ଫୁଲ୍ଲିତ ହୋଇ । ବୟସ୍କମାନେ ଗମ୍ଭୀର ହୋଇ ମାର୍ଚ୍ଚିଂ କରି ଯାଉଥାନ୍ତି । ବୃଦ୍ଧବୃଦ୍ଧାଙ୍କର ମନ ବିଜୟ

ଗୌରବରେ ସତେକି ଫୁଲି ଉଠୁଥାଏ । ଯୁଆଡ଼େ ଆଖି ପାଉଥାଏ ସିଆଡ଼େ ମଣିଷର ସ୍ରୋତ ଦେଖାଯାଉଥାଏ । ଗୋଟିଏ ପଟର ବନ୍ଧ ହେଲା ସୀମାରେଖା । ଜଣେହେଲେ କେହି ସେ ସୀମାରେଖାକୁ ଟପି ଯାଉ ନଥାନ୍ତି । କୋର୍ଗିନ୍ ଆଖି ପୂରାଇ ଏ ଜନସମୁଦ୍ରକୁ ଦେଖୁଥାଏ । କମ୍‌ସୋମୋଲ୍‌ର ଦୃପ୍ତ ସଂଗୀତର ମୂର୍ଚ୍ଛନା ଭାସି ବୁଲୁଥାଏ ।

"ଘନ ଜଙ୍ଗଲରୁ ଅତଲାନ୍ତ ବ୍ରିଟାନ୍ ସାଗର ଯାଏ,
ଶକ୍ତିଶାଳୀ ଲାଲ ଫଉଜର ବିଜୟ ଗୀତିକା ଗାଏ ..."

ଝିଅମାନଙ୍କର ସମବେତ କଣ୍ଠରୁ ଶୁଭୁଥାଏ :

"ପାହାଡ଼ତଳେ ଫସଲ କାଟୁ ଆମେ ..."

ମୁହଁରେ ଆନନ୍ଦର ହସ ଉକୁଟାଇ ସୋଭିଏତ୍ ସୀମାନ୍ତ ପ୍ରହରୀମାନେ ଶୋଭାଯାତ୍ରାକୁ ଅଭିବାଦନ ଜଣାଇଲେ । ପୋଲାଣ୍ଡ ପକ୍ଷର ପ୍ରହରୀମାନେ ବିହ୍ୱଳିତ ହୋଇ ଦେଖୁଥାନ୍ତି ଏ ଦୃଶ୍ୟ । ସୀମାନ୍ତରେ ଏ ଜନସମାବେଶ, ଅପର ପକ୍ଷକରେ ବି ଏକ ସଚକିତ ଭାବ ସୃଷ୍ଟି କରିଥିଲା, ପୋଲାଣ୍ଡ ପକ୍ଷର କମାଣ୍ଡଙ୍କୁ ଆଗରୁ ସତର୍କ କରି ଦିଆହୋଇଥିଲେ ସୁଦ୍ଧା । ଘୋଡ଼ସବାର ଜେନ୍‌ଦାର୍ମମାନେ * ଅଣନିଃଶ୍ୱାସୀ ହୋଇ ଆଗପଛ ହେଉଥାନ୍ତି । ସୀମାନ୍ତ ପ୍ରହରୀ ସଂଖ୍ୟା ପାଞ୍ଚଗୁଣ ବଢ଼ାଇ ଦିଆ ଯାଇଥାଏ, ଆଖପାଖର ପାହାଡ଼ ବଣବୁଦା ଭିତରେ ଆହୁରି ଅନେକ ସୈନ୍ୟଙ୍କୁ ସଂରକ୍ଷିତ ଭାବରେ ଲୁଚାଇ ରଖା ଯାଇଥାଏ ତାଙ୍କ ପଟରେ । ଶୋଭାଯାତ୍ରା କିନ୍ତୁ ନିଜ ଅଞ୍ଚଳ ବାହାରକୁ ଯାଉ ନଥାଏ । ଆନନ୍ଦର ଉଚ୍ଛଳ ଉଲ୍ଲାସରେ, ସଙ୍ଗୀତର ପ୍ରତିଧ୍ୱନି ଭିତରେ ଶୋଭାଯାତ୍ରା ଆଗେଇ ଚାଲିଥାଏ ।

ପୋଲାଣ୍ଡ ପଟର ପ୍ରହରୀ ଜଣେ ଛୋଟିଆ ମୁଣ୍ଡିଆଟିଏ ଉପରେ ଛିଡ଼ା ହୋଇଥିଲା । ଶୋଭାଯାତ୍ରା ଯଥାରୀତିରେ ସମାନ ବ୍ୟବଧାନରେ ପାଦ୍ ପକାଇ ପକାଇ ଆଗେଇ ଆସିଲା । ମାର୍ଚ୍ଚିଂ ସ୍ୱର ବାଜି ଉଠୁଥାଏ । ପୋଲାଣ୍ଡ ସୈନିକଟି ନିଜର ବନ୍ଧୁକଟିକୁ ତୁରନ୍ତ ନିଜ କଡ଼କୁ ଧରି ସାମରିକ ଅଭିବାଦନ ଜଣାଇଲା ଓ କୋର୍ଗିନ୍ ଶୁଣିପାରିଲା ସ୍ପଷ୍ଟଭାବରେ :

"ସାମ୍ୟବାଦ ଦୀର୍ଘଜୀବୀ ହେଉ !"

ସୈନିକର ଚାହାଣୀ ପାଭେଲ୍‌କୁ ସ୍ପଷ୍ଟ ଜଣାଇ ଦେଉଥିଲା ଯେ, ସେଇହିଁ ଏକଥା କହିଛି । ଉଲ୍ଲସିତ ହୋଇ ତା' ଆଡ଼କୁ ଅନାଇଲା ପାଭେଲ୍ ।

ବନ୍ଧୁ ! ସୈନିକର ପୋଷାକ ତଳେ ମଧ୍ୟ ଗୋଟିଏ ହୃଦୟ ଶୋଭାଯାତ୍ରାକାରୀମାନଙ୍କ ପ୍ରତି ସମବେଦନାରେ ଉଲ୍ଲସିତ ହୋଇ ଉଠୁଛି । ପାଭେଲ୍ କୋମଳଭାବରେ ପୋଲାଣ୍ଡ ଭାଷାରେ କହିଲା :

---

* ଗୁପ୍ତଚର ବାହିନୀ – ସଂପାଦକ ।

"ଅଭିବାଦନ ନିଅ, କମ୍ରେଡ୍ !"

ଶୋଭାଯାତ୍ରା ଅତିକ୍ରମ କରି ଚାଲିଯିବା ପର୍ଯ୍ୟନ୍ତ, ସେହି ଭଙ୍ଗୀରେ ଛିଡ଼ା ହୋଇଥାଏ ସନ୍ତ୍ରୀଟି । ଛୋଟ କଳା ରୂପଟିକୁ ଆଖି ପୂରାଇ ଦେଖିବା ପାଇଁ ପାଭେଲ୍ ବାରମ୍ବାର ପଛକୁ ଫେରି ଚାହୁଁଥାଏ । ଏଥର ଆଉ ଜଣେ ପୋଲାଣ୍ଡ ସୈନିକ । ତା'ର ବଡ଼ ବଡ଼ ନିଶଗୁଡ଼ାକ କହରା ପଡ଼ିଯାଇଥାଏ ଓ ଟୋପି ତଳେ ଦିଶୁଥିବା ଆଖିଦିଓଟିରେ କୌଣସି ଭାଷା ନଥାଏ । ସଦ୍ୟ ଅନୁଭୂତିରୁ ପାଭେଲ୍ ପୁଣି ଥରେ ମନକୁ ମନ ମର୍ମରି ଉଠିଲା :

"ଅଭିବାଦନ, କମ୍ରେଡ୍ !"

ଏଥର କିନ୍ତୁ କୌଣସି ପ୍ରତ୍ୟୁତ୍ତର ନାହିଁ ।

ଗାବ୍ରିଲୋଭ୍ ହସି ଉଠିଲା । ସେସବୁ ଶୁଣିଛି ।

"ତମେ ଅନେକ ବେଶି ଆଶା କରୁଛ", କହିଲା ସେ, "ସେମାନେ କେବଳ ସାଧାରଣ ପଦାତିକ ବାହିନୀର ସୈନ୍ୟ ନୁହନ୍ତି । ସେମାନଙ୍କ ଭିତରୁ ଅନେକେ ଜେନ୍ଦାର୍ମ । ତା' କାନ୍ଧରେ ଥିବା ପଟିଟାକୁ ତମେ ଦେଖିନ କି ? ଏ ଜଣକ ତ ନିଶ୍ଚୟ ଜେନ୍ଦାର୍ମ ।"

ସୀମାନ୍ତରେଖା ଦ୍ୱାରା ଦୁଇଭାଗରେ ବିଭକ୍ତ ହୋଇଯାଇଥିବା ଗାଁଟିଏ ଭିତରକୁ ପ୍ରବେଶ କରିବା ପାଇଁ ଶୋଭାଯାତ୍ରା ପାହାଡ଼ ତଳକୁ ଓହ୍ଲାଉଥାଏ । ସୋଭିଏତ୍ ଅଂଶର ଗ୍ରାମବାସୀମାନେ ଅତିଥିମାନଙ୍କୁ ମହାଡ଼ମ୍ବରରେ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପାଇଁ ପ୍ରସ୍ତୁତି କରିଥାଆନ୍ତି । ଝରଣା କୂଳରେ ଥିବା ସୀମାନ୍ତର ପୋଲଟି ନିକଟରେ ସମସ୍ତ ଗ୍ରାମବାସୀ ଅପେକ୍ଷା କରି ରହିଥାନ୍ତି ପାଛୋଟି ନେବା ପାଇଁ । ତରୁଣତରୁଣୀମାନେ ରାସ୍ତାର ଦୁଇପଟରେ ଧାଡ଼ିବାନ୍ଧି ଛିଡ଼ା ହୋଇଥାଆନ୍ତି । ପୋଲାଣ୍ଡ ପଟର ଘରଗୁଡ଼ାକର ଚାଳ ଓ ଛାତ ଉପର ସାରା ଲୋକମାନେ ଠିଆ ହୋଇ, ନଈ ଆରପଟରୁ ଏ ଦୃଶ୍ୟ ଦେଖୁଥାଆନ୍ତି । ଘର ସାମନା ବଗିଚାର ବାଡ଼କୁ ଲାଗି ଚାଷୀମାନଙ୍କର ଭିଡ଼ । ଶୋଭାଯାତ୍ରା ତରୁଣତରୁଣୀଙ୍କର ଦୁଇଧାଡ଼ି ଭିତରକୁ ପ୍ରବେଶ କରିବାମାତ୍ରେ ବ୍ୟାଣ୍ଡରେ "ଆନ୍ତର୍ଜାତିକ" ସଂଗୀତଟି ବାଜି ଉଠିଲା । ପରେ ପରେ ସୁସଜ୍ଜିତ ସଭାମଞ୍ଚ ଉପରୁ ଭାଷଣ ହେଲା । ତରୁଣମାନେ ଓ ପକ୍ୱକେଶ ବୃଦ୍ଧମାନେ ଭାଷଣ ଶୁଣାଇଲେ । କୋର୍ଚ୍ଚାଗିନ୍ ମଧ୍ୟ ତା'ର ମାତୃଭାଷା – ୟୁକ୍ରେନୀୟ ଭାଷାରେ ଭାଷଣ ଦେଲା । ତା'ର ସ୍ୱର ନଦୀ ଉପର ଦେଇ ପବନରେ ଭାସି ଯାଇ ଆରପଟକୁ ମଧ୍ୟ ଶୁଭୁଥିଲା । ତା'ର ଜ୍ୱାଳାମୟୀ କଥାଗୁଡ଼ାକ କାଳେ ପୋଲାଣ୍ଡ ଅଞ୍ଚଳର ଶ୍ରୋତାମାନଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି କରି ପାରେ । ଏହି ଆଶଙ୍କାରେ ସେଠାରେ ଥିବା ଜେନ୍ଦାର୍ମ ବାହିନୀର ସୈନିକମାନେ ରୁଷ୍ଟ ହୋଇଥିବା ପୋଲାଣ୍ଡ ଗ୍ରାମବାସୀମାନଙ୍କୁ ଘଉଡ଼େଇଦେଲେ । ଚାବୁକର ସପା ସପା ଶବ୍ଦ ଓ ବନ୍ଧୁକର ଫାଙ୍କା ଆଓ୍ୱାଜର ଶବ୍ଦ ଭାସିଉଠିଲା ପବନରେ ।

ରାଜପଥ ସବୁ ଜନଶୂନ୍ୟ ହୋଇଗଲା । ଜେନ୍ଦାର୍ମ ବାହିନୀ ଲୋକଙ୍କର ଗୁଳି ଫୁଟା ଫଳରେ ଚାଳ ଉପରେ ଠିଆ ହୋଇଥିବା ଲୋକେ ମୁହୂର୍ତ୍ତକ ଭିତରେ ଅଦୃଶ୍ୟ ହୋଇଗଲେ କୁଆଡ଼େ । ସୋଭିଏତ୍ ପଟର ଲୋକେ ଏ ଦୃଶ୍ୟ ଦେଖିସାରି ଗମ୍ଭୀର ହୋଇଗଲେ ।

ଆଖିଆଗରେ ଯାହାସବୁ ଘଟିଗଲା, ତାକୁ ଦେଖି ଜଣେ ବୃଦ୍ଧ ମେଷପାଳକ ଅନ୍ୟମାନଙ୍କ ସାହାଯ୍ୟ ନେଇ ସଭାମଞ୍ଚ ଉପରକୁ ଚଢ଼ିଯାଇ ଉତ୍ତେଜନାପୂର୍ଣ୍ଣ ଭାଷଣ ଦେବାକୁ ଲାଗିଲା ।

"ଆଖି ଆଗରେ ସବୁ ଦେଖିଲ ତ ପିଲାଏ ? ଆମେ ବି ସବୁ ଦିନେ ଏଇଆ ଭୋଗୁଥିଲୁ । ଆଜି କିନ୍ତୁ ଆମେ କୃଷକମାନଙ୍କୁ ଗୁଳିକ ମାରିବାକୁ ସାହସ କରୁ ନାହିଁ । ଏ ଭଦ୍ରଲୋକ ଓ ତାଙ୍କ ଗୁଳିକକୁ ନିଃଶେଷ କରିଛୁ ଆମେ । ଆଜି ଆମର ଶାସକ ଆମେ ଆଉ ସେସବୁ କରିଛୁ କେବଳ ତମମାନଙ୍କ ପାଇଁରେ ମୋ ପିଲାଏ ! ଏ ଶାସନକୁ ଦୃଢ଼ଭାବେ ରଖ, ବଜାଏ ରଖ । ମୁଁ ବୁଢ଼ାଟାଏ, ବକ୍ତୃତା ଦେଇ ଆସେ ନାହିଁ ମୋତେ । ପାରନ୍ତି ଯଦି ଇଚ୍ଛା ହଉଛି ଆନେକ କଥା କହନ୍ତି – କହନ୍ତି ତମକୁ ଜାର୍ ଅମଳରେ ଆମେ କେମିତି ବଳଦ ଭଳି ଖଟିଖଟି ମରୁଥିଲୁ । ସେଇଥି ପାଇଁ ସେଠି ସେ ବିଚରାଗୁଡ଼ାଙ୍କ ଉପରେ ଅତ୍ୟାଚାର ଦେଖି ଛାତି ଫାଟିଯାଉଛି କୋହରେ ... ।" ସେ ଆଙ୍ଗୁଳି ନିର୍ଦ୍ଦେଶ କରି ନଈ ଆରପାରିକି ଦେଖାଇଲା ଓ କାନ୍ଦି ପକାଇଲା ଝରଝର କରି, ବୁଢ଼ା ଆଉ ଛୋଟ ପିଲାମାନେ ଯେମିତି କାନ୍ଦି ପକାନ୍ତି ।

ତା'ପରେ ଗ୍ରିଶୁଟ୍କା ଖୋରୋଭୋଦ୍କୋ କହିଲା । ତା'ର ତୀବ୍ର ଜ୍ୱାଳାମୟୀ ଭାଷଣ ଶୁଣି, ଗାଭ୍ରିଲୋଭ୍ ନିଜ ଘୋଡ଼ା ବୁଲାଇ ଦେଖିବାକୁ ଗଲା, ନଈ ଆରପାରିରେ କେହି ଟିପି ନେଉଛି କି ନାହିଁ ବୋଲି । ନଈବନ୍ଧ ସଂପୂର୍ଣ୍ଣ ଜନଶୂନ୍ୟ ହୋଇଯାଇଥିଲା । ଏପରିକି ନଦୀବନ୍ଧ ଉପରେ ଥିବା ରକ୍ଷୀକୁ ମଧ୍ୟ ଅପସାରିତ କରି ନିଆ ହୋଇଥିଲା ।

"ଯା' ହଉ ... ଯାହା ଦେଖାଯାଉଛି ବୈଦେଶିକ ବ୍ୟାପାର ବିଭାଗକୁ କୌଣସି ଅଭିଯୋଗପତ୍ର ପଠାଯିବ ନାହିଁ ।" ସେ ହସିଲା ।

* * *

ଶରତର ଶେଷ ଆଡ଼କୁ ଏକ ବର୍ଷଣମୁଖର ରାତିରେ ଆନ୍ତନ୍ୟୁକ୍ ଓ ତା'ର ସାତଜଣ ବନ୍ଧୁଙ୍କର ରକ୍ତାକ୍ତ ରାହାଜାନିର ପରିସମାପ୍ତି ଘଟିଲା । ମଇଦାନ୍-ଭିଲ କଲୋନୀର ଗୋଟିଏ ଧନୀ ଜର୍ମାନ୍ ପରିବାରର ବାହାଘର ଉତ୍ସବରେ ସେମାନେ ଧରାହେଲେ । ଖ୍ରୋଲିନ୍ସି କମ୍ୟୁନ୍‌ର କୃଷକମାନେ ହିଁ ଅନୁସରଣ କରି ତାକୁ ଧରିଲେ ।

ସ୍ଥାନୀୟ ସ୍ତ୍ରୀଲୋକମାନେ କଲୋନୀରେ ହେଉଥିବା ବିଭାଘରରେ ଏହି ଅତିଥିମାନଙ୍କର ଆସିବା କଥା ଚାରିଆଡ଼େ ପ୍ରଚାର କରିଦେଲେ ଓ ସଙ୍ଗେ ସଙ୍ଗେ କମ୍‌ସୋମୋଲ୍‌ର ସଭ୍ୟମାନେ ଏକଜୁଟ ହୋଇଗଲେ । ସେମାନଙ୍କ ଭିତରୁ ବାରଜଣ ହାତରେ ଯେଉଁ ଅସ୍ତ୍ର ପାଇଲେ ଧରି ମଇଦାନ୍-ଭିଲକୁ ଆସିଲେ । ତେଣେ ତା ଆଗରୁ ବେରେଜ୍‌ଦୋଭ୍‌କୁ ଖବର ପଠେଇ ଦିଆଗଲା – ଜଣେ ଖୁବ୍ ଜୋର୍‌ରେ ଘୋଡ଼ା ଛୁଟେଇ ଖବର ନେଇଗଲା । ସେମାକି ନିକଟରେ ଖବର ନେଇ ଯାଉଥିବା ଲୋକଜଣକ ଫିଲଟୋଭ୍‌ର ଦଳକୁ ଆକସ୍ମିକଭାବରେ ଭେଟିଲା ଓ ଶୁଣିଲା ମାତ୍ରେ ଫିଲଟୋଭ୍ ସଙ୍ଗେ ସଙ୍ଗେ ବାହାରିଲା ସନ୍ଧାନରେ । ଖ୍ରୋଲିନ୍ସି କମ୍ୟୁନ୍‌ର ଲୋକେ ଫାର୍ମଘରଟିକୁ ଘେରାଉ କରି ଆନ୍ତନ୍ୟୁକ୍ ଦଳ

ସହିତ ଗୁଳି ବିନିମୟ ଆରମ୍ଭ କରିଦେଇଥିଲେ । ତା' ଦଳ ଫାର୍ମଘରର ଗୋଟିଏ କଡ଼ରେ ନିଜକୁ ସବୁ ଲୁଚାଇ ରଖି ଗୁଳିରେଞ୍ଜ ଭିତରେ ଯାହାକୁ ପାଇଲେ, ଗୁଳି ଚଳାଇଥାନ୍ତି । ସେମାନେ ଚେଷ୍ଟା କରୁଥିଲେ ହଠାତ୍ ପ୍ରତିଆକ୍ରମଣ ଚଳେଇ ପଳେଇ ଯିବାକୁ, କିନ୍ତୁ ହଠାତ୍ ନିଜ ଭିତରୁ ଜଣକୁ ହରେଇ ଘର ମଧ୍ୟକୁ ହଟି ଆସିବାକୁ ବାଧ୍ୟ ହେଲେ । ଏମିତି ଅନେକ ଲଢ଼ାଇ ଆଗରୁ କରିଛି ଆନ୍ତନ୍ୟୁକ୍ । ସେଇ ଜାଗାମାନଙ୍କରୁ ହାତବୋମା ସାହାଯ୍ୟରେ ଅନ୍ଧାରରେ ବାହାରି ପଳାଇଛି । ଏଥର ମଧ୍ୟ ପଳାଇଥାଆନ୍ତା ସେ, କାରଣ ଖ୍ରୋଲିନ୍‌ସି କମ୍‌ସୋମୋଲ୍ ଲୋକଙ୍କ ମଧ୍ୟରୁ ଇତିମଧ୍ୟରେ ଦୁଇଜଣ ମରିଗଲେଣି । ମାତ୍ର ଫିଲଚୋଭ୍ ଠିକ୍ ସମୟରେ ତା' ଦଳକୁ ଧରିଆସି ପହଞ୍ଚିଗଲା । ଆନ୍ତନ୍ୟୁକ୍ ଜାଣିଲା ଯେ ତା' ଖେଳ ସରିଗଲା । ସକାଳ ପର୍ଯ୍ୟନ୍ତ ସବୁ ଝରକାବାଟେ ସେ ଗୁଳି ଚଳାଇବାକୁ ଲାଗିଲା । ଭୋରବେଳକୁ ଠିକ୍ ସେମାନେ ତାକୁ ଧରିଲେ । ସାତଜଣ ଭିତରୁ ଜଣେ ବି ସୁଦ୍ଧା ଆତ୍ମସମର୍ପଣ କଲେ ନାହିଁ । ସାପର ଗୁହା ଭାଙ୍ଗିବାକୁ ଗ୍ରରିଜଣଙ୍କୁ ଜୀବନ ଦେବାକୁ ହେଲା । ସେଥିମଧ୍ୟରୁ ତିନିଜଣ ତରୁଣ ନବ ସଂଗଠିତ ଖ୍ରୋଲିନସି କମ୍‌ସୋମୋଲ୍ ସଂଗଠନର ।

* * *

ଆଞ୍ଚଳିକ ପଦାତିକ ବାହିନୀର ଶାରଦୀୟ ସମାରୋହରେ ଯୋଗଦେବା ପାଇଁ ଡକା ହୋଇ କୋର୍ଚ୍ଚ ଗିନ୍‌ର ବାଟାଲିୟନ୍ ଆସିଲେ । ଡିଭିଜନ କ୍ୟାମ୍ପ ପର୍ଯ୍ୟନ୍ତ ଗ୍ରଳିଶ କିଲୋମିଟର ରାସ୍ତାକୁ ବାଟାଲିୟନ୍‌ର ଲୋକେ ବର୍ଷା ଭିତରେ ମଧ୍ୟ ଦିନକ ଭିତରେ ପାଦରେ ଅତିକ୍ରମ କରି ଆସିଲେ । ସକାଳୁ ସେମାନେ ବାହାରିଲେ ଓ ରାତିଅଧରେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଗଲେ । ବାଟାଲିୟନ୍‌ର କମାଣ୍ଡର ଗୁସେଭ୍ ଓ କମିସାର ପାଭେଲ୍ କେବଳ ଘୋଡ଼ାପିଠିରେ ଯାଉଥାନ୍ତି । ଆଠଶହ ଶିକ୍ଷାର୍ଥୀ ବ୍ୟାରାକ୍‌ରେ କ୍ଳାନ୍ତଶ୍ରାନ୍ତ ହୋଇ ପହଞ୍ଚିଲା ମାତ୍ରେ ଶୋଇଗଲେ । ସମାରୋହ ସବୁ ଆଞ୍ଚଳିକ ଡିଭିଜନ ହେଡ୍‌କ୍ୱାର୍ଟରସ୍‌ରେ ତା' ଆରଦିନ ସକାଳୁ ଆରମ୍ଭ ହେବାର ସ୍ଥିର ହୋଇଥିଲା । ହେଡ୍‌କ୍ୱାର୍ଟରସ୍‌ରୁ ବାଟାଲିୟନ୍‌ମାନଙ୍କୁ ଏଥିରେ ଯୋଗ ଦେବା ପାଇଁ ନିର୍ଦ୍ଦେଶ କିନ୍ତୁ ବହୁ ବିଳମ୍ବରେ ଦିଆଯାଇଥିଲା । ସକାଳୁ ବେଶପୋଷାକ ପିନ୍ଧି ରାଇଫଲ ଧରି ଧାଡ଼ିବାନ୍ଧି ପରୀକ୍ଷା ପାଇଁ ଛିଡ଼ା ହେଲା ବେଳକୁ ବାଟାଲିୟନ୍ ଅଲଗା ରୂପ ଧାରଣ କରିଥିଲା । ଗୁସେଭ୍ ଓ କୋର୍ଚ୍ଚ ଗିନ୍ ଉଭୟ ଏ ଶିକ୍ଷାର୍ଥୀ ତରୁଣମାନଙ୍କୁ ତାଲିମ ଦେବାରେ ବହୁ ସମୟ ଓ ପରିଶ୍ରମ ବିନିଯୋଗ କରିଥିଲେ ଓ ଦୃଢ଼ ନିଶ୍ଚିତ ଥିଲେ ଯେ, ତାଙ୍କ ୟୁନିଟ୍ ତାଲିମ ପରୀକ୍ଷାରେ କୃତକାର୍ଯ୍ୟ ହେବେ । ଆନୁଷ୍ଠାନିକ ତଦାରଖ ସରିଗଲା ପରେ ଶିକ୍ଷାର୍ଥୀମାନେ ପଡ଼ିଆରେ ନିଜ ନିଜର କ୍ରୀଡ଼ାକୌଶଳ ପ୍ରଦର୍ଶନ କଲେ । ଏତିକିବେଳେ ସୁନ୍ଦର ଚେହେରାର ମାଙ୍କଡ଼ ଖେଥାମୁହାଁ ଜଣେ କମାଣ୍ଡର ଆସି କୋର୍ଚ୍ଚ ଗିନ୍‌କୁ ତୀବ୍ରସ୍ୱରରେ କହିଲା :

"ତମେ ଘୋଡ଼ାରେ ଚଢ଼ିଛ କାହିଁକି ? ତାଲିମ ପାଉଥିବା ବାଟାଲିୟନ୍‌ମାନଙ୍କର କମାଣ୍ଡର ଓ କମିସାରମାନେ ଘୋଡ଼ା ଚଢ଼ିଯିବାକୁ ହକ୍‌ଦାର ନୁହନ୍ତି । ତମେ ତମ

ଘୋଡ଼ାକୁ ଅସ୍ତାବଲକୁ ନେଇଯାଅ ଓ ପାଦରେ ଗ୍ଲି ଯୋଗଦିଅ ।”

କୋର୍ଚ୍ଚାଗିନ୍ ଜାଣିଥିଲା ଯେ, ଘୋଡ଼ାରୁ ଓହ୍ଲାଇ ପାଦରେ ଗ୍ଲିଲେ ସେ ଏ ସମାରୋହରେ ଯୋଗ ଦେଇ ପାରିବ ନାହିଁ ଆଦୌ । କାରଣ ତା’ ପାଦଯୋଡ଼ିକ ତାକୁ କିଲୋମିଟରଟିଏ ରାସ୍ତା ମଧ୍ୟ ବହନ କରି ପାରିବେ ନାହିଁ । କିନ୍ତୁ ସେ ଏ ବଡ଼ପାଟିଆ ଚମଡ଼ା ବେଲ୍‌ଟପିନ୍ଧା କମାଣ୍ଡରକୁ କେମିତି ବୁଝାଇବ ?

“ପାଦରେ ଗ୍ଲି ମୁଁ ଯୋଗଦେଇ ପାରିବି ନାହିଁ ।”

“କାହିଁକି ପାରିବ ନାହିଁ ?”

ତାକୁ ଯେ କିଛି କୈଫିୟତ୍ ଦେବାକୁ ହେବ ସେକଥା ବୁଝିପାରି କୋର୍ଚ୍ଚାଗିନ୍ ଧୀର ଗଳାରେ କହିଲା :

“ମୋ ଗୋଡ଼ ଫୁଲିଯାଇଛି । ସପ୍ତାହେ କାଳ ପାଦରେ ଗ୍ଲିବା ଓ ଦୌଡ଼ିବା ମୋ ପକ୍ଷରେ ସମ୍ଭବ ନୁହେଁ । କିନ୍ତୁ ମୋତେ କହନ୍ତୁ କମ୍ରେଡ୍, ଆପଣ କିଏ ?”

“ପହିଲେ ମୁଁ ତମ ରେଜିମେଣ୍ଟର ମୁଖ୍ୟ । ଦ୍ୱିତୀୟରେ ମୁଁ ତମକୁ ଆଦେଶ ଦେଉଛି ଶେଷଥର ପାଇଁ ଘୋଡ଼ାରୁ ଓହ୍ଲାଇ ପଡ଼ିବା ପାଇଁ । ତମେ ଯଦି ପଙ୍ଗୁ ହୋଇଥାଅ, ତେବେ ସେନାବାହିନୀ ଛାଡ଼ି ଦିଅ ।”

ପାଭେଲ୍ ମୁହଁରେ ଗ୍ବୁକ ବାଜିଲା ଭଳି ଲାଗିଲା । ସେ ନିଜ ଲଗାମ ଦୋହଲାଇ ଦେଲା । ଗୁସେଭ୍ ତାକୁ ରୋକିନେଲା । କେତେ ମୁହୂର୍ତ୍ତ ପାଇଁ ତା’ର ଆହତ ପୌରୁଷ ଓ ଆତ୍ମସଂଯମ ଉପରେ ଆଧିପତ୍ୟ ବିସ୍ତାର କଲେ । ମାତ୍ର ପାଭେଲ୍ କୋର୍ଚ୍ଚାଗିନ୍ ଆଉ ସେ ଲାଲ ସେନା ସୈନିକ ନଥିଲା, ଯିଏ ଫୁଲଫାଙ୍କିଆ ହୋଇ ଗୋଟିଏ ୟୁନିଟ୍‌ରୁ ଆଉ ଗୋଟିଏ ୟୁନିଟ୍‌କୁ ବଦଳି ହେଉଥିବ । ସେ ଗୋଟିଏ ବାଟାଲିୟନ୍‌ର କମିସାର ଓ ତା’ର ନିଜ ବାଟାଲିୟନ୍ ତା’ ପଛରେ ଛିଡ଼ାହୋଇ ରହିଛନ୍ତି । ଆଦେଶ ଅବମାନନା କଲେ ତା’ ନିଜ ଲୋକଙ୍କ ଆଗରେ ସାମରିକ ଶୃଙ୍ଖଳା ସଂପର୍କରେ କି ଖରାପ ଏକ ଉଦାହରଣ ସେ ନ ଦେଖାଇବ ? ଏ ପଦମର୍ଯ୍ୟାଦା ଗର୍ବିତ ଗଧଟା ପାଇଁ ତ ତା’-ବାଟାଲିୟନ୍‌କୁ ସେ ଗଢ଼ି ନାହିଁ । ସେ ଘୋଡ଼ା ପାଆଦାନି ଉପରୁ ନିଜ ପାଦ ଖସାଇ ଓହ୍ଲାଇଲା ଏବଂ ଗଣ୍ଠିଗୁଡ଼ାକରେ ହେଉଥିବା ଅସହ୍ୟ ଯନ୍ତ୍ରଣା ସହିତ ଯୁଦ୍ଧ କରି କରି ଧୀର ପଦକ୍ଷେପରେ ଡାହାଣ କଡ଼କୁ ଆଗେଇଗଲା ।

ଗତ କିଛିଦିନ ଧରି ପାଗ ବେଶ୍ ଭଲ ଥିଲା । ବାହିନୀର କ୍ରୀଡ଼ା କସରତ ସରି ଆସୁଥାଏ । ପଞ୍ଚମ ଦିନକୁ ସୈନ୍ୟମାନେ ଶେପେଟୋଭ୍‌କା ଅଞ୍ଚଳ ଭିତରେ ପହଞ୍ଚିଲେ, ଯେଉଁଠାରେ କ୍ରୀଡ଼ା କସରତ ଶେଷ ହେବା ପାଇଁ ନିର୍ଦ୍ଦିଷ୍ଟ ହୋଇଥିଲା । ବେରେଜ୍‌ଦୋଭ୍ ବାଟାଲିୟନ୍‌କୁ ନିର୍ଦ୍ଦେଶ ଦିଆଯାଇଥିଲା କ୍ରୁମେନ୍ତୋଭିଚି ଗ୍ରାମ ଆଡୁ ଆସି ଷ୍ଟେସନ୍‌କୁ ଦଖଲ କରିବା ପାଇଁ ।

କୋର୍ଚ୍ଚାଗିନ୍ ନିଜ ଜନ୍ମଭୂମିରେ ପହଞ୍ଚି ଷ୍ଟେସନ୍ ଆଡ଼କୁ, ଯେତେ ଆଡ଼ୁ ରାସ୍ତା ଅଛି ସବୁ ଗୁସେଭ୍‌କୁ ବୁଝାଇଦେଲା । ସାରା ବାହିନୀଟି ଦୁଇ ଦଳରେ ବିଭକ୍ତ ହୋଇଗଲେ ଓ

ବିଛେଇ ହୋଇ ଆଗେଇ, ତାଙ୍କ ଶତ୍ରୁପକ୍ଷକୁ ଭେଦ କରି ଆନନ୍ଦ ଧ୍ୱନି ମଝିରେ ଷ୍ଟେସନ୍‌ରେ ପହଞ୍ଚିଗଲେ । ତାଙ୍କର ଏହି କାମ ସବୁଠାରୁ ଅଧିକ ପ୍ରଶଂସନୀୟ ହେଲା । ବେରେଜ୍‌ଦୋଭ୍ ବାହିନୀ ଷ୍ଟେସନ୍ ଦଖଲ କରି ରହିଲେ ଓ ଯେଉଁ ବାହିନୀ ତାକୁ ରକ୍ଷା କରିବାର ଖେଳ ଦେଖାଉଥିଲେ, ସେମାନେ ଜଙ୍ଗଲକୁ ପଛଘୁଞ୍ଚା ଦେଇ ଗ୍ରହଣ କରିନେଲେ ଯେ, ତାଙ୍କର ଅଧାଅଧି ଲୋକ ଏ ଲଢ଼େଇରେ ମରିଯାଇଛନ୍ତି ।

ବାଟାଲିୟନ୍‌ର ଅଧାକୁ କମାଣ୍ଡ ଦେଉଥିଲା କୋର୍ଚ୍ଚାଗିନ୍ । ସେ ତା' ଲୋକଙ୍କୁ ରାସ୍ତା ମଝିରେ ତୃତୀୟ କମ୍ପାନୀର କମାଣ୍ଡର ଓ ରାଜନୈତିକ ଶିକ୍ଷକ ସହିତ ଛିଡ଼ା ହୋଇଥିଲା ବେଳେ ଲାଲ ସେନାର ଜଣେ ସୈନିକ ତା' ଆଡ଼କୁ ଦୌଡ଼ି ଆସୁଥିବାର ଦେଖିଲା ।

"କମ୍ରେଡ୍ କମିସାର, ବାଟାଲିୟନ୍ କମାଣ୍ଡର ଜାଣିବାକୁ ଚାହୁଁଛନ୍ତି ମେସିନ୍‌ଗନ୍ ଚାଳକମାନେ ରେଳବାଇ ଛକରେ ଅଛନ୍ତି କି ନାହିଁ ବୋଲି । କମିଶନ୍ ଏବେ ଇଆଡ଼କୁ ଆସୁଛନ୍ତି", ସେ କହିଲା ।

ପାଭେଲ୍ ଓ ତା' ସହିତ କମାଣ୍ଡରମାନେ ଗୋଟିଏ ଛକ ଉପରକୁ ଗଲେ ।

ରେଜିମେଣ୍ଟର ଅଧ୍ୟକ୍ଷ ଓ ତାଙ୍କର ସହକାରୀ ମଧ୍ୟ ସେଠାରେ ଥିଲେ । ଗୁସେଭ୍‌କୁ ତା'ର ସଫଳତା ପାଇଁ ଅଭିନନ୍ଦନ ଜଣାହେଉଥିଲା । ତା'ର ବିପକ୍ଷ ଦଳଙ୍କର ପ୍ରତିନିଧିମାନଙ୍କର ମୁହଁ ଶୁଖିଯାଇଥିଲା ଓ ସେମାନେ ନିଜ ବିଷୟରେ କିଛି କହୁ ନଥିଲେ ।

ଗୁସେଭ୍ କହିଲା, "ଏଥି ପାଇଁ ମୋର ପ୍ରକୃତରେ ସମ୍ମାନ ପାଇବା କଥା ନୁହଁ । କୋର୍ଚ୍ଚାଗିନ୍ ହିଁ ସତରେ ରାସ୍ତା ଦେଖାଇଛି । କାରଣ ସେ ଏଇ ଅଞ୍ଚଳର ଲୋକ ।"

ସେନାନୀର ମୁଖ୍ୟ ପାଭେଲ୍ ଆଡ଼କୁ ଆଗେଇ ଆସି ନାକଟେକି ବ୍ୟଙ୍ଗ କରି କହିଲେ, "ତା'ହେଲେ କମ୍ରେଡ୍ ତମେ ତ ଖାଲି ଦୌଡ଼ି ପାରୁଛ ? ଘୋଡ଼ାଟା କେବଳ ଦେଖେଇହୋଇ ନେଇଥିଲ ବୋଲି ମୁଁ ଭାବୁଛି ?" ସିଏ ଆଉ କ'ଣ କହିବାକୁ ଯାଉଥିଲା, ମାତ୍ର କୋର୍ଚ୍ଚାଗିନ୍‌ର ମୁଖଭଙ୍ଗୀକୁ ଚାହିଁ ନୀରବ ହୋଇଗଲା ।

ମୁଖ୍ୟ ଅଧିନାୟକ ଗଲାପରେ କୋର୍ଚ୍ଚାଗିନ୍ ଗୁସେଭ୍‌କୁ ପଚାରିଲା, "ତମେ ତା ନାଁ କ'ଣ ଜାଣିଛ କି ?"

ତା' କାନ୍ଧ ଥାପୁଡ଼େଇ ଗୁସେଭ୍ କହିଲା, "ତମେ ତେବେ ସେ ବଦ୍‌ମାସଟାର କଥା ପ୍ରତି କାନ ଦିଅ ନା । ତା' ନାଁ ବୋଧହୁଏ ଚୁଝାନିନ୍ । ପୁରୁଣା ଜାର୍‌ବାହିନୀର ଲୋକ ବୋଧହୁଏ ।"

ସେଦିନ ପାଭେଲ୍ ଅନେକଥର ଚିନ୍ତା କରିଛି ମନେ ପକାଇବାକୁ, କୋଉଠି ଆଗରୁ ସେ ଏ ନାଁଟା ଶୁଣିଥିଲା ବୋଲି । ହେଲେ ଆଦୌ ମନେ ପଡ଼ିଲା ନାହିଁ ତା'ର ।

* * *

କ୍ରୀଡ଼ାନୈପୁଣ୍ୟ ପ୍ରଦର୍ଶନ ଶେଷହେଲା । ଅନେକ ପ୍ରଶଂସା ପାଇ ବାଟାଲିୟନ୍ ବେରେଜ୍‌ଦୋଭ୍‌କୁ ଫେରିଲା । ଭୟଙ୍କର ପରିଶ୍ରାନ୍ତ ହୋଇ ସମସ୍ତଙ୍କ ପଛରେ ଦିନେ ଦୁଇ

ଦିନ ପାଇଁ ମାଙ୍କ ଘରେ ରହିଗଲ କୋର୍ଚ୍ଚାଗିନ୍ । ପୂରା ଦିନ ଦୁଇ ଦିନ ପାଇଁ କୋଡ଼ିଏ ଘଣ୍ଟା ଯାକ ସେ ଶୋଇଛି । ତୃତୀୟ ଦିନ ଇଂଜିନ୍ ସେଡ୍‌କୁ ଗଲ ଆର୍ତେମ୍‌କୁ ଦେଖା କରିବା ପାଇଁ । ଧୂଆଁରେ କଳା ପଡ଼ିଯାଇଥିବା ମଳିଆ ଏ ସେଡ୍ ଭିତରକୁ ଆସିଲ ପରେ ପାଭେଲ୍‌ର ମନେ ହେଉଥାଏ ଯେମିତି ସେ ନିଜ ଘରକୁ ଆସିଛି । କ୍ଷୁଧାର୍ତ୍ତ ଭଳି ସେ କୋଇଲ ଧୂଆଁ ପିଇଗଲ ନାସାରନ୍ଧ୍ରରେ । ଏଇଠିକା ଲେକ ସେ, ଏହିଠାରେ ହିଁ ସେ ରହିବାକୁ ଚାହୁଁଥିଲ । ତାକୁ ଲଗିଲ ଜୀବନର ସବୁଠାରୁ ପ୍ରିୟ ବସ୍ତୁକୁ ସତେ ଯେମିତି ହରାଇଛି ସେ । କେତେ ମାସ ହେଲଣି ସେ ଗୋଟାଏ ରେଳ ଇଂଜିନ୍‌ର ଧ୍ୱନି ଶୁଣି ନାହିଁ କାନରେ । କିଛି ଦିନ ତୀରଭୂମିରେ ବିତାଇଲ ପରେ, ଜାହାଜୀ ଯେପରି ସୀମାହୀନ ଦିଗନ୍ତ ବିସ୍ତୃତ ସାଗରର ନୀଳ ଜଳରାଶି ଦେଖିବାକୁ ଉଛନ୍ନ ହୋଇଯାଏ, ଠିକ୍ ସେମିତି ଅତୀତର କୋଇଲ ଯୋଗାଇବା ବାଳକ ଓ ବିଜୁଳୀ ମିସ୍ତ୍ରୀ ତା' ନିଜର ପରିଚିତ ପରିବେଶକୁ ଦେଖିବାକୁ ଉତ୍କଣ୍ଠିତ ହୋଇ ରହିଥିଲ । ଅନେକ ସମୟ ପର୍ଯ୍ୟନ୍ତ ନିଜକୁ ଏ ଚିନ୍ତାରୁ ମୁକ୍ତ କରି ପାରିଲ ନାହିଁ ସେ । ଖୁବ୍ ଅଳ୍ପ ସମୟ ପାଇଁ ନିଜ ଭାଇ ସହିତ କଥାବାର୍ତ୍ତା କଲ ପାଭେଲ୍ । ଆର୍ତେମ୍‌ର କପାଳରେ ନୂଆ ଏକ କୁଞ୍ଚ ଦିଶୁଛି । ଦିଓଟି ପିଲର ବାପ ହେଲଣି ସେ । ନିଶ୍ଚିତ ଭାବରେ ଆର୍ତେମ୍‌ର ଦିନ ବେଶ୍ କଷ୍ଟରେ ବିତୁଛି ଆଜିକାଲି । ସିଏ ନିଜେ ମୁହଁଖୋଲି ଏ ବିଷୟରେ ଅବଶ୍ୟ କିଛି କହିଲ ନାହିଁ । ମାତ୍ର ପାଭେଲ୍ ବୁଝି ପାରିଲ ।

ଘଣ୍ଟାଏ କି ଦି'ଘଣ୍ଟା ପର୍ଯ୍ୟନ୍ତ ପାଖାପାଖି କାମ କଲେ ସେମାନେ । ତା'ପରେ ବିଦାୟ ମାଗି ଆସିଲ ପାଭେଲ୍ ।

ରେଳବାଇ ଛକ ନିକଟରେ ନିଜ ଘୋଡ଼ାର ଲଗାମ ଟାଣି ଅନେକ ସମୟ ପର୍ଯ୍ୟନ୍ତ ଷ୍ଟେସନ୍‌କୁ ଚାହିଁ ରହିଲ ପାଭେଲ । ତା' ପରେ ଚାବୁକ ମାରି ଘୋଡ଼ା ଝପଟାଇ ଜଙ୍ଗଲ ଭିତରେ ପଡ଼ିଥିବା ରାସ୍ତା ଆଡ଼କୁ ଆଗେଇଗଲ ।

ଜଙ୍ଗଲ ରାସ୍ତା ଏବେ ସଂପୂର୍ଣ୍ଣ ନିରାପଦ ହୋଇଗଲଣି । ବଡ଼ ଛୋଟ ସବୁ ଡକାଏତଙ୍କୁ ନିପାତ କରିସାରିଲେଣି ବଲ୍‌ଶେଭିକ୍‌ମାନେ ଓ ସେ ଅଞ୍ଚଳମାନଙ୍କରେ ଥିବା ଗାଁ ସବୁ ଶାନ୍ତିରେ କାଳ କାଟୁଛନ୍ତି ଏବେ ।

ପ୍ରାୟ ଦ୍ୱିପ୍ରହର ବେଳକୁ ବେରେଜ୍‌ଦୋଭ୍‌ରେ ପହଞ୍ଚିଲ ପାଭେଲ୍ । ଜିଲ୍ଲା କମିଟିର ପ୍ରାଙ୍ଗଣରେ ଲିଦା ପୋଲେଭିଖ୍ ତାକୁ ଭେଟିଲ :

"ସ୍ୱାଗତମ୍ !" ମନଖୋଲି ହସହସି ଉଷ୍ମ ଅଭିବାଦନ ଜଣାଇଲ ସେ । "ଅନେକ ଦିନ ହେଲ ତମେ ଅନୁପସ୍ଥିତ ଥିବାରୁ ଆମକୁ ଭାରି ଖରାପ ଲଗୁଥିଲ ।" ତା' କାନ୍ଧରେ ଦୁଇ ହାତରଖି ପାଭେଲ୍ ସହିତ ଘର ଭିତରକୁ ପଶିଲ ଲିଦା ।

"ରାଜ୍‌ଭାଲିଖିନ୍ କାହିଁ ?" ନିଜ କୋଟ୍ କାଢ଼ୁ କାଢ଼ୁ ଲିଦାକୁ ପଚାରିଲ ପାଭେଲ୍ ।

"ମୁଁ ଜାଣି ନାହିଁ", ଦ୍ୱିଧାଗ୍ରସ୍ତ ଭାବରେ ଉତ୍ତର ଦେଲ ଲିଦା । "ହଁ ହଁ, ମନେ ପଡ଼ିଲ, ସିଏ କହୁଥିଲ ଆଜି ସକାଳୁ ଯେ ତମ ଅନୁପସ୍ଥିତିରେ ସମାଜବିଜ୍ଞାନ କ୍ଲାସ୍

ନେବା ପାଇଁ ସ୍କୁଲକୁ ଯିବ ସେ । ସିଏତ କହୁଥିଲା ସେଇଟା ତା' କାମ, ତମର ନୁହେଁ ।"

ପାଭେଲ୍ ପାଇଁ ଏଇଟା ଭୟଙ୍କର ଅପ୍ରୀତିକର ସମ୍ବାଦ । କେବେହେଲେ ସେ ରାଜ୍‌ଭାଲିଖିନ୍‌କୁ ଶ୍ରଦ୍ଧା କରୁନଥିଲା । "ଆରେ ! ସ୍କୁଲରେ ତ ସିଏ ଯାଇ କ'ଣ ବୋଲି କ'ଣ ପଢ଼ାଇ ଦେବ", ବିରକ୍ତ ହୋଇ ସେ ଭାବୁଥିଲା । ମାତ୍ର ଲିଦାକୁ କହିଲା :

"ଛାଡ଼ ତା' କଥା । କହିବଟି ଏଠାର ସବୁ ଆଉ ଭଲ ଖବର କ'ଣ ? ତମେ ଗ୍ରୁଶେଭ୍‌କାକୁ ଯାଇଥିଲ କି ନାହିଁ ? ସେଠା ପିଲମାନଙ୍କର ହାଇସ୍କୁଲ କ'ଣ ?"

ଲିଦା ତାକୁ ସବୁ ଖବରାଖବର ଦେଉଥିଲା ବେଳେ ପାଭେଲ୍ ଗଦିମୋଡ଼ା ଚଉକିରେ ବସି ନିଜର ବିନ୍ଧୁଥିବା ଗୋଡ଼ ଦିଇଟାକୁ ଆଶ୍ରାଦେଇ ରଖିଥାଏ ।

"ପନ୍ଦରଦିନ ରାକିଟିନା ପାର୍ଟିର ପ୍ରାର୍ଥୀସଭ୍ୟା ଭାବରେ ଗୃହୀତ ହୋଇଛି । ସେଥିରେ ଆମର ପୋଦ୍‌ଦୁବେଝ ସେଲ୍ ବେଶ୍ ଟାଣୁଆ ହୋଇଯିବ । ରାକିଟିନା ବେଶ୍, ଭଲ ଝିଅଟିଏ । ମୋତେ ତାକୁ ଭାରି ଭଲ ଲାଗେ । ଶିକ୍ଷକମାନେ କ୍ରମଶଃ ଆମ ପକ୍ଷକୁ ଆସୁଛନ୍ତି । ସେମାନଙ୍କ ଭିତରୁ କେତେକ ତ ପୂରାପୂରି ଆମର ହୋଇଗଲେଣି ।"

କୋର୍ଚ୍ଚାଗିନ୍ ଓ ଜିଲ୍ଲା ପାର୍ଟି କମିଟିର ନୂଆ ସଂପାଦକ ଲିଟିକୋଭ୍‌ଙ୍କର ପ୍ରାୟ ଦେଖା ସାକ୍ଷାତ୍ ହୁଏ ଲିସିତ୍ସିନ୍‌ଙ୍କ ଘରେ । ସନ୍ଧ୍ୟାବେଳେ ତିନିହେଁ ବସି ଗୋଟାଏ ବଡ଼ ଟେବୁଲ ଚାରିକଡ଼େ ଘେରି ସକାଳ ଯାଏ ପଢ଼ନ୍ତି ।

ଲିସିତ୍ସିନ୍‌ଙ୍କ ସ୍ତ୍ରୀ ଓ ଭଉଣୀ ଶୋଇଥିବା ପାଖ ଘରଟାର କବାଟ କିଳା ହୋଇଥାଏ ଓ ତିନି ଜଣଯାକ ଗୋଟାଏ ବହି—ପୋକ୍ରୋଭ୍‌ସ୍କିଙ୍କ 'ରୁଷ୍ ଇତିହାସ' ଉପରେ ଝୁଙ୍କି ପଡ଼ି ନିମ୍ନ ସ୍ୱରରେ ଆଲୋଚନା କରନ୍ତି । ଲିସିତ୍ସିନ୍‌କୁ କେବଳ ରାତିରେ ପଢ଼ିବା ପାଇଁ ସମୟ ମିଳେ । ବେଳେ ବେଳେ ଗାଁମାନଙ୍କର ଗସ୍ତରୁ ଫେରିଆସି କୋର୍ଚ୍ଚାଗିନ୍ ହତାଶାର ସହିତ ଦେଖେ ଯେ, ତା' ସାଙ୍ଗମାନେ ତା'ଠାରୁ ଅନେକ ଆଗେଇ ଗଲେଣି ପଢ଼ାପଢ଼ିରେ ।

ଦିନେ ଜଣେ ସମ୍ବାଦବାହକ ଆସି ଜଣାଇଲା ଯେ, ଗତ ରାତିରେ ଅଜ୍ଞାତ ଆତତାୟୀମାନଙ୍କ ଦ୍ୱାରା ଗ୍ରୀଶୁଟ୍‌କା ଖୋରୋଭୋଦ୍‌କୋ ଖୁନ୍ ହୋଇଛି । ଶୁଣିଲାମାତ୍ରେ ପାଭେଲ୍ ଅଫିସ୍ ପାହାଚ ଅତିକ୍ରମ କରି ଚାଲିଲା, ତା' ଗୋଡ଼ର ଯନ୍ତ୍ରଣା ଭୁଲିଯାଇ । ଘୋଡ଼ା ଫିଟାଇ ଯେତେ ଶୀଘ୍ର ପାରେ ସୀମାନ୍ତ ଆଡ଼କୁ ଝପଟାଇଲା ।

ଗ୍ରୀଶୁଟ୍‌କାର ଶବ ଗୋଟିଏ ଟେବୁଲ ଉପରେ, ଗ୍ରାମ ସୋଭିଏତ୍ ଅଫିସ୍‌ଘରେ ଡାଳପତ୍ର ଘୋଡ଼ାଘୋଡ଼ି ହୋଇ ପଡ଼ିଛି । ତା' ଉପରେ ଏକ ଲାଲ ପତାକା ଘୋଡ଼ାଇ ଦିଆଯାଇଛି । ସୀମାନ୍ତରକ୍ଷୀ ଜଣେ ଓ ଜଣେ କମ୍‌ସୋମୋଲ୍ ସଭ୍ୟ ଦୁଆର ଜଗି ଛିଡ଼ା ହୋଇଛନ୍ତି, କର୍ତ୍ତୃପକ୍ଷ ନଆସିଲା ପର୍ଯ୍ୟନ୍ତ ଭିତରକୁ କାହାକୁ ଛାଡ଼ି ନଦେଇ । କୋର୍ଚ୍ଚାଗିନ୍ ସେ ଘର ଭିତରକୁ ପ୍ରବେଶ କଲା । ଟେବୁଲ ନିକଟକୁ ଯାଇ ପତାକା ଟେକିଦେଲା ।

ମୃତ୍ୟୁର ଯନ୍ତ୍ରଣାରେ ଗ୍ରୀଶୁଟ୍‌କାର ଆଖି ଦୁଇଟି ବିସ୍ଫାରିତ, ମୁହଁ ଶେଥା ହୋଇ ଯାଇଛି, ମୁଣ୍ଡ ଗୋଟାଏ କଡ଼କୁ ଗଡ଼ି ପଡ଼ିଛି । ପାଇନ୍ ଡାଳଟାରେ ତା' ମୁଣ୍ଡର

ପଛକଡ଼େ ଯେଉଁଠି କୌଣସି ଦାଢ଼ୁଆ ଅସ୍ତ୍ରରେ ଆଘାତ ହୋଇଛି, ସେ ଜାଗାଟା ଘୋଡ଼ାଇ ହୋଇଯାଇଛି ।

କିଏ ଏ ତରୁଣ ଜୀବନ ନେଇ ? ବିଧବା ଖୋରୋଭୋଦ୍‌କୋଙ୍କର ଗୋଟିଏ ବୋଲି ପୁଅ ସେ । ବାପା ତା'ର ଜଣେ ମିଲ୍ ଶ୍ରମିକ ଓ ଦରିଦ୍ର କୃଷକ ସମିତିର ସଭ୍ୟ । ବିପ୍ଳବ ପାଇଁ ଯୁଦ୍ଧ କରି ଜୀବନ ଦେଇଛି ସେ ।

ଏକମାତ୍ର ପୁତ୍ରର ମୃତ୍ୟୁରେ ଅଧୈର୍ଯ୍ୟହୋଇ ବୁଢ଼ୀ ମା ଶଯ୍ୟାଶାୟୀ ହୋଇପଡ଼ିଛି । ପଡ଼ୋଶୀମାନେ ଆସି ତାଙ୍କୁ ବଞ୍ଚାଇବାକୁ ଚେଷ୍ଟା କରୁଛନ୍ତି । ପୁଅ ତା'ର ଶୀତଳ ମୃତ୍ୟୁର ସ୍ପର୍ଶରେ ଶୋଇ ରହିଛି, ନିଜ ଅକାଳ ମୃତ୍ୟୁର ଏବେ ବି ଗୋପନୀୟ ତଥ୍ୟକୁ ଲୁଗ୍ଇ ରଖି ।

ଗ୍ରୀଶୁଟ୍‌କାର ମୃତ୍ୟୁ ସାରା ଗାଁକୁ ବିଚଳିତ ବିକ୍ଷୁବ୍ଧ କରି ପକାଇଥାଏ । ତରୁଣ କମ୍‌ସୋମୋଲ୍‌ର ନେତା ଓ ଦରିଦ୍ର କୃଷକମାନଙ୍କର ସହାୟକ ଗ୍ରୀଶୁଟ୍‌କାର ଶତ୍ରୁ ଅପେକ୍ଷା ବନ୍ଧୁଙ୍କର ସଂଖ୍ୟା ଅଗଣିତ ।

ତା' ମୃତ୍ୟୁରେ ଅତି ବିଚଳିତ ହୋଇ ରାକିଟିନା ନିଜ ବଖରାରେ ବସି ବାହୁନି ବାହୁନି କାନ୍ଦୁଥିଲା ଦୁଃଖରେ ଭାଙ୍ଗିପଡ଼ି । କୋର୍ଶୁଗିନ୍ ସେ ଘର ଭିତରକୁ ପଶିଲା ବେଳକୁ ଆଖି ଟେକି ଚାହିଁଲା ନାହିଁ ମଧ୍ୟ ସେ ।

"ଆଚ୍ଛା ରାକିଟିନା, କିଏ ତାକୁ ହତ୍ୟା କରିଥାଇପାରେ ବୋଲି ଭାବୁଛ ତମେ ?" କର୍କଶ ଗଳାରେ ପଚାରିଲା କୋର୍ଶୁଗିନ୍, ଗୋଟାଏ ଚଉକିରେ ବସିପଡ଼ି ।

"ସେ ମିଲ୍‌ର ଦଳଟା ଛଡ଼ା ଆଉ କେହି ନୁହନ୍ତି । ସେ କଳାବଜାରୀଙ୍କର କଣ୍ଟା ଭଳି ଥିଲା ଗ୍ରୀଶୁଟ୍‌କା ।"

ଗ୍ରୀଶୁଟ୍‌କା ଖୋରୋଭୋଦ୍‌କୋର ସତ୍‌କାର କ୍ରିୟାରେ ଦୁଇଟି ଗାଁର ସବୁଯାକ ଲୋକ ଯୋଗଦେଲେ । କୋର୍ଶୁଗିନ୍ ନିଜ ବାଟାଲିୟନ୍‌କୁ ନେଇଆସିଲା ଓ ସାରା କମ୍‌ସୋମୋଲ୍ ସଂଗଠନ ଆସିଲେ ତାଙ୍କର ପ୍ରିୟ କମ୍ରେଡ୍‌କୁ ଶେଷ ଅଭିବାଦନ ଜଣାଇବା ପାଇଁ । ଗାଭ୍ରିଲୋଭ୍ ଦୁଇ ଶହ ପଚାଶ ଜଣ ସୀମାନ୍ତ ରକ୍ଷୀଙ୍କର ଏକ କମ୍ପାନୀ ଆଣି ଗ୍ରାମ ସୋଭିଏତ୍‌ର ଅଗଣାରେ ଜମାକଲା । ସାମରିକ କାଇଦାରେ ଶବ ଶୋଭାଯାତ୍ରାର ବିଷଣ୍ଣ ସୁରର ତାଳେ ତାଳେ କପଡ଼ାରେ ଢଙ୍କା ଶବାଧାରଟିକୁ ଆଣି ବଲ୍‌ଶେଭିକ୍ ପାର୍ଟିର ମୁକ୍ତିଯୁଦ୍ଧରେ ଶହୀଦ ହୋଇଥିବା ଅନ୍ୟମାନଙ୍କର କବର ନିକଟରେ ପୂର୍ବରୁ ଖୋଳା ହୋଇଥିବା ସ୍ଥାନରେ କବର ଦିଆଗଲା ।

ଗ୍ରୀଶୁଟ୍‌କାର ମୃତ୍ୟୁରେ ଦୃଢ଼ ଐକ୍ୟବଦ୍ଧ ହେଲେ ସମସ୍ତ କୃଷକ ଶ୍ରମିକ, ଯେଉଁମାନଙ୍କ ପାଇଁ ସେ ପ୍ରାଣବଳୀ ଦେଇଥିଲା । ତରୁଣ କୃଷିଜୀବୀ ଓ ଶ୍ରମଜୀବୀମାନେ କମ୍‌ସୋମୋଲ୍ ପତାକା ତଳେ ଏକଜୁଟ ହେବା ପାଇଁ ଶପଥ ନେଲେ । ସେଠାରେ ଯେଉଁମାନେ ଭାଷଣ ଦେଲେ, ସେମାନେ ପ୍ରତ୍ୟେକ ଦୃଢ଼ ଦାବୀ ଜଣାଇଲେ ଖୁଣୀମାନଙ୍କୁ ତୁରନ୍ତ ଖୋଜି କାଢ଼ି,

ସେମାନଙ୍କୁ ପ୍ରିୟ କମ୍ରେଡ୍‌ର କବର ନିକଟରେ ଖୋଲା ବିଚାର କରିବା ପାଇଁ, ଯେମିତି ସମସ୍ତେ ଜାଣି ପାରନ୍ତି ଶତ୍ରୁ କିଏ ।

ତିନିଟି ତୋପ ଧ୍ୱନି ହେଲା । ନୂଆ ପାଇନ୍ ଗଛଡାଳ କବର ସ୍ଥାନରେ ଦିଆଗଲା । ସେହି ସନ୍ଧ୍ୟାରେ ସେଲ୍ ବୈଠକରେ ନୂଆ ସଂପାଦକ ଭାବରେ ରାକିଚିନାକୁ ନିର୍ବାଚିତ କରାଗଲା । ସୀମାନ୍ତ ଘାଟୀରୁ ଏକ ସଂବାଦ କୋର୍ଚ୍ଚଗିନ ନିକଟରେ ପହଞ୍ଚିଲା ଯେ, ସେମାନେ ଘାତକମାନଙ୍କର ପିଛା କରିଛନ୍ତି ।

ସପ୍ତାହେ ପରେ, ଜିଲ୍ଲା ସୋଭିଏତ୍‌ମାନଙ୍କର ଦ୍ୱିତୀୟ ଅଧିବେଶନ ସହରର ପ୍ରେକ୍ଷାଳୟରେ ବସିଲା ବେଳେ, ଲିସିତ୍ସିନ୍ ଗମ୍ଭୀର ଓ ଦୃପ୍ତ କଣ୍ଠରେ ଘୋଷଣା କଲା :

"କମ୍ରେଡ୍‌ଗଣ, ମୁଁ ଆନନ୍ଦର ସହିତ ଘୋଷଣା କରୁଛି ଯେ, ଗତବର୍ଷ ଭିତରେ ଆମେ ଅନେକ କାମ କରି ପାରିଛେ । ଜିଲ୍ଲାସାରା ସୋଭିଏତ୍ ଶାସନ ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇଛି । ଡକାଏତିର ମୂଳୋତ୍ପାଟନ ଘଟିଛି । ଚୋରା ବେପାର ମଧ୍ୟ ନିଃଶେଷିତ ହୋଇଛି । ଗାଁମାନଙ୍କରେ ଦରିଦ୍ର ଜନସାଧାରଣ, କୃଷକମାନଙ୍କର ଦୃଢ଼ ସଂଗଠନ ସ୍ଥାପିତ ହୋଇଛି । କମ୍‌ସୋମୋଲ୍ ସଂଗଠନ ପୂର୍ବାପେକ୍ଷା ଦଶଗୁଣ ଶକ୍ତିଶାଳୀ ହୋଇଛି ଏବଂ ପାର୍ଟି ସଂଗଠନ ମଧ୍ୟ ବ୍ୟାପ୍ତ ହୋଇଛି । ପୋଦ୍‌ଦୁବେଟ୍ସ ଗାଁର ଧନୀମାନଙ୍କର ଶେଷ ଆକ୍ରମଣ, ଯେଉଁଥି ପାଇଁ ଆମର ପ୍ରିୟ କମ୍ରେଡ୍ ଖୋରୋଭୋଦ୍‌କୋଙ୍କୁ ଜୀବନ ଦେବାକୁ ପଡ଼ିଥିଲା, ତାହା ଧରାପଡ଼ିଛି । ଖୁଣୀମାନେ ଅର୍ଥାତ୍ ମିଲ୍ ମାଲିକ ଓ ତା' ଜୋଇଁ ଗିରଫ ହୋଇଛନ୍ତି ଓ ଆଉ କିଛି ଦିନ ପରେ ଆଞ୍ଚଳିକ କୋର୍ଟ ହାତରେ ତାଙ୍କର ବିଚାର କରାଯିବ । ଗ୍ରାମବାସୀମାନେ ଦାବୀ ଜଣାଇଛନ୍ତି ଯେ, ଏହି କଂଗ୍ରେସ୍ ଖୁଣୀ ଡକାଏତ ସନ୍ତ୍ରାସବାଦୀମାନଙ୍କୁ ପ୍ରାଣଦଣ୍ଡ ଦିଆଯାଉ ବୋଲି ଦାବୀ ଜଣାଇ ଏକ ପ୍ରସ୍ତାବ ଗ୍ରହଣ କରୁ ।"

ସମର୍ଥନସୂଚକ ଉଲ୍ଲାସର ଝଡ଼ରେ ସାରା ହଲ୍‌ଟା କଂପି ଉଠିଲା ।

"ସୋଭିଏତ୍ ଶାସନର ଶତ୍ରୁମାନେ ନିପାତ ହୁଅନ୍ତୁ ! ସେଇ କଥା ହେଉ !"

ଗୋଟିଏ ପାଖର ପ୍ରବେଶଦ୍ୱାର ବାଟେ ଲିଦା ପୋଲେଭିଖ୍ ପ୍ରବେଶ କଲା ଓ ପାଭେଲ୍‌କୁ ଡାକିଲା ମୁଣ୍ଡ ଟୁଙ୍ଗାରି ।

ବାହାରେ ବାରଣ୍ଡା ଉପରେ ସେ ପାଭେଲ୍ ହାତକୁ "ଜରୁରୀ" ଲେଖା ହୋଇଥିବା ଏକ ଲଫାପା ବଢ଼ାଇଦେଲା ।

"କମ୍‌ସୋମୋଲ୍‌ର ବେରେଜ୍‌ଦୋଭ୍ ଜିଲ୍ଲା କମିଟିକୁ ଏହା ଲେଖାଯାଉଛି ଏବଂ ଏହାର ଏକକତା ନକଲ ପାର୍ଟି ଜିଲ୍ଲା କମିଟିକୁ ଦିଆଯାଇଛି । ଆଞ୍ଚଳିକ କମିଟି ସିଦ୍ଧାନ୍ତ ଅନୁଯାୟୀ କମ୍ରେଡ୍ କୋର୍ଚ୍ଚଗିନ୍ ଜିଲ୍ଲା କମିଟିରୁ ଆଞ୍ଚଳିକ କମିଟିକୁ ଫେରି ଆସିବେ, ଦାୟିତ୍ୱପୂର୍ଣ୍ଣ କମ୍‌ସୋମୋଲ୍ କାର୍ଯ୍ୟର ଭାର ନେବା ପାଇଁ ।"

ଗତବର୍ଷ କାମ କରିଥିବା ଜିଲ୍ଲାରୁ ବିଦାୟ ନେଲା ପାଭେଲ୍ । ପାର୍ଟିର ଜିଲ୍ଲା କମିଟିର ଗତ ବୈଠକରେ ଦୁଇଟିମାତ୍ର ବିଷୟ ଆଲୋଚନା ପାଇଁ ଥିଲା : (୧) କମ୍ରେଡ୍

କୋମ୍‌ଗିନ୍‌ଙ୍କୁ ପାର୍ଟି ସଭ୍ୟପଦକୁ ଆଣିବା, (୨) ଜିଲ୍ଲା କମ୍‌ସୋମୋଲ୍ ସଂପାଦକ ପଦରୁ ଅବ୍ୟାହତି ନେଇପରେ ତାଙ୍କ କାଗଜପତ୍ରକୁ ଠିକ୍‌ଠାକ୍ କରି ସତକ ଦେବା ।

ଲିସିହିନ୍ ଓ ଲିଦା ପାଭେଲ୍‌ର ହାତ ଘପ ଦେଇ ଗଭୀର ସ୍ନେହରେ ତାକୁ ଆଲିଙ୍ଗନ କଲେ । ଘୋଡ଼ାଟି ଅଗଣାରୁ ବାହାରି ରାସ୍ତା ଉପରକୁ ଆସିଲା ମାତ୍ରେ ବିଦାୟ ସମ୍ମାନ ଜଣାଇବା ପାଇଁ ବାରଟି ପିସ୍ତଲ୍ ଫୁଟି ଉଠିଲା ।

# ପଞ୍ଚମ ପରିଚ୍ଛେଦ

ବହୁ ଆୟାସରେ ଗୋଟିଏ ଟ୍ରାମ୍‌କାର୍ ଫୁନ୍‌ଦୁକ୍‌ଲେୟେଭ୍‌ସାୟା ଷ୍ଟ୍ରିଟ୍‌ର ଉଠାଣି ଉପରକୁ ଚଢ଼ି ଚଢ଼ି ଯାଉଥିଲା । ଗାଡ଼ିର ମୋଟରଗୁଡ଼ାକ ସେ ଆୟାସ ଫଳରେ ଗୁମୁରି ଉଠୁଥିଲା । ଅପେରା ଗୃହ ନିକଟରେ ଅଟକିଲା ଟ୍ରାମ୍‌ଟି ଓ ଦଳେ ତରୁଣତରୁଣୀ ଆନନ୍ଦ ଶବ୍ଦ କରି ଓହ୍ଲାଇଗଲେ ସେଠାରେ । ଟ୍ରାମ୍‌ଟି ପୁଣି ଚାଲିବାକୁ ଆରମ୍ଭ କଲା ।

"ଆମେ ଏଥର ଆଗେଇବା ଟିକିଏ, ନହେଲେ ନିଶ୍ଚୟ ଆମର ଡେରି ହୋଇଯିବ", ପାନ୍‌କ୍ରାତୋଭ୍ ଅନ୍ୟ ସାଥୀମାନଙ୍କୁ କହିଲା ।

ଥିଏଟରର ଠିକ୍ ଦୁଆର ମୁହଁରେ ଓକୁନେଭ୍ ସେମାନଙ୍କ ସହ ମିଳିତ ହେଲା ।

"ଠିକ୍ ଏମିତି ଆଜିକୁ ତିନି ବର୍ଷ ତଳେ ଆମେ ଏଇ ଜାଗାକୁ ଆସିଥିଲେ, ମନେ ଅଛି ନା ଗେଙ୍କା ? ସେତେବେଳେ ଦୁବାଭା ଆମ ପାଖକୁ ଆସିଥିଲା 'ଶ୍ରମିକ ବିରୋଧୀ ଦଳ' ଧରି । ସେଦିନ ବଢ଼ିଆ ସଭା ହୋଇଥିଲା । ଆଉ ଆଜି ବି ଆମେ ଏଠିକି ଆସିଛୁ, ତା'ରି ସାଙ୍ଗରେ ଲଢ଼ାଇ କରିବା ପାଇଁ ।"

ନିଜ ନିଜ ପରିଚୟପତ୍ର ଦେଖାଇ ସେମାନେ ହଲ୍ ଭିତରକୁ ପଶିଲେ, ପାନ୍‌କ୍ରାତୋଭ୍ ତା' କଥାର ଜବାବ ଦେବା ପୂର୍ବରୁ ।

"ହଁ, ଠିକ୍ ସେଇ ଜାଗାରେ ଇତିହାସର ପୁଣି ପୁନରାବୃତ୍ତି ହେଉଛି ।"

ସେମାନଙ୍କୁ ସମସ୍ତେ ସ୍-ସ୍ ଶବ୍ଦକରି କରିଦେଲେ । ସମ୍ମିଳନୀର ସାନ୍ଧ୍ୟ ଅଧିବେଶନ ଆରମ୍ଭ ହୋଇଗଲାଣି । ଯିଏ ଯେଉଁଠି ପାରିଲା ବସିଗଲେ ସେମାନେ । ଜଣେ ତରୁଣୀ ସଭାମଞ୍ଚ ଉପରୁ ଭାଷଣ ଦେଉଥିଲା । ତରୁଣୀଟି ତାଲ୍ୟା ।

"ଆମେ ଠିକ୍ ସମୟରେ ଆସି ପହଞ୍ଚିଛେ । ଏବେ ତୁନିହୋଇ ବସି ସ୍ତ୍ରୀଟି କ'ଣ କହୁଛି ଶୁଣ ।" ପାନ୍‌କ୍ରାତୋଭ୍ ଓକୁନେଭ୍‌କୁ ଚିମୁଟି ଦେଇ କହିଲା ।

"...ଏକଥା ସତ୍ୟ ଯେ, ଆମେମାନେ ଏହି ଆଲୋଚନାରେ ଅନେକ ସମୟ ଓ ଶକ୍ତି ବ୍ୟୟ କଲେଣି । ମାତ୍ର ମୁଁ ଭାବୁଛି ଆମ ସମସ୍ତଙ୍କର ଏହା ଫଳରେ ଅନେକ ଶିକ୍ଷା ମଧ୍ୟ ହୋଇଛି । ଆଜି ଆମେମାନେ ସମସ୍ତେ ଆନନ୍ଦିତ ଯେ, ଆମ ସଂଗଠନ ଭିତରେ ଟ୍ରଟ୍‌ସ୍କିପନ୍ଥୀମାନେ ପରାଜିତ ହୋଇଛନ୍ତି । ସେମାନେ ମଧ୍ୟ ଅଭିଯୋଗ କରିପାରିବେ ନାହିଁ

ଯେ, ତାଙ୍କ କଥା ଶୁଣାଯାଇ ନାହିଁ ବୋଲି । ବରଂ ବିପରୀତ ପକ୍ଷରେ ନିଜର ଦୃଷ୍ଟିଭଙ୍ଗୀ ଓ ଅଭିମତ ପ୍ରକାଶ କରିବା ପାଇଁ ସେମାନଙ୍କୁ ଯଥେଷ୍ଟ ସୁବିଧା ସୁଯୋଗ ଦିଆଯାଇଛି । ସେମାନଙ୍କୁ ଦିଆଯାଇଥିବା ସୁଯୋଗର ଅପବ୍ୟବହାର କରି ସେମାନେ ବରଂ ପାର୍ଟିଶୃଙ୍ଖଳା ଅନେକ କ୍ଷେତ୍ରରେ ଭଙ୍ଗ କରିଛନ୍ତି ।"

କହୁ କହୁ ବିଚଳିତ ହୋଇଯାଉଥାଏ ତାଇୟା । ତାହା ଜାଣି ହେଉଥାଏ, ତା' ଆଖି ଉପରେ ପଡ଼ୁଥିବା କେରାଏ କେଶରାଶିକୁ କହୁ କହୁ ସେ ଯେପରି ପଛକୁ ନେଉଥାଏ ସେଥିରୁ ।

"ବିଭିନ୍ନ ଜିଲ୍ଲାର ବହୁ କମ୍ରେଡ୍ ଏଠାରେ ଭାଷଣ ଦେଲେଣି ଏବଂ ସେମାନେ ସମସ୍ତେ ଟ୍ରଟ୍‌ସ୍କିପନ୍ଥୀମାନଙ୍କର ପଦ୍ଧତି ସଂପର୍କରେ କହିଛନ୍ତି । ଏ ସମ୍ମିଳନୀରେ ଅନେକ ଟ୍ରଟ୍‌ସ୍କିପନ୍ଥୀ ଯୋଗ ଦେଇଛନ୍ତି । ବିଭିନ୍ନ ଜିଲ୍ଲା ଜାଣିଶୁଣି ତାଙ୍କୁ ପ୍ରତିନିଧି ଭାବରେ ଏଠାକୁ ପଠାଇଛନ୍ତି, ଆମକୁ ଏ ସହରର ପାର୍ଟି ସମ୍ମିଳନୀରେ ଆହୁରିଥରେ ତାଙ୍କ କଥା ଶୁଣିବାର ସୁଯୋଗ ଦେବା ପାଇଁ । ସେମାନେ ତାଙ୍କର ଏହି ସୁଯୋଗର ସଦ୍‌ବ୍ୟବହାର ନକରି ପାରିଲେ ଆମର କିଛି ଦୋଷ ନାହିଁ । ଜିଲ୍ଲା କ୍ଷେତ୍ରରେ ଓ ସେଲ୍‌ମାନଙ୍କରେ ସେମାନଙ୍କର ପରାଜୟ ନିଶ୍ଚିତ ଭାବରେ ସେମାନଙ୍କୁ ସବୁ ଏଭଳି ଭାବରେ ଶିକ୍ଷା ଦେଇଛି ଯେ, ସେମାନେ ଗତକାଲି ପର୍ଯ୍ୟନ୍ତ ମଧ୍ୟ ଯାହା କହି ହେଉଥିଲେ, ସେକଥା ଏଠାରେ ଛିଡ଼ାହୋଇ ଭରସି କହି ପାରୁ ନାହାନ୍ତି ।"

ଡାହାଣ କୋଣରୁ ଗୋଟିଏ କର୍କଶ ସ୍ୱର ତାଇୟା ଭାଷଣର ଏହି ସ୍ଥାନରେ ବାଧା ଦେଇ କହିଉଠିଲା :

"ଏଯାଏଁ ଆମେ ଆମ କଥା କହି ନାହୁଁ ।"

ସ୍ୱର ଯେଉଁ ଦିଗରୁ ଆସୁଥିଲା, ସେହି ଆଡ଼କୁ ମୁହଁ କରି ତାଇୟା କହିଲା :

"ଠିକ୍ ଅଛି ଦୁବାଭା, ଏଠିକି ଉଠିଆସ ଓ ଯାହା କହିବାର ଅଛି କୁହ । ଆମେ ତମ କଥା ଶୁଣିବୁ ।"

ତା' ଆଡ଼କୁ ଉତ୍ତେଜିତ ହୋଇ ଅନାଇଲା ଦୁବାଭା ଓ କ୍ରୋଧରେ ତା'ର ଓଠଗୁଡ଼ିକ ବଙ୍କେଇ ଯାଉଥାଏ ।

"ବେଳ ପଡ଼ିଲେ ଆମେ ଆମ କଥା କହିବୁ !" ସେହିଠାରୁ ପାଟିକରି କହିଲା ସେ । ଦିନକ ଆଗରୁ ତା' ନିଜ ଜିଲ୍ଲାରେ ତା'ର ଯେଉଁ ପରାଜୟ ହୋଇଛି, ସେଇ କଥାଟା ଭାବୁଥିଲା ସେ । ମନ ଭିତରେ ସେ ଘଟଣାଟା ଏବେବି ତାକୁ ଆଘାତ କରିବାରେ ଲାଗିଛି ।

ହଲ୍‌ଟା ସାରା ଗୋଟାଏ ଗୁଞ୍ଜନ ଖେଳିଗଲା । ସମ୍ଭାଳି ନପାରି ପାନ୍‌କ୍ରାତୋଭ୍ ପାଟିକରି ଉଠିଲା :

"ଆଉରି ଥରେ ପାର୍ଟିକୁ ଦୋହଲେଇ ଦେବାକୁ ଚେଷ୍ଟା କରୁଛନ୍ତୁ ନା ?"

ଦୁବାଭା ତା' ସ୍ୱର ଚିହ୍ନି ପାରିଲେ ମଧ୍ୟ ବୁଲିକରି ଅନାଇଲା ନାହିଁ । ସେ କେବଳ ଦାନ୍ତ କାମୁଡ଼ି ଅନ୍ୟଆଡ଼କୁ ମୁଣ୍ଡ ବୁଲାଇ ନେଲା ।

"ଟ୍ରଟ୍‌ସ୍କିପନ୍ଥୀମାନେ କିଭଳି ପାର୍ଟି ଶୃଙ୍ଖଳା ଭଙ୍ଗ କରୁଛନ୍ତି, ତା'ର ଜ୍ୱଳନ୍ତ ଉଦାହରଣ ନିଜେ ଦୁବାଭା", ତାଲ୍ୟା ଏଥର କହି ଗ୍ରଲିଲା । "ସେ ଅନେକ ଦିନ ଧରି ଯୁବ ସଂଗଠନରେ କାମ କରିଛି ଓ ଆମ ମଧ୍ୟରୁ ଅନେକ ତାକୁ ଜାଣନ୍ତି, ବିଶେଷକରି ଆର୍‌ସେନାଲ୍ ଶ୍ରମିକମାନେ । ସେ ଖାର୍‌କୋଭ୍ କମ୍ୟୁନିଷ୍ଟ ବିଶ୍ୱବିଦ୍ୟାଳୟର ଛାତ୍ର । ମାତ୍ର ଆମେ ସଭିଏଁ ଜାଣିଛେ ଯେ, ସେ ଗତ ତିନି ସପ୍ତାହ ଧରି ଶ୍‌କୋଲେଙ୍କୋ ସହିତ ଏଠାରେ ଅଛି । ବିଶ୍ୱବିଦ୍ୟାଳୟର ଶିକ୍ଷା ବର୍ଷ ମଝିଟାରେ ଏଠାକୁ ତାକୁ କ'ଣ ଆକର୍ଷଣ କରି ଆଣିଛି ? ଏ ସହରର ଏପରି କୌଣସି ଗୋଟିଏ ଜିଲ୍ଲା ନାହିଁ, ଯେଉଁଠାରେ କି ସେମାନେ ସଭା କରି ନାହାନ୍ତି । ଏକଥା ସତ୍ୟ ଯେ, ଗତ କେଇ ଦିନ ହେଲା ଶ୍‌କୋଲେଙ୍କୋର ଜ୍ଞାନୋଦୟ ହୋଇଛି ଟିକେ । ମାତ୍ର କିଏ ସେମାନଙ୍କୁ ଏଠାକୁ ପଠାଇଲା ? ସେମାନଙ୍କ ବ୍ୟତୀତ ଅନ୍ୟ ସଂଗଠନମାନଙ୍କରୁ ମଧ୍ୟ ବେଶ କେତେଜଣ ଟ୍ରଟ୍‌ସ୍କିପନ୍ଥୀ ଆସିଛନ୍ତି ଏଠାକୁ । ସେମାନେ ସମସ୍ତେ ଏଠାରେ କୌଣସି ନା କୌଣସି ସମୟରେ କାମ କରିଛନ୍ତି ଓ ବର୍ତ୍ତମାନ ସମସ୍ତେ ମିଳିମିଶି ଆସିଛନ୍ତି, ପାର୍ଟିରେ ଗଣ୍ଡଗୋଳ କରିବା ପାଇଁ । ସେମାନଙ୍କ ପାର୍ଟି ସଂଗଠନ ଜାଣେ କି ସେମାନେ ବର୍ତ୍ତମାନ କେଉଁଠି ଅଛନ୍ତି ବୋଲି ? ସମ୍ମିଳନୀ ଅଧିବେଶନରେ ସମସ୍ତେ ଆଶା କରୁଥିଲେ ଯେ, ଟ୍ରଟ୍‌ସ୍କିପନ୍ଥୀମାନେ ଆଗେଇ ଆସି ନିଜ ନିଜର ଭୁଲ ସ୍ୱୀକାର କରିବେ ।"

ସେମାନଙ୍କୁ ଏହି ପନ୍ଥା ଅନୁସରଣ କରିବା ଦିଗରେ ପ୍ରବର୍ତ୍ତାଇ ପାରିବ ବୋଲି ଆଶା କରି ତାଲ୍ୟା ସତକୁ ସତ ସେମାନଙ୍କୁ ଆବେଦନ ଜଣାଇଲା । କୌଣସି ସାଧାରଣ ବକ୍ତୃତା ପ୍ରତିଯୋଗିତାରେ ଭାଷଣ ଦେଲା ଭଳି ସିଧାସଳଖ କମ୍ରେଡ୍‌ସୁଲଭ ଭଙ୍ଗିରେ ସମ୍ବୋଧନ କରି ସେ କହିଲା :

"ମନେ ଅଛି ନା ? ତିନି ବର୍ଷତଳେ ଦୁବାଭା ଏହି ଥିଏଟର ହଲ୍‌ରେ ଆସିଥିଲେ "ବିରୋଧୀ ଶ୍ରମିକ"ମାନଙ୍କୁ ନେଇ । ଆପଣମାନଙ୍କର ମନେଥିବ, ସେତେବେଳେ ସେ ଯାହା କହିଥିଲେ । ଏଠାରେ କି ... 'କେବେହେଲେ ପାର୍ଟିର ପତାକାକୁ ଭୂଲୁଣ୍ଠିତ ହେବାକୁ ଦେବା ନାହିଁ ଆମେମାନେ ।' ମାତ୍ର ତିନି ବର୍ଷ ଯାଇଛି କି ନାହିଁ ଦୁବାଭା ସେଇ କଥା ହିଁ କରିବା ପାଇଁ ଆଗେଇ ଆସିଛନ୍ତି । ହଁ, ମୁଁ ପୁଣିଥରେ କହୁଛି – ସେ ପାର୍ଟି ପତାକାକୁ ତଳକୁ ପକାଇ ଦେଉଛନ୍ତି । ଆଉ ଟିକିଏ ଆଗରୁ ସେ କହୁଥିଲେ ଯେ, 'ଆମେ ଆମ କଥା ଏଯାଏଁ କହି ନାହୁଁ' ବୋଲି, ଯାହାର ଅର୍ଥ ହେଉଛି ସେ ଓ ତାଙ୍କ ଟ୍ରଟ୍‌ସ୍କିପନ୍ଥୀ ଅନୁଚରମାନେ ଆହୁରି ଆଗେଇ ଯିବା ପାଇଁ ବଦ୍ଧପରିକର ।"

"ତୁଫ୍‌ତା ଏବେ କହୁ ତାଙ୍କ ବାରୋମିଟରରେ ଉତ୍ତେଜନା କେତେ । ସିଏ ତ ତାଙ୍କର ପାଣିପାଗ ବିଶେଷଜ୍ଞ", ପଛଧାଡ଼ିରୁ କିଏ ଜଣେ କହିଲା । ସଙ୍ଗେ ସଙ୍ଗେ ବିଭିନ୍ନ ଆଡ଼ୁ ପ୍ରତିରୋଧ ଶୁଭିଲା :

"ଇଏ ଥଟ୍ଟା କରିବା ବେଳ ନୁହଁ !"

"ସେମାନେ ପାର୍ଟି ବିରୁଦ୍ଧରେ ସଂଗ୍ରାମ କରିବା ଛାଡ଼ୁଛନ୍ତି କି ନାହିଁ ? ଇଆର ଜବାବ ସେମାନେ ଏଠାରେ ଦିଅନ୍ତୁ !"

"ସେମାନେ ଏଠାରେ କୁହନ୍ତୁ , କିଏ ସେ ପାର୍ଟିବିରୋଧୀ ଘୋଷଣାପତ୍ର ଲେଖିଥିଲା ?"

ପ୍ରତିରୋଧର ସ୍ୱର ଧୀରେ ଧୀରେ ପ୍ରବଳତର ହେବାକୁ ଲାଗିଲା ଓ ସମସ୍ତଙ୍କୁ ନୀରବ ରହିବାକୁ ନିର୍ଦ୍ଦେଶ ଦେଇ ସଭାପତି ଅନେକ ସମୟ ଧରି ଘଣ୍ଟି ବଜାଇବାକୁ ଲାଗିଲେ ।

ଚାଲ୍ୟାର ସ୍ୱର ସେ ଗହଳି ଭିତରେ କୁଆଡ଼େ ଲୁଚିଗଲା । ଅନେକ ସମୟ ପରେ ପାଟିଗୋଳ କମିଯିବାରୁ ପୁଣି ଚାଲ୍ୟା ଆରମ୍ଭ କଲା :

"ଆଖପାଖ ଗାରିଆଡ଼ର କମ୍ରେଡ୍‌ମାନଙ୍କଠାରୁ ଆମେ ଯେଉଁସବୁ ଚିଠିପତ୍ର ପାଇଛୁ ସେଥିରୁ ସ୍ପଷ୍ଟ ଯେ , ସେମାନେ ଆମ ସହିତ ଅଛନ୍ତି ଓ ଏଇଟା ମଧ୍ୟ ବେଶ୍ ଉତ୍ସାହଜନକ କଥା । ଆମେ ପାଇଥିବା ଗୋଟିଏ ଚିଠିର କିଛି ଅଂଶ ଆପଣମାନଙ୍କ ଆଗରେ ପଢ଼ି ଶୁଣାଇ ଦେବାକୁ ଅନୁମତି ଦିଅନ୍ତୁ ମୋତେ । ଓଲଗା ୟୁରେନେଭାଙ୍କ ପାଖରୁ ଆସିଛି ଚିଠିଟି । ଆପଣମାନଙ୍କ ଭିତରୁ ଅନେକେ ତାଙ୍କୁ ଜାଣନ୍ତି । କମ୍‌ସୋମୋଲ୍‌ର ଏକ ଆଞ୍ଚଳିକ କମିଟିର ସାଂଗଠନିକ ବିଭାଗର ଦାୟିତ୍ୱରେ ସେ ଅଛନ୍ତି ।"

ତା' ଆଗରେ ଥୁଆ ହୋଇଥିବା ଚିଠିଗଦା ଭିତରୁ ଖଣ୍ଡେ କାଗଜ ଟାଣିଆଣି ତା' ଉପରେ ଆଖି ବୁଲାଇ ନେଇ ପଢ଼ିଲା ସେ :

"ସବୁ କାମଦାମ ପଛେଇଯାଇଛି । ଗତ ଗ୍ଣରି ଦିନ ହେଲା ବ୍ୟୁରୋର ସଭ୍ୟମାନେ ଜିଲ୍ଲାର ବିଭିନ୍ନ ଅଞ୍ଚଳକୁ ଯାଇଛନ୍ତି , ଯେଉଁଠାରେ ବି ଟ୍ରଟ୍‌ସ୍କିପନ୍ଥୀମାନେ ଆଗ ଅପେକ୍ଷା ତୁମୁଳ ପ୍ରଚାର ଆରମ୍ଭ କରି ଦେଇଛନ୍ତି । ଗତକାଲି ଏପରି ଗୋଟିଏ ଘଟଣା ଘଟିଲା , ଯେଉଁଥିରେ କି ସାରା ସଂଗଠନ ବିକ୍ଷୁବ୍ଧ ହୋଇ ଉଠିଲେ । ସହରର ଗୋଟିଏ ସେଲ୍‌ରେ ସଂଖ୍ୟାଗରିଷ୍ଠ ନହୋଇ ପାରି , ବିରୋଧୀମାନେ ଚେଷ୍ଟା ଚଳାଇଲେ ସେମାନଙ୍କ ସବୁଶକ୍ତି ବିନିଯୋଗ କରି ଆଞ୍ଚଳିକ ସେନାବାହିନୀ କାର୍ଯ୍ୟାଳୟ ସେଲ୍‌ରେ ଲଢ଼େଇ କରିବେ , ଯେଉଁଥିରେ ଆଞ୍ଚଳିକ ଯୋଜନା ବିଭାଗ ତଥା ଶ୍ରମିକ ଶିକ୍ଷା ବିଭାଗର କମ୍ୟୁନିଷ୍ଟମାନେ ମଧ୍ୟ ଅଛନ୍ତି , ସେଥିରେ ସଂଖ୍ୟାଗରିଷ୍ଠ ହେବାକୁ । ସାରା ସେଲ୍‌ଟିରେ ମୋଟ ବୟାଳିଶ ଜଣ ସଦସ୍ୟ । ସେଇଠି ସବୁ ଟ୍ରଟ୍‌ସ୍କିପନ୍ଥୀ ରୁଣ୍ଡହେଲେ । ସେ ସଭାରେ ଏପରି ପାର୍ଟି ବିରୋଧୀ ଭାଷଣ ଦିଆଗଲା ଯେ , ଆମେ ଆଗରୁ କେବେ ଶୁଣି ନଥିଲୁ ଏପରି । ସାମରିକ କମିସାରିଆଟ୍‌ର ଜଣେ ସଦସ୍ୟ ଉଠି କହିଲେ ଯେ , 'ପାର୍ଟି ସଂଗଠନ ଯଦି ଆମ କଥା ମାନି ନନିଏ ତେବେ ଜୋର ଦେଇ ତାକୁ ଭାଙ୍ଗି ଦେବୁ ।' ବିରୋଧୀପକ୍ଷ ଏକଥାକୁ ଭାରି ପସନ୍ଦ କରି ତାଳି ବଜାଇଲେ । ତା' ପରେ କୋର୍ଗିନ୍ ଭାଷଣ ଦେଲେ । କହିଲେ ଯେ , 'ସେ ଫାସିଷ୍ଟ କଥା ନେଇ ଜୋରରେ ତାଳି ମାରି ତମେମାନେ ସବୁ ନିଜକୁ କମ୍ୟୁନିଷ୍ଟ ବୋଲି କହୁଛ କେମିତି ?' ମାତ୍ର ସେମାନେ ନିଜ ଚଉକି ପିଟି , ପାଟିଗୋଳକରି ଏମିତି ଗଣ୍ଡଗୋଳ କଲେ ଯେ , କୋର୍ଗିନଙ୍କୁ କୁହାଇ ଦେଲେ ନାହିଁ । ଅନେକ ସଭ୍ୟ ବିରକ୍ତ ହୋଇଯାଇ ଦାବୀ ଜଣାଇଲେ , କୋର୍ଗିନ୍‌ଙ୍କ କଥା ଶୁଣିବା ପାଇଁ । ମାତ୍ର

ପୁଣି ସେ କହିବାକୁ ଉଠିଲାମାତ୍ରେ ପାଟିଗୋଳ ହେଲା । ଗୋଳମାଳଠାରୁ ଆହୁରି ଜୋର୍‌ରେ ପାଟିକରି ସେ କହିଲେ, 'ତା' ହେଲେ ଯାକୁଇ ତମେ ଗଣତନ୍ତ୍ର ବୋଲି କହୁଛ ? ଠିକ୍ ଅଛି, ତମେସବୁ ଏମିତି ପାଟିକଲେ ବି ମୁଁ କହିବି ।' ଏତିକି ବେଳେ ସେମାନଙ୍କ ଭିତରୁ କେଇଜଣ ତାଙ୍କ ଉପରେ ପଡ଼ି ତାଙ୍କୁ ମଞ୍ଚ ଉପରୁ ଘୋଷାରି ନେବାକୁ ବସିଲେ । ଭୟଙ୍କର ଗଣ୍ଡଗୋଳ ହେଲା । ତାଙ୍କୁ ପ୍ରତିରୋଧ କରି ପାଭେଲ୍ କହି ଚାଲିଲେ, ମାତ୍ର ସେମାନେ ତାଙ୍କୁ ଘୋଷାରି ନେଇ ଗୋଟାଏ କଣପଟର କବାଟ ଖୋଲି ପାହାଚ ତଳକୁ ଠେଲିଦେଲେ । ତାଙ୍କ ମୁହଁରୁ ଝରଝର ହୋଇ ରକ୍ତ ବାହାରୁଥାଏ । ଏ ଘଟଣା ପରେ ପ୍ରାୟ ସବୁ ସଭ୍ୟ ସଭାଘର ଛାଡ଼ି ଚାଲିଗଲେ । ଏ ଘଟଣା ଫଳରେ ଅନେକଙ୍କର ଆଖି ଖୋଲିଗଲା ।"

ତାଲ୍ୟା ମଞ୍ଚ ଉପରୁ ଓହ୍ଲାଇ ଆସିଲା ।

ଗତ ଦୁଇ ମାସ ହେଲା ଆଞ୍ଚଳିକ ପାର୍ଟି କମିଟିର ପ୍ରଚାର ବିଭାଗର ମୁଖ୍ୟ ଦାୟିତ୍ୱରେ ଥିବା ସେଗାଲ୍ ସଭାପତିମଣ୍ଡଳୀରେ, ତୋକାରେଭ୍ ପାଖକୁ ଲାଗି ବସି ନିବିଷ୍ଟମନରେ ପ୍ରତିନିଧିମାନଙ୍କର ଭାଷଣ ଶୁଣୁଥିଲେ । ଏପର୍ଯ୍ୟନ୍ତ ସହର ପାର୍ଟି ସମ୍ମିଳନୀରେ କେବଳ ତରୁଣତରୁଣୀମାନେ ହିଁ ଭାଷଣ ଦେଇଥାନ୍ତି, ଯେଉଁମାନେ କି ପୂରା ପାର୍ଟି ସଭ୍ୟ ନହୋଇ କମ୍‌ସୋମୋଲ୍‌ରେ ଅଛନ୍ତି ।

"ଗତ କେଇବର୍ଷ ଭିତରେ କେତେ ପୋଖତ ହେଲେଣି ଏମାନେ !" ସେଗାଲ୍ ଭାବୁଥାନ୍ତି ମନେ ମନେ ।

"ବିରୋଧୀମାନେ ଏଥର ଗରମ ହୋଇ ଉଠିଲେଣି । ଏଯାଏଁ ବି କମାଣ ସବୁ ବାହାରି ନାହାନ୍ତି ଆମର । କେବଳ ତରୁଣତରୁଣୀମାନେ ଟ୍ରଟ୍‌ସ୍କିପନ୍ଥୀମାନଙ୍କୁ ନିପାତ କଲେଣି", ସେ କହିଲେ ତୋକାରେଭ୍‌କୁ ।

ଠିକ୍ ଏତିକି ବେଳେ ତୁଫ୍‌ତା ମଞ୍ଚ ଉପରକୁ ଉଠି ଆସିଲା । ତାକୁ ଟାପରା କରି ହସର ଧ୍ୱନି ଓ ବିରୋଧୀସୂଚକ ମନ୍ତବ୍ୟ ସବୁ ଶୁଭିବାକୁ ଲାଗିଲା ହଲ୍‌ର ଚାରିକଡ଼ରୁ । ତାକୁ ଏଭଳି ମନ୍ତବ୍ୟ କରାଯାଉଥିବାରୁ ବିରୋଧ କରି ତୁଫ୍‌ତା ସଭାପତିମଣ୍ଡଳୀ ଆଡ଼କୁ ବୁଲି ପଡ଼ୁଥିଲା ଅଭିଯୋଗ ପାଇଁ । ମାତ୍ର ସମସ୍ତେ ତୁନି ହୋଇଗଲେଣି ସେତେବେଳକୁ ।

"କେହିଜଣେ ଏଠାରେ ମୋତେ ପାଣିପାଗ ବିଶେଷଜ୍ଞ ବୋଲି କହିଲେ । ତା' ଅର୍ଥ ମୋର ରାଜନୈତିକ ମତାମତକୁ ଆପଣମାନେ ସେହି ଦୃଷ୍ଟିରୁ ଦେଖୁଛନ୍ତି, ଯେଉଁ କମ୍ରେଡ୍‌ମାନେ କି ସଂଖ୍ୟାଗରିଷ୍ଠ ।" ଏକା ନିଶ୍ୱାସକେ ସେ କଥାଗୁଡ଼ିକୁ କହି ପକାଇଲା ।

ଗୋଟାଏ ହାସ୍ୟରୋଳ ତା' କଥାକୁ ସ୍ୱାଗତ ଜଣାଇଲା । ବିକ୍ଷୁବ୍ଧ ହୋଇ ସଭାପତିମଣ୍ଡଳୀଙ୍କୁ ଅଭିଯୋଗ ଜଣାଇଲା ତୁଫ୍‌ତା ।

"ଆପଣମାନେ ହସି ପାରନ୍ତି, ମାତ୍ର ମୁଁ ପୁଣିଥରେ ଆପଣମାନଙ୍କୁ କହୁଛି ଯେ, ତାରୁଣ୍ୟ ଏକ ବାରୋମିଟର । ଏକଥା ଲେନିନ୍ ଅନେକଥର କହିଛନ୍ତି ।"

ସାଙ୍ଗେ ସାଙ୍ଗେ ସାରା ହଲ୍ ନୀରବ ହୋଇଗଲା ।

"କ'ଣ କହିଛନ୍ତି ଲେନିନ୍ ?" ଶ୍ରୋତାମାନଙ୍କ ଭିତରୁ ପ୍ରଶ୍ନ ଉଠିଲା ।

ତ୍ରୁଫ୍‌ତା ଏଥର ସଜୀବ ହୋଇ ଉଠିଲା :

"ଅକ୍ଟୋବର ବିପ୍ଳବ ପାଇଁ ପ୍ରସ୍ତୁତିପର୍ବ ଚାଲିଥିଲା ବେଳେ ଲେନିନ୍ ଶ୍ରମଜୀବୀ ଦୃଢ଼ମନା ତରୁଣ ଗୋଷ୍ଠୀଙ୍କୁ ନିର୍ଦ୍ଦେଶ ଦେଇଥିଲେ ସେମାନଙ୍କୁ ଐକ୍ୟବଦ୍ଧ ଏବଂ ସଶସ୍ତ୍ର କରିବା ପାଇଁ ଏବଂ ଜାହାଜୀମାନଙ୍କ ସହିତ ଅଧିକ ଦୁଃସାଧ୍ୟ ଅଞ୍ଚଳମାନଙ୍କୁ ପଠାଇବା ପାଇଁ । ସେ ଅଂଶଟିକୁ ପଢ଼ି ଶୁଣାଇ ଦେବା ପାଇଁ ଚାହାନ୍ତି ଆପଣମାନେ ? ମୁଁ ସେସବୁ ଉଦ୍ଧୃତାଂଶ କାର୍ଡରେ ଟିପି ଆଣିଛି", ନିଜ ପୋର୍ଟ୍‌ଫୋଲିଓ ବ୍ୟାଗ ଭିତରେ ହାତ ପୂରାଇଲା ତ୍ରୁଫ୍‌ତା ।

"ଠିକ୍ ଅଛି, ଆମେ ଜାଣିଛୁ ସେ କଥା ।"

"ଲେନିନ୍ ଏକତା ସଂପର୍କରେ କ'ଣ କହିଥିଲେ ?"

"ଆଉ ପାର୍ଟି ଶୃଙ୍ଖଳା ବିଷୟରେ କ'ଣ ?"

"କେଉଁଠାରେ ଲେନିନ୍ ତରୁଣମାନଙ୍କୁ ପୁରୁଖା ନେତାମାନଙ୍କ ବିରୁଦ୍ଧରେ ନିୟୋଗ କରିଥିଲେ ?"

ନିଜର ଚିନ୍ତାର ଖିଅ ଛିନ୍ନ କରି ତ୍ରୁଫ୍‌ତା ଆଉ ଗୋଟାଏ କଥା କହିବାକୁ ଆରମ୍ଭ କଲା :

"ଲଗୁଚିନା ଏଠାରେ ଯୁରେନେଭାଙ୍କ ଦିଆ ଖଣ୍ଡେ ଚିଠି ପଢ଼ିଲେ । କେଉଁଠି ଆଲୋଚନା ପ୍ରସଙ୍ଗରେ କ'ଣ ଟିକେ ଆଧିକ୍ୟ ହୋଇଯାଇଥିବ, ସେ ସବୁର ଉତ୍ତର ଦେବା ବା ସେଥି ପାଇଁ ଦାୟୀ ରହିବା ଆମ ପକ୍ଷରେ ସମ୍ଭବ ନୁହେଁ ।"

ଶ୍କୋଲେଙ୍କୋ ନିକଟରେ ବସିଥିବା ଶ୍ଵେତାୟେଭ୍ ଫୁସ୍ ଫୁସ୍ କରି କହିଲା ଉତ୍ତେଜିତ ହୋଇ :

"ନିର୍ବୋଧ ଭଳି କହୁଛି ।"

"ହଁ, ଏ ବୋକାଟା ଆମକୁ ପୂରାପୂରି ଶେଷ କରିଦେବ", ଶ୍କୋଲେଙ୍କୋ ଫୁସ୍‌ଫୁସ୍ କରି ଉତ୍ତରଦେଲା ।

ତ୍ରୁଫ୍‌ତାର ଚେଁ ଚେଁ ସ୍ଵର ସମସ୍ତଙ୍କ କାନରେ ତୀବ୍ରଭାବରେ ବାଜିବାକୁ ଲାଗିଲା :

"ଆପଣମାନେ ଯଦି ସଂଖ୍ୟାଗରିଷ୍ଠ ବିଭାଗ ସୃଷ୍ଟି କରି ପାରନ୍ତି, ତେବେ ଆମର ମଧ୍ୟ ସଂଖ୍ୟାଲଘୁ ବିଭାଗ ଗଠନ କରିବାର ଅଧିକାର ଅଛି !"

ହଲ୍ ଭିତରେ ଏଥର ତୀବ୍ର ଉତ୍ତେଜନା ଖେଳିଗଲା ।

ଚାରିଆଡ଼ୁ କ୍ରୁଦ୍ଧ ଉତ୍ତେଜିତ ପ୍ରଶ୍ନସବୁ ତ୍ରୁଫ୍‌ତା ଉପରେ ବର୍ଷିବାକୁ ଲାଗିଲା ।

"କ'ଣ ସେଇଟା କହୁଛି ? ପୁଣିଥରେ ବଲ୍‌ଶେଭିକ୍ ଓ ମେନ୍‌ଶେଭିକ୍ ହେବା ?"

"ରୁଷୀୟ କମ୍ୟୁନିଷ୍ଟ ପାର୍ଟି ଗୋଟାଏ ପାର୍ଲମେଣ୍ଟ ନୁହେଁ ।"

"ଏମାନେ ସବୁ ଭାଗ ଭାଗ କରାଉଥିବା ଲୋକଙ୍କ ପାଇଁ ଏଠି କାମ କରୁଛନ୍ତି ... ମ୍ୟାସ୍‌ନିକୋଭ୍‌ଠାରୁ ମାର୍‌ତୋଭ୍ ଯାଏ ସମସ୍ତଙ୍କ ପାଇଁ ।"

ସଚେ ଯେମିତି ନଈରେ ପହଁରୁଛି, ସେମିତି ଦୁଇ ହାତ ବିସ୍ତାର କରି ଆହୁରି ଉତ୍ତେଜିତ ହୋଇ ତୃପ୍ତା କହିଲା :

"ନିଶ୍ଚୟ, ଯେ କୌଣସି ବିଭାଗ ବା ଦଳ ସୃଷ୍ଟି କରିବା ପାଇଁ ଅଧିକାର ଦରକାର । ନହେଲେ ଆମର ଭିନ୍ନମତ ପାଇଁ କେମିତି ସଂଗ୍ରାମ କରିବୁ ଆମେମାନେ ଏଭଳି ସଂଗଠିତ ସଖ୍ୟାଗରିଷ୍ଠତା ବିରୁଦ୍ଧରେ ?"

ଚିତ୍କାର ଏଥର ବଢ଼ିବାକୁ ଲାଗିଲା । ପାନ୍କ୍ରାଟୋଭ୍ ଠିଆ ହୋଇ ପଡ଼ି କହିଲା :

"ସିଏ କହୁ ଯାହା କହିବାର ଅଛି ତା'ର । ତା' ସଙ୍ଗମାନେ ଯେଉଁ କଥା ସବୁ ଗୋପନୀୟ କରି ଉପରେ କହିବେ ନାହିଁ, ତୃପ୍ତା ସେସବୁ କହିଦେଇ ପାରେ ।"

ସାରା ହଲ୍ ଚୁନିପଡ଼ିଗଲା ସଙ୍ଗେ ସଙ୍ଗେ । ତୃପ୍ତା ବୁଝି ପାରିଲା ଯେ, ସେ ଅନେକ ଆଗେଇ ଗଲଣି । ବର୍ତ୍ତମାନ ଅବସ୍ଥାରେ ଏସବୁ କହିବା ତା'ର ଉଚିତ ନଥିଲା ହୁଏତ । ତା' ଚିନ୍ତାସବୁ ଗୋଳମାଳିଆ ହୋଇଗଲା ଓ ସେ ତା'ର ବକ୍ତବ୍ୟର ଶେଷାଂଶରେ କହିଲା :

"ଅବଶ୍ୟ ଆପଣମାନେ ଆମକୁ ବିତାଡ଼ିତ କରି ନିର୍ବାସିତ କରି ପାରନ୍ତି । ସେ ଭଳି କାମ ମଧ୍ୟ ଆରମ୍ଭ ହୋଇ ଗଲଣି । କମ୍ସୋମୋଲ୍ର ଆଞ୍ଚଳିକ କମିଟିରୁ ମୋତେ ବାହାର କରି ଦେଇଛନ୍ତି ଆପଣମାନେ । ସେଥିରେ ଯାଏ ଆସେ ନାହିଁ । ଆମେ ଅତିଶୀଘ୍ର ଜାଣିଯିବା କିଏ ଭୁଲ କିଏ ଠିକ୍ ।" ଏତିକି କହି ମଞ୍ଚ ଉପରୁ ହଲ୍ ଭିତରକୁ ଓହ୍ଲାଇ ଆସିଲା ସେ ।

ଶ୍ୱେତାୟେଭ୍ ଖଣ୍ଡେ ଚିରକୁଟି କାଗଜ ଦୁବାଭା ହାତକୁ ବଢ଼ାଇଦେଲା ।

"ମିତ୍ୟାୟ ! ଯାପରେ ତମେ କୁହ । ଅବଶ୍ୟ ଅବସ୍ଥାର କୌଣସି ପରିବର୍ତ୍ତନ ହେବ ନାହିଁ ତା' ଫଳରେ । ଏଠି ଆମ ଅବସ୍ଥା ଶୋଚନୀୟ ହେବ । ମାତ୍ର ଆମକୁ ତୃପ୍ତାକୁ ଠିକ୍ କରିବାକୁ ହେବ । ସେଇଟା ମୋଟା ବୁଦ୍ଧିଆ ମୂର୍ଖଟାଏ ।"

ଦୁବାଭା କହିବା ପାଇଁ ଅନୁମତି ମାଗିଲା ଓ ଅନୁମତି ମିଳିଗଲା ସଙ୍ଗେ ସଙ୍ଗେ ।

ସେ ମଞ୍ଚ ଉପରେ ଚଢ଼ିବା ମାତ୍ରେ ହଲ୍ସାରା ଅଭିନବ ନୀରବତା ଖେଳିଗଲା । ଯେଉଁ ନୀରବତା ସାଧାରଣ ଭାବରେ ବକ୍ତୃତା ଆରମ୍ଭ ହେବା ପୂର୍ବରୁ ବିରାଜେ, ଇଏ ସେହି ନୀରବତା । ମାତ୍ର ଏଥିରେ ଭରି ରହିଥିଲା ତୀବ୍ର ଘୃଣା ଓ ବିଦ୍ୱେଷ ଦୁବାଭା ପ୍ରତି । ଯେଉଁ ପ୍ରବଳ ଉଦ୍ଦୀପନା ନେଇ ସେ ସେଇର ବୈଠକ ସବୁରେ ଭାଷଣ ଦେଉଥିଲା, ତାହା ଏବେ ଶୀତଳ ପଡ଼ିଗଲଣି । ଦିନକୁ ଦିନ ତା'ର ଉତ୍ତେଜନା କମି କମି ଆସୁଛି । ବଶେଷକରି ଗତ କେତେଦିନ ଧରି ତା'ର ପୁରୁଣା କମ୍ରେଡ୍ମାନଙ୍କଠାରୁ ଯେଉଁ ନିଦାରୁଣ ଭାବରେ ପରାଜୟ ସ୍ୱୀକାର କରିଛି ସେ । ସେଥିରେ ନିଆଁରେ ପାଣି ପଡ଼ିଲା ଭଳି ତା'ର ଉତ୍ସାହ ଥମି ଯାଇଛି । ଏବେ ତା'ର ଆହତ ପୌରୁଷ ଆହୁରି ତିକ୍ତ ଓ ତୀବ୍ର ହେଉଛି । ଭୁଲ କରୁଥିଲେ ମଧ୍ୟ ତାକୁ ଭୁଲ ବୋଲି ସ୍ୱୀକାର କରିବା ପାଇଁ ଆଗ୍ରହ ନଥିବା ଯୋଗୁଁ ସିଧାସଳଖ ଭାବରେ ଆକ୍ରମଣ ଆରମ୍ଭ କରି ଭାଷଣ ଦେବା ପାଇଁ ସିଦ୍ଧାନ୍ତ କଲା ସେ ।

ଯଦିଓ ବୁଝୁଥିଲା ଯେ, ତା'ଫଳରେ ସଂଖ୍ୟାଗରିଷ୍ଠଙ୍କଠାରୁ ଅଧିକ ଦୂରେଇ ଯିବ ସେ । କହିଲା ବେଳେ ତା' ଗଳାର ଆବାଜଟା ଜୋରରେ ଶୁଣାଯାଉ ନଥିଲେ ମଧ୍ୟ ସ୍ପଷ୍ଟ ଥିଲା :

"ଦୟା କରି ମୋ ଭାଷଣ ମଝିରେ ବାଧା ଦିଅନ୍ତୁ ନାହିଁ କିମ୍ବା ନାନା ପ୍ରକାର ପ୍ରଶ୍ନ ପଗ୍ଭରି ମୋତେ ଚିଡ଼ାଇ ଦିଅନ୍ତୁ ନାହିଁ । ଆମମାନଙ୍କର ସ୍ଥିତି ସଂପର୍କରେ ଏକ ସ୍ପଷ୍ଟ ବ୍ୟାଖ୍ୟା ଓ ଅବଧାରଣା ଦେବାକୁ ଗ୍ଭହେଁ ମୁଁ । ଏକଥା ମଧ୍ୟ ମୁଁ ଆଗରୁ ଜାଣିଛି ଯେ, ତା'ର କୌଣସି ଫଳାଫଳ ମିଳିବ ନାହିଁ, କାରଣ ଆପଣମାନେ ସଂଖ୍ୟାଗରିଷ୍ଠ ।"

ଶେଷରେ ତା' ଭାଷଣ ସରିଲା ବେଳକୁ, ଲାଗୁଥିଲା ଯେମିତି ହଲ୍ ଭିତରେ ଏକ ବୋମା ବିସ୍ଫୋରଣ ଘଟିଛି । ଉଗ୍ର ବାକ୍ୟବାଣର ଏକ ଝଡ଼ ବିଭିନ୍ନ ଦିଗରୁ ତା'ଉପରେ ବର୍ଷିବାକୁ ଲାଗିଲା ଗ୍ଭବୁକ ଭଳି ।

"ଲଜ୍ଜା ! ଲଜ୍ଜା !"

"ବିଭେଦକାରୀ ମୁର୍ଦ୍ଦାବାଦ !"

"ଖୁବ୍ ତ କାଦୁଅ ଫିଙ୍ଗିଲ !"

ଟାହି ଟାପରା ଭିତରେ ଦୁବାଭା ନିଜ ଆସନକୁ ଫେରି ଆସିଲା । ସମସ୍ତଙ୍କ ପରିହାସ ତା' ଭିତରେ ଛୁରୀ ଭଳି ଗଳିଯାଉଥାଏ । ତା' ଉପରେ ଟେକା ବୃଷ୍ଟି ହୋଇଥିଲେ କି ଘେରିଯାଇଥିଲେ ତାକୁ ସେ ଏତେ ବେଶୀ ଆଘାତ ପାଇ ନଥାନ୍ତା । ମାତ୍ର ତାକୁ ସେମାନେ ବିଦ୍ରୂପ କରିଛନ୍ତି – ଠିକ୍ ଯେମିତି ମଞ୍ଚ ଉପରେ କୌଣସି ଅଭିନେତା କୃତ୍ରିମ ସ୍ୱରରେ ଆବୃତ୍ତି କଲାବେଳେ ସ୍ୱର ଭାଙ୍ଗିଗଲେ ଦର୍ଶକମାନେ ଯେମିତି ବିଦ୍ରୂପ କରିଥାନ୍ତି ।

"ବର୍ତ୍ତମାନ ଭାଷଣ ଦେବେ ଶ୍କୋଲେଙ୍କୋ", ସଭାପତି ଘୋଷଣା କଲେ ।

"ମୁଁ କହିବାକୁ ଗ୍ଭହେଁ ନାହିଁ", ନିଜ ଆସନରୁ ଉଠିପଡ଼ି ଶ୍କୋଲେଙ୍କୋ କହିଲା ।

ତା'ପରେ ପାନ୍କ୍ରାଟୋଭ୍‌ର ଗମ୍ଭୀର ସ୍ୱର ହଲ୍ ମଧ୍ୟରେ ପ୍ରତିଧ୍ୱନିତ ହେବାକୁ ଲାଗିଲା :

"ମୁଁ କହିବାକୁ ଗ୍ଭହେଁ ।"

ସେ କଣ୍ଠସ୍ୱରରୁ ଦୁବାଭା ବୁଝିପାରୁଥିଲା ଯେ, ପାନ୍କ୍ରାଟୋଭ୍ ରାଗରେ ଦାନ୍ତ କଡ଼ମଡ଼ କରୁଛି । ଘୋର ଅପମାନିତ ହେଲେ ତା' ଗମ୍ଭୀର ସ୍ୱର ଏହି ଭଳି ଭାବରେ ଥରି ଉଠେ । ଦୁବାଭା ସାମାନ୍ୟ ଅସ୍ଥିର ହୋଇ ଉଠିଲା ଈଷତ୍ ବଙ୍କେଇ ଯାଇଥିବା ଲମ୍ବା ଏକ ମୂର୍ତ୍ତି ମଞ୍ଚ ଉପରକୁ ଦ୍ରୁତ ପାଦରେ ଉଠିଯାଉଥିବାର ଦେଖି । ପାନ୍କ୍ରାଟୋଭ୍ କ'ଣ କହିବାକୁ ଯାଉଛି, ସେ ଜାଣିଥିଲା । ପଅରି ଦିନ ତା'ର ପୁରୁଣା କମ୍ରେଡ୍‌ମାନଙ୍କ ସହିତ ସାକ୍ଷାତ୍ ବେଳର କଥା ମନେ ପଡ଼ିଲା ଦୁବାଭାର । ମନେ ପଡ଼ିଲା ସୋଲେମେଙ୍କାର ପୁରୁଣା ବନ୍ଧୁମାନେ ସମସ୍ତେ କିଭଳି ଏ ବିରୋଧ ଭାଙ୍ଗିବା ପାଇଁ ଯୁକ୍ତି କଲେ । ଶ୍ୱେଟାୟେଭ୍ ଓ ଶ୍କୋଲେଙ୍କୋ ମଧ୍ୟ ତା' ସହିତ ଯାଇଥିଲେ । ତୋକାରେଭ୍‌ଙ୍କ ଘରେ ଭେଟ ହୋଇଥିଲା ତାଙ୍କର ।

ପାନ୍କ୍ରାଟୋଭ୍, ଓକୁନେଭ୍, ଟାଲ୍ୟା, ଭୋଲିନ୍‌ସେଭ୍, ଜେଲେନୋଭା, ସ୍ତାରୋଭେରୋଭ୍ ଓ ଆର୍ତ୍ୟୁଖିନ୍ ସେଠାରେ ଉପସ୍ଥିତ ଥିଲେ । ଏକତା ରକ୍ଷା ପାଇଁ

ସେମାନଙ୍କର ସମସ୍ତ ଆବେଦନ ଦୁବାଭାର ଏ କାନରେ ପଶି ସେ କାନରେ ବାହାରି ଯାଉଥିଲା । ଆଲୋଚନା ମଝିରେ ସେ ଶ୍ୱେତାୟେଭ ସହିତ ବାହାରି ଆସିଥିଲା ଓ ପ୍ରମାଣ କରିଥିଲା ଯେ, ନିଜ ଭୁଲ ସ୍ୱୀକାର କରିବାକୁ ସେ ପ୍ରସ୍ତୁତ ନୁହଁ । ଶ୍‌କୋଲେଙ୍କୋ କିନ୍ତୁ ରହିଥିଲା ସେଠାରେ । ଆଉ ବର୍ତ୍ତମାନ ମଧ୍ୟ ଶ୍‌କୋଲେଙ୍କୋ ଭାଷଣ ଦେବାକୁ ରାଜି ହେଲା ନାହିଁ । "ମେରୁଦଣ୍ଡହୀନ ବୁଦ୍ଧିଜୀବୀ ସେ । ଅବଶ୍ୟ ସେମାନେ ତାକୁ ତାଙ୍କ ପଟକୁ ନେଇଯାଇଛନ୍ତି", ଦୁବାଭା କ୍ଷୋଭର ସହିତ ଭାବୁଥିଲା । ଏ ଉନ୍ମତ୍ତ ସଂଘର୍ଷ ଭିତରେ ଗୋଟି ଗୋଟି ହୋଇ ସମସ୍ତେ ତାକୁ ଛାଡ଼ିଯାଉଛନ୍ତି । ସେଠାରେ କମ୍ୟୁନିଷ୍ଟ ବିଶ୍ୱବିଦ୍ୟାଳୟରେ ମଧ୍ୟ ଝାର୍‌କୀ ସହିତ ବନ୍ଧୁତାରେ ଫାଟ ଧରିଛି । ଝାର୍‌କୀ ଏକ ପାର୍ଟି ବ୍ୟୁରୋ ସଭାରେ "ଛୟାଳିଶ" ଘୋଷଣାକୁ ତୀବ୍ର ବିରୋଧ କରିଥିଲା । ପରେ ଏ ଦ୍ୱନ୍ଦ୍ୱ ତୀବ୍ରତର ହେବା ପରେ ଝାର୍‌କୀ ସହିତ ତା'ର କଥାବାର୍ତ୍ତା ବି ବନ୍ଦ ହୋଇଯାଇଛି । ଝାର୍‌କୀ ଅନେକ ଥର ତା'ଘରକୁ ଆସିଛି ଆନ୍ନା ସହିତ ଦେଖା କରିବାକୁ । ବର୍ଷେ ହେଲା ଆନ୍ନା ଓ ଦୁବାଭା ବିବାହ କରିଛନ୍ତି । ସେମାନେ ଅଲଗା ଅଲଗା ବଖରାରେ ରହନ୍ତି ଓ ଦୁବାଭା ଭାବେ ଯେ, ଆନ୍ନା ସହିତ ତା'ର ଆଜିକାଲି ଭଲ ନପଡ଼ିବା ପଛରେ ଏଥି ପାଇଁ ଝାର୍‌କୀର ତା' ସହିତ ବାରମ୍ବାର ସାକ୍ଷାତକାର ଦାୟୀ । ଦୁବାଭା ପକ୍ଷରୁ ଏଟା ଈର୍ଷା ନୁହେଁ । ମାତ୍ର ଏଭଳି ଅବସ୍ଥାରେ ଝାର୍‌କୀ ସହିତ ଆନ୍ନାର ବନ୍ଧୁତ୍ୱକୁ ସେ ସହିପାରୁ ନାହିଁ । ଆନ୍ନାକୁ ମଧ୍ୟ ସେ ଏକଥା ଜଣାଇଛି ସ୍ପଷ୍ଟଭାବରେ । କିନ୍ତୁ ଫଳରେ ଏପରି ଦୃଶ୍ୟ ସୃଷ୍ଟି ହୋଇଥିଲା, ଯାହା ତାଙ୍କ ଦାମ୍ପତ୍ୟ ସଂପର୍କକୁ ଆଦୌ ଦୃଢ଼ କରିପାରି ନାହିଁ । ଆନ୍ନାକୁ କେଉଁଠିକି ଯାଉଛି ବୋଲି ନ ଜଣାଇ ସେ ଏ ସମ୍ମିଳନୀକୁ ଆସିଛି ।

ତା'ର ଦ୍ରୁତ ଚିନ୍ତାର ଖିଅ ପାନ୍‌କ୍ରାଟୋଭ୍‌ର ସ୍ୱର ଛିନ୍ନଭିନ୍ନ କଲା ।

"କମ୍ରେଡ୍‌ଗଣ !" ମଞ୍ଚର ଦାଢ଼ ଉପରେ ଛିଡ଼ାହୋଇ ସେ କହିଉଠିଲା ଗମ୍ଭୀର ସ୍ୱରରେ :

"କମ୍ରେଡ୍‌ଗଣ, ଗତ ନଅଦିନ ଧରି ଆମେମାନେ ବିରୋଧୀ ପକ୍ଷର ବକ୍ତୃତା ଶୁଣିଛେ । ମୁଁ ଅତି ଖୋଲଖୋଲିଭାବରେ ଏଠାରେ କହିବାକୁ ଚାହେଁ ଯେ, ସେମାନେ ଏଠାରେ ଆମର ସମଯୋଦ୍ଧା ଭାବରେ, ବିପ୍ଳବୀ ଭାବରେ, ଶ୍ରେଣୀସଂଗ୍ରାମରେ ଆମର ସହଯୋଗୀ କମ୍ରେଡ୍ ଭାବରେ କହି ନାହାନ୍ତି । ସେମାନଙ୍କର ପ୍ରତ୍ୟେକଙ୍କର ଭାଷଣରେ ଶତ୍ରୁତା, ବିଦ୍ୱେଷ, କୁତ୍ସା ଓ ଘୃଣା ପୂରିରହିଛି । ହଁ, କମ୍ରେଡ୍‌ଗଣ, କହିବାକୁ ଚାହେଁ, ଭୟଙ୍କରଭାବରେ କୁତ୍ସାପୂର୍ଣ୍ଣ ଓ ଈର୍ଷାପ୍ରଣୋଦିତ ! ସେମାନେ ଆମମାନଙ୍କ ବଲ୍‌ଶେଭିକ୍‌ମାନଙ୍କୁ ପାର୍ଟିର ସୁବିଧାଭୋଗୀ ଗୋଷ୍ଠୀଭାବରେ, ନିଜ ଶ୍ରେଣୀବିରୋଧୀ ଭାବରେ ଓ ବିପ୍ଳବର ବିରୋଧୀ ଭାବରେ ଚିତ୍ରଣ କରିବାକୁ ଚାହାନ୍ତି । ପାର୍ଟିର ସବୁଠାରୁ ବିଶ୍ୱସ୍ତ, ନିର୍ଭରଯୋଗ୍ୟ ଓ ମହତ୍ତ୍ୱପୂର୍ଣ୍ଣ ପୁରୁଣା ବଲ୍‌ଶେଭିକ୍‌ମାନଙ୍କୁ ସେମାନେ ପାର୍ଟି ବ୍ୟୁରୋକ୍ରାଟ୍ ବୋଲି ଅଭିହିତ କରୁଛନ୍ତି, ଦୋଷାରୋପ କରୁଛନ୍ତି । ଯେଉଁମାନେ ଋଷ୍

କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା, ଯେଉଁମାନେ ଜାର୍ ବନ୍ଦୀଶାଳାରେ ସଢ଼ିଛନ୍ତି, ଯେଉଁମାନେ କମ୍ରେଡ୍ ଲେନିନ୍‌ଙ୍କ ନେତୃତ୍ୱରେ ବିଶ୍ୱ ମେନ୍‌ଶେଭିକ୍ ଓ ଟ୍ରଟ୍‌ସ୍କିଙ୍କ ବିରୁଦ୍ଧରେ ସଂଗ୍ରାମଶୀଳ, ସେହିମାନଙ୍କୁ ପାର୍ଟିର ବ୍ୟୁରୋକ୍ରାଟ୍ ବୋଲି କହୁଛନ୍ତି । କେବଳ ଶତ୍ରୁଙ୍କ ବ୍ୟତୀତ ଏଭଳି କଥା କିଏ ଆଉ କହିପାରେ ? ପାର୍ଟି ଓ ବିଭିନ୍ନ ଦାୟିତ୍ୱ ଥିବା ତା'ର କର୍ମକର୍ତ୍ତାମାନେ କ'ଣ ଏକ ଅବିଭକ୍ତ ପୂର୍ଣ୍ଣାଙ୍ଗର ଅଂଶବିଶେଷ ନୁହନ୍ତି ? ତା'ହେଲେ ? ତା'ହେଲେ ମୁଁ ଜାଣିବାକୁ ଚାହୁଁଛି ଏସବୁର ଅର୍ଥ କ'ଣ ? ତରୁଣ ଲାଲ ସେନାକୁ ଯେଉଁମାନେ ନିଜର କମାଣ୍ଡର ଓ କମିସାରମାନଙ୍କ ବିରୁଦ୍ଧରେ ମତାଉଛନ୍ତି, ମତାଉଛନ୍ତି ସେନାବାହିନୀ କାର୍ଯ୍ୟାଳୟ ବିରୁଦ୍ଧରେ, ପୁଣି ଏପରି ଏକ ସମୟରେ, ଯେତେବେଳେ ସେ ସେମାନଙ୍କ ଦଳକୁ ଚାରିକଡ଼ୁ ଘେରି ରହିଛନ୍ତି ଶତ୍ରୁପକ୍ଷ । ସେମାନଙ୍କୁ ସବୁ ଆମେ କ'ଣ ବୋଲି କହିବା ? ଟ୍ରଟ୍‌ସ୍କିପନ୍ଥୀମାନଙ୍କ ମତରେ ମୁଁ ଯେପର୍ଯ୍ୟନ୍ତ ମେକାନିକ୍ ଭାବରେ କାମ କରୁଛି, ସେଯାଏଁ ଠିକ୍ ଅଛି, କିନ୍ତୁ କାଲି ଯଦି ମୁଁ କୌଣସି ପାର୍ଟି କମିଟିର ସଂପାଦକ ହୁଏ ତେବେ "ବ୍ୟୁରୋକ୍ରାଟ୍" ଓ "ଚଉକିବାଲା" ହୋଇଗଲି ? ଏଇଟା ଟିକିଏ ଆଶ୍ଚର୍ଯ୍ୟଜନକ କଥା ନୁହଁ କି, କମ୍ରେଡ୍‌ଗଣ ? ପୁଣି ଏଇ ଯେଉଁମାନେ ଅମଲାତନ୍ତ୍ର ବିରୁଦ୍ଧରେ ଓ ଗଣତନ୍ତ୍ର ସପକ୍ଷରେ ସଂଗ୍ରାମ କରୁଛନ୍ତି, ସେମାନଙ୍କ ଭିତରେ ଉଦାହରଣ ସ୍ୱରୂପ ଚୁଫ୍‌ଟା ଭଳି ଲୋକ ଅଛନ୍ତି, ଯାହାକୁ କି ଏବେ ବ୍ୟୁରୋକ୍ରାଟ୍ ବୋଲି ନିଜ କାମରୁ ଅନ୍ତର କରାଯାଇଛି କିମ୍ବା ଶ୍ୱେତାୟେଭ୍ ଭଳି ଲୋକ ଅଛନ୍ତି, ଯାହାକୁ ତା'ର ତଥାକଥିତ 'ଗଣତନ୍ତ୍ର' ପାଇଁ ସାରା ସୋଲେମେଙ୍କାରେ ସମସ୍ତେ ଜାଣନ୍ତି । ଆଫାନାସିୟେଭ୍ ଭଳି ଲୋକ ଅଛନ୍ତି, ଯାହାକୁ ପୋଦୋଲ୍‌ସ୍କ ଆଞ୍ଚଳିକ ସମିତିରୁ ତିନିଥର ବହିଷ୍କାର କରାଯାଇଛି, ତା'ର ଉପରମୁହାଁ କାମ ଯୋଗୁଁ । ତେଣୁ ଯାହା ଦେଖାଯାଉଛି, ଯେଉଁମାନଙ୍କୁ ପାର୍ଟି ଦଣ୍ଡବିଧାନ କରିଛି, ସେମାନେ ସମସ୍ତେ ଏକତ୍ର ହୋଇଛନ୍ତି ପାର୍ଟି ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ । ପୁରୁଣା ବଲ୍‌ଶେଭିକ୍‌ମାନେ ଆମକୁ ଏଠାରେ କହନ୍ତୁ ଟ୍ରଟ୍‌ସ୍କିଙ୍କର 'ବଲ୍‌ଶେଭିକ୍‌ବାଦ' ସଂପର୍କରେ । କାରଣ ତରୁଣ ସଂପ୍ରଦାୟଙ୍କ ପକ୍ଷରେ ଟ୍ରଟ୍‌ସ୍କିଙ୍କର ବଲ୍‌ଶେଭିକ୍‌ମାନଙ୍କ ବିରୁଦ୍ଧରେ ସଂଗ୍ରାମର ଇତିହାସକୁ ଜାଣି ରଖିବା ଅତି ଜରୁରୀ ଓ ଗୁରୁତ୍ୱପୂର୍ଣ୍ଣ । ସେମାନେ ମଧ୍ୟ କହନ୍ତୁ, ଟ୍ରଟ୍‌ସ୍କିଙ୍କର ବାରମ୍ବାର ଶିବିର ପରିବର୍ତ୍ତନର ସେ କାହାଣୀ । ବିରୋଧ ବିରୁଦ୍ଧରେ ସଂଗ୍ରାମ ଆମର ସମସ୍ତ କମ୍ରେଡ୍‌ମାନଙ୍କୁ ଦୃଢ଼ କରୁଛି ଓ ତରୁଣଗୋଷ୍ଠୀକୁ ଆଦର୍ଶବାଦ ସପକ୍ଷରେ ଶକ୍ତିଶାଳୀ କରୁଛି । ବଲ୍‌ଶେଭିକ୍ ପାର୍ଟି ଓ କମ୍‌ସୋମୋଲ୍ ପେଟି-ବୁର୍ଜୁଆ ମନୋଭାବ ବିରୁଦ୍ଧରେ ଲୌହ ଭଳି କଠିଣ ଓ ସଂଗଠିତ । ବିରୋଧୀ ପକ୍ଷରୁ ପୂରାପୂରି ଅର୍ଥନୈତିକ ଓ ରାଜନୈତିକ ଦୁର୍ଗତି ଏବଂ ଧ୍ୱଂସର ଭୟଙ୍କର ଚିତ୍ର ଦିଆଯାଉଛି ଚାରିଆଡ଼େ । ଆମର ଆଗାମୀ କାଲି ହିଁ ପ୍ରମାଣ କରିବ ସେମାନଙ୍କର ଏ ଭବିଷ୍ୟତବାଣୀ କେତେଦୂର ଭ୍ରାନ୍ତ । ସେମାନେ ଦାବୀ କରୁଛନ୍ତି ଯେ, ତୋକାରେଭ୍ ଏବଂ ସେଗାଲ୍‌ଙ୍କ ଭଳି ପୁରୁଣା ବଲ୍‌ଶେଭିକ୍‌ଙ୍କୁ ହଟାଇଦେଇ, ପଛକୁ ପକାଇ ତାଙ୍କ ସ୍ଥାନରେ ଦୁବାଭା ଭଳି ଲୋକଙ୍କୁ ଅବସ୍ଥାପିତ କରିବା ପାଇଁ, ଯେଉଁମାନେ କି ପାର୍ଟି

ବିରୁଦ୍ଧରେ ନିଜର ଏ ସଂଗ୍ରାମକୁ ଏକ ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ବୋଲି ବିଗ୍ରୁଛନ୍ତି । କମ୍ରେଡ଼୍‌ଗଣ ! ଆମେମାନେ ଏଥିରେ ସମ୍ମତି ଦେବା ସମ୍ଭବ ନୁହଁ । ଆମେ ଦେବା ନାହିଁ । ହଁ, ପୁରୁଣା ବଲ୍‌ଶେଭିକ୍‌ମାନଙ୍କୁ କାର୍ଯ୍ୟରୁ ଅନ୍ତର କରାଯିବ, ମାତ୍ର ତାଙ୍କ ସ୍ଥାନରେ ଆମେ ବିପର୍ଯ୍ୟସ୍ତ ଥିଲାବେଳେ ଯେଉଁମାନେ ପାର୍ଟି ଲାଇନ୍‌କୁ ଆକ୍ରମଣ କରନ୍ତି, ତାଙ୍କୁ ବସାଇକରି ନୁହେଁ । ଆମର ମହାନ୍ ପାର୍ଟିର ଏକତାକୁ ବିଭେଦଗ୍ରସ୍ତ ହେବାକୁ ଦେବା ନାହିଁ ଆମେମାନେ । ପ୍ରାଚୀନ ଓ ନବୀନ ବଲ୍‌ଶେଭିକ୍‌ଙ୍କ ମଧ୍ୟରେ ବିଭେଦ ରହିପାରେ ନାଁ । ଲେନିନ୍‌ଙ୍କର ପତାକା ତଳେ, ପେଟି-ବୁର୍ଜୁଆ ଶ୍ରେଣୀ ସହିତ ଅବିଚଳିତ ସଂଗ୍ରାମରେ ଆମେ ବିଜୟ ପର୍ଯ୍ୟନ୍ତ ଆଗେଇଯିବୁ ଦୃଢ଼ ପଦପାତରେ !"

ଆନନ୍ଦ କଳରୋଳ ଭିତରେ ପାନ୍‌କ୍ରାଟୋଭ୍ ମଞ୍ଚ ଉପରୁ ଓହ୍ଲାଇ ଆସିଲା ।

ତା'ପରଦିନ ଦଶଜଣ ଲୋକ ତୁଫ୍‌ତା ଘରଠାରେ ମିଳିତ ହେଲେ ।

"ଶ୍‌କୋଲେଙ୍କୋ ଓ ମୁଁ ଆଜି ଖାର୍‌କୋଭ୍ ଫେରିଯାଉଛୁ", ଦୁବାଭା କହିଲା, "ଆମର ଏଠାରେ ଆଉ କିଛି କରିବାର ନାହିଁ । ତମେ ଏକାଠି ମିଳିମିଶି ଚଳିବାକୁ ଚେଷ୍ଟାକର । ଆମେ ଏଥର ଅପେକ୍ଷା କରିବା ଓ ଦେଖିବା କ'ଣ ଘଟୁଛି । ଏକଥା ସତ ଯେ, ନିଖିଳ-ରୁଷ୍ ସମ୍ମିଳନୀ ଆମର ନିନ୍ଦାବାଦ କରିବ । କିନ୍ତୁ ମୋତେ ଲାଗୁଛି, ଏବେ ତତ୍‌କାଳ ସେମାନେ ଆମ ବିରୁଦ୍ଧରେ ଦମନମୂଳକ କାର୍ଯ୍ୟାନୁଷ୍ଠାନ କରିବେ ନାହିଁ । ସଂଖ୍ୟାଗରିଷ୍ଠ ମତରେ ଆମକୁ ଆଉରି ଗୋଟିଏ ଥର ପାଇଁ ସମୟ ଦେବା ଉଚିତ । ଖୋଲାଖୋଲିଭାବରେ ଆଉ ସଂଗ୍ରାମ ଚଳାଇବା ଅର୍ଥ, ପୁଣି ବିଶେଷକରି ଏ ସମ୍ମିଳନୀ ପରେ, ପାର୍ଟିରୁ ବହିଷ୍କୃତ ହେବା । ସେ ଯୋଜନା ଆମର ନାହିଁ । ଭବିଷ୍ୟତରେ ଆମ ଭାଗ୍ୟରେ କ'ଣ ଅଛି କେଜାଣି ? ଆଉ କ'ଣ ? ଏଇଆ ହେଲା ଆଉ ..." କହି ଦୁବାଭା ଯିବା ପାଇଁ ଉଠିଲା ।

ପତଳା ଓଠବାଲା ସ୍ତାରୋଭେରୋଭ୍ ମଧ୍ୟ ଉଠିଲା ।

"ତମେ କ'ଣ କହୁଛ ମୁଁ ବୁଝିପାରୁ ନାହିଁ ମିଟ୍ୟାୟ ?" ଖନାଙ୍କ ଭଳି ପାଟି ତା'ର ଲାଗୁଥାଏ । "ତା' ମାନେ କ'ଣ ସମ୍ମିଳନୀର ସିଦ୍ଧାନ୍ତକୁ ଆମେ ମାନିନେବାରେ କୌଣସି ବାଧ୍ୟବାଧକତା ନାହିଁ ?"

"ଉପର ଦେଖାଣିଆ ଭାବରେ ନିଶ୍ଚୟ ଅଛି, ନହେଲେ ପାର୍ଟି କାର୍ଡ ହରାଇବାକୁ ପଡ଼ିବ । ମାତ୍ର ଆମକୁ ଅପେକ୍ଷା କରି ଦେଖିବାକୁ ହେବ କୋଉ ପାଣି କୁଆଡ଼କୁ ଯାଉଛି ଏବଂ ଏବେ ଆମେ ଅଲଗା ଅଲଗା ହୋଇଯିବା ।" ଶ୍ୱେତାୟେଭ୍ କହିଲା ତାକୁ ବାଧାଦେଇ ।

ତୁଫ୍‌ତା ଅସ୍ୱସ୍ତିକର ଭାବରେ ନିଜ ଚଉକିରେ ଏପଟ ସେପଟ ହେଉଥିଲା । ଶ୍‌କୋଲେଙ୍କୋ ତଳକୁ ମୁହଁ ପୋତି ଚିନ୍ତାରେ କଳାକାଠ ପଡ଼ି ଝରକା ପାଖରେ ବସି ବାହାରକୁ ଗ୍ରହିଁଗ୍ରହିଁ ଦାନ୍ତରେ ନଖ କାମୁଡ଼ୁଥିଲା । ଶ୍ୱେତାୟେଭ୍‌ର କଥାରେ ସେ ମନମରାଭାବ ଛାଡ଼ି ସଭା ଭିତରକୁ ଅନାଇ ହଠାତ୍ ରାଗିଯାଇ କହିଲା :

"ଏମିତି ଦାଢେ ପଛକୁହା କାମକୁ ମୁଁ ବିରୋଧ କରେ । ବ୍ୟକ୍ତିଗତଭାବରେ ମୁଁ

ଭାବୁଛି ଯେ, ସମ୍ମିଳନୀର ସମସ୍ତ ସିଦ୍ଧାନ୍ତ ଆମେମାନେ ମଧ୍ୟ ମାନିବାକୁ ବାଧ୍ୟ । ଆମେ ଆମମାନଙ୍କର ଦୃଢ଼ ମତାମତ ପାଇଁ ଲଢ଼େଇ କରିଛେ, କିନ୍ତୁ ଏବେ ଯେଉଁ ସିଦ୍ଧାନ୍ତ ଗ୍ରହଣ କରାଯାଇଛି ତାକୁ ସ୍ୱୀକାର କରିନେବା !"

ତା' କଥାକୁ ପସନ୍ଦ କରି ସ୍ତାରୋଭେରୋଭ୍ ତା' ଆଡ଼କୁ ଅନାଇଲା । "ତାହାହିଁ ମୁଁ କହିବାକୁ ଚାହୁଁଥିଲି", ସେ କହିପକାଇଲା ।

ଶ୍‌କୋଲେଙ୍କୋ ଉପରେ ଆଖି ରଖି, ବ୍ୟଙ୍ଗ କରି ଦୁବାଭା କହିଲା :

"ତମକୁ ତ କେହି କହୁ ନାହାନ୍ତି କ'ଣ କରିପକାଅ ବୋଲି । ଏବେ ବି ସମୟ ଅଛି, ଆଞ୍ଚଳିକ ସମିତି ସମ୍ମିଳନୀ ଆଗରେ ବସି 'ପଶ୍ଚାତାପ' କରିବା ପାଇଁ ।"

ଶ୍‌କୋଲେଙ୍କୋ ଉଠିପଡ଼ିଲା ।

"ମୁଁ ତମର ଏଭଳି କଥାର ତୀବ୍ର ପ୍ରତିବାଦ କରୁଛି ଦ୍ମିତ୍ରି । ସ୍ପଷ୍ଟଭାବରେ କହିଲେ, ତମ କଥା ମୋତେ ଭୟଙ୍କର ବିରକ୍ତ ଲାଗିଲାଣି ଓ ମୁଁ ମୋ ନିଜ ଅବସ୍ଥାକୁ ପୁଣି ଥରେ ବିଚାରି ଦେଖିବାକୁ ବାଧ୍ୟ ହେବି ।"

ତାକୁ ପ୍ରାୟ କଥା ନକୁହାଇଦେଇ ଦୁବାଭା କହିଲା, "ତମେ ଏଇଆ କରିବ ବୋଲି ଜାଣିଥିଲି ମୁଁ । ଯାଅ ଯାଅ ଦଉଡ଼ କ୍ଷମାପ୍ରାର୍ଥନା କରିବାକୁ, ନହେଲେ ପୁଣି ଡେରି ହୋଇଯିବ !" ଏତିକି କହି ଦୁବାଭା, ତୁଫ୍‌ତା ଓ ଅନ୍ୟମାନଙ୍କ ସହିତ କରମର୍ଦ୍ଦନ କଲା ଓ ସେ ବାହାରି ଗଲା ।

ପରେ ପରେ ଶ୍‌କୋଲେଙ୍କୋ ଓ ସ୍ତାରୋଭେରୋଭ୍ ମଧ୍ୟ ଅନୁସରଣ କଲେ ।

* *

ଊଣେଇଶହ ଚବିଶ ମସିହାର ଇତିହାସର ଆରମ୍ଭ ହେଲା ନିଦାରୁଣ ଶୀତ-କାକର ଭିତରେ । ଜାନୁଆରୀ ବରଫାବୃତ ଭୂଖଣ୍ଡ ଉପରେ ନିଜର ଶୀତାର୍ତ୍ତ ପଞ୍ଜାକୁ ଆହୁରି ଦୃଢ଼ କରି ଆସିଲା । ମାସର ଦ୍ୱିତୀୟାର୍ଦ୍ଧରେ ଆରମ୍ଭ ହେଲା ଭୀଷଣ ଝଡ଼ ଓ ବରଫପାତ ।

ଦକ୍ଷିଣ-ପଶ୍ଚିମ ରେଳବାଇ ବରଫରେ ପୋତିହୋଇଗଲା ସଂପୂର୍ଣ୍ଣଭାବରେ । ପାଗଳ ଭଳି ଏ ବରଫ ସହିତ ଯୁଦ୍ଧ କରିବାକୁ ଲାଗିଲେ ମଣିଷ ।

ଲୁହାର ଲଙ୍ଗଳ, କୋଦାଳସବୁ ରେଳ ଯିବା ପାଇଁ ରାସ୍ତାଟିଏ କରିବାକୁ ବରଫ କାଟିବାରେ ଲାଗିଲେ । ଟେଲିଗ୍ରାଫ୍ ତାରସବୁ ଉପରେ ବରଫ ବର୍ଷା ଓ ଝଡ଼ରେ ବରଫ ଜମାହୋଇ ଓଜନିଆ ହୋଇ ନଇଁପଡ଼ିଲା ତଳକୁ । ବାରଟି ଲାଇନ୍‌ରୁ ମୋଟେ ତିନୋଟି କାମ କରୁଥାଏ । ଗୋଟିଏ ଇଣ୍ଡୋ-ୟୁରୋପୀୟ ଓ ଦୁଇଟି ସରକାରୀ ଲାଇନ୍ । ବାକିଗୁଡ଼ିକ ଅଚଳ ।

ଶେପେଟୋଭ୍‌କା ରେଳ ଷ୍ଟେସନ୍‌ରେ ତିନୋଟି ଟେଲିଗ୍ରାଫ୍ ଯନ୍ତ୍ର ଖଟ୍ ଖଟ୍ ହୋଇ ଲାଗିପଡ଼ି ଚାଲିଥାନ୍ତି । ସେସବୁର ଶବ୍ଦ କେବଳ ସମଝଦାରଙ୍କୁ ବୁଝାପଡ଼ୁଥାଏ ।

ମହିଳା ଅପରେଟରମାନେ ନୂଆକରି କାମ କରୁଥାନ୍ତି । ସେମାନେ ଯେତେ ଟେପ୍‌ରେ

କଥା ସଂଗ୍ରହ କରିଥାନ୍ତି, ତାହା ମୋଟରେ କୋଡ଼ିଏ କିଲୋମିଟର ହେବ କି ନାହିଁ। ମାତ୍ର ପୁରୁଖା ଟେଲିଗ୍ରାଫ୍ କଲବାଲ, ଯେଉଁମାନେ ସେମାନଙ୍କ କଡ଼ରେ ବସି କାମ କରୁଥାନ୍ତି, ସେଇ ସମୟ ଭିତରେ ଦୁଇଶହ କିଲୋମିଟର ଟେପ୍ କାମ କରି ସାରିଲେଣି। ତାଙ୍କ ଅଧସ୍ତନ ସହକର୍ମୀମାନଙ୍କ ଭଳି ତାଙ୍କୁ ସମ୍ବାଦଟି ଠିକ୍ କରିବା ପାଇଁ ଟେପ୍ ପଢ଼ିବାକୁ ପଡ଼ୁ ନଥାଏ ଓ କଷ୍ଟ ଶବ୍ଦ କି ବାକ୍ୟ ବୁଝିବାକୁ ତାଙ୍କର ଭ୍ରୂକୁଞ୍ଚନ ହେଉ ନଥାଏ। ବରଂ, ଯନ୍ତ୍ରର ଟିକିଟିକି ଶବ୍ଦ ହେଲା ମାତ୍ରେ, ଟେପ୍‌ରେ ଗୋଟାଏ ପରେ ଗୋଟାଏ ଶବ୍ଦ ସେ ଲେଖିଯାଉଥାନ୍ତି। ବର୍ତ୍ତମାନ ତାଙ୍କ କାନରେ ବାଜିଲା ଟିକ୍‌ଟିକ୍ ଭିତରେ – "ସମସ୍ତଙ୍କ ପାଇଁ... ସମସ୍ତଙ୍କ ପାଇଁ... ସମସ୍ତଙ୍କ ପାଇଁ!"

"ଏଇଟା ନିଶ୍ଚୟ ବରଫ ସଫା କରିବା ପାଇଁ ଆଉ ଗୋଟାଏ ସର୍କୁଲର୍", ବୁଢ଼ା ଟେଲିଗ୍ରାଫ୍‌ବାଲା ଭାବିଲେ ମନକୁ ମନ ଶବ୍ଦଗୁଡ଼ାକ ଲେଖୁଲେଖୁ। ବାହାରେ ବରଫ ପଡ଼ୁଥାଏ, ଝଡ଼ ବହୁଥାଏ ବରଫର। ଝରକାରେ ମେଁଘ ମେଁଘ ବରଫ ଛିଟିକି ପଡ଼ୁଥାଏ। ଟେଲିଗ୍ରାଫ କିରାନିଙ୍କୁ ଲାଗିଲା ଯେମିତି ଝରକାଟାକୁ କିଏ ଜଣେ ଠକ୍ ଠକ୍ କରି ବାଡ଼େଇ ଡାକୁଛି। ଶବ୍ଦ ଅନୁସରଣ କରି ତାଙ୍କ ଆଖି ଝରକା ଉପରେ ପଡ଼ିଲା। ମୁହୂର୍ତ୍ତକ ପାଇଁ ଝରକାକାଚରେ ଯେଉଁ ବରଫ ଚିହ୍ନିତ ଜଟିଳ ଚିତ୍ରଟି ଅଙ୍କା ହୋଇଛି, ସେଇଥିରେ ଆଖି ଲାଗିରହିଲା ତାଙ୍କର। କୌଣସି ଚିତ୍ରକରର ଏଭଳି ସୁନ୍ଦର ତାଳପତ୍ର ଅଙ୍କା ନକସା ସହିତ ଚିତ୍ର ହୁଏତ ସମ୍ମାନ ହୋଇ ପାରିବ ନାହିଁ।

ମୁହୂର୍ତ୍ତକ ପାଇଁ ତାଙ୍କ ଚିନ୍ତା ବିକ୍ଷିପ୍ତ ହୋଇଗଲା ଓ ସେ ଟେଲିଗ୍ରାଫ୍ ଯନ୍ତ୍ରର ଶବ୍ଦ ପ୍ରତି ଅମନୋଯୋଗୀ ହୋଇପଡ଼ିଲେ। ଏଥର ସେ ତଳକୁ ଅନାଇଁ ଯେଉଁ ଶବ୍ଦଗୁଡ଼ିକ ଛାଡ଼ିଯାଇଥିଲେ, ତାକୁ ପଢ଼ିଲେ। ଟେଲିଗ୍ରାଫ୍‌ରେ ଲେଖା ହୋଇଯାଇଥିଲା :

"ଜାନୁଆରୀ ଏକୋଇଶ ତାରିଖ, ଅପରାହ୍ଣ ଛଅଟା ପଗ୍ରଶ ମିନିଟ୍ ସମୟରେ..."

ଶବ୍ଦଗୁଡ଼ାକ ଚରଚର ହୋଇ ଲେଖିଦେଇ, ତଳକୁ ଟେପ୍‌ଟାକୁ ପକାଇଦେଇ, ଯନ୍ତ୍ରରୁ ଆଉ ନୂଆ ଶବ୍ଦ ଶୁଣିବାକୁ କାନ ଡେରିଲେ ଟେଲିଗ୍ରାଫର।

"ଗତକାଲି ଗୋର୍କୀଠାରେ ଦେହାବସାନ ଘଟିଛି..."

ଲେଖୁ ଲେଖୁ ସେ ଭାବୁଥିଲେ, ତାଙ୍କ ଦୀର୍ଘ ଗ୍ରକିରୀକାଳ ଭିତରେ କେତେ ଏମିତି ସମ୍ବାଦ ଟିପିଲେଣି ସେ। କେତେ ସମ୍ବାଦ ଆନନ୍ଦ, କେତେ ପୁଣି ନିଦାରୁଣ ଦୁଃଖ ବହିଆଣିଥାଏ। ସବୁବେଳେ ସେଇ ହିଁ ଅନ୍ୟମାନଙ୍କର ଦୁଃଖ ଓ ଆନନ୍ଦର କାହାଣୀ ପହିଲେ ଶୁଣନ୍ତି। ଅନେକଦିନୁ ସେ ଲମ୍ବା ଟାଣୁଆ ଶବ୍ଦର ଅର୍ଥ ଶୁଣିବା ଭୁଲିଗଲେଣି। କେବଳ ସେ ଶବ୍ଦଗୁଡ଼ାକ ଶୁଣି ଯାନ୍ତ୍ରିକ ଭାବେ ଅକ୍ଷରଗୁଡ଼ିକୁ କାଗଜ ଉପରେ ଲେଖି ପକାଇ ଥାନ୍ତି।

ଆଉ ଆଜି ମଧ୍ୟ କେହି ଜଣେ ମରିଛି ଏବଂ କାହାରିକୁ ଜଣକୁ ସେ ଖବର ଜଣାଇ ଦିଆଯାଉଛି। ମୃଢ଼ ଶବ୍ଦଗୁଡ଼ିକୁ ଭୁଲିଯାଇଥାନ୍ତି ଟେଲିଗ୍ରାଫର – "ସମସ୍ତଙ୍କୁ... ସମସ୍ତଙ୍କୁ... ସମସ୍ତଙ୍କୁ ଜଣାଇ ଦେବା ପାଇଁ!" ଏଥର ଯନ୍ତ୍ରଟିରୁ ଟିକ୍‌ଟିକ୍ ହୋଇ ବାହାରିଲା "ଭ୍ଲା... ଦି... ମି... ର୍... ଇ... ଲି... ଚ..." ପୁରୁଖା ଟେଲିଗ୍ରାଫର ଶବ୍ଦଗୁଡ଼ିକୁ ସଙ୍ଗେ

ସଙ୍ଗେ ଅକ୍ଷରରେ ଲେଖିଦେଲେ । ଅବିଚଳିତଭାବରେ କୌଣସି ଚିନ୍ତା ନକରି ସେ କାମ କରିଚାଲିଥାନ୍ତି । କେହି ଜଣେ ଭ୍ଲାଦିମିର୍ ଇଲିଚ୍ ବୋଲି ନାଁର ଲୋକ କେଉଁଠି ମରିଛି ... ସେ ଖବର ପାଇବ ଜଣେ କିଏ ଅତି ଶୋକରେ ଅଭିଭୂତ ହୋଇ, କାହା ଘରେ କାନ୍ଦବୋବାଳି ପଡ଼ିବ ଏଥି ପାଇଁ ଆଜି । ମାତ୍ର ଏ ସବୁଥିରେ ତାଙ୍କର ଯାଏ କେତେ ଆସେ କେତେ ? କାରଣ ଆକସ୍ମିକଭାବରେ ସେ ଏ ଦୁଃସମ୍ବାଦର ଜଣେ ବାହକ, ଜଣେ ସାକ୍ଷୀ ମାତ୍ର । ଏଥର ଯନ୍ତ୍ରଟିରୁ ବାହାରି ଆସିଲା ଏକ ବିନ୍ଦୁ ଚିହ୍ନ, ତା'ପରେ ଏକ ଡ୍ୟାସ୍ ଚିହ୍ନ, ତା'ପରେ ଆଉ କେତୋଟି ବିନ୍ଦୁ, ଆଉ ଗୋଟାଏ ଡ୍ୟାସ୍ ଚିହ୍ନ । ଧ୍ୱନି ଭିତରୁ ସେ ଲେଖିଲେ "ଲେ" ତା'ପରେ ଆସିଲା "ନି" ଓ ତା'ପରେ ସ୍ପଷ୍ଟ ହେଲା "ନ୍" ଅକ୍ଷରଟି ।

ଲେଖିସାରି ମୁହୂର୍ତ୍ତକର କେଉଁ ଭଗ୍ନାଂଶ ପାଇଁ ଲେଖିଥିବା ଶବ୍ଦଟି ଉପରେ ଆଖି ବୁଲାଇଆଣିଲେ ଟେଲିଗ୍ରାଫର । ଶବ୍ଦଟି "ଲେନିନ୍" । ଯନ୍ତ୍ରଟି ସେମିତି ଶବ୍ଦ କରି ଚାଲିଥିଲା । ମାତ୍ର ଟେଲିଗ୍ରାଫର କେବଳ ଜଣାଶୁଣା ଶବ୍ଦଟିକୁ ଦେଖୁଥାନ୍ତି ଓ ଥର ଥର କରି ଦେଖିସାରିଲା ପରେ ତାଙ୍କ ମନକୁ ଆସିଲା ... କ'ଣ ? ଲେନିନ୍ ? ମାନେ ? ସଂପୂର୍ଣ୍ଣ ଟେଲିଗ୍ରାମ୍‌ଟିର କଥା ତାଙ୍କ ଆଖି ଆଗରେ ଭାସିଗଲା । ସେ ଟେଲିଗ୍ରାମ୍ ଫର୍ମ ଉପରେ ପୁଣି ଥରେ ଆଖି ବୁଲାଇଆଣିଲେ । ତାଙ୍କର ବତିଶ ବର୍ଷର ଚାକିରୀ ଭିତରେ ଏ ପହିଲିଥର ପାଇଁ ସେ ନିଜେ ଯାହା ଲେଖିଛନ୍ତି, ତା' ଉପରେ ତାଙ୍କର ବିଶ୍ୱାସ ଆସିଲା ନାହିଁ । ନିଜ ଉପରେ ଭରସା ରଖିପାରିଲେ ନାହିଁ ସେ ।

ତିନିଥର ଧାଡ଼ିଗୁଡ଼ିକ ଉପରେ ଆଖି ବୁଲାଇଲେ ସେ । ନାଁ ସେ ଠିକ୍ ପଢ଼ୁଛନ୍ତି । ବାକ୍ୟରେ କୌଣସି ପରିବର୍ତ୍ତନ ନାହିଁ! "ଭ୍ଲାଦିମିର୍ ଇଲିଚ୍ ଲେନିନ୍‌ଙ୍କର ଦେହାବସାନ ଘଟିଛି ।"

ବୃଦ୍ଧ କିରାଣୀ ଟେଲିଗ୍ରାମ୍ ଟେପ୍‌କୁ ଝିଙ୍କି ଆଣି ସିଟ୍‌ରୁ ଉଠିପଡ଼ି ପୁଣି ଥରେ ପଢ଼ିଲେ । ନାଁ, ସେ ଯାହା ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହନ୍ତି ଟେପ୍‌ଟିରେ ସେଇଆ ହିଁ ଲିପିବଦ୍ଧ ହୋଇଛି ।

ଶେଥା ମୁହଁରେ ତାଙ୍କର ସହକର୍ମୀମାନଙ୍କ ଆଡ଼କୁ ଅନାଇଲେ ଓ ସହକର୍ମୀମାନଙ୍କ କାନରେ ପଡ଼ିଲା ତାଙ୍କର ଭୟବିହ୍ୱଳ ଚିତ୍କାର :

"ଲେନିନ୍ ଆଉ ନାହାନ୍ତି !"

ଏ ଦାରୁଣ ଦୁଃସମ୍ବାଦ ଘୁହୁଁଘୁହୁଁ ଟେଲିଗ୍ରାମ୍ ଅଫିସ୍‌ରୁ ବାହାରି ସାରା ଷ୍ଟେସନ୍ ଓ ସେଠାରୁ ତୁଷାର ଝଡ଼ ମଧ୍ୟ ଦେଇ ରେଳ ପଥରେ ସିଗ୍‌ନାଲ୍ ଘରକୁ, ବରଫାଚ୍ଛନ୍ନ ଷ୍ଟେସନ୍ ମଧ୍ୟରେ ଥିବା ହେମାଳ ଲୁହା ଫାଟକଯୁକ୍ତ ଇଂଜିନ୍ ସେଡ୍ ଭିତରେ ବ୍ୟାପିଗଲା ।

ଏକ ନମ୍ବର ମରାମତିଘର ଭିତରେ ଥିବା ଗୋଟିଏ ରେଳଇଞ୍ଜିନ୍‌କୁ ହଟେଇବା କାମରେ ଲାଗି ପଡ଼ିଥିଲେ ସାଧାରଣ ମରାମତକାରୀମାନଙ୍କର ଏକ ଦଳ । ବୃଦ୍ଧ

ପୋଲିତୋଭ୍‌ସି ଇଞ୍ଜିନ୍ ପେଟ ତଳେ ପେଟେଇଯାଇ ମେକାନିକ୍‌ମାନଙ୍କୁ ସବୁ ଅସୁବିଧା ଗୋଳମାଳିଆ ଜାଗାସବୁ ଦେଖାଉଥିଲେ । ଜାଖାର୍ ବ୍ରୁଷ୍ଟାକ୍ ଓ ଆର୍ଟେମ୍ ଇଂଜିନ୍ ଚୁଲୀର ଝାଞ୍ଜରାଟାର ବଙ୍କା ଲୁହାଛଡ଼ଗୁଡ଼ାକୁ ସଳଖାଉଥିଲେ । ଜାଖାର୍ ଚିମୁଟାରେ ଝାଞ୍ଜରାଟାକୁ ନେହି ଉପରେ ଧରିଥିଲା ଓ ଆର୍ଟେମ୍ ହାତୁଡ଼ିରେ ପିଟୁଥିଲା ।

ଜାଖାର୍ ବୁଢ଼ା ହୋଇଯାଇଛି । ଗଲା କେଇବର୍ଷ ତା କପାଳରେ ଗଭୀର କୁଞ୍ଚ ଦାଗସବୁ ଆଙ୍କି ଦେଇଛି ଓ କଳା ବାଳକୁ ପଗ୍‌ଭଇଦେଇଛି । ଅଣ୍ଟା ବଙ୍କେଇଯାଇଛି ଆଉ ବସି ଯାଇଥିବା ଆଖି କଣରେ କଳା ବୋଳି ହୋଇଯାଇଛି ।

ଦୁଆରମୁହଁରେ ଜଣଙ୍କର ଛାଇ ପଡ଼ିଲା । ପରେ ସଞ୍ଜ ଅନ୍ଧାରରେ ମିଳାଇଗଲା ତା' ଦେହଟା । ହାତୁଡ଼ି ପାହାର ଶବ୍ଦରେ ତା'ର ପ୍ରଥମ ଚିତ୍କାରଟା କାହାକୁ ଶୁଭିଲା ନାହିଁ । ମାତ୍ର ଇଞ୍ଜିନ୍ ପାଖରେ କାମ କରୁଥିବା ଲୋକଙ୍କ ପାଖରେ ସେ ଯେତେବେଳେ ପହଞ୍ଚିଗଲା, ତାକୁ ଅନାଇ ଆର୍ଟେମ୍ ହାତୁଡ଼ିପିଟା ବନ୍ଦ କରିଦେଲା ।

"କମ୍ରେଡ୍‌ମାନେ ! ଲେନିନ୍ ଆଉ ନାହାନ୍ତି !"

ଆର୍ଟେମ୍ ହାତରୁ ହାତୁଡ଼ିଟା ଧୀରେ ଖସି ପଡ଼ିଲା କଂକ୍ରିଟ୍ ଚଟାଣ ଉପରେ ନିଃଶବ୍ଦରେ ।

"କ'ଣ ? କ'ଣ କହିଲ ତମେ ?" ଆର୍ଟେମ୍‌ର ହାତ ଲୋକଟି ପିନ୍ଧିଥିବା ମେଣ୍ଢାଚମଡ଼ାର କୋଟ୍‌କୁ ଜାବୁଡ଼ି ଧରିଲା ଉତ୍ତେଜନାରେ ।

ଅଣନିଃଶ୍ୱାସୀ ହୋଇ ଦୌଡ଼ିଦୌଡ଼ି ଏ ଭୟଙ୍କର ସମ୍ବାଦ ନେଇଆସିଥିବା ଲୋକଟି ଦଣ୍ଡେ ଅଟକି ନିଃଶ୍ୱାସ ନେଇ କହିଲା :

"ହଁ କମ୍ରେଡ୍ ... ଲେନିନ୍ ଚାଲିଗଲେ ।"

ଲୋକଟି ପାଟିକରି କହୁ ନଥିଲା ଏଣୁ ଆର୍ଟେମ୍‌ର ବିଶ୍ୱାସ ହେଲା ଯେ, ସେ ମିଛ କହୁ ନାହିଁ । ଏ ଦାରୁଣ ସମ୍ବାଦ ସତ୍ୟ । ବର୍ତ୍ତମାନ ସେ ଲୋକଟିକୁ ଚିହ୍ନିପାରିଲା । ସ୍ଥାନୀୟ ପାର୍ଟି ସଂଗଠନର ସଂପାଦକ ସେ ।

ଇଞ୍ଜିନ୍ ଖାତରୁ ସମସ୍ତେ ବାହାରି ଆସିଲେ ଓ ସାରା ବିଶ୍ୱକୁ ଚହଲାଇ ଦେଇଥିବା ମଣିଷଟିର ଦାରୁଣ ମୃତ୍ୟୁ ସମ୍ବାଦ ନୀରବରେ ଶୁଣିଲେ ।

ଠିଆ ହୋଇଥିବା ଲୋକମାନଙ୍କ ଭିତରେ ଏକ କମ୍ପନ ଖେଳାଇଦେଇ ଦୂରରେ ଗୋଟାଏ ଇଞ୍ଜିନ୍ ଚିତ୍କାର କରିଉଠିଲା । ସେ ଭୟପ୍ରଦ ଶବ୍ଦଟା ପ୍ରତିଧ୍ୱନିତ ହେଲା ପ୍ଲାଟ୍‌ଫର୍ମର ଶେଷ ସୀମାନ୍ତରେ ଚିତ୍କାର କରିଉଠିଥିବା ଆଉ ଗୋଟିଏ ଇଞ୍ଜିନ୍ ଶବ୍ଦରେ । ପରେ ଯୋଗଦେଲା ସେଥିରେ ଆଉ ଗୋଟିଏ ଇଞ୍ଜିନ୍‌ର ଚିତ୍କାର । ଇଞ୍ଜିନ୍‌ଗୁଡ଼ିକର ସମବେତ ରବ ସହିତ ମିଶିଗଲା ଇଲେକ୍‌ଟ୍ରିକ୍ ପାୱାର ଷ୍ଟେସନ୍‌ର ସାଇରନ୍‌ର ଗୋଳାର ଟ୍ୱକୁରା ଉଡ଼ିଗଲା ଭଳି ତୀବ୍ର ଆଉ ଚଡ଼ା ଶବ୍ଦ । ତା'ପରେ ଅନ୍ୟ ସମସ୍ତ ଆବାଜକୁ ଘୋଡ଼ି କିଏଭ୍ ଯାତ୍ରା କରୁଥିବା ଯାତ୍ରୀବାହୀ ଗାଡ଼ିର ଅତି ସୁନ୍ଦର "ଏସ୍" ଇଞ୍ଜିନ୍‌ର ଗଭୀର ଚଡ଼ା ଝଙ୍କାର ଶୁଣାଗଲା ।

ଶେପେଟୋଭ୍‌କା-ଓ୍ୱାର୍ସା ଦ୍ରୁତଗାମୀ ରେଳ ଗାଡ଼ିର ପୋଲାଣ୍ଡୀୟ ଇଞ୍ଜିନ୍‌ର ଡ୍ରାଇଭର ଇଞ୍ଜିନ୍‌ଗୁଡ଼ିକର ଏ ଚିତ୍କାର ଶବ୍ଦ ଶୁଣି ଆତଙ୍କପ୍ରଦ ଶବ୍ଦର କାରଣ କ'ଣ ଜାଣିବା ପାଇଁ କାନ ଡେରି ରହିଲା ଓ ପରେ ନିଜ ଗାଡ଼ିର ସିଟି ବଜାଇବା ତାରଟିକୁ ଟାଣିଧରିଲା । ସେ ଜାଣୁଥିଲା ଯେ, ଶେଷଥର ପାଇଁ ମାତ୍ର ଏ କାମ କରୁଛି ଓ କାଲିଠାରୁ ଆଉ ଏ ରେଳ ଚଳାଇବା ପାଇଁ ହୁଏତ ତାକୁ ଦିଆଯିବ ନାହିଁ । ତଥାପି ସିଟି ବଜାଇବା ତାରରୁ ତା' ହାତ ଖସିଲା ନାହିଁ । ଇଞ୍ଜନ୍‌ର ତୀବ୍ର ଚିତ୍କାରରେ ଗାଡ଼ିରେ ଶାନ୍ତିରେ ଗଦିରେ ଢଳାଇ ବସିଥିବା ପୋଲାଣ୍ଡର କୂଟନୀତିବିଦ୍ ଓ ରାଷ୍ଟ୍ରୀୟ ପ୍ରତିନିଧିମାନେ ଚମକି ପଡ଼ି ଉଠି ବସିଲେ ।

ରେଳ କାରଖାନା ଭିତରେ ଲୋକଗହଳି ହୋଇଗଲା । ସବୁ ଫାଟକ ଦେଇ ସେମାନେ ଆସିବାକୁ ଲାଗିଲେ । ସାରା କୋଠାଟି ଲୋକରେ ଭରପୂର ହୋଇ ଉଛୁଳି ଉଠିଲା ପରେ ଶାନ୍ତି, ନୀରବତା ଭିତରେ ଶୋକସଭା ଆରମ୍ଭ ହେଲା ।

ପୁରୁଖା ବଲ୍‌ଶେଭିକ୍ ଓ ପାର୍ଟିର ଶେପେଟୋଭ୍‌କା ଆଞ୍ଚଳିକ କମିଟିର ସଂପାଦକ ଶାରାବ୍ରିନ୍ ଭାଷଣ ଦେଲେ :

"କମ୍ରେଡ୍‌ଗଣ ! ସାରା ବିଶ୍ୱର ସର୍ବହରାର ବନ୍ଧୁ ଲେନିନ୍ ଆଉ ନାହାନ୍ତି । ତାଙ୍କ ମୃତ୍ୟୁରେ ପାର୍ଟିର ଯେଉଁ ଅପୂରଣୀୟ କ୍ଷତି ହେଲା, ତାହା ଭାଷାରେ ପ୍ରକାଶ କରି ହେବ ନାହିଁ । କାରଣ ବଲ୍‌ଶେଭିକ୍ ପାର୍ଟିର ସ୍ରଷ୍ଟା ଓ ଶତ୍ରୁକୁ ମୁକାବିଲା କରିବାକୁ ଶିକ୍ଷା ଦେଇଥିବା ଶିକ୍ଷକ ଆଜି ନାହାନ୍ତି ... ଆମ ଶ୍ରେଣୀର ଓ ଆମ ପାର୍ଟିର ପ୍ରିୟ ନେତାଙ୍କର ଦେହାବସାନ, ସାରା ସର୍ବହରା ଶ୍ରେଣୀର ଶ୍ରେଷ୍ଠ ସନ୍ତାନମାନଙ୍କୁ ତାଙ୍କ ପାର୍ଟିରେ ଯୋଗଦେଇ ଅପୂର୍ଣ୍ଣ କାମକୁ ଆଗେଇନେବା ପାଇଁ ଏକ ଆହ୍ୱାନ ... ।"

ଶୋକସଭା ଆରମ୍ଭ ହେଲା । ସମସ୍ତେ ମୁଣ୍ଡରୁ ଟୋପି କାଢ଼ି ଯୋଗ ଦେଲେ । ଦୀର୍ଘ ପନ୍ଦର ବର୍ଷ ଭିତରେ କେବେହେଲେ କାନ୍ଦି ନଥିବା ଆର୍ଟେମ୍‌ର କଣ୍ଠ ବାଷ୍ପାକୁଳ ହୋଇଉଠିଲା କୋହରେ । ଛାତି ଥରିଉଠିଲା ତା'ର, ଲୁହ ଝରି ପଡ଼ିଲା ।

ରେଳବା ଶ୍ରମିକଙ୍କର କ୍ଲବ୍‌ର ହଲ୍‌ଘରଟା ସତେ ଯେମିତି ଜନଗହଳର ଚାପରେ ଗୁମୁରି ଉଠୁଥିଲା । ବାହାରେ ପ୍ରବଳ ଥଣ୍ଡା । ପ୍ରବେଶ ଦ୍ୱାର ମୁହଁରେ ଥିବା ଦୁଇଟି ଫାର୍ ଗଛର ପତ୍ର ସାରା ବରଫରେ ଛାଇଯାଇଥିଲା । ମାତ୍ର ହଲ୍ ଭିତରେ ଗରମରେ ଗୁମ୍‌ସୁମ୍ ହୋଇ ଉଠୁଥିଲା ତତଲା ଉହ୍ନେଇ ଓ ସ୍ତୁତିସଭାରେ ଯୋଗ ଦେଉଥିବା ଛଅଶହ ଲୋକଙ୍କର ନିଃଶ୍ୱାସ ପ୍ରଶ୍ୱାସ ଯୋଗୁଁ । ପାର୍ଟି ସଙ୍ଘ ପକ୍ଷରୁ ସ୍ତୁତିସଭା ହେଉଥିଲା ।

ଶୋକବିଦଗ୍ଧ ଜନସାଧାରଣଙ୍କର କୋହମିଶା କଥା ସାଧାରଣ କଥୋପକଥନର ଗୁଞ୍ଜନକୁ ଦୂରେଇ ଦେଇଥିଲା । ସଭିଏଁ ନିମ୍ନସ୍ୱରରେ କଥାବାର୍ତ୍ତା କରୁଥାନ୍ତି ଓ ପ୍ରତ୍ୟେକଙ୍କ ଆଖିରେ ବାରିହୋଇ ଯାଉଥାଏ ଉଦ୍‌ବେଗ ଓ ଶୋକ । ସମସ୍ତେ ଯେମିତି ଏକ ଜାହାଜର ଯାତ୍ରୀ, ଯାହାର କର୍ଣ୍ଣଧାର ଝଡ଼ରେ ହଜିଯାଇଛନ୍ତି ଆଜି ।

ବ୍ୟୁରୋର ସଦସ୍ୟମାନେ ମଞ୍ଚ ଉପରେ ନିଜ ନିଜର ଆସନ ଗ୍ରହଣ କଲେ ନୀରବ

ହୋଇ । ଖର୍ବକାୟ ସିରୋତେଙ୍କୋ ସାବଧାନ ହୋଇ ନିର୍ଦ୍ଦେଶ ଘଣ୍ଟା ବଜାଇଲେ ଓ ଟେବୁଲ ଉପରେ ରଖିଦେଲେ । ଏତିକିରେ ସାରା ହଲ୍‌ରେ ନୀରବତା ଭରିଗଲା ।

ମୁଖ୍ୟ ବକ୍ତୃତା ଶେଷ ହେଲା ପରେ ପାର୍ଟି ସଂଗଠନର ସମ୍ପାଦକ ସିରୋତେଙ୍କୋ କ'ଣ କହିବାକୁ ଉଠି ଛିଡ଼ାହେଲେ । ସେ ଯେଉଁ ଘୋଷଣା କଲେ, ତାହା ସାଧାରଣତଃ ଏକ ସ୍ତୁତି ସଭାରେ କରାଯାଏ ନାହିଁ । ମାତ୍ର ସେଥିରେ କେହି ବିସ୍ମିତ ବା ବିଚଳିତ ହେଲେ ନାହିଁ ।

"ଅନେକ ଶ୍ରମିକ ପାର୍ଟି ସଭ୍ୟପଦ ପାଇଁ ଗୋଟିଏ ଦରଖାସ୍ତ ଦେଇ ଏହି ସଭାକୁ ତାହା ବିଗ୍ଭର ପାଇଁ ଆବେଦନ କରିଛନ୍ତି । ସେଥିରେ ସଇଁତ୍ରିଶ ଜଣ କମ୍ରେଡ୍ ଦସ୍ତଖତ ଦେଇଛନ୍ତି ।" ଘୋଷଣା କଲେ ସେ ଓ ପଢ଼ିଲେ ସେ ଦରଖାସ୍ତଟିକୁ :

"ଦକ୍ଷିଣ-ପଶ୍ଚିମ ରେଳବାଇର ଶେପେତୋଭ୍‌କା ଷ୍ଟେସନ୍‌ର ବଲ୍‌ଶେଭିକ୍ ପାର୍ଟି ସଂଗଠନ, ସମୀପେଷୁ ।

ଆମ୍ଭମାନଙ୍କର ପ୍ରିୟ ନେତାଙ୍କର ମୃତ୍ୟୁ ବଲ୍‌ଶେଭିକ୍‌ମାନଙ୍କ ପାର୍ଟିରେ ଯୋଗ ଦେବା ପାଇଁ ଏକ ଆହ୍ୱାନ ଏବଂ ଆମ୍ଭେମାନେ ଲେନିନ୍‌ଙ୍କର ପାର୍ଟିରେ ଯୋଗ ଦେବା ପାଇଁ ଆମର ଯୋଗ୍ୟତା ବିଗ୍ଭର କରିବା ନିମିତ୍ତ ଏହି ସଭାକୁ ଅନୁରୋଧ ଜଣାଉଛୁ ।"

ଏହି ସଂକ୍ଷିପ୍ତ ଲେଖାଟି ସହିତ ଦୁଇ ସ୍ତମ୍ଭରେ ଦସ୍ତଖତଗୁଡ଼ିକ ଯୋଡ଼ାଯାଇଛି ।

ସିରୋତେଙ୍କୋ ବଡ଼ପାଟିରେ ପଢ଼ିଲେ ସେଗୁଡ଼ିକୁ ସବୁ ଗୋଟିକ ପରେ ଗୋଟିଏ । ଗୋଟିଏ ନାଁ ପଢ଼ିସାରି ସେ ଟିକିଏ ଅଟକି ଯାଉଥାନ୍ତି, ଯାହା ଫଳରେ ସଭା ସେ ନାମଧାରୀଙ୍କୁ ମନେ ପକାଇ ପାରିବ ଠିକ୍ କରି :

"ସ୍ତାନିସ୍ଲାଭ୍ ଜିଗ୍‌ମୁନ୍ଦୋଭିଚ୍ ପୋଲିତୋଭ୍‌ସ୍କି—ଇଂଜିନ୍‌ଗ୍ଭଳକ । ଛତିଶ ବର୍ଷ ଗ୍ଭକିରୀ ।"

ଅନୁମୋଦନର ଗୁଞ୍ଜନ ଖେଳିଗଲା ହଲ୍‌ଟି ସାରା ।

"ଆର୍ତେମ୍ ଆନ୍ଦ୍ରେୟେଭିଚ୍ କୋର୍ଚ୍‌ଗିନ୍—ମେକାନିକ୍, ସତର ବର୍ଷ ଗ୍ଭକିରୀ ।"

"ଜାଖାର୍ ଭାସିଲିୟେଭିଚ୍ ବ୍ରୁଝାକ୍—ଇଂଜିନ୍‌ଗ୍ଭଳକ, ଏକୋଇଶ ବର୍ଷ ଗ୍ଭକିରୀ ।"

ହଲ୍‌ଘରେ ଗୁଞ୍ଜନ ଧ୍ୱନି ଧୀରେ ଧୀରେ ବଢ଼ିବାକୁ ଲାଗିଲା, ମଞ୍ଚ ଉପରୁ ସିରୋତେଙ୍କୋ ପୁରୁଖା ଆଉ ଅଭିଜ୍ଞ ରେଳବାଇ ଶ୍ରମିକମାନଙ୍କ ନାଁ ଗୋଟିକ ପରେ ଗୋଟିଏ କୁହାଯିବା ସଙ୍ଗେ ସଙ୍ଗେ ।

ସବା ଆଗରେ ନିଜ ନାଁ ଲେଖା ହୋଇଥିବା ପୋଲିତୋଭ୍‌ସ୍କି ସଭା ମଞ୍ଚରେ ଠିଆହେବା ମାତ୍ରେ ପୁଣି ନୀରବ ହୋଇଗଲେ ସମସ୍ତେ ।

ନିଜ ଜୀବନର କାହାଣୀ ଶୁଣାଇଲେ ବୃଦ୍ଧ, ବହୁ କଷ୍ଟରେ ନିଜର ଉତ୍ତେଜନା ରୋଧ କରି ।

"କମ୍ରେଡ୍‌ଗଣ ! ମୁଁ ବା ତମମାନଙ୍କୁ କ'ଣ କହି ପାରିବି ? ଆଗକାଳେ ଶ୍ରମିକର ଜୀବନ କିପରି ଥିଲା, ତମେ ସମସ୍ତେ ଜାଣିଛ । କ୍ରୀତଦାସ ଭଳି ସାରା ଜୀବନ ଖଟିଖଟି

ବୁଢ଼ାଦିନେ ଭିକାରୀ ହୋଇ ବଞ୍ଚିଛି । ବିପ୍ଳବ ଆସିବାବେଳେ ମୁଁ ଭାବିଥିଲି ... ସତ କହୁଛି ଆଜି ତମମାନଙ୍କ ଆଗରେ, ଯେ ମୁଁ ତ ବୁଢ଼ାଲୋକ, ଏତେ ପରିବାର ମୋର! ସେଇଥି ପାଇଁ ପାର୍ଟିରେ ଯୋଗ ଦେଇ ନଥିଲି । କେବେହେଲେ ଶତ୍ରୁଙ୍କ ସାଙ୍ଗେ ଯୋଗ ଦେଇ ନଥିଲେ ମଧ୍ୟ ସଂଗ୍ରାମରେ କେବେହେଲେ ଭାଗ ନେଇ ନାହିଁ ମୁଁ । ୧୯୦୫ ମସିହାରେ ଓ୍ୱାର୍ସାର ରେଳ କାରଖାନାରେ ଧର୍ମଘଟ ସମିତିରେ ସଭ୍ୟଟିଏ ଥିଲି । ଆଉ ସେତେବେଳେ ମୁଁ ବଲ୍‌ଶେଭିକ୍‌ମାନଙ୍କ ପକ୍ଷ ନେଇଛି । ସେତେବେଳେ ମୁଁ ଟୋକା ଥିଲି, ଯୁଦ୍ଧ କରିବା ପାଇଁ ବଳ ଥିଲା । ଆଉ ସେ ଗତକଥା ମନକୁ ଆଣି କି ଲାଭ? ଇଲିଚ୍‌ଙ୍କର ମୃତ୍ୟୁ ମୋର ହୃଦୟ ବିଦାରି ଦେଇଛି । ଆମେ ଆମ ସାଥୀ, ଆମ ଅଗ୍ରଣୀଙ୍କୁ ହରାଇଛୁ । ଆଉ ଏ ଶେଷଥର ପାଇଁ ମୁଁ ବୁଢ଼ା ହୋଇଗଲିଣି ବୋଲି ଶେଷ ଥର ପାଇଁ କହିଲି । କିନ୍ତୁ କଥାଟାକୁ କିପରି ଉଠାଇବାକୁ ହେବ ତାହା ମୁଁ ଜାଣିପାରୁ ନାହିଁ । ମୁଁ କେବେ ଭାଷଣ ଦେଇ ନାହିଁ । ହେଲେ ଏତିକି କହିରଖେ—ମୋ ରାସ୍ତା ଆଉ କେଉଁ ରାସ୍ତା ନୁହେଁ କି ହେବ ନାହିଁ—ତାହା ବଲ୍‌ଶେଭିକ୍‌ଙ୍କର ନିର୍ଦ୍ଦେଶିତ ପଥ ।"

ବୃଦ୍ଧ ଇଞ୍ଜିନ୍‌ଚାଳକ ଦୁଇଥର ନିଜର ପାଚିଲା ମୁଣ୍ଡ ଟୁଙ୍ଗାରିଲେ । ନିଜର ଧଳା ଆଖିପତା ଭିତରୁ ଦୃଢ଼ ଓ ସ୍ଥିରଭାବରେ ଲୋକଙ୍କୁ ଅନାଇଲେ, ଯେମିତି ସେ ତାଙ୍କଠାରୁ ଦୃଢ଼ ସିଦ୍ଧାନ୍ତ ଶୁଣିବାକୁ ଅପେକ୍ଷା କରିଛନ୍ତି ।

ଛୋଟିଆ ପାଚିଲା ମୁଣ୍ଡିଆ ବୁଢ଼ାଙ୍କ ଆବେଦନର ବିରୋଧରେ ଗୋଟିଏ ହେଲେ ସ୍ୱର ଶୁଭିଲା ନାହିଁ । ଭୋଟରେ ସମସ୍ତେ ଭାଗ ନେଲେ, ଏପରିକି ପାର୍ଟି ବାହାରର ଯାହାଙ୍କୁ ଭାଗ ନେବାକୁ ଡକାଯାଇଥିଲା ସେମାନେ ମଧ୍ୟ ।

ପୋଲିତୋଭ୍‌ସି କମ୍ୟୁନିଷ୍ଟ ପାର୍ଟିର ଜଣେ ସଦସ୍ୟ ହୋଇ ସଭାପତି ମଣ୍ଡଳୀଙ୍କର ଟେବୁଲ ପାଖରୁ ତଳକୁ ଓହ୍ଲାଇଆସିଲେ ।

ସମସ୍ତେ ଜାଣିଥିଲେ ଯେ, ଏକ ନୂଆ ଘଟଣା ଘଟିବାକୁ ଯାଉଛି । ତା' ପରେ ଆର୍ଟେମ୍‌ର ବିରାଟ ବପୁ ମଞ୍ଚ ଉପରକୁ ଆସି ପୋଲିତୋଭ୍‌ସି ଛିଡ଼ା ହୋଇଥିବା ଜାଗାରେ ଠିକ୍ ଛିଡ଼ାହେଲା । ହାତ ଦୁଇଟାରେ କ'ଣ କରିବ ସ୍ଥିର କରି ନପାରି ମେକାନିକ୍ ନିଜର ଲୁମର ଟୋପିଟାକୁ ଧରିଲା । ତା'ର ମେଣ୍ଢାଚମଡ଼ାର ଜ୍ୟାକେଟ୍ ତଳୁ ଛିଡ଼ିଯାଇଥିଲା ଓ ଖୋଲା ଥିଲା । ମାତ୍ର ବଡ଼ କଲର୍‌ବାଲା ତା'ର ବିରାଟ ସୈନିକ ପୋଷାକଟାରେ ଦୁଇଟା ପିତଳ ବୋତାମ ବନ୍ଦ ଥାଇ ସେ ବେଶ୍ ପରିଚ୍ଛନ୍ନ ଦିଶୁଥିଲା । ହଲ୍‌କୁ ଅନାଇ ଆର୍ଟେମ୍‌ର ଆଖି ଜଣାଶୁଣା ଜଣେ ସ୍ତ୍ରୀଲୋକର ମୁହଁ ଉପରେ ପଡ଼ିଲା । ପଥୁରିଆର ଝିଅ ଗାଲିନା, ଦରଜୀ ଦୋକାନର ତା'ର ସହକର୍ମୀମାନଙ୍କ ସହିତ ବସିଛି । ସେ ବି ଆର୍ଟେମ୍‌କୁ ଅନାଇଥିଲା ମୁହଁରେ କ୍ଷମାଦେବା ଭଙ୍ଗୀରେ, ହସ ଉଠୁଚାଇ । ଏବଂ ସେ ହସରେ ଆର୍ଟେମ୍ ତା'ର ସମ୍ମତି ଓ କହିବା ପାଇଁ ଅନେକ କଥା ଖୋଜି ପାଇଗଲା ।

"ସମସ୍ତଙ୍କୁ ତମ ନିଜ କଥା କୁହ, ଆର୍ଟେମ୍ ।" ସେ ଶୁଣିଲା ସିରୋତେଙ୍କୋ ତାକୁ କହୁଛି ।

ନିଜ କାହାଣୀ ଆରମ୍ଭ କରିବା ଆର୍ତେମ୍ ପକ୍ଷରେ ସହଜ ନଥିଲା । ଏତେ ଲୋକଙ୍କର ସଭାରେ କେବେହେଲେ ଜୀବନରେ ସେ ଭାଷଣ ଦେଇ ନାହିଁ କି କିଛି କହି ନାହିଁ । ତାକୁ ହଠାତ୍ ଲାଗିଲା, ଜୀବନର ସବୁ କିଛି ପ୍ରକାଶ କରିବା ତା' ଶକ୍ତିର ବାହାରେ । ତା'ର ଭୟ ତାକୁ ଅଧିକରୁ ଅଧିକ କଷ୍ଟକର କରିଦେଲା ଓ ସେ କେବଳ ଥଙ୍ଗ ଥଙ୍ଗ ହେଲା । କେବେ ତା'ର ଏଭଳି ଅଭିଜ୍ଞତା ହୋଇ ନଥିଲା । ସେ ଅନୁଭବ କରୁଥିଲା ଯେ, ଆଜି ତା' ଜୀବନର ଗତିପଥ ପରିବର୍ତ୍ତିତ ହେବାକୁ ଯାଉଛି ସାରା ଭବିଷ୍ୟତ ପାଇଁ । ସେ ଏଭଳି ଏକ ପଦକ୍ଷେପ ଆଜି ନେବାକୁ ଯାଉଛି, ଯାହା ତା' ନିରସ, ଘଷରା ଜୀବନରେ ଆଣିଦେବ ଉଷ୍ଣତା, ଆଣିଦେବ ବଞ୍ଚିବାର ସ୍ୱାଦ ।

"ଆମେ ଗ୍ରରିଜଣ ଥିଲୁ", ଆର୍ତେମ୍ ଆରମ୍ଭ କଲା ।

ସାରା ହଲ୍ ନୀରବ ହୋଇଗଲା ଓ ଛଅଶହ ଜଣ ଲୋକ ଅତି ଉତ୍କଣ୍ଠା ସହିତ ଡେଙ୍ଗା, ଶୁଆଥଣ୍ଡିଆ ଶ୍ରମିକଟିର କାହାଣୀ ଶୁଣିବାକୁ ଲାଗିଲେ । ଗହନ କଳା ଆଖିପତା ଭିତରେ ଆଖି ଦୁଇଟା ଲୁଚିଯାଇଥାଏ ତା'ର ।

"ମାଆ ମୋର ବଡ଼ଲୋକଙ୍କ ଘରର ରାନ୍ଧୁଣୀ । ବାପା କଥା ମୋର ହେତୁ ନାହିଁ । ମା'ର ଓ ତା'ର ପଡ଼ୁ ନଥିଲା । ସେ ବହୁତ ବେଶି ପିଉଥିଲା । ତେଣୁ ମାଆ ଉପରେ ପଡ଼ିଥିଲା ଆମ ଛୁଆମାନଙ୍କୁ ବଢ଼େଇ କୁଢ଼େଇବାର ଦାୟିତ୍ୱ । ଏତେଗୁଡ଼ିଏ ମୁହଁରେ ଢୋକ ଦେବାକୁ ତାକୁ ଅନେକ କଷ୍ଟ କରିବାକୁ ପଡ଼ିଥିଲା । ସକାଳୁ ସଞ୍ଜ ଯାଏ ସେ ଜଣକ ଘରେ ନିଜକୁ କ୍ରୀତଦାସୀ କରି, ତା' ନିଜର ଖାଇବା ଗଣ୍ଡାକ ଓ ମାସ ଶେଷକୁ ଗ୍ରରୋଟି ରୁବଲ ପାଉଥିଲା । ମୁଁ ଭାଗ୍ୟକୁ ସ୍କୁଲରେ ଦୁଇଟି ଶୀତ ବିତାଇଛି । ସେମାନେ ମୋତେ ଲେଖିବାକୁ, ପଢ଼ିବାକୁ ଶିଖାଇଥିଲେ । ହେଲେ ମୋତେ ନଅ ବର୍ଷ ହେଲା ଦିନୁଁ ମାଆ ମୋତେ ଗୋଟିଏ ମେକାନିକ୍ କାରଖାନାକୁ କାମ ଶିଖିବାକୁ ପଠାଇଲା । ତିନିବର୍ଷ କାଳ କେବଳ ପେଟକୁ ଗଣ୍ଡାଏ ଖାଇ, କାମ କରିଛି ମୁଁ । କାରଖାନା ମାଲିକ ଫେର୍ଷ୍ଟର୍ ବୋଲି ଜଣେ ଜର୍ମାନ୍ । ପହିଲେ ମୋତେ ନେବାକୁ ସେ ଗ୍ରହୁଁ ନଥିଲା । କହିଲା, ମୁଁ ଅତି ପିଲାଟାଏ । ହେଲେ ମୁଁ ବେଶ ଟାଣୁଆ ଥିଲି । ଆଉ ମା' ବର୍ଷେ ଦି'ବର୍ଷ ବଢ଼େଇ କରି ତାକୁ କହିଦେଲା । ସେ ଜର୍ମାନ୍ ପାଖରେ ମୁଁ ତିନିବର୍ଷ ଖଟିଲି, ହେଲେ କିଛି କାମ ନଶିଖାଇ ସିଏ ମୋତେ କେବଳ ତା'ଘରେ ଆଜ୍ଞେବାଜେ କାମ କରାଏ ଆଉ ଭୋଦ୍କା ଆଣିବାକୁ ଦଉଡ଼ାଏ । ସବୁବେଳେ ସେ ମଦ ନିଶାରେ ଚୁର୍ ହୋଇ ରହୁଥିଲା । କୋଇଲା, ଲୁହା ଆଣିବାକୁ ବି ପଠାଏ ମୋତେ । ମାଲିକାଣୀ ପୂରାପୂରି ଗ୍ରକର ଭଳି ବ୍ୟବହାର କରେ ମୋ ସାଙ୍ଗେ । ବାସନ ମାଜିବାକୁ, ଆଳୁ ଖୋସା ଛଡ଼ାଇବାକୁ ପଡ଼େ ମୋତେ । ଯାଉଣୁ ଆସୁଣୁ ଗୋଇଠାଏ ଲେଖାଏଁ ପକାଏ ସେ ମୋତେ । ଅଧିକାଂଶ ସମୟରେ ଅକାରଣଟାରେ କେବଳ ତା'ର ଅଭ୍ୟାସବଶତଃ । ସ୍ୱାମୀ ମଦ ପିଏ ବୋଲି ମାଲିକାଣୀ ତୁଚ୍ଛାକୁ ସବୁବେଳେ ତମତମ ହୋଇଥାଏ । ଆଉ ଯଦି ମୁଁ ତାକୁ ଖୁସି ନକଲି, ତେବେ ପିଟିପକାଏ । ବିକଳରେ ରାସ୍ତା ଉପରକୁ ଦୌଡ଼ି ପଳାଇ ଆସେ ମୁଁ ତା'ମାଡ଼ରୁ

ରକ୍ଷା ପାଇବାକୁ । ହେଲେ କୁଆଡ଼େ ଯିବି ମୁଁ ? କାହା ଆଗରେ ଅଭିଯୋଗ କରିବି ? ମା' ମୋର ଶହଶହ ମାଇଲ ଦୂରରେ । ସିଏ ବି ମୋତେ ରଖିପାରିବ ନାହିଁ । କାରଖାନାରେ ବି କୋଉ ଭଲ ? ମାଲିକର ଭାଇ ଦାୟିତ୍ୱରେ ଥାଏ । ବାଜେ ଲୋକଟାଏ ... ମୋତେ ହଇରାଣ କରି ସେ ମଜା ଦେଖେ । 'ହେ, ପିଲା ... ଯିବୁଟି, ସେଠୁ ସେ ଓ୍ୱାଶର୍‌ଟା ଆଣିବୁ' ଗୋଟାଏ କୋଣକୁ ଦେଖାଇଦେଇ କହିବ ସିଏ । ମୁଁ ଦୌଡ଼ିଯାଇ ଓ୍ୱାଶର୍‌ଟାକୁ ଧରିଲା କ୍ଷଣି ଚିତ୍କାର କରି ଉଠେ – ସେଟାକୁ ଚୁଲୀ ଭିତରୁ କଢ଼ାଯାଇଥାଏ । ମେଜିଆ ଉପରେ ସେଟା କଳା ଦିଶୁଥିଲେ ବି ଛୁଇଁ ଦେଲା ମାତ୍ରେ ତମ ହାତ ପର୍ଯ୍ୟନ୍ତ ପୋଡ଼ିଯିବ । ମୁଁ ସେଇଠି ଠିଆ ହୋଇ ବିକଳରେ ଚିତ୍କାର କରୁଥିବି ଆଉ ସିଏ ଏକଥା ଜାଣିଶୁଣି କରାଇ, ହୋ ହୋ ହୋଇ ହସୁଥିବ । ଆଉ ଏହା ସହି ନପାରି, ମା' ପାଖକୁ ପଳାଇଲି ମୁଁ ଘରକୁ । ହେଲେ ମୋତେ ନେଇ କ'ଣ କରିବ ବୋଲି ଠିକ୍ କରି ନପାରି, ମା' ପୁଣି ନେଇ ଆସିଲା ସେଇଠିକି । ମନେ ଅଛି ମୋର, ବାଟସାରା ମା' କାନ୍ଦୁଥାଏ । ତୃତୀୟ ବର୍ଷ ସେମାନେ ମୋତେ କିଛି କିଛି କାମଦାମ ଶିଖାଇଲେ । ମାତ୍ର ସେମିତି ଚାଲିଥାଏ, ସେଥିରେ ବନ୍ଦ ନଥାଏ । ମୁଁ ଆଉରି ଥରେ ଲୁଚି ପଳାଇଲି । ଏଥର ଗଲି ସ୍ତାରୋକୋନ୍‌ଷ୍ଟାନ୍ତିନୋଭ୍‌କୁ । ସେଠି ଯାଇ ଗୋଟାଏ ସସେଜ ତିଆରି କାରଖାନାରେ କାମ କଲି ଓ ବର୍ଷେ ଅଯଥା ବିତାଇଲି କେବଳ ନାଡ଼ି ପୁଞ୍ଜି ଧୋଇଧୋଇ । ଆମ ମାଲିକ ତା' କାରଖାନାକୁ ଜୁଆ ଖେଳି ହାରିଗଲା । ଚାରିମାସ କାଳ ଆମକୁ କୋପେକ୍‌ଟିଏ ବି ନଦେଇ କୁଆଡ଼େ ଲୁଚି ପଳେଇଲା । ସେଠୁ ବାହାରି ଗୋଟାଏ ରେଳରେ ବସି ଝମେରିଙ୍କାରେ ପହଞ୍ଚିଲି ମୁଁ । କାମ ଖୋଜିଖୋଜି ବୁଲିଲି । ଭାଗ୍ୟକୁ ଜଣେ ରେଳବାଇ ଲୋକକୁ ପାଇଲି । ସିଏ ମୋତେ ଦୟା କଲା । ତାକୁ ଯେତେବେଳେ କହିଲି ଯେ ମୁଁ ମେକାନିକ୍ କାମ କିଛି କିଛି ଜାଣେ, ସିଏ ମୋତେ ତା' ମାଲିକ ପାଖକୁ ନେଇଯାଇ ମୋତେ ତା' ପୁତୁରା ବୋଲି ଚିହ୍ନା କରେଇ ମୋ ପାଇଁ କ'ଣ ଖଣ୍ଡିଏ କାମ ବୁଝି ଦେବାକୁ କହିଲା । ମୋ ଚେହେରା ଦେଖି ସେମାନେ ଧରିନେଇଥିଲେ ମୋତେ ସତର ବୋଲି । ତେଣୁ ମେକାନିକ୍‌ର ହେଲ୍‌ପର୍ ଭାବରେ କାମଖଣ୍ଡେ ପାଇଗଲି ମୁଁ । ଆଉ ଏବେ ଯେଉଁ କାମ କରୁଛି ମୁଁ ତାକୁ ଆଠ ବର୍ଷ ହେଲା କଲିଣି । ଏଇଆ, ଯାହା ମୁଁ ମୋ ଗତ ଜୀବନ ବିଷୟରେ ତମମାନଙ୍କ ଆଗରେ କହିପାରେ । ମୋ ଏବେକା କଥା ତମେ ସମସ୍ତେ ତ ଜାଣିଛ ।"

କପାଳରୁ ଝାଳ ପୋଛି ଆର୍ତେମ୍ ଏକ ଦୀର୍ଘଶ୍ୱାସ ପକାଇଲା । ଏଯାଏଁ ଅସଲ କଥା କହି ନାହିଁ ସେ । ଏକଥା କହିବା ସବୁଠୁଁ କଷ୍ଟକର । ମାତ୍ର ଆଉ କେହି ପଚାରିବା ଆଗରୁ ତାକୁ ସବୁ କହିବାକୁ ହେବ । ଗହଳ ଭ୍ରୂଲତା ସାଉଁଳେଇ ନେଇ ସେ ପୁଣି କହି ଚାଲିଲା :

"ଆପଣମାନେ ସମସ୍ତେ ମୋତେ ପଚାରି ପାରନ୍ତି, ଆଗରୁ କାହିଁକି ମୁଁ ବଲ୍‌ଶେଭିକ୍ ପାର୍ଟିରେ ସାମିଲ ହୋଇ ନାହିଁ ? କି ଉତ୍ତର ମୁଁ ଦେବି ଏ କଥାର ? ତା'ଛଡ଼ା ମୁଁ ବୁଢ଼ା

ବି ହୋଇଯାଇ ନାହିଁ ? ତା'ହେଲେ ଏଯାଏଁ କାହିଁକି ଏ ରାସ୍ତାକୁ ଆସି ନଥିଲି ? ମୁଁ ତମମାନଙ୍କୁ ଖୋଲଖୋଲି କହିଦେବାକୁ ଚାହେଁ । କାରଣ ଲୁଚାଇବାର କିଛି ନାହିଁ ମୋର । ମୁଁ ପଥ ହରାଇଥିଲି । ୧୯୧୮ ମସିହାରୁ, ଜର୍ମାନ୍‌ମାନଙ୍କ ବିରୁଦ୍ଧରେ ଜାଗରଣ ହେବା ଦିନରୁ ମୁଁ ମିଶିବାର ଥିଲା ! ଜାହାଜୀ ଝୁଖରାଇ ବହୁଥର କହିଛନ୍ତି ମୋତେ । ୧୯୨୦ ଯାଏ ମୁଁ କେବେହେଲେ ବନ୍ଧୁକ ଧରି ନଥିଲି । ଝଡ଼ ଥମିଗଲା ପରେ କୃଷ୍ଣସାଗର ଭିତରକୁ ଶ୍ୱେତ ବାହିନୀକୁ ତଡ଼ିଦେଲା ପରେ ଆମେ ଘରକୁ ଫେରିଲୁ । ତା'ପରେ ଆସିଲା ପରିବାର ... ପିଲାପିଲି । ମୁଁ ପିଲାଛୁଆଙ୍କ ଭିତରେ ବାନ୍ଧିହୋଇ ପଡ଼ିଲି ! ଆଉ ଆଜି କମ୍ରେଡ୍ ଲେନିନ୍ ଯେତେବେଳେ ନାହାନ୍ତି ଓ ପାର୍ଟି ଡାକରା ଦେଇଛି, ମୁଁ ମୋ ଜୀବନକୁ ପର୍ଯ୍ୟାଲୋଚନା କରି ଦେଖିଲି, 'କ'ଣ ଲୋଡ଼ା ଅଛି ?' ନିଜ ଶକ୍ତିକୁ ନିଜେ ରକ୍ଷା କରିବାରେ କେବଳ ନୁହେଁ, ଆମକୁ ପରସ୍ପର ସହିତ ମିଳିମିଶି ଏକ ବିରାଟ ପରିବାର ହୋଇ ଦଣ୍ଡାୟମାନ ହେବାକୁ ହେବ ଲେନିନ୍‌ଙ୍କ ସ୍ଥାନରେ, ଯାହା ଫଳରେ ସୋଭିଏତ୍ ଶକ୍ତି ଏକ ଲୁହାର ପାହାଡ଼ ଭଳି ଦୃଢ଼ ଓ ଶକ୍ତିଶାଳୀ ହୋଇ ରହିବ । ଆମ୍ଭମାନଙ୍କୁ ବଲ୍‌ଶେଭିକ୍ ହେବାକୁ ପଡ଼ିବ । ତାହା ଆମର ପାର୍ଟି । ନୁହେଁ ?"

ଦୀର୍ଘ ବକ୍ତୃତା ସାରିଲା ପରେ ଟିକିଏ ଧଇଁସଇଁ ହୋଇଗଲା ସେ । ତାକୁ ଲାଗିଲା ତା' କାନ୍ଧରୁ ଗୋଟାଏ ବଡ଼ ବୋଝ ଓହ୍ଲାଇ ଯାଇଛି । ଶ୍ରୋତାଙ୍କ ଭିତରୁ କି ପ୍ରଶ୍ନ ଆସିପାରେ ବୋଲି ଉତ୍ତର ଦେବା ପାଇଁ ପ୍ରସ୍ତୁତ ହୋଇ, ସଳଖ ହୋଇ ଛିଡ଼ାହେଲା ସେ ।

ବିଳମ୍ବିତ ନୀରବତା ଭଙ୍ଗ କରି ସିରୋତେଙ୍କୋର ସ୍ୱର ଶୁଭିଲା, "କାହାର କିଛି ପ୍ରଶ୍ନ ପଚାରିବାର ଅଛି ?"

ଉପସ୍ଥିତ ସମସ୍ତଙ୍କ ଭିତରେ ଏକ ଚାଞ୍ଚଲ୍ୟ ଖେଳିଗଲା । ମାତ୍ର ପ୍ରଥମେ କେହି ସଭାପତିଙ୍କ କଥାର ଉତ୍ତରରେ ଠିଆ ହେଲେ ନାହିଁ । ତା'ପରେ ଇଂଜିନ୍‌ରେ କୋଇଲା ଯୋଗାଣିଆ ଜଣେ, କୋଇଲା ଭଳି କଳା ବଲବଲ ଦିହରେ ଛିଡ଼ା ହୋଇ କହିଲା :

"କି ପ୍ରଶ୍ନ ପଚାରିବୁ ? ଆମେ କ'ଣ ଜାଣୁ ନାହିଁ ତାକୁ ? ଦିଅ ତାକୁ ଭୋଟ ଦେଇସାରି ବିଦାକର ।"

ଗିଲ୍ୟାକା, କମାର, ମୁହଁ ତା'ର ନିଆଁ ଧାସରେ ସିଝିଯାଇଛି ଓ ଉତ୍ତେଜନାରେ ଲାଲ ପଡ଼ିଯାଇଛି । ପାଟିକରି କହିଲା ତା' ଘାଗୁଡ଼ା ସ୍ୱରରେ :

"ଏ କମ୍ରେଡ୍ ଜଣକ ଠିକ୍ ବାଗର ଅଛି । ସିଏ ବାଡ଼ ଡେଇଁ ପଳାଇବ ନାହିଁ କେବେହେଲେ । ତା' ଉପରେ ତମେ ଭରସା ରଖିପାରିବ । ତାକୁ ଜଲଦି ଭୋଟ ଦିଅ, ହୋ ସିରୋତେଙ୍କୋ !"

ହଲ୍‌ର ସବାଶେଷରେ, ଯେଉଁଠି ସବୁ କମ୍‌ସୋମୋଲ୍‌ର ସଭ୍ୟମାନେ ବସିଥିଲେ, ଜଣେ କିଏ ଉଠିପଡ଼ି କହିଲା :

"କମ୍ରେଡ୍ କୋର୍ଗିନ୍ ଟିକିଏ ବୁଝାଇଦିଅନ୍ତୁ, ସିଏ କାହିଁକି ପୁଣି ଜମିଜମାରେ

ବ୍ୟସ୍ତ ଅଛନ୍ତି ? କେମିତି ତାଙ୍କର କୃଷକର ଅବସ୍ଥା ସର୍ବହରାର ମନୋଭାବ ସହିତ ଖାପ ଖାଉଛି ?"

ପ୍ରାୟ ଅନ୍ଧକାର ଭିତରେ କହିଲାବାଲା ଦିଶୁ ନଥିଲା । ବିରୋଧର ଗୋଟିଏ କ୍ଷୀଣଧାରା ଘରଟାସାରା ଖେଳିଗଲା । ଜଣେ କିଏ ପାଟିକରି ଉଠିଲା, "ଆମ ଭଳି ସାଧାରଣ ମଣିଷ ବୁଝିଲା ଭଳି ଭାଷାରେ କହୁନା କାହିଁକି ? ପାଣ୍ଡିତ୍ୟ ଦେଖାଇବାର ଜାଗା ଏଟା ନୁହେଁ !"

ଆର୍ତେମ୍ ଉତ୍ତର ଦେଉଥିଲା ସେତେବେଳକୁ ।

"ଠିକ୍ ଅଛି କମ୍ରେଡ୍‌ଗଣ ! ଜମିରେ ମୁଁ ପୁଣି କେମିତି ଲାଗିବି ବୋଲି କଥାଟା ପଗ୍ରରି ଟୋକା ଠିକ୍ କରିଛି । ସେ କଥା ସତ । ମାତ୍ର ମୁଁ ମୋର ଶ୍ରମିକର ବିବେକ ସହିତ ବିଶ୍ୱାସଘାତକତା କରି ନାହିଁ । ସିଏ ଯାହା ହେଉ – ଗଲା କଥା ଗଲାଣି । ଆଜିଠାରୁ ସେ ସେସବୁ ସରିଲା । ଏଥର ମୁଁ ମୋ ପରିବାରକୁ ନେଇ ଆସି ଇଂଜିନ୍ ମରାମତ କାରଖାନା ପାଖରେ ରହିବି । ଅନେକ ଦିନୁଁ ସେ ଜମିଖଣ୍ଡକ ମୋ ବେକ ଝୁଣି ଖାଇଲାଣି ।"

ଆର୍ତେମ୍‌ର ଛାତି ପୁଣି ଥରେ ଥରିଉଠିଲା, ଯେତେବେଳେ ସେ ଦେଖିଲା, ଅଗଣିତ ହାତ ତା' ସପକ୍ଷରେ ଉଠିଛି । ମୁଣ୍ଡ ଉପରକୁ କରି ସେ ନିଜ ଆସନକୁ ଫେରିଆସିଲା । ତା' ପଛେ ପଛେ ସିରୋତେଙ୍କୋ ଘୋଷଣା କଲେ, "ସର୍ବସମ୍ମତିକ୍ରମେ ।"

ତୃତୀୟରେ ଆସିବାର ପାଳି ଜାଖାର୍ ବ୍ରୁଝାକ୍‌ର, ପୋଲିତୋଭ୍‌ସିର ପୁରୁଣା ହେଲପର୍‌ର । ଏବେ ବୁଢ଼ା କିଛି ଦିନ ହେଲା ଇଞ୍ଜିନ୍ ଚାଳକ ଅଛି । ନିଜର ଅତୀତ ଜୀବନର ଶ୍ରମର ସମସ୍ତ କଥା କହିସାରି ଯେତେବେଳେ ସେ ଏବେକାର କଥାକୁ ଆସିଲା, ତା' କଣ୍ଠରୁଦ୍ଧ ହୋଇଗଲା । ଧୀର ସ୍ୱରରେ ଅଥଚ ସମସ୍ତଙ୍କୁ ଶୁଭିଲା ଭଳି ଭାବରେ କହୁଥାଏ ସେ :

"ମୋ ପିଲାମାନେ ଯାହା ଆରମ୍ଭ କରିଛନ୍ତି, ତାକୁ ଶେଷ ପର୍ଯ୍ୟନ୍ତ ଆଗେଇ ନେବାର ଦାୟିତ୍ୱ ମୋର । ଦୁଃଖରେ ଘର କୋଣରେ ମୁଁ ଲୁଚେ ବୋଲି ଚାହୁଁ ନଥିବେ ସେମାନେ । ସେଥିପାଇଁ କ'ଣ ସେମାନେ ଜୀବନ ଦେଇଥିଲେ ? ସେମାନଙ୍କ ମୃତ୍ୟୁରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା, ତାକୁ ପୂରଣ କରିବା କଥା ଭାବି ନଥିଲି ମୁଁ । ମାତ୍ର ଆମର ମହାନ୍ ନେତାଙ୍କର ମୃତ୍ୟୁ ମୋର ଆଖି ଖୋଲିଦେଇଛି । ଅତୀତ ପାଇଁ କୌଣସି ଜବାବ ଦେବାକୁ ପଡ଼ୁର ନାହିଁ ମୋତେ । ଆଜିଠାରୁ ଆମର ନୂଆ ଜୀବନର ଆରମ୍ଭ ହେଲା !"

ଜାଖାର୍‌ର ମୁହଁ ମେଘାଚ୍ଛନ୍ନ ହୋଇଗଲା, ଅତୀତର ସେ ଦାରୁଣ ସ୍ମୃତିସବୁ ମନକୁ ଆସିବା ମାତ୍ରେ, ଯାହା ପ୍ରତିମୁହୂର୍ତ୍ତରେ ତା' ହୃଦୟ ବିଦାରିଦେଉଛି । ହାତର ସମୁଦ୍ର ଉପରକୁ ଉଠି ତା'ର ସଭ୍ୟପଦ ପାଇଁ ସମର୍ଥନ ଦେଲା ପରେ ତା' ଆଖିଦୁଇଟି ଆନନ୍ଦରେ ଜଳି ଉଠିଲା ଯେମିତି । ଧଳାମୁଣ୍ଡ ତା'ର ଆଉ ତଳକୁ ନଇଁଲା ନାହିଁ ।

ପାର୍ଟିରେ ଏହି ନୂଆ ସଭ୍ୟପଦ ପ୍ରାର୍ଥୀମାନଙ୍କର ବକ୍ତବ୍ୟ ଶୁଣିବା ଆଉ ଭୋଟ ଦେବାଟା ଅନେକ ରାତ୍ରି ପର୍ଯ୍ୟନ୍ତ ଚାଲିଲା । ଯେଉଁମାନେ ସବୁଠୁଁ ଭଲ କର୍ମୀ ଏବଂ

ଯେଉଁମାନଙ୍କୁ ସମସ୍ତେ ଭଲକରି ଜାଣନ୍ତି ଏବଂ ଯେଉଁମାନଙ୍କ ଜୀବନରେ କୌଣସି କଳଙ୍କ ନାହିଁ, କେବଳ ସେଇମାନଙ୍କୁ ପାର୍ଟିରେ ନିଆଗଲା ।

ଲେନିନ୍‌ଙ୍କର ମୃତ୍ୟୁ ବଲ୍‌ଶେଭିକ୍ ପାର୍ଟିକୁ ଆଣିଦେଲା ବହୁ ସହସ୍ର ସଭ୍ୟ । ନେତା ଚାଲିଗଲେ, ମାତ୍ର ପାର୍ଟି ଦୃଢ଼ ହୋଇଗଲା । ଯେଉଁ ଗଛର ଅସଂଖ୍ୟ ଦୃଢ଼ ଚେର ମାଟି ଭିତରକୁ ଗଭୀରଭାବରେ ଯାଇଥାଏ, ସେ ଗଛର ଅଗ ମରିଗଲେ ଗଛ କ'ଣ କେବେ ମରିବ ?

# ଷଷ୍ଠ ପରିଚ୍ଛେଦ

ହୋଟେଲ୍‌ର କନ୍‌ସର୍ଟ ହଲ୍‌ର ପ୍ରବେଶ ପଥରେ ଦୁଇଜଣ ଲୋକ ଛିଡ଼ା ହୋଇଥିଲେ । ଦୁଇଜଣଙ୍କ ଭିତରୁ ଯିଏ ଡେଙ୍ଗା, ସେ ପେଁସନେର ଚଶମା ପିନ୍ଧିଥିଲା ଓ ବାହୁରେ 'କମାଣ୍ଡାଣ୍ଟ' ବୋଲି ଲାଲ ଫିତା ଲଗାଇଥିଲା ।

"ୟୁକ୍ରେନୀୟ ପ୍ରତିନିଧିଦଳ ଏହିଠାରେ ମିଳିତ ହେଉଛନ୍ତି ନା଼ କମ୍ରେଡ୍ ?" ରୀତା ପଚାରିଲା ।

"ହଁ, ମାତ୍ର ଆପଣଙ୍କର କ'ଣ ଦରକାର ?" ଶାନ୍ତଭାବରେ ଡେଙ୍ଗା ଲୋକ ଜଣକ ଉତ୍ତର ଦେଲା ।

"ମୋତେ ଭିତରକୁ ଯିବାକୁ ଦେବେ !"

ପଥ ଅବରୋଧ କରି ସେ ତାଙ୍କୁ ଚାହିଁପାଯାଏ ରୀତାକୁ ଅନାଇଗଲା ।

"ଆପଣଙ୍କ ପାଖରେ ପ୍ରତିନିଧି କାର୍ଡ ଅଛି ?"

ନିଜର ସୁନେଲି ହରଫରେ ଲେଖା "କେନ୍ଦ୍ରୀୟ କମିଟିର ସଦସ୍ୟ" ବୋଲି କାର୍ଡଟି ବାହାର କରି ଦେଖାଇଲା ରୀତା । ଦେଖିଲା ମାତ୍ରେ ନଇଁପଡ଼ି ଅଭିବାଦନ ଜଣାଇଲା ଲୋକ ଜଣକ ।

"ଯାଆନ୍ତୁ କମ୍ରେଡ୍, ବାଁ କଡ଼ରେ କେଇଟି ସିଟ୍ ଖାଲି ଅଛି ।"

ରୀତା ଭିତରକୁ ପଶି ଗୋଟିଏ ଖାଲି ସିଟ୍ ଦେଖି ବସିପଡ଼ିଲା ।

ସଭା ପ୍ରାୟ ଶେଷ ହେବାକୁ ବସିଲାଣି । କାରଣ ସେତେବେଳକୁ ସଭାପତି ସମସ୍ତଙ୍କର ଭାଷଣର ସାରାଂଶ କହୁଥିଲେ । ତାଙ୍କ ସ୍ୱର ରୀତାକୁ କେମିତି ପରିଚିତ ଲାଗିଲା ।

"ନିଖିଳ ରୁଷ୍ କଂଗ୍ରେସ୍‌ର କାଉନ୍‌ସିଲ୍ ନିର୍ବାଚନ ସରିଲାଣି । ଆଉ ଦୁଇଘଣ୍ଟା ପରେ କଂଗ୍ରେସ୍ ଅଧିବେଶନ ଆରମ୍ଭ ହେବ । ଇତ୍ୟବସରରେ ଆପଣଙ୍କ ଅନୁମତି ନେଇ ମୁଁ ପୁଣି ଥରେ ପ୍ରତିନିଧି ତାଲିକା ପାଠ କରୁଛି ।"

"ଆରେ ! ଆକିମ୍ !" ସେ ତରବର ହୋଇ ପଢ଼ୁଥିବା ତାଲିକାକୁ ଅତି ମନଯୋଗ ସହିତ ଶୁଣିଲା ରୀତା । ନାଁ ପଢ଼ାହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ପ୍ରତିନିଧି ନିଜର ଲାଲ ବା ଧଳା ପାଶ୍ କାର୍ଡ଼ ହାତ ଉପରକୁ ଟେକି ଦେଖାଉଥାନ୍ତି ।

ହଠାତ ରୀତା ଏକ ପରିଚିତ ନାଁ ଶୁଣିଲା – "ପାନ୍‌କ୍ରାତୋଭ୍" ।

ବୁଲି ଚାହିଁ ସେ ଉଠୁଥିବା ହାତଟିକୁ କେବଳ ଦେଖିପାରିଲା । ମୁହଁ ଦିଶିଲା ନାହିଁ ଲୋକମାନଙ୍କ ଭିତରୁ । ପୁଣି ନାଁ ପଢ଼ାଚାଲିଲା । ପୁଣି ଏଥର ରୀତା ଜାଣିଥିବା ଜଣେ ଲୋକର – "ଓକୁନେଭ୍" ଓ ଠିକ୍ ତା' ପରେ ପରେ – "ଝାର୍‌କୀ" ।

ପ୍ରତିନିଧିମାନଙ୍କର ମୁହଁକୁ ଅନାଇ ଅନାଇ ସେ ଝାର୍‌କୀକୁ ଦେଖିପାରିଲା । ଅନତିଦୂରରେ, ରୀତା ଆଡ଼କୁ ମୁହଁ ବୁଲାଇ ବସିଥିଲା ସେ । ହଁ, ଭାନ୍ୟା ତ ! ମୁହଁଟା ପ୍ରାୟ ଭୁଲିଗଲାଣି ସେ । ଅନେକ ବର୍ଷ ହେଲାଣି, ଆଉ ଦେଖା ହୋଇ ନଥିଲା ତା' ସହିତ ।

ନାଁ ପଢ଼ା ଚାଲିଥାଏ । ଏଥର ରୀତା ଏପରି ଜଣକ ନାଁ ଶୁଣିଲା, ଯାହା ତାକୁ ବିଚଳିତ କରିଦେଲା ।

"କୋର୍ଚ୍ଚାଗିନ୍ ।"

ଅନେକ ଦୂରରେ, ପ୍ରାୟ ସମ୍ମୁଖ ଧାଡ଼ିରେ ଗୋଟିଏ ହାତ ଉପରକୁ ଉଠିଲା ଓ ନଇଁଗଲା । ରୀତା ଉଦଗ୍ର ଆବେଗ ନେଇ ଅପେକ୍ଷା କରିଥିଲା ସେ ଲୋକଟିର ମୁହଁ ଦେଖିବାକୁ, ଯାହାର ନାଁ ଆଶ୍ଚର୍ଯ୍ୟଜନକ ଭାବରେ ତା'ର ମୃତ କମ୍ରେଡ୍‌ର ନାଁ ସହିତ ସମାନ । ଯେଉଁ ଜାଗାରୁ ହାତଟି ଉଠିଥିଲା, ସେଠାରୁ ସେ ନିଜ ଆଖିକୁ ଏଡ଼ାଇ ଆଣିପାରିଲା ନାହିଁ । ମାତ୍ର ଆଗ ଧାଡ଼ିମାନଙ୍କରେ ଦିଶୁଥିବା ପ୍ରତ୍ୟେକଟି ମୁଣ୍ଡ ତାକୁ ସମାନ ଦିଶିଲା ପ୍ରାୟ । ଉଠିପଡ଼ି ସେ ଆଗ ଧାଡ଼ିଗୁଡ଼ିକ ଆଡ଼କୁ ଆଗେଇଗଲା । ଠିକ୍ ସେତିକିବେଳେ ଆକିମ୍‌ର ପଢ଼ା ସରିଗଲା । ଚଉକିଗୁଡ଼ିକ ଧଡ଼୍‌ଧାଡ଼୍ ହୋଇ ପଛକୁ ଠେଲାପେଲାର ଓ ହସ, କଥାବାର୍ତ୍ତାର ଶବ୍ଦରେ ହଲ୍‌ଟି ପୂରିଗଲା । ଗଣ୍ଡଗୋଳ ଭିତରେ ନିଜ ସ୍ୱର ଶୁଣାଇବା ପାଇଁ ଆକିମ୍ ବଡ଼ ପାଟିରେ କହୁଥାଏ :

"ଠିକ୍ ସାତଟା ବେଳେ, ବଲ୍‌ଶୋଇ ଥିଏଟରେ ଦେଖ... ଡେରି ଯେପରି ନ ହୁଏ ।"

ପ୍ରତିନିଧିମାନେ ବାହାରକୁ ବାହାରିବା ପାଇଁ ଥିବା ଏକମାତ୍ର ଦ୍ୱାରମୁହଁରେ ଜୁଣ୍ଡ ହୋଇଗଲେ । ରୀତା ଲକ୍ଷ୍ୟ କଲା, ଏ ଜନଗହଳି ଭିତରୁ ସେ କେବେହେଲେ ତା'ର କୌଣସି ପୁରୁଣା ବନ୍ଧୁକୁ ଖୋଜି ବାହାର କରିପାରିବ ନାହିଁ । ଏଣୁ ବାହାରକୁ ବାହାରିଯିବା ଆଗରୁ ତାକୁ ଆକିମ୍‌କୁ ଧରିବାକୁ ପଡ଼ିବ । ତା'ହେଲେ ଆକିମ୍ ତାକୁ ଅନ୍ୟମାନଙ୍କ ସାଙ୍ଗରେ ଭେଟ କରାଇଦେବ । ଠିକ୍ ସେତିକିବେଳେ ଦଳେ ପ୍ରତିନିଧି ତାକୁ ଅତିକ୍ରମ କରି ଆଗେଇଗଲେ, ବାହାରକୁ ଯିବା ଦ୍ୱାର ନିକଟକୁ । ସେ ଶୁଣିଲା କିଏ ଜଣେ କହୁଛି :

"ଆରେ ହେ କୋର୍ଚ୍ଚାଗିନ୍, ଆମକୁ ତ ଧସେଇ କରି ଆଗେଇଯିବାକୁ ପଡ଼ିବ ଦେଖୁଛି ।"

ଗୋଟିଏ ଅତି ପରିଚିତ କଣ୍ଠ ଉତ୍ତର ଦେଲା, "ଠିକ୍ ଅଛି, ଆମେ ଯିବା ସେମିତି ।"

ରୀତା ସଙ୍ଗେ ସଙ୍ଗେ ବୁଲିପଡ଼ିଲା । ତା' ଆଗରେ ଠିଆ ହୋଇଥିଲା ଶ୍ୟାମଳ ବର୍ଣ୍ଣର

ଡେଙ୍ଗା ତରୁଣଟିଏ । ପିନ୍ଧିଛି ଖାକିପୋଷାକ, ଅଣ୍ଟାରେ ପତଳା କକେସିଆନ୍ କମରପଟି । ନାଲ ଘୋଡ଼ସବାର ପିନ୍ଧା ବ୍ରିଚେସ୍ ପିନ୍ଧିଛି ସେ ।

ତାକୁ ଚହିଁଲା ରୀତା । ତା'ପରେ ଅନୁଭବ କଲା ତରୁଣଟିର ସଂପ୍ରସାରିତ ବାହୁ ତାକୁ ଆକର୍ଷଣ କରିନେଇ କୋମଳ ସ୍ୱରରେ କହିଲା, "ରୀତା" ଏବଂ ସେ ଜାଣିଥିଲା ଯେ, ଇଏ ପାଭେଲ୍ କୋର୍ଚାଗିନ୍ ବ୍ୟତୀତ ଆଉ କେହି ନୁହଁ ।

"ତା'ହେଲେ ତମେ ବଞ୍ଚିଛ ?"

ଏତିକି କଥା ପାଭେଲ୍ ପକ୍ଷରେ ସବୁ ବୁଝିନେବା ପାଇଁ ଯଥେଷ୍ଟ ଥିଲା । ରୀତା ଜାଣି ନଥିଲା ଯେ, ପାଭେଲ୍‌ର ମୃତ୍ୟୁ ଖବର ମିଥ୍ୟା ଥିଲା ବୋଲି ।

ଅନେକବେଳୁ ହଲ୍‌ଟା ଶୂନ୍ୟ ହୋଇଗଲାଣି । ସହରର ପ୍ରଧାନତମ ଧମନୀ ଟ୍‌ଭେର୍ସାୟାରୁ ଗହଳଚହଳର ଶବ୍ଦ ଝରକାବାଟେ ପଶି ଆସୁଛି ହଲ୍ ଭିତରକୁ । ଘଣ୍ଟାରେ ଛଅଟା ବାଜିଲା । ତାଙ୍କ ଦି'ଜଣକୁ ଲାଗୁଥିଲା, ଯେମିତି ସେମାନେ ଏଇ ମୁହୂର୍ତ୍ତକ ଆଗରୁ ପରସ୍ପରକୁ ଭେଟୁଛନ୍ତି । ଘଣ୍ଟାବାଜି ତାଙ୍କର ବଲ୍‌ଶୋଇ ଥିଏଟରକୁ ଯିବାର ସମୟ ହୋଇଗଲାଣି ବୋଲି ସୂଚେଇ ଦେଲାଣି । ଚଉଡ଼ା ପାହାଚଗୁଡ଼ାକ ଅବତରଣ କରି, ବାହାରକୁ ଯାଉଯାଉ ସେ ଆଉରି ଥରେ ପାଭେଲ୍‌କୁ ଲକ୍ଷ୍ୟ କଲା ଭଲ କରି । ଏବେ ସେ ତା'ଠାରୁ ଆହୁରି ମୁଣ୍ଡେ ଉଚ୍ଚାରେ ବଢ଼ିଗଲାଣି । ଯଥେଷ୍ଟ ପରିଣତ ଓ ଗମ୍ଭୀର ହୋଇଛି । ନହେଲେ ବାକି ସବୁ ଯୋଉ ପୁରୁଣା ପାଭେଲ୍ ଥିଲା, ତାହାହିଁ ଅଛି । କିଛି ବଦଳି ନାହିଁ ତା'ର ।

"ଆରେ, ମୁଁ ତ ତମକୁ ଏଯାଏଁ ପଚାରି ନାହିଁ କେଉଁଠି କାମ କରୁଛ ବୋଲି ?"

"ମୁଁ କମ୍‌ସୋମୋଲ୍‌ର ଆଞ୍ଚଳିକ କମିଟିର ସଂପାଦକ ଅଛି । ଦୁବାଭା ଭାଷାରେ 'କଲମ ଘଷା' କଲାବାଲା ଲୋକ ।" ମୁହଁରେ ହସ ଉକୁଟାଇ କହିଲା ସେ ।

"ତମେ ତାକୁ ଦେଖିଛ ଏବେ ?"

"ହଁ, ସେଇ ଦେଖାହେବା ଘଟଣାର ଅପ୍ରୀତିକର ସ୍ମୃତିକୁ ମୁଁ ଭୁଲି ପାରିବି ନାହିଁ ।"

ଏଥର ରାସ୍ତା ଉପରକୁ ଉଠିଲେ ସେମାନେ । ମୋଟରଗୁଡ଼ାକ ଚାଲିଛନ୍ତି । ରାସ୍ତାସାରା କୋଳାହଳରେ ପୂରିଯାଇଛି । ଥିଏଟର ଯିବା ରାସ୍ତାରେ ସେମାନେ ପରସ୍ପର ସହିତ ଆଉ ବିଶେଷ କଥାବାର୍ତ୍ତା କରିପାରିଲେ ନାହିଁ । ମନଭିତରେ ଦୁହିଁଙ୍କର ଏକା ଭାବନା । ପହଞ୍ଚି ଦେଖିଲେ, ଥିଏଟର ଆଗରେ ଜନସମୁଦ୍ର ଲହଡ଼ା ଭାଙ୍ଗୁଛି । ଥିଏଟରର ପଥର କାନ୍ଥ ଦେହରେ ଓ ଜଗି ରହିଥିବା ପ୍ରହରୀମାନଙ୍କୁ ଠେଲିପେଲି ଭିତରକୁ ପଶିବା ପାଇଁ ଚେଷ୍ଟା କରୁଛନ୍ତି । ମାତ୍ର ପ୍ରହରୀମାନେ କେବଳ ପ୍ରତିନିଧିମାନଙ୍କୁ ହିଁ ଭିତରକୁ ଛାଡ଼ୁଛନ୍ତି । ଗୋଟିଏ କର୍ଡନ ଭିତରେ ପ୍ରତିନିଧିମାନେ ଗର୍ବିତ ଭାବରେ ନିଜ ନିଜର ପରିଚୟପତ୍ର ଦେଖାଇ ଭିତରକୁ ଯାଉଛନ୍ତି ।

କମ୍‌ସୋମୋଲ୍‌ର ଏକ ସମୁଦ୍ର ଥିଏଟର ଚାରିକଡ଼କୁ ଘେରି ରହିଥିଲା । ତରୁଣମାନଙ୍କର ସମୁଦ୍ର, ଯେଉଁମାନେ କଂଗ୍ରେସ୍‌ରେ ଯୋଗ ଦେବା ପାଇଁ ଟିକେଟ୍ ସଂଗ୍ରହ କରିପାରି

ନାହାନ୍ତି, ଅଥଚ ଭିତରକୁ ଯେକୌଣସି ମତେ ପଶିବା ପାଇଁ ଦୃଢ଼ପ୍ରତିଜ୍ଞ । ସେମାନଙ୍କ ଭିତରୁ କେଇଜଣ ତତ୍ପର ତରୁଣ କୌଣସିମତେ ପ୍ରତିନିଧିମାନଙ୍କ ସହିତ ଗଳିପଶିଯାଇ, ଯେକୌଣସି ପ୍ରକାର ଏକ ଲାଲ କାଗଜକୁ ପ୍ରବେଶପତ୍ର ବୋଲି ଦେଖାଇ ପ୍ରବେଶପଥ ଯାଏଁ ଚାଲିଯାଉଥାନ୍ତି । ଏପରିକି କେଇଜଣ ଦୁଆର ଭିତରେ ପଶିଯାଇଥାନ୍ତି, ଯାହାଙ୍କୁ ଡିଉଟିରେ ଥିବା କେନ୍ଦ୍ର କମିଟିର ଲୋକେ ବାଧା ଦେଉଥାନ୍ତି କିମ୍ବା ସେମାନେ ବାଧା ପାଉଥାନ୍ତି ଅତିଥି ଓ ପ୍ରତିନିଧିମାନଙ୍କୁ ନିର୍ଦ୍ଦିଷ୍ଟ ଆସନ ଦେଖାଇଦେଉଥିବା କମାଣ୍ଡାଣ୍ଟଙ୍କଠାରୁ । ଶେଷରେ, ଅଗଣିତ ଟିକେଟ୍‌ବିହୀନ ତରୁଣତରୁଣୀଙ୍କ ମନ ଖୁସି ହୋଇଯାଏ, ଯେତେବେଳେ ସେମାନଙ୍କୁ ପୁଣି ବାହାରକୁ ବାହାର କରିଦିଆଯାଏ ।

ଭିତରେ ଯେତେ ଲୋକ ପଶିବାକୁ ଚାହୁଁଥିଲେ, ତା'ର ଏକ ନିମ୍ନତମ ଭଗ୍ନାଂଶ ମଧ୍ୟ ହଲ୍‌ରେ ଜାଗା ଧରିବା ସମ୍ଭବ ନଥିଲା । ରୀତା ଆଉ ପାଭେଲ୍ ଭିଡ଼ ମଧ୍ୟରେ ଠେଲିଠାଲି ଭିତର ଦୁଆର ମୁହଁକୁ କୌଣସି ମତେ ଆଗେଇ ଗଲେ ।

ପ୍ରତିନିଧିମାନେ ଅନେକ ସଂଖ୍ୟାରେ ଆସୁଥାନ୍ତି । କେଇ ଟ୍ରାମ୍‌ରେ, କିଏ ବା କାର୍‌ରେ । ସେମାନଙ୍କ ଭିତରୁ ଅନେକ ପ୍ରବେଶପଥ ମୁହଁରେ ଛିଡ଼ା ହୋଇଥାନ୍ତି । ଫଳରେ ଲାଲ ସେନାର କମ୍‌ସୋମୋଲ୍‌ର ସଦସ୍ୟମାନେ ନିଜେ ନିଜେ କାନ୍ଥ ସହିତ ଚିପି ହୋଇଯାଇଥାନ୍ତି । ଠିକ୍ ଏତିକିବେଳେ ଦୁଆରମୁହଁରେ ଗଦା ହୋଇଥିବା ଲୋକଙ୍କ ଭିତରୁ ବଡ଼ ପାଟିରେ ଜଣେ କିଏ କହିବାର ଶୁଭିଲା :

"ହେଇ ରେ ବାଉମାନ୍ ଜିଲ୍ଲାର ପିଲାଏ ଯାଉଛନ୍ତି !"

"ଆସ ରେ ସମସ୍ତେ, ଆମ ପକ୍ଷ ଜିତୁଛନ୍ତି !"

"ହୁର୍‌ରେ !"

ପାଭେଲ୍ ଓ ରୀତାଙ୍କ ସାଙ୍ଗରେ, ନୀଳଆଖିଆ ତରୁଣଟିଏ କମ୍‌ସୋମୋଲ୍ ବ୍ୟାଜ ପିନ୍ଧି କମାଣ୍ଡାଣ୍ଟକୁ ଧପ୍‌ପାଇ ଆଗେଇ ଯାଉଥିଲା । ମୁହୂର୍ତ୍ତକ ପରେ ଲୋକଗହଳ ଭିତରକୁ ଫେରାଇ ଦିଆଗଲା ତାକୁ ।

"ଆସ, ଏଇଠି ବସିବା", ପଛପଟରେ ଏକ କୋଣକୁ ଦୁଇଟି ଖାଲି ଆସନ ଦେଖାଇ ରୀତା କହିଲା । ବସିସାରିଲା ପରେ ରୀତା କହିଲା :

"ଗୋଟାଏ ପ୍ରଶ୍ନ ଅଛି ତମକୁ ପଚାରିବା ପାଇଁ । ସେଇ ପୁରୁଣା ଦିନଗୁଡ଼ିକ ବିଷୟରେ ... ଦେଖ, ଯେମିତି ଉତ୍ତର ଦେବାକୁ ମନା ନକର ! ସେତେବେଳେ ତମେ ଆମର ଏକାଠି ପଢ଼ାପଢ଼ି କରିବା ଓ ଆମ ବନ୍ଧୁତା ଭାଙ୍ଗିଦେଲ କାହିଁକି ?"

ଏଇ ପ୍ରଶ୍ନ ଶୁଣିବା ପାଇଁ ଦେଖା ହେଲାବେଳୁ ଆଶା କରୁଥିଲା ପାଭେଲ୍ । ସେଥି ପାଇଁ ମନମାରି ରହୁଥିଲା ସେ । ସେମାନଙ୍କର ଆଖି ମିଳିଗଲା ହଠାତ୍ ଓ ତା' ଆଖିର ଚାହାଣୀରୁ ପାଭେଲ୍ ବୁଝିଲା ଯେ, ରୀତା ଜାଣିଛି ସବୁ ।

"ମୁଁ ଭାବୁଛି, ତମେ ସବୁ ଜାଣିଛ ରୀତା । ତିନିବର୍ଷ ତଳର କଥା ସିଏ । ସେତେବେଳେ ପାଭେଲ୍ ଯାହା କରିଥିଲା, ମୁଁ ତାକୁ ନିନ୍ଦା କରିବି ନିଶ୍ଚୟ । କୋର୍ଚ୍ଚାଗିନ୍

ଛୋଟବଡ଼ ଅନେକ ଭୁଲ କରିଛି । ତା' ଜୀବନରେ ସେ ଭୁଲମାନଙ୍କ ଭିତରୁ ସେଇଟା ବି ଗୋଟାଏ ବଡ଼ ଭୁଲ ।"

ରୀତା ହସିଲା ।

"ଯା'ହଉ, ଉତ୍ତର ଦେବା ପାଇଁ ବେଶ୍ ବଡ଼ ଭୂମିକା ଫାନ୍ଦି ବସିଲଣି !"

"କେବଳ ମୋତେ ଦୋଷ ଦେଲେ ହେବ ନାହିଁ ।" ଅନୁଚ୍ଚ ସ୍ୱରରେ କହିଲା ପାଭେଲ୍, "'ଗାଡ୍‌ଫ୍ଲାଏ' ବହିର ରୋମାଣ୍ଟିକ୍ ବିପ୍ଲବୀ କାହାଣୀର ବି ତ୍ରୁଟି ସେଇଟା । ସେ ଦିନମାନଙ୍କରେ ସେ ବହିସବୁ, ଯେଉଁଥିରେ ଦୃଢ଼ମନା ଆଉ ସାହସୀ ବିପ୍ଲବୀ ଶହୀଦମାନଙ୍କର କାହାଣୀ ଅଛି, ତାକୁ ପଢ଼ିବାକୁ ଭଲ ଲାଗୁଥିଲା ଓ ତା'ର ବି ଅସମ୍ଭବ ପ୍ରଭାବ ଥିଲା । ମୁଁ ସେଇମାନଙ୍କ ଭଳି ହେବାକୁ ଚାହୁଁଥିଲି । ମୋର ତମ ସଂପର୍କରେ ଧାରଣା ଉପରେ ମଧ୍ୟ 'ଗାଡ୍‌ଫ୍ଲାଏ'ର ପ୍ରଭାବ ପଡ଼ୁ ବୋଲି ଭାବୁଥିଲି ମୁଁ । ସେସବୁ ଏବେ ଅତ୍ୟନ୍ତ କପୋଳ କଳ୍ପିତ ଘଟଣା ବୋଲି ମନେହୁଏ । ଅନେକ ସମୟରେ ହସ ମାଡ଼େ । କିନ୍ତୁ ତାଠାରୁ ବେଶି ହୁଏ ରାଗ ।"

"'ଗାଡ୍‌ଫ୍ଲାଏ' ସଂପର୍କରେ ତମର ମତାମତ କ'ଣ ଏବେ ତା'ହେଲେ ବଦଳି ଗଲାଣି ?"

"ନାଁ ରୀତା, ମୋଟାମୋଟିଭାବରେ ବଦଳି ନାହିଁ । ମାତ୍ର ଜଣକର ମନୋଭାବକୁ ଚଉଇି ଦେଖିବାରେ ଯେଉଁ ଦୁଃଖପୂର୍ଣ୍ଣ ଉପାୟ ଓ ତା'ର ଯେଉଁ କରୁଣ ପରିଣତି, ତା'ର ଅନାବଶ୍ୟକତା ଉପଲବ୍ଧି କଲିଣି ମୁଁ । ଏବେ 'ଗାଡ୍‌ଫ୍ଲାଏ'ର ଅସୀମ ସାହସ, ତା'ର ଧୈର୍ଯ୍ୟ—ଏଇ ସଂପର୍କରେ ଜାଣିବାକୁ ଚେଷ୍ଟିତ ମୁଁ । କାରଣ ମୁଁ ଏମିତି ଜଣେ ମଣିଷ ହେବାକୁ ଚାହେଁ, ଯିଏ ଅନ୍ୟ କାହାରିକୁ ଜାଣିବାକୁ ନଦେଇ ନିଜେ ଅସୀମ ନିର୍ଯାତନା, କଷ୍ଟ ସହ୍ୟ କରିନେଇପାରିବ । ମୁଁ ଏଭଳି ବିପ୍ଳବୀ ହେବାକୁ ଇଚ୍ଛା କରେ, ଯାହାର ବ୍ୟକ୍ତିଗତ ଜୀବନ, ସାରା ସମାଜର ଜୀବନ ତୁଳନାରେ କିଛି ନୁହଁ ବୋଲି ବିଚାର କରିପାରିବ ।"

"ଦୁଃଖର କଥା ପାଭେଲ୍, ତିନିବର୍ଷ ଆଗରୁ ତମେ ଏତକ କଥା ମୋତେ କହିପାରିଲ ନାହିଁ" କହି ରୀତା ହସିଲା । ତା'ର ମୁହଁ ଭଙ୍ଗୀରୁ ଜଣାପଡ଼ୁଥିଲା, ସେ ଯେପରି ସୁଦୂର ଅତୀତର କଥାକୁ ଓଟାରି ଆଣୁଛି ନିଜ ମନ ଭିତରକୁ ।

"ଦୁଃଖର କଥା ବୋଲି ତମେ କାହିଁକି କହୁଛ ରୀତା ? ମୁଁ ତମ ପାଖରେ ଜଣେ କମ୍ରେଡ୍‌ଠାରୁ ଆଉ ବେଶି କିଛି ହୋଇ ପାରିନି, କ'ଣ ସେଇଥି ପାଇଁ ?"

"ନାଁ ପାଭେଲ୍, ତା'ଠାରୁ ଅନେକ ଅଧିକ ଥାଇପାର ।"

"ତା'ହେଲେ ତ ସବୁ ଠିକ୍ ହୋଇଯାଇ ପାରେ !"

"ନା କମ୍ରେଡ୍, 'ଗାଡ୍‌ଫ୍ଲାଏ', ତା' ଆଉ ହେବାର ନୁହେଁ । ଏବେ ଅନେକ ବିଳମ୍ବ ହୋଇଗଲାଣି । ତମେ ଜାଣିନ... ମୋର ଗୋଟିଏ ଛୋଟିଆ ଝିଅ ଅଛି", ହସି ହସି ବୁଝାଉଥିଲା ରୀତା । "ତା' ବାପାକୁ ମୁଁ ଭାରି ଭଲପାଏ । ସାଧାରଣଭାବରେ ଆମେ ତିନିହେଁ ପରସ୍ପରର ଭାରି ନିବିଡ଼ ଆଉ ପରସ୍ପରକୁ ଛାଡ଼ିପାରିବୁ ନାହିଁ ।"

ତା'ର ଆଙ୍ଗୁଠିଗୁଡ଼ିକ ପାଭେଲ୍‌ର ହାତକୁ ଆଉଁସି ଦେଉଥିଲା । ରୀତାର ଏ ଭଙ୍ଗୀ ପାଭେଲ୍‌ର ଉଦ୍‌କଣ୍ଠା ବଢ଼ାଇ ଦେଉଥିଲା । ମାତ୍ର ନାଃ, ଆଉ ଯା'ର କୌଣସି ଅର୍ଥ ହୁଏ ନାଁ । ଏଥିଭିତରେ ପାଭେଲ୍ ଅନେକ ପରିଣତ ହେଲାଣି, କେବଳ ଦୈହିକ ନୁହେଁ, ମାନସିକ ଦୃଷ୍ଟିରୁ ମଧ୍ୟ । ତା'ର ଆଖି ଦେଖି ରୀତା କହିଦେଇପାରେ ଯେ, ତା'ର ଏ ସ୍ୱୀକାରୋକ୍ତି ପାଭେଲ୍‌କୁ ଭୟଙ୍କରଭାବରେ ଆଘାତ ଦେଇଛି । ମାତ୍ର ସେ କେବଳ ମାତ୍ର କହିଲା :

"ଯାହା ମୁଁ ଛାଡ଼ିଆସିଥିଲି, ତାହା ଏଇ ମୁହୂର୍ତ୍ତରେ ଯାହା ହରାଇଲି, ତା' ତୁଳନାରେ ଅନେକ ବେଶି ।" ରୀତା ବୁଝିପାରୁଥିଲା ଯେ, ଏ ପଦକ କେବଳ ତା' ମୁହଁର କଥା ନୁହଁ, ଏହାହିଁ ଯଥାର୍ଥ ସତ୍ୟ ।

ଏଥର ସେମାନଙ୍କର ସମୟ ହୋଇଗଲା ମଞ୍ଚ ନିକଟକୁ ଯିବାର । ସେମାନେ ଉଠିଲେ ଓ ୟୁକ୍ରେନୀୟ ପ୍ରତିନିଧିଦଳ ଯେଉଁଠାରେ ବସିଥିଲେ, ସେଠାରେ ନିଜ ଆସନରେ ଯାଇଁ ବସିଲେ, ଆଗ ଧାଡ଼ିରେ । ବ୍ୟାଣ୍ଡ ବାଜିଉଠିଲା । ଲାଇ କନା ହଲ୍‌ସାରା ଉଡ଼ୁଥିଲା ଓ ସେଥିରେ ଲେଖାଥିଲା : "ଭବିଷ୍ୟତ ଆମର ।" ହଜାର ହଜାର ଲୋକ ଧାଡ଼ି ଧାଡ଼ି ସିଟ୍, ବକ୍‌ସ ଆଉ ଗ୍ୟାଲେରିରେ ଭରପୂର ହୋଇଯାଇଥିଲେ । ଏ ସହସ୍ରାଧିକ ଲୋକ ଏଠାକୁ ଆସି ଏକତ୍ରିତ ହୋଇଛନ୍ତି ଅଫୁରନ୍ତ ପ୍ରାଣପ୍ରାଚୁର୍ଯ୍ୟ ନେଇ । ସାରା ଦେଶର ଶିଳ୍ପ-ଭ୍ରାତୃତ୍ୱର, ନବୀନ ପ୍ରହରୀର ପ୍ରସ୍ଫୁଟିତ ଫୁଲ ଏମାନେ ଆଜି ଏକାଠି ହୋଇଛନ୍ତି ! ଓଜନିଆ ପରଦା ଉପରେ ବଡ଼ବଡ଼ ଅକ୍ଷରରେ ଲେଖାଥିବା : "ଭବିଷ୍ୟତ ଆମର" ଶବ୍ଦଗୁଡ଼ିକ ଉପରେ କେଇ ହଜାର ଯୋଡ଼ା ଆଖି ଯାଇଁ ପଡ଼ୁଥିଲା ।

ଜନ କୁଆର ଭାଙ୍ଗି ପଡ଼ୁଥିଲା ସେଠାରେ । ଆଉ କେଇ ମୁହୂର୍ତ୍ତ ପରେ ଓଜନିଆ ଭେଲ୍‌ଭେଟ୍ ପରଦା ଉଠିବ ଏବଂ ରୁଷୀୟ ତରୁଣ କମ୍ୟୁନିଷ୍ଟ ଲିଗ୍‌ର ସଂପାଦକ, ଏ ସମୟର ମହତ୍ତ୍ୱ ସଂପର୍କରେ ଅଭିଭୂତ ହୋଇ ଘୋଷଣା କରିବେ :

"ମୁଁ ରୁଷ୍‌ର ତରୁଣ କମ୍ୟୁନିଷ୍ଟ ଲିଗ୍‌ର ଷଷ୍ଠ କଂଗ୍ରେସ୍ ଆରମ୍ଭ ହେଲା ବୋଲି ଘୋଷଣା କରୁଛି ।"

ବିପ୍ଳବର ମହାନତା, ବିପ୍ଳବର ଔଜ୍ଜ୍ୱଲ୍ୟ ସଂପର୍କରେ ଏଥିପୂର୍ବରୁ ପାଭେଲ୍ କୋର୍‌ଗିନ୍ କେବେହେଲେ ଏଭଳି ଅଭିଭୂତ ହୋଇ ପଡ଼ି ନଥିଲା । ଏକ ଅବର୍ଣ୍ଣନୀୟ ଗୌରବବୋଧ, ଆନନ୍ଦର ଆତିଶଯ୍ୟରେ ବିହ୍ୱଳିତ ହୋଇଉଠୁଥିଲା ତା'ର ଅନ୍ତର । ଜୀବନ ତାକୁ ଯେଉଁ ମହାର୍ଘ ପୁରସ୍କାର ଆଣିଦେଇଛି... ଜଣେ ଯୋଦ୍ଧା, ଜଣେ ନିର୍ମାତା, ବଲ୍‌ଶେଭିକମ୍‌ର ଏ ନବୀନ ପ୍ରହରୀଙ୍କର ସମାରୋହକୁ ଯେଉଁଭଳି ଭାବରେ ନେଇଆସିଛି, ସେଥିରେ ଉଜ୍ଜ୍ୱଳ ଉଲ୍ଲାସରେ ଭରିଯାଉଥିଲା ତା'ର ହୃଦୟ ।

ସକାଳୁ ରାତିଅଧ ପର୍ଯ୍ୟନ୍ତ ସବୁ ସମୟ ତାକୁ ବିତାଇବାକୁ ପଡ଼େ କଂଗ୍ରେସ୍ ଅଧିବେଶନରେ । ତେଣୁ ଶେଷ ଅଧିବେଶନ ପୂର୍ବରୁ ରୀତା ସହିତ ଆଉ ଭେଟ ହେବା ସମ୍ଭବ ନଥିଲା । ଦଳେ ୟୁକ୍ରେନୀୟଙ୍କ ସହିତ ଥିଲା ରୀତା ।

"କଂଗ୍ରେସ୍ ଅଧିବେଶନ ଶେଷ ହେବାମାତ୍ରେ କାଲି ମୁଁ ଫେରିଯିବି", ରୀତା କହିଲା ତାକୁ . "ମୁଁ ଜାଣେ ନାହିଁ, ଆମେ ଆଉ କଥାବାର୍ତ୍ତା କରିବା ପାଇଁ ସୁଯୋଗ ପାଇବା କି ନାହିଁ, ତେଣୁ ମୁଁ ମୋର ଦୁଇଟି ପୁରୁଣା ଡାଇରୀ ଖାତା ରଖିଛି ତମକୁ ଦେବା ପାଇଁ । ଆଉ ତା' ସହିତ ଗୋଟିଏ ଛୋଟ ଚିଠି । ସେତକ ପଢ଼ିସାରି ମୋ ପାଖକୁ ଡାକରେ ପଠାଇଦେବ । ମୁଁ ତମକୁ ଯାହା କହିପାରି ନାହିଁ, ସେକଥା ସବୁ ସେ ଡାଇରୀ ଆଉ ଚିଠି କହିଦେବ ।"

ପାଭେଲ୍ ତା' ହାତଟା ଧରିପକାଇ ଟିକିଏ ଚାପ ଦେଲା ଓ ତାକୁ ଅନେକ ସମୟ ଧରି ନିରିଖି ଦେଖିଲା, ସତେ ଯେମିତି ଅନେକ ଦିନ ପାଇଁ ତା' ରୂପ ମନେ ରଖିବା ପାଇଁ ଏକାଥରକେ ଦେଖିନେଉଛି ।

ପୂର୍ବନିର୍ଦ୍ଧାରିତ ମତେ ତା' ପରଦିନ, ପ୍ରବେଶପଥ ପାଖରେ ସେମାନଙ୍କର ଭେଟ ହେଲା ଓ ରୀତା ତା' ହାତରେ ଏକ ପ୍ୟାକେଟ୍ ଏବଂ ଗୋଟିଏ ଜଉମୁଦଦିଆ ଚିଠି ଦେଲା । ଚାରିକଡ଼େ ଲୋକ ଥିଲେ, ଏଣୁ ସେମାନେ ସଂଯତଭାବରେ ବିଦାୟ ନେଲେ ପରସ୍ପରଠାରୁ । ରୀତାର ଈଷତ୍ ବାଷ୍ପାଛନ୍ନ ଆଖି ଦୁଇଟି ଭିତରେ ପାଭେଲ୍ ଲକ୍ଷ୍ୟ କଲା, କରୁଣତାମିଶା ଗଭୀର କୋମଳତା ଭରି ରହିଛି ।

ତା' ପରଦିନ ରେଳ ସେମାନଙ୍କୁ ପରସ୍ପରଠାରୁ ବିପରୀତ ଦିଗରେ ବହିନେଇଗଲା । ରେଳର ଅନେକଗୁଡ଼ିଏ ଡବା ଦଖଲ କରିଥିଲେ ୟୁକ୍ରେନୀୟ ପ୍ରତିନିଧିଦଳ ଓ ତାଙ୍କରି ଭିତରେ ଥିଲା ପାଭେଲ୍ । କିଏଭ୍‌ରୁ ଆଗତ କେଇଜଣ ପ୍ରତିନିଧି ଯାଉଥିବା ଡବାରେ ବସିଥିଲା ସେ । ସନ୍ଧ୍ୟା ପରେ ଅନ୍ୟାନ୍ୟ ଯାତ୍ରୀମାନେ ଶୁଇପଡ଼ିଲା ପରେ ଓ ଓକୁନେଭ୍ ପାଖ ବର୍ଥରେ ଶାନ୍ତିରେ ଘୁଙ୍ଗୁଡ଼ି ମାରିଲା ପରେ, ଆଲୁଅଟାକୁ ପାଖକୁ ଟାଣିନେଇ ପାଭେଲ୍ ରୀତାର ଚିଠି ଖୋଲିଲା ।

"ପ୍ରିୟ ପାଭେଲ୍ ! ଆମେ ଦିହେଁ ଏକାଠି ଥିଲାବେଳେ ମୁଁ ତମକୁ ଏସବୁ କଥା କହିପାରିଥାନ୍ତି । ମାତ୍ର ଏମିତି ହେଲା ଭଲ ହେଲା । ମୁଁ କେବଳ ଏତିକି ଆଶା କରୁଛି, କଂଗ୍ରେସ୍ ବସିବା ଆଗରୁ ଆମର କଥୋପକଥନ ଯେପରି ତମ ଜୀବନରେ କୌଣସି ଦାଗ ନରଖେ । ମୁଁ ଜାଣେ . ତମେ ଅତି ଦୃଢ଼ ଏବଂ ତମେ ମୋ ଯାହା କହିଛ, ତାହାହିଁ କରିବ ସେକଥା ମଧ୍ୟ ଜାଣିଛି । ଜୀବନକୁ ଗତାନୁଗତିକ ଧାରାରେ ମୁଁ ଦେଖେ ନାହିଁ । ତେବେ ମୋର ନନେହୁଏ କଦବା କେମିତି ଜୀବନରେ ବ୍ୟତିକ୍ରମ ଆସିପାରେ, ଜଣକର ବ୍ୟକ୍ତିଗତ ସଂପର୍କ ଭିତରେ ଯଦି ତାହା ପ୍ରକୃତ ନିବିଡ଼ ସଂପର୍କ ଉପରେ ପର୍ଯ୍ୟବସିତ ହୋଇଥାଏ । ତମ ପାଇଁ ସେ ବ୍ୟତିକ୍ରମ ମୋ ଜୀବନରେ ହେବାକୁ ମୁଁ ଦେଇପାରିଥାନ୍ତି, ମାତ୍ର ଯୌବନର ଜୟଗାନ କରିବା ପାଇଁ ମୁଁ ମୋର ଆବେଗକୁ ରୁଦ୍ଧ କରିଥିଲି । ଆବେଗ ଭିତରେ ଆମ ଉଭୟଙ୍କ ପାଇଁ ଯଥାର୍ଥ ଆନନ୍ଦ ମିଳି ନଥାନ୍ତା । ତଥାପି ତମେ ନିଜ ଉପରେ ଏତେ କଠୋର ହୁଅ ନାହିଁ ପାଭେଲ୍ । ଆମ ଜୀବନ କେବଳ ସଂଘର୍ଷ ନୁହେଁ । ସେଇଥି ଭିତରେ ହିଁ ଆନନ୍ଦ ଅଛି, ଯାହା ମିଳେ ପ୍ରକୃତ ପ୍ରେମରୁ !

ଆଉ ବାକି କଥା, ତମ ଜୀବନର ଉଦ୍ଦେଶ୍ୟ ଆଭିମୁଖ୍ୟ ସଂପର୍କରେ ମୋର କୌଣସି ସନ୍ଦେହ ନାହିଁ । ତମ ହାତରେ ନିର୍ବିଚ୍ନଭାବରେ ଛପ ଦେଇ ରହିଛି ... ରୀତା ।"

ଚିଠିଟିକୁ ଟିକିଟିକି କରି ଚିରିପକାଇଲା ପାଭେଲ୍ ଓ ଝରକା ବାହାରକୁ ହାତ ବଢ଼ାଇଲା । ଅନୁଭବ କଲା, ଶୀତଳ ପବନ କାଗଜ ଟୁକୁରାଗୁଡ଼ିକୁ ତା' ହାତରୁ ଉଡ଼ାଇ ନେଇଯାଉଛି ।

ସକାଳ ହେଲାବେଳକୁ ରୀତାର ଦୁଇଟିଯାକ ଡାଇରୀ ଖାତା ପଢ଼ିସାରିଲାଣି ପାଭେଲ୍ । ତାକୁ ବନ୍ଧାବନ୍ଧି କରି ଫେରନ୍ତା ଡାକରେ ପଠାଇବା ପାଇଁ ସଜାଡ଼ିନେଲା ସେ । ଖାର୍‌କୋଭ୍‌ରେ ଓକୁନେଭ୍, ପାନ୍‌କ୍ରାତୋଭ୍ ତଥା ଆଉ କେଇଜଣ ପ୍ରତିନିଧିଙ୍କ ସହିତ ରେଳରୁ ଓହ୍ଲାଇଗଲା ସେ । ଆନ୍ନା ସହିତ ଏକାଠି ରହୁଥିବା ତାଲ୍ୟାକୁ ଆଣିବା ପାଇଁ ଓକୁନେଭ୍ କିଏଭ୍‌କୁ ଯାଉଥିଲା । ୟୁକ୍ରେନୀୟ କମ୍‌ସୋମୋଲ୍‌ର କେନ୍ଦ୍ର କମିଟିକୁ ନିର୍ବାଚିତ ହୋଇଥିବା ପାନ୍‌କ୍ରାତୋଭ୍‌ର କିଏଭ୍‌ରେ କାମ ଥିଲା । ପାଭେଲ୍ ସିଦ୍ଧାନ୍ତ କଲା, ତାଙ୍କ ସହିତ କିଏଭ୍‌କୁ ଯାଇ ଝାର୍‌କୀ ଓ ଆନ୍ନାକୁ ଦେଖାକରି ଯିବ ।

କିଏଭ୍ ଷ୍ଟେସନ୍‌ର ପୋଷ୍ଟ ଅଫିସ୍‌ରେ ସେ ରୀତା ପାଖକୁ ପାର୍ଶଲ୍‌ଟି ପଠାଇଦେଇ ଆସିଲାବେଳକୁ ଅନ୍ୟମାନେ ଚାଲିଗଲେଣି । ତେଣୁ ତାକୁ ଏକୁଟିଆ ବାହାରିବାକୁ ହେଲା । ଆନ୍ନା ଓ ଦୁବାଭା ରହୁଥିବା ଘରର ଠିକ୍ ବାହାରେ ଟ୍ରାମ୍ ଅଟକିଲା । ଦ୍ୱିତୀୟ ମହଲା ଉପରକୁ ପାହାଚରେ ଚଢ଼ିଲା ପାଭେଲ । ବାଁ ପଟରେ ଥିବା ଆନ୍ନାର କୋଠରୀର ଦୁଆର ମୁହଁରେ କବାଟ ଖଡ୍‌ଖଡ୍ କଲା । କେହି ଉତ୍ତର ଦେଲେ ନାହିଁ । ଏତେ ସକାଳୁ ତ କାମକୁ ଯିବା କଥା ନୁହଁ । "ଶୋଇଥିବ ବୋଧହୁଏ ଆନ୍ନା", ଭାବିଲା ସେ । ପାଖ କବାଟ ଖୋଲିଗଲା ଓ ନିଦମଳମଳ ଆଖିରେ ଦୁବାଭା ବାହାରକୁ ବାହାରିଲା । ତା' ଆଖି ଚାରିପଟେ ଯେମିତି କଳା ବୋଳିହୋଇ ଯାଇଛି । ତା' ମୁହଁରୁ ପିଆଜର ଗନ୍ଧ ଭଣଭଣ ହୋଇ ବାହାରୁଛି ଓ ପାଭେଲ୍ ମଦର ଗନ୍ଧ ମଧ୍ୟ ପାଇଲା । ଅଧାମେଲା କବାଟ ଦେଇ ସେ ଗୋଟିଏ ବିଛଣାରେ ପଡ଼ିଥିବା ଜଣେ ସ୍ତ୍ରୀଲୋକର ମାଂସଳ ଗୋଡ଼ ଓ କାନ୍ଧ ଦେଖିପାରିଲା ।

ତା' ଦୃଷ୍ଟି ଅନୁସରଣ କରି ଦୁବାଭା ଗୋଡ଼ରେ କବାଟଟାକୁ ଠେଲି ବନ୍ଦ କରିଦେଲା ।

"କମ୍ରେଡ୍ ବୋର୍ଖାର୍ଟ୍‌କୁ ଦେଖାକରିବାକୁ ଆସିଛୁ ବୋଧହୁଏ ?" କର୍କଶ କଣ୍ଠରେ ପ୍ରଶ୍ନ କଲା ସେ । "ଏଠି ଆଉ ସେ ରହୁ ନାହିଁ । ଏକଥା କ'ଣ ତୁ ଜାଣିନୁ ?"

କୋର୍ଚ୍ଚାଗିନ୍‌ର ମୁହଁ କଠିନ ହୋଇଉଠିଲା ଓ ପ୍ରଶ୍ନବାଚକ ଆଖିରେ ଦୁବାଭାକୁ ଅନାଇରହିଲା ସେ ।

"ନାଁ, ମୁଁ ଜାଣି ନଥିଲି । କୁଆଡ଼େ ଗଲା ସେ ?"

ହଠାତ୍ ରାଗିଉଠିଲା ଦୁବାଭା ।

"ସେଥିରେ ମୋର ଯାଏ ଆସେ ନାହିଁ କିଛି ।" ବଡ଼ ପାଟିରେ କହିଲା ସେ । ଚାପା ଈର୍ଷା ଓ ଘୃଣା ପ୍ରକାଶ କରି କହିଲା, "କ'ଣ ତାକୁ ପ୍ରବୋଧନା ଦେବା ପାଇଁ ଆସିଛୁ ?

ଯାହା ହଉ ଠିକ୍ ବେଳରେ ଆସି ପହଞ୍ଚିଛୁ । ଏଥରକ ତୋ ପାଳି । କିଛି ଭାବ ନାହିଁ, ସିଏ ତୋତେ ରାଜି ହୋଇଯିବ । ମୋତେ ତ ସିଏ ଅନେକ ଥର କହିଛି, ତୋତେ କେତେ ଭଲପାଏ ବୋଲି । ଯେମିତି ଏହିସବୁ ବୋକୀ ଝିଅମାନେ କହନ୍ତି ମ ! ଆରେ ଯା ... ଯା ... ଠିକ୍ ତାତିକରି ପାଚିଥିଲା ବେଳେ ସିନା ଲୁହା ଉପରେ ପାହାର ବସାନ୍ତି । ହୃଦୟ ଓ ଦେହର ଯଥାର୍ଥ ମିଳନ ହେବ ଏଥରକ !"

ପାଭେଲ୍‌କୁ ଲାଗିଲା, ତା' ଗାଲବାଟ ଦେଇ ଯେମିତି ରକ୍ତ ବହିଆସୁଛି । ନିଜକୁ ବହୁ କଷ୍ଟରେ ଦମନ କରି ନିମ୍ନ ସ୍ୱରରେ କହିଲା ସେ :

"ନିଜକୁ ତୁ କ'ଣ କଲୁଣି ମିତ୍ୟାୟ ? ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି, ତୁ ଏତେ ତଳକୁ ଓହ୍ଲାଇଯିବୁ ବୋଲି । ଦିନେ ତ ତୁ ଭଲ ମଣିଷ ଥିଲୁ । କାହିଁକି ଏମିତି ଛୋଟ କରୁଛୁ ନିଜକୁ ?"

କାନ୍ଧକୁ ଆଉଜିପଡ଼ିଲା ଦୁବାଭା । ସିମେଣ୍ଟ ଚଟାଣ ଉପରେ ଖାଲି ପାଦରେ ଠିଆ ହୋଇଥିବାରୁ ତାକୁ ଥଣ୍ଡା ଲାଗୁଥିଲା ନିଶ୍ଚିତ ଭାବରେ, କାରଣ ଥରିଉଠୁଥିଲା ସେ ।

କବାଟଟା ଖୋଲିଗଲା । ପୁଟୁକା ପୁଟୁକା ଗାଲବାଲୀ ସ୍ତ୍ରୀଲୋକଟିଏ ମୁହଁ ଦେଖାଇଲା ଭିତରୁ । ଆଖି ତା'ର ଫୁଲିଯାଇଛି । କହିଲା :

"ହେଃ, କାହିଁକି ମିଛଟାରେ ସେଠି ଛିଡ଼ା ହୋଇଛୁ ? ଭିତରକୁ ଆ... ।"

ସିଏ ଆଉ କିଛି କହିବା ଆଗରୁ ଦୁବାଭା କବାଟଟା ଧଡ଼୍‌କରି ବନ୍ଦ କରିଦେଲା ଓ ତାକୁ ପିଠିକରି ଠିଆ ହୋଇଗଲା ।

"ବାଃ, ବେଶ୍ ଆରମ୍ଭ କରିଛୁ ।" ପାଭେଲ୍ କହିଲା, "ଦେଖିଲୁ କେଡ଼େ ସୁନ୍ଦର ବାନ୍ଧବୀ ସାଙ୍ଗେ ଜୀବନ ବିତାଉଛୁ... କୋଉଠି ଯା'ର ଶେଷ ?"

ଦୁବାଭା କିନ୍ତୁ ଏସବୁ କିଛି ଶୁଣିବାକୁ ରାଜି ନୁହେଁ । "କାହା ସାଙ୍ଗେ ଶୋଇବି ମୁଁ, ସେ କଥା କ'ଣ ତମେମାନେ ଠିକ୍ କରିଦେବ ?" ପାଟିକରି କହୁଥାଏ ସେ, "ତୋ ଉପଦେଶ ଢେର ଶୁଣିଲିଣି । ଏଥର ଯୋଉଠୁ ଆସିଥିଲୁ ସେଠିକି ଯା ! ଯା ଏଠୁ, ଆଉ ସମସ୍ତଙ୍କୁ ଯାଇ କୁହ ଯେ, ଦୁବାଭା ମଦ ଖାଉଛି, ମାଇକିନା ରଖିଛି ।"

ନିଜର ଅବରୁଦ୍ଧ ଆବେଗ ନେଇ ଦୁବାଭା ପାଖକୁ ଯାଇ ପାଭେଲ୍ କହିଲା :

"ମିତ୍ୟାୟ, ସେ ସ୍ତ୍ରୀଲୋକଟାକୁ ବିଦା କରିଦେ । ମୁଁ ଶେଷଥର ପାଇଁ ତୋ ସାଙ୍ଗେ କଥାବାର୍ତ୍ତା କରିବାକୁ ଚାହୁଁଛି ।"

ଦୁବାଭାର ମୁହଁ କଳା ପଡ଼ିଗଲା । ଆଉ ପଦେ ବି କଥା ନକହି କବାଟଟା ଧଡ଼୍‌କରି ବନ୍ଦ କରି ଭିତରକୁ ପଶିଗଲା ସେ ।

"ବଜ୍ଜାତ୍ !" ବିଡ଼ିବିଡ଼ି କରି କହି, ପାଭେଲ୍ ମନ୍ଥର ପାଦରେ ପାହାଚ ପରେ ପାହାଚ ଓହ୍ଲାଇଗଲା ।

* * *

ଦୁଇବର୍ଷ ବିତିଗଲା । ଦିନ, ମାସ ... ସମୟର ସ୍ରୋତରେ ଭାସିଗଲା, ମାତ୍ର ବର୍ଣ୍ଣାଢ୍ୟ ଜୀବନର ବୈଚିତ୍ର୍ୟମୟ ଅଭିଜ୍ଞତା ନୂଆ ନୂଆ ରଙ୍ଗ ଆଣିଦେଲା ମନ ଭିତରେ । ଯାହା ଫଳରେ, କୌଣସି ଦୁଇଟି ଦିନ ଏକାପରି ଜଣାପଡ଼ିଲେ ନାହିଁ । ସବୁ ନୂଆ !

ସାରା ପୃଥିବୀରେ ପ୍ରଥମ ଥର ପାଇଁ ନିଜର ବିରାଟ ଦେଶର ଭାଗ୍ୟଡୋରି ନିଜ ହାତରେ ନେଇଥିବା ଦେଶର ଅବର୍ଣ୍ଣନୀୟ ସଂପଦରାଜିକୁ ନିଜ ହାତମୁଠାକୁ ଆଣିଥିବା କୋଟି କୋଟି ଲୋକଙ୍କର ମହାନ୍ ରାଷ୍ଟ୍ର ଉଠିପଡ଼ି ଲାଗିଥିଲା, ଦେଶର ଯୁଦ୍ଧବିଧ୍ୱସ୍ତ ଅର୍ଥନୀତିକୁ ସଜାଡ଼ି ତୋଳିବାର ବିରାଟ କର୍ତ୍ତବ୍ୟରେ । ଦେଶ ଶକ୍ତିଶାଳୀ ହେଲା । ନୂଆ ଉନ୍ମାଦନା, ନୂଆ ରକ୍ତ ପ୍ରବାହିତ ହେଲା ଧମନିରେ ! ଚିମ୍‌ନିର ଧୂଆଁ ଉଠୁ ନଥିବା ପରିତ୍ୟକ୍ତ କାରଖାନା ଆଉ ଦେଖାଗଲା ନାହିଁ ।

ଏ ଦୁଇଟିଯାକ ବର୍ଷ ପାଭେଲ୍ ପାଇଁ ଅଫୁରନ୍ତ ଅସରନ୍ତି କାର୍ଯ୍ୟ ଭରିହୋଇ ରହିଥିଲା । ଶାନ୍ତଭାବରେ ବେକାର ହୋଇ ସକାଳୁ ହାଇମାରି ମୁହଁରେ ଫୁଟୁକା ଫୁଟାଇ ଉଠିବାର ମଣିଷ ପାଭେଲ୍ ନୁହଁ, ସେ କର୍ମଚଞ୍ଚଳ । ନିଜ ପାଇଁ ଯେମିତି ଅନ୍ୟ ପାଇଁ ମଧ୍ୟ ସେମିତି, ଗୋଟିଏ ମାତ୍ର ମୁହୂର୍ତ୍ତ ଅଳସରେ ବିତାଇଦେବା ପାଇଁ ପ୍ରସ୍ତୁତ ନୁହେଁ ସେ ।

ଯେତେ କମ୍ ସମୟ ସମ୍ଭବ ଶୁଏ ସେ । ସାଧାରଣତଃ ରାତି ଅଧ ଯାଏଁ ତା' ଝରକାବାଟେ ଆଲୁଅ ଦିଶୁଥାଏ । ଭିତରେ ଦଳେ ଲୋକ ଟେବୁଲ ଚାରିକଡ଼େ ଘେରିବସି ପଢ଼ାପଢ଼ିରେ ବ୍ୟସ୍ତ ଥାଆନ୍ତି । ଏହି ଦୁଇବର୍ଷ ଭିତରେ ସେମାନେ ଅତି ଭଲଭାବରେ ପଢ଼ିଛନ୍ତି 'କ୍ୟାପିଟାଲ୍'ର ତୃତୀୟ ଖଣ୍ଡ ଓ ପୁଞ୍ଜିବାଦୀ ଶୋଷଣର ଟିକିନିଖି ପଦ୍ଧତିସବୁ ତାଙ୍କ ନିକଟରେ ବେଶ୍ ସ୍ପଷ୍ଟ ହୋଇଯାଇଛି ।

କୋର୍ଚ୍ଚାଗିନ୍ ଏବେ ଯେଉଁଠି କାମ କରୁଛି, ସେଠାକୁ ରାଜ୍‌ଭାଲିଖିନ୍ ମଧ୍ୟ ଆସିଛି ଓ ତାକୁ ଆଞ୍ଚଳିକ କମିଟି ଅନୁମୋଦନ କରି ପଠାଇଛନ୍ତି, କୌଣସି ଜିଲା କମ୍‌ସୋମୋଲ୍‌ର ସଂପାଦକ ଭାବରେ କାମ କରିବା ପାଇଁ । ରାଜ୍‌ଭାଲିଖିନ୍ ପହଞ୍ଚିଲାବେଳକୁ ପାଭେଲ୍ ନଥିଲା ଓ ବ୍ୟୁରୋ ତା' ଅନୁପସ୍ଥିତି ଭିତରେ ନୂଆ ଆଗନ୍ତୁକକୁ ଗୋଟିଏ ଜିଲାକୁ ପଠାଇ ଦେଇଥାନ୍ତି । ଫେରିଆସି ପାଭେଲ୍ ସେ ଖବର ଶୁଣିଲା, କିନ୍ତୁ କୌଣସି ମନ୍ତବ୍ୟ କଲା ନାହିଁ ।

ମାସକ ପରେ ରାଜ୍‌ଭାଲିଖିନ୍‌ର ଜିଲାକୁ ଅଘୋଷିତଭାବରେ ପରିଦର୍ଶନ ପାଇଁ ପହଞ୍ଚିଲା ପାଭେଲ୍ । ବିଶେଷ ପ୍ରମାଣ ନଥିଲେ ମଧ୍ୟ ପାଭେଲ୍ ଯେତିକି ଖବର ପାଇଲା, ଅତ୍ୟନ୍ତ କଦର୍ଯ୍ୟ ଧରଣର । ନୂଆ ସଂପାଦକ ପିଆପିଇ କରନ୍ତି । ସଦାବେଳେ ଦଳେ ବଚିପେଲା ତାଙ୍କୁ ଘେରି ରହିଥାନ୍ତି – ସଭ୍ୟମାନଙ୍କର ସମ୍ମିଳିତ ମତାମତକୁ ଓ କର୍ମପ୍ରବଣତାକୁ ଚାପିଦେବାକୁ ଚେଷ୍ଟା କରନ୍ତି । ଏମିତି କେତେ କଥା । ବ୍ୟୁରୋକୁ ସବୁ ପ୍ରମାଣ ଯୋଗାଇଦେଲା ପାଭେଲ୍ । ସଭାରେ ଯେତେବେଳେ ରାଜ୍‌ଭାଲିଖିନ୍‌କୁ କଠୋରଭାବରେ

ଚେତାଇ ଦିଆଯାଇ ପ୍ରସ୍ତାବ ନିଆଗଲା, ହଠାତ୍ ପାଭେଲ୍ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରି ଠିଆହୋଇପଡ଼ି କହିଲା :

"ତାଙ୍କୁ ବହିଷ୍କାର କରାଯାଉ ବୋଲି ପ୍ରସ୍ତାବ କରୁଛି ମୁଁ ଓ ସେ ବହିଷ୍କାର ପ୍ରସ୍ତାବ ମଧ୍ୟ ସବୁଦିନ ପାଇଁ କାଏମ୍ ରହୁ ।"

ଏ ପ୍ରସ୍ତାବରେ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ ଓ ଏଭଳି ପ୍ରସ୍ତାବ ବର୍ତ୍ତମାନ ଅବସ୍ଥାରେ ଅତି କଠୋର ହୋଇଯିବ ବୋଲି ମତାମତ ଦେଲେ । ମାତ୍ର ପାଭେଲ୍ ତା' ମତାମତରେ ଅଟଳ ରହିଲା ।

"ସେ ଅପଦାର୍ଥଟାକୁ ବହିଷ୍କାର କରାଯାଉ । ଭଲ ମଣିଷ ହେବାର ସମସ୍ତ ଯୋଗ୍ୟତା ତା'ର ଅଛି, ମାତ୍ର ସେ ଜାଣିଶୁଣି କମ୍‌ସୋମୋଲ୍‌ରେ ସବୁବେଳେ ବାହାରର ଲୋକ ହୋଇ ରହିଯାଉଛି ।" ଏବଂ ତା' ସାଙ୍ଗେ ସାଙ୍ଗେ ପାଭେଲ୍ ବ୍ୟୁରୋ ଆଗରେ ବେରେଜ୍‌ଦୋଭ୍‌ର ଘଟଣାସବୁ ମଧ୍ୟ ବର୍ଣ୍ଣନା କଲା ।

"ମୁଁ ଏହାର ପ୍ରତିବାଦ କରୁଛି", ରାଜ୍‌ଭାଇଖିନ୍ ପାଟିକରିଉଠିଲା । "କୋର୍ଗିନ୍ କେବଳ ବ୍ୟକ୍ତିଗତ ଈର୍ଷା ଯୋଗୁଁ ଏପରି କହୁଛି । ଯାହାସବୁ ସେ କହିଲା, ସେଗୁଡ଼ା ବାଜେ ଗପ ଛଡ଼ା ଆଉ କିଛି ନୁହେଁ । ସେସବୁ ଘଟଣା ଓ କାଗଜପତ୍ର ସାହାଯ୍ୟରେ ପ୍ରମାଣ କରି ଦେଖାଉ । ଧରନ୍ତୁ, ମୁଁ ଆପଣମାନଙ୍କ ପାଖକୁ ଏକ ଅଭିଯୋଗ ନେଇ ଆସିବି ଯେ, କୋର୍ଗିନ୍ କଳାବଜାରୀରେ ଲିପ୍ତ ଅଛି ବୋଲି ଆପଣମାନେ କ'ଣ ତାକୁ କେବଳ ମୋର ସେହି ଅଭିଯୋଗ ଉପରେ ଭିତ୍ତି କରି ବହିଷ୍କାର କରିବେ ? ତାକୁ ଲିଖିତ ପ୍ରମାଣ ଦେବାକୁ ହେବ ।"

"ଠିକ୍ ଅଛି । ମୁଁ ଆବଶ୍ୟକୀୟ ସମସ୍ତ ପ୍ରମାଣ ଯୋଗାଇ ଦେବି ।" କୋର୍ଗିନ୍ ଜବାବ ଦେଲା ।

ରାଜ୍‌ଭାଇଖିନ୍ ସେ ଘର ଛାଡ଼ି ବାହାରକୁ ଉଠିଗଲା । ପାଭେଲ୍ ସାରା ବ୍ୟୁରୋକୁ ଯୁକ୍ତିତଥ୍ୟ ଦେଇ ବୁଝାଇଲା, ଯା ଫଳରେ ଅଧ ଘଣ୍ଟାକ ପରେ ରାଜ୍‌ଭାଇଖିନ୍‌କୁ ଜଣେ ଭିନ୍ନ ମତାଦର୍ଶର ଲୋକ ବୋଲି କମ୍‌ସୋମୋଲ୍‌ରୁ ବହିଷ୍କାର କରି ଏକ ପ୍ରସ୍ତାବ ଗ୍ରହଣ କରାଗଲା ।

ଗ୍ରୀଷ୍ମକାଳ ଆସିଗଲା ଓ ତା' ସହିତ ଆସିଲା ଛୁଟିର ଦିନଗୁଡ଼ିକ । ପାଭେଲ୍‌ର ସହକର୍ମୀମାନେ ସମସ୍ତେ ଜଣକ ପରେ ଜଣେ ଛୁଟି ବିତାଇବାକୁ ବାହାରିଗଲେ । ଯେଉଁମାନଙ୍କର ସ୍ୱାସ୍ଥ୍ୟ ଖରାପ, ସେମାନେ ସମସ୍ତେ ସମୁଦ୍ରକୂଳିଆ ସ୍ଥାନକୁ ଗଲେ ଓ ସାନାଟୋରିୟମ୍‌ରେ ସିଟ୍ ମିଳିବାରେ ଓ ଅର୍ଥ ମିଳିବାରେ ତାଙ୍କୁ ସବୁ ସାହାଯ୍ୟ କଲା ପାଭେଲ୍ । ଶେଥା ମୁହଁରେ, ରୁଗ୍‌ଣ ଶରୀର ନେଇ ଯାଉଥିଲେ ମଧ୍ୟ ଆଗାମୀ ଛୁଟି ଉପଭୋଗ କରିବାର ଆନନ୍ଦରେ, ମୁହଁରେ ହସ ଫୁଟୁଥିଲା ସେମାନଙ୍କର । ସେମାନଙ୍କର ସମସ୍ତଙ୍କର କାମର ସ୍ତୁପ ପଡ଼ିଲା ପାଭେଲ୍ ଉପରେ ଓ କୌଣସି ପ୍ରତିବାଦ ନକରି ସେ ସବୁ କାମକୁ ତୁଲାଇନେବାକୁ କାନ୍ଧ ପାତିଦେଲା । ଯଥା ସମୟରେ ଖରା ପୁହାଇଁ ଜୀବନର

ପ୍ରାଚୁର୍ଯ୍ୟ ଓ ଉନ୍ମାଦନା ନେଇ ସେମାନେ ଫେରିଆସିଲେ, ଅନ୍ୟମାନେ ଗଲେ । ଖରାଦିନ ସାରା ଅଫିସ୍‌ରେ କମ୍ ଲୋକ ରହିଲେ । ଜୀବନର ଗତିର ଦ୍ରୁତତା କିନ୍ତୁ କମିଲା ନାହିଁ । ଏଣୁ ଦିନଟିଏ ବି କାମରୁ ବିଶ୍ରାମ ମିଳିଲା ନାହିଁ ପାଭେଲ୍‌କୁ ।

ଗ୍ରୀଷ୍ମକାଳ ସରିଲା । ଶରତ ଓ ଶୀତର ଆଗମନ ଭୟଭୀତ କଲା ପାଭେଲ୍‌କୁ । କାରଣ ସାଧାରଣତଃ ପ୍ରତ୍ୟେକ ଶୀତକାଳରେ ସେ ଦେହ ବାଧିକାରେ ପଡ଼ିଛି ।

ସେବର୍ଷ ବିଶେଷ ଆଗ୍ରହାତିଶଯ୍ୟରେ ପାଭେଲ୍ ଅପେକ୍ଷା କରିଥିଲା ଗ୍ରୀଷ୍ମ କାଳକୁ । କାରଣ ତାକୁ ନିଜକୁ ସ୍ୱୀକାର କରିବାକୁ କଷ୍ଟ ହେଉଥିଲେ ମଧ୍ୟ ସେ ବୁଝୁଥିଲା ଯେ, ବର୍ଷ ପରେ ବର୍ଷ ତା'ର ଶକ୍ତି ଧୀରେ ଧୀରେ କମିଯାଉଛି । ତା' ନିକଟରେ ମାତ୍ର ଦୁଇଟି ପନ୍ଥା ଥିଲା : ଗୋଟିଏ ହେଉଛି, କାମ କରିବା ପାଇଁ ଯେତିକି କଠିନ ପରିଶ୍ରମ ଲୋଡ଼ା ତାକୁ ସେ ସହିପାରୁ ନାହିଁ ଓ ନିଜକୁ ଅକ୍ଷମ ବୋଲି ଘୋଷଣା କରିବା । ଅନ୍ୟଟି ହେଲା, ଯେତେ କଷ୍ଟ ହେଉ ପଛେ, ଯେତେଦିନ ସମ୍ଭବ ନିଜ ଜାଗାରେ ରହି କାମ କରିଯିବା । ସେ ଦ୍ୱିତୀୟଟିକୁ ହିଁ ଗ୍ରହଣ କରିନେଇଥିଲା ।

ଦିନେ ପାର୍ଟିର ଆଞ୍ଚଳିକ କମିଟିର ବୈଠକରେ ପାର୍ଟିର ପୁରୁଣା ଗୁପ୍ତ ସଂଗଠନର କର୍ମୀ ଓ ଏବେ ସ୍ୱାସ୍ଥ୍ୟ ବିଭାଗର ଦାୟିତ୍ୱରେ ଥିବା ଡାକ୍ତର ବାର୍‌ଟେଲିକ୍ ଆସି ତା' ପାଖରେ ବସିଲେ ।

"ତମେ ଭାରି ଶୁଖିଲା ଦିଶୁଛ କୋର୍ଚ୍ଚାଗିନ୍ । ଦେହ କେମିତି ଅଛି ? ମେଡିକାଲ କମିଶନ୍ ଦ୍ୱାରା ପରୀକ୍ଷା କରାଇଛ ? କରିନଟି ? ମୁଁ ବି ସେଇଆ ଭାବିଥିଲି । ଯାହା ଦେଖୁଛି, ତମର ଗୋଟାଏ ପୂରାପୂରି ଡାକ୍ତରୀ ପରୀକ୍ଷା ଦରକାର । ତମେ ଗୁରୁବାର ଦିନ ସନ୍ଧ୍ୟାବେଳକୁ ଟିକିଏ ଆସ, ଆମେ ପରୀକ୍ଷା କରିବୁ ତମକୁ ।"

ପାଭେଲ୍ ଗଲା ନାହିଁ । ଭୟଙ୍କର କାର୍ଯ୍ୟବ୍ୟସ୍ତ ଥିଲା ସେ । ମାତ୍ର ବାର୍‌ଟେଲିକ୍ ତା' କଥା ଭୁଲି ନଥିଲେ ଓ କିଛି ଦିନ ପରେ ସେ ନିଜେ ଆସି ପାଭେଲ୍‌କୁ ସାଙ୍ଗରେ ଡାକ୍ତରୀ କମିଶନ୍‌କୁ ନେଇଗଲେ ପରୀକ୍ଷା ପାଇଁ । ସେଥିରେ ସେ ନିଜେ ମଧ୍ୟ ନିଉରୋପାଥୋଲୋଜିଷ୍ଟ ଭାବରେ ରହିଥିଲେ । ପରୀକ୍ଷା ପରେ ମେଡିକାଲ କମିଶନ୍ ମତ ଦେଲେ :

"ତୁରନ୍ତ ଛୁଟି ଓ କ୍ରିମିୟାଠାରେ ଧାରାବାହିକ ଶୁଶ୍ରୂଷା ଓ ଡାକ୍ତରୀ ଚିକିତ୍ସା ତା' ପାଇଁ ଲୋଡ଼ା ।" ଆହୁରି ପୁଣି, "ଯଦି ଏହା ତ୍ୱରାନ୍ୱିତ ଭାବରେ କାର୍ଯ୍ୟକାରୀ ନହୁଏ ତେବେ ପରବର୍ତ୍ତୀ କାଳରେ ଅବସ୍ଥା ଅତି ଶୋଚନୀୟ ହେବ ଏବଂ ପରିଣତି ଭୟାବହ ହେବ ।"

ପରେ ଲାଟିନ୍‌ରେ ଲେଖାଥିବା ରୋଗର ଯେଉଁ ବିରାଟ ବିବରଣୀ ଥିଲା, ସେଥିରୁ ପାଭେଲ୍ କେବଳ ଏତିକିମାତ୍ର ବୁଝିପାରିଲା ଯେ, ତା' ପାଦରେ ଅସୁବିଧା କିଛି ନାହିଁ । ଅଛି ତା'ର ଦେହର କେନ୍ଦ୍ରୀୟ ସ୍ନାୟବିକ ପ୍ରକ୍ରିୟାରେ । ସ୍ନାୟବିକ ପ୍ରଣାଳୀ ତା'ର ଅତି ଗୁରୁତରଭାବରେ ଆଘାତପ୍ରାପ୍ତ ହୋଇଛି ।

ଡାକ୍ତରୀ କମିଶନ୍‌ର ଏ ସିଦ୍ଧାନ୍ତକୁ ଡାକ୍ତର ବାର୍‌ଚେଲିକ୍ ବ୍ୟୁରୋ ସମ୍ମୁଖରେ ଉପସ୍ଥାପିତ କଲେ ଓ ତୁରନ୍ତ କୋର୍ଚ୍ଚାଗିନ୍‌କୁ କାମରୁ ଅବ୍ୟାହତି ଦେଇ ଛୁଟି ଦିଆଯାଉ ବୋଲି ମତ ଦେଲେ । କୋର୍ଚ୍ଚାଗିନ୍ କେବଳ ଏତିକିମାତ୍ର କହିଲା ଯେ, ସ୍‌ବିଚ୍‌ନେଭ୍ ଆସିବା ପର୍ଯ୍ୟନ୍ତ ତା' ଛୁଟି ସ୍ଥଗିତ ରଖାଯାଉ । ସ୍‌ବିଚ୍‌ନେଭ୍ ସାଂଗଠନିକ ବିଭାଗର ମୁଖ୍ୟ । ନେତୃତ୍ୱବିହୀନଭାବରେ ସେ କମିଟିକୁ ଛାଡ଼ିଦେଇ ଯାଇପାରେ ନାହିଁ । ବାର୍‌ଚେଲିକ୍ ନାରାଜ ହେଲେ ମଧ୍ୟ ବ୍ୟୁରୋ ଏ କଥାରେ ସମ୍ମତି ଦେଲେ ।

ଆଉ ତିନି ସପ୍ତାହ ପରେ ଛୁଟି ବିତାଇବା ପାଇଁ ପାଭେଲ୍‌କୁ ଯିବାକୁ ପଡ଼ିବ । ଜୀବନରେ ଛୁଟିର ଅଭିଜ୍ଞତା ତା'ର ଏ ପ୍ରଥମ । ୟେଭ୍‌ପାଟୋରିୟାର ଏକ ସାନାଟୋରିୟମ୍‌ରେ ତା' ପାଇଁ ସ୍ଥାନ ସଂରକ୍ଷିତ ହୋଇ ରହିଛି । ତା' ଟେବୁଲର ଡ୍ରୟାରରେ ସେ କାଗଜଖଣ୍ଡିକ ଗଚ୍ଛିତ ରହିଛି ।

ଏତକ ସମୟ ଭିତରେ ଆଗ ଅପେକ୍ଷା ଅଧିକ କାମ କରିବାକୁ ଲାଗିଲା ସେ । ଆଞ୍ଚଳିକ କମ୍‌ସୋମୋଲ୍‌ର ଏକ ପୂର୍ଣ୍ଣାଙ୍ଗ ବୈଠକ ଡକାଇଲା ଓ ଯେଉଁଠି କାମରେ ଗଫଲତ୍ ଥିଲା ସେସବୁ ଠିକ୍ କରିନେବା ପାଇଁ କ୍ଲାନ୍ତିହୀନ ଭାବେ ଲାଗି ପଡ଼ିଲା, ଯେମିତି କି ସେ ଫାଙ୍କା ମନରେ ନିଜର ଦାୟିତ୍ୱ ସଂପାଦନ କରିପାରିଛି ବୋଲି ମନରେ ଆଶ୍ୱାସନା ନେଇଯାଇପାରିବ ।

ଜୀବନରେ ପହିଲି ଥର ପାଇଁ ସମୁଦ୍ରକୁ ଆଖିରେ ଦେଖିବା ପାଇଁ ଯିବାର ଠିକ୍ ପ୍ରାକ୍‌କାଳରେ ଏକ ଅଭାବିତ, ବିଚିତ୍ର ଘଟଣା ଘଟିଗଲା ।

କାମ ସାରି ପାଭେଲ୍ ପାର୍ଟିର ପ୍ରଚାର ବିଭାଗରେ ଏକ ସଭାରେ ଯୋଗ ଦେବା ପାଇଁ ଯାଇଛି । ପହଞ୍ଚିଲାବେଳକୁ ସେଠାରେ କେହି ଜଣେ ହେଲେ ନାହାନ୍ତି । ସେ ବହିଥାକ ପାଖରେ ଥିବା ଝରକା ବନ୍ଧରେ ବସିରହି ଅପେକ୍ଷା କରିବାକୁ ଲାଗିଲା, ଅନ୍ୟମାନେ ଆସି ପହଞ୍ଚିବା ପର୍ଯ୍ୟନ୍ତ । କିଛି ସମୟ ପରେ କେଇଜଣ ଆସିଗଲେ । ବହିଥାକ ପଛକଡ଼ରୁ ସେ କାହାରିକୁ ଦେଖିପାରୁ ନଥାଏ । କିନ୍ତୁ ଜଣକର ସ୍ୱର ବାରିପାରୁଥାଏ । ଫାଇଲେର ସ୍ୱର । ଆଞ୍ଚଳିକ ଅର୍ଥନୈତିକ ବିଭାଗର ଲୋକ ସେ । ଡେଙ୍ଗା ହୋଇ ସୁନ୍ଦର ଚେହେରାର, ସେନାବାହିନୀର କାଇଦା କଟକଣା ଦୁରସ୍ତ ଲୋକଟିଏ ସେ । ମଦ ଓ ନାରୀ ପଛରେ ଗୋଡ଼ାଇବାର ସୁନାମ ଅଛି ତା'ର ।

ଫାଇଲେ ଏକଦା ଗେରିଲା ବାହିନୀର ସଭ୍ୟ ଥିଲା ଓ ଯେତେବେଳେ ସୁବିଧା ପାଏ, ସେ କେମିତି ମାଖ୍‌ନୋର ଜଳଦସ୍ୟୁ ଦଳର ଡଜନ୍ ଡଜନ୍ ଲୋକଙ୍କୁ ହତ୍ୟା କରିଥିଲା, ସେ କାହାଣୀ ଗପିଯାଏ ସମସ୍ତଙ୍କ ଆଗରେ । ଲୋକଟାକୁ ସହ୍ୟ କରିପାରେ ନାହିଁ ପାଭେଲ୍ । ଦିନେ କମ୍‌ସୋମୋଲ୍‌ର ସଭ୍ୟା ତରୁଣୀଟିଏ କାନ୍ଦିକାନ୍ଦି ଆସି ପାଭେଲ୍‌କୁ କହିଲା ଯେ, ଫାଇଲେ ତାକୁ ବାହାହେବ ବୋଲି କଥା ଦେଇଥିଲା, ତା' ସହିତ ସପ୍ତାହେ ଖଣ୍ଡେ ଏକାଠି ରହିଲା ପରେ ଏବେ ତାକୁ ଦେଖିଲେ ଚିହ୍ନି ମଧ୍ୟ ପାରୁ ନାହିଁ । କଥାଟା କଣ୍ଟ୍ରୋଲ୍ କମିଶନ୍‌ରେ ପଡ଼ିଲା ବେଳେ ଝିଅଟି କୌଣସି ପ୍ରମାଣ ନ

ଦେଇପାରିବାରୁ ଫାଇଲେ ଖସିଗଲା । ମାତ୍ର ପାଭେଲ୍ ଝିଅଟିକୁ ବିଶ୍ୱାସ କରୁଥିଲା । ତା'ର ଉପସ୍ଥିତି ନ ଜାଣିପାରି ଅନ୍ୟମାନେ ସମସ୍ତେ ଖୋଲାଖୋଲିଭାବରେ ଆଲୋଚନା କରୁଥିବା କଥା ଶୁଣୁଥିଲା ପାଭେଲ୍ ।

"କିରେ ଫାଇଲେ ? ଏବେ କେମିତି ଚାଲିଛି ?" ଗ୍ରୀବୋଭ୍ କହୁଥାଏ । ଫାଇଲେର ଅତି ଗହୀରା ବନ୍ଧୁ ସେ । ବୋକାଟା ହେଲେ ମଧ୍ୟ କୌଣସି କାରଣରୁ ତାକୁ ପ୍ରଗ୍ରରବିଦ୍ ବୋଲି ଧରି ନିଆହୋଇଥାଏ । ସେ ଯାହା ହେଉ, ନିଜକୁ ଜଣେ ପ୍ରଗ୍ରରକର୍ମୀ ବୋଲି କୁହାଇବାରେ ତା'ର ଗର୍ବ ଓ ଯେତେବେଳେ ସେତେବେଳେ ସେ ସମସ୍ତଙ୍କୁ ସେକଥା ଜଣାଇଦିଏ ।

"ମୋତେ ଅଭିବାଦନ ଜଣା । କାଲି ଆହୁରି ଗୋଟାଏ ଜିତିଛି ମୁଁ— କୋରୋତାୟେଭାକୁ । ତମେ ସବୁ କହୁଥିଲ ନା ସିଏ ଜମାରୁ ରାଜି ହେବ ନାହିଁ ବୋଲି ? ସେଇଠି ତମର ଭୁଲ, ବୁଝିଲ ବନ୍ଧୁ ? ମୁଁ ଯଦି କୋଉ ମାଇକିନା ପଛରେ ଲାଗେ ନା ନିଶ୍ଚିତଭାବରେ ଦିନେ ନା ଦିନେ ତାକୁ ପଟ୍‌କାଇବି", ଗର୍ବ କରି କହୁଥିଲା ଫାଇଲେ ଆହୁରି ଅନେକ ଅଶ୍ଳୀଳ କଥାସବୁ ।

ପାଭେଲ୍ ନିଜ ସ୍ନାୟବିକ ଉତ୍ତେଜନା ଅନୁଭବ କଲା । ରାଗିଗଲେ ତାକୁ ସେମିତି ଲାଗେ । ନାରୀ ବିଭାଗ ଦାୟିତ୍ୱରେ ଅଛି କୋରୋତାୟେଭା ଓ ପ୍ରାୟ ତା' ନିଜ ସାଙ୍ଗରେ ସେ ଯୋଗ ଦେଇଛି ଆଞ୍ଚଳିକ କମିଟିରେ । ଜଣେ ଅତି ଭଲ ଓ ବିଶ୍ୱସ୍ତ । ପାର୍ଟି କର୍ମୀ ଭାବରେ ତାକୁ ଜାଣେ ପାଭେଲ୍ । ଯେକୌଣସି ସ୍ତ୍ରୀଲୋକ ତା ପାଖକୁ ସାହାଯ୍ୟ କି ଉପଦେଶ ପାଇଁ ଆସିଲେ, ସେ ବେଶ୍ ସହଜଭାବରେ ତାଙ୍କ କଥା ଶୁଣି ତାଙ୍କୁ ସାହାଯ୍ୟ କରେ । କମିଟିର ଅନ୍ୟ ସଦସ୍ୟମାନେ ତାକୁ ଶ୍ରଦ୍ଧା ଭକ୍ତି କରନ୍ତି । ସେ ଅବିବାହିତା ବୋଲି ଜାଣିଥିଲା ପାଭେଲ୍ । ଫାଇଲେ ଯେ ତା'ରି ବିଷୟରେ କହୁଛି, ଏଥିରେ କୌଣସି ସନ୍ଦେହ ନାହିଁ ।

"ଯା ... ଯା ... ଅତି ବାଜେ କଥା ବନେଇଚୁନେଇ ମନରୁ କହୁଛୁ ତୁ ଫାଇଲେ । ସିଏ ତ ସେମିତି ନୁହଁ ।"

"ମନରୁ କହୁଛି ? କ'ଣ ଭାବିଛୁ ମୋତେ ? ତା'ଠାରୁ ଆହୁରି ଅନେକ ଟାଣୁଆ ମାଇକିନାଙ୍କୁ ପଟ୍‌କେଇ ଦେଇଛି । ଖାଲି ଜାଣିଲେ ହେଲା, କେମିତି ବାଗରେ ପାଇବ । କେଇଜଣ ତ ଖୋଲାଖୋଲିଭାବରେ ଆଗେଇଆସିବେ । ହେଲେ ସେଗୁଡ଼ାକରେ ମଜା ନାହିଁ । ଆଉ ଅନ୍ୟମାନଙ୍କ ପିଛା କରିବାକୁ ପୂରା ମାସେ ଲାଗିଯାଏ । ମୂଳକଥା ହେଲା, ତାଙ୍କ ମନସ୍ତତ୍ୱ ଠଉରେଇବା, ଠିକ୍ ବାଗରେ ଧରିବା ... ତା'ହେଲେ ବାସ୍ ! ଆନ୍ନେ ଅନେଇଛୁ କ'ଣ ? ଏଇ ତ ଗୋଟାଏ ବିଜ୍ଞାନ ! ମୁଁ ଏ ବିଷୟରେ ଗୋଟାଏ ଅଧ୍ୟାପକ, ବୁଝିଲୁ ? ହାଃ ... ହାଃ ... ହାଃ ..."

ଆତ୍ମଗର୍ବରେ ସଢ଼ିଯାଉଛି ଫାଇଲେ । ତା'ର ଶ୍ରୋତାମାନେ ଆହୁରି ଉଖୁରେଇ ଉଖୁରେଇ ପଗ୍ରୁଛନ୍ତି ତା'ଠାରୁ ଆହୁରି ରସାଳ କାହାଣୀ ଶୁଣିବାକୁ ।

କୋର୍ଗିନ୍ ଉଠିପଡ଼ିଲା । ହାତ ମୁଠାମୁଠା ହୋଇଗଲା ତା'ର । ଛାତି ଭିତରେ ତା'ର ହୃତ୍‌ସ୍ପନ୍ଦନ ବଢ଼ିଯିବାର ଅନୁଭବ କଲା ସେ ।

"ମୁଁ ଜାଣିଥିଲି ଯେ, କୋରୋଚାୟେଭା ଏମିତି ସାଦାସିଧା ବାଗରେ ପଡ଼ିବ ନାହିଁ । ହେଲେ ମୁଁ ବି ଛାଡ଼ିବାବାଲା ନୁହିଁ । ବିଶେଷକରି ଏଇଥି ପାଇଁ ଗ୍ରୀବୋଭ୍ ସହିତ ବାର ବୋତଲ ପୋର୍ଟ୍‌ୱାଇନ୍ ବାଜି ରଖିଛି । ମୁଁ ତେଣୁ ଅନ୍ୟ ବାଟ ଧରିଲି । ଥରେ ଦି'ଥର ତା' ଅଫିସ୍‌କୁ ଗଲି । ଦେଖିଲି ସେଥିରେ କିଛି ଫଳ ହେଲା ନାହିଁ । ତା' ଛଡ଼ା ମୋ ବିଷୟରେ ତ ନାନା ପ୍ରକାର ଗୁଜବ ଚାଲିଛି ଆଉ ସେଥିରୁ କେତେକ ତା' କାନରେ ବି ପଡ଼ିଥିବ । ଛାଡ଼, ଏତେ ବଡ଼ କରି କହି ଲାଭ ନାହିଁ । ଅନ୍ତରେ କହିଲେ, ଦେଖିଲି ଯେତେବେଳେ ସିଧାସଳଖ ବାଟରେ କାମ ହେଲା ନାହିଁ, ମୁଁ ଅନ୍ୟ ବାଟ ଧରିଲି । ହାଃ ... ହାଃ ... ବୁଝିଲ ? ବଢ଼ିଆ କାମ କଲା । ମୁଁ ଯାଇଁ ତାକୁ ମୋ ଦୁଃଖର କାହାଣୀ ଶୁଣାଇଲି, କେମିତି ମୁଁ ଯୁଦ୍ଧରେ ଲଢ଼େଇ କରିଛି, ସାରା ପୃଥିବୀ ଘୂରିଛି, ଅନେକ କଷ୍ଟ ସହିଛି ଜୀବନରେ, ହେଲେ ଜୀବନରେ ଜଣେ ହେଲେ ନାରୀ ଭେଟି ନାହିଁ, ଯିଏ ମୋତେ ପ୍ରକୃତରେ ଭଲ ପାଇବ, ମୋ ଜୀବନରୁ ଏ ଦୁର୍ବିସହ ଏକାକୀତ୍ୱକୁ ଘୁଞ୍ଚାଇ ଦେଇପାରିବ । ଏମିତି ଅନେକ ଆଜେବାଜେ କଥା ... ବୁଝିଲ ? ତା' ଦୁର୍ବଳତା ଉପରେ ଆଘାତ କଲି । ଏକଥା ଅବଶ୍ୟ ମାନୁଛି ଯେ ତା' ପାଇଁ ଅନେକ ଅସୁବିଧା ଭୋଗିଛି ମୁଁ । ବେଳେବେଳେ ଦିକ୍‌ଦାର ହୋଇ ଏ ବାଜେ କାମ ଛାଡ଼ିଦେବାକୁ ବି ଇଚ୍ଛା ହୁଏ । ହେଲେ, ଇଏ ଗୋଟାଏ ନୀତିର କଥା । ଏଇଥି ପାଇଁ ଛାଡ଼ିଲି ନାହିଁ ତାକୁ । ଆଉ ଶେଷରେ ତା'ର ବାଧା ରହିଲା ନାହିଁ ଆଉ ଜାଣିଛ ନାଁ ରେ ? ଦେଖିଲି ପୂରା କୁମାରୀ ଅଛି ଏଯାଏଁ । ହାଃ ... ହାଃ ... କି ବଢ଼ିଆ ମାଲ !"

ଫାଇଲେ ତା'ର ଏ ଅଶ୍ଳୀଳ କାହାଣୀ କହିଚାଲିଲା ।

କ୍ରୋଧରେ ଜଳିଉଠି ପାଭେଲ୍ ତା' ପାଖକୁ ଉଠିଆସିଲା ।

"ବଜ୍ଜାତ୍ କୋଉଠିକାର !" ଗର୍ଜନ କରିଉଠିଲା ସେ ।

"ମୁଁ ବଜ୍ଜାତ୍ ? ତୁ ଯେ କାନ ପାତି ଅନ୍ୟର କଥା ଶୁଣୁ, ତାହେଲେ ତୁ କ'ଣ ?"

ପାଭେଲ୍ ଆଉ କ'ଣ କହିଛି ନିଶ୍ଚୟ, କାରଣ ମଦନିଶାରେ ଟଳୁଥିବା ଫାଇଲେ ତା' ଜାମା କଲର୍‌କୁ ଧରିପକାଇଲା ।

"ମୋତେ ଅପମାନ ଦେଉଛୁ ?" କହି ପାଭେଲ୍‌କୁ ଗୋଟାଏ ମୁଥି ବସାଇଲା ସେ ।

ବଡ଼ ଓକ୍‌କାଠର ଟୁଲ୍‌ଟାଏ ଧରି ପାଭେଲ୍ ତା' ଉପରକୁ ଫୋପାଡ଼ିଲା । ଫାଇଲେ ଭାଗ୍ୟକୁ ପାଭେଲ୍ ପାଖରେ ତା'ର ପିସ୍ତଲ୍ ନଥିଲା, ନଚେତ୍ ସେ ଏତେ ଉତ୍ତ୍ୟକ୍ତ ହୋଇଯାଇଥିଲା ଯେ, ତାକୁ ମାରି ପକାଇଥାନ୍ତା ଜୀବନରୁ ।

କିନ୍ତୁ ଏ ଅଭାବିତ ଓ କାଣ୍ଡଜ୍ଞାନହୀନ ଘଟଣା ଘଟିଗଲା ଓ କ୍ରିମିୟାକୁ ଯିବା ଦିନ ଠିକ୍ ପାଭେଲ୍‌କୁ ଏକ ପାର୍ଟି ବିଚାରାଳୟ ଆଗରେ ଛିଡ଼ାହେବାକୁ ପଡ଼ିଲା ।

ସମଗ୍ର ପାର୍ଟି ସଂଗଠନ ଟାଉନ୍ ଥିଏଟର ଘରେ ସମବେତ ହୋଇଛି । ଏ ଘଟଣା

ଅନେକଙ୍କ ମନରେ ଆଘାତ ଆଣିଛି । ଏ ସଂପର୍କରେ ଶୁଣାଶୁଣି ହୋଇ ପାର୍ଟି ନିୟମକାନୁନ, ପାର୍ଟି ନୈତିକତା ଓ ପାର୍ଟିର ବ୍ୟକ୍ତିଗତ ସଂପର୍କ ଉପରେ ଅନେକ ଗମ୍ଭୀର ଆଲୋଚନା ହୋଇଗଲା ଗ୍ରରିଆଡ଼େ । ମୂଳ ଘଟଣାଟା କୁଆଡ଼େ ପଛକୁ ଯାଇ, ଏଥିସହିତ ଉଠୁଥିବା ଅନ୍ୟାନ୍ୟ ବିଷୟରେ ଆଲୋଚନା ଗ୍ରଲିଲା । ଫାଇଲେ ଅତି ଅଭଦ୍ରଭାବରେ ବ୍ୟବହାର କଲା ସେଠାରେ । କୁଟିଳ ହସ ହସି ଘୋଷଣା କଲା ଯେ, ସେ କୋର୍ଗ୍ଗିନ୍‌କୁ ଗଣ ଅଦାଲତ ଯାଏ ନେବ ଓ ତାକୁ ମାଡ଼ ମାରିଥିବା ଅଭିଯୋଗରେ କଠିନ ଦଣ୍ଡ ଦିଆଇବ । ଅନ୍ୟ କୌଣସି ପ୍ରଶ୍ନର ଉତ୍ତର ଦେବାକୁ ଅସମ୍ମତ ହେଲା ସେ ।

"ମୋ ଉପରେ ସୁନ୍ଦର ଆଲୋଚନାଟିଏ ଚଳାଇବାକୁ ଗ୍ରହୁଁ, ନାଁ ? ତା' କେବେହେଲେ ସମ୍ଭବ ନୁହଁ । ତମେ ଯେଉଁଥିରେ ଇଚ୍ଛା ସେଭାବରେ ମୋତେ ଦୋଷାରୋପ କରିପାର, ମାତ୍ର ଏକଥା ଠିକ୍ ଯେ, ଏଠାର ସ୍ତ୍ରୀଲୋକମାନେ ସମସ୍ତେ ମୋ ଉପରେ ଖଡ଼୍ଗହସ୍ତ, କାରଣ ସେମାନଙ୍କ ପ୍ରତି ମୁଁ ବିଶେଷ ନଜର ଦିଏ ନାହିଁ । ତମର ଏ ପୂରା ମକଦ୍ଦମାଟାର କିଛି ଅର୍ଥ ନାହିଁ । ଯଦି ଉଣେଇଶ ଅଠର ସାଲ ହୋଇଥାନ୍ତା ନାଁ ତେବେ ସେ ପାଗଳା କୋର୍ଗ୍ଗିନ୍‌କୁ ମୋ ସାଙ୍ଗେ ଲାଗିବାର ଫଳ ଦେଖାଇ ଦେଇଥାନ୍ତି । ତମେ ଏବେ ମୋତେ ବାଦ୍‌ଦେଇ ତମ କାମ ଆରମ୍ଭ କରିପାର", କହି ହଲ୍‌ରୁ ବାହାରିଗଲା ସିଏ ।

ତା'ପରେ ସଭାପତି ପାଭେଲ୍‌କୁ ପୂରା ଘଟଣାର ବିବରଣୀ ଦେବାକୁ କହିଲେ । ଶାନ୍ତ ଗଳାରେ ଆରମ୍ଭ କଲା ପାଭେଲ୍ ନିଜର ସମସ୍ତ ଉତ୍ତେଜନା ଦମନ କରି ।

"ମୁଁ ନିଜକୁ ନିଜେ ଦମନ କରିପାରିଲି ନାହିଁ ବୋଲି ଘଟଣାଟା ଘଟିଗଲା । ମାତ୍ର ମୁଁ ଯେବେ ମୋ ମୁଣ୍ଡ ଅପେକ୍ଷା ହାତ ଦ୍ୱାରା ଅଧିକ କାମ କରୁଥିଲି, ସେଦିନ ଆଉ ନାହିଁ । ଇଏ ଗୋଟାଏ ଦୁର୍ଘଟଣା । କ'ଣ ମୁଁ କରିବାକୁ ଯାଉଛି ଭାବିବା ଆଗରୁ ଫାଇଲେ ପକାଇଦେଲିଣି । ଗଲା କେଇ ବର୍ଷ ଭିତରେ ଏଇ ଏକମାତ୍ର "ଗେରିଲା" କାମ କରିଛି ମୁଁ । ମୁଁ ନିଜେ ଏହାର ନିନ୍ଦାବାଦ କରୁଛି । ମାତ୍ର ଏକଥା ସତ ଯେ, ତାକୁ ଆହୁରି ମାଡ଼ ହେବା ଦରକାର । ଫାଇଲେର ବ୍ୟବହାର ଅସହ୍ୟ । ମୁଁ ତ ବିଶ୍ୱାସ କରିପାରୁ ନାହିଁ, କିଭଳି ଜଣେ ବିପ୍ଳବୀ, ଜଣେ କମ୍ୟୁନିଷ୍ଟ ଏଭଳି ପଶୁ, ଏଭଳି ହୀନ ଅପଦାର୍ଥ ହୋଇପାରେ ! ଏ ଘଟଣା ଫଳରେ ଗୋଟିଏ ଲାଭ ହେଲା ଆମର—ଏଣିକି ଆମର ସମଧର୍ମୀ କମ୍ୟୁନିଷ୍ଟମାନଙ୍କର ଘରୋଇ ଜୀବନର ବ୍ୟବହାର ପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ପଡ଼ିବ ।"

ଉପସ୍ଥିତ ସଭ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଭୋଟ ଦେଲେ ଫାଇଲେକୁ ପାର୍ଟିରୁ ବହିଷ୍କାର କରିବା ପାଇଁ । ଭୁଲ ସାକ୍ଷୀ ଦେଇଥିବା ଅଭିଯୋଗରେ ଗ୍ରିବୋଭ୍‌କୁ ଚେତାଇ ଦିଆଗଲା ଯେ, ଭବିଷ୍ୟତରେ ସେ ଏପରି କେବେ କଲେ, ପାର୍ଟିରୁ ତଡ଼ିଦିଆଯିବ । ସେ କଥୋପକଥନରେ ଭାଗ ନେଇଥିବା ଅନ୍ୟମାନେ ସମସ୍ତେ ନିଜ ନିଜର ଦୋଷ ସ୍ୱୀକାର କଲେ ଏବଂ ସେମାନଙ୍କୁ ଭର୍ତ୍ସନା କରି ଛାଡ଼ିଦିଆଗଲା ।

ତା'ପରେ ଉପସ୍ଥିତ ସମସ୍ତଙ୍କ ଆଗରେ ବାର୍‌ତେଲିକ୍ କୋର୍ଗିନ୍‌ର ବର୍ତ୍ତମାନ ସ୍ନାୟୁର ଅବସ୍ଥା କଥା ବର୍ଣ୍ଣନା କଲେ । ବିଗ୍ରର ପାଇଁ ପାର୍ଟି ଦ୍ୱାରା ନିଯୁକ୍ତ କମ୍ରେଡ୍ ଯେତେବେଳେ ପ୍ରସ୍ତାବ ଆଗତ କଲେ କୋର୍ଗିନ୍‌କୁ ମଧ୍ୟ ତିରସ୍କାର କରାଯାଉ ବୋଲି, ସାରା ସଭା ପ୍ରସ୍ତାବର ତୀବ୍ର ପ୍ରତିବାଦ କଲା । ଶେଷ କମ୍ରେଡ୍ ତାପରେ ନିଜ ପ୍ରସ୍ତାବ ପ୍ରତ୍ୟାହାର କରିନେଲେ ଓ ପାଭେଲ୍ ନିର୍ଦ୍ଦୋଷ ବୋଲି ଘୋଷଣା କରାଗଲା ।

* * *

ତା'ର କିଛି ଦିନ ପରେ ପାଭେଲ୍ ଖାର୍‌କୋଭ୍ ଅଭିମୁଖେ ଚାଲିଗଲା । କାମରୁ ଅବ୍ୟାହତି ପାଇ ୟୁକ୍ରେନୀୟ କମ୍‌ସୋମୋଲ୍ କେନ୍ଦ୍ର କମିଟି ଅଧୀନରେ ରହିବା ପାଇଁ ତା'ର ଆବେଦନକୁ ଆଞ୍ଚଳିକ ପାର୍ଟି କମିଟି ଶେଷରେ ମଞ୍ଜୁରି ଦେଲା । ଭଲ କରି ଗୋଟାଏ ପ୍ରଶଂସାପତ୍ର ଦିଆଗଲା ତାକୁ । ଆକିମ୍ କେନ୍ଦ୍ର କମିଟିର ସଂପାଦକମାନଙ୍କ ମଧ୍ୟରୁ ଜଣେ । ଖାର୍‌କୋଭ୍‌ରେ ପହଞ୍ଚିବା ମାତ୍ରେ ପାଭେଲ୍ ତା' ସହିତ ସାକ୍ଷାତ୍ କରି ସମସ୍ତ ବିଷୟ କହିଲା ।

ପାଭେଲ୍‌ର ପ୍ରଶଂସାପତ୍ର ଉପରେ ଆଖି ବୁଲାଇଆଣିଲା ଆକିମ୍ । ପ୍ରଶଂସାପତ୍ରରେ ଲେଖା ହୋଇଛି ଯେ, ସେ "ପାର୍ଟି ପ୍ରତି ଅସୀମ ନିଷ୍ଠାବାନ୍ ।" ମାତ୍ର ସେଥି ସଙ୍ଗେ ସଙ୍ଗେ ଲେଖା ହୋଇଛି, "ମୋଟାମୋଟିଭାବରେ ପାର୍ଟିଗତ ସଂଯମ ଅଛି, କିନ୍ତୁ ବିରଳ କେତେକ କ୍ଷେତ୍ରରେ ତା'ର ଆତ୍ମଜ୍ଞାନ ରହେ ନାହିଁ । ଏଭଳି ଘଟିବାର କାରଣ ହେଲା, ତା'ର ସ୍ନାୟବିକ ପ୍ରଣାଳୀ ଅତି ଶୋଚନୀୟ ଅବସ୍ଥା ପ୍ରାପ୍ତ ହୋଇଛି ।"

"ଆରେ, ଚମତ୍କାର ପ୍ରଶଂସାପତ୍ରଟାକୁ ଏଇ କଥାତକ ଲେଖାଇ ଖରାପ କରିଦେଲେ, ପାଭେଲ୍ !" ଆକିମ୍ କହିଲା, "ଛାଡ଼, ଯା ହେବାର ହେଲାଣି । ଆମ ଭିତରୁ ସବୁଠାରୁ ଟାଣୁଆ ଲୋକ ବି ବେଳେବେଳେ ଏମିତି ଉତ୍ତ୍ୟକ୍ତ ହୋଇ ଉଠେ । ଯା ... ଦକ୍ଷିଣକୁ ଯାଇ ତୋ ସ୍ୱାସ୍ଥ୍ୟ ବନାଇ ଆ । ଫେରିଲେ ଯାଇ କାମଦାମ କଥା କଥାବାର୍ତ୍ତା କରିବା ।"

ତା' ସହିତ ଆନ୍ତରିକତାର ସହିତ ହାତ ମିଳାଇଲା ଆକିମ୍ ।

* * *

କେନ୍ଦ୍ର କମିଟିର "କମ୍ୟୁନାର" ସ୍ୱାସ୍ଥ୍ୟନିବାସ । ଗୋଲାପ ବୁଦା ଭିତରେ ଆଉ ଉଚ୍ଛରିତ ଝର ମଧ୍ୟରେ ଅଙ୍ଗୁରଲତାରେ ଢଙ୍କା ହୋଇଛି ସଫେଦ ଅଟ୍ଟାଳିକାମାନ । ଛୁଟି ବିତାଇବାକୁ ଆସିଥିବା ଲୋକେ ଧଳା ଖରାଦିନିଆ ଜାମାପଟା ଓ ଗାଧୁଆ ପୋଷାକ ପିନ୍ଧି ଘୂରିବୁଲୁଛନ୍ତି । ତରୁଣୀ ଡାକ୍ତରାଣୀ ଜଣେ ଗୋଟାଏ ଖାତାରେ ପାଭେଲ୍‌ର ନାଁ ଲେଖିନେଲେ । ତାକୁ ମିଳିଲା ପ୍ରାସାଦର ଗୋଟିଏ କୋଣରେ ଏକ ପ୍ରଶସ୍ତ ବଖରା । ସଫେଦ ବିଛଣା ଚାଦର ଝକମକ ମାରୁଛି, ପରିଷ୍କାର ପରିଚ୍ଛନ୍ନ ହୋଇ ପବିତ୍ର ଲାଗୁଛି ଜାଗାଟା—ଶାନ୍ତ ନିରବଚ୍ଛିନ୍ନ ନୀରବତା ବିରାଜୁଛି ସ୍ଥାନଟିରେ ।

ଭଲ କରି ଗାଧୋଇ ପାଧୋଇ, ଜାମାପଟା ବଦଳାଇ ପାଭେଲ୍ ସମୁଦ୍ରକୂଳକୁ ବାହାରିଲା ତରବର ହୋଇ ।

ସମ୍ମୁଖରେ ତା'ର ଦିଗନ୍ତ ବିସ୍ତାରୀ ସମୁଦ୍ର—ଶାନ୍ତ, ମହାନ୍, ନୀଳ ମାର୍ବଲ୍ ଚଟାଣ ଭଳି ବିଛେଇ ହୋଇ ରହିଛି ଆଖି ପାଇଲା ପର୍ଯ୍ୟନ୍ତ । ଅନେକ ଦୂରରେ ଯେଉଁଠି ଆକାଶ ସହିତ ସମୁଦ୍ର ମିଶିଯାଇଛି, ଠିକ୍ ସେହିଠାରେ ନୀଳାଭ କୁହୁଡ଼ି ଭେଦ କରି ସମୁଦ୍ର ବୁକୁରେ ପ୍ରତିଫଳିତ ହେଉଛି ଗଳିତ କାଞ୍ଚନ ସୂର୍ଯ୍ୟର ରକ୍ତିମ ଆଭା । ବିରାଟ ବିସ୍ତୃତ ପାହାଡ଼ମାଳା ସକାଳର କୁହୁଡ଼ି ଭେଦକରି ଝାପ୍‌ସା ଝାପ୍‌ସା ହୋଇ ଦେଖାଯାଉଛି । ସମୁଦ୍ରରୁ ଭାସି ଆସୁଥିବା ଖୋଲା ତଟକା ପବନ ପେଟ ଭରି ଆଘ୍ରାଣ କଲା ପାଭେଲ୍ । ନିଃସୀମ, ଶାନ୍ତ ଓ ନୀଳିମ ବିସ୍ତୃତିକୁ ଆଖି ଭରି ଦେଖିବାକୁ ଲାଗିଲା ।

ଅଳସଭାବରେ ଇହଡ଼ିଟିଏ ବେଳାଭୂଇଁର ସୁନେଲି ବାଲୁକା ଉପରେ ଗଡ଼ି ଗଡ଼ି ଆସିଲା ତା ପାଦ ପାଖକୁ ।

# ସପ୍ତମ ପରିଚ୍ଛେଦ

କେନ୍ଦ୍ରୀୟ କମିଟିର ସ୍ୱାସ୍ଥ୍ୟନିବାସର ପାଖକୁ ଲାଗି ପ୍ରଧାନ ପଲିକ୍ଲିନିକ୍‌ର ବଗିଚା । ସମୁଦ୍ର କୂଳରୁ ବସାକୁ ଫେରିବା ପାଇଁ ଅନ୍ତ ବାଟ ହେବ ବୋଲି ସ୍ୱାସ୍ଥ୍ୟନିବାସର ଲୋକେ ତା ମଧ୍ୟ ଦେଇ ଯିବା ଆସିବା କରନ୍ତି । ଉଚ୍ଚ ଚୂନ ପଥରର ପାଚିରୀକୁ ଲାଗିରହିଥିବା ଲମ୍ବ ଶାଖାବିଶିଷ୍ଟ ପ୍ଲେଇନ୍ ଗଛର ଛାଇରେ ବିଶ୍ରାମ ନେବାକୁ ଭାରି ଭଲ ଲାଗେ ପାଭେଲ୍‌କୁ । ଏହି ନୀରବତା ଭିତରେ ବସିରହି ବଗିଚା ଭିତରେ ଯାଇଥିବା ରାସ୍ତାର ଜନଗହଳକୁ ଓ ସନ୍ଧ୍ୟାରେ ବ୍ୟାଣ୍ଡର ସଙ୍ଗୀତକୁ ଲକ୍ଷ୍ୟ କରେ ପାଭେଲ୍, ବିରାଟ ସ୍ୱାସ୍ଥ୍ୟନିବାସର ଆନନ୍ଦବିଭୋର, ନରନାରୀଙ୍କର କୋଳାହଳ ଭିତରୁ ନିଜକୁ ଦୂରେଇ ରଖି ।

ଆଜି ମଧ୍ୟ ସେ ସେମିତି ନୀରବରେ ଗଛ ଛାଇରେ ବସିଥିଲା । ଅନ୍ତ ସମୟ ପୂର୍ବରୁ ଗାଧୋଇ ସୂର୍ଯ୍ୟ କିରଣରେ ବସିଥିବାରୁ କେମିତି ନିଦ ନିଦ ଲାଗୁଥିଲା ତାକୁ । ତେଣୁ ଅଳସଭାବରେ ସେହି ଗଛ ଛାୟାରେ ମୁଣ୍ଡ ରଖି ଆଖିବୁଜି ଛାଇ ନିଦରେ ଶୋଇଯାଇଥିଲା ସେ । ପାଖରେ ପଡ଼ିଥିବା ଚଉକିଟା ଉପରେ ତା'ର ଗାଧୁଆ ତଉଲିଆ ଓ ସେ ପଢ଼ୁଥିବା ଫୁର୍‌ମାନୋଭ୍‌ଙ୍କର 'ଅଭ୍ୟୁତ୍‌ଥାନ' ବହିଖଣ୍ଡକ ପଡ଼ିଥିଲା । ସ୍ୱାସ୍ଥ୍ୟନିବାସରେ ରହିବାର ପ୍ରଥମ କେତେ ଦିନ ଭିତରେ ତା' ସ୍ନାୟବିକ ଦୁର୍ବଳତା ମୋଟେ କମିଲା ନାହିଁ ଓ ମୁଣ୍ଡ ସେମିତି ବିନ୍ଧୁଥାଏ । ତା'ର ରୋଗ ସ୍ୱାସ୍ଥ୍ୟନିବାସର ଡାକ୍ତରମାନଙ୍କୁ ଅସୁବିଧାରେ ପକାଇଥାଏ ଓ ସେମାନେ ଏଯାଏଁ ଲକ୍ଷ୍ୟ କରୁଥାନ୍ତି ରୋଗର ମୂଳ କେଉଁଠି ଜାଣିବା ପାଇଁ । ଅନବରତ ପରୀକ୍ଷା ଭିତରେ ପାଭେଲ୍ ଅସ୍ତବ୍ୟସ୍ତ ହୋଇଉଠିଥାଏ । ବିରକ୍ତ ହୋଇ ସେ ନିଜର ଓ୍ୱାର୍ଡ୍ ଡାକ୍ତରକୁ ଏଡ଼ାଇ ଚାଲୁଥାଏ । ଓ୍ୱାର୍ଡ୍ ଡାକ୍ତର ଜଣେ

ସୁସ୍ୱଭାବସଂପନ୍ନ ମହିଳା ଓ ବିଚିତ୍ର ନାଁଟା ତାଙ୍କର – ଯେଲୁସାଲିମ୍‌ଚିକ୍ । ଅନିଚ୍ଛୁକ ରୋଗୀକୁ ମନେଇ କୌଣସି ବିଶେଷଜ୍ଞ ପାଖକୁ ନେବା ବା କୌଣସି ଶାରୀରିକ ପରୀକ୍ଷା ପାଇଁ ପ୍ରବର୍ତ୍ତାଇବାରେ ଡାକ୍ତରାଣୀଙ୍କୁ ବେଶ୍ ଅସୁବିଧା ଭୋଗିବାକୁ ପଡ଼ୁଥାଏ ।

"ମୋତେ ଭାରି କ୍ଳାନ୍ତ ଲାଗିଲାଣି", ପାଭେଲ୍ ତାକୁ କହେ । "ଦିନକୁ ପାଞ୍ଚ ଥର କରି ସେଇ ଏକାକଥା ମୋତେ ଆଉଡ଼େଇବାକୁ ପଡ଼ିବ, ଆଉ ଯେତେ ଆଜେବାଜେ ପ୍ରଶ୍ନର ଉତ୍ତର ଦେବାକୁ ହେବ : ତମ ଜେଜେମା ପାଗଳୀ ଥିଲେ କି ନାହିଁ ? ତମ ଅଣ-ଅଜାଙ୍କୁ ଆଣ୍ଠୁଗଣ୍ଠିବାତ ଧରିଥିଲା କି ନାହିଁ ? ମୁଁ ଭଲା କେମିତି ଜାଣିବି ତାଙ୍କୁ ସବୁ କି ରୋଗ ଧରିଥିଲା ? ଜୀବନରେ କେବେ ତ ସେମାନଙ୍କୁ ଦେଖି ନାହିଁ ମୁଁ ! ପ୍ରତ୍ୟେକ ଡାକ୍ତର ମୋତେ ପ୍ରବର୍ତ୍ତାଉଛନ୍ତି ମାନିଯିବାକୁ ଯେ, ମୋର ଗନେରିଆ କି ତା'ଠାରୁ ଖରାପ କିଛି ରୋଗ ଥିଲା ବୋଲି । ତାଙ୍କ ଚନ୍ଦାମୁଣ୍ଡକୁ ସବୁ ଫଟାଇ ଦେବା ପାଇଁ ମୋର ପ୍ରବଳ ଇଚ୍ଛା ହୁଏ । ମୋତେ ଦୟା କରି ଟିକିଏ ବିଶ୍ରାମ ନେବାକୁ ଦିଅନ୍ତୁ, ସେତିକି ଲୋଡ଼ା ମୋର । ଏଠି ରହିବାର ଛଅ ସପ୍ତାହଯାକ ଯଦି ମୋତେ କି ରୋଗ ଧରିଛି ବୋଲି କେବଳ ପରୀକ୍ଷା ଚାଲେ, ତେବେ ବିଶ୍ୱାସ କରନ୍ତୁ, ସାରା ସମାଜ ପ୍ରତି ଏକ ବିପଜ୍ଜନକ ବ୍ୟକ୍ତି ହୋଇଯିବି ମୁଁ ।"

ଯେଲୁସାଲିମ୍‌ଚିକ୍ ହସିଉଠନ୍ତି ଓ ତା' ସହିତ ଥଟ୍ଟା ଖେଳନ୍ତି । ମାତ୍ର କେଇ ମିନିଟ୍ ପରେ ତା'ର ବାହୁ ଧରି ସେ ଡାକ୍ତରଙ୍କ ପାଖକୁ ନେଇଯାଆନ୍ତି ବାଟରେ ଅନର୍ଗଳ ଗପ କରି କରି ।

ଆଜି ଆଉ ପରୀକ୍ଷା ନିରୀକ୍ଷା କିଛି ନଥିଲା । ଘଣ୍ଟାକ ପରେ ଖାଇବା ବେଳ । ଛାଇନିଦରେ ଶୋଇଲା ବେଳେ ସେ ଶୁଣିପାରିଲା, ଗୋଟିଏ ପାଦ ଶବ୍ଦ ଆଗେଇ ଆସୁଛି ତା' ପାଖକୁ । ଆଖି ନଖୋଲି ସେ ଭାବିଲା, "ମୁଁ ନିଦରେ ଶୋଇଛି ବୋଲି ଭାବି ଫେରିଯିବେ ସେମାନେ ।" ବୃଥା ଆଶା ! ଶୁଣିଲା, ତା' ପାଖରେ ପଡ଼ିଥିବା ଚଉକିଟାକୁ ଘୋଷାଡ଼ି ନେଇ କିଏ ଜଣେ ବସିଲା । ପବନରେ ଯେଉଁ ବାସନା ଭାସିଆସିଲା, ସେଥିରୁ ସେ ବୁଝିଲା ଯେ, ସ୍ତ୍ରୀଲୋକ ଜଣେ । ଆଖି ଖୋଲିଲା ସେ । ପ୍ରଥମେ ତା' ଆଖିରେ ପଡ଼ିଲା ଗୋଟାଏ ଉଜ୍ଜ୍ୱଳ ଧଳା ପୋଷାକ ଓ ଚମଡ଼ା ଚଟି ପିନ୍ଧା ବ୍ରଞ୍ଜ ଭଳି ରଙ୍ଗର ପାଦଦୁଇଟି । ତା'ପରେ ସେ ଦେଖିଲା, ପୁଅ ଭଳି ବାଳକୁଣ୍ଡା, ଦୁଇଟି ସୁନ୍ଦର ବିଶାଳ ଆଖି, ଧାଡ଼ିଏ ଧଳା ଦାନ୍ତ ମୂଷା ଦାନ୍ତ ଭଳି ତୀକ୍ଷ୍ଣ । ତରୁଣୀଟି ଲାଜରେ ହସିଦେଲା, ତା' ଆଡ଼କୁ ଚାହିଁଲା ।

"ମୁଁ ଆପଣଙ୍କୁ ବାଧା ଦେଇ ନାହିଁ ବୋଲି ଆଶା କରୁଛି ?"

ପାଭେଲ୍ କୌଣସି ଉତ୍ତର ଦେଲା ନାହିଁ । ଏହା ତା' ପକ୍ଷରେ ଅସୁନ୍ଦର ଓ ଅଭଦ୍ରତା ହେଲେ ମଧ୍ୟ ସେ ଆଶା କରୁଥିଲା ଯେ, ତରୁଣୀଟି ଉଠି ଚାଲିଯିବ ।

"ଏ ବହିଟା ଆପଣଙ୍କର ?" 'ଅଭ୍ୟୁତ୍‌ଥାନ'ର ପୃଷ୍ଠା ଓଲଟାଇ କହୁଥିଲା ସେ ।

"ହଁ, ମୋର ।"

କ୍ଷଣକାଳ ନୀରବତା ।

"ଆପଣ 'କମ୍ୟୁନାର' ସ୍ୱାସ୍ଥ୍ୟନିବାସରେ ରହୁଛନ୍ତି ନା ?"

ଅଧୈର୍ଯ୍ୟ ହୋଇ ପାରେଲ୍ ଅନାଇଲା ତାକୁ । କାହିଁକି ଉଠିଯାଇ ତାକୁ ଶାନ୍ତିରେ ଶୋଇବାକୁ ଦେଉ ନାହିଁ ସେ ? ଏବେ ସେ ତା' ରୋଗ କଥା ପଚାରିବାକୁ ଆରମ୍ଭ କରିବ । ନାଃ, ଏଥର ଉଠି ଚାଲିଯିବାକୁ ପଡ଼ିବ ।

"ନାଁ", କଠୋରଭାବରେ ଉତ୍ତର ଦେଲା ସେ ।

"କିନ୍ତୁ ମୁଁ ନିଶ୍ଚିତଭାବରେ ଆପଣଙ୍କୁ ସେଠାରେ ଦେଖିଛି ।"

ପାରେଲ୍ ଉଠିଯିବାକୁ ବସିଥିଲା, ଠିକ୍ ଏତିକିବେଳେ ପଛପଟୁ ନାରୀସୁଲଭ ମଧୁର ଗଳାରେ ଶୁଭିଲା :

"କିଏ ଦୋରା ? ସେଠି କ'ଣ କରୁଛୁ ?"

ଖରାସିଝା, ପୁଟୁକାପୁଟୁକି, ସୁନେଲି କେଶବତୀ ତରୁଣୀଟିଏ ଗାଧୁଆ ପୋଷାକ ପିନ୍ଧି ଚଉକି ଦାଢ଼ରେ ବସିଥିଲା । କୋର୍ଚ୍ଚାଗିନ୍‌କୁ ଅନାଇଲା ସେ ।

"ମୁଁ ତମକୁ କେଉଁଠି ଦେଖିଛି କମ୍ରେଡ୍ । ତମେ ଖାର୍‌କୋଭ୍‌ରୁ ଆସିଛ ନା ?"

"ହଁ ।"

"କେଉଁଠି କାମ କର ତମେ ?"

କଥୋପକଥନ ଏତିକିରେ ବନ୍ଦ କରିବା ପାଇଁ ସ୍ଥିର କରି ପାରେଲ୍ କହିଲା :

"ଅଳିଆ ସଫା କରିବା ବିଭାଗରେ ।" ଏ କଥାରେ ତରୁଣୀ ଦୁଇଟି ଏତେ ହସି ଉଠିଲେ ଯେ, ସେଥିରେ ସେ ନିଜେ ଉଠି ଛିଡ଼ା ହୋଇପଡ଼ିଲା ।

"କମ୍ରେଡ୍, ଏ କ'ଣ ଭଦ୍ରତା ?"

ଏବଂ ଏମିତି ସେମାନଙ୍କର ବନ୍ଧୁତା ଆରମ୍ଭ ହେଲା । ଦୋରା ରୋଦ୍‌କିନା ଖାର୍‌କୋଭ୍ ନଗର ପାର୍ଟି କମିଟିର ବ୍ୟୁରୋର ସଦସ୍ୟା । ପରସ୍ପରକୁ ଭଲ କରି ଜାଣିବା ପରେ ଦୋରା ପ୍ରାୟ ତାକୁ ସେ ପହିଲି ଦିନର ଦେଖାହେବା ବେଳର କଥା କହି ଚିଡ଼ାଏ ।

ଦିନେ ଅପରାହ୍ଣରେ "ତାଇସା" ସ୍ୱାସ୍ଥ୍ୟନିବାସ ଉଦ୍ୟାନରେ ମୁକ୍ତ ଅଙ୍ଗନରେ ଏକ ଗୀତ ବାଜଣାର ଆସରରେ ପାରେଲ୍ ତା'ର ପୁରୁଣା ବନ୍ଧୁ ଝାର୍‌କୀକୁ ଭେଟିଲା । ଆଉ ଆଶ୍ଚର୍ଯ୍ୟଜନକ ଭାବରେ ଫକ୍‌ସଟ୍ରଟ୍ ନାଚ ତାକୁ ପରସ୍ପରକୁ ଭେଟ କରାଇଲା ।

ସ୍ଥୂଳକାୟା ଜଣେ ଉଚ୍ଚ କଣ୍ଠବତୀ ଗାୟିକା ଗଭୀର ଆବେଗର ସହିତ 'ଜ୍ୱଳନ୍ତ କାମନାର ରାତ୍ରି' ଶୀର୍ଷକ ଗୀତଟିକୁ ଶ୍ରୋତାମାନଙ୍କୁ ଗାଇ ଶୁଣାଇଲା ପରେ ହଠାତ୍ ଗୋଟିଏ ଦମ୍ପତି ମଞ୍ଚ ଉପରକୁ ଉଠିଗଲେ । ପୁରୁଷଟି ଅର୍ଦ୍ଧଲଗ୍ନ ଏବଂ ମୁଣ୍ଡରେ ଏକ ଉଚ୍ଚା ଲାଲ ଟୋପି ଆଉ କଟିରେ ଝଲମଲ କେତୋଟି ଝୁଲଣ । ତା'ର ବୁକୁ ଉପରେ ସଫେଦ ଧଳା ଜାମାର ସମ୍ମୁଖ ଅଂଶଟି ଝୁଲୁଛି ଏବଂ ଗଳାରେ ବୋ' ଟାଇଟିଏ ବନ୍ଧା ହୋଇଛି । ଏକ ବଣମଣିଷର ଅନୁକରଣ ସେ କରିଛି । ତା'ର କଣ୍ଢେଇମୁହାଁ ସାଥୀଟିର ପୋଷାକ ଲମ୍ବାଚଉଡ଼ା ସାର୍ଟ । ସ୍ୱାସ୍ଥ୍ୟନିବାସର ରୋଗୀମାନେ ବସିଥିବା ଆରାମ ଚଉକି ଓ ଖଟ ପଛରେ ଠିଆ ହୋଇ ରହିଥିବା ବଜାଦବେକା ଦୋକାନୀମାନଙ୍କର ଆନନ୍ଦ ଉଲ୍ଲାସ ଭିତରେ

ଦମ୍ପତିଟି ରଙ୍ଗମଞ୍ଚ ଉପରେ ଏଭଳି ଘୂରି ଘୂରି ଫକ୍‌ସଟ୍ରଟ୍ ନାଚର ଅଦ୍ଭୁତ ଭଙ୍ଗୀମା ସବୁ ଦେଖାଇବାକୁ ଲାଗିଲେ, ଯାହା କଳ୍ପନାତୀତ । ମୋଟା ବୋକାଙ୍କ ଭଳି ଟୋପିପିନ୍ଧା ଲୋକଟା ତା'ର ବାନ୍ଧବୀକୁ ଛାତିରେ ଜାକିଧରି ଇଙ୍ଗିତପୂର୍ଣ୍ଣ ଭଙ୍ଗୀସବୁ ଦେଖାଇବାକୁ ଲାଗିଲା । ପାଭେଲ୍ ତା' ପଛକଡ଼େ ସୁଦୀର୍ଘ ନିଃଶ୍ୱାସ ପ୍ରଶ୍ୱାସ ଅନୁଭବ କଲା । ସେ ଉଠିପଡ଼ି ଯିବାକୁ ବାହାରିଛି, ଏତିକିବେଳେ ଠିକ୍ ଆଗ ଧାଡ଼ିରୁ କିଏ ଜଣେ ଛିଡ଼ା ହୋଇପଡ଼ି ପାଟିକରି କହିଲା :

"ବନ୍ଦକର ଏ ବେଶ୍ୟା ନାଚ !"

ଝାର୍‌କୀ କହିଲା ।

ପିଆନୋ ବଜାଇବାବାଲା ପିଆନୋ ବନ୍ଦ କରିଦେଲା । ବେହେଲା କେଁକିନା ବନ୍ଦ ହୋଇଗଲା ସଙ୍ଗେ ସଙ୍ଗେ ।

ରଙ୍ଗମଞ୍ଚରେ ସ୍ତ୍ରୀ-ପୁରୁଷ ଯୁଗଳଟି ମଧ୍ୟ ତାଙ୍କ ପିଙ୍ଗହଲା ବନ୍ଦ କରିଦେଲେ । ପଛରେ ବସିଥିବା ଦର୍ଶକମାନେ ପାଟିକରି ଉଠିଲେ :

"କିଏ ରେ ସେଇଟା ଏଡ଼େ ସାହସ ତା'ର, ନାଚ ମଝିରୁ ବାଧା ଦେଉଛି ?"

"ସାରା ୟୁରୋପ୍ ଫକ୍‌ସଟ୍ରଟ୍ ନାଚୁଛି !"

"ବଦ୍‌ମାସ ଲୋକଟା !"

ମାତ୍ର ଚେରେପୋଭେତ୍‌ସ କମ୍‌ସୋମୋଲ୍‌ର ସଂପାଦକ ଓ 'କମ୍ୟୁନାର' ସ୍ୱାସ୍ଥ୍ୟାବାସର ରୋଗୀ ସେର୍‌ୟୋଝା ଝ୍‌ବାନୋଭ୍ ପାଟିରେ ନିଜର ଚାରିଟି ଆଙ୍ଗୁଠି ପୂରାଇ ତୀବ୍ର ହୁଇସିଲ ମାରିଲା । ଅନ୍ୟମାନେ ମଧ୍ୟ ତାକୁ ଅନୁସରଣ କଲେ । ଫଳରେ ନାଚୁଥିବା ଯୁଗଳ ମଞ୍ଚ ଉପରୁ କୁଆଡ଼େ ଅନ୍ତର୍ହିତ ହୋଇଗଲେ ସାଙ୍ଗେ ସାଙ୍ଗେ ବତାସରେ ଉଡ଼ିଗଲା ଭଳି । ଆଗକାଳରେ ଚପରାସୀ ଭଳି ଦେଖିବାକୁ ଯେଉଁ ବାଗୁଲ ଲୋକଟି ଆଜିର ଆମୋଦ ଅନୁଷ୍ଠାନର ଘୋଷଣା କରୁଥିଲା, ବାହାରି ଆସି କହିଲା ଯେ, କନ୍‌ସର୍ଟ ଦଳ ଚାଲିଯାଉଛନ୍ତି ।

"ଏଥର ରକ୍ଷା ମିଳିଲା, ଯେଉଁଠିକାର ଜିନିଷ ସେଇଠାକୁ ଚାଲିଯାଆନ୍ତୁ ।" ସ୍ୱାସ୍ଥ୍ୟାବାସର ଗାଧୁଆ ପୋଷାକ ପିନ୍ଧା ଟୋକାଟିଏ ହସରୋଳ ଭିତରେ କହିଉଠିଲା ।

ଆଗ ଧାଡ଼ିକୁ ଉଠିଯାଇ ଝାର୍‌କୀକୁ ଧରିଲା ପାଭେଲ୍ । ପାଭେଲ୍ ବଖରାରେ ବସି ଦୁଇ ବନ୍ଧୁ ଅନେକ ସମୟ ପର୍ଯ୍ୟନ୍ତ ଗପସପ କଲେ । ପାର୍ଟିର ଗୋଟିଏ ଆଞ୍ଚଳିକ କମିଟିରେ ପ୍ରଚାର ବିଭାଗରେ କାମ କରୁଛି ବୋଲି ଝାର୍‌କୀ କହିଲା ପାଭେଲ୍‌କୁ ।

"ମୁଁ ବାହା ହେଇଣି ବୋଲି ଜାଣିନୁ ବୋଧହୁଏ ତୁ ? ଜାଣିଛୁ ?" କହିଲା ଝାର୍‌କୀ, "ମୋର ପୁଅ କି ଝିଅଟିଏ ହେବ ଏବେ ।"

"ବାହା ହେଲୁଣି ? ଆରେ ତୋ ସ୍ତ୍ରୀ କିଏ ?" ଆଶ୍ଚର୍ଯ୍ୟ ହୋଇ ପାଭେଲ୍ ପଚାରିଲା ।

ପକେଟ୍‌ରୁ ଫଟୋଗ୍ରାଫ୍‌ଟିଏ କାଢ଼ି ଦେଖାଇଲା ଝାର୍‌କୀ ।

"ଚିହ୍ନିପାରୁଛୁ ଯାକୁ ?"

ତା'ର ଓ ଆନ୍ନା ବୋର୍ଖାର୍ଟ୍‌ର ଫଟୋ ।

"ତାହେଲେ ଦୁବାଭାର ଖବର କ'ଣ ?" ଅଧିକ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିଲା ପାଭେଲ୍ ।

"ଏବେ ମସ୍କୋରେ ଅଛି । ପାର୍ଟିରୁ ତଡ଼ା ଖାଇଲା ପରେ ସେ ୟୁନିଭର୍ସିଟି ଛାଡ଼ିଦେଲା । ଏବେ ଅଛି ବାଉମାନ୍ ଟେକ୍‌ନିକାଲ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ । ଶୁଣିଲି ତାକୁ ପୁଣି ପାର୍ଟିକୁ ନିଆଯାଇଛି । ସତରେ ଯଦି ପୁଣି ନିଆହୋଇଥାଏ ତେବେ ଭାରି ଖରାପ କଥା ହେଲା । ଅତି ଖରାପ ଲୋକଟାଏ । ପାନ୍‌କ୍ରାତୋଭ୍ ଏବେ କ'ଣ କରୁଛି ଜାଣିଛୁ ? ଜାହାଜ ତିଆରି କାରଖାନାର ଗୋଟାଏ ସହକାରୀ ପରିଚାଳକ । ଅନ୍ୟମାନଙ୍କ କଥା ବିଶେଷ କିଛି ଜାଣି ନାହିଁ ମୁଁ । ଏବେ ଆମମାନଙ୍କ ମଧ୍ୟରେ ବିଶେଷ ଯୋଗାଯୋଗ ନାହିଁ । ଦେଶର ନାନା ଆଡ଼େ ବିଛେଇ ହୋଇଯାଇ କାମ କରୁଛେ ତ । ବେଳେବେଳେ ଏମିତି ଦେଖା ହୋଇଯାଏ, ପୁରୁଣା ଦିନର କଥାବାର୍ତ୍ତା ହେବାକୁ ଭାରି ଭଲ ଲାଗେ ।"

ସାଙ୍ଗରେ ଆହୁରି ଅନେକ ଲୋକଙ୍କୁ ନେଇ ଦୋରା ଆସିଲା । ତାଯୋର୍‌ର ଜଣେ ଡେଙ୍ଗା ଯୁବକ ଦୁଆର ବନ୍ଦ କରିଦେଲା । ଝାର୍‌କୀର ଜ୍ୟାକେଟ୍‌ର ସାଜସଜା ଦେଖି ଦୋରା ପାଭେଲ୍‌କୁ ପଚାରିଲା :

"ତମ କମ୍ରେଡ୍ ଜଣେ ପାର୍ଟି ମେମ୍ବର ନା' କ'ଣ ? କେଉଁଠି କାମ କରନ୍ତି ସେ ?"

ବିହ୍ୱଳ ହୋଇ ଝାର୍‌କୀ ସଂପର୍କରେ ସବୁ କଥା କହିଲା ପାଭେଲ୍ ।

"ଠିକ୍ ଅଛି । ତା' ହେଲେ ସେ ରହିପାରନ୍ତି । ଏ କମ୍ରେଡ୍‌ମାନେ ଏଇ ସାଙ୍ଗେ ସାଙ୍ଗେ ମସ୍କୋରୁ ଆସି ପହଞ୍ଚିଛନ୍ତି । ସେମାନେ ଆମକୁ ପାର୍ଟିର ସର୍ବଶେଷ ସମ୍ବାଦ ଶୁଣାଇବେ । ଆମେ ସବୁ ତମରି କୋଠରୀକୁ ଆସି, ରୁଦ୍ଧଦ୍ୱାର ପାର୍ଟି ସଭାଟିଏ ଭଳି କରିବାକୁ ସ୍ଥିର କରିଥିଲୁ ।"

କେବଳ ପାଭେଲ୍ ଓ ଝାର୍‌କୀ ବ୍ୟତୀତ ଆଉ ସମସ୍ତେ ପୁରୁଖା ବଲ୍‌ଶେଭିକ୍ । ମସ୍କୋ କଣ୍ଟ୍ରୋଲ୍ କମିଶନ୍‌ର ସଦସ୍ୟ ବାର୍ତାଶୋଭ୍ କହିଲା ଏବେ ଟ୍ରଟ୍‌ସ୍କି, ଜିନୋଭିୟେଭ୍ ଓ କାମେନେଭ୍‌ଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ନୂଆ ବିରୋଧର କାହାଣୀ ।

"ଏଭଳି ଘଡ଼ିସନ୍ଧି ସମୟରେ ଆମକୁ ସବୁ ଯେଝା ଯେଝା ଜାଗାକୁ ଚାଲିଯିବା ଉଚିତ । ମୁଁ ତ କାଲି ଯାଉଛି", ଶେଷରେ ବାର୍ତାଶୋଭ୍ କହିଲେ ।

ପାଭେଲ୍‌ର ବଖରାରେ ଏ ସଭାର ତିନିଦିନ ପରେ ସ୍ୱାସ୍ଥ୍ୟନିବାସଟି ଖାଲି ହୋଇଗଲା । ପାଭେଲ୍ ମଧ୍ୟ କେଇ ଦିନ ପରେ ତା' ସମୟ ଶେଷ ହେବା ଆଗରୁ ଚାଲିଗଲା ।

କମ୍‌ସୋମୋଲ୍‌ର କେନ୍ଦ୍ର କମିଟି ତାକୁ ଅଟକାଇ ରଖିଲେ ନାହିଁ । ଗୋଟିଏ ଶିଳ୍ପ ଅଞ୍ଚଳରେ କମ୍‌ସୋମୋଲ୍ ସଂପାଦକ ଭାବରେ ନିଯୁକ୍ତି ଦିଆଗଲା ତାକୁ । ସପ୍ତାହକ ଭିତରେ ସ୍ଥାନୀୟ ସଂଗଠନର ଏକ ସଭାରେ ତା'ର ପ୍ରଥମ ଭାଷଣ ଦେଉଥିଲା ପାଭେଲ୍ ।

ସେହି ବର୍ଷର ଶରତର ଶେଷ କାଳରେ ପାଭେଲ୍ ଓ ଆଉ ଦୁଇ ଜଣ ପାର୍ଟି ସଭ୍ୟ ଯାଉଥିବା କାର୍‌ଟିର ଚକା ଖସିଯାଇ କାର୍‌ଟି ଗୋଟାଏ ଗାତରେ ଓଲଟି ପଡ଼ିଲା ।

ସମସ୍ତ ଆରୋହୀ ଆହତ ହେଲେ । ପାଭେଲ୍‌ର ଡାହାଣ ଆଣ୍ଠୁ ପେଷି ହୋଇଗଲା । କିଛି ଦିନ ପରେ ଖାର୍‌କୋଭ୍‌ର ଅସ୍ତ୍ରଚିକିତ୍ସା ପ୍ରତିଷ୍ଠାନକୁ ନିଆଗଲା ତାକୁ । ପରୀକ୍ଷା ଓ ଏକ୍‌ସରେ ପରେ ଡାକ୍ତରୀ କମିଶନ୍ ତୁରନ୍ତ ଅସ୍ତ୍ରୋପଚାର ପାଇଁ ନିର୍ଦ୍ଦେଶ ଦେଲେ ।

ପାଭେଲ୍ ମତ ଦେଲା ।

"ତା' ହେଲେ କାଲି ସକାଳୁ", ଚିକିତ୍ସା କମିଶନ୍‌ର ସଭାପତି ମୋଟାସୋଟା ଅଧ୍ୟାପକ ଜଣକ ଏତକ କହି ଉଠିଗଲେ ଏବଂ ଅନ୍ୟମାନେ ତାଙ୍କୁ ଅନୁସରଣ କରି ବାହାରିଗଲେ ।

ଗୋଟିକିଆ ଛୋଟିଆ ଖଟ ଥିବା ଛୋଟ ପରିଚ୍ଛନ୍ନ ଓ୍ୱାର୍ଡ୍‌ଟିଏ । ଡାକ୍ତରଖାନାର ପରିଚ୍ଛନ୍ନତା ଓ ଏକ ବିଶେଷ ଗନ୍ଧ ସେ ଅନେକ ଦିନରୁ ଭୁଲିଯାଇଥିଲା । ନିଜର ଚାରିକଡ଼କୁ ଚାହିଁଲା ସେ । ପାଖରେ ଗୋଟିଏ ଛୋଟିଆ ଟେବୁଲ ଉପରେ ଧୋବ ଫରଫର ଟେବୁଲ୍ କ୍ଲଥ୍ ପଡ଼ିଛି । ଧଳା ଟୁଲ୍‌ଟିଏ । ବାସ୍ ଆଉ କିଛି ନାହିଁ ।

ନର୍ସ ତା' ପାଇଁ ରାତ୍ରିଖାଦ୍ୟ ଧରି ପହଞ୍ଚିଲା । ତାକୁ ଫେରାଇଦେଲା ପାଭେଲ୍ । କାରଣ, ବିଛଣା ଉପରେ ଅଧାବସା ଅବସ୍ଥାରେ ଚିଠି ଲେଖୁଥିଲା ସେ । ତା'ର ଆଣ୍ଠୁର କଷ୍ଟ ତା' ଭାବନାକୁ ଚିକିଟିକି କରିପକାଉଥିଲା ଓ ଭୋକ ଭୁଲାଇ ଦେଇଥିଲା ।

ଚତୁର୍ଥ ଚିଠିଟି ଲେଖିସାରିଲା ପରେ କବାଟ ଧୀରେ ଖୋଲିଗଲା ଓ ଧଳା ଆଣ୍ଠୁ ପର୍ଯ୍ୟନ୍ତ ଝୁଲୁଥିବା ଏକ ଜାମା ଆଉ ଟୋପି ପିନ୍ଧା ସୁଦର୍ଶନା ତରୁଣୀଟିଏ ତା' ବିଛଣା ପାଖକୁ ଆସିଲେ ।

ସଂଧ୍ୟାର ଝାପ୍‌ସା ଆଲୁଅରେ ତାଙ୍କର ପତଳା, ଧନୁ ଭଳି ବଙ୍କା ଭ୍ରୁଲତା ଆଉ ବଡ଼ ବଡ଼ ଆଖି ଦୁଇଟି ଥରି ଉଠିଲା । କଳା କଳା ଡୋଳା ଦୁଇଟି ମଧ୍ୟ । ଗୋଟିଏ ହାତରେ ସେ ଧରିଥାନ୍ତି ପୋର୍ଟ୍‌ଫୋଲିଓ ବ୍ୟାଗଟିଏ ଓ ଅନ୍ୟ ହାତରେ ଫର୍ଦ୍ଦେ କାଗଜ ଓ ଗୋଟିଏ ପେନ୍‌ସିଲ ।

"ମୁଁ ଆପଣଙ୍କର ଓ୍ୱାର୍ଡ୍ ଡାକ୍ତର", କହିଲେ ସେ । "ଆଉ ମୁଁ ବର୍ତ୍ତମାନ ଆପଣଙ୍କୁ ଅନେକ ପ୍ରଶ୍ନ ପଚାରିବି ଏବଂ ଆପଣଙ୍କୁ ଭଲ ଲାଗୁ ବା ନଲାଗୁ ତା'ର ଉତ୍ତର ଦେବାକୁ ପଡ଼ିବ ।"

ଅତି ମଧୁରଭାବରେ ହସି ହସି କହୁଥିଲେ ସେ । ତାଙ୍କର ହସରେ ପରୀକ୍ଷାର ଚିନ୍ତା ଅଧା କମିଗଲା ।

ଘଣ୍ଟାକରୁ ବେଶି କାଳ ପାଭେଲ୍ ତାଙ୍କୁ କେବଳ ତା' ନିଜ ବିଷୟକୁ ଜଣାଇଲା ନାହିଁ, ତା'ର ପୂର୍ବପୁରୁଷର ସବୁ ଜଣାଶୁଣା କଥା ମଧ୍ୟ କହିଗଲା ।

* * *

ଅପରେସନ ଥିଏଟର । ନାକ ମୁହଁ ଉପରେ ମୁଖାପିନ୍ଧା ଲୋକଗୁଡ଼ାକ ଘେରିବୁଲୁଥାନ୍ତି ।

ଚିକ୍ ଚିକ୍ ମାରୁଥିବା ନିକେଲ୍‌ର ଯନ୍ତ୍ରପାତି, ଇନ୍ଧା, ସରୁ ଟେବୁଲଟିଏ ଓ ପାଖରେ



ଥାଏ ବଡ଼ ବେସିନ୍‌ଟିଏ । ପାଭେଲ୍ ଅପରେସନ ଟେବୁଲ ଉପରେ ପଡ଼ିରହିଥାଏ । ଅଧ୍ୟାପକ ଜଣକ ସେତେବେଳେ ଯାଏ ହାତ ଧୋଉଥାନ୍ତି । ତାଙ୍କ ପଛରେ ଯଥାଶୀଘ୍ର ଅସ୍ତ୍ରୋପଚାରର ଆରମ୍ଭ ପାଇଁ ପ୍ରସ୍ତୁତିପର୍ବ ଚାଲିଥାଏ । ପାଭେଲ୍ ମୁଣ୍ଡ ବୁଲାଇଲା । ନର୍ସ ଛୁରୀ, କଇଁଚି ସବୁ ଥୁଆ ହୋଇଥାଏ ।

"ଚାହାନ୍ତୁ ନାହିଁ କମ୍ରେଡ୍ କୋର୍ଚ୍ଚାଗିନ୍ ।" ତା'ର ଓ୍ୱାର୍ଡ ଡାକ୍ତର ବାଝାନୋଭା, ତା' ଗୋଡ଼ରୁ ବ୍ୟାଣ୍ଡେଜ ଫିଟାଉ ଫିଟାଉ କହିଲେ । "ସ୍ନାୟୁ ଉପରେ ପ୍ରଭାବ ପଡ଼ିବ ।"

"କାହା ସ୍ନାୟୁ ଉପରେ, ଡାକ୍ତର ?" ପରିହାସର ହସ ହସି ପାଭେଲ୍ କହିଲା ।

କେଇ ମିନିଟ୍ ପରେ, ଓଜନିଆ ମୁଖାଟାରେ ତା' ମୁହଁ ଢାଙ୍କି ହୋଇଗଲା ଏବଂ ସେ ଶୁଣିଲା ଅଧ୍ୟାପକ କହୁଛନ୍ତି :

"ଆମେ ଆପଣଙ୍କୁ ଆନାସ୍ଥେସିଆ ଦେବାକୁ ଯାଉଛୁ । ଏଥର ଟିକିଏ ଜୋରରେ ନିଃଶ୍ୱାସ ନିଅନ୍ତୁ ଓ ଏକ ଦୁଇ ତିନି କରି ଗଣିବାକୁ ଆରମ୍ଭ କରନ୍ତୁ ।"

"ଠିକ୍ ଅଛି", ଶାନ୍ତ ଗଳାରେ କହିଲା ସେ । "ମୁଁ ଆଗରୁ କ୍ଷମା ମାଗିନେଉଛି

ଯଦି କୌଣସି ଖରାପ କଥା ପାଟିରୁ ବାହାରି ଯାଏ କଷ୍ଟ ହେଲ ବେଳ ।"

ଅଧ୍ୟାପକ ହସ ଗୁପିପାରିଲେ ନାହିଁ ।

ଇଥରର ପ୍ରଥମ କେଇ ବିନ୍ଦୁ! କଦର୍ଯ୍ୟ ଗନ୍ଧ ।

ପାଭେଲ୍ ଗଭୀରଭାବରେ ନିଃଶ୍ୱାସ ନେଇ ସ୍ପଷ୍ଟଭାବରେ ଗଣିବାକୁ ଆରମ୍ଭ କଲା । ତା'ର କରୁଣ ଜୀବନର ପ୍ରଥମ ଦୃଶ୍ୟର ଯବନିକା ଉଠିଲା ।

* * *

ନିଜ ଭିତରେ ଥରିଉଠି, ଆର୍ଟେମ୍ ଲଫାପାଟାକୁ ଚିରି ଫିଟାଇଲା । ଆଖି ତା'ର ପ୍ରଥମ କେଇଧାଡ଼ି ଉପରେ ଲାଖିରହିଗଲା । ତା'ପରେ ତରବର ହୋଇ ଅନ୍ୟ ପୃଷ୍ଠାଗୁଡ଼ିକ ପଢ଼ିଗଲା ସେ ।

"ଆର୍ଟେମ୍ ଭାଇ! ଆମେ ପରସ୍ପରକୁ କେତେ କମ୍ ଚିଠି ଲେଖୁଁ! ବର୍ଷକରେ ଅତିବେଶିରେ ଥରେ କି ଦୁଇଥରରୁ ଅଧିକ ନୁହେଁ । ମାତ୍ର ଅଧିକ ଲେଖିବାରେ ଯାଏ ଆସେ କ'ଣ ?

ତୁମେ ଲେଖିଛ ଯେ, ନିଜ ପରିବାର ସହିତ ଶେପେଟୋଭ୍କାରୁ ଆସି ଏବେ କାଜାଟିନ୍ ରେଳ ଇଂଜିନ୍ କାରଖାନା ପାଖରେ ବସା ନେଇ ରହିଛ ବୋଲି । କାରଣ ଭୂଇଁରୁ ତମ ଚେରକୁ ତମେ ବିଚ୍ଛିନ୍ନ କରିବାକୁ ଚାହଁ । ମୁଁ ଜାଣିଛି ଯେ, ଏ ଚେର ସ୍ତେଶା ଆଉ ତା'ର ଆତ୍ମୀୟମାନଙ୍କ ଛୋଟ ମାଲିକାନା ମନୋବୃତ୍ତି ଭିତରେ ନିହିତ ଅଛି । ମୋର ଆଶଙ୍କା ହେଉଛି ଯେ, ତୁମେ ଏଥିରେ ସଫଳ ହେବ ନାହିଁ ବୋଲି । କାରଣ ସ୍ତେଶା ଚରିତ୍ରର ଲୋକଙ୍କୁ ନୂଆ କରି ଗଢ଼ି ତୋଳିବା କଷ୍ଟକର । ତୁମେ ଲେଖିଛ ଯେ, ତମର 'ବୁଢ଼ା ବୟସରେ' ପଢ଼ିବାକୁ ଭାରି ଅସୁବିଧା ହେଉଛି । ତଥାପି ସେଥିରେ ବେଶ୍ ଭଲ କରୁଛ । କାରଖାନା ଛାଡ଼ି ସହରର ସୋଭିଏତ୍‌ର ସଭାପତି ଭାବରେ କାମ କରିବା ପାଇଁ ଦୃଢ଼ଭାବରେ ନାରାଜ ହୋଇ ତୁମେ ଭୁଲ କରିଛ । ତୁମେ ନିଜେ ସୋଭିଏତ୍ ସରକାରକୁ କାଏମ୍ କରିବା ପାଇଁ ଲଢ଼େଇ କରୁଛ ନାଁ ? କରିନଁ ? ତା'ହେଲେ, ଲାଗିପଡ଼, କାଲିଠାରୁ ସହରର ସୋଭିଏତ୍ ଦାୟିତ୍ୱ ନେଇ କାମରେ ଲାଗିଯା !

ଏବେ ମୋ କଥା ଶୁଣ । ମୋର କୋଉଠି କ'ଣ ବିଗିଡ଼ିଯାଇଛି । ଏବେ ବାରମ୍ବାର ମୋତେ ଡାକ୍ତରଖାନାକୁ ଆସିବାକୁ ପଡ଼ୁଛି । ମୋତେ ଦୁଇଥର କାଟିଲେଣି ସେମାନେ । ଅନେକ ରକ୍ତ କ୍ଷୟ ହେଲଣି ଓ ଶକ୍ତି କ୍ଷୟ ହେଲଣି ମୋର । କିନ୍ତୁ କେହି କହିପାରୁ ନାହାନ୍ତି ଏଯାଏଁ କେବେ ୟା'ର ପରିସମାପ୍ତି ଘଟିବ ।

କାମ ପାଇଁ ମୁଁ ଆଉ ଯୋଗ୍ୟ ନୁହେଁ । ଏବେ ନୂଆ ଏକ ଧନ୍ଦା ଧରିଛି ମୁଁ– "ଅକର୍ମଣ୍ୟ" ମଣିଷର ଧନ୍ଦା । ଅନେକ କଷ୍ଟ ସହ୍ୟ କରିବାକୁ ପଡ଼ୁଛି ମୋତେ । ଫଳରେ ଡାହାଣ ଆଣ୍ଠୁଟା ଆଉ ହଲଚଲ କରିପାରୁ ନାହିଁ । ଦେହର ବିଭିନ୍ନ ଅଂଶରେ ଅନେକ କ୍ଷତଚିହ୍ନ ଏବଂ ଏବେର ନୂଆ ଡାକ୍ତରୀ ଆବିଷ୍କାର ହେଉଛି: ସାତ ବର୍ଷ ତଳେ ମୋ ମେରୁଦଣ୍ଡରେ ଆଘାତ ଲାଗିଥିଲା ଆଉ ସେଇ ଆଘାତ ପାଇଁ ଏବେ ମୋତେ ଅନେକ

ଦାମ୍ ଦେବାକୁ ପଡ଼ିବ । ମୁଁ କିନ୍ତୁ ମୋ କାମକୁ ଫେରିବା ପାଇଁ ଯେକୌଣସି କଷ୍ଟ ସହିବାକୁ ପ୍ରସ୍ତୁତ ଅଛି ।

କର୍ମୀଦଳର ବାହାରେ ପଡ଼ିରହିବା ଅପେକ୍ଷା ମୋ ପାଇଁ ଜୀବନରେ ଆଉ ଭୟଙ୍କର କ'ଣ ଥାଇପାରେ ନାହିଁ । ସେଭଳି କଥା ମୁଁ ଭାବି ମଧ୍ୟ ପାରୁ ନାହିଁ । ସେଥି ପାଇଁ ମୋ ସାଙ୍ଗରେ ଯାହା ଇଚ୍ଛା ତାହା କରିବା ପାଇଁ ଅନୁମତି ଦେଇଛି ମୁଁ । ମାତ୍ର କୌଣସି ଉନ୍ନତି ନାହିଁ, କଳାମେଘ ଆହୁରି ଘନୀଭୂତ ହେଉଛି । ଅନ୍ଧକାର ଛାଇ ହୋଇ ଯାଉଛି । ପ୍ରଥମ ଅସ୍ତ୍ରୋପଚାରର ପରେ ମୁଁ ଶୁଝିପାରୁଥିଲି । ମାତ୍ର ଅଳ୍ପ ଦିନ ପରେ ସେମାନେ ପୁଣି ନେଇଆସିଲେ ମୋତେ । ଏବେ ମୋତେ ୟେଭ୍‌ପାଟୋରିୟାର ଏକ ସ୍ୱାସ୍ଥ୍ୟନିବାସକୁ ପଠାଯାଇଛି । କାଲି ଯାଉଛି ମୁଁ । ମନ ଭାଙ୍ଗି ଦିଅନା, ଆର୍ଟେମ୍ ଭାଇ ! ତୁମେ ଜାଣିଛ ମୁଁ ସହଜରେ ଭାଙ୍ଗି ପଡ଼େ ନାଁ । ମୋ ପାଖରେ ତିନିଜଣଙ୍କ ଭଳି ଜୀବନ ଅଛି । ଭାଇ, ତୁମେ ମୁଁ ମିଶି ଆହୁରି ଅନେକ ବଡ଼ କାମ କରିବା ! ଏବେ ତୁମେ ତମ ସ୍ୱାସ୍ଥ୍ୟର ଯତ୍ନ ନିଅ । ଅଧିକ କାମ କରି ଶକ୍ତି କ୍ଷୟ କାରନା, କାରଣ ସ୍ୱାସ୍ଥ୍ୟର ଯତ୍ନ ନେବା ପାଇଁ ପାର୍ଟିକୁ ଅନେକ ଖର୍ଚ୍ଚାନ୍ତ ହେବାକୁ ପଡ଼ୁଛି । କାମରୁ ଉପଲବ୍ଧ ଆମର ସମସ୍ତ ଅଭିଜ୍ଞତା ଓ ବହିରୁ ମିଳିଥିବା ମୂଲ୍ୟବାନ ଜ୍ଞାନ ସବୁ କେବଳ ଡାକ୍ତରଖାନାରେ ବିଳୟ କରିଦେବା ପାଇଁ ନୁହେଁ !

ତମ ସହିତ ହାତ ମିଳାଉଛି ।

ପାଭେଲ୍ କୋର୍ଚ୍ଚାଗିନ୍"

ନିଜର ଗହଳ ଭୂଲତା କୁଞ୍ଚିତ କରି ଆର୍ଟେମ୍ ଏଣେ ପାଭେଲ୍‌ର ଚିଠି ପଢ଼ୁଥିବାବେଳେ, ତେଣେ ପାଭେଲ୍ ଡାକ୍ତରଖାନାରେ ଡାକ୍ତର ବାଝାନୋଭାଙ୍କ ନିକଟରୁ ବିଦାୟ ମାଗୁଥିଲ ।

"ତା' ହେଲେ କାଲି ଆପଣ କ୍ରିମିୟା ଯାଉଛନ୍ତି ?" ତା' ସହିତ ହାତ ମିଳାଉ ମିଳାଉ କହିଲେ ବାଝାନୋଭା । "ବାକି ଦିନଟା କେମିତି ବିତାଇବେ ?"

"କମ୍ରେଡ୍ ରୋଦ୍‌କିନା ଆସିବେ ଏଠିକି ଓ ସେ ମୋତେ ତାଙ୍କ ଘରକୁ ନେଇଯିବେ ତାଙ୍କ ପରିବାର ସହିତ ପରିଚିତ କରିଦେବା ପାଇଁ । ଆଜି ରାତିଟା ତାଙ୍କ ଘରେ ବିତାଇବି ଏବଂ କାଲି ସକାଳୁ ସେଇ ମୋତେ ଷ୍ଟେସନ୍‌କୁ ନେଇଯିବେ ।"

ବାଝାନୋଭା ଦୋରାକୁ ଜାଣିଥିଲେ, କାରଣ ସେ ପାଭେଲ୍‌କୁ ଦେଖା କରିବାକୁ ପ୍ରାୟ ଡାକ୍ତରଖାନାକୁ ଆସୁଥିଲେ ।

"କିନ୍ତୁ ଆପଣ ଯିବା ଆଗରୁ ମୋ ବାପାଙ୍କୁ ତମ ଦେହ ଦେଖାଇବାକୁ ପ୍ରତିଶ୍ରୁତି ଦେଇଥିବା କଥା କ'ଣ ଭୁଲିଗଲେଣି, କମ୍ରେଡ୍ କୋର୍ଚ୍ଚାଗିନ୍ ? ଆପଣଙ୍କ ଦେହ ବିଷୟରେ ମୁଁ ମୋ ବାପାଙ୍କୁ ସବୁ ବିବରଣୀ ଦେଇଛି । ମୁଁ ଚାହୁଁଛି ତାଙ୍କ ଦ୍ୱାରା ଆପଣଙ୍କୁ ପରୀକ୍ଷା କରାଇବା ପାଇଁ । ଆଜି ସନ୍ଧ୍ୟାରେ ବି ଆପଣ ଯାଇପାରିବେ ?"

ସାଙ୍ଗେ ସାଙ୍ଗେ ରାଜି ହୋଇଗଲ ପାଭେଲ୍ ।

ସେଦିନ ସନ୍ଧ୍ୟାରେ ତାଙ୍କ ବାପାଙ୍କର ପ୍ରଶସ୍ତ ଅଫିସ୍ ଭିତରକୁ ପାଭେଲ୍‌କୁ ଆଗେଇ ନେଇଗଲେ ଇରିନା ବାଝାନୋଭା ।

ବିଖ୍ୟାତ ଅସ୍ତ୍ରଚିକିତ୍ସକ ପାଭେଲ୍‌କୁ ଅତି ସାବଧାନତା ସହକାରେ ପରୀକ୍ଷା କଲେ । ଡାକ୍ତରଖାନାରୁ ସମସ୍ତ ବିଶ୍ଳେଷଣ ରିପୋର୍ଟ୍ ଓ ଏକ୍‌ସରେ ଫଟୋଗ୍ରାଫ୍ ବାଝାନୋଭା ଆଣିଥିଲେ ବାପାଙ୍କୁ ଦେଖାଇବା ପାଇଁ । ବାପା ତାଙ୍କର ଲାଟିନ୍‌ରେ କ'ଣ ସବୁ ଲମ୍ବା ବିବରଣୀ ଦେଲା ପରେ ଇରିନାର ମୁହଁ କିପରି ଶେଥା ପଡ଼ିଗଲା, ତାହା ପାଭେଲ୍‌ର ଦୃଷ୍ଟି ଏଡ଼ାଇଲା ନାହିଁ । ଅଧ୍ୟାପକଙ୍କର ବିରାଟ ଚନ୍ଦା ମୁଣ୍ଡକୁ ଅନାଇଲା ପାଭେଲ୍ ଓ ତାଙ୍କ ସନ୍ଧାନୀ ଆଖିକୁ ଅନୁସନ୍ଧିତ୍ସୁ ଆଖିରେ ଚାହିଁରହିଲା । ବାଝାନୋଭ୍‌ଙ୍କର ଚାହାଣୀ କିନ୍ତୁ ଦୁର୍ବୋଧ୍ୟ ଥିଲା ।

ପାଭେଲ୍ ଲୁଗାପଟା ପିନ୍ଧିସାରିଲା ପରେ, ଗୋଟିଏ ସମ୍ମିଳନୀକୁ ତାଙ୍କୁ ଯିବାକୁ ହେବ ବୋଲି କହି ଅଧ୍ୟାପକ ବିନମ୍ରଭାବରେ ବିଦାୟ ମାଗି ବାହାରିଗଲେ ଓ ଝିଅକୁ କହିଗଲେ ପାଭେଲ୍‌କୁ ପରୀକ୍ଷାର ଫଳାଫଳ ଜଣାଇଦେବା ପାଇଁ ।

ବାଝାନୋଭାଙ୍କର ସୁନ୍ଦର ସାଜସଜ୍ଜାପୂର୍ଣ୍ଣ କୋଠରୀରେ କୋଚ୍‌ରେ ପଡ଼ିରହି ପାଭେଲ୍ ଅପେକ୍ଷା କରିଥିଲା, ଡାକ୍ତର ତାକୁ ଫଳାଫଳ ଶୁଣାଇବେ ବୋଲି । ବାପା ତାଙ୍କୁ ଯାହା କହିଯାଇଥିଲେ, ସେସବୁକୁ ପୁନରାବୃତ୍ତି କରିବା ବାଝାନୋଭାଙ୍କ ପକ୍ଷରେ ସମ୍ଭବ ନଥିଲା । ପାଭେଲ୍‌ର ସାରା ଗଠନପ୍ରଣାଳୀ ଭିତରେ ଯେଉଁ ପଦାହର ପ୍ରକ୍ରିୟା ଆରମ୍ଭ ହୋଇସାରିଛି, ତାକୁ ରୋଧ କରିବାର ଶକ୍ତି ଔଷଧର ନାହିଁ । ଏକଥା ସେ କହିପାରୁ ନଥିଲେ । ଅସ୍ତ୍ରୋପଚାରର ବିରୁଦ୍ଧରେ ଅଧ୍ୟାପକ ମତ ଦେଇଥିଲେ । "ଏହି ତରୁଣଟି ତା'ର ଅଙ୍ଗପ୍ରତ୍ୟଙ୍ଗ ଚାଳନା କରିବାର କ୍ଷମତା ହରେଇ ବସିବ – ଏଥିରେ ସନ୍ଦେହ ନାହିଁ । ଏହି କରୁଣ ପରିଣତିରୁ ତାକୁ ରକ୍ଷା କରିବାର ଶକ୍ତି ମଧ୍ୟ ଆମ୍ଭମାନଙ୍କଠାରେ ନାହିଁ", ଅଧ୍ୟାପକ କହିଥିଲେ । ଡାକ୍ତର ହିସାବରେ ଏବଂ ବନ୍ଧୁ ହିସାବରେ ତାକୁ ଏକଥା କହିବା ଠିକ୍ ହେବ ନାହିଁ ବୋଲି ବାଝାନୋଭାର ମନେହେଲା । ତେଣୁ ସାବଧାନରେ କଥା ବାଛି ବାଛି ଅସଲ ବିଷୟଟିରୁ ସାମାନ୍ୟ କିଛି କହିଲା ।

"ୟେଭ୍‌ପାଟୋରିୟାର ପଙ୍କ ଆପଣଙ୍କୁ ଆଗାମୀ ଶରତ ଋତୁ ସୁଦ୍ଧା ବିଲକୁଲ୍ ଭଲ କରିଦେବ ବୋଲି ମୁଁ ନିଶ୍ଚିତ, କମ୍ରେଡ୍ କୋର୍ଚ୍‌ଗିନ୍ । ତା'ପରେ ଆପଣ କାମକୁ ଫେରିପାରିବେ ।"

ସିଏ ଭୁଲିଯାଇଥିଲେ ଯେ, କୋର୍ଚ୍‌ଗିନ୍‌ର ତୀକ୍ଷ୍ଣ ଆଖିଦୁଇଟି ତାଙ୍କୁ ଲକ୍ଷ୍ୟ କରି ରହିଛି ।

"ଆପଣ ଯାହା କହିଲେ ବା ଯାହା ନକହିଲେ ସେଥିରୁ ମୁଁ ଏତିକି ବୁଝୁଛି ଯେ, ଅବସ୍ଥା ଖୁବ୍ ଗୁରୁତର । ଦେଖନ୍ତୁ, ମୁଁ ଆପଣଙ୍କୁ ସଦାବେଳେ କହିଆସିଛି, ମୋତେ ଖୋଲାଖୋଲିଭାବରେ ସବୁ କହିବା ପାଇଁ । ମୋଠାରୁ କିଛି ଲୁଚାଇବା ଦରକାର ନାହିଁ ଆପଣଙ୍କର । ସତ କଥା କହିଲେ ମୋର ଚେତା ବୁଡ଼ିଯିବ ନାହିଁ କି ମୁଁ ନିଜ ବେକ

କାଟିପକାଇବି ନାହିଁ । ମାତ୍ର ମୁଁ ଚାହୁଁଛି ସ୍ପଷ୍ଟଭାବରେ ଜାଣିବାକୁ ଯେ, ମୋର ଭବିଷ୍ୟତ କ'ଣ ?"

ମନ ବହଲେଇବା ପାଇଁ କେଇପଦ କଥା କହି ବାଝାନୋଭା ପ୍ରତ୍ୟକ୍ଷଭାବରେ କଥାଟାକୁ ଏଡ଼ାଇଗଲେ ।

ଫଳରେ ପାଭେଲ୍ ସେଦିନ ରାତିରେ ତା'ର ଭବିଷ୍ୟତ ତା'ପାଇଁ କ'ଣ ଗଚ୍ଛିତ ରଖିଛି, ତାହା ଜାଣିପାରିଲା ନାହିଁ ।

"ମୁଁ ଆପଣଙ୍କର ବନ୍ଧୁ, ଭୁଲିବେ ନାହିଁ କମ୍ରେଡ୍ କୋର୍ଚ୍ଚାଗିନ୍", ବିଦାୟ ବେଳରେ କୋମଳଭାବରେ କହିଲେ ଡାକ୍ତର, "କିଏ ଜାଣେ ଆପଣଙ୍କ ଭବିଷ୍ୟତରେ କ'ଣ ଅଛି । ଯଦି କେବେହେଲେ ଆପଣ ମୋ ସାହାଯ୍ୟ ବା ଉପଦେଶ ଲୋଡ଼ନ୍ତି ତେବେ ଲେଖିବେ । ମୋ ଶକ୍ତି ଭିତରେ ଯେତେ ଦୂର ସମ୍ଭବ ସାହାଯ୍ୟ କରିବି ମୁଁ ।"

ଝରକାବାଟେ ସେ ଲକ୍ଷ୍ୟ କରୁଥିଲେ, ଚମଡ଼ା ପୋଷାକରେ ଆଚ୍ଛାଦିତ ଡେଙ୍ଗା ଚେହେରାର ଲୋକଟି ବାଡ଼ି ଉପରେ ଭାରା ଦେଇଦେଇ, ଅତି କଷ୍ଟରେ ଦୁଆରମୁହଁ ପାଖରେ ଅପେକ୍ଷମାଣ ଗାଡ଼ି ପାଖକୁ ଆଗେଇଗଲା ।

* * *

ପୁଣି ଥରେ ସେହି ୟେଭ୍‌ପାଟୋରିୟା । ଦକ୍ଷିଣ ଅଞ୍ଚଳର ଉତପ୍ତ ସୂର୍ଯ୍ୟ । ଛୁଞ୍ଚିକାମକରା ରୁପେଲି ଟୋପି ପିନ୍ଧି ଖରାଖାଉଥିବା ଲୋକେ ଜୋରରେ କଥା କହୁଥାନ୍ତି । ଦଶ ମିନିଟ୍‌ରେ କାର୍ ନୂଆ ଆଗନ୍ତୁକମାନଙ୍କୁ ଏକ ପାଉଁଶିଆ ଚୂନ ପଥରର ଦି'ମହଲା କୋଠା ପାଖକୁ ନେଇଆସିଲା – "ମୈନାକ୍" ସ୍ୱାସ୍ଥ୍ୟାବାସ ।

ପାଭେଲ୍ ପାଇଁ ୟୁକ୍ରେନୀୟ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର କମିଟି ଦ୍ୱାରା ସ୍ଥାନ ସଂରକ୍ଷିତ ହୋଇଛି ଜାଣି ଡିଉଟିରେ ଥିବା ଡାକ୍ତର ତାକୁ ୧୧ ନମ୍ବର ରୁମ୍ ଆଡ଼କୁ ନେଇଗଲେ ।

"ମୁଁ ଆପଣଙ୍କୁ କମ୍ରେଡ୍ ଏବ୍‌ନେର୍‌ଙ୍କ ସହିତ ରଖିଦେବି । ସେ ଜର୍ମାନ୍ ଲୋକ ଓ ଜଣେ ରୁଷୀୟ ପ୍ରକୋଷ୍ଠ-ସାଙ୍ଗ ତାଙ୍କର ଦରକାର ବୋଲି କହୁଥିଲେ ସେ ।" କବାଟରେ ମୃଦୁ ଆଘାତ କରିବା ସଙ୍ଗେ ସଙ୍ଗେ ବୁଝାଉଥିଲେ ସେ । ଭିତରୁ ଗମ୍ଭୀର ଗଳାରେ ଜର୍ମାନ୍ ଉଚ୍ଚାରଣରେ ଶୁଭିଲା, "ଭିତରକୁ ଆସନ୍ତୁ ।"

ନିଜର ସୁଟ୍‌କେଶ୍‌ଟି ଥୋଇ ପାଭେଲ୍ ସୁନେଲି କେଶ ଓ ସୁନ୍ଦର ନୀଳ ଆଖିସମ୍ପନ୍ନ ଲୋକଟିକୁ ଅନାଇଲା । ବିଛଣାରେ ପଡ଼ିଥିଲେ ସେ । ଭଦ୍ର ହସ ହସି ଏମାନଙ୍କୁ ଅଭ୍ୟର୍ଥନା ଜଣାଇଲେ ଜର୍ମାନ୍ ଜଣକ ।

ଲମ୍ବ ଅଙ୍ଗୁଳିବିଶିଷ୍ଟ ଗୋଟିଏ ଫିକାଳିଆ ହାତ ପାଭେଲ୍ ଆଡ଼କୁ ବଢ଼େଇ ଦେଇ ସେ କହିଲେ, "ଗୁଟେନ୍ ମର୍ଗେନ୍ ।" ତାପରେ ସୁଧାରି ନେଇ ଜର୍ମାନ୍‌ମିଶା ଉଚ୍ଚାରଣରେ ଭଙ୍ଗା ରୁଷ୍ ଭାଷାରେ କହିଲେ, "ସୁପ୍ରଭାତ" ।

କିଛି ସମୟ ପରେ ପାଭେଲ୍ ତାଙ୍କ ବିଛଣା କଡ଼ରେ ବସିଲା ଓ ଦୁହେଁ ବେଶ୍

ହୃଦ୍ୟତାର ସହିତ ଆଳାପ ଜମାଇଦେଲେ ସେହି 'ଆନ୍ତର୍ଜାତୀୟ ଭାଷା'ରେ, ଯେଉଁଥିରେ ଶବ୍ଦର ବ୍ୟବହାର ହେଉଛି ଗୌଣ । କଳ୍ପନା, ଅଙ୍ଗଭଙ୍ଗୀ, ଅନୁକରଣ ଆଦି ଭାଷାବିଜ୍ଞାନର ଅଲିଖିତ ତଥ୍ୟ ସବୁ ହିଁ ଶୂନ୍ୟସ୍ଥାନ ପୂରଣ କରେ ସେ ଭାଷାରେ ।

ପାଭେଲ୍ ଜାଣିଲା ଯେ, ଏବ୍‌ନେର୍ ଜଣେ ଜର୍ମାନ୍ ଶ୍ରମିକ, ଯିଏ ୧୯୨୩ ଆନ୍ଦୋଳନ ବେଳେ ଅଣ୍ଟାରେ ବୁଲେଟ୍ ଆଘାତ ପାଇଥିଲେ ଓ ଆହତ ହୋଇଥିଲେ । ଏବେ ସେଇ ପୁରୁଣା ଜଖମଟା ବାହାରି ତାଙ୍କୁ ଶଯ୍ୟାଶାୟୀ କରିଛି । ତାଙ୍କର ସମସ୍ତ ଯନ୍ତ୍ରଣାକୁ ସେ ହସିହସି ସହୁଛନ୍ତି । ଏକଥା ଶୁଣିବା ମାତ୍ରେ ପାଭେଲ୍‌ର ତାଙ୍କ ପ୍ରତି ସମ୍ମାନ ବଢ଼ିଗଲା ।

ଯାଙ୍କଠାରୁ ଅଧିକ ଭଲ ପ୍ରକୋଷ୍ଠ-ସହଚର ପାଭେଲ୍ ଆଶା କରୁ ନଥିଲା । ଏ ଏପରି ଜଣେ ବ୍ୟକ୍ତି, ଯିଏ ତା' ରୋଗ ବିଷୟରେ ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ପଦଟିଏ ବି କହିବେ ନାହିଁ, ନିଜର ଯନ୍ତ୍ରଣା ନେଇ ହା ହୁତାଶ ହେବେ ନାହିଁ ।

ବିପରୀତ ପକ୍ଷରେ ତାଙ୍କ ସାଙ୍ଗରେ ଜଣେ ରହିଲେ ନିଜର ଯନ୍ତ୍ରଣାକୁ ବି ଭୁଲିଯିବ ।

"ଭାରି ଦୁଃଖର କଥା ଯେ, ମୁଁ ଜର୍ମାନ୍ ଜାଣେ ନାହିଁ", ପାଭେଲ୍ ବିମର୍ଷ ହୋଇ ଭାବିଲା ।

* * *

ସ୍ୱାସ୍ଥ୍ୟନିବାସର ପ୍ରାଙ୍ଗଣର ଏକ କୋଣରେ କେତୋଟି ଦୋଳନା-ଚଉକି, ବାଉଁଶ ତିଆରି ଟେବୁଲ, ଚକାଲଗା ଦୁଇଟି ଠେଲା-ଚଉକି ପଡ଼ିଥାଏ । ଅନ୍ୟମାନେ ଯାହାଙ୍କୁ "କୋମିନ୍‌ଟର୍ଣ୍ଣର କାର୍ଯ୍ୟକାରୀ ସମିତି" ବୋଲି କହନ୍ତି, ସେଇ ପାଞ୍ଚଜଣଯାକ ରୋଗୀ ଏଠି ଆସି ଦିନଯାକର ଡାକ୍ତରୀ ଚିକିତ୍ସା ସରିଲା ପରେ ବସନ୍ତି ।

ଗୋଟିଏ ଚକାଲଗା ଚଉକି ଉପରେ ଅଧା ଆଉଜି ବସନ୍ତି ଏବ୍‌ନେର୍ । ପାଭେଲ୍ ଆଉ ଗୋଟିକରେ ବସେ, ତାଙ୍କୁ ବୁଲିବାକୁ ବାରଣ । ଦଳର ଅନ୍ୟ ତିନିଜଣ ସଦସ୍ୟ ହେଲେ, ଗୋଟିଏ ସାଧାରଣତନ୍ତ୍ରର ବାଣିଜ୍ୟ ବିଭାଗରେ କାମ କରୁଥିବା ଭାଇମାନ୍ ବୋଲି ଟାଣୁଆ ଏସ୍ତୋନିୟାର ଲୋକ; ଅଠର ବର୍ଷର ଭଳି ଦିଶୁଥିବା ପିଙ୍ଗଳବର୍ଣ୍ଣ ଆଖିଆ ଲାଟ୍‌ଭୀୟ ନାରୀ ମାର୍ଟା ଲଉରିନ୍; ଶକ୍ତିଶାଳୀ ଗଢ଼ଣର ସାଇବେରିଆର ବୁଢା ଲେଦେନୋଭ୍‌ଙ୍କ, କାନପାଖରେ ବାଳସବୁ ପାଚିଆସିଲାଣି । ଛୋଟିଆ ଏହି ଦଳଟି ପାଞ୍ଚଟି ଭିନ୍ନ ଜାତୀୟତାର ପ୍ରତିନିଧିତ୍ୱ କରନ୍ତି । ଜର୍ମାନ୍, ଏସ୍ତୋନିୟାନ୍, ଲାଟ୍‌ଭୀୟ, ରୁଷୀୟ ଓ ୟୁକ୍ରେନୀୟ । ମାର୍ଟା ଓ ଭାଇମାନ୍ ଦୁହେଁ ଜର୍ମାନ୍ କହିପାରନ୍ତି ଓ ଏବ୍‌ନେର୍ ତାଙ୍କୁ ଦୋଭାଷୀ ରୂପେ ବ୍ୟବହାର କରନ୍ତି । ପାଭେଲ୍ ଓ ଏବ୍‌ନେର୍ ଏକା ବଖରାରେ ରହୁଥାନ୍ତି ବୋଲି ବନ୍ଧୁତ୍ୱ ଗଢ଼ିଉଠିଥାଏ ଦୁହିଁଙ୍କ ଭିତରେ । ମାର୍ଟା, ଭାଇମାନ୍ ଓ ଏବ୍‌ନେର୍‌ଙ୍କ ମଧ୍ୟରେ ବନ୍ଧୁତା, କାରଣ ତିନିହେଁ ଏକା ଭାଷା କହିପାରନ୍ତି । ଲେଦେନୋଭ୍ ଓ କୋର୍ଚ୍ଚାଗିନ୍‌ର ବନ୍ଧୁତ୍ୱର ସୂତ୍ରଟା ଗଢ଼ି ଉଠିଛି ଚେସ୍ ଖେଳ ମାଧ୍ୟମରେ ।

ଇନ୍ନୋକେନ୍ତି ପାଭ୍‌ଲୋଭିଚ୍ ଲେଦେନୋଭ୍ ଆସିବା ଆଗରୁ କୋର୍ଚ୍ଚାଗିନ୍

ସ୍ୱାସ୍ଥ୍ୟନିବାସର ଚେସ୍ ଖେଳର "ସର୍ବଶ୍ରେଷ୍ଠ ଖେଳାଳୀ" ଥିଲା । ଏ ଆଖ୍ୟା ସେ ପାଇଥିଲା ଭାଇମାନ୍‌ଠାରୁ, ଥରେ ତାକୁ ଖେଳରେ ହରାଇ । ଶାନ୍ତ ସ୍ୱଭାବର ଏହି ଏସ୍ତୋନିୟାନ୍ ଖେଳରେ ହାରିଯାଇ ଅନେକ କାଳ ପର୍ଯ୍ୟନ୍ତ କୋର୍‌ଗିନ୍ ପ୍ରତି ଆକ୍ରୋଶ ରଖିଥିଲା ଓ ତାକୁ କ୍ଷମା କରିପାରୁ ନଥିଲା । ତା'ପରେ ଦିନେ ସ୍ୱାସ୍ଥ୍ୟାବାସରେ ଆସି ପହଞ୍ଚିଲା ଜଣେ ଡେଙ୍ଗା ଲୋକ, ପଚାଶ ବର୍ଷ ବୟସ ହେଲେ ବି ତରୁଣ ଭଳି ଦିଶୁଛି । କୋର୍‌ଗିନ୍ ସହିତ ଖେଳିବାକୁ ଚାହିଁଲା ସେ । କୌଣସି ବିପଦର ଆଶଙ୍କା କଥା ନଭାବି ପାଭେଲ୍ ଶାନ୍ତ ଭାବରେ ମନ୍ତ୍ରୀ ଚଳାଇ ଆକ୍ରମଣ ଆରମ୍ଭ କରିଦେଲା । ପାଭେଲ୍ "ଚାମ୍ପିଅନ୍" ବୋଲି ନୂଆ କେହି ଆସିଲେ ତାଙ୍କ ସହିତ ଖେଳିବାକୁ ପଡ଼େ ତାକୁ ଓ ଅନେକ ଆଗ୍ରହୀ ଦର୍ଶକ ଖେଳ ଚାରିକଡ଼େ ଘେରି ବସନ୍ତି । ନବମ ଥର ଗୋଟି ଚଳାଇଲା ପରେ ପାଭେଲ୍ ବୁଝିପାରିଲା ଯେ, ତା'ର ପ୍ରତିପକ୍ଷ ଦ୍ରୁତ ଗତିରେ ନିଜର ସୈନିକଗୁଡ଼ିକୁ ଚାଳନା କରୁଛି ଓ ତାକୁ ଘେରିଗଲଣି । ଏବେ ସେ ବୁଝିପାରିଲା ଯେ, ବେଶ୍ ବିପଜ୍ଜନକ ପ୍ରତିପକ୍ଷ ସହିତ ଖେଳରେ ବସିଛି ସେ ଏବଂ ଦୁଃଖ ଲାଗିଲା, ଆଗରୁ ଏତେ ହାଲୁକାଭାବରେ ଆରମ୍ଭ କରିଛି ବୋଲି ।

ଦୀର୍ଘ ତିନି ଘଣ୍ଟା ଯାଏ ଖେଳିଲା ପରେ ଓ ପାଭେଲ୍‌ର ସମସ୍ତ ବିଦ୍ୟା, ବୁଦ୍ଧି ଖଟାଇଲା ପରେ ପାଭେଲ୍ ପରାଜୟ ସ୍ୱୀକାର କରିବାକୁ ବାଧ୍ୟ ହେଲା । ଦେଖଣାହାରୀମାନଙ୍କ ଅପେକ୍ଷା ଅନେକ ଆଗରୁ ସେ ନିଜର ହାରିଯିବା କଥା ବୁଝିପାରିଥିଲା ।

ପ୍ରତିପକ୍ଷ ଆଡ଼କୁ ଏକଲୟରେ ଚାହିଁ ସେ ଦେଖିଲା ଲେଦେନୋଭ୍ ଦୟା କଲା ଭଳି ହସୁଛି । ଏକଥା ସ୍ପଷ୍ଟ ଯେ, ସେ ମଧ୍ୟ ଜାଣିପାରିଛି ଖେଳର ପରିଣତି କ'ଣ ହେବ । ଏସ୍ତୋନିୟାନ୍ ଭାଇମାନ୍ ମଧ୍ୟ ଆଗ୍ରହର ସହିତ ଖେଳକୁ ଲକ୍ଷ୍ୟ କରୁଥିଲା ଓ ଚାହୁଁଥିଲା ଅତି ସ୍ପଷ୍ଟଭାବରେ ଯେ, କୋର୍‌ଗିନ୍ ହାରିଯାଉ । ମାତ୍ର କ'ଣ ଘଟିବାକୁ ଯାଉଛି, ସେ ଏପର୍ଯ୍ୟନ୍ତ ଜାଣି ନଥିଲା ।

"ଶେଷ ଗୋଟିଟା ଥିଲା ପର୍ଯ୍ୟନ୍ତ ମୁଁ ଆଶା ରଖିଥାଏଁ", ପାଭେଲ୍ କହିଲା ଓ ଲେଦେନୋଭ୍ ସମ୍ମତିସୂଚକ ମୁଣ୍ଡ ଟୁଙ୍ଗାରିଲା ।

ଇନୋକେନ୍ତି ପାଭ୍‌ଲୋଭିଚ୍ ସହିତ ପାଞ୍ଚ ଦିନ ମଧ୍ୟରେ ଦଶ ବାଜି ଖେଳି ପାଭେଲ୍ ସାତଥର ହାରିଲା, ଦୁଇଥର ଜିତିଲା ଓ ଥରେ ଖେଳର କୌଣସି ନିଷ୍ପତ୍ତି ହେଲା ନାହିଁ । ଭାଇମାନ୍ ଭାରି ଖୁସି ହୋଇଯାଇଥିଲା ।

"ତମକୁ ଅଶେଷ ଧନ୍ୟବାଦ କମ୍ରେଡ୍ ଲେଦେନୋଭ୍, ଧନ୍ୟବାଦ ! ବଢ଼ିଆ ଶିକ୍ଷା ଦେଇଛ ତାକୁ ! ଲୋଡ଼ାଥିଲା ତାକୁ ! ଆମ ଭଳି ସବୁ ପୁରୁଣା ଚେସ୍ ଖେଳାଳୀଙ୍କୁ ସେ ହରାଇ ଦେଇଥିଲା ଆଉ ଏବେ ଜଣେ ବୃଦ୍ଧଠାରୁ ହାରିଲା । ହାଃ ... ହାଃ !"

"ଏବେ ହାରିବାକୁ କେମିତି ଲାଗୁଛି ?" ବର୍ତ୍ତମାନର ପରାଜିତ ବିଜେତାକୁ ଚାହିଁ କରି କହିଲା ସେ ।

ପାଭେଲ୍ "ଶ୍ରେଷ୍ଠ ଖେଳାଳୀ" ଉପାଧି ହରାଇଲା, ମାତ୍ର ଲେଦେନୋଭ୍ ଭଳି ଜଣେ ଭଲ ବନ୍ଧୁ ପାଇଲା । ପରବର୍ତ୍ତୀ କାଳରେ ଲେଦେନୋଭ୍ ତା' ପାଇଁ ଅତି ମୂଲ୍ୟବାନ ଆଉ ଘନିଷ୍ଠ ବନ୍ଧୁ ହୋଇଥିଲା । ଏବେ ସେ ବୁଝିପାରିଲା ଯେ, ଚେସ୍‌ରେ ଏ ପରାଜୟ ଅଭାବିତ ନୁହେଁ । କାରଣ ଚେସ୍ ଖେଳରେ ତା'ର ଜ୍ଞାନ ସଂପୂର୍ଣ୍ଣଭାବରେ ଅଭ୍ୟାସପ୍ରସୂତ ଓ ଏବେ ସେ ଜଣେ ଦକ୍ଷ ଖେଳାଳୀଠାରୁ ହାରୁଛି, ଯେ କି ଖେଳର ସମସ୍ତ ଗୁପ୍ତ ତଥ୍ୟ ଜାଣନ୍ତି ।

ଲେଦେନୋଭ୍ ଓ କୋର୍ଗିନ୍ ଦେଖିଲେ ଯେ, ସେମାନଙ୍କ ଜୀବନରେ ଗୋଟିଏ ତାରିଖ ଅତି ସ୍ମରଣୀୟ । ଲେଦେନୋଭ୍ ଯେଉଁ ବର୍ଷ ପାର୍ଟିରେ ଯୋଗ ଦେଇଥିଲେ, ପାଭେଲ୍ ସେହି ବର୍ଷ ଜନ୍ମ ହୋଇଥିଲେ । ଦୁହେଁ ନୂଆ ଓ ପୁରୁଣା ବଲ୍‌ଶେଭିକ୍—ପ୍ରବୀଣ ଓ ନବୀନ ରକ୍ଷୀଙ୍କର ପ୍ରତିନିଧି । ଜଣକ ପଛରେ ଅଛି ଗଭୀର ଜୀବନର ଓ ରାଜନୈତିକ କାର୍ଯ୍ୟକଳାପର ବିଚିତ୍ରମୟ ଅଭିଜ୍ଞତା, ଅଜ୍ଞାତବାସ ଆନ୍ଦୋଳନରେ ଓ ଜାର୍‌ର ବନ୍ଦୀଶାଳରେ ବର୍ଷ ବର୍ଷର ଅଭିଜ୍ଞତା ଓ ପରବର୍ତ୍ତୀ କାଳରେ ଦାୟିତ୍ୱସଂପନ୍ନ ସରକାରୀ କାମ । ଅନ୍ୟ ଜଣଙ୍କର ଅଛି ଉତ୍ତପ୍ତ ଯୌବନ, ଆଠଟି ବର୍ଷର ସଂଗ୍ରାମ, ମାତ୍ର ଗୋଟିଏ ଗୋଟିଏ ବର୍ଷ ଯେଉଁଥିରେ ଏକାଧିକ ଜୀବନ ଜଳିପୋଡ଼ି ନିଃଶେଷ ହୋଇଯାଇଥାଆନ୍ତା । ଉଭୟ ବୃଦ୍ଧ ଓ ତରୁଣ ଏବେ ଅଶାନ୍ତ ହୃଦୟ ଅଥଚ ଭଗ୍ନ ସ୍ୱାସ୍ଥ୍ୟ ।

ପ୍ରତ୍ୟେକ ସଂଧ୍ୟାରେ ଏବ୍‌ନେର୍ ଓ କୋର୍ଗିନ୍ ରହୁଥିବା ବଖରାଟି କ୍ଲବ୍ ହୋଇଉଠେ । ସମସ୍ତ ରାଜନୈତିକ ସମ୍ବାଦ ସରବରାହ ହୁଏ ଏହିଠାରୁ । କଥାବାର୍ତ୍ତା ଓ ହସଖୁସିରେ ପ୍ରକୋଷ୍ଠଟି ପ୍ରାଣଉଚ୍ଛଳ ହୋଇଉଠେ । ଭାଇମାନ୍ କଥାବାର୍ତ୍ତା ମଝିରେ ଏଣୁତେଣୁ ଗୋଟାଏ ଅଶ୍ଳୀଳ କଥା କହିବାକୁ ଚେଷ୍ଟା କରେ ଓ ସବୁବେଳେ ମାର୍ତ୍ତା ଓ କୋର୍ଗିନ୍, ଉଭୟ ପଟରୁ ଆକ୍ରମଣ ସହନ୍ତି । ମାର୍ତ୍ତା ତାକୁ ଅତି କଠୋରଭାବରେ ବ୍ୟଙ୍ଗ କରି ତୁନିରଖିବା ଏକ ନୀତି ହୋଇଗଲାଣି । ସେଥିରେ ବି ଯଦି କାମ ନହୁଏ, ତେବେ କୋର୍ଗିନ୍ ଭାଗ ନିଏ ।

"ତମର ଏହି ବିଶେଷ ଧରଣର ଥଟ୍ଟା ଆରମ୍ଭ କରିବା ଆଗରୁ, ତମେ ପଗ୍ଭରିବା ଦରକାର, ସେଗୁଡ଼ାକ ଆମକୁ ଭଲ ଲାଗେ କି ନାହିଁ!" ମାର୍ତ୍ତା କୁହେ ଭାଇମାନ୍‌କୁ ।

"ମୁଁ ବୁଝିପାରୁ ନାହିଁ, ଏତେ ବାଜେ କଥା ତମେ କେମିତି କହିପାରୁଛ ଭାଇମାନ୍?" କୋର୍ଗିନ୍ ଅଶାନ୍ତ ଭାବେ ଯୋଗ କରେ ।

ନିଜର ଛୋଟ ଛୋଟ ଆଖିରେ ଜମାୟେତ ହୋଇଥିବା ସମସ୍ତଙ୍କୁ ଗ୍ଭହିଁନେଇ, ନିଜର ବହଳ ତଳଓଠ ଟିକିଏ ଗ୍ଭଟିନେଇ ଭାଇମାନ୍ କହେ:

"ରାଜନୈତିକ ଶିକ୍ଷା ବିଭାଗରେ ଆମକୁ ଗୋଟାଏ ନୀତିଶାସ୍ତ୍ରର ବିଭାଗ ଖୋଲିବାକୁ ହେବ ଆଉ କୋର୍ଗିନ୍ ତା'ର ମୁଖ୍ୟ ଇନ୍‌ସପେକ୍ଟର ହେବ । ମାର୍ତ୍ତା କାହିଁକି ବିରୋଧ କରୁଛି ମୁଁ ବୁଝୁଛି—ଗତାନୁଗତିକ ନାରୀଙ୍କର ବିରୋଧ, ମାତ୍ର କୋର୍ଗିନ୍ ଦେଖାଇ ହେବାକୁ ଗ୍ଭହୁଁଛି ଯେ, ସେ ତରୁଣ ହେଲେ ବି କିଛି ଜାଣେନା, ଛୁଆଟାଏ! ସବୁଠୁଁ

ବଡ଼ କଥା ହେଉଛି, ଏ ଅଣ୍ଡା ହୋଇ କୁକୁଡ଼ାକୁ ଉପଦେଶ ଦେବା କଥା ମୁଁ ବରଦାସ୍ତ କରିପାରେ ନାଁ ।"

କମ୍ୟୁନିଷ୍ଟମାନଙ୍କର ନୈତିକତା ଉପରେ ଏକ ସରଗରମ ଆଲୋଚନାରେ ଅଶ୍ଳୀଳ ଥଟ୍ଟା ପରିହାସ କଥା ପଡ଼େ । ମାର୍ଶା ଏବ୍‌ନେର୍‌କୁ ଅନ୍ୟମାନଙ୍କର ମତ ଅନୁବାଦ କରି ଶୁଣାଏ ।

"ଅଶ୍ଳୀଳ ପରିହାସ ଭଲ ନୁହେଁ", କହନ୍ତି ସେ, "ମୁଁ ପାଭେଲ୍ ସହିତ ଏକମତ ।"

ଭାଇମାନ୍ ପଛଘୁଞ୍ଚା ଦିଏ ଏଥର । କଥାଟାକୁ ଯଥାସମ୍ଭବ ହସି ଉଡ଼େଇଦିଏ ସେ, ହେଲେ ଆଉ ସେମିତି ଅଶ୍ଳୀଳ କଥା କୁହେ ନାଁ ।

ମାର୍ଶାର ବୟସ ଊଣେଇଶ ବର୍ଷରୁ ବେଶି ହୋଇ ନଥିବ ବୋଲି ଧରିନେଇ ପାଭେଲ୍ ତାକୁ କମ୍‌ସୋମୋଲ୍‌ର ସଭ୍ୟା ବୋଲି ଜାଣିଥିଲା । ମାର୍ଶା ୧୯୧୭ ମସିହାରୁ ପାର୍ଟିରେ ଅଛି ଓ ତାକୁ ୩୧ ବର୍ଷ ହେଲଣି ଶୁଣି ଭାରି ଆଶ୍ଚର୍ଯ୍ୟ ହୋଇଗଲା ସେ । ପୁଣି ସେ ଲାଟ୍‌ଭିୟାର କମ୍ୟୁନିଷ୍ଟ ପାର୍ଟିର ଅତି ସକ୍ରିୟ ସଭ୍ୟା । ୧୯୧୮ ମସିହାରେ ଶ୍ୱେତରକ୍ଷୀମାନେ ତାକୁ ଗୁଳି କରିଦେବାକୁ ଦଣ୍ଡାଦେଶ ଦେଇଥିଲେ । ମାତ୍ର ସେ ଆଉ କେତେ ଜଣ କମ୍ରେଡ୍‌ଙ୍କ ସହିତ ସୋଭିଏତ୍ ସରକାରଙ୍କ ପଟକୁ ବନ୍ଦୀବଦଳ ହେଲାବେଳେ ଚାଲିଆସିଲା । ଏବେ ସେ "ପ୍ରାଭ୍‌ଦାର" ସଂପାଦନା ମଣ୍ଡଳୀରେ କାମ କରୁଛି ଏବଂ ତା' ସାଙ୍ଗେ ସାଙ୍ଗେ ବିଶ୍ୱବିଦ୍ୟାଳୟରେ ପଢ଼ୁଛି ମଧ୍ୟ । ଏସବୁ କଥା ପାଭେଲ୍ ଜାଣିବା ଆଗରୁ ତା'ସହିତ ବନ୍ଧୁତା ହୋଇଯାଇଥିଲା ଓ ଛୋଟ ଲାଟ୍‌ଭୀୟ ଚରୁଣୀଟି ପ୍ରାୟଶଃ ଏବ୍‌ନେର୍‌କୁ ଦେଖିବାକୁ ଆସୁଥିଲା ତା' ବଖରାକୁ । ଫଳରେ ଏ 'ପାଞ୍ଚ'ଙ୍କ ଭିତରେ ସିଏ ବି ଜଣେ ଅବିଚ୍ଛେଦ୍ୟ ଅଙ୍ଗ ହୋଇଗଲା ।

ଲାଟ୍‌ଭିୟାର ଗୁପ୍ତ କାର୍ଯ୍ୟକଳାପର ସଦସ୍ୟ ଏର୍‌ଲିଟ୍, ଏହି କଥା ନେଇ ମାର୍ଶାକୁ ଚିଡ଼ାଏ, "ବିଚରା ଓଜୋଲ୍ ତମର ମସ୍କୋରେ ଘରେ ବସି କ'ଣ କରୁଥିବ ? କେମିତି ତମେ ତାକୁ ଛାଡ଼ି ରହିପାରୁଛ, ମାର୍ଶା ?"

ପ୍ରତି ସକାଳୁ ବିଛଣା ଛାଡ଼ିବା ପାଇଁ ଘଣ୍ଟା ବାଜିବା ଠିକ୍ ଆଗରୁ ସ୍ୱାସ୍ଥ୍ୟାବାସ ଉପରେ ଗୋଟାଏ ଗଞ୍ଜା ଡାକିଉଠେ । ଆଶ୍ଚର୍ଯ୍ୟ ହୋଇ ଆଟେଣ୍ଡାଣ୍ଟମାନେ ଏଣେତେଣେ ଖୋଜିବାରେ ଲାଗନ୍ତି କୁକୁଡ଼ାଟାକୁ । କେବେହେଲେ ଜାଣିପାରନ୍ତି ନାହିଁ ଯେ, ଏବ୍‌ନେର୍ ଗଞ୍ଜା ଭଳି ରାବିପାରନ୍ତି ଓ ସେ ତାଙ୍କ ସହିତ ମଜା କରିବାକୁ ଏମିତି କରୁଛନ୍ତି ବୋଲି । ଏମିତି କରିଦେବାରେ ଏବ୍‌ନେର୍‌କୁ ଅପାର ଆନନ୍ଦ ମିଳେ ।

ସ୍ୱାସ୍ଥ୍ୟାବାସରେ ରହିବାର ମାସକର ଶେଷଆଡ଼କୁ ପାଭେଲ୍‌ର ଅବସ୍ଥା କ୍ରମଶଃ ଖରାପ ଆଡ଼କୁ ଗତି କଲା । ଡାକ୍ତରମାନେ ତାକୁ କେବଳ ବିଛଣାରେ ଶୋଇରହିବାକୁ ନିର୍ଦ୍ଦେଶ ଦେଲେ । ଏବ୍‌ନେର୍ ଏଥିରେ ଭୟଙ୍କର ବିଚଳିତ ହୋଇଉଠିଲେ । କାରଣ ପ୍ରାଣପ୍ରାଚୁର୍ଯ୍ୟରେ ଭରପୂର ତାଙ୍କର ଏ ତରୁଣ ବେଲ୍‌ଶେଭିକ୍‌ଟି ପ୍ରତି ଅତ୍ୟନ୍ତ ମମତା ଜାଗିଉଠିଥିଲା । ଏତେ କମ୍ ବୟସରୁ ଏଭଳି ଜୀବନୀ ଶକ୍ତି ଆଉ ଉଦ୍ୟମଭରା ତରୁଣ

ସ୍ୱାସ୍ଥ୍ୟ ହରାଇ ବସିବ, ଏକଥା ସେ ସହ୍ୟ କରିପାରୁ ନଥିଲେ । ମାର୍ଥା ଯେତେବେଳେ ଡାକ୍ତରମାନଙ୍କର କହିବା ଅନୁଯାୟୀ କୋର୍ଚ୍ଚଗିନ୍‌ର ଭବିଷ୍ୟତ କଥା କହିଲା, ସେ ଅତି ବିମର୍ଷ ହୋଇପଡ଼ିଲେ ।

ସ୍ୱାସ୍ଥ୍ୟନିବାସରେ ଅବଶିଷ୍ଟ ରହଣୀକାଳତକ ପାଭେଲ୍ କେବଳ ବିଛଣାରେ ପଡ଼ିପଡ଼ି ହିଁ ବିତାଇଲା ।

ତା'ର ନିକଟବର୍ତ୍ତୀ ବନ୍ଧୁମାନଙ୍କ ଆଗରେ ନିଜର ଯନ୍ତ୍ରଣାକୁ ଲୁଚାଇବା ପାଇଁ ଚେଷ୍ଟା କରୁଥାଏ ସେ । ମାର୍ଥା ହିଁ ତା'ର ମୁହଁ ଦେଖି ଠଉରେଇ ପାରୁଥାଏ ତା'ର ଯନ୍ତ୍ରଣାକୁ । ବିଦା ହେବାର ସପ୍ତାହକ ଆଗରୁ ପାଭେଲ୍ ୟୁକ୍ରେନୀୟ କେନ୍ଦ୍ର କମିଟିରୁ ଏକ ଚିଠି ପାଇଲା ଯେ, ତା'ର ଛୁଟି ଆଉ ଦୁଇ ମାସ ପାଇଁ ବଢ଼ାଇ ଦିଆଯାଇଛି ସ୍ୱାସ୍ଥ୍ୟନିବାସର ଡାକ୍ତରମାନଙ୍କର ପରାମର୍ଶରେ । ସେମାନେ ତାକୁ କାମ କରିବା ପାଇଁ ଯୋଗ୍ୟ ନୁହେଁ ବୋଲି ଘୋଷଣା କରିଛନ୍ତି ।

ତା'ର ଖର୍ଚ୍ଚବାର୍ଚ୍ଚ ପାଇଁ ଅର୍ଥ ମଧ୍ୟ ଚିଠି ସହିତ ପହଞ୍ଚିଲା ।

ଅନେକ ବର୍ଷ ତଳେ ଝୁଖ୍‌ରାଇଠାରୁ ମୁଷ୍ଟିଯୁଦ୍ଧ ଶିଖିଲାବେଳେ ଯେମିତି ଭୁଷି ଖାଇଥିଲା, ସେମିତି ଏ ପ୍ରଥମ ଆଘାତକୁ ସ୍ୱୀକାର କଲା ପାଭେଲ୍ । ତା'ପରେ ପୁଣି ଥରେ ଭବିଷ୍ୟତରେ କେବେ ଉଠିବ ବୋଲି ଆଶା କରି ସେ ପଡ଼ିରହିଲା ।

ମା' ପାଖରୁ ଖଣ୍ଡେ ଚିଠି ସେ ପାଇଲା । ୟେଭ୍‌ପାତୋରିୟାଠାରୁ ଅନତିଦୂରରେ ଥିବା ଏକ ସମୁଦ୍ରକୂଳିଆ ସହରରେ ଆଲ୍‌ବିନା କ୍ୟୁସାମ୍ ବୋଲି ତାଙ୍କର ଜଣେ ପୂର୍ବ ପରିଚିତାଙ୍କୁ ଦେଖା କରିବାକୁ ମା ଲେଖିଛନ୍ତି । ପାଭେଲ୍‌ର ମା' ତାଙ୍କ ବାନ୍ଧବୀଙ୍କୁ ପନ୍ଦର ବର୍ଷ ହେଲା ଦେଖି ନାହାନ୍ତି ଓ ସେ ତାକୁ କ୍ରିମିୟା କେବେ ଆସିଲେ ଦେଖା କରିବା ପାଇଁ ଲେଖିଛନ୍ତି । ଏହି ଚିଠିଟି ପାଭେଲ୍‌ର ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲା ।

ସପ୍ତାହକ ପରେ ସ୍ୱାସ୍ଥ୍ୟନିବାସର ବନ୍ଧୁମାନଙ୍କଠାରୁ ବିଦାୟ ନେଇ ବାହାରିଲା ପାଭେଲ୍ । ଏବ୍‌ନେର୍ ତାକୁ କୁଣ୍ଢାଇ ପକାଇ ଚୁମା ଦେଲେ । ବାହାରିଲା ବେଳେ ମାର୍ଥା ନଥିଲା । ତା'ଠାରୁ ବିଦା ନହୋଇ ଚାଲିଆସିଲା ପାଭେଲ୍ ।

ତା' ଆରଦିନ ସକାଳୁ ପାଭେଲ୍‌ର ଘୋଡ଼ାଗାଡ଼ି ଛୋଟ ବଗିଚା ଥିବା ଗୋଟିଏ ଛୋଟ ଘର ଆଗରେ ପହଞ୍ଚିଲା । ପାଭେଲ୍ ତା'ର ଗାଡ଼ିଚାଳକକୁ ପଠାଇଲା କ୍ୟୁସାମ୍ ପରିବାର ସେଠାରେ ରହନ୍ତି କି ନାହିଁ ଜାଣିବାକୁ ।

କ୍ୟୁସାମ୍ ପରିବାରରେ ପାଞ୍ଚଜଣ ଲୋକ । ମା' ଆଲ୍‌ବିନା, ମୋଟାମୋଟି ହୋଇ ବୟସ୍କା ଭଦ୍ରମହିଳା ଜଣକ, ଶୋକାତୁର ଆଖିଦୁଇଟି ତାଙ୍କର, ମୁହଁରେ ଉଭେଇଆସୁଥିବା ସୌନ୍ଦର୍ଯ୍ୟର ଛାପ । ଲ୍ୟୋଲ୍ୟା ଓ ତାୟା ତାଙ୍କର ଦୁଇ ଝିଅ । ଲ୍ୟୋଲ୍ୟାର ଛୋଟ ପୁଅଟିଏ ଓ ବୃଦ୍ଧ କ୍ୟୁସାମ୍ – ପରିବାର କର୍ତ୍ତା । ଘୁଷୁରିମୁହାଁ ଚିଡ଼ିଚିଡ଼ା ପ୍ରକୃତିର ଲୋକଟିଏ ସେ ।

ବୃଦ୍ଧ କ୍ୟୁସାମ୍ ଏକ ସମବାୟ ଦୋକାନରେ କାମ କରନ୍ତି । ଆଗରେ ଯାହା ମିଳେ, ସେ କାମ କରିପକାଏ ସାନ ଝିଅ ତାୟା । ଲ୍ୟୋଲ୍ୟା ଆଗରୁ ଟାଇପିଷ୍ଟ ଥିଲା ।

ଏବେ ନିକଟରେ ତା'ର ମଦ୍ୟପୀ ଗୁଣ୍ଡା ପ୍ରକୃତିର ସ୍ୱାମୀ ସହିତ ବିଚ୍ଛେଦ ହୋଇଛି ଏବଂ ସେ ଘରେ ରହୁଛି । ସେ ମା'ଙ୍କୁ ଘର କାମରେ ସାହାଯ୍ୟ କରେ ଓ ନିଜର କୁନି ପୁଅଟିର ପରିଚର୍ଯ୍ୟା କରେ ।

ଏ ଦୁଇ ଝିଅଙ୍କ ଛଡ଼ା ଜର୍ଜ୍ ବୋଲି ତାଙ୍କର ଗୋଟିଏ ପୁଅ ଥିଲା । ପାଭେଲ୍ ପହଞ୍ଚିଲାବେଳକୁ ସେ ଲେନିନ୍‌ଗ୍ରାଦ୍ ଯାଇଥିଲା ।

ସାରା ପରିବାରଟି ପାଭେଲ୍‌କୁ ଅତି ଆଦରରେ ସ୍ୱାଗତ ଜଣାଇଲେ । କେବଳ ବୃଦ୍ଧ କ୍ୟୁହାମ୍ ତାକୁ ଭଲଭାବରେ ଗ୍ରହଣ ନକରି ସନ୍ଦେହ ଚକ୍ଷୁରେ ଦେଖିଲେ ।

ଆଲ୍‌ବିନାଙ୍କ ଆଗରେ ପରିବାରର ସମସ୍ତ ଟିକିନିଖି ଖବର ଦେଲା ପାଭେଲ୍ ଓ କ୍ୟୁହାମ୍ ପାରିବାରିକ ଜୀବନର ଇତିହାସ ବି ଶୁଣିଲା ।

ଲ୍ୟୋଲ୍ୟାକୁ ବାଇଶ ବର୍ଷ । ସରଳ ପ୍ରକୃତିର ଝିଅଟିଏ । ବାଦାମୀ କହରା ବାଳ, ଚଉଡ଼ା ମୁହଁ, ମନଖୋଲା ପ୍ରକୃତିର । ପହଞ୍ଚିବା ମାତ୍ରେ ପାଭେଲ୍‌କୁ ବିଶ୍ୱାସକୁ ନେଇ ପରିବାରର ସମସ୍ତ ଗୁପ୍ତ କାହାଣୀ କହିବାରେ ଲାଗିଲା । ଜଣାଇଲା ଯେ, ବୁଢ଼ା କିଭଳି କଠୋରଭାବରେ ପରିବାରର ସମସ୍ତଙ୍କୁ ଶାସନ କରନ୍ତି ଓ କାହାରିକୁ ଟିକିଏ ହେଲେ ସ୍ୱାଧୀନତା ଦିଅନ୍ତି ନାହିଁ । ଭାରି ଛୋଟ ମନ ତାଙ୍କର, ବଦ୍‌ମିଜାଜୀ ଓ ଚିଡ଼ିଚିଡ଼ା । ସବୁବେଳେ ସାରା ପରିବାରକୁ ଡରେଇ ଥରେଇ ରଖନ୍ତି । ଏଇଥି ପାଇଁ ତାଙ୍କ ପିଲାମାନେ କେହି ତାଙ୍କୁ ଭଲ ପାଆନ୍ତି ନାହିଁ ଆଉ ସ୍ତ୍ରୀ ଘୃଣା କରନ୍ତି । ସ୍ୱାମୀଙ୍କର ଏ ପ୍ରକୃତି ବିରୁଦ୍ଧରେ ସେ ଦୀର୍ଘ ପଚିଶ ବର୍ଷ ଧରି ଲଢ଼େଇ କରି ଆସିଛନ୍ତି । ଝିଅମାନେ ସଦାବେଳେ ମା'ଙ୍କ ପଟ ନିଅନ୍ତି କଳିକଜିଆରେ । ସଦାବେଳେ ଏଇ କଳିକଜିଆ ଲାଗି ତାଙ୍କ ଜୀବନ ସବୁ ଅତିଷ୍ଠ ହୋଇଉଠିଲାଣି ।

କୌଣସି ଗୋଟିଏ ଦିନ ବି କଳିକଜିଆ ଝଗଡ଼ାଝାଟି ଛଡ଼ା ବିତେ ନାହିଁ ।

ପରିବାରର ଆଉ ଗୋଟିଏ ଦୁଷ୍ଟଗ୍ରହ ହେଉଛି ଜର୍ଜ୍, ଲ୍ୟୋଲ୍ୟାର ଭାଇ । ଲ୍ୟୋଲ୍ୟା କହିଲା, ଅତି ବାଜେ, କୌଣସି କାମକୁ ଉପଯୁକ୍ତ ନୁହଁ, ରାଗୀ ଉଦ୍ଧତ ପ୍ରକୃତିର । କେବଳ ନିଜର ଭଲ ଖାଇବା, ଭଲ ପିଇବା, ଭଲ ପୋଷାକ ହେବା ବ୍ୟତୀତ ଆଉ କିଛି ପାଇଁ ଧ୍ୟାନ ନାହିଁ ତା'ର । ସ୍କୁଲ ପଢ଼ା ସାରିଲା ପରେ ମା'ର ଗେହ୍ଲା ପୁଅ ଜର୍ଜ୍ ଘୋଷଣା କଲା ଯେ, ସେ ପଢ଼ାପର୍ଢ଼ି ପାଇଁ ବିଶ୍ୱବିଦ୍ୟାଳୟକୁ ଯାଉଛି ଓ ଯିବା ପାଇଁ ପଇସା ମାଗିଲା । କହିଲା :

"ଲ୍ୟୋଲ୍ୟା ତା' ମୁଦିଟା ବିକିଦଉ, ତୋର ବି କିଛି ଜିନିଷପତ୍ର ଅଛି, ତାକୁ ବିକିଭାଙ୍ଗି ପଇସା ଆଣ । ମୋର ପଇସା ଦରକାର ଆଉ ତମେ କେଉଁଠୁ କେମିତି ଯୋଗାଡ଼ କରିବ ତମେ ଜାଣ । ମୋର ସେଥିରେ କିଛି ଯାଏ ଆସେ ନାହିଁ ।"

ଜର୍ଜ୍ ଭଲ କରି ଜାଣେ ଯେ, ମା' ତାକୁ କୋଉ କଥାରେ ହେଲେ ମନା କରିବ ନାହିଁ ଆଉ ବେହିଆଙ୍କ ଭଳି ସେ ମା'ର ଏହି ସ୍ନେହର ସୁଯୋଗ ନିଏ । ଭଉଣୀମାନଙ୍କ ପ୍ରତି ତାଚ୍ଛଲ୍ୟ ବ୍ୟବହାର କରେ । ସ୍ୱାମୀଙ୍କୁ ଲୁଚେଇଛପେଇ ବୁଢ଼ୀ ଯାହା ଯେତିକି

ପାଆନ୍ତି, ସେତକ ଲୁଗାଇ ପୁଅ ପାଖକୁ ପଠାଇ ଦିଅନ୍ତି ଓ ତା' ଛଡ଼ା ତାୟା ବି ଯେତେବେଳେ ଯାହା ରୋଜଗାର କରେ ସେସବୁକୁ ବି ପଠାନ୍ତି । ଜର୍ଜ୍ ମ୍ୟାଟ୍ରିକ୍ ପରୀକ୍ଷାରେ ଗଡ଼ମ୍ ମାରି ଏବେ ଯାଇ ମାମୁଁଙ୍କ ପାଖରେ ଲେନିନ୍‌ଗ୍ରାଡ୍‌ରେ ମଜାରେ ରହିଛି ଆଉ ମଝିରେ ମଝିରେ ମା'ଙ୍କ ପାଖକୁ ଧମକ ଦେଇ ଟେଲିଗ୍ରାମ୍ ପଠାଉଛି, ଆଉରି ଅଧିକ ପଇସା ପଠାଇବାକୁ ।

ପହଞ୍ଚିବା ଦିନ ସଞ୍ଜ ପର୍ଯ୍ୟନ୍ତ ପାଭେଲ୍ ତାୟାକୁ ଭେଟି ନଥିଲା । ମା' ତା'ର ଦାଣ୍ଡଦୁଆର ପର୍ଯ୍ୟନ୍ତ ଆଗହୋଇ ଚାଲିଯାଇ ଫୁସ୍ ଫୁସ୍ କରି କାନରେ ପାଭେଲ୍ ଆସିବା କଥା କହିଦେଲେ । ଅପରିଚିତ ତରୁଣଟି ସହିତ ହାତ ମିଳାଇଲା ଝିଅଟି । ଲାଜରେ ତା' କାନ ମୂଳ ପର୍ଯ୍ୟନ୍ତ ଲାଲ ପଡ଼ିଗଲା । ତା'ର ଛୋଟ ବିଣ୍ଡିବସା ବଳିଷ୍ଠ ହାତଟିକୁ କେଇ ମୁହୂର୍ତ୍ତ ପର୍ଯ୍ୟନ୍ତ ନିଜ ହାତ ମୁଠାରେ ଧରି ରଖିଲା ପାଭେଲ୍ ।

ତାୟାକୁ ଏବେ ଊଣେଇଶ ବର୍ଷ । ବେଶୀ ସୁନ୍ଦରୀ ନୁହେଁ ସେ । ମାତ୍ର ତା'ର ବଡ଼ ବାଦାମୀ ଆଖିଦିଓଟି, ତା'ର ବଙ୍କା ମଙ୍ଗୋଲୀୟଙ୍କ ଭଳି ଭ୍ରୂଲତା, ତୀକ୍ଷ୍ଣ ନାକଟି ଓ ତା'ର ସତେଜ ଓଠ ଦିଓଟି ତାକୁ କେମିତି ଆକର୍ଷଣୀୟ କରି ତୋଳିଥିଲା । ଗାରିଗାରିକା ବ୍ଲାଉଜ୍ ଭେଦକରି ଉପରକୁ ଫୁଟି ଉଠୁଥିଲା ସୁଉଚ୍ଚ ସୁଗଠିତ ସ୍ତନଦିଓଟି ।

ଭଉଣୀ ଦିହିଁଙ୍କର ଦିଓଟି ଛୋଟ ଛୋଟ ବଖରା ନିଜ ନିଜର । ତାୟା ବଖରାରେ ଥିଲା ଅଣଓସାରିଆ ଲୁହା ଖଟଟିଏ, ଆଜେବାଜେ ଜିନିଷ ରଖାହୋଇଥିବା ଡ୍ରୟାରଟିଏ, ଛୋଟ ଆଇନା, କୋଣରେ ମରା ହୋଇଛି ଡଜନେ ଖଣ୍ଡେ ଫଟୋ ଓ ଚିତ୍ର ପୋଷ୍ଟକାର୍ଡ । ଝରକାବନ୍ଧ ଉପରେ ରଖାହୋଇଥାଏ ଦୁଇଟି ଫୁଲଦାନୀ ଓ ଗୋଟିକରେ ଥାଏ ଗାଢ଼ ଲାଲ ରଙ୍ଗର ଜିରେନିୟମ୍ ଫୁଲ ଓ ଆଉ ଅନ୍ୟଟିରେ ଫିକା ପାଟଳରଙ୍ଗର ଅଷ୍ଟର ଫୁଲ । ଫିକା ନୀଳ ଫିତାଟିରେ ଝୁଲୁଥାଏ ଲେସ୍‌ର ପରଦାଟି ।

"ତାୟା ସାଧାରଣତଃ ପୁଅ ପିଲାମାନଙ୍କୁ ତା' ଘରକୁ ଆଣେ ନାହିଁ । ତମ ପାଇଁ କିନ୍ତୁ ତା'ର ଏ ନୀତିର ବ୍ୟତିକ୍ରମ ହେଲାଣି", ଭଉଣୀକୁ ଚିଡ଼ାଇବା ପାଇଁ କହିଲା ଲ୍ୟୋଲ୍ୟା ।

ତା' ପରଦିନ ସନ୍ଧ୍ୟାରେ ସାରା ପରିବାରଟି ବୁଢ଼ାବୁଢ଼ୀଙ୍କ ବଖରାରେ ବସି ଚା' ଖାଉଥିଲେ । ବୃଦ୍ଧ କ୍ୟୁହାମ୍ ନିଜ ଚା'କୁ ଜୋରରେ ଗୋଳାଉଥିଲେ ଓ ମଝିରେ ଚଷମା ଫାଙ୍କରୁ ଆଗନ୍ତୁକଟି ଉପରେ ବିରକ୍ତିପୂର୍ଣ୍ଣ ଚାହାଣୀ ପକାଉଥିଲେ ।

"ଏବେକାର ବାହାଘର ଆଇନ ଉପରେ ମୋର ଟିକିଏ ହେଲେ ଶ୍ରଦ୍ଧା ନାହିଁ! ଆଜି ବାହାଘର, କାଲି ପୁଣି ଛଡ଼ାଛଡ଼ି । ଯେମିତି ତମ ଖୁସି, ପୂରା ସ୍ୱାଧୀନତା!"

ବୃଦ୍ଧଙ୍କର କଣ୍ଠରେ କ'ଣ ଗୋଟାଏ ଅଟକିଯିବାରୁ କାଶିଉଠିଲେ, ତା'ପରେ ଲ୍ୟୋଲ୍ୟାକୁ ଦେଖାଇ କହିଲେ :

"ହେଇ, ତାକୁ ଦେଖନ୍ତୁ । ସିଏ ଆଉ ତା' ବର ଦିହେଁଯାକ କାହାକୁ କିଛି ନକହି ବାହା ହୋଇ ପଡ଼ିଲେ ଆଉ ସେମିତି ଠିକ୍ ଛାଡ଼ଛୁଡ଼! ଆଉ ଏବେ ମୋତେ ତାକୁ ଓ

ତା' ସାଙ୍ଗେ ତା' ପିଲ୍ଲକୁ ଖୁଆଇବାକୁ ପଡ଼ିବ । ପିଲ୍ଲଟା କାହାର କିଏ ଜାଣେ ! କି ଅନ୍ୟାୟ ଜୁଲୁମ ଏ ଜୁହତ !"

ସଂକୁଚିତ ହୋଇଗଲା ଲ୍ୟୋଲ୍ୟା ଓ ତା'ର ଆଖିରୁ ଝରିଆସୁଥିବା ଲୁହ ସେ ପାଭେଲ୍‌ଠାରୁ ଲୁଚାଇବାକୁ ଚେଷ୍ଟା କଲା ।

"ଆପଣ କ'ଣ ତା'ହେଲେ କହୁଛନ୍ତି, ସେ ଆଜୀବନ ସେ ଅପଦାର୍ଥଟା ସାଙ୍ଗରେ ରହିଥାନ୍ତା ?" ପାଭେଲ୍ କହିଲା, ବୃଦ୍ଧଙ୍କ ଆଡ଼କୁ ଲକ୍ଷ୍ୟ କରି । ତା'ର ଦୁଇ ଆଖିରେ କ୍ରୋଧର ନିଆଁ ।

"ଯାହାକୁ ବାହା ହଉଛି, ତାକୁ ଆଗରୁ ଭଲ କରି ଜାଣିବାର ଦରକାର ଥିଲା ।"

ଆଲ୍‌ବିନା କହି ଉଠିଲେ ମଝିରୁ । ରାଗଟାକୁ ଚାପି ନପାରି ସଙ୍ଗେ ସଙ୍ଗେ କହି ପକାଇଲେ, "ଆଚ୍ଛା ତମେ ବୁଢ଼ାଟିଏ ହେଲଣି, ଜଣେ ନୂଆ ଲୋକ ଆଗରେ ତମେ ଏସବୁ କଥା ନକହିଲେ କ'ଣ ଚଳି ନଥାନ୍ତା ? ଆଉ କ'ଣ କିଛି କହିବାର ନାହିଁ ତମର ?"

ବୁଢ଼ା ଚିଡ଼ିଉଠିଲେ ତାଙ୍କ ଉପରେ ।

"କ'ଣ ଆଲୋଚନା କରିବାକୁ ହେବ ମୋତେ ଜଣା ଅଛି । ମୋତେ କ'ଣ କହିବାକୁ ହବ ନହବ ସେ କଥା କହିଦେବାକୁ ତମେ କେବେଠୁଁ ଶିଖିଲଣି ।"

ସେଦିନ ରାତିରେ ଅନେକ ସମୟ ପର୍ଯ୍ୟନ୍ତ ପାଭେଲ୍ ଆଖିକୁ ନିଦ ଆସିଲା ନାହିଁ କ୍ୟୁହାମ୍‌ମାନଙ୍କ କଥା ଭାବିଭାବି । ଆକସ୍ମିକଭାବେ ଏଠି ଆସି ପହଞ୍ଚିଛି ସେ ଓ ନିର୍ବୋଧଭାବରେ ତାଙ୍କର ପାରିବାରିକ ନାଟକର ଏକ ଚରିତ୍ର ହୋଇଉଠିଛି । ଏ ମା' ଆଉ ଝିଅଦୁଇଟିଙ୍କୁ ବନ୍ଧନରୁ ମୁକୁଳାଇବା ପାଇଁ କ'ଣ କରିପାରିବ ଭାବୁଥିଲା ସେ ଗଭୀରଭାବରେ । ତା'ର ନିଜ ଜୀବନ ଅବ୍ୟବସ୍ଥିତ । ଅନେକ ସମସ୍ୟା ତା'ର ଅସମାହିତ ଏପର୍ଯ୍ୟନ୍ତ । ଆଗ ଅପେକ୍ଷା କୌଣସି ଦୃଢ଼ ପଦକ୍ଷେପ ନେବା ଏବେ ଆହୁରି କଷ୍ଟସାଧ୍ୟ ।

ସ୍ପଷ୍ଟଭାବରେ ସେ ଦେଖିଲା, ଗୋଟିଏ ପନ୍ଥା ଅଛି । ପରିବାରଟି ଭାଙ୍ଗି ଯିବା ଉଚିତ । ମା' ଓ ଝିଅମାନେ ବୁଢ଼ାକୁ ଛାଡ଼ିଯିବେ । ମାତ୍ର ଏ କଥାଟା ଏତେ ସହଜ ନୁହେଁ । ଏ ପରିବାର ଭିତରେ ବିପ୍ଳବ ଆଣିବାର ଦାୟିତ୍ୱ ପାଭେଲ୍ ତ ନେଇ ପାରିବ ନାହିଁ । କାରଣ ତାକୁ ତ ଆଉ କିଛି ଦିନ ପରେ ଏ ଜାଗା ଛାଡ଼ିଯିବାକୁ ପଡ଼ିବ ଏବଂ ଜୀବନସାରା ଏମାନଙ୍କ ସହିତ ଆଉ ଭେଟ ହୁଏତ ହେବ ନାହିଁ । ତା' ଅପେକ୍ଷା ଯା' ହେବାର ହେଉ ବୋଲି ଛାଡ଼ିଦେବା କ'ଣ ଭଲ ନୁହଁ ? କାହିଁକି ସେ ଏ ପଚାପାଣିକୁ ଗୋଳେଇବାକୁ ଯିବ ? ମାତ୍ର ବୃଦ୍ଧର ବିରକ୍ତିକର ରୂପ ତାକୁ ଅଶାନ୍ତ କଲା । ଅନେକ ଯୋଜନା ଆସିଲା ପାଭେଲ୍ ମନକୁ । ମାତ୍ର ପରବର୍ତ୍ତୀ କାଳରେ ସେସବୁ ଅସମ୍ଭବ ବୋଲି ନିଜେ ସେ ବିଚାର କରୁଥାଏ ।

ତା' ପରଦିନ ରବିବାର । ସହରରେ ଟିକେ ବୁଲଚାଲ କରି ଫେରି ପାଭେଲ୍ ତାୟାକୁ ଏକାକୀ ଦେଖିଲା ଘରେ । ଅନ୍ୟମାନେ ସମସ୍ତେ ଆତ୍ମୀୟ ସ୍ୱଜନଙ୍କ ସହିତ ଦେଖା କରିବାକୁ ଯାଇଛନ୍ତି । ତା' କୋଠରୀକୁ ଯାଇ କ୍ଳାନ୍ତ ହୋଇ ଗୋଟିଏ ଚଉକିରେ ବସିପଡ଼ିଲା ପାଭେଲ୍ ।

"ତମେ କାହିଁକି ମନଖୁସି କରିବାକୁ କୋଉଠିକି ଯାଅ ନାହିଁ ?" ତାଙ୍କୁ ପଗ୍ଉରିଲ୍ଲ ପାଭେଲ୍ ।

"ମୋତେ କେଉଁଠିକି ଯିବାକୁ ଭଲ ଲଗେ ନାହିଁ", ଅନୁଚ୍ଚ ସ୍ୱରରେ ଉତ୍ତର ଦେଲ୍ଲ ସେ ।

ଗତ ରାତିର ସବୁ ଯୋଜନା କଥା ପାଭେଲ୍ ମନେପଡ଼ିଲ୍ଲ ଓ ତାୟା ଆଗରେ ସବୁକଥା କହିବ ବୋଲି ଭାବିଲ୍ଲ ସେ । ଅନ୍ୟମାନେ ଫେରିବା ଆଗରୁ ଯଥାଶୀଘ୍ର କଥା ସାରିବ ବୋଲି ଠିକ୍‌କରି ସେ ସିଧାସଳଖ ଭାବରେ ଅସଲ ବିଷୟଟା ଆରମ୍ଭ କଲ୍ଲ ।

"ଶୁଣ ତାୟା, ତମ ମୋ ମଧ୍ୟରେ ପରସ୍ପରକୁ "ତୁମେ" କହିବା ଭଲ । ଆମ ମଧ୍ୟରେ ସେଇ ସବୁ ଆନୁଷ୍ଠାନିକତାକୁ ମାନି ଚଳିବାର ଦରକାର କ'ଣ ? ମୁଁ ତ ଖୁବ୍ ଶୀଘ୍ର ଚ୍ଚଲିଯାଉଛି । ଦୁଃଖ ଯେ ମୁଁ ନିଜେ ଯେତେବେଳେ ଅସୁବିଧାରେ ପଡ଼ିଛି, ସେତିକିବେଳେ ତମମାନଙ୍କ ସାଙ୍ଗେ ଦେଖାହେଲ୍ଲ । ନହେଲେ ଅବସ୍ଥା ଭିନ୍ନ ଗତି ନେଇପାରନ୍ତା । ଆଉ ବର୍ଷକ ତଳେ ଦେଖାହୋଇଥିଲେ ଆମେ ସମସ୍ତେ ଏକାଠି ଯାଇପାରିଥାନ୍ତେ ଏଠାରୁ । ଲ୍ୟୋଲ୍ୟା ଆଉ ତମ ଭଳି ଲୋକଙ୍କ ପାଇଁ ଚ୍ଚରିଆଡ଼େ ଅନେକ କାମ ଅଛି । ବୁଢ଼ା ବଦଳିଯିବ ବୋଲି ଆଶା କରିବା ନିରର୍ଥକ । ତମ ପାଇଁ କେବଳ ଗୋଟିଏ ରାସ୍ତା ଅଛି—ଏ ଘର ଛାଡ଼ି ଚ୍ଚଲିଯିବା । ହେଲେ ବର୍ତ୍ତମାନ ତାହା ସମ୍ଭବ ନୁହଁ । ମୁଁ ବି ନିଜେ ଜାଣେ ନାଁ, ମୋର କ'ଣ ହେବ ନହେବ । ମୁଁ ଚ୍ଚହୁଁଛି, ମୋତେ କାମକୁ ଫେରାଇ ନିଅନ୍ତୁ ବୋଲି ବାଧ୍ୟ କରିବାକୁ । ଡାକ୍ତରମାନେ ମୋ ବିଷୟରେ ଯେତେସବୁ ବାଜେକଥା ଲେଖିଛନ୍ତି ଆଉ ମୋ କମ୍ରେଡ୍‌ମାନେ ଚ୍ଚହୁଁଛନ୍ତି ଯେ, ଆଜୀବନ କେବଳ ମୋ ରୋଗ ଚିକିତ୍ସାରେ ଚ୍ଚଲିଥାଉ । କିନ୍ତୁ ସେସବୁ କଥା ପରେ ଚିନ୍ତା କରାଯିବ । ଏବେ ମୁଁ ମା' ପାଖକୁ ଲେଖିବି ଏ ସମସ୍ୟାକୁ କିପରି ସମାଧାନ କରିବାକୁ ହେବ ଦେଖିବା । ଅବସ୍ଥାଟାକୁ ଏହି ଭାବେ ଚ୍ଚଲିବାକୁ ମୁଁ ଦେବି ନାହିଁ । ମାତ୍ର ତମେ ମଧ୍ୟ ବୁଝିବା ଉଚିତ ତାୟା । ତା'ହେଲେ ତମକୁ ତମର ଏବେକାର ଜୀବନରୁ ବିଚ୍ଛିନ୍ନ ହେବାକୁ ପଡ଼ିବ । ତମେ ପାରିବ ? ନୂଆ ଜୀବନ ପାଇଁ ଆଗେଇଯିବାକୁ ତମର ସେ ଶକ୍ତି ଆଉ ଇଚ୍ଛା ଅଛି ତ ?

ତାୟା ଚ୍ଚହିଁଲ୍ଲ ତାକୁ ।

"ମୁଁ ଚ୍ଚହୁଁଛି", କୋମଳ ସ୍ୱରରେ କହିଲ୍ଲ ସେ । "ମାତ୍ର ଶକ୍ତି ଅଛି କି ନାହିଁ, ସେକଥା ମୁଁ କହିପାରିବି ନାହିଁ ।"

ତା'ର ସଂଶୟର କଥା ବୁଝିପାରିଲ୍ଲ ପାଭେଲ୍ ।

"ସେ ବିଷୟରେ ଚିନ୍ତା କର ନାହିଁ ତାୟା ! ତମର ଯଦି ଇଚ୍ଛା ଥାଏ, ତେବେ ସବୁ ଠିକ୍ ହୋଇଯିବ । କହିଲ୍ଲ ଦେଖି, ତମେ କ'ଣ ତମ ପରିବାର ପ୍ରତି ଖୁବ୍ ବେଶି ଆସକ୍ତ ?"

ହଠାତ୍ ଏପରି ପ୍ରଶ୍ନ ଶୁଣି, କିଛି ସମୟ ଦ୍ୱିଧାଗ୍ରସ୍ତ ରହିଲ୍ଲ ତାୟା ।

"ମା' ପାଇଁ ଭାରୀ ଦୁଃଖ ଲାଗିବ", ଶେଷକୁ କହିଲା ସେ । "ବାପା ତା' ଜୀବନ ଦୁର୍ବହ କରିଦେଲେଣି । ଏବେ ପୁଣି ଜର୍ଜ୍ ତାକୁ ଜଳାଉଛି । ତା' ପାଇଁ ମୋ ମନରେ ଭାରି କଷ୍ଟ । ଯଦିଓ ଜର୍ଜ୍‌କୁ ଯେତେ ଭଲପାଏ, ମୋତେ ସେତେ ଭଲ କେବେ ସେ ପାଏ ନାହିଁ ।"

ଅନେକ ସମୟ ପର୍ଯ୍ୟନ୍ତ ମନଖୋଲି କଥାବାର୍ତ୍ତା ହେଲେ ସେମାନେ । ପରିବାରର ସମସ୍ତେ ଫେରିବା ଆଗରୁ ଥଟ୍ଟା କରି ପାଭେଲ୍ ତାକୁ କହିଲା :

"ଆଶ୍ଚର୍ଯ୍ୟ କଥା ଯେ, ବୁଢ଼ା ତମକୁ ଏ ଯାଏଁ କାହାକୁ ବାହା ଦେଇ ନାହିଁ ।"

କଥାଟା ଶୁଣି, ଭୟରେ ତାୟା ହାତ ହଲାଇଲା ।

"ନାଁ ନାଁ ... ମୁଁ କେବେ ବାହା ହେବି ନାହିଁ । ମୁଁ ତ ଦେଖିଛି ନିଜ ଆଖିରେ, ବିଚାରୀ ଲ୍ୟୋଲ୍ୟା କ'ଣ ଭୋଗୁଛି ! ଯାହା ହେଲେ ବି ମୁଁ କେବେ ବାହା ହେବି ନାହିଁ ।"

ପାଭେଲ୍ ହସିଲା ।

"ତା'ହେଲେ ସାରା ଜୀବନ ପାଇଁ ତମେ ଏ ସିଦ୍ଧାନ୍ତ ନେଇଛ ? ଯଦି କେହି ସୁନ୍ଦର ସୁପୁରୁଷ ଯୁବକ ମିଳିଯାଆନ୍ତି, ତେବେ ... ?"

"ତା'ହେଲେ ବି ନୁହେଁ । ସମସ୍ତେ ପହିଲୁ ପହିଲୁ ଭଲ ଥାଆନ୍ତି ।"

ସାନ୍ତ୍ୱନା ଦେବା ଭଙ୍ଗୀରେ ତା' କାନ୍ଧ ଉପରେ ହାତ ରଖିଲା ପାଭେଲ୍ ।

"ଠିକ୍ ଅଛି ତାୟା । ସ୍ୱାମୀ ବିନା ତମେ ଚଳିପାରିବ । ହେଲେ ଯୁବକମାନଙ୍କ ପ୍ରତି ଏତେ ନିର୍ଦ୍ଦୟ ହୁଅ ନାଁ । ଭାଗ୍ୟର କଥା, ତମେ ମୋତେ ସନ୍ଦେହ କରିନି ଯେ, ମୁଁ ତମକୁ ପ୍ରେମ କରୁଛି ବୋଲି, ନହେଲେ ମୁସ୍କିଲ ହୋଇଥାନ୍ତା ।" ଭାଇ ଭଳି ତା' ବାହୁ ଉପରେ ଶୀତଳ ହାତ ଥାପୁଡ଼େଇଲା ପାଭେଲ୍ ।

"ତମ ଭଳିଆ ଲୋକ ତ ଅନ୍ୟ ଧରଣର ଝିଅଙ୍କୁ ବାହା ହୁଅନ୍ତି । ମୋ ଭଳି ଝିଅ ସେମାନେ ଲୋଡ଼ାନ୍ତି ନାହିଁ", କୋମଳ କରି କହିଲା ସେ ।

ତା'ର କିଛି ଦିନ ପରେ ଟ୍ରେନ୍‌ରେ ପାଭେଲ୍ ଖାର୍‌କୋଭ୍‌କୁ ଗଲା । ତାୟା, ଲ୍ୟୋଲ୍ୟା ଓ ଆଲ୍‌ବିନା ତାଙ୍କ ଭଉଣୀ ରୋଜାଙ୍କ ସାଙ୍ଗରେ ଷ୍ଟେସନ୍‌କୁ ଆସିଲେ ତାକୁ ବିଦାୟ ଦେବା ଲାଗି । ଆଲ୍‌ବିନା ତାକୁ କହିଲେ, ଝିଅମାନଙ୍କୁ ତାଙ୍କର ଭୁଲି ନ ଯିବାକୁ ଆଉ ଏ ଦୁଃଖରୁ ତାଙ୍କୁ ସବୁ ଉଦ୍ଧାର କରିବାକୁ । ତାଙ୍କର ଅତି ଆପଣାର ଲୋକ ଭଳି ବିଦାଦେଲେ ତାକୁ ସେମାନେ । ତାୟାର ଆଖିରେ ଢଳଢଳ ହେଉଥିଲା ଲୁହ । ନିଜ ଡବାର ଝରକାରୁ ପାଭେଲ୍ ଲୋହି ଦେଖୁଥିଲା ଲ୍ୟୋଲ୍ୟାର ସଫା ରୁମାଲ ଓ ତାୟାର ଗାରିଗାରିକା ବ୍ଲାଉଜ୍, ଧୀରେ ଧୀରେ ଛୋଟରୁ ଛୋଟ ହୋଇ ଅବଶେଷରେ ଅଦୃଶ୍ୟ ହୋଇଗଲା ।

ଖାର୍‌କୋଭ୍‌ରେ ସାଙ୍ଗ ପେଟ୍ୟା ନୋଭିକୋଭ୍ ଘରେ ରହିଲା ପାଭେଲ୍ । କାରଣ ସେ ଦୋରାକୁ କଷ୍ଟ ଦେବାକୁ ଲୋଡ଼ୁଁ ନଥିଲା । ଯାତ୍ରାର କ୍ଲାନ୍ତି ମେଣ୍ଟିଲା ପରେ, ସାଙ୍ଗେ ସାଙ୍ଗେ ସେ କେନ୍ଦ୍ର କମିଟି ଅଫିସ୍‌କୁ ଗଲା । ସେଠାରେ ଆକିମ୍‌କୁ ଅପେକ୍ଷା କଲା । ଦୁହେଁ

ଶେଷରେ ଏକୁଟିଆ ହେଲା ପରେ ସେ ସାଙ୍ଗେ ସାଙ୍ଗେ ତାକୁ କାମକୁ ପଠାଇବାକୁ ଅନୁଯୋଗ କଲା । ଆକିମ୍ ମୁଣ୍ଡ ଟୁଙ୍ଗାରିଲା ।

"ସେକଥା ହୋଇପାରିବ ନାହିଁ, ପାଭେଲ୍ ! ଆମ ପାଖରେ କେନ୍ଦ୍ର କମିଟିର ମେଡିକାଲ କମିଶନ୍‌ଙ୍କର ସିଦ୍ଧାନ୍ତ ଅଛି ଯେ, ତୋ ଅବସ୍ଥା ଶୋଚନୀୟ । ତତେ କାମ କରିବାକୁ ଦିଆଯିବ ନାହିଁ । ସ୍ନାୟବିକ ରୋଗ ଚିକିତ୍ସା ଇନ୍‌ଷ୍ଟିଚ୍ୟୁଟ୍‌କୁ ଚିକିତ୍ସା ପାଇଁ ପଠାହେବ ।"

"ସେମାନେ କ'ଣ କହିଲେ ନକହିଲେ ମୋର ସେଥିରେ ଯାଏଆସେ କେତେ ଆକିମ୍ ! ମୁଁ ତୋତେ ଅନୁରୋଧ କରୁଛି, ମୋତେ କାମ କରିବାର ସୁଯୋଗ ଥରଟିଏ ଦେ ! ଗୋଟାଏ ହାସ୍‌ପାତାଲରୁ ଆଉ ଗୋଟାଏ ହାସ୍‌ପାତାଲକୁ ଏ ଯେଉଁ ଦଉଡ଼, ସେଇଥିରେ ମୁଁ ମରିଯିବି ।"

ଆକିମ୍ ମନାକଲା । "ସିଦ୍ଧାନ୍ତ ବିରୁଦ୍ଧରେ ଯିବୁ ଆମେ କେମିତି, ପାଭେଲ୍ ?" ସେ ଯୁକ୍ତି କଲା ଏହା ଯେ, "ତୋର ଭଲ ପାଇଁ, ତୁ କେମିତି ବୁଝି ପାରୁନୁ ?" ମାତ୍ର ପାଭେଲ୍ ନିଜ ପାଇଁ ଏତେ ଦୃଢ଼ ଭାବରେ ଯୁକ୍ତି କଲା ଯେ, ଶେଷରେ ଆକିମ୍ ବାଧ୍ୟ ହେଲା ସମ୍ମତି ଦେବାକୁ ।

ତା' ଆରଦିନ କେନ୍ଦ୍ର କମିଟିର ସେକ୍ରେଟାରିଏଟ୍‌ର ବିଶେଷ ଦପ୍ତରରେ କାମ କରୁଥିଲା ପାଭେଲ୍ । ସେ ବିଶ୍ୱାସ କରୁଥିଲା ଯେ, ତା' ଦୃଢ଼ଶକ୍ତି ଫେରି ପାଇବା ପାଇଁ ତାକୁ କାମ କରିବାକୁ ପଡ଼ିବ । ମାତ୍ର ଅତି ଚଞ୍ଚଳ ସେ ନିଜର ଭ୍ରମ ବୁଝିପାରିଲା । ଏକାଥରକେ ନିଜ ଚଉକିରେ ଆଠଘଣ୍ଟା ଧରି ବସେ ଓ ଖାଇବାକୁ ସୁଦ୍ଧା ଯାଏ ନାହିଁ । କାରଣ ଖାଇବା ପାଇଁ କାଣ୍ଟିନ ଯାଏ ତିନିତାଲାକୁ ଯିବା ଆସିବା କରିବା ତା' ପକ୍ଷରେ ସଂପୂର୍ଣ୍ଣ ଅସମ୍ଭବ । ପ୍ରାୟଶଃ ତା'ର ଗୋଟାଏ ଗୋଡ଼ କି ଗୋଟାଏ ହାତ ହଠାତ୍ ଅଚଳ ହୋଇଯାଏ ଓ ବେଳେ ବେଳେ, କ୍ଷଣକାଳ ପାଇଁ ସାରା ଦେହଟା ପକ୍ଷାଘାତଗ୍ରସ୍ତ ହୋଇଯାଏ । ଦେହରେ ସବୁବେଳେ ପ୍ରାୟ ଜର ଜର ଭାବ । କୌଣସି କୌଣସି ଦିନ ସକାଳୁ ସେ ବିଛଣାରୁ ଉଠିପାରେ ନାଁ ଓ ପକ୍ଷାଘାତ ଆକ୍ରମଣ ଶେଷ ହେଲା ପରେ ସେ ହତାଶ ହୋଇ ଦେଖେ ଯେ, କାମକୁ ଯିବା ପାଇଁ ଘଣ୍ଟାଏ ଡେରି ହେଲଣି ତା'ର । ଶେଷକୁ ଡେରିରେ ଆସିବା ପାଇଁ ତାକୁ ଭର୍ତ୍ସନା କରାହେଲା ଦିନେ । ସେ ଆତଙ୍କିତ ହୋଇ ଦେଖିଲା ଯେ, ଯେଉଁଦିନ ପାଇଁ ସେ ଭୟ କରୁଥିଲା, ସେଦିନ ଆରମ୍ଭ ହୋଇଯାଇଛି । କାମରେ ଖିଲାପ ପାଇଁ ସେ ନିଜ ପଦବୀରୁ ତଳକୁ ହଟିଆସୁଛି ।

ଅନ୍ୟ କାମକୁ ବଦଳି କରି ଆକିମ୍ ତାକୁ ଦୁଇଥର ସାହାଯ୍ୟ କଲା । ମାତ୍ର ଲାଭ କିଛି ହେଲା ନାହିଁ ସେଥିରେ । କାମକୁ ଫେରିବାର ମାସକ ପରେ ସେ ପୁଣି ଶଯ୍ୟାଶାୟୀ ହେଲା । ସେତେବେଳେ ତା'ର ସ୍ମରଣ ହେଲା ବିଦାୟ ନେଲାବେଳର ବାଝାନୋଭାଙ୍କର କଥା । ତାକୁ ଲେଖିଲା ଓ ସେହିଦିନ ଆସି ପହଞ୍ଚିଲେ ସେ । ଯେଉଁ କଥାଟା ପାଭେଲ୍

ନିକଟରେ ମୁଖ୍ୟ ସେଇ କଥାଟା ବାଝାନୋଭା ତାକୁ କହିଲେ—ହାସ୍‌ପାତାଳରେ ରହିବାର କୌଣସି ଆବଶ୍ୟକତା ନାହିଁ ।

"ତା'ହେଲେ ମୋର ଆଉ କୌଣସି ଚିକିତ୍ସା ଦରକାର ନାହିଁ", ପ୍ରଫୁଲ୍ଲ ମନରେ କହିଲ ସେ । ମାତ୍ର ତା'ର ଏ ପରିହାସ ନିରର୍ଥକ ଥିଲ ।

ଟିକିଏ ଭଲ ଲଗିବା ମାତ୍ରେ ସେ ପୁଣି କେନ୍ଦ୍ର କମିଟି କାର୍ଯ୍ୟାଳୟରେ ପହଞ୍ଚିଲ । ଏଥର କିନ୍ତୁ ଆକିମ୍ ଦୃଢ଼ ଥିଲ । ପାଭେଲ୍‌କୁ ହାସ୍‌ପାତାଳ ଯିବା ପାଇଁ ବାଧ୍ୟ କଲ ସେ ।

"ମୁଁ କିନ୍ତୁ ଯିବି ନାହିଁ!" ଚିନ୍ତିତ ହୋଇ କହିଲ ସେ । "ଯିବା ନିରର୍ଥକ । ମୋ ପାଇଁ କେବଳ ଗୋଟିଏ ପଥ ବାକି ଅଛି । ପେନ୍‌ସନ ପାଇ ରହିବା । ସେକଥା ମୁଁ କେବେ କରିବି ନାହିଁ! ମୋ କାମ ମୋଠୁଁ ତମେ ଛଡ଼େଇ ନେଇ ପାରିବ ନାହିଁ କଦାପି! ମୋତେ କମା ୨୪ ବର୍ଷ ହେଲ ଏବଂ ବାକି ଜୀବନସାରା ମୁଁ ଅକର୍ମଣ୍ୟ ହୋଇ ରହି ହାସ୍‌ପାତାଳରୁ ହାସ୍‌ପାତାଳକୁ ବୁଲିପାରିବି ନାହିଁ । ପୁଣି ଭଲ କରି ଜାଣେ ଯେ, କିଛି ଫଳ ହେବ ନାହିଁ ବୋଲି! ମୋତେ ତମକୁ କିଛି ନା କିଛି କାମ ଦେବାକୁ ହେବ, ମୋ ଅବସ୍ଥାକୁ ଗ୍ରହି । ମୁଁ ଘରେ କାମ କରିପାରିବି, ନ ହେଲେ ଅଫିସ୍‌ରେ ଆସି ରହିବି । ମୋତେ କେବଳ କାଗଜ କାମ କିଛି ଦିଅ ନାଁ । ମୋତେ ଏମିତି କାମ ଦିଅ, ଯାହା ଫଳରେ ମୁଁ ମନେ କରିବି ଯେ, ମୁଁ ଅଲେଡ଼ା ହୋଇଯାଇ ନାହିଁ ।"

ଆବେଗର ଉଚ୍ଛ୍ୱାସରେ ପାଭେଲ୍‌ର ସ୍ୱର ଧୀରେ ଧୀରେ ଉଚ୍ଚରୁ ଉଚ୍ଚତର ହେଉଥିଲ ।

ପାଭେଲ୍ ପାଇଁ ଗଭୀର ବେଦନା ଅନୁଭବ କରୁଥିଲ ଆକିମ୍ । ସେ ବୁଝୁଥିଲ ଏ ଦୁର୍ଦ୍ଦାନ୍ତ ଆବେଗ-ମନା ଯୁବକ ପାଇଁ କି ଯନ୍ତ୍ରଣା ଇଏ, ଯିଏ କି ନିଜର ସଂକ୍ଷିପ୍ତ ଜୀବନର ସବୁ କିଛି ଦେଇଛି ପାର୍ଟି ପାଇଁ। ସେ ନିଜେ ସ୍ୱୀକାର କରିନେଇ ପାରୁ ନାହିଁ, ନିଜକୁ ପାର୍ଟି ପାଖରୁ, ଯୁଦ୍ଧକ୍ଷେତ୍ରରୁ ବିଚ୍ଛିନ୍ନ କରିନେଇ ଦେଖିବାକୁ । ଆକିମ୍ ସିଦ୍ଧାନ୍ତ କଲ, ଯେତେଦୂର ସମ୍ଭବ ସାହାଯ୍ୟ କରିବାକୁ ତାକୁ ।

"ଠିକ୍ ଅଛି ପାଭେଲ୍ । ତୁ ଶାନ୍ତ ହ । କାଲି ସେକ୍ରେଟାରିଏଟ୍‌ର ଏକ ବୈଠକ ଅଛି ଓ ମୁଁ କମ୍ରେଡ୍‌ମାନଙ୍କ ଆଗରେ ତୋ କଥା ପକାଇବି । ମୋ ଦ୍ୱାରା ଯାହା ସମ୍ଭବ, କରିବାକୁ ପ୍ରସ୍ତୁତ ଅଛି ମୁଁ, ପ୍ରତିଶ୍ରୁତି ଦେଉଛି ।"

ମନରେ ଗଭୀର କ୍ଷତ ନେଇ ପାଭେଲ୍ ଉଠି ଆକିମ୍‌ର ହାତ ଧରିପକାଇଲ ।

"ତୁ କ'ଣ ଭାବୁନୁ ଆକିମ୍, ଜୀବନ ମୋତେ ଏକ କୋଣକୁ ଠେଲିନେଇ ଚୂର୍ଣ୍ଣବିଚୂର୍ଣ୍ଣ କରିଦେଇ ପାରିବ, ମୋ ହୃତ୍‌ସ୍ପନ୍ଦନ ଚାଲୁଥିବା ଯାଏଁ?" କହି ସେ ଆକିମ୍‌ର ହାତକୁ ନେଇ ନିଜ ଛାତିର ଶିଥିଳୀକୃତ ସ୍ପନ୍ଦନ ଅନୁଭବ କରାଇଲ ଓ କହିଲ, "ଯେତେଦିନ ଯାଏ ଏ ସ୍ପନ୍ଦନ ଚାଲିଥିବ, ସେତେଦିନ ଯାଏ କେହି ମୋତେ ପାର୍ଟିରୁ ବିଚ୍ଛିନ୍ନ କରିନେଇ ପାରିବ ନାହିଁ । ମୃତ୍ୟୁ କେବଳ ମୋତେ ପାର୍ଟିର କର୍ମୀଦଳଠାରୁ ଅଲଗା କରିପାରେ, ଆଉ କେହି ନୁହେଁ, ମନେରଖ ବନ୍ଧୁ ।"

ଆକିମ୍ ନିରୁତ୍ତର ରହିଲ, କାରଣ ସେ ଜାଣିଥିଲ ଯେ, ଏହା କେବଳ ଫାଙ୍କା

ଆଓ୍ବାଜ ନୁହେଁ । ଏହା ହେଉଛି ରଣକ୍ଷେତ୍ରରେ ଆହତ ସୈନିକର ଚିତ୍କାର ! ସେ ଜାଣିଥିଲା ସେ କୋର୍ଚ୍ଚାଗିନ୍ ଭଳି ମଣିଷ ଆଉ କିଛି ଚିନ୍ତା ବା ଅନୁଭବ କରିପାରେ ନାଁ ।

ଦୁଇଦିନ ପରେ ଆକିମ୍ ପାଭେଲ୍‌କୁ ଜଣାଇଲା ଯେ, ଲେଖାଲେଖି କାମ କରିପାରିଲେ, ତାକୁ ପାର୍ଟିର କେନ୍ଦ୍ରୀୟ ଖବରକାଗଜର ସଂପାଦକୀୟ ବିଭାଗରେ କାମ କରିବାର ସୁଯୋଗ ଦିଆଯିବ । ସଂପାଦକୀୟ ଦପ୍ତରରେ ପାଭେଲ୍‌କୁ ବେଶ୍ ସୌଜନ୍ୟ ସହକାରେ ଅଭ୍ୟର୍ଥନା ଜଣାଗଲା ଓ ଜଣେ ସହକାରୀ ସଂପାଦିକା ଓ ପୁରୁଣା ପାର୍ଟିକର୍ମୀ ତାକୁ କେତେକ ପ୍ରଶ୍ନ କଲେ । ସେ ମଧ୍ୟ ୟୁକ୍ରେନୀୟ କେନ୍ଦ୍ରୀୟ କଣ୍ଟ୍ରୋଲ୍ କମିଟିର ସଭାପତିମଣ୍ଡଳୀର ସଦସ୍ୟା ।

"କମ୍ରେଡ୍, ଆପଣ କେତେଦୂର ପର୍ଯ୍ୟନ୍ତ ପଢ଼ାଶୁଣା କରିଛନ୍ତି ?" ଭଦ୍ରମହିଳା ଜଣକ ପଚାରିଲେ ।

"ପ୍ରାଥମିକ ସ୍କୁଲରେ ତିନୋଟି ବର୍ଷ ।"

"କୌଣସି ପାର୍ଟି ରାଜନୈତିକ ସ୍କୁଲରେ ପଢ଼ିଛନ୍ତି ଆପଣ ?"

"ନାଁ ।"

"ଠିକ୍ ଅଛି, ଏସବୁ କିଛି ନ ଥାଇ ମଧ୍ୟ ଜଣେ ଭଲ ସାମ୍ବାଦିକ ହୋଇପାରେ । କମ୍ରେଡ୍ ଆକିମ୍ ଆପଣଙ୍କ ବିଷୟରେ ସବୁ କହିଛନ୍ତି ଆମକୁ । ଆମେ ଆପଣଙ୍କୁ ଘରେ ବସି କରିବା ଭଳି କିଛି କାମ ଦେବୁ । ସାଧାରଣଭାବରେ ଆପଣଙ୍କ ଅବସ୍ଥାକୁ ଅନାଇ କାମ ଦେବାକୁ ରାଜି ଅଛୁ ଆମେ । ଏଭଳି କାମ ପାଇଁ ବିଶେଷ ଜ୍ଞାନ ଦରକାର– ବିଶେଷକରି, ସାହିତ୍ୟ ଓ ଭାଷା କ୍ଷେତ୍ରରେ ।"

କଥାଗୁଡ଼ାକ କୌଣସିମତେ ଉତ୍ସାହଜନକ ନୁହେଁ । ଅଧଘଣ୍ଟାଏ ଧରି ଏହି କଥାବାର୍ତ୍ତା ଫଳରେ ପାଭେଲ୍ ଜାଣିପାରିଲା ଯେ, ଏଥିପାଇଁ ତା' ଜ୍ଞାନ ଉପଯୁକ୍ତ ନୁହେଁ । ପରୀକ୍ଷାମୂଳକ ଭାବରେ ଯେଉଁ ଲେଖାଟି ଲେଖିବା ପାଇଁ ତାକୁ ଦିଆଗଲା, ସେଥିରେ ତିନି ଡଜନ୍‌ରୁ ବେଶି ଶୈଳୀଗତ ଓ ବନାନ ଅଶୁଦ୍ଧି ପାଇଁ ନାଲି ପେନସିଲରେ ଗାର ପଡାହୋଇ ଫେରାଇ ଦିଆହେଲା ତାକୁ ।

"ଆପଣଙ୍କର ବେଶ୍ ଦକ୍ଷତା ଅଛି କମ୍ରେଡ୍ କୋର୍ଚ୍ଚାଗିନ୍ । କିଛି ଦିନ ଭଲକରି ପରିଶ୍ରମ କଲେ ଆପଣ ଭବିଷ୍ୟତରେ ଭଲ ଲେଖାଲେଖି କରିପାରିବେ ।" ସଂପାଦକ ମନ୍ତବ୍ୟ ହେଲେ । "ଏବେ କିନ୍ତୁ ଆପଣଙ୍କ ଲେଖାରେ ବ୍ୟାକରଣଗତ ତ୍ରୁଟି ଅଛି । ଆପଣଙ୍କ ଏ ଲେଖାଟିରୁ ମଧ୍ୟ ଜଣାଯାଉଛି ଯେ, ରୁଷ୍‌ଭାଷାରେ ବିଶେଷ ଦକ୍ଷତା ନାହିଁ ଆପଣଙ୍କର । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ପଢ଼ାପଢ଼ି କରିବା ପାଇଁ ସମୟ ମଧ୍ୟ ପାଇ ନାହାନ୍ତି ଆପଣ । ଦୁଃଖର କଥା, ଆମେ ଆପଣଙ୍କୁ କୌଣସି କାମରେ ନିୟୋଜିତ କରିପାରିବୁ ନାହିଁ, ଯଦିଓ ମୁଁ ଆଗରୁ କହିଛି ଯେ, ଆପଣଙ୍କର ବେଶ୍ ଦକ୍ଷତା ଅଛି । ଆପଣଙ୍କ ଲେଖାର ମୂଳ କଥାବସ୍ତୁ ରକ୍ଷାକରି ଯଦି ସଂପାଦନା କରାଯାଏ,

ତେବେ ଚମତ୍କାର ହେବ । ମାତ୍ର ଦେଖନ୍ତୁ, ଅନ୍ୟର ଲେଖା ସଂପାଦନା କରିବା ପାଇଁ ଆମର ଲୋକ ଦରକାର ।"

ନିଜ ବାଡ଼ିଟି ଉପରେ ଜୋର୍‌ରେ ଭାରାଦେଇ କୋର୍ଶ୍‌ଗିନ୍ ଉଠି ଠିଆହେଲା । ତା'ର ଡାହାଣ ଆଖିପତା ଡେଇଁଉଠିଲା ।

"ଠିକ୍ ଅଛି । ଆପଣଙ୍କ କଥା ମୁଁ ବୁଝୁଛି । କିଭଳି ସାମ୍ବାଦିକ ମୁଁ ବା ହେବି ? ଏକଦା ମୁଁ ଖୁବ୍ ଭଲ ଜାଳେଣୀ ଯୋଗାଣିଆ ଥିଲି ଓ ଇଲେକ୍ଟ୍ରିସିୟାନ୍ ଭାବରେ ବି ଖରାପ କାମ କରୁ ନଥିଲି । ଭଲ ଘୋଡ଼ା ଚଢ଼ା ଆସେ ମୋତେ । କମ୍‌ସୋମୋଲ୍ ଯୁବକ ଯୁବତୀଙ୍କୁ ଚଞ୍ଚଳ କରିପାରୁଥିଲି, ମାତ୍ର ମୁଁ ନିଜେ ବୁଝୁଛି, ଆପଣଙ୍କର ସାମ୍ମୁଖ୍ୟରେ ମୋ ଅବସ୍ଥାଟା ଶୋଚନୀୟ ହୋଇ ପଡ଼ିବ ।"

ହାତ ମିଳାଇ ବାହାରିଆସିଲା ସେ ।

କରିଡରରେ ବୁଲି ଯାଉଁ ଯାଉଁ ସେ ଥରଥର ହୋଇ ପଡ଼ିଯାଇଥାନ୍ତା, ଯଦି ପାଖରେ ଯାଉଥିବା ଗୋଟିଏ ସ୍ତ୍ରୀଲୋକ ଧରିପକାଇ ନଥାନ୍ତା ।

"କ'ଣ ହେଲା କମ୍ରେଡ୍ ? ଆପଣ ଅସୁସ୍ଥ ଦେଖାଯାଉଛନ୍ତି ?"

କେଇ ସେକେଣ୍ଡରେ ସଂବିତ୍ ଫେରିଲା ପାଭେଲ୍‌ର । ନିଜକୁ ନାରୀଜଣକଠାରୁ ଭଦ୍ରଭାବରେ ମୁକୁଳାଇ, ନିଜ ବାଡ଼ିରେ ଭାରା ଦେଇ ଦେଇ ଆଗେଇଗଲା ସେ ।

ସେହିଦିନଠାରୁ ପାଭେଲ୍ ଅନୁଭବ କରିପାରିଲା ଯେ, ତା' ଜୀବନ ନିଃଶେଷ ହୋଇ ଆସୁଛି । କାମ କରିବାର ପ୍ରଶ୍ନ ଉଠୁ ନାହିଁ ବର୍ତ୍ତମାନ । ଅଧିକନ୍ତୁ ଅଧିକ ସମୟ ପର୍ଯ୍ୟନ୍ତ ସେ ଶଯ୍ୟାଶାୟୀ ହୋଇ ରହୁଥିଲା । କେନ୍ଦ୍ର କମିଟି ତାକୁ କାମରୁ ଅବ୍ୟାହତି ଦେଇ, ତା' ପାଇଁ ପେନ୍‌ସନ ବନ୍ଦୋବସ୍ତ କରିଦେଲେ । ଯଥା ସମୟରେ 'ଅକର୍ମଣ୍ୟ' ବୋଲି ଗୋଟିଏ ସୁପାରିସ୍ ପତ୍ର ସହିତ ପେନ୍‌ସନ ଆସି ପହଞ୍ଚିଲା । କେନ୍ଦ୍ର କମିଟି କାଗଜପତ୍ର ସହିତ ପଇସାପତ୍ର ଦେଇଦେଲେ ତାକୁ ଓ ଜଣାଇଲେ ଯେ, ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇପାରେ ସେ ।

ମାର୍ଥାଠାରୁ ଗୋଟିଏ ଚିଠି ପାଇଲା ସେ । ମାର୍ଥା ତାକୁ ଆମନ୍ତ୍ରଣ ଜଣାଇଛି, ମସ୍କୋ ଆସି କିଛି ଦିନ ତା' ପାଖରେ ରହିବାକୁ ଓ ବିଶ୍ରାମ ନେବାକୁ । ପାଭେଲ୍ ମଧ୍ୟ ଇଚ୍ଛା କରିଥିଲା ମସ୍କୋ ଯିବା ପାଇଁ । କାରଣ ତା'ର କ୍ଷୀଣ ଆଶା ଥିଲା, ନିଖିଳ ୟୁନିଅନ୍ କେନ୍ଦ୍ରୀୟ କମିଟି ତାକୁ ଗୋଟାଏ କିଛି କାମ ଦେଇପାରନ୍ତି, ଯେଉଁଥିରେ ବିଶେଷ ବୁଲାବୁଲି ଦରକାର ହେବ ନାହିଁ । ମାତ୍ର ମସ୍କୋରେ ମଧ୍ୟ ତାକୁ ଉପଦେଶ ଦେଲେ ଡାକ୍ତରୀ ଚିକିତ୍ସା ପାଇଁ ଓ ଗୋଟିଏ ବିଖ୍ୟାତ ଡାକ୍ତରଖାନାରେ ତା' ପାଇଁ ସ୍ଥାନ ବ୍ୟବସ୍ଥା କରି ଦିଆହେଲା । ସେ ମନାକଲା ।

ନାଦ୍ୟା ପେଟେର୍ସନ୍ ଆଉ ମାର୍ଥା ଯେଉଁ ଫ୍ଲାଟ୍‌ରେ ରହୁଥିଲେ ସେଠି ପାଭେଲ୍‌ର ଊଣେଇଶଟି ଦିନ ରହୁଁ ରହୁଁ ବିତିଗଲା । ପାଭେଲ୍ ପ୍ରାୟ ଏକାକୀ ରହେ, କାରଣ ଦି' ଜଣଯାକ ସ୍ତ୍ରୀଲୋକ ସକାଳୁ କାମକୁ ଯାଆନ୍ତି ଏବଂ ସଂଧ୍ୟା ପୂର୍ବରୁ ଫେରନ୍ତି ନାହିଁ ।

ମାର୍ଭାର ସୁସଜ୍ଜିତ ଲାଇବ୍ରେରୀରୁ ବହି ପଢ଼ି ପଢ଼ି କାଳ କଟାଏ ପାଭେଲ୍ । ସନ୍ଧ୍ୟାଗୁଡ଼ିକ ତରୁଣୀ ଓ ସେମାନଙ୍କ ବନ୍ଧୁମାନଙ୍କ ଗହଣରେ ଭଲରେ କଟେ ।

କ୍ୟୁହାମ୍‌ଙ୍କ ଘରୁ ଚିଠି ଆସିଲା, ସେଠାକୁ ଯାଇଁ ତାଙ୍କୁ ଭେଟିବାକୁ । ସେଠାରେ ମଧ୍ୟ ଜୀବନ ଦୁର୍ବିସହ ହୋଇଉଠିଥିଲା ଓ ତା'ର ସାହାଯ୍ୟ ଲୋଡ଼ା ଥିଲା ।

ତେଣୁ ଦିନେ ସକାଳୁ ଗୁସ୍ୟାତ୍‌ନିକୋଭ୍ ଷ୍ଟ୍ରିଟ୍‌ର ଛୋଟ ବିଜନତା ଭରା ଫ୍ଲାଟ୍‌ଟିକୁ ଛାଡ଼ି ପାଭେଲ୍ ବାହାରିଲା । ରେଳଗାଡ଼ି ତାକୁ ବହନ କରି ନେଇଗଲା ଦକ୍ଷିଣ ଦିଗକୁ, ସମୁଦ୍ର ଆଡ଼କୁ—ସନ୍ତସନ୍ତିଆ ବର୍ଷଣମୁଖର ଶାରଦୀୟ ସମୟରୁ ଦକ୍ଷିଣ କ୍ରିମିୟାର ଉଷ୍ମ ଉପକୂଳକୁ ।

ଝରକା ପାଖରେ ବସି ବସି ସେ ଦେଖୁଥାଏ ଟେଲିଗ୍ରାଫ୍ ଖୁଣ୍ଟଗୁଡ଼ିକ ପଛକୁ ପଛକୁ ଉଡ଼ିଯାଉଥାନ୍ତି । ତା'ର ଆଖିପତା ଖୋଲାଥାଏ ଓ କଳା କଳା ଆଖିଦୁଇଟିରେ ଥାଏ ଦୃଢ଼ ଅଦମନୀୟ ଗୃହାଣୀ ।

# ଅଷ୍ଟମ ପରିଚ୍ଛେଦ

ତଳେ, ବହୁତଳେ ସମୁଦ୍ର ପିଟିହେଉଥାଏ ଆବୁଡ଼ାଖାବୁଡ଼ା ପଥରଗୁଡ଼ାକ ଉପରେ । ସୁଦୂର ତୁର୍କୀରୁ ଆଗତ ଶୁଖିଲା ଗରମ ପବନ ପିଟି ହେଉଥାଏ ମୁହଁରେ । ପୋତାଶ୍ରୟଟି ସମୁଦ୍ରରୁ ଏକ କଂକ୍ରିଟ୍ ବନ୍ଧ ଦ୍ୱାରା ରକ୍ଷିତ ହୋଇ ଅଙ୍କାବଙ୍କା ଭାବରେ ଯାଇଛି ସମୁଦ୍ର କୂଳକୁ । ତାକୁ ଭେଦକରି ସମୁଦ୍ର କୂଳେ କୂଳେ ଲାଗିରହିଥିବା ପାହାଡ଼ମାଳା ଆରପଟେ ଦିଶୁଥାଏ ସହର ସୀମାନ୍ତରେ ଛିଡ଼ା ହୋଇଥିବା ଛୋଟ ଛୋଟ ଧାଡ଼ି ଧାଡ଼ି ହୋଇ ଧଳା ଧଳା ଘରଗୁଡ଼ିକ ।

ସହର ବାହାରେ ଏହି ପୁରୁଣା ପାର୍କଟି ବେଶ୍ ଶାନ୍ତ । ପାର୍କରେ ଘାସର ଚଲାପଥ ଉପରେ ହାଉଆରେ ଭାସିଭାସି ଧୀରେ ଧୀରେ ଝରିପଡ଼ୁଥାଏ ମାପଲ ଗଛର ହଳଦିଆ ପତ୍ରସବୁ ।

ପାଭେଲ୍‌କୁ ଆଣିଥିବା ବୃଦ୍ଧ ପର୍ସିୟାନ୍ ଗାଡ଼ିବାଲା, ଏହି ଆଶ୍ଚର୍ଯ୍ୟ ସବାରଟି ଯେତେବେଳେ ଗାଡ଼ିରୁ ଓହ୍ଲାଇଲା ସେତେବେଳେ ତାକୁ ନ ପଚାରି ରହିପାରିଲା ନାହିଁ :

"ଏତେ ଜାଗା ଥାଉଁଥାଉଁ ଏଠିକି କାହିଁକି ଆସିଲେ ? ଏଠି ନାଁ ଅଛନ୍ତି ଝିଅ ! ନାଁ ଅଛି ଥିଏଟର ! ଶିଆଳ କେଇଟା ଛଡ଼ା ଆଉ କିଛି ନାହିଁ ଏଠି । ଏଠି କ'ଣ କରିବ ? ତା' ଅପେକ୍ଷା ତମକୁ ମୁଁ ବରଂ ସହରକୁ ଫେରାଇ ନେଇଯାଏଁ, ଚାଲ ବନ୍ଧୁ !"

ପାଭେଲ୍ ତା' ଭଡ଼ା ତୁଟାଇଦେଲା ଓ ବୃଦ୍ଧ ଫେରିଗଲା ।

ସତରେ ଭୟଙ୍କର ନିକାଞ୍ଚନ ଲାଗୁଥିଲା ପାର୍କଟା । ସମୁଦ୍ରକୁ ଦିଶୁଥିବା ଗୋଟାଏ

ନାସି ଉପରେ ବେଞ୍ଚଟାଏ ଦେଖି ବସିଲ୍ପ ପାଭେଲ୍, ମୃଦୁ କିରଣ ଢାଳୁଥିବା ଶାରଦୀୟ ସୂର୍ଯ୍ୟ ଆଡ଼କୁ ମୁହଁ କରି ।

ଏ ଜୀବନକୁ ନେଇ ସେ କ'ଣ କରିପାରିବ, ପୁଣି ଥରେ ଭାବି ଦେଖିବା ପାଇଁ ଏ ନିର୍ଜନ ଜାଗାକୁ ସେ ଆସିଛି, ସମସ୍ତ ଅବସ୍ଥାକୁ ପର୍ଯ୍ୟାଲୋଚନା କରି କୌଣସି ଏକ ସିଦ୍ଧାନ୍ତ ନେବାର ସମୟ ଆସିଛି ।

କ୍ୟୁହାମ୍ ପରିବାରକୁ ଟା'ର ଦ୍ୱିତୀୟଥର ଯାତ୍ରାବେଳେ, ସେମାନଙ୍କର ପାରିବାରିକ କଳିକଜିଆ ଚୂଡ଼ାନ୍ତ ଅବସ୍ଥାରେ ପହଞ୍ଚିଲ୍ପ । ତା'ର ଆସିବା ଖବର ଜାଣି ବୁଢ଼ା ରାଗରେ ତାତିଗଲ୍ପ । ସ୍ୱାଭାବିକ ଭାବରେ କୋଗ୍'ଗିନ୍ ଉପରେ ଦାୟିତ୍ୱ ପଡ଼ିଲ୍ପ ତାକୁ ବାଧା ଦେବାରେ ନେତୃତ୍ୱ ନେବା ପାଇଁ । ବୁଢ଼ା ଏଥର ଆଶ୍ଚର୍ଯ୍ୟଜନକ ଭାବରେ ସ୍ତ୍ରୀ ଓ ଝିଅମାନଙ୍କଠାରୁ ପ୍ରତିରୋଧର ସମ୍ମୁଖୀନ ହେଲ୍ପ । ପାଭେଲ୍ ପହଞ୍ଚିବା ଦିନଠାରୁ ଘରଟା ଦୁଇ ଶତ୍ରୁ ପକ୍ଷରେ ବିଭକ୍ତ ହୋଇଗଲ୍ପ । ବାପା ମା'ଙ୍କ ପାଇଁ ଛୋଟ ଅଧ ବଖରାଟିର ମଝି କବାଟରେ ତାଲ୍ପ ପଡ଼ିଗଲ୍ପ ଓ ଗୋଟିଏ ପାଖିକିଆ ବଖରା କୋଗ୍'ଗିନ୍‌କୁ ଭଡ଼ା ଦିଆଗଲ୍ପ । ଭଡ଼ାଟା ପାଭେଲ୍ ଅଗ୍ରିମ ଦେଇଦେଲ୍ପ ଓ ବୁଢ଼ା ଏ ବ୍ୟବସ୍ଥାରେ କୌଣସିମତେ ଶାନ୍ତ ପଡ଼ିଲ୍ପ ଟିକେ । ଝିଅମାନେ ଭିନ୍ନ ହୋଇ ଯାଇଛନ୍ତି, ତେଣୁ ଆଉ ଏଣିକି ସେ ତାଙ୍କୁ ସାହାଯ୍ୟ କରିବାକୁ ଆଶା କରିବା ଅସମ୍ଭବ ।

କୂଟନୈତିକ କାରଣରୁ ଆଲ୍‌ବିନା ତାଙ୍କ ସ୍ୱାମୀ ପାଖରେ ରହିଲେ । ବୁଢ଼ା ତା ଭାଗ ଘର ଭିତରେ ରୁହେ ଓ ସେ ଘୃଣା କରୁଥିବା ଲୋକମାନଙ୍କ ଆଡ଼କୁ ଆଦୌ ଆସେ ନାହିଁ । ବାହାରେ ଅଗଣାରେ ମନଇଚ୍ଛା ପାଟିକରେ ଜଣାଇବାକୁ କେବଳ ଯେ, ଏବେ ବି ସେ କର୍ତ୍ତା ଅଛି ଘରର ।

ସମବାୟ ସମିତିରେ କାମ କରିବାକୁ ଯିବା ଆଗରୁ ବୁଢ଼ା କ୍ୟୁହାମ୍ ଜୋତା ତିଆରି ଓ ବଢ଼େଇ କାମ କରି ପେଟ ପୋଷୁଥିଲ୍ପ । ଏଣୁ ଘର ପଛକଡ଼କୁ ଏକ ଛୋଟିଆ କାରଖାନା ଭଳି କରିଥିଲ୍ପ ସେ । ନିଜ ପ୍ରତିବାଦୀକୁ ବିରକ୍ତ କରିବା ପାଇଁ ସେ ନିଜ କାମ ଟେବୁଲ୍‌କୁ ଏଣିକି ଅଗଣା ଭିତରକୁ ଉଠାଇଆଣି, ଠିକ୍ ପାଭେଲ୍‌ର ଝରକାତଳେ ରଖି ଭୟଙ୍କରଭାବରେ ଘଣ୍ଟା ଘଣ୍ଟା ଧରି ହାତୁଡ଼ି ପାହାର ପକାଇ ଶବ୍ଦ କରିବାକୁ ଲଗିଲ୍ପ । ସେଥିରୁ କେବଳ ଏତିକି ଦୁଷ୍ଟ ମାନସିକ ଶାନ୍ତି ପାଏ ଯେ, ଯାହାହେଉ ସେ କୋଗ୍'ଗିନ୍‌ର ପଢ଼ାପଢ଼ିରେ ବ୍ୟାଘାତ ଆଣିପାରିଛି ।

"ହଉ, ହଉ, ରହ ମୁଁ ତୋତେ ଏଠୁ ବାହାରକରି ଛାଡ଼ୁଛି !" ମନକୁ ମନ ଗୁଣୁ ଗୁଣୁ କରି କହେ ସେ ।

ଅନେକ ଦୂରରେ ଦିଗ୍‌ବଳୟ ପାଖରେ ଷ୍ଟିମରଟିଏ କଳା ଧୂଆଁର ଏକ ରେଖା ଟାଣି ଆଗେଇ ଯାଉଥିଲ୍ପ । ଦଳେ ଗାଙ୍ଗଚିଲ୍ପ ବିକଟ ଚିତ୍କାର କରି ସମୁଦ୍ର ଲହଡ଼ି ଉପରେ ଡେଣା ପିଟିହୋଇ ଉଠିଯାଉଥାନ୍ତି ।

ଗାଲ୍ପରେ ହାତ ପାପୁଲି ଦୁଇଟି ଭାରାଦେଇ ପାଭେଲ୍ ନିଜ ଚିନ୍ତାରେ ବୁଡ଼ିଯାଇଥିଲ୍ପ ।

ତା'ର ମନଶ୍ଚକ୍ଷୁରେ ନିଜର ସମଗ୍ର ଜୀବନ ଚଳଚ୍ଚିତ୍ର ଭଳି ଭାସିଉଠିଲା ପିଲାଟି ଦିନରୁ ଆଜ ପର୍ଯ୍ୟନ୍ତ । ଏ ଚବିଶ ବର୍ଷ ସେ କିମିତି ବିତାଇଛି ? ମୂଲ୍ୟ ଥାଇ ନା ମୂଲ୍ୟହୀନଭାବରେ ? ଜୀବନର ବର୍ଷକ ପରେ ବର୍ଷ, ଗୋଟି ଗୋଟି କରି ନିରିଖି ନିରିଖି ତଉଲି ଦେଖିଲା ସେ ନିରପେକ୍ଷ ବିଗ୍ଭରଧାରାରେ । ଆଶ୍ୱସ୍ତ ହେଲା ଯେ, ଜୀବନକୁ ସେ ମୂଲ୍ୟହୀନ, ଅର୍ଥହୀନଭାବରେ ବିତାଇ ନାହିଁ । ଜୀବନରେ ଭୁଲତ୍ରୁଟି ଅନେକ କରିଛି ସେ ହୁଏତ । ସେ ଭୁଲତ୍ରୁଟି ଯୌବନର, ଅଜ୍ଞତାର । ସୋଭିଏତ୍ ଶକ୍ତି ପାଇଁ ବିପ୍ଳବର ଝଡ଼ ଦିନଗୁଡ଼ିକରେ ସେ ଯୁଦ୍ଧ କରିଛି ଆଉ ବିପ୍ଳବର ରକ୍ତ ପତାକାରେ ଲଗେଇ ଦେଇଛି ନିଜ ଜୀବନର ଲାଲ ରକ୍ତ କେଇବିନ୍ଦୁ ।

ଶରୀରର ଶେଷ ଶକ୍ତି ଥିଲା ପର୍ଯ୍ୟନ୍ତ ସେ ପାର୍ଟି ପଦବୀରେ ରହିଛି । ଆଉ ବର୍ତ୍ତମାନ ଯୁଦ୍ଧ କର୍ମକ୍ଷେତ୍ରରେ ନିଜ ସ୍ଥାନରେ ରହି ନପାରି ଟଳିପଡ଼ିଲା ପରେ ଯୁଦ୍ଧକ୍ଷେତ୍ରର ଡାକ୍ତରଖାନାରେ ରହିବା ବିନା ତା'ର ଗତ୍ୟନ୍ତର ନାହିଁ । ମନେପଡ଼ିଲା ତା'ର ଓ୍ୱାର୍ସା ଆକ୍ରମଣ କରିବା ସମୟର କାହାଣୀ – କିଭଳି ଜଣେ ଆଘାତ ପାଇ ଟଳିପଡ଼ିଲା । ନିଜ ଘୋଡ଼ାର ଖୁରାତଳେ ମାଟିରେ ଲେଟିପଡ଼ିଲା ସେ । କମ୍ରେଡ୍‌ମାନେ ତା'ର ଶୀଘ୍ର ଶୀଘ୍ର ତା' କ୍ଷତସ୍ଥାନକୁ ବ୍ୟାଣ୍ଡେଜ କରିଦେଇ, ଷ୍ଟ୍ରେଚର-ବାହକମାନଙ୍କ ଜିମାରେ ତାକୁ ଛାଡ଼ିଦେଇ, କିଭଳି ଶତ୍ରୁମାନଙ୍କ ପିଛା କରିବା ପାଇଁ ଧାଇଁଗଲେ । ଜଣେ ସୈନିକ ପାଇଁ ସାରା ଫଉଜର ଆଗେଇ ଯିବାଟା ଅଟକି ରହି ନପାରେ ! ଏକ ମହାନ୍ ଉଦ୍ଦେଶ୍ୟ ପାଇଁ ସଂଗ୍ରାମ ଇଏ । ଏପରି ହେବା ସମ୍ଭବ । ଯା'ର ହୁଏତ ବ୍ୟତିକ୍ରମ ଅଛି ସତ୍ୟ । ସେ ଯୁଦ୍ଧରେ ଦେଖିଛି, କମାଣ ବହିନେଇ ଯାଉଥିବା ଗାଡ଼ିରେ ପାଦହୀନ ମେସିନ୍‌ଗନ୍ ଗ୍ଭଳକମାନଙ୍କୁ । ଏହି ପଙ୍ଗୁମାନେ ଶତ୍ରୁ ସୈନ୍ୟମାନଙ୍କ ମଧ୍ୟରେ ଭୟଙ୍କର ଆତଙ୍କ ସୃଷ୍ଟି କରିଛନ୍ତି । ସେମାନଙ୍କ ଗୋଳାବର୍ଷଣ ମୃତ୍ୟୁ ଆଉ ଧ୍ୱଂସ ବହିଆଣିଛି ଶତ୍ରୁ ପାଇଁ । ସେମାନଙ୍କର ଇସ୍‌ପାତ ଭଳି ଅଦମ୍ୟ ସାହସ, ଅଭ୍ରାନ୍ତ ନିଶାଣା ସେମାନଙ୍କୁ ନିଜ ନିଜର ୟୁନିଟ୍‌ର ଗର୍ବ କରି ତୋଳିଛି । ମାତ୍ର ଏଭଳି ଲୋକଙ୍କ ସଂଖ୍ୟା କମ୍ ।

ଏବେ ପରାଜୟ ମାନିନେଇ ସାରିଲା ପରେ ଓ ନିଜ ସ୍ଥାନକୁ ଫେରିଯିବାର ଆଉ କୌଣସି ଆଶା ନ ଦେଖିଲା ପରେ କ'ଣ ସେ କରିବ ? ବାଝାନୋଭାଙ୍କଠାରୁ କ'ଣ ସେ ଶୁଣି ନାହିଁ ଯେ, ଭବିଷ୍ୟତରେ ଜୀବନରେ ତା' ପାଇଁ ଏହାଠାରୁ ଅନେକ ଅଧିକ କଷ୍ଟ ଗଚ୍ଛିତ ହୋଇ ଅଛି । କ'ଣ କରାଯାଇପାରିବ ? ଅମୀମାଂସିତ ଏହି ପ୍ରଶ୍ନଟି ତା ନିକଟରେ ଏକ ଅତଳସ୍ପର୍ଶୀ ଗହ୍ୱରର ମୁଖ ବିସ୍ତାର କରି ରହିଛି !

ଜୀବନର ସବୁଠାରୁ ଆକାଂକ୍ଷିତ ବସ୍ତୁ ଲଢ଼ିବାର ସାମର୍ଥ୍ୟ ହରାଇଲା ପରେ ବଞ୍ଚିରହି ଲାଭ କ'ଣ ? ଆଜି ପାଇଁ ଓ ବ୍ୟର୍ଥ ଆଗାମୀକାଲି ପାଇଁ ବଞ୍ଚିବାର ମୂଲ୍ୟବୋଧ କ'ଣ ତା' ପାଇଁ ? ଦିନଗୁଡ଼ାକ କିଭଳି କଟାଇବ ? ବଞ୍ଚିରହିବ କେବଳ ନିଃଶ୍ୱାସ-ପ୍ରଶ୍ୱାସ ନେବା ପାଇଁ, ଖାଇବା ପାଇଁ, ପିଇବା ପାଇଁ ? ଅସହାୟ ପଥକଡ଼ର ନୀରବଦ୍ରଷ୍ଟା ହୋଇ କେବଳ ଦେଖିଯିବ, ଆଗେଇଯିବା ପାଇଁ କିଭଳି କମ୍ରେଡମାନେ ସଂଗ୍ରାମ କରୁଛନ୍ତି ?

ଦୁନିଆ ପାଇଁ ଏକ ବୋଝ ହୋଇ ବଞ୍ଚିରହିବ ? ଏଇ ଯେଉଁ ଦେହଟା ତା'ର ବିଶ୍ୱାସଘାତକତା କରିଛି ତାକୁ ବିନଷ୍ଟ କରିଦେବା କ'ଣ ଭଲ ନୁହଁ ! ହୃଦୟ ଉପରେ ଗୋଟିଏ ବୁଲେଟ୍ ଚଳେଇ ଦିଅ , ସବୁ ଶେଷ ହୋଇଯିବ । ତାହାହିଁ ହେବ ସାର୍ଥକ ଜୀବନର ସମୟୋଚିତ ପରିସମାପ୍ତି । ଦୁଃଖରେ ଗୁମୁରିଉଠି ନିଜକୁ ଶେଷ କରିଦେଇଥିବା ସୈନିକକୁ କିଏ ଦୋଷ ଦେଇପାରିବ ?

ନିଜ ପକେଟ୍‌ରେ ଥିବା ବ୍ରାଉନିଂ-ପିସ୍ତଲର ଚେପ୍‌ଟା ଗଠନର ସ୍ପର୍ଶ ଅନୁଭବ କଲା ସେ । ଆଙ୍ଗୁଠିଗୁଡ଼ାକ ତାକୁ ଜାବୁଡ଼ି ଧରିଲେ ଓ ଧୀରେ ଧୀରେ ସେ ବାହାର କଲା ଅସ୍ତ୍ରଟିକୁ ।

"କିଏ ଜାଣିଥିଲା ଯେ , ତୁ ଶେଷକୁ ଏଇଆ କରିବୁ ?"

ପିସ୍ତଲ୍‌ର ନଳୀଟା ନିସ୍ତେଜ ଘୃଣାର ଆଖି ମେଲି ତାକୁ ଯେମିତି ଚାହିଁରହିଲା । ପାଭେଲ୍ ଆଣ୍ଠୁ ଉପରେ ପିସ୍ତଲ୍‌ଟିକୁ ରଖି ଆତ୍ମଗ୍ଲାନିର ସହିତ ତାକୁ ଗାଳି ଦେଲା ।

"ଶସ୍ତା ବୀରତ୍ୱ ଏଗୁଡ଼ାକ ବନ୍ଧୁ ! ଯେକୌଣସି ନିର୍ବୋଧ ନିଜକୁ ଏଭଳି ଗୁଳି କରିପାରେ । ଇଏତ ସବୁଠାରୁ ସହଜ , କାପୁରୁଷର ପନ୍ଥା ! ଜୀବନର ଭାର ଯେତେବେଳେ ଦୁର୍ବହ ହେବ , ମୁଣ୍ଡ ଉପରେ ଗୋଟିଏ ବୁଲେଟ୍‌ରେ ଶେଷ କରିଦେଇ ପାରିବୁ । ମାତ୍ର ଜୀବନର ସ୍ୱାଦ ଅନୁଭୋଗ କରିବାକୁ ଚେଷ୍ଟା କରିଛୁ ତୁ ? ଏ ଲୌହ ବନ୍ଧନରୁ ମୁକୁଳିବାକୁ ଯେତେ ଯାହା ସମ୍ଭବ ସବୁ କ'ଣ ତୁ କରିସାରିଛୁ ଠିକ୍ ? ନୋଭୋଗ୍ରାଦ୍-ଭୋଲିନ୍‌ସ୍କିର ଯୁଦ୍ଧକଥା କ'ଣ ତୁ ଭୁଲିଗଲୁଣି , ଦିନଟା ଭିତରେ ଆମକୁ ସତର ଥର ଆକ୍ରମଣ କରିବାକୁ ପଡ଼ିଥିଲା , ଶେଷରେ ସବୁ ଦଖଲ କରିବା ପର୍ଯ୍ୟନ୍ତ ? ରଖ୍ ତୋ ପିସ୍ତଲ୍ । ଏ ବିଷୟରେ କାହାରିକୁ କେବେ କିଛି କହ ନାଁ । ଜୀବନ ଅସହ୍ୟ ହୋଇ ଉଠିଲା ବେଳେ କିଭଳି ବଞ୍ଚିବାକୁ ହୁଏ , ଶିଖ୍ । ଜୀବନକୁ ମୂଲ୍ୟବାନ କର ।"

ରାସ୍ତା ଉପରକୁ ଓହ୍ଲେଇଆସିଲା ସେ ଉଠିପଡ଼ି । ଯାଉଥିବା ଜଣେ ପାହାଡ଼ୀ ତାକୁ ତା' ଶଗଡ଼ରେ ବସାଇ ଆଣିଲା । ସହରରେ ପହଞ୍ଚିଲା ପରେ ଶଗଡ଼ରୁ ଓହ୍ଲାଇ ଖଣ୍ଡେ ଖବରକାଗଜ କିଣି ଦେମ୍ୟାନ୍ ବେଦ୍‌ନୀ କ୍ଲବ୍‌ରେ ହେଉଥିବା ସହରର ପାର୍ଟିସଭାର ଘୋଷଣା ପଢ଼ିଲା । ସେଦିନ ରାତିରେ ଘରକୁ ଫେରିଲାବେଳକୁ ଅନେକ ଡେରି ହୋଇଯାଇଥିଲା । ସଭାରେ ସେ ଏକ ଭାଷଣ ମଧ୍ୟ ଦେଲା । ମାତ୍ର ତାକୁ ଜଣା ନଥିଲା ଯେ , ବେଶି ଲୋକଙ୍କର ସଭାରେ ଇଏ ତା'ର ଶେଷ ଭାଷଣ ।

* * *

ସେ ଘରକୁ ଫେରିଲାବେଳକୁ ତାୟା ଚେଇଁଥିଲା । ଏତେ ବେଳଯାଏ ପାଭେଲ୍ କୁଆଡ଼େ ଗଲା ବୋଲି ଚିନ୍ତିତ ଥିଲା ସେ । କ'ଣ ହେଲା ତା'ର ? ସକାଳେ ତା' ଆଖିରେ ଦେଖିଥିବା ବିଷାଦପୂର୍ଣ୍ଣ ଶୀତଳ ଚାହାଣୀ ମନେ ପଡ଼ିଲା ତା'ର । ସବୁବେଳେ ପାଭେଲ୍‌ର

ମୁହଁ ହସହସ ଓ ଆଖି ଉଜ୍ଜ୍ୱଳ ଥାଏ । କେବେହେଲେ ନିଜ ବିଷୟରେ କହିବାକୁ ଭଲ ଲାଗେ ନାଁ ତାକୁ । ଆଜି କିନ୍ତୁ ସେ ଲକ୍ଷ୍ୟ କରିଥିଲା ପାଭେଲ୍ କୌଣସି ଏକ ଦାରୁଣ ମାନସିକ ଯନ୍ତ୍ରଣାରେ ଭୋଗୁଛି ।

ମା'ଙ୍କ କୋଠରୀର ଘଡ଼ିରେ ଦୁଇଟା ବାଜିବାର ଶବ୍ଦ ହେଲା ମାତ୍ରେ ସେ ଫାଟକ ଫିଟାଇବାର ଶବ୍ଦ ଶୁଣିଲା । ଜ୍ୟାକେଟ୍‌ଟା ଗଳେଇଦେଇ କବାଟ ଫିଟାଇବାକୁ ଗଲା ସେ । ନିଜ କୋଠରୀରେ ଶୋଇ, ନିଦ ବାଉଳାରେ ଲ୍ୟୋଲ୍ୟା ଗୁଣୁଗୁଣୁ ହୋଇ କ'ଣ କହିଲା ।

"ଓଃ ... ମୋର ଗୋଟାଏ ଛାନିଆଁ ପଶିଯାଇଥିଲା", ପାଭେଲ୍ ପଶିଲାବେଳକୁ ଫୁସ୍‌ଫୁସ୍ କରି କହିଲା ତାୟା ।

"ମୁଁ ବଞ୍ଚିଥିବାଯାଏ ମୋର କିଛି ହବ ନାହିଁ ତାୟା", ସେ ବି ଅନୁଚ୍ଚ କଣ୍ଠରେ ଉତ୍ତର ଦେଲା, "ଲ୍ୟୋଲ୍ୟା ଶୋଇଲାଣି ? ମୋତେ କାହିଁକି ଆଦୌ ନିଦ ମାଡୁ ନାହିଁ । ତମକୁ କେତେ କଥା କହିବାର ଅଛି । ଚାଲ, ତମ କୋଠରୀକୁ ଯିବା । ଲ୍ୟୋଲ୍ୟା କାହିଁକି ମିଛରେ ଉଠିବ ?"

ତାୟା ସାମାନ୍ୟ ଦ୍ୱିଧା ବୋଧକଲା । ଅନେକ ଡେରି ହେଲାଣି । ଏତେ ରାତିରେ କେମିତି ସେ ତାକୁ ନିଜ କୋଠରୀକୁ ଆସିବାକୁ ଡାକିବ ? ମା' କ'ଣ ଭାବିବ ? ମାତ୍ର ପାଭେଲ୍ କାଳେ ମନରେ ଆଘାତ ପାଇବ, ସେଥି ପାଇଁ ସେ ତା ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ପାରିଲା ନାହିଁ । କ'ଣ ବା ପାଭେଲ୍‌ର କହିବାକୁ ଥାଇପାରେ ? ମନେ ମନେ ଭାବୁଥାଏ ସେ, ତାକୁ ନିଜ କୋଠରୀକୁ ଆଗେଇ ଆଣିବା ବେଳେ ।

ଈଷତ୍ ଆଲୋକିତ ବଖରାଟିରେ, ତା' ମୁହାଁମୁହିଁ ବସି ପାଭେଲ୍ ଆରମ୍ଭ କଲା, "କଥାଟା ହେଲା ତାୟା, ଜୀବନ ତା' ଗତିପଥ ଏଭଳି ପରିବର୍ତ୍ତିତ କରେ, ବେଳେବେଳେ ତମେ ଆଶ୍ଚର୍ଯ୍ୟ ହେବ । ଗତ କେଇଦିନ ହେଲା ମୁଁ ସେଇକଥା ଭାବି ଭାରି ଦୁଃଖ ପାଉଥିଲି । ମୁଁ ଜାଣିପାରୁ ନାହିଁ ଯେ, ବଞ୍ଚିବି କେମିତି ? ଜୀବନଟା କେବେ ଏତେ ଅନ୍ଧକାର ମନେ ହୋଇ ନି ।" ଏତେ ପାଖକୁ ଲାଗି ସେ ବସିଥିଲା ଯେ, ତା'ର ନିଃଶ୍ୱାସ ବି ତାୟା ଦେହରେ ବାଜୁଥିଲା, ସେ ନୀଚ ଗଳାରେ କହୁଥାଏ, "ମାତ୍ର ଆଜି ମୋ ନିଜ ବ୍ୟକ୍ତିଗତ 'ରାଜନୈତିକ ବ୍ୟୁରୋ'ର ବୈଠକ ବସାଇ ଏକ ଅତି ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ କରିଛି । ମୁଁ ତମକୁ ଯାହା କହିବାକୁ ଯାଉଛି, ତାକୁ ଶୁଣି ଆଶ୍ଚର୍ଯ୍ୟ ହୋଇଯାଅ ନାହିଁ ।"

ଗଲା କେଇମାସ ହେଲା ସେ ଯାହା ଯାହା ଅଙ୍ଗେ ନିଭେଇଛି, ସବୁ କହିଲା ତାକୁ । ପାର୍କରେ ତା'ମନରେ କି ଆନ୍ଦୋଳନ ଚାଲିଥିଲା, ତାହା ମଧ୍ୟ କହିଲା ।

"ଏଇ ହେଲା ଅବସ୍ଥା । ଏବେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା । ଏ ଘରେ ଝଡ଼ ଏଇ ଆରମ୍ଭ ହେଲା ମାତ୍ର । ଆମକୁ ମୁକ୍ତ ପବନକୁ ବାହାରିଯିବାକୁ ପଡ଼ିବ ଏବଂ ଏ ଗହ୍ୱରର ଯେତେଦୂର ସମ୍ଭବ ସେତେ ଦୂରକୁ । ନୂଆ କରି ଆମକୁ ଜୀବନ ଆରମ୍ଭ କରିବାକୁ ହେବ । ଲଢ଼େଇରେ ଯେତେବେଳେ ଯୋଗ ଦେଇଛି ଶେଷ ଯାଏ ମୋତେ ଯିବାକୁ ହେବ । ଆମର

ଜୀବନ – ତମର ଓ ମୋର – କାହାର ଆଦୌ ସୁଖକର ନୁହେଁ । ମୁଁ ଚାହୁଁଛି ସେ ଜୀବନରେ ଉଷ୍ଣତା ଆଣିବା ପାଇଁ । କ'ଣ କହୁଛି ବୁଝିପାରୁଛ ? ତମେ ମୋ ଜୀବନର ସହଚରୀ ... ମୋ ସ୍ତ୍ରୀ ହୋଇପାରିବ ?"

ତାୟା ତା'ର ସ୍ୱୀକାରୋକ୍ତିରେ ଗଭୀରଭାବେ ମୁଗ୍‌ଧ ହୋଇଯାଇଥିଲା । ମାତ୍ର ଶେଷ କଥା ତାକୁ ବିଚଳିତ କଲା ।

"ଆଜି ରାତିରେ ମୁଁ ତମଠାରୁ ଉତ୍ତର ଚାହୁଁ ନାହିଁ", କହିଚାଲିଲା ସେ, "ସାବଧାନତା ସହକାରେ ବିଚାର କର କଥାଟାକୁ । ମୁଁ ଭାବୁଛି, ତମେ ବୋଧହୁଏ ବୁଝିପାରୁନ, ଏଭଳି କଥାଟା ଏମିତି ସିଧାସଳଖଭାବରେ ପ୍ରେମ ପ୍ରେମ ନହୋଇ ହୋଇପାରିବ କେମିତି ? ଦେଖ, ସେସବୁ ବାଜେ କଥାରେ ମୋର ଦରକାର ନାହିଁ ! ମୁଁ ତମକୁ ମୋ ହାତ ଦେଉଛି । ହେଇ, ନିଅ ! ମୋତେ ବିଶ୍ୱାସ କଲେ ପ୍ରତାରିତ ହେବ ନାହିଁ । ଆମେ ପରସ୍ପରକୁ ଅନେକ କିଛି ଦେଇପାରିବା । ଏଇଥି ମୁଁ ଭାବି ଠିକ୍ କରିଛି – ଆମର ଏକାତ୍ମତା ରହିବ, ଯେତେଦିନ ପର୍ଯ୍ୟନ୍ତ ତମେ ଜଣେ ସଚ୍ଚା ମଣିଷ ନପାଇଚ । ସେଦିଗରେ ସାହାଯ୍ୟ ନ କରିପାରିଲେ ମୋର କିଛି ଦାମ୍ ନାହିଁ । ସେପର୍ଯ୍ୟନ୍ତ ଆମର ଘନିଷ୍ଠତା ତୁଟାଇବା ନାହିଁ ଆମେ । ମାତ୍ର ତମେ ସବୁ ଜାଣି ଠିକ୍ ମଣିଷ ବନିଗଲେ ଏସବୁର କିଛି ଲୋଡ଼ା ରହିବ ନାହିଁ – ତମେ ମୁକ୍ତ ହୋଇଯିବ । କିଏ ଜାଣେ କ'ଣ ଘଟିବ ? ମୁଁ ସଂପୂର୍ଣ୍ଣଭାବରେ ପଙ୍ଗୁ ହୋଇଯାଇପାରେ । ସେଭଳି ଅବସ୍ଥାରେ ମନେ ରଖ, ତମେ ଯେପରି ମୋ ସହିତ ବାନ୍ଧି ହୋଇଯାଇଛ ବୋଲି ବିଚାରିବା ଉଚିତ ନୁହେଁ ।"

କେଇ ମୁହୂର୍ତ୍ତ ପାଇଁ ନୀରବ ହୋଇଗଲା ସେ । ତା'ପରେ ନରମ, କୋମଳ ଗଳାରେ କହିଲା :

"ବର୍ତ୍ତମାନ ପାଇଁ ମୁଁ ତମକୁ ମୋର ବନ୍ଧୁ ରୂପରେ ଦେଖିବାକୁ ଚାହେଁ । ଭଲ ପାଇବାକୁ ଚାହେଁ ।"

ଶାନ୍ତ ମନରେ ତାୟାର ଆଙ୍ଗୁଠିଗୁଡ଼ିକ ନିଜ ହାତରେ ଧରି ରଖିଲା ସେ, ସତେ ଯେମିତି ତାୟା ମତ ଦେଇସାରିଛି ।

"ତମେ କଥା ଦେଉଛ, ମୋତେ କେବେ ଛାଡ଼ିଯିବ ନାହିଁ ?"

"ମୁହଁର କଥା କେବଳ ପ୍ରମାଣ ହୋଇ ପାରେ ନାହିଁ । ମାତ୍ର ତମର ବିଶ୍ୱାସ କରିବା ଉଚିତ ଯେ, ମୋ ଭଳି ଲୋକେ ନିଜର ବନ୍ଧୁମାନଙ୍କ ସହିତ ବିଶ୍ୱାସଘାତକତା କରନ୍ତି ନାହିଁ । ମୁଁ ମଧ୍ୟ ବିଶ୍ୱାସ କରେ ଯେ, ସେମାନେ ମୋ ସହିତ କେବେ ପ୍ରବଞ୍ଚନା କରିବେ ନାହିଁ ।" ତିକ୍ତ ଗଳାରେ କହିଲା ସେ ।

"ଏଇ ରାତିରେ ମୁଁ ତମକୁ ଉତ୍ତର ଦେଇ ପାରିବି ନାହିଁ । ଏତେ ଚଞ୍ଚଳ...", ତାୟା କହିଲା ।

ଉଠିଲା ପାଭେଲ୍ ।

"ଶୋଇବାକୁ ଯାଅ ତାୟା, ଭୋର ହୋଇ ଆସିଲାଣି ।"

ନିଜ କୋଠରୀକୁ ଯାଇ ପୋଷାକପତ୍ର ନ ବଦଳାଇ ଗଡ଼ିପଡ଼ିଲା ବିଛଣାରେ ପାଭେଲ୍ । ତକିଆରେ ମୁଣ୍ଡଟି ରଖିବାମାତ୍ରେ ଆଖିକୁ ନିଦ ଆସିଗଲା ତା'ର ।

ପାର୍ଟି ଗ୍ରନ୍ଥାଗାରରୁ ଆଣିଥିବା ବହିଗୁଡ଼ିକ ପାଭେଲ୍ ଘରର ଝରକାପାଖରେ ଥିବା ଟେବୁଲଟି ଉପରେ ଗଦା ହୋଇଥାଏ । ଆହୁରି ମଧ୍ୟ ଥାଏ କେତୋଟି ଖବରକାଗଜ, ନୋଟ୍‌ଖାତା ଟିପାଟିପିରେ ପୂର୍ଣ୍ଣ ହୋଇ । ସାରା ଘରଟିର ଆସବାବପତ୍ର ହେଲା ଗୋଟିଏ ଖଟ, ଦୁଇଟି ଚଉକି ଓ ବିଭିନ୍ନ ସ୍ଥାନରେ କଳା ଓ ଲାଲ ପତାକା ପୋତା ହୋଇଥିବା ଚୀନ୍‌ର ଏକ ବିରାଟ ମାନଚିତ୍ର । ମାନଚିତ୍ରଟି ତା'ର ଓ ତାୟାର ବଖରାର ମଝି କବାଟ ଉପରେ ଝୁଲୁଥାଏ । ସ୍ଥାନୀୟ ପାର୍ଟି କମିଟି ପାଭେଲ୍‌କୁ ବହି ଓ ପତ୍ରପତ୍ରିକା ଯୋଗାଇଦେବାକୁ ରାଜି ହୋଇଥାନ୍ତି ଓ ସ୍ଥାନୀୟ ସର୍ବବୃହତ୍ ସାଧାରଣ ପାଠାଗାରକୁ ନିର୍ଦ୍ଦେଶ ଦେଇଥାନ୍ତି, ପାଭେଲ୍ ଯାହା ଚାହିଁବ, ତାହା ଯୋଗାଇଦେବାକୁ । ଅଳ୍ପଦିନ ପରେ ବିରାଟ ବିରାଟ ବହି ପାର୍ଶଲ୍ ସବୁ ପହଞ୍ଚିବାକୁ ଲାଗିଲା । ଭୋରରୁ ଉଠି ସେ ଯେମିତିଭାବରେ ସାରାଦିନ ବହି ଉପରେ ଝୁଙ୍କିପଡ଼ି ଟିପାଟିପି କରୁଥାଏ ଓ ମଝିରେ କେବଳ ମଧ୍ୟାହ୍ନ ଭୋଜନ ଏବଂ ରାତ୍ରି ଭୋଜନ ପାଇଁ ଉଠେ, ସେଥିରେ ଲ୍ୟୋଲ୍ୟା ବିସ୍ମିତ ହୋଇଯାଏ । ପ୍ରତିଦିନ ସନ୍ଧ୍ୟା ବେଳେ ଦୁଇ ଭଉଣୀଙ୍କ ସହିତ କଥାବାର୍ତ୍ତା କରି ବିତାଇ, ଦିନସାରା ଯାହା ପଢ଼ିଥାଏ, ତାହା କୁହେ ।

ଅଧରାତି ପରେ ମଧ୍ୟ ବୃଦ୍ଧ କ୍ୟୁସାମ୍ ଲକ୍ଷ୍ୟ କରନ୍ତି, ତାଙ୍କର ଅନାହୂତ ବାସିନ୍ଦାଟିର ବଖରାର ଝରକାବାଟେ ସଂକୀର୍ଣ୍ଣ ଆଲୋକରେଖା ପଡ଼ିଛି ବାହାରକୁ । ଲୁଚିଲୁଚି, ପାଦ ଟିପିଟିପି ଯାଇ ଝରକା ଛିଦ୍ରରେ ଆଖିରଖି ସେ ବହି ଉପରେ ନଇଁପଡ଼ିଥିବା ମୁଣ୍ଡଟିକୁ ଦେଖନ୍ତି ।

"ଭଦ୍ରଲୋକମାନେ ଏ ସମୟରେ ଶୋଇଯାଆନ୍ତି, ଏଇଟା ସାରା ରାତି ଏମିତି ଆଲୁଅ ଜଳାଇ ରଖିଛି । ସତେ ଯେମିତି ସେ ଏ ଘରର ମୁରବୀ ! ଏଇଟା ଆସିଲା ଦିନରୁ ଝିଅ ଦିଇଟାଯାକ ଆଉ ମାନୁ ନାହାନ୍ତି ।" ଖଟ ଉପରକୁ ଫେରି ଆସୁଆସୁ ବୁଢ଼ା ମନକୁ ମନ ବିଡ଼ିବିଡ଼ି ହୋଇ କୁହେ ।

ଦୀର୍ଘ ଆଠବର୍ଷ ଭିତରେ ଏଇ କେତେଦିନ ଧରି ମାତ୍ର ପାଭେଲ୍ ନିଜ ହାତରେ ପ୍ରଚୁର ସମୟ ପାଇଲା ଓ କୌଣସି କାମ କରିବାକୁ ନଥିଲା ତା' ପାଇଁ । ସମୟର ସେ ଯଥାର୍ଥ ସଦ୍‌ବ୍ୟବହାର କରିଲା, ବହିସବୁ ପଢ଼ାପଢ଼ି କରିବାରେ । ଦିନକୁ ଅଠର ଘଣ୍ଟା ସେ ପଢ଼େ ବସି । କେତେଦିନ ଯାଏ ତା' ସ୍ୱାସ୍ଥ୍ୟ ଏ ଅଠରଘଣ୍ଟା ପଢ଼ା ସହ୍ୟ କରିଥାନ୍ତା କେଜାଣି, ମାତ୍ର ଦିନକର ତାୟାର କଥା ସବୁ ପ୍ରାୟ ପରିବର୍ତ୍ତିତ କରିଦେଲା ।

"ତମ ମୋ ବଖରା ମଝି କବାଟ ପାଖରେ ଯେଉଁ ଆଲମାରିଟା ଥୁଆ ହୋଇଥିଲା, ସେଇଟାକୁ କାଢ଼ି ଦେଇଛି ମୁଁ । ମୋ ସହିତ କଥାବାର୍ତ୍ତା କରିବାକୁ ଇଚ୍ଛା କଲେ ଏଇବାଟେ ଏଣିକି ଆସିପାରିବ । ଲ୍ୟୋଲ୍ୟା ବଖରାବାଟେ ଆସିବା ଦରକାର ନାହିଁ ।"

ପାଭେଲ୍ ଗଣ୍ଡ ରକ୍ତାଭ ହୋଇଗଲା । ଆନନ୍ଦରେ ହସୁଥିଲା ତାୟା । ସେମାନେ ଅବିଚ୍ଛେଦ୍ୟ ହୋଇଗଲେ ।

* * *

କଣ ଘରର ଝରକାବାଟେ ଆଉ ଆଲୋକରେଖା ଦେଖିଲେ ନାହିଁ ବୃଦ୍ଧ ଏବଂ ତାୟାର ମାଙ୍କ ଆଖିରୁ ନିଜ ଝିଅର ଆଖିରେ ଉଜ୍ଜ୍ୱଳତା ଏଡ଼େଇଗଲା ନାହିଁ । ଆଖିପତା ତଳର କାଳିମା ସ୍ପଷ୍ଟଭାବରେ ଜଣାଇଦେଉଥାଏ ବିନିଦ୍ର ରାତି ବିତାଇବାର କାହାଣୀ । ଛୋଟିଆ ଘରଟିରେ ଏଣିକି ବାରମ୍ବାର ତାୟାର ଗୁଣୁ ଗୁଣୁ ସ୍ୱରରେ ଗୀତ ଓ ଗୀଟାରର ଟୁଂଟାଂ ଶୁଭିବାକୁ ଲାଗିଲା ।

ମାତ୍ର ତାୟାର ଏ ଆନନ୍ଦ ଅବାଧ ନୁହେଁ । ତା'ର ନବଜାଗ୍ରତ ନାରୀତ୍ୱ, ପାଭେଲ୍ ସହିତ ତା'ର ଗୋପନ ସଂପର୍କ ବିରୁଦ୍ଧରେ ବିଦ୍ରୋହ କରିଉଠେ । ବେଳେ ବେଳେ ମା' ଆସିଲା କି ବୋଲି ପାଦଶବ୍ଦ ଶୁଣି ଚମକି ଉଠେ ସେ । ରାତିରେ ଭିତରୁ କାହିଁକି କବାଟ ବନ୍ଦ କରିଛୁ ବୋଲି ପଚାରିଲେ, ସେ କ'ଣ ଉତ୍ତର ଦେବ ? ଏହି ଚିନ୍ତାଟା ତାକୁ ବ୍ୟସ୍ତ କରିପକାଏ । ତା'ର ଏ ଆଶଙ୍କା ପାଭେଲ୍ ଲକ୍ଷ୍ୟ କରେ ଓ ଆଶ୍ୱାସନା ଦିଏ :

"କାହିଁକି ମିଛରେ ଡରୁଛ ତମେ ?" କୋମଳଭାବରେ କୁହେ ସେ । "ତମେ ମୁଁ ଦିହେଁ ଯାକ ବଡ଼ ହେଲେଣି । କେହି ଆମ ଜୀବନରେ ବାଧା ଦେବା ପାଇଁ ଆସିବେ ନାହିଁ, ଚୁନି ହୋଇ ଶୁଅ ।"

ଗଭୀର ପ୍ରଶାନ୍ତିରେ ତାୟା ନିଜର ଗଣ୍ଡ, ପାଭେଲ୍‌ର ଛାତିରେ ଘଷେ ଓ ଶୋଇଯାଏ ନିଜ ପ୍ରେମାସ୍ପଦକୁ ବାହୁରେ ବେଷ୍ଟନ କରି । ପାଭେଲ୍ ଚେଇଁରହି ଶୁଣେ ତା'ର ନିଃଶ୍ୱାସପ୍ରଶ୍ୱାସର ଶବ୍ଦ, ଚୁନି ହୋଇ ଶୁଣେ, କାଳେ ତା' ନିଦରେ ବ୍ୟାଘାତ ଘଟିବ । ତା'ର ଦେହ ମନ ଏକ ଗଭୀର ମମତାରେ ବୁଡ଼ିଯାଏ ଏ ଝିଅଟି ପାଇଁ, ଯିଏ ତା'ର ସାରା ଜୀବନ ତା'ପାଇଁ ଉତ୍ସର୍ଗ କରିଛି ।

ପହିଲେ ଲ୍ୟୋଲ୍ୟା ହିଁ ଆବିଷ୍କାର କଲା, ତାୟାର ଆଖିର ଉଜ୍ଜ୍ୱଳତାର କାରଣ । ସେହି ଦିନଠାରୁ ଦୁଇ ଭଉଣୀଙ୍କ ସଂପର୍କ ଉପରେ ତିକ୍ତତାର ଛାଇ ପଡ଼ିଗଲା । ପରେ ମା' ମଧ୍ୟ ଜାଣିପାରିଲେ ଅନୁମାନ କରି । ମନ ତାଙ୍କର ଆଶଙ୍କାନ୍ୱିତ ହେଲା । କୋର୍ଚ୍ଚାଗିନ୍‌ଠାରୁ ଏହା ସେ ଆଶା କରି ନଥିଲେ ।

"ତାୟା ତା' ସ୍ତ୍ରୀ ହେବାର ଉପଯୁକ୍ତ ନୁହେଁ । ମୋତେ ଆଶ୍ଚର୍ଯ୍ୟ ଲାଗୁଛି, କ'ଣ ଯେ ହବ ?"

ତାଙ୍କ ମନ ଆଶଙ୍କାରେ ପୂର୍ଣ୍ଣ ହୋଇଗଲେ ମଧ୍ୟ କୋର୍ଚ୍ଚାଗିନ୍‌କୁ ସେକଥା ସବୁ କହିବାକୁ ସାହସ କରୁ ନଥିଲେ ସେ ।

ଅନେକ ତରୁଣ ତରୁଣୀ ପାଭେଲ୍‌କୁ ଦେଖା କରିବାକୁ ଆସନ୍ତି—ଏତେ ଲୋକ ଆସନ୍ତି ଯେ, ବେଳେବେଳେ ତା' ଛୋଟ ବଖରାଟିରେ ଜାଗା ଧରେ ନାହିଁ । ସେମାନଙ୍କର

କଣ୍ଠସ୍ୱର ମହୁଫେଣାର ଗୁଞ୍ଜନ ଭଳି ବୃଦ୍ଧଙ୍କ କାନରେ ପଡ଼େ ଆସି ଓ ସେ ଶୁଣନ୍ତି, ସେମାନେ ଐକ୍ୟତାନରେ ଗାଇ ଉଠିବାର :

"ଉଭାଳ ଆମ ସାଗର ...
ଦିନରାତି ଶୁଭେ ତା'ର ଉଦ୍ଦାମ କଲରୋଳ ..."

ଏବଂ ପାରେଲ୍‌ର ପ୍ରିୟ :

"ବିଶାଳ ଧରଣୀ ଆଜି ଭିଜିଛି ଲୁହରେ ..."

ପାଭେଲ୍‌ର ପ୍ରଗ୍ଭର ବିଭାଗୀୟ କାମ କରିବା ପାଇଁ ବାରମ୍ବାର ଅନୁରୋଧ ଫଳରେ ପାର୍ଟିକମିଟି ପକ୍ଷରୁ ତାକୁ ଦାୟିତ୍ୱ ଦିଆଯାଇଥିଲା, ତରୁଣ ଶ୍ରମିକମାନଙ୍କର ପାଠଚକ୍ର ପରିଗ୍ଭଳନା କରିବା ପାଇଁ ।

ପୁଣି ଥରକ ପାଇଁ ସେ ଦୁଇହାତରେ ଜାବୁଡ଼ି ଧରିଥିଲା ଜୀବନର ସାରକୁ । ଜୀବନର ନୌକା ତା'ର ଭୟଙ୍କରଭାବରେ ଟଳମଳ ହୋଇ ଏବେ ଏକ ନୂତନ ପଥରେ ଅଗ୍ରସର ହେବାକୁ ଯାଉଥିଲା । ଅଧ୍ୟବସାୟ ଓ ଅଧ୍ୟୟନ ବଳରେ ପୁଣି ଥରେ ପାର୍ଟି ର୍‍ୟାଙ୍କକୁ ଫେରି ଆସିବା ପାଇଁ ତା'ର ସ୍ୱପ୍ନ ଏବେ ଫଳବତୀ ହେବାକୁ ଯାଉଛି ।

ମାତ୍ର ଜୀବନ ତା' ପଥରେ ଗୋଟାକ ପରେ ଗୋଟାଏ ବାଧା ଦେବାରେ ଲଗିଛି ଓ ପ୍ରତିଟି ବାଧାକୁ ଅତିକ୍ରମ କରି ଲକ୍ଷ୍ୟସ୍ଥଳରେ ପହଞ୍ଚିବା କେତେ ବିଳମ୍ବିତ ହୋଇଯାଉଛି ଭାବି ସେ ଖୁବ୍ ବିକ୍ଷୁବ୍ଧ ହୋଇ ଉଠିଲା ।

ଦିନେ, ସେ ହତଭାଗ୍ୟ ଛାତ୍ର ଜର୍ଜ୍ ନିଜ ସ୍ତ୍ରୀକୁ ଧରି ମସ୍କୋରୁ ଆସି ପହଞ୍ଚିଲା ଓ ଆସି ନିଜର ଶ୍ୱଶୁର ଘରେ ରହିଲା । ଶ୍ୱଶୁର ତା'ର ଜଣେ ଆଇନଜୀବୀ । ସେହିଠାରେ ରହି ସେ ତା' ମା'କୁ ଅଧିକ ଅର୍ଥ ଦେବା ପାଇଁ ଗ୍ଭପ ଦେବାକୁ ଲଗିଲା ।

ଜର୍ଜ୍‌ର ଆଗମନ କ୍ର୍ୟୁହାମ୍ ପରିବାର ମଧ୍ୟରେ ଥିବା ବିଭେଦକୁ ଆହୁରି ବଢ଼ାଇଦେଲା । ଜର୍ଜ୍ ଏଥିରେ ବାପର ପକ୍ଷ ନେଇଗଲା ସଙ୍ଗେ ସଙ୍ଗେ ଓ ନିଜ ସୋଭିଏତ୍‌ବିରୋଧୀ ଭାବ ପ୍ରକାଶ କରୁଥିବା ଶ୍ୱଶୁର ପରିବାର ସହିତ ମିଶି, ଗୁପ୍ତରେ ଚେଷ୍ଟା କଲା କୋର୍ଗିନ୍‌କୁ ସେଠାରୁ ନିକାଲିବାକୁ ଏବଂ ତାୟା ସହିତ ତା'ର ସଂପର୍କ ଛିନ୍ନ କରିବାକୁ ।

ଜର୍ଜ୍ ଆସିବାର ପନ୍ଦର ଦିନ ଖଣ୍ଡେ ପରେ, ଲ୍ୟୋଲ୍ୟା ଅନ୍ୟ ଏକ ସହରରେ ଗ୍ଭକିରୀଟିଏ ପାଇ ଗ୍ଭଲିଗଲା । ସାଙ୍ଗରେ ମା'କୁ ଓ ତା' ଟିକି ପୁଅଟିକୁ ମଧ୍ୟ ନେଇଗଲା । ପରେ ପାରେଲ୍ ଓ ତାୟା, ଦୂରବର୍ତ୍ତୀ ଏକ ସମୁଦ୍ରକୂଳିଆ ସହରକୁ ଗ୍ଭଲିଗଲେ ।

* * *

ଆର୍ତେମ୍ ଭାଇଠାରୁ ତା'ର ପ୍ରାୟ ଚିଠିପତ୍ର ପାଏ ନାହିଁ । ଏଣୁ ସହର ସୋଭିଏତ୍ ଅଫିସ୍ ଟେବୁଲ ଉପରେ ପରିଚିତ ହସ୍ତାକ୍ଷରରେ ଲେଖାହୋଇଥିବା ଲଫାପାଟିକୁ ଦେଖି

ତା'ର ହୃତ୍ସ୍ପନ୍ଦନ ବଢ଼ିଗଲା ହଠାତ୍ । ଆଜି ମଧ୍ୟ ଲଫାପାଟିକୁ ଖୋଲିବା ସାଙ୍ଗେ ସାଙ୍ଗେ ସେ ମମତାଭରା ମନରେ ଭାବିଲା, "ପାଭେଲ୍ ରେ! ତୁ ମୋ ପାଖେ ପାଖେ ଥାଆନ୍ତୁ କି ତୋ'ରି କଥା ଅନୁସାରେ ଚଳନ୍ତି ମୁଁ ।" ପଢ଼ିଲା ସେ ।

"ଆର୍ତେମ୍ ଭାଇ!

ଏବେ ମୋ ଜୀବନରେ ଯାହା ଯାହା ସବୁ ଘଟିଯାଇଛି, ତମକୁ ଜଣାଇବାକୁ ଲେଖୁଛି । ଏସବୁ ଖବର ତମ ଛଡ଼ା ଆଉ କାହାରିକୁ ମୁଁ ଲେଖେ ନାହିଁ । ତମ ବ୍ୟତୀତ ଏ ସଂପର୍କରେ ମୋର କାହା ଉପରେ ଭରସା ନାହିଁ । ତା' ଛଡ଼ା ତୁମେ ହିଁ କେବଳ ମୋତେ ବୁଝି ପାରିବ ।

ଆଘାତ ପରେ ଆଘାତ ଦେଇ ସ୍ୱାସ୍ଥ୍ୟ ପାଇଁ ଜୀବନ ମୋତେ ଚକିତଚାନ୍ତ କଲଣି । ଗୋଟିଏ ଆଘାତ ସହି ଅଣ୍ଟାସଳଖି ଠିଆ ହେଲାବେଳକୁ ପୂର୍ବ ଅପେକ୍ଷା ଆହୁରି ଏକ ନିଦାରୁଣ ଆଘାତ ଆସି ମୋତେ ମାଟିରେ ଲୋଟାଇଦେଉଛି । ସବୁଠାରୁ ଭୟଙ୍କର କଥା ହେଲା ଆଉ ବାଧା ଦେବାର ଶକ୍ତି ସାମର୍ଥ୍ୟ ମୋର ନାହିଁ । ପ୍ରଥମେ ମୋ ବାମ ବାହୁ ଅଚଳ ହୋଇଗଲା ଓ ପରେ ସେତିକି ଯେମିତି ଯଥେଷ୍ଟ ନୁହେଁ । ଏବେ ମୋ ପାଦଦୁଇଟି ମଧ୍ୟ ଚଳଚ୍ଛକ୍ତିହୀନ! ମୁଁ ଆଉ ଗ୍ଲଲବୁଲ କରିପାରୁ ନାହିଁ । କେବଳ ଘରଟିରେ ଯାହା ଚଳୁଥିଲି, ଏବେ ବିଛଣାରୁ ଟେବୁଲ ପାଖକୁ ଗୁରୁଣ୍ଡି ଗୁରୁଣ୍ଡି ଯିବାକୁ ପଡୁଛି । ମୋର ଦୃଢ଼ ବିଶ୍ୱାସ, ଏହାଠାରୁ ଆହୁରି ଖରାପ ଅବସ୍ଥା ମଧ୍ୟ ଆସୁଛି । ଆଗାମୀ କାଲି ମୋ ପାଇଁ କ'ଣ ବହନ କରି ଆଣିବ କିଏ ଜାଣେ!

ଏବେ ଆଉ ଘରୁ ବାହାରକୁ ବାହାରୁ ନାହିଁ ମୁଁ । ମୋ ଝରକା ଦେଇ ସମୁଦ୍ରର ଏକ ସଂକ୍ଷିପ୍ତ ଅଂଶ ଦିଶୁଛି । ଜଣେ ମଣିଷର ଦେହ ତା'ର କଥା ମାନୁ ନାହିଁ, ଏହା ଅପେକ୍ଷା ମଣିଷ ଜୀବନରେ ଆଉ ବଡ଼ କରୁଣତା କ'ଣ ଅଛି? ପୁଣି ଯେଉଁ ମଣିଷର ହୃଦୟ ବଲ୍‌ଶେଭିକ୍‌ର ... ଯିଏ କାମ କରିବା ପାଇଁ ଉଦ୍‌ଗ୍ରୀବ ବାସନା ପୋଷଣ କରେ ମନରେ! ଯେଉଁ ବଲ୍‌ଶେଭିକ୍ ସବୁବେଳେ ଚିନ୍ତା କରେ, ଏ ଝଡ଼ ଦୁସ୍ତର ପଥରେ ସବୁଦିନ ପାଇଁ ଚମରିମାନଙ୍କ ସହିତ ରହି, ଯୋଦ୍ଧାମାନଙ୍କ ସହିତ ମିଳିମିଶି ଝଡ଼ କାଟି ଆଗେଇଯିବାକୁ, ତା' ପାଇଁ ଯା'ଠାରୁ ବଳି ବିଷାଦ, କରୁଣତା ଆଉ କିଛି ଥାଇପାରେ?

ମୋର ଏବେ ମଧ୍ୟ ଭରସା ଅଛି, କର୍ମୀଦଳ ମଧ୍ୟକୁ ଫେରିଯିବି! ସୈନିକମାନଙ୍କ ଧାଡ଼ିରେ ଯାଇ ଛିଡ଼ା ହେବି ଆଉ ମୋ ବନ୍ଧୁକକୁ ଟେକି ଧରିବି ଶତ୍ରୁକୁ ଆକ୍ରମଣ କରିବା ପାଇଁ । ମୁଁ ଏକଥା ନିଶ୍ଚିତଭାବରେ ବିଶ୍ୱାସ କରୁଛି, ଅବିଶ୍ୱାସ କରିବାର ଅଧିକାର ମୋର ନାହିଁ । ଦୀର୍ଘ ଦଶବର୍ଷ କାଳ ପାର୍ଟି ଓ କମ୍‌ସୋମୋଲ୍ ମୋତେ ଯୁଦ୍ଧ କୌଶଳ ଶିକ୍ଷା ଦେଇଛି । ସମସ୍ତଙ୍କୁ କୁହାଯାଇଥିବା ପ୍ରିୟ ନେତାଙ୍କର କଥା ମୋ ପାଇଁ ମଧ୍ୟ ପ୍ରଯୋଜ୍ୟ: 'ଏପରି କୌଣସି ଦୁର୍ଗ ନାହିଁ, ଯାହା ବଲ୍‌ଶେଭିକ୍‌ମାନଙ୍କ ପକ୍ଷରେ ଦୁର୍ଭେଦ୍ୟ ।'

ଏବେ ଜୀବନର ସମୁଦାୟ ସମୟ ମୁଁ ପଢ଼ାପଢ଼ିରେ ବିତାଉଛି । କେବଳ ବହି, ବହି ଓ ବହି । ମୁଁ ଅନେକ ପଢ଼ିଗଲିଣି, ଆର୍ତେମ୍ ଭାଇ । ସମସ୍ତ କ୍ଲାସିକ ମୁଁ ସାରିଲିଣି ।

କମ୍ୟୁନିଷ୍ଟ ବିଶ୍ୱବିଦ୍ୟାଳୟର କରେସ୍‌ପଣ୍ଡେନ୍‌ସ କୋର୍ସର ପ୍ରଥମ ବାର୍ଷିକ ପରୀକ୍ଷାରେ ମୁଁ ପାଶ୍ କଲିଣି । ସନ୍ଧ୍ୟାରେ କମ୍ୟୁନିଷ୍ଟ ତରୁଣମାନଙ୍କର ଏକ ପାଠଚକ୍ର ମୁଁ ପରିଚାଳନା କରେ । ଏହି ତରୁଣ କମ୍ରେଡ୍‌ମାନଙ୍କ ସହିତ ପାର୍ଟିର ବାସ୍ତବ ଜୀବନ ସହିତ ମୋର ସଂଯୋଗ । ଏହା ଛଡ଼ା ଅଛି ତାୟାର ପଢ଼ାପଢ଼ି ଓ ମୋର ପ୍ରିୟ ପତ୍ନୀର ଗଭୀର ପ୍ରେମ ... ଭଲ ପାଇବା ! ତାୟା ଓ ମୁଁ ପରସ୍ପର ସହିତ ଅତି ଅନ୍ତରଙ୍ଗ । ଗୃହସଜ୍ଜା ଆମର ଅତି ସାଧାସିଧା । ମୋର ବତିଶ ରୁବଲ ପେନ୍‌ସନ ଓ ତାୟାର ରୋଜଗାରରେ ବେଶ୍ ଭଲରେ ଚଳିଯାଉଛୁ ଆମେ । ପାର୍ଟିକୁ ଆସିବା ପାଇଁ ମୁଁ ଯେଉଁ ପନ୍ଥା ଅବଲମ୍ବନ କରିଥିଲି, ତାୟା ଏବେ ସେହି ପନ୍ଥା ଧରିଛି । କିଛି ଦିନ ପାଇଁ ଜଣକ ଘରେ ଚାକରାଣୀ ଭାବରେ କାମ କରିଛି ସେ ଓ ଏବେ ଗୋଟିଏ କାଣ୍ଟିନରେ ବାସନଧୁଆ କାମ କରୁଛି । (ଏ ସହରରେ କଳକାରଖାନା କିଛି ନାହିଁ ।)

ସେଦିନ ସେ ଅତି ଗର୍ବର ସହିତ ନାରୀ ବିଭାଗର ପହିଲି କରି ପାଇଥିବା ପ୍ରତିନିଧି କାର୍ଡ ଦେଖାଇଥିଲା । ତା' ପାଇଁ ଏ ଖଣ୍ଡକ କେବଳ ଖଣ୍ଡେ କାଗଜପଟି ନୁହେଁ । ତା'ରି ମଧ୍ୟରେ ମୁଁ ଦେଖୁଛି ଏକ ନୂଆ ନାରୀ ଜନ୍ମ ନେଇଛି ! ଏଥିରେ ମୁଁ ମୋ ପାରୁପର୍ଯ୍ୟନ୍ତ ସାହାଯ୍ୟ କରୁଛି । ସମୟ ଆସିବ, ସେ ଦିନେ ଏକ ବିରାଟ କାରଖାନାରେ କାମ କରିବ, ଯେଉଁଠାରେ ଏକ ବିରାଟ ଶ୍ରମିକ ସଂପ୍ରଦାୟର ଅଂଶବିଶେଷ ଭାବରେ ସେ ରାଜନୈତିକ ଦୃଷ୍ଟିକୋଣରୁ ଆହୁରି ଦୃଢ଼ ହେବ । ଏବେ କିନ୍ତୁ ଏଠାରେ ତା' ପାଇଁ ଖୋଲାଥିବା ଏକମାତ୍ର ପଥ ହିଁ ସେ ବାଛି ନେଉଛି ।

ତାୟାର ମା' ଆମକୁ ଦୁଇଥର ଦେଖିଗଲେଣି । ଅଜ୍ଞାନରେ ସେ ତାୟାକୁ ପୁରୁଣା ଜୀବନର ହୀନତା, ସ୍ୱାର୍ଥପରତା ଭିତରକୁ ଟାଣିବାକୁ ଚେଷ୍ଟା କରୁଛନ୍ତି । ମୁଁ ଆଲ୍‌ବିନାକୁ ବୁଝାଇଦେବାକୁ ଚେଷ୍ଟା କରିଛି ଯେ, ତାଙ୍କ ନିଜର ଅତୀତ ଜୀବନର ଅନ୍ଧକାରାଚ୍ଛନ୍ନ ପଥର ଛାଇ ତାଙ୍କ ଝିଅ ବାଛି ନେଇଥିବା ପଥ ଉପରେ ପଡ଼ି ତାକୁ ଯେପରି ଅନ୍ଧାରିତ ନକରୁ ! ମାତ୍ର ସେଥିରେ କିଛି ଫଳ ହୋଇ ନାହିଁ । ମୁଁ ଭାବୁଛି, ଦିନେ ନା ଦିନେ ମା' ତାଙ୍କ ଝିଅର ପଥର ପ୍ରତିବନ୍ଧକ ହୋଇ ଛିଡ଼ା ହେବେ ଓ ସେଦିନ ସଂଘର୍ଷ ଅନିବାର୍ଯ୍ୟ ।

ମୋର ଶୁଭାଭିଳାଷ ନେବ ।
ତମର ପାଭେଲ୍ ।"

ପୁରୁଣା ମାଟ୍ସେଷ୍ଟାରେ ପାଞ୍ଚ ନମ୍ବର ସ୍ୱାସ୍ଥ୍ୟ ନିବାସ । ପାହାଡ଼ କଡ଼ର ଦେହକୁ ଖୋଳି ଏକ ଥାକ ଉପରେ ଛିଡ଼ାହେଇ ଭଳି ଛିଡ଼ା ହୋଇଛି ଇଟା ତିଆରି ଏକ ତିନିତାଲା କୋଠା । ଚାରିକଡ଼େ ଘେରିରହିଛି ଘଞ୍ଚ ଜଙ୍ଗଲ । ସର୍ପୀଳ ଗତିରେ ତଳକୁ ନଇଁ ଯାଇଛି ରାସ୍ତାଟିଏ । ଝରକାସବୁ ଉନ୍ମୁକ୍ତ ଓ ପବନରେ ଘର ଭିତରକୁ ଗନ୍ଧକ ଝରଣାର ଗନ୍ଧ ପଶିଆସୁଛି । ପାଭେଲ କୋର୍ଚ୍ଚାଗିନ୍ ବଖରାଟି ଭିତରେ ଏକାକୀ । ଆସନ୍ତାକାଲି ଅନ୍ୟାନ୍ୟ ରୋଗୀମାନେ ପହଞ୍ଚିବେ ଏବଂ ତା'ର ଜଣେ ପ୍ରକୋଷ୍ଠ ସାଥୀ ମିଳିବେ ।

ଝରକା ବାହାରେ କାହାର ପାଦଶବ୍ଦ ଓ ଚିହ୍ନା ଗଳାର ସ୍ୱର ଶୁଣିଲା ସେ । କେଇଜଣ ଲୋକ କଥାବାର୍ତ୍ତା କରୁଛନ୍ତି । ମାତ୍ର ଏମିତି ଗମ୍ଭୀର ସ୍ୱର କାହାର, ସେ କେଉଁଠି ଶୁଣିଛି ? ସ୍ମୃତିର କ୍ଷୀଣରେଖା ଭେଦକରି ଭୁଲିଭୁଲି ଆସୁଥିବା ଗୋଟିଏ ନାଁ କେବଳ ମନେ ପଡ଼ୁଛି "ଲେଦେନୋଭ୍ ବ୍ୟତୀତ ଆଉ କାହାରି ଏ ସ୍ୱର ହୋଇପାରେ ନାଁ ।" ନିଶ୍ଚିତ ହୋଇ ବନ୍ଧୁକୁ ଡାକିଲା ପାଭେଲ୍ ଓ ମୁହୂର୍ତ୍ତକ ପରେ ଲେଦେନୋଭ୍ ତା' ବିଛଣା କଡ଼କୁ ଆସି ତା' ସହିତ କରମର୍ଦ୍ଦନ କଲା ନିବିଡ଼ଭାବରେ ।

"ଆରେ, କୋର୍ଚ୍ଚାଗିନ୍ ... ତୁ ତା'ହେଲେ ଭଲ ଅଛୁ ? ଠିକ୍ ଅଛି, ତୋ ନିଜ ପାଇଁ କ'ଣ କହିବାର ଅଛି କହ ମୋତେ । ଦେଖ ଭାଇ, ଏମିତି ରୋଗୀ ହୋଇଛୁ ବୋଲି ସିଦ୍ଧାନ୍ତ କରିନେଇ କହ ନାହିଁ । ଦେଖ, ମୁଁ ତ ନିଜେ ଗୋଟାଏ ଉଦାହରଣ । ଏ ଡାକ୍ତରଗୁଡ଼ାକ ମୋତେ ବି ଥାକରେ ମାଡ଼ିଦେବାକୁ ଲାଗିପଡ଼ିଥିଲେ । ମୁଁ କିନ୍ତୁ ତାଙ୍କ ମୁହଁରେ ଛେପ ପକାଇ ଖୁଲବୁଲ କରୁଛି", ଲେଦେନୋଭ୍ ଆନନ୍ଦରେ ହସିଲା ।

ମାତ୍ର ପାଭେଲ୍ ସେ ହସ ଭିତରେ ଲୁଚିରହିଥିବା ସମବେଦନା, ଦୁଃଖ ଅନୁଭବ କରିପାରିଲା ।

ଦୁଇଘଣ୍ଟା ଏକାଠି ବିତାଇଲେ ସେମାନେ । ଲେଦେନୋଭ୍ ମସ୍କୋର ସବୁ ଟଟକା ଖବର ଶୁଣାଇଲା ତାକୁ । ତା'ଠିଠାରୁ ପାଭେଲ୍ ପ୍ରଥମେ ଶୁଣିଲା, ପାର୍ଟି କୃଷିକୁ କୋଠ କରିବା ପାଇଁ ନେଇଥିବା ଗୁରୁତ୍ୱପୂର୍ଣ୍ଣ ସଂବାଦ ଓ ଗ୍ରାମ ଜୀବନକୁ ପୁନଃସଂଗଠିତ କରିବାର ପ୍ରସ୍ତାବ କଥା । ପ୍ରତିଟି ପଦ ପିଇଯାଉଥିଲା ସେ ଯେମିତି ।

"ଆରେ, ମୁଁ ଭାବୁଥିଲି ତୁ ୟୁକ୍ରାଇନ୍‌ରେ କେଉଁଠି ଯାଇଁ ତୋ ଅଞ୍ଚଳରେ କାମଦାମ ଆରମ୍ଭ କରିଦେବୁଣି ବୋଲି", ଲେଦେନୋଭ୍ କହିଲା । "ତୁ ତ ମୋତେ ନିରାଶା କରିଦେଲୁ, ଠିକ୍ ଅଛି, ମନ ଦୁଃଖ କରନାଁ । ତୋଠୁ ମୋ ଅବସ୍ଥା ଆହୁରି ଖରାପ ଥିଲା । ମୁଁ ତ ଭାବିଥିଲି ସାରା ଜୀବନ ପାଇଁ ବିଛଣାରେ ବିତାଇବି ବୋଧହୁଏ । ଏବେ ଜୀବନକୁ ହସିଖେଳି ବିତାଇବା ପାଇଁ ବେଳ ନାହିଁ । ଆଉ ମୁଁ ତ ସ୍ୱୀକାର କରୁଛି, ବେଳେବେଳେ ମନ ହୁଏ ଟିକିଏ ବିଶ୍ରାମ ନେଇ ଦମ୍ ନେବାକୁ । ତା' ଛଡ଼ା ମୁଁ ତ ଆଉ ପୂର୍ବ ଭଳି ତରୁଣ ନାହିଁ । ଏବେ ଦିନକୁ ଦଶ ବାର ଘଣ୍ଟା ପରିଶ୍ରମ କରିବା ପାଇଁ ବେଶ୍ କଷ୍ଟ ହେଉଛି । ଏମିତି ଭାବେ ... ଟିକିଏ ବୋଝ କମାଇଦେବା ପାଇଁ ଚେଷ୍ଟା କରେ । ହେଲେ ସେଥିରେ କ'ଣ ଲାଭ ଅଛି ! ତମେ ଜାଣି ନଥିବ, କେତେବେଳେ କାମରେ ମାତିଯିବଣି, ଘରକୁ ଫେରିଲାବେଳକୁ ରାତି ଅଧ । ଯନ୍ତ୍ର ଯେତେ ଅଧିକ ଶକ୍ତିଶାଳୀ, ତା' ଚକଗୁଡ଼ାକ ସେତେ ଅଧିକ ବେଗରେ ଘୂରେ । ଆଉ ଆମମାନଙ୍କ ପକ୍ଷରେ ଏ ଦ୍ରୁତତା ପ୍ରତିଦିନ ବର୍ଦ୍ଧିତ ହେଉଛି । ତେଣୁ ଆମ ବୁଢ଼ାଙ୍କୁ କେବଳ ଟୋକା ରହିବାକୁ ହିଁ ପଡ଼ୁଛି ।"

ଲେଦେନୋଭ୍ ତା'ର ଉଚ୍ଚ କପାଳ ଉପରେ ହାତ ବୁଲାଇଆଣି ମୁଲାୟମ ଗଳାରେ କହିଲା :

"ହଉ, ଏଥର ତୋ କଥା କହ ।"

ପାଭେଲ୍ ନିଜ ଜୀବନର ଏକ ବିବରଣୀ ଦେଇ ଲେଦେନୋଭ୍‌କୁ, ଯେଉଁଦିନଠାରୁ ତା'ର ଦେଖା ହୋଇ ନାହିଁ, ସେହିଦିନଠାରୁ । କହିଲା ବେଳେ ନିଜ ବନ୍ଧୁର ସମ୍ମତିସୂଚକ ଦୃଷ୍ଟି ପଡ଼ିଥିଲା ତା' ଉପରେ ।

* * *

ବାରଣ୍ଡାର ଗୋଟିଏ କୋଣରେ ଘନ ଗଛ ଛାଇ ତଳେ, ସ୍ୱାସ୍ଥ୍ୟନିବାସର ଦଳେ ରୋଗୀ ଗୋଟିଏ ଛୋଟ ଟେବୁଲ ଚାରିକଡ଼େ ଘେରି ବସିଥିଲେ । ତାଙ୍କ ଭିତରୁ ଜଣେ 'ପ୍ରାଭ୍‌ଦା' ପଢ଼ୁଥିଲା । ତା'ର ଗହଳ ଭୁଲତା କୁଞ୍ଚିତ ହୋଇ ଉଠୁଥିଲା । କଳା ରୁଷୀୟ ଜାମା, ଜୀର୍ଣ୍ଣ ପୁରୁଣା ଟୋପି, କ୍ଷୌରବିବର୍ଜିତ ମୁହଁ, ନୀଳ ଗାଢ଼ୁଆ ଗାଢ଼ୁଆ ଆଖି, ସବୁ ମିଳି ପୁରୁଖା ଖଣିଶ୍ରମିକକୁ ଜଣାଇ ଦେଉଥିଲା, ସତେ ଯେମିତି ଏଇ ମୁହୂର୍ତ୍ତରେ ଖଣିରୁ ଉଠିଆସିଛି ସେ । ବାରବର୍ଷ ହେଲଣି, ଏକ ଗୁରୁତ୍ୱପୂର୍ଣ୍ଣ ସରକାରୀ କାମ ପାଇଁ ଖ୍ରୀସାନ୍‌ଫ ଚେର୍ନୋକୋଜୋଭ୍ ଖଣି ଛାଡ଼ି ଆସିଲଣି । ମାତ୍ର ଜଣାପଡ଼େ ଯେମିତି ଏବେ ଆସିଛି । ତା'ର ହାବଭାବ, ତା' ପୋଷାକ, ତା' ଚାଲିଚଳଣ, କଥାବାର୍ତ୍ତା ମଧ୍ୟରେ ପରିଷ୍କାର ଫୁଟି ଉଠେ ତା'ର ପେସାଟା ।

ତା'ଛଡ଼ା ଚେର୍ନୋକୋଜୋଭ୍ ଆଞ୍ଚଳିକ ପାର୍ଟି ବ୍ୟୁରୋର ମଧ୍ୟ ଜଣେ ସଭ୍ୟ ଓ ସରକାରୀ କର୍ମୀ । ଏକ ନିଦାରୁଣ ରୋଗ ତା' ଶକ୍ତି ଅବକ୍ଷୟ କରୁଛି : ଚେର୍ନୋକୋଜୋଭ୍ ନିଜର ଗାଂଗ୍ରିନ୍ ହୋଇଥିବା ଗୋଡ଼କୁ ଘୃଣା କରେ, ଯେଉଁଥି ପାଇଁ ତାକୁ ଦୀର୍ଘ ଛ'ମାସ କାଳ ବିଛଣାରେ ପଡ଼ି ରହିବାକୁ ହୋଇଛି ।

ତା'ର ବିପରୀତ ପାଖରେ ବସି ଚିନ୍ତାନ୍ୱିତ ମୁହଁରେ ସିଗାରେଟ୍‌ରୁ ଧୂଆଁ ଛାଡ଼ୁଛି ଝିଗିରେଭା । ଆଲେକ୍‌ଜାନ୍ଦ୍ରା ଆଲେକ୍‌ସେୟେଭ୍‌ନା ଝିଗିରେଭା, ଯିଏ ଜୀବନରେ ସଇଁତ୍ରିଶଟି ବର୍ଷରୁ ଊଣେଇଶଟି ବର୍ଷ ପାର୍ଟିସଭ୍ୟାଭାବରେ ବିତାଇଛି । ତା'ର ପେଟ୍ରୋଗ୍ରାଦ୍‌ର ଅଣ୍ଡରଗ୍ରାଉଣ୍ଡ ସହକର୍ମୀମାନେ ତାକୁ "ଶୁରୋଚ୍‌କା-ଧାତୁଶ୍ରମିକ" ବୋଲି ଡାକନ୍ତି । ସାଇବେରିଆକୁ ନିର୍ବାସିତ ହେବା ବେଳକୁ ସେ ବର୍ଦ୍ଧିଲା ଝିଅ ମଧ୍ୟ ହୋଇ ନଥିଲା ପ୍ରାୟ ।

ଦଳର ତୃତୀୟ ଜଣକ ହେଲେ ପାଙ୍କୋଭ୍ । କଡ଼ରୁ ଦେଖିଲେ ମୁହଁଟି କୁନ୍ଦିଲା କୁନ୍ଦିଲା ଦିଶେ । ତାଙ୍କର ସୁନ୍ଦର କେଶପୂର୍ଣ୍ଣ ମୁଣ୍ଡଟି ଏକ ଜର୍ମାନ୍ ପତ୍ରିକା ଉପରେ ଝୁଙ୍କି ପଡ଼ିଥାଏ । ମଝିରେ ମଝିରେ ଶିଙ୍ଗ ଫ୍ରେମଦିଆ ଚଷମାକୁ ନାକ ଉପରକୁ ଟେକିନେବାକୁ ହାତ ଉଠାଉଥାନ୍ତି ସେ । ତିରିଶବର୍ଷ ବୟସ ଏକ ହୃଷ୍ଟପୁଷ୍ଟ ଖେଳୁଆଡ଼ ଭଳି ଦେହସଂପନ୍ନ ଲୋକଟିକୁ ନିଜର ପକ୍ଷାଘାତ ପଙ୍ଗୁ ଗୋଡ଼ଟିକୁ ଘୋଷାରି ଘୋଷାରି ନେବାର ଦେଖିଲେ ସତରେ ଭାରି ଦୁଃଖ ଲାଗେ । ମିଖାଇଲ୍ ଭାସିଲିୟେଭିଚ୍ ପାଙ୍କୋଭ୍ ଜଣେ ସାହିତ୍ୟିକ ଓ ସଂପାଦକ । ସେ ଶିକ୍ଷା ବିଭାଗରେ କାମ କରୁଥିଲେ । ୟୁରୋପ ସଂପର୍କରେ ସେ ଜଣେ ବିଶେଷଜ୍ଞ ଓ ଅନେକ ବିଦେଶୀଭାଷା ଜଣା ତାଙ୍କୁ । ବେଶ୍ ଜ୍ଞାନୀ ଲୋକ ସେ । ଏପରିକି ଗମ୍ଭୀର ପ୍ରକୃତିର ଚେର୍ନୋକୋଜୋଭ୍ ମଧ୍ୟ ତାଙ୍କୁ ସମ୍ମାନ କରେ ।

"ଏଇ ତା'ହେଲେ ତମ ପ୍ରକୋଷ୍ଠର ସାଥୀ ?" ଝିଗିରେଭା ଚେର୍ନୋକୋଜୋଭ୍‌ଙ୍କ କାନରେ ଫୁସ୍‌ଫୁସ୍ କରି ପଚାରିଲେ, ପାଭେଲ୍ କୋର୍ଚାଗିନ୍ ବସିଥିବା ଚଉକିକୁ ଦେଖାଇ ।

ଚେର୍ନୋକୋଜୋଭ୍ ଖବରକାଗଜରୁ ମୁହଁ ଉଠାଇ ଅନାଇଲେ । ତାଙ୍କ ଭ୍ରୂଲତା ସ୍ପଷ୍ଟ ହୋଇଗଲା ଏଥର ।

"ହଁ, ସେଇ ପରା କୋର୍ଚାଗିନ୍ ! ତମେ ତ ତାକୁ ଜାଣିବା କଥା ଶୁରା । ଅତି ଖରାପ ରୋଗ ବିଚରାକୁ ଅକାମି କରିଦେଲାଣି, ନହେଲେ ଟୋକାଟା ଅତି କଠିନ କାମରେ ଆମ ପାଇଁ ଭାରି ସାହାଯ୍ୟକାରୀ ହୋଇଥାନ୍ତା । ସେ ପ୍ରଥମ କମ୍‌ସୋମୋଲ୍ ବଂଶଧର । ମୋର ତ ବିଶ୍ୱାସ, ଆମେ ତାକୁ ସାହାଯ୍ୟ କଲେ ସେ ଏବେ ବି କାମ କରିପାରିବ । ଆଉ ମୁଁ ସେଇଆ କରିବା ପାଇଁ ମଧ୍ୟ ସିଦ୍ଧାନ୍ତ କରିଛି ।"

ପାଙ୍କୋଭ୍ ମଧ୍ୟ ଚେର୍ନୋକୋଜୋଭ୍‌ଙ୍କ କଥା ଶୁଣୁଥିଲେ ।

"କି ରୋଗ ହୋଇଛି ତାଙ୍କର ?" ଶୁରା ଝିଗିରେଭା କୋମଳ କଣ୍ଠରେ ପଚାରିଲେ ।

"ଗୃହଯୁଦ୍ଧର ଫଳ ! ତା' ମେରୁଦଣ୍ଡରେ ଆଘାତ ଲାଗିଛି । ମୁଁ ଏଠା ଡାକ୍ତରଙ୍କୁ ବି ପଚାରିଲିଣି । ସେ କହିଲେ ସଂପୂର୍ଣ୍ଣ ପକ୍ଷାଘାତ ହେବାର ବିପଦର ସମ୍ଭାବନା ମଧ୍ୟ ଅଛି ।"

"ମୁଁ ଯାଏ, ତାକୁ ଏଠିକି ଡାକିଆଣେ", ଶୁରା କହିଲେ ।

ସେମାନଙ୍କର ବନ୍ଧୁତା ଆରମ୍ଭ ହେଲା । ପାଭେଲ୍ ସେଦିନ ଜାଣି ନଥିଲା ଝିଗିରେଭା ଓ ଚେର୍ନୋକୋଜୋଭ୍ ତା' ଜୀବନରେ କେତେ ପ୍ରିୟତର ହୋଇଉଠିବେ ଓ ଭବିଷ୍ୟତର ରୋଗଗ୍ରସ୍ତ ଜୀବନରେ ସେଇ ଦୁହେଁ ହିଁ ହେବେ ତା'ର ପ୍ରଧାନ ସହାୟ ।

* * *

ଜୀବନ ଆଗ ଭଳି ଗଡ଼ିଚାଲିଲା । ତାୟା କାମ କରେ ଓ ପାଭେଲ୍ ପଢ଼େ । ନିଜର ପାଠଚକ୍ରର ଦାୟିତ୍ୱ ନେବା ପାଇଁ ସେ ପ୍ରସ୍ତୁତ ନ ହେଉଣୁ ଅପ୍ରତ୍ୟାଶିତ ଭାବରେ ଆହୁରି ଏକ ଆଘାତ ପାଇଲା । ତା'ର ଦୁଇଟି ଯାକ ଗୋଡ଼ ପୂରାପୂରିଭାବରେ ପକ୍ଷାଘାତଗ୍ରସ୍ତ ହୋଇଗଲା । କେବଳ ତା'ର ଡାହାଣ ହାତଟି ବାକି ରହିଲା ଏବେ । ସେ ସଂପୂର୍ଣ୍ଣ ପଙ୍ଗୁ ହୋଇଯିବାର ଜାଣିସାରିବା ପରେ, ଓଠ କାମୁଡ଼ି ଧରିଲା ଜୋରରେ ରକ୍ତ ବାହାରିବା ପର୍ଯ୍ୟନ୍ତ । ଅତି ସାହସର ସହିତ ତାୟା ନିଜର ନୈରାଶ୍ୟ, ଦୁଃଖ ଲୁଚାଇବାକୁ ଲାଗିଲା, ତାକୁ କୌଣସି ସାହାଯ୍ୟ କରିବାରେ ସମର୍ଥ ନହୋଇ । ମାତ୍ର କ୍ଷମା ଦେବା ଭଙ୍ଗୀରେ ହସି ତାକୁ ପାଭେଲ୍ କହିଲା :

"ତମେ ଓ ମୁଁ ବିଚ୍ଛିନ୍ନ ହୋଇଯିବା ତାୟା । କାରଣ ଏକଥା ତ ଆମର ସମ୍ମିଳନୀର କଥା ନଥିଲା । ଆଜି ରାତିରେ ଏକଥା ମୁଁ ଭାବିବି ଭଲ କରି ।"

ତାୟା ତାକୁ କହିବାକୁ ଦେଲା ନାହିଁ । କଇଁକଇଁ ହୋଇ କାନ୍ଦି ଲେଟିଗଲା ଓ ତା' ଛାତି ଉପରେ ଲୁହଭିଜା ମୁହଁ ଘୋଡ଼ାଇଲା ।

ଭାଇର ଏ ଦୁଃସମ୍ବାଦ ଶୁଣି ଆର୍ତେମ୍ ତା' ମା'କୁ ଲେଖିଲା । ମାରିୟା ୟାକୋଭ୍‌ଲେଭ୍‌ନା ସବୁ ପଛକୁ ପକାଇ, ଛୁଟିଆସିଲେ ତାଙ୍କ ପୁଅ ପାଖକୁ । ଏବେ ସେମାନେ ତିନିହେଁ ଏକାଠି ରହିଲେ । ତାୟା ଓ ବୃଦ୍ଧା ମା ପରସ୍ପରକୁ ପ୍ରଥମରୁ ଗ୍ରହଣ କରିନେଲେ । ସମସ୍ତ ରୋଗ ଯନ୍ତ୍ରଣା ସତ୍ତ୍ୱେ ପାଭେଲ୍ ନିଜର ପଢ଼ାପଢ଼ି ଚଳାଇଗଲା ।

ଶୀତର ଏକ ସନ୍ଧ୍ୟାରେ, ତାୟା ଘରକୁ ଫେରିଲା ତା'ର ପହିଲି ବିଜୟର ସମ୍ବାଦ ନେଇ । ସେ ସହରର ସୋଭିଏତ୍‌କୁ ନିର୍ବାଚିତ ହୋଇଛି । ତା' ପରେ ପାଭେଲ୍ ତାକୁ ଖୁବ୍ କମ୍ ସମୟ ଭେଟେ । ସ୍ୱାସ୍ଥ୍ୟନିବାସ ରୋଷେଇଘରେ ତା'ର ଦିନକର କାମ ସାରି, ତାୟା ସିଧାସଳଖ ମହିଳା ସମିତି ଓ ସୋଭିଏତ୍ କାର୍ଯ୍ୟାଳୟକୁ ଯାଏ । ଅନେକ ରାତିରେ ଘରକୁ କ୍ଳାନ୍ତ ଦେହ ମନ ଅଥଚ ପ୍ରଚୁର ଅଭିଜ୍ଞତା ନେଇ ଫେରେ । ସେ ପାର୍ଟିର ପ୍ରାର୍ଥୀ ସଭ୍ୟପଦ ପାଇଁ ଦରଖାସ୍ତ ଦେବାକୁ ଅପେକ୍ଷା କରିଥାଏ ଓ ତା' ଜୀବନର ସେ ଅନାଗତ ଶୁଭଦିନର ଅପେକ୍ଷାରେ ଥାଏ । ପରେ ଭାଗ୍ୟ ଆହୁରି ଏକ ଆଘାତ ହାଣିଲା । ଦ୍ରୁତ ଅଗ୍ରଗତିସଂପନ୍ନ ରୋଗ ନିଜ କାମ କରିଚାଲିଥାଏ । ଏକ ଭୟଙ୍କର ଅସହ୍ୟ ଯନ୍ତ୍ରଣା ପାଭେଲ୍‌ର ଡାହାଣ ଆଖିଟାକୁ ଜୋରି ପକାଇଲା । ଯନ୍ତ୍ରଣାଟା ତୁରନ୍ତ ବାମ ଆଖିକୁ ମଧ୍ୟ ସଞ୍ଚରିଗଲା ।

ସାରା ଜଗତକୁ ତା'ଠାରୁ ଛିନ୍ନ କରିନେଇ ଏକ କଳା ପରଦା ପଡ଼ିଗଲା । ଜୀବନରେ ପ୍ରଥମ ଥର ପାଇଁ ପାଭେଲ୍ ଜାଣିଲା ସଂପୂର୍ଣ୍ଣ ଅନ୍ଧ, ଚକ୍ଷୁହୀନ ହେବାର ଭୟାବହତା ।

ତା'ର ପଥରୁଦ୍ଧ କରିବା ପାଇଁ ନୂଆ ଏ ପ୍ରତିବନ୍ଧକ ଆଗେଇ ଆସିଲା । ଭୟାବହ ଓ ନିଦାରୁଣ ଏ ବାଧା ! ତାୟା ଓ ତା' ମା'କୁ ଏହି ଦାରୁଣ ଦୁଃଖ ମ୍ରିୟମାଣ କରିଦେଲା । ମାତ୍ର ସେ ନିଥର ନିଶ୍ଚଳଭାବରେ ଶାନ୍ତ ହୋଇ ମନେ ମନେ ଭାବିଲା :

"ମୁଁ ଅପେକ୍ଷା କରି ଦେଖିବି କ'ଣ ଘଟୁଛି । ଯଦି ଆଗେଇବା ପାଇଁ ସମ୍ଭାବନା ନରହେ, ଯଦି ଏ ଚକ୍ଷୁହୀନତା ଯୋଗୁଁ, ଏତେଦିନଯାଏ ପାର୍ଟି କାମ କରିବା ପାଇଁ ମୋର ସମସ୍ତ ପ୍ରଚେଷ୍ଟା ବ୍ୟର୍ଥ ହୁଏ, ତେବେ ମୁଁ ସବୁର ପରିସମାପ୍ତି ଆଣିବି ।"

ନିଜର ବନ୍ଧୁମାନଙ୍କ ପାଖକୁ ଲେଖିଲା ପାଭେଲ୍ ଓ ସେମାନେ ସାହସର ସହିତ ଲଢ଼େଇ କରିଯିବା ପାଇଁ ପରାମର୍ଶ ଦେଲେ ।

ଏହି ଦୁଃଖପୂର୍ଣ୍ଣ ସଂଘର୍ଷମୟ ଦିନଗୁଡ଼ିକ ଭିତରେ ତାୟା ଉଜ୍ଜ୍ୱଳ ମୁହଁରେ ଘରକୁ ଫେରି ଘୋଷଣା କଲା :

"ପାଭେଲ୍, ମୁଁ ପାର୍ଟିର ପ୍ରାର୍ଥୀ ସଭ୍ୟା ହୋଇ ଯାଇଛି ।"

ପାଭେଲ୍ ତା'ର ଆବେଗପୂର୍ଣ୍ଣ ବିବରଣୀ ଶୁଣିଲା, କିଭଳି ସଭାରେ ତା'ର ଦରଖାସ୍ତ ଗୃହୀତ ହେଲା ଓ ତା'ର ମନେପଡ଼ିଲା ତା'ର ନିଜର ସଭ୍ୟ ହେବାର ପ୍ରାରମ୍ଭିକ ଦିନଗୁଡ଼ିକ ।

"ଠିକ୍ ଅଛି, କମ୍ରେଡ୍ କୋର୍ଚ୍ଚାଗିନା, ତମେ ଆଉ ମୁଁ ଏବେ ଏକ ଫ୍ରାକ୍‌ସନର ସଭ୍ୟ ।" ତା'ର ହାତକୁ ମକଚିଦେଇ କହିଲା ସେ ।

ତା'ପରଦିନ ଜିଲ୍ଲା ପାର୍ଟି ସଂପାଦକଙ୍କୁ ସେ ଲେଖିଲା ଆସି ତାକୁ ଦେଖା କରିବା ପାଇଁ । ସେଦିନ ସଂଧ୍ୟାରେ କାଦୁଅ ସଇବଇ ହୋଇ ଗୋଟିଏ କାର୍ ଘର ଦୁଆରମୁହଁରେ ରହିଲା ଓ କିଛି ସମୟ ପରେ ପାର୍ଟି କମିଟିର ସଂପାଦକ ମଧ୍ୟବୟସୀ ଲାଟ୍‌ଭୀୟ ଭୋଲ୍‌ମେର୍ ଗାଡ଼ିରୁ ଓହ୍ଲାଇଲେ । ଆକର୍ଣ୍ଣ ବିସ୍ତୃତ ତାଙ୍କ ଦାଢ଼ି । ପାଭେଲ୍‌ର ହାତକୁ ଧରିପକାଇ ପଚାରିଲେ :

"ଆଚ୍ଛା, କେମିତି ଚାଲିଛି ? ତମ ଏମିତି କାହିଁକି ହଉଛ କହିଲ ? ଛିଡ଼ା ହୋଇ ପଡ଼ ଟିକେ, ଦେଖି ! ତମକୁ ଆମେ ସାଙ୍ଗେ ସାଙ୍ଗେ କାମ କରିବା ପାଇଁ ଗାଁକୁ ପଠାଇଦେବୁ", ହସି ହସି କହିଲେ ସେ ।

ଦୁଇଘଣ୍ଟା କାଳ ପାଭେଲ୍ ପାଖରେ ରହିଲେ ସେ, ତାଙ୍କର ଯେଉଁ ସମ୍ମିଳନୀକୁ ଯିବା କଥା ସବୁ ଭୁଲିଯାଇ । ଘରଟିର ଏପଟରୁ ସେପଟକୁ ପାଦଚାରଣା କରି କରି ସେ ଶୁଣୁଥାନ୍ତି କାମ କରିବାକୁ ଯିବା ପାଇଁ ପାଭେଲ୍‌ର ଆବେଗପୂର୍ଣ୍ଣ ଆବେଦନ ।

"ଦେଖ, ସେ ପାଠଚକ୍ର କଥା ସବୁ ତମେ ଛାଡ଼", ପାଭେଲ୍ ଶେଷ କଲାପରେ କହିଲା ସେ । "ତମର ବିଶ୍ରାମ ଦରକାର । ତମର ଆଖି ଭଲ କରିବା ଦରକାର । ଏବେ ବି ଭଲ ହୋଇଯିବା ସମ୍ଭବ । ଆଚ୍ଛା, ତମେ ମସ୍କୋ ଯାଇ କୌଣସି ବିଶେଷଜ୍ଞଙ୍କ ସହିତ ପରାମର୍ଶ କଲେ କେମିତି ହୁଅନ୍ତା ? ସେକଥା ଭାବିଲ ?"

ପାଭେଲ୍ ତାଙ୍କୁ ବାଧାଦେଲା :

"ମୋର ମଣିଷ ଦରକାର କମ୍ରେଡ୍ ଭୋଲ୍‌ମେର୍, ଜୀବନ୍ତ ମଣିଷ, ରକ୍ତମାଂସର ମଣିଷ । ଆଗ ଅପେକ୍ଷା ଆହୁରି ଅଧିକ, ବର୍ତ୍ତମାନ ଚାହୁଁଛି ମୁଁ ତାଙ୍କ ସହିତ ମିଶିବା ପାଇଁ । ମୁଁ ଏମିତି ଏକାକୀ ଆଉ ବଞ୍ଚିପାରିବି ନାହିଁ । ସମସ୍ତ ଅନଭିଜ୍ଞ ତରୁଣ ତରୁଣୀଙ୍କୁ ମୋ ପାଖକୁ ପଠାଅ ସେମାନେ ଗାଁମାନଙ୍କରେ ପଛରେ ପଡ଼ିଯାଉଛନ୍ତି । କୋଠଖମାରସବୁ ତାଙ୍କୁ ସୁବିଧାସୁଯୋଗ ଦେଉ ନାହାନ୍ତି । ସେମାନେ କମ୍ୟୁନ୍ ସଂଗଠନ କରିବା ପାଇଁ ଚାହୁଁଛନ୍ତି । ସୁବିଧା କିନ୍ତୁ ପାଉ ନାହାନ୍ତି । ତମେ ତ କମ୍‌ସୋମୋଲ୍ ସଭ୍ୟମାନଙ୍କୁ ଜାଣ — ତାଙ୍କୁ ତମେ ଟାଣି ନ ରଖିଲେ ସେମାନେ ଆଗେଇଯିବେ । ଆମର ଧାଡ଼ି ଭାଙ୍ଗି ଧକ୍କା ଖାଇବେ । ମୁଁ ନିଜେ ମଧ୍ୟ ତାଙ୍କରିମାନଙ୍କ ଭଳି ଥିଲି ।"

କଥାର ସୂଅ ମଝିରେ ବାଧାଦେଲେ ଭୋଲ୍‌ମେର୍ ।

"ସେ କଥା କେମିତି ଜାଣିଲ ? ଆଜି ତ ମାତ୍ର ସେମାନେ ସବୁ ଜିଲ୍ଲାମାନଙ୍କରୁ ଖବର ଆଣିଲେ ।"

ପାଭେଲ୍ ହସିଲା ।

"ମୋ ସ୍ତ୍ରୀ ମୋତେ କହିଛି ସବୁ । ତାକୁ ବୋଧହୁଏ ମନେ ଅଛି ତମର ? କାଲି ତାକୁ ପାର୍ଟି ସଭ୍ୟପଦ ମିଳିଲା ।"

"ଆରେ ! ବାସନଧୁଆଳୀ କୋଗ୍‌ଗିନା ! ତାହାହେଲେ ସେଇ ତମ ସ୍ତ୍ରୀ ! ମୁଁ ସେ କଥା ଜାଣି ନଥିଲି ।"

କେଇ ମୁହୂର୍ତ୍ତ ପାଇଁ ନୀରବ ହୋଇଗଲେ ସେ । ନିଜ କପାଳ ଉପରେ ନିଜ ହାତରେ ଆଘାତ କଲେ ମନକୁ କ'ଣ ଗୋଟାଏ ଭାବନା ଆସିଲା କ୍ଷଣି ।

"ଠିକ୍ ଅଛି, ମୁଁ ଯାହାକୁ ତମ ପାଖକୁ ପଠାଇବି, ଠିକ୍ କଲି ଲିଓ ବେର୍‌ସେନେଭ୍‌କୁ । ତା'ଠାରୁ ଭଲ କମ୍ରେଡ୍ ସହିତ ସାଙ୍ଗ ପାଇବାକୁ କାମନା ତମେ କରି ପାରିବ ନାହିଁ । ସେ ତମ ମନକୁ ପାଇବ ବେଶ୍ । ଆଉ କିହେଁ ଯାକ ତମେ ଉଚ୍ଚ ଶକ୍ତିସଂପନ୍ନ ଟ୍ରାନ୍‌ସଫର୍ମର ଭଳି । ଦିନେ ମୁଁ ଜଣେ ବିଜୁଳି ମିସ୍ତ୍ରୀ ଥିଲି, ତମେ ତ ଜାଣିଛ, ତେଣୁ କରି ମୁଁ ଏସବୁ ବିଶେଷ ବିଶେଷ ଶବ୍ଦ ବ୍ୟବହାର କରେ । ତମ ପାଇଁ ଗୋଟାଏ ରେଡିଓ ସେଟ୍ ତିଆରି କରିଦେବ । ସେସବୁ କାମରେ ତା'ର ବେଶ୍ ହାତ ଅଛି । ମୁଁ ପ୍ରାୟ ରାତି ଦୁଇଟାଯାକେ ତା'ଘରେ କାନରେ ଇଅରଫୋନ୍ ଧରି ବସେ । ସ୍ତ୍ରୀ ମୋର ପରା ସେଥି ପାଇଁ ସନ୍ଦେହ କରି ପଚାରିଲା ଦିନେ କାହିଁକି ଏତେ ଡେରିରେ ଘରକୁ ଫେରୁଛି ବୋଲି ?

କୋର୍ଚ୍ଚାଗିନ୍ ହସିଲା, ପଚାରିଲା, "କିଏ ଏ ବେର୍‌ସେନେଭ୍ ?"

ଘର ଭିତରେ ବୁଲିବା ବନ୍ଦ କରି ବସିଲା ଭୋଲ୍‌ମେର୍ ।

"ଆମର ଜଣେ ଯାଞ୍ଚକାରୀ ସରକାରୀ କର୍ମଚାରୀ ସେ । ହେଲେ ମୁଁ ବି ଯେମିତି ବ୍ୟାଲେ ନର୍ତ୍ତକ ନୁହେଁ, ସିଏ ବି ସେଇମିତି ଯାଞ୍ଚକାରୀ ସରକାରୀ କର୍ମଚାରୀ । ୧୯୧୨ ମସିହାରୁ ଆନ୍ଦୋଳନ ସହିତ ସଂପୃକ୍ତ ସେ ଓ ବିପ୍ଳବ ପରଠାରୁ ପାର୍ଟିସଭ୍ୟ ଅଛି । ଦୁଇ ନମ୍ବର ଅଶ୍ୱାରୋହୀ ବାହିନୀରେ ଥିଲା ଗୃହଯୁଦ୍ଧ ସମୟରେ, ଯେତେବେଳେ କକେସସ୍‌ରେ ଶ୍ୱେତରକ୍ଷୀ ପରାଙ୍ଗପୁଷ୍ଟମାନଙ୍କୁ ମୂଳପୋଛ କରାଯାଉଥିଲା । ତା'ଛଡ଼ା ପଶ୍ଚିମ ସାମ୍ମୁଖ୍ୟରେ ଜାରିସିନ୍‌ରେ ମଧ୍ୟ ଥିଲା ସେ । ଅଳ୍ପକାଳ ପାଇଁ ପୂର୍ବ ଗଣତନ୍ତ୍ରରେ ସର୍ବୋଚ୍ଚ ମିଲିଟାରୀ କୋର୍ଟରେ ଥିଲା । ସେଠି ସେ ଭାରି କଷ୍ଟରେ ରହୁଥିଲା । ତା'ପରେ ତାକୁ ଯକ୍ଷ୍ମା ହେଲା । ସେଠା ଛାଡ଼ି କକେସସ୍‌କୁ ଇଆଡ଼େ ଆସିଲା । ପ୍ରଥମେ ଆଞ୍ଚଳିକ କୋର୍ଟରେ କାମ କଲା । ତା'ପରେ ତା' ଫୁସ୍‌ଫୁସ୍ ଯନ୍ତ୍ରଣା ଯୋଗୁଁ ଆଉ ମୋଟେ କାମ କରିପାରିଲା ନାହିଁ । ତା'ପରେ ଏପରି ଅବସ୍ଥା ହେଲା ଯେ, ଏଠିକି ଆସି ଭଲ ନହେଲେ ଚଳିଲା ନାହିଁ ଆଉ ଏମିତି ଆମେ ସେ ବିଶିଷ୍ଟ ଯାଞ୍ଚକାରୀ ସରକାରୀ କର୍ମଚାରୀକୁ ପାଇଲୁ । କାମଟା ମଧ୍ୟ ବିଶେଷ ଝନ୍‌ଝଟିଆ ନୁହେଁ, ତା ପକ୍ଷରେ ବେଶ୍ ଉପଯୁକ୍ତ । ଧୀରେ ଧୀରେ ଏଠା ଲୋକେ ତାକୁ ଗୋଟିଏ ପାଠଚକ୍ର ଦାୟିତ୍ୱ ଦେଲେ । ଏଠାରେ ସେ ଜିଲ୍ଲା କମିଟିକୁ ନିର୍ବାଚିତ ହେଲା । ତା'ପରେ ସେ ନିଜେ ଜାଣିବା ଆଗରୁ ତାକୁ ଏକ ରାଜନୈତିକ ଶିକ୍ଷାଳୟର ଦାୟିତ୍ୱ ଦିଆଗଲା । ଏବେ ତାକୁ କଣ୍ଟ୍ରୋଲ୍ କମିଶନ୍‌ର ଦାୟିତ୍ୱ ଦେଇଛନ୍ତି ସେମାନେ । ଗଣ୍ଡଗୋଳିଆ କଥା ବିଚାର କରିବା ପାଇଁ ଯେତେ ବଡ଼ ବଡ଼ କମିଶନ୍ ବସୁଛି, ସବୁର ସଦସ୍ୟ ସେ ଏବେ । ଏସବୁ ଛଡ଼ା ସେ ଶିକାରକୁ ଯାଏ ଓ ରେଡିଓ ବଜାଇବା ତା'ର ସବୁଠୁଁ ବଡ଼ ଅବସର ବିନୋଦନ । ତା'ର ସିନା ଗୋଟିଏ ଫୁସ୍‌ଫୁସ୍ କାମ କରୁଛି, ହେଲେ ତାକୁ ଦେଖିଲେ, ତମେ ସେକଥା ଆଦୌ ବିଶ୍ୱାସ କରିପାରିବ ନାହିଁ ।

ସବୁବେଳେ ଉତ୍ସାହରେ ଭରପୂର ସେ । ଆଉ ଯଦି ସେ କେବେ ମରେ ନାଁ ... ଜିଇ କମିଟି ଓ ବିଗ୍ରାଳୟ ମଝି ରାସ୍ତାରେ ହିଁ ମରିବ ।"

ପାଭେଲ୍ ମଝିରେ କହିଉଠିଲା :

"ତାକୁ ଏତେ କାମ ଦଉଛ କାହିଁକି ତମେ ? ଆଗ ଅପେକ୍ଷା ତ ଏଠି ସେ ବେଶି କାମ କରୁଛି ?" ତୀବ୍ର ସ୍ୱରରେ କହିଲା ସେ ।

ବିହ୍ୱଳିତ ହେଲଭଳି ତାକୁ ଗ୍ରହିଁଲ ଭୋଲ୍‌ମେର୍ ।

"ଆଉ ତମକୁ ଯଦି ମୁଁ ଗୋଟାଏ ପାଠଚକ୍ର କି ସେମିତି କିଛିର ଦାୟିତ୍ୱ ଦିଏ, ସିଏ ବି କହିବ ଠିକ୍, 'ତାକୁ ଏତେ କାମ କାହିଁକି ଦଉଛ ?' କିନ୍ତୁ ସେ ନିଜେ ବୁଝେ ଯେ, ତାକୁ ପାଞ୍ଚବର୍ଷ ଡାକ୍ତରଖାନାରେ ପଡ଼ିରହିବା ଅପେକ୍ଷା ବର୍ଷଟିକର ଘୋରତର କାମ ଲୋଡ଼ା । ମୋତେ ତ ଲଗୁଛି ଯେମିତି ଆମେ ଆମ ଲୋକଙ୍କର ସ୍ୱାସ୍ଥ୍ୟ ଫେରାଇଆଣିବା ଆଗରୁ ସମାଜବାଦ ପ୍ରତିଷ୍ଠା କରିପକାଇବୁ ।"

"ସେକଥା ନିଶ୍ଚିତଭାବରେ ସତ୍ୟ । ମୋର ତ ପାଞ୍ଚବର୍ଷ ସ୍ଥିର, ଅକାମୀ ଜୀବନ ଅପେକ୍ଷା ବର୍ଷକର କର୍ମଚଞ୍ଚଳ ଜୀବନ ଲୋଡ଼ା । ମାତ୍ର ବେଳେବେଳେ ଆମେ ଅତି ନିର୍ଦ୍ଦୟଭାବରେ ଆମର ଶକ୍ତିର ଅପବ୍ୟବହାର କରୁ । ଏବେ ମୁଁ ଜାଣୁଛି ଯେ, ଏଇଟା ବୀରତ୍ୱର ପରିଚାୟକ ଅପେକ୍ଷା ଅଧିକତର ଭାବରେ ଦାୟିତ୍ୱହୀନତା ଓ ଅପାରଗତାର ପରିଚୟ । ଏବେ ମୁଁ ବୁଝିବାକୁ ଆରମ୍ଭ କରିଛି ଯେ, ନିଜ ସ୍ୱାସ୍ଥ୍ୟ ସଂପର୍କରେ ନିର୍ବୋଧଭାବରେ ଏପରି ଦାୟିତ୍ୱହୀନ ହେବାର ଅଧିକାର ମୋର ନାହିଁ । ଏଥିରେ ବୀରତ୍ୱ ଆଦୌ ନାହିଁ ବୋଲି ଏବେ ବିଗ୍ରର କରୁଛି ମୁଁ । ସେଇଭଳି କାଣ୍ଡଜ୍ଞାନହୀନ ସାହସିକତା ନ ଦେଖାଇଥିଲେ ଆଉ କିଛି ବର୍ଷ ଅଧିକା କାମ ହୁଏତ ମୁଁ କରିପାରିଥାଆନ୍ତି । ଅନ୍ୟ ରୂପରେ କହିବାକୁ ଗଲେ, ଶୈଶବ୍ୟ ବାମପନ୍ଥୀ ଚିନ୍ତାଧାରା ହିଁ ଆମ ପକ୍ଷରେ ସବୁଠାରୁ ବଡ଼ ବିପଦ ।"

"ସିଏ ବି ଏକଥା ବର୍ତ୍ତମାନ କହୁଛି", ଭୋଲ୍‌ମେର୍ ଭାବିଲେ । "ହେଲେ ଟିକିଏ ଭଲ ଆଡ଼କୁ ଆସିଲେ କାମ ଛଡ଼ା ଆଉ ସବୁ କିଛି ଭୁଲିଯିବ ସେ ।" ହେଲେ କିଛି କହିଲ ନାହିଁ ସେ ।

ତା' ପରଦିନ ସନ୍ଧ୍ୟାରେ ଲିଓ ବେର୍‌ସେନେଭ୍ ଆସିଲ । ପାଭେଲ୍‌ଠାରୁ ସେ ବିଦାହୋଇ ଗଲବେଳକୁ ଅଧରାତି ହେଲଣି । ଗଲବେଳକୁ ତାକୁ ଲଗୁଥିଲ, ଯେମିତି ସେ ନୂଆ କରି ଭାଇକୁ ପାଇଛି ।

ପରଦିନ ସକାଳୁ କୋର୍ଗିନ୍ ଘର ଉପରେ ରେଡିଓର ଏରିଏଲ ଲଗା ହୋଇଗଲ, ଲିଓ ଘର ଭିତରେ ରେଡିଓ ସହିତ କ'ଣ କାମ କଲବେଳେ । କାମ କରୁ କରୁ ସେ ତା'ର ଅତୀତ ଜୀବନର ଆଗ୍ରହପ୍ରଦ କାହାଣୀସବୁ ପାଭେଲ୍‌କୁ କହୁଥାଏ । ପାଭେଲ୍ ତାକୁ ଦେଖିପାରୁ ନଥାଏ । ମାତ୍ର ତାଯା କଥାରୁ ଜାଣିଥାଏ ଯେ, ଲିଓ ଡେଙ୍ଗା ହୋଇ ନୀଳଆଖିଆ, ଗହଳ ବାଳସଂପନ୍ନ ତରୁଣଟିଏ । ଠିକ୍ ପହିଲି ସାକ୍ଷାତ୍ ଦିନ ଯେମିତି

ପାଭେଲ୍ କଳ୍ପନା କରିଥିଲା, ସେ ସେଇମିତି ହୋଇଥିବ ବୋଲି ।

ସନ୍ଧ୍ୟା ହେଲାମାତ୍ରେ ପାଭେଲ୍‌ର ବଖରାଟିରେ ରେଡିଓର ତିନିଟି ଭାଲ୍‌ଭ୍ ଜଳିଉଠିଲା । ଲିଓ ଗର୍ବର ସହିତ ଇଅରଫୋନ୍‌ଟିକୁ ବଢ଼ାଇଦେଲା ପାଭେଲ୍‌କୁ । କାନରେ ତା'ର ଅନେକ ଆଜେବାଜେ ଶବ୍ଦ ବାଜିଗଲା, ଯାହାସବୁ ଶବ୍ଦତରଙ୍ଗରେ ଭାସିବୁଲୁଥିଲା – ବନ୍ଦରର ବେତାରପ୍ରେକ୍ଷକ ଯନ୍ତ୍ରସବୁ ସମୁଦ୍ର ଭିତରେ ଥିବା ଜାହାଜମାନଙ୍କୁ ଅସରନ୍ତି ସମ୍ବାଦ ଟପ୍‌ଟାପ୍ କରି ପଠାଉଥାଆନ୍ତି । ତା'ପରେ ସେ ଶବ୍ଦତରଙ୍ଗର ଗୋଳମାଳ ମଝିରେ ଠିକ୍, କଏଲ ଘୂରାଉ ଘୂରାଉ ଅତି ଗମ୍ଭୀର ଆତ୍ମବିଶ୍ୱାସପୂର୍ଣ୍ଣ ଗଳାରେ କହିଉଠିଲା :

"ଆପଣ ମସ୍କୋରୁ ଶୁଣୁଛନ୍ତି ... ।"

ପୃଥିବୀର ବିଭିନ୍ନ ଅଞ୍ଚଳର ଷାଠିଏଟି ବେତାର କେନ୍ଦ୍ରରୁ କଥା ବହନ କରି ଆଣୁଥିଲା ଛୋଟିଆ ବେତାର ଯନ୍ତ୍ରଟି ପାଭେଲ୍ ପାଖକୁ । ଯେଉଁ ଜୀବନରୁ ସେ ଦୂରେଇ ଯାଇଥିଲା, ଏହି ଇଅରଫୋନ୍‌ଟିର ପତଳା ପର୍ଦ୍ଦାର ମଧ୍ୟ ଦେଇ ତା ନିକଟରେ ଆସି ପହଞ୍ଚିଗଲା । ପୁଣି ଥରକ ପାଇଁ ଜୀବନର ଅଦମନୀୟ ଉଚ୍ଛ୍ୱାସ ସେ ଅନୁଭବ କଲା ନିଜ ଭିତରେ । ପାଭେଲ୍‌ର ଆଖିରେ ଆନନ୍ଦ ଉଜ୍ଜ୍ୱଳତା ଲକ୍ଷ୍ୟ କରି ବିବ୍ରତ ବେର୍‌ସେନେଭ୍ ମଧ୍ୟ ପ୍ରାଣଖୋଲିରେ ହସିଉଠିଲା ।

* * *

ବିରାଟ ଘରଟି ନିସ୍ତବ୍ଧ ହୋଇଯାଇଥାଏ । ତାୟା ନିଦ ବାଉଳିରେ କ'ଣ କହିଯାଉଥାଏ । ଆଜିକାଲି ତାୟାକୁ ଖୁବ୍ କମ୍ ଭେଟେ ପାଭେଲ୍ । ସେ ଅନେକ ବିଳମ୍ବରେ କ୍ଳାନ୍ତ ହୋଇ ଶୀତରେ ଥରିଥରି ଘରକୁ ଫେରେ । କାମରେ ତା'ର ଆହୁରି ଅଧିକରୁ ଅଧିକ ସମୟ ନିୟୋଜିତ ହେବାକୁ ଲାଗିଥାଏ । କୌଣସି ସନ୍ଧ୍ୟା ପ୍ରାୟ ସେ ଫାଙ୍କା ପାଏ ନାହିଁ । ଏ ସଂପର୍କରେ ବେର୍‌ସେନେଭ୍ ଯାହା ତାକୁ କହିଥିଲା ସବୁ ମନେ ପଡ଼ିଲା ପାଭେଲ୍‌ର :

"ଜଣେ ବଲ୍‌ଶେଭିକ୍‌ର ପାର୍ଟି କମ୍ରେଡ୍ ସ୍ତ୍ରୀ ଥିଲେ ସେମାନେ ପରସ୍ପରକୁ ପ୍ରାୟ ଭେଟନ୍ତି ନାହିଁ । ମାତ୍ର ଏଥିରେ ଦୁଇଟି ସୁବିଧା ଅଛି – ସେମାନେ ପରସ୍ପର ପ୍ରତି କେବେ ବିମୁଖ ହୁଅନ୍ତି ନାହିଁ କିମ୍ବା କଳି ଲଗାଇବାକୁ ସମୟ ପାଆନ୍ତି ନାହିଁ ।"

ଏଥିରେ କେମିତି ବା ସିଏ ବାଧା ଦିଅନ୍ତା ? ଏଇଆ ତ ସେ ଗୁହୁଁଥିଲା । ଦିନ ଥିଲା ଯେତେବେଳେ ତାୟା ତା' ନିକଟରେ ପ୍ରତିଟି ସଂଧ୍ୟା ବିତାଉଥିଲା । ସେମାନଙ୍କର ସଂପର୍କ ଆହୁରି ନିବିଡ଼ ଓ ଆହୁରି ଅଧିକ ମମତାପୂର୍ଣ୍ଣ ଥିଲା । କିନ୍ତୁ ସେତେବେଳେ ସେ କେବଳ ମାତ୍ର ସାଥୀ, ସ୍ତ୍ରୀ ହୋଇଥିଲା । ଏବେ ସେ ପାଭେଲ୍‌ର ଛାତ୍ରୀ, ତା'ର ପାର୍ଟି କମ୍ରେଡ୍ ।

ସେ ବୁଝିଥିଲା ଯେ, ତାୟା ଯେତେ ରାଜନୈତିକଭାବେ ସଚେତନ ହେବ, ତା' ପାଇଁ ବିନିଯୋଗ କରିବାକୁ, ସେତେ କମ୍ ସମୟ ପାଇବ ଏବଂ ସେ ଅବଶ୍ୟ ଭବିତବ୍ୟକୁ ମୁଣ୍ଡପାତି ଗ୍ରହଣ କରିନେଇଥିଲା ।

ଏକ ପାଠଚକ୍ରକୁ ନେତୃତ୍ୱ ଦେବାର ଦାୟିତ୍ୱ ମିଳିଲା ପାଭେଲ୍‌କୁ ।

ମହୁଫେଣା ପୁଣି ଗୁଞ୍ଜରିତ ହୋଇଉଠିଲା ପ୍ରତିସଂଧ୍ୟାରେ । ତରୁଣମାନଙ୍କ ସହିତ ବିତାଇବା ସମୟତକ ପାଭେଲ୍ ଶକ୍ତି ଓ ଉତ୍ସାହରେ ଭରପୂର ହୋଇଉଠିଲା ।

ବାକି ସମୟତକ କଟେ ରେଡିଓକୁ କାନପାତି । ବେଳେବେଳେ ଇଅରଫୋନ୍ ପାଖରୁ, ବଢ଼ାହୋଇଥିବା ଖାଦ୍ୟ ପାଖକୁ ତାକୁ ଉଠାଇନେବାକୁ ବି ମା'ଙ୍କ ପକ୍ଷରେ କଷ୍ଟକର ହୁଏ ।

ଚକ୍ଷୁହୀନତା ତା' ପାଖରୁ ଯାହା ଛିନ୍ନ କରିନେଇଛି, ରେଡିଓ ତାକୁ ଆଣିଦେଇଛି । ତାହା ଜ୍ଞାନ ଆହରଣ କରିବାର ସୁଯୋଗ । ଆଉ ଜ୍ଞାନ ଆହରଣ କରିବାର ତା'ର ଏ ଅଦମ୍ୟ ଅଭିଳାଷ, ତା'ର ଦେହକୁ କୋରିକୋରି ଖାଇଯାଉଥିବା ଭୀଷଣ ଯନ୍ତ୍ରଣାକୁ ତାକୁ ଭୁଲାଇଦିଏ । ଯେଉଁ ଅଗ୍ନିସ୍ଫୁଲିଙ୍ଗ ତା' ଆଖିକୁ ଅନ୍ଧ କରିଛି, ସମସ୍ତ ବେଦନା, ଯାହା ଭାଗ୍ୟ ତା' ଉପରେ ଲଦିଦେଇଛି ନିଦାରୁଣ ହୋଇ, ସବୁ ଭୁଲିଯାଏ ସେ ଏହି ଜିଗୀଷା ଯୋଗୁଁ ।

ରେଡିଓ ଯେତେବେଳେ ମାଗ୍‌ନିତୋଗୋର୍ସ୍କ ଖବରରେ ସେଠାକାର କମ୍‌ସୋମୋଲ୍‌ର ସଭ୍ୟମାନଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟର ସମ୍ବାଦ ଦେଲା ପାଭେଲ୍‌ର ହୃଦୟ ଆନନ୍ଦରେ ଭରିଗଲା । ଏହି ତରୁଣ କମ୍ୟୁନିଷ୍ଟମାନେ ଥିଲେ ପାଭେଲ୍‌ର ପରବର୍ତ୍ତୀ ତରୁଣତରୁଣୀ ।

ଆଖି ଆଗରେ ତା'ର ଭାସିଗଲା ନିର୍ଦ୍ଦୟ ବରଫଝଡ଼, ତୀବ୍ର ବରଫପାତ, କୁହୁଡ଼ିର ଦୃଶ୍ୟ ଓ ତା' ସଙ୍ଗେ ସଙ୍ଗେ ପଞ୍ଝାଏ କ୍ଷୁଧିତ ହିଂସ୍ର ହେଟାବାଘଙ୍କର ଦୃଶ୍ୟ । ଶୁଣିପାରିଲା ସେ ପବନର ହୁଙ୍କାର ଓ ଦେଖିପାରିଲା ପ୍ରବଳ ତୁଷାର ଝଟିକା ଭିତରେ, ଆର୍କ୍‌ଲ୍ୟାମ୍ପ ଲଗାଇ, ବିରାଟ କାରଖାନାର ଛାତି ଉପରେ ଦଳେ ଯୁବକ ବରଫ ଓ ତୁଷାରରୁ କାରଖାନାର ପ୍ରଥମ ଅଂଶଟିକୁ ରକ୍ଷା କରିବା ପାଇଁ ଅବିଚଳିତଭାବରେ କାମ କରିଚାଲିଛନ୍ତି । ଏ ସଂଗ୍ରାମ ସହିତ ତୁଳନାରେ ଜଙ୍ଗଲ ଭିତରେ ରେଳରାସ୍ତା ତିଆରି କାମ କେତେ ଛୋଟ, ଯାହା କିଏଭ୍ କମ୍‌ସୋମୋଲ୍‌ର ପ୍ରଥମ ବଂଶଧରମାନେ କରିଥିଲେ । ଦେଶ ମହାନ୍ ହୋଇଛି, ତା' ସହିତ ଏ ଦେଶର ଲୋକେ ମଧ୍ୟ ମହାନ୍ ହୋଇଛନ୍ତି !

ନୀପର ନଦୀ ଲୁହା ବନ୍ଧକୁ ଭାଙ୍ଗି ଧସେଇ ପଶିଆସି ମଣିଷ ଓ ମେସିନ୍‌କୁ ଭସାଇ ନେଇଯାଇଛି । ପୁଣି ସେହି କମ୍‌ସୋମୋଲ୍‌ମାନେ ଭଙ୍ଗା ଘାଇ ପାଖକୁ ଧାଇଁଯାଇଛନ୍ତି ଏବଂ ଦୁଇ ଦିନର ପ୍ରବଳ ସଂଗ୍ରାମ ପରେ ବାଧା ନ ମାନୁଥିବା ନଦୀସ୍ରୋତ ମଣିଷର ନିୟନ୍ତ୍ରଣାଧୀନ ହୋଇଛି । କମ୍‌ସୋମୋଲ୍‌ର ଏକ ନୂଆ ବଂଶଧର ଏ ସଂଗ୍ରାମର ପଥରେ ଆଗେଇ ଯାଇଛନ୍ତି । ଏ ବୀରମାନଙ୍କ ମଧ୍ୟରେ ପାଭେଲ୍ ଗର୍ବିତ ହୋଇ ଶୁଣିଲା, ତା'ର ପୁରାତନ କମ୍ରେଡ୍ ଇଗ୍‌ନାତ୍ ପାନ୍‌କ୍ରାତୋଭ୍‌ର ନାଁ ।

# ନବମ ପରିଚ୍ଛେଦ

ପାଭେଲ୍ ପାଇଁ ଏକ ବିଶେଷ ଡାକ୍ତରଖାନାରେ ରହିବା ପାଇଁ ଯୋଗାଡ଼ କରିଦେଇଥିବା ବନ୍ଧୁଙ୍କ ଘରେ, ମସ୍କୋରେ ପ୍ରଥମ କେଇଦିନ ରହିଲେ ସେମାନେ ।

ଏବେ ପାଭେଲ୍ ଅନୁଭବ କଲା ଯେ, ତା'ର ତାରୁଣ୍ୟ ଓ ସମର୍ଥ ଶରୀର ଥିଲାବେଳେ ସାହସୀ ହେବା ପାଇଁ କେଡ଼େ ସହଜ ଥିଲା । ଏବେ ଜୀବନ ତାକୁ ନିଜର ଲୌହ କବ୍‌ଜାରେ ଜାବୁଡ଼ି ଧରିଛି । ଏଥିରୁ ଉଦ୍ଧାର ପାଇବା ଏକ ସମ୍ମାନ ହେବ ।

* * *

ଦେଢ଼ବର୍ଷ ହେଲଣି, ପାଭେଲ୍ କୋର୍ଚ୍ଚାଗିନ୍ ମସ୍କୋକୁ ଆସିବାର । ଅଠରଟି ମାସ ତୀବ୍ର ମନୋବେଦନା ଭିତରେ ବିତିଛି !

ଚକ୍ଷୁ ଚିକିତ୍ସାଳୟରେ ଡାକ୍ତର ଆଭେର୍ବାଖ୍ ଅତି ସ୍ପଷ୍ଟଭାବରେ ତାକୁ କହିଛନ୍ତି ଯେ, ଦୃଷ୍ଟିଶକ୍ତି ଫେରିପାଇବା ଆଉ ସମ୍ଭବ ନୁହେଁ । ଭବିଷ୍ୟତରେ କେବେ ଏ ଫୁଲା କମିଗଲା ପରେ ଯାଇଁ ଡୋଳା ଉପରେ ଅସ୍ତ୍ରୋପଚାର କରିବା ସମ୍ଭବ ହେବ । ଇତ୍ୟବସରରେ ଏ ଫୁଲିବା ବନ୍ଦ କରିବା ପାଇଁ ଅସ୍ତ୍ରୋପଚାର କରିବାକୁ ନିର୍ଦ୍ଦେଶ ଦେଲେ ସେ ।

ପାଭେଲ୍ ସମ୍ମତ ହେଲା । ଡାକ୍ତରମାନଙ୍କୁ ସେ ଜଣାଇଲା ଯାହା ଆବଶ୍ୟକ ସବୁ କରିବାକୁ ।

ଅସ୍ତ୍ରୋପଚାର ଟେବୁଲରେ ପଡ଼ିରହିଥିବା ବେଳେ, ତା' ବେକ ଭିତରେ ଡାକ୍ତରମାନଙ୍କର ଛୁରୀ ଘୂରିବୁଲି ପାରାଥିରୋଇ ଗ୍ରନ୍ଥି ଖୋଜୁଥିବା ବେଳେ ତିନିଥର ସେ ମୃତ୍ୟୁର ହିମଶୀତଳ ଅଙ୍ଗୁଳିର ସ୍ପର୍ଶ ପାଇଛି । ମାତ୍ର ଜୀବନକୁ ଅତି ପ୍ରବଳଭାବରେ ଜାବୁଡ଼ି ଧରିଛି ସେ । ବହୁ ଘଣ୍ଟା ଧରି ବେଦନାକାତର ନୀରବତା ପରେ ତାୟା ତାକୁ ମୃତ୍ୟୁ ଭଳି ପାଣ୍ଡୁର ଦେଖିଛି, ମାତ୍ର ଦେଖିଛି ସେ ବଞ୍ଚିରହିଛି ଓ ପୂର୍ବଭଳି ଭଦ୍ର ହୋଇ ରହିଛି । କହିଛି :

"ଚିନ୍ତା କର ନାହିଁ ବାଳିକା । ମୋତେ ମାରିଦେବା ଏତେ ସହଜ ନୁହଁ । ସମସ୍ତ ଡାକ୍ତରଙ୍କର ହିସାବନିକାଶକୁ ବ୍ୟର୍ଥ କରି ମୁଁ ବଞ୍ଚିବି ! ମୋ ସ୍ୱାସ୍ଥ୍ୟ ସଂପର୍କରେ ଯାହାସବୁ ସେମାନେ କହୁଛନ୍ତି, ସବୁ ସତ । ମାତ୍ର ସେମାନେ ବିରାଟ ଭୁଲ କରୁଛନ୍ତି, ଯେତେବେଳେ ସେମାନେ ମୋତେ ଫେଡ଼ାଣ ଖାତାରେ ଲେଖିଦେଇ କହୁଛନ୍ତି – 'କାମ ପାଇଁ ସଂପୂର୍ଣ୍ଣ ଅପାରଗ' ବୋଲି । ସେମାନଙ୍କୁ ଦେଖାଇଦେବି ମୁଁ ।"

ନୂଆ ଜୀବନର ସ୍ରଷ୍ଟାମାନଙ୍କ ମଧ୍ୟରେ ନିଜ ପଦ ଖୋଜିନେବା ପାଇଁ ଦୃଢ଼ପ୍ରତିଜ୍ଞ ଥିଲା ପାଭେଲ୍ । ସେ ଜାଣିଥିଲା ଏବେ କ'ଣ କରିବା ଉଚିତ ତା' ପକ୍ଷରେ ।

* * *

ଶୀତ ଶେଷ ହୋଇଗଲାଣି, ବସନ୍ତ ପଶିଆସୁଛି ଘରର ଝରକାଗୁଡ଼ିକ ଦେଇ । ଆଉ ଗୋଟିଏ ଅପରେସନ ସରିଲା ପରେ ପାଭେଲ୍ ସିଦ୍ଧାନ୍ତ କଲା ଯେ, ଦୁର୍ବଳ ହେଲେ ମଧ୍ୟ ଆଉ ସେ ହାସ୍‌ପାତାଳରେ ରହିବ ନାହିଁ । ତା'ପରେ ନିଜର ଯନ୍ତ୍ରଣା ସହ୍ୟ କରିବା ଅପେକ୍ଷା ଏତେଦିନ ଧରି ଯନ୍ତ୍ରଣାକାତର ମଣିଷଙ୍କ ମଝିରେ ରହି, ସେମାନଙ୍କର ଆର୍ତ୍ତ ଚିତ୍କାର ଶୁଣିବା ଓ ସହିବା ତା' ପକ୍ଷରେ କଷ୍ଟକର ।

ତେଣୁ ଆଉ ଗୋଟିଏ ଅସ୍ତ୍ରୋପଚାର ହେବା କଥା ଉଠିଲା ମାତ୍ରେ ସେ ବାରଣ କଲା :

"ନାଁ", ଦୃଢ଼ଗଳାରେ କହିଲା ସେ । "ଅନେକ ହେଲାଣି । ବିଜ୍ଞାନ ପାଇଁ ବହୁ ରକ୍ତକ୍ଷୟ କଲିଣି ମୁଁ । ବାକି ରକ୍ତତକ ମୁଁ ଅନ୍ୟ କାମରେ ନିୟୋଜିତ କରିବି ।"

ସେହିଦିନ ପାଭେଲ୍ କେନ୍ଦ୍ର କମିଟିକୁ ଲେଖି ଜଣାଇଲା ଯେ, ଡାକ୍ତରୀ ଚିକିତ୍ସା ପାଇଁ ଏପରି ଘୂରି ବୁଲିବା ତା' ପାଇଁ ଅର୍ଥହୀନ ହୋଇଥିବାରୁ ସେ ତା' ସ୍ତ୍ରୀ ସହିତ ମସ୍କୋରେ ରହିବାକୁ ଚାହେଁ—ସେ ବର୍ତ୍ତମାନ ମସ୍କୋରେ କାମ କରୁଛି । ଏହି ପ୍ରଥମ ଥର ପାଇଁ ସେ ପାର୍ଟିକୁ ସାହାଯ୍ୟ ମାଗିଲା । ତା'ର ଆବେଦନ ମଞ୍ଜୁର ହେଲା ଓ ମସ୍କୋ ସୋଭିଏତ୍ ତାକୁ ବାସଗୃହ ଯୋଗାଇ ଦେଲେ । ଡାକ୍ତରଖାନା ଛାଡ଼ିଲା ପାଭେଲ୍, ଆଶା ପୋଷଣ କରି ଯେ, ଆଉ କେବେ ଡାକ୍ତରଖାନାକୁ ଆସିବାକୁ ପଡ଼ିବ ନାହିଁ ତାକୁ ।

କ୍ରପୋଟ୍‌କିନ୍‌ସ୍କାୟା ଷ୍ଟ୍ରିଟ୍‌ରୁ ବାହାରିଥିବା ନୀରବ ଏକ ଗଳିରେ ଥିବା ସେ ସାଧାରଣ ଘରଟି ତାକୁ ଜୀବନର ସବୁଠାରୁ ଉପଭୋଗର ବସ୍ତୁଭଳି ଲାଗିଲା । ଦିନେ ଦିନେ ରାତିରେ ଚମକି ଉଠି ସେ ବିଶ୍ୱାସ କରିବାକୁ ଚେଷ୍ଟା କରେ ଯେ, ଡାକ୍ତରଖାନାର ଜୀବନ ତା' ପାଇଁ ଅତୀତ ହୋଇଗଲାଣି ଏବେ ।

ତାୟା ଏବେ ପୂରା ପାର୍ଟିସଭ୍ୟା ହୋଇଗଲାଣି । ଅତି କର୍ମଠ କର୍ମୀ ସେ । ତା ବ୍ୟକ୍ତିଗତ ଜୀବନର ଏହି ମର୍ମନ୍ତୁଦ ପରିସ୍ଥିତି ସତ୍ତ୍ୱେ କାରଖାନାର ଅନ୍ୟାନ୍ୟ ମୋଢ଼ାତିଆରି ଶ୍ରମିକମାନଙ୍କ ଅପେକ୍ଷା ପଛେଇ ଯାଇ ନାହିଁ ସେ । ତା'ର ସହକର୍ମୀମାନେ ଏ ଶାନ୍ତଶିଷ୍ଟ ସ୍ୱଭାବର କର୍ମଠ ତରୁଣୀଟି ପ୍ରତି ସମ୍ମାନ ପ୍ରଦର୍ଶନ କରି, ତାକୁ କାରଖାନାର ଟ୍ରେଡ୍ ୟୁନିଅନ୍ କମିଟିକୁ ନିର୍ବାଚିତ କରାଇଛନ୍ତି । ଯଥାର୍ଥ ବଲ୍‌ଶେଭିକ୍ ହୋଇଥିବା ନିଜ ସ୍ତ୍ରୀ ପାଇଁ ଗର୍ବବୋଧ ପାଭେଲ୍‌କୁ ନିଜର କଷ୍ଟ ଭୁଲାଇ ଦେଇଥିଲା ।

ନିଜର କିଛି କାମରେ ବାଝାନୋଭା ମସ୍କୋ ଆସିଥିଲେ ଓ ତାକୁ ଭେଟିଲେ । ଅନେକ ସମୟ ପର୍ଯ୍ୟନ୍ତ ଆଲୋଚନା କଲେ ସେମାନେ । କିଭଳି ସେ ପୁଣି ତା'ର ସଂଗ୍ରାମୀ କର୍ମୀଦଳ ମଧ୍ୟକୁ ଫେରିଯିବା ପାଇଁ ନିକଟ ଭବିଷ୍ୟତରେ ଭାବୁଛି, ସେକଥା ତାଙ୍କୁ କହୁକହୁ ପାଭେଲ୍ ପ୍ରାଣବନ୍ତ ହୋଇଉଠିଲା ।

ପାଭେଲ୍‌ର କାନମୂଳର ବାଳସବୁ ଧଳା ପଡ଼ି ଆସିଥିବାର ଦେଖି, ବାଝାନୋଭା କୋମଳଭାବରେ କହିଲେ :

"ତମେ ଏଥି ମଧ୍ୟରେ ଅନେକ ଝଡ଼ିଯାଇଛ । ହେଲେ ତମ ଉତ୍ସାହ ତ ଟିକିଏ କମିବାର ଦେଖୁ ନାହିଁ ମୁଁ । ଆଉ ସେଇଟା ହିଁ ହେଲା ଅସଲ କଥା । ମୁଁ ଖୁସି ଯେ, ଗତ ପାଞ୍ଚ ବର୍ଷଧରି ତମେ ଯେଉଁ କାମ ପାଇଁ ପ୍ରସ୍ତୁତ କରୁଥିଲ, ତାହା ଆରମ୍ଭ କରିବାକୁ ଯାଉଛ । କିନ୍ତୁ କେମିତି ଆରମ୍ଭ କରିବାକୁ ଭାବିଛ ?"

ଦୃଢ଼ତାବ୍ୟଞ୍ଜକ ହସ ହସିଲା ପାଭେଲ୍ ।

"କାଲି ମୋ ବନ୍ଧୁମାନେ ମୋ ପାଇଁ ପଟା କାଗଜ ଭର୍ତ୍ତି ଦାଗପକା ଷ୍ଟେନ୍‌ସିଲ୍ ଆଣିଦେବେ । ମୁଁ ତା'ରି ଉପରେ ଲେଖିବି, ଯାହା ଫଳରେ ଧାଡ଼ିଗୁଡ଼ାକ ସବୁ ମିଶିଯିବ ନାହିଁ । ତା' ବ୍ୟତୀତ ତ ମୁଁ ଲେଖିପାରିବି ନାହିଁ । ଅନେକ ଭାବିଚିନ୍ତି ଏଇ କଥାଟା ସ୍ଥିର କରିଛି । ଦେଖ, ପଟାର ଧାରରୁ ପେନ୍‌ସିଲ ମୋର ବାହାରକୁ ଖସିଯିବ ନାହିଁ । ସିଧା ଧାଡ଼ି ଉପରେ ଚାଲିବ । ଅବଶ୍ୟ ନିଜେ ଯାହା ଲେଖିବ, ତାକୁ ନଦେଖି ଲେଖିଲେ ଭାରି ଅସୁବିଧା ହେବ, ମାତ୍ର ନଲେଖିଲେ ହେବ ନାହିଁ, ତମେ ତ ଜାଣିଛ ସେଦିଗରେ ଚେଷ୍ଟା କରିଛି ମୁଁ । କିଛି ସମୟ ଲାଗି ଅଭ୍ୟାସ କରିବାକୁ ପଡ଼ିଲା । ଅବଶ୍ୟ ଏବେ ମୋର ଧୀରେ ଧୀରେ ଲେଖିବା ପାଇଁ ଅଭ୍ୟାସ ହୋଇଗଲାଣି । ପ୍ରତ୍ୟେକ ଅକ୍ଷର ପାଇଁ କଷ୍ଟ ଲାଗେ, ତଥାପି ଫଳାଫଳ ତା'ର ବେଶ୍ ସନ୍ତୋଷଜନକ ।"

ପାଭେଲ୍ ଏହିପରି କାମ ଆରମ୍ଭ କଲା ।

ବୀରତ୍ୱ ଦେଖାଇଥିବା କୋଟୋଭ୍‌ସ୍କି ବାହିନୀ ବିଷୟରେ ଗୋଟିଏ ଉପନ୍ୟାସ ଲେଖିବା ପାଇଁ ମନସ୍ଥ କରିଥିଲା ସେ । ଉପନ୍ୟାସର ନାମକରଣ ଛାଁକୁଛାଁ ହୋଇଗଲା— "ଝଡ଼ର ସନ୍ତାନ" ।

ତା'ର ସମଗ୍ର ଜୀବନ ନିୟୋଜିତ ହେଲା ଏହି ବହି ରଚନାରେ । ଧୀରେ ଧୀରେ ଧାଡ଼ି ପରେ ଧାଡ଼ି ପୃଷ୍ଠାଟିଏମାନ ସୃଷ୍ଟି ହେବାକୁ ଲାଗିଲା । ନିଜର ପରିପାର୍ଶ୍ୱକୁ ସଂପୂର୍ଣ୍ଣଭାବେ ଭୁଲିଯାଇ, କଳ୍ପନାର ଦୁନିଆରେ ସଂପୂର୍ଣ୍ଣଭାବେ ହଜିଯାଇ ସେ ଲେଖିଚାଲିଲା । ଜୀବନରେ ପ୍ରଥମ ଥର ପାଇଁ ଅନୁଭବ କଲା ସେ ସୃଷ୍ଟିର ବେଦନା । କଳାକାର ଯେତେବେଳେ ନିଜେ ମନେପକାଏ ତା'ର ଜୀବନର ଅବିସ୍ମରଣୀୟ ଘଟଣାକୁ ଟିକିନିଖି କରି ଓ ତାକୁ ପ୍ରାଣହୀନ ନିଷ୍ଠୁର କାଗଜ ଉପରେ ପ୍ରକାଶିତ କରେ, ସେତେବେଳେ କି ଗଭୀର ମର୍ମବେଦନା ସେ ପାଏ ।

ନିଜେ ଯାହା ଲେଖେ, ସବୁ ମନେରଖେ ସେ, ପ୍ରତିଟି ଧାଡ଼ି, ପ୍ରତିଟି ଅକ୍ଷର । ସାଧାରଣ କୌଣସି ବାଧା ପାଇଲେ ବି ତା'ର ଚିନ୍ତାର ଖିଅ ଛିଣ୍ଡିଯାଏ ଓ କାମ ତା'ର ପଛେଇ ଯାଏ ।

ବେଳେବେଳେ ପୂରାପୃଷ୍ଠା ଏପରିକି ଗୋଟାଏ ଗୋଟାଏ ଅଧ୍ୟାୟ ସେ ମନକୁ ମନ ଆବୃତ୍ତି କରିଯାଏ । ତା' ମା' ଆଶଙ୍କା କରନ୍ତି ସେ ପାଗଳ ହୋଇଯାଇ ପ୍ରଳାପ କରୁଛି ବୋଲି । କାମ କଲାବେଳେ ସାହସ କରନ୍ତି ନାହିଁ ତା' ସହିତ କୌଣସି ପ୍ରକାର କଥାବାର୍ତ୍ତା କରିବାକୁ । ମାତ୍ର, ଚଟାଣରେ ପଡ଼ିଯାଇଥିବା ପୃଷ୍ଠାଗୁଡ଼ିକୁ ଗୋଟାଇ ଧରିଲାବେଳେ କହିଁଲେଇ କହନ୍ତି :

"ପାଭ୍‌ଲୁଶା, ତୁ ଆଉ କ'ଣ କର ରେ ? ମୁଁ ଭାବୁଛି, ସବୁବେଳେ ଏମିତି ବସି ଲେଖିଲେ, ତୋ ଦେହ କ'ଣ ଭଲ ହବ ?"

ମା'ର ଆଶଙ୍କାରେ ସେ ମନଭରି ହସିଉଠେ । ବୃଦ୍ଧାଙ୍କୁ ସାନ୍ତ୍ୱନା ଦେଇ କୁହେ ବିଚଳିତ ନହେବା ପାଇଁ । କହେ, ଏପର୍ଯ୍ୟନ୍ତ ସେ ପାଗଳ ହୋଇଯାଇ ନାହିଁ ।

ବହିଟିର ତିନୋଟି ପରିଚ୍ଛେଦ ଶେଷ ହେଲାଣି । ପାଭେଲ୍ ସେତକ ଅଂଶ ଓଡେଶାକୁ କୋଟୋଭ୍‌ସି ବାହିନୀର ତା'ର ପୁରୁଣା କମ୍ରେଡ୍‌ମାନଙ୍କ ପାଖକୁ ପଠାଇଲା, ସେମାନଙ୍କ ମତାମତ ଜାଣିବା ପାଇଁ । ଅବିଳମ୍ବେ ତା' ବହିର ପ୍ରଶଂସା କରି ଏକ ପତ୍ର ମିଳିଲା ତାକୁ । ମାତ୍ର ଫେରନ୍ତା ଡାକରେ ଆସିଲାବେଳକୁ ପାଣ୍ଡୁଲିପିଟି ବାଟରେ କେଉଁଠି ହଜିଗଲା । ଛଅମାସର ସମସ୍ତ ପରିଶ୍ରମ ପଣ୍ଡ ହୋଇଗଲା । ତା' ପାଇଁ ଏହା ଏକ ଦାରୁଣ ଆଘାତ । ତା'ର ଏକମାତ୍ର କପି ପଠାଇଥିବାରୁ ଗଭୀରଭାବରେ ଦୁଃଖିତ ହେଲା ସେ । ଲେଦେନୋଭ୍ ଏ ଘଟଣା ଶୁଣି ତାକୁ ଅତି କଠୋରଭାବରେ ଗାଳିଗୁଲଜ ମଧ୍ୟ ଦେଲା :

"ତୁ ଏତେ ଦାୟିତ୍ୱହୀନ ହେଲୁ କିପରି ? ଯା' ହେବାର ହେଲାଣି, ଦୁଧ ଛିଣ୍ଡିଗଲା ପରେ ଆଉ ମନଦୁଃଖ କରି ଲାଭ କ'ଣ ? ଆଉ ଥରେ ପୁଣି ଆରମ୍ଭ କର ।"

"ମାତ୍ର ମୋର ଛଅଟି ମାସର ଶ୍ରମଫଳ ହଜିଗଲା । ପ୍ରତିଦିନ ଆଠଘଣ୍ଟାର ହାଡ଼ଭଙ୍ଗା ଖଟଣିର ଫଳ ! ଏ ବଦ୍‌ମାସ ପରାଙ୍ଗପୁଷ୍ଟଗୁଡ଼ାକ ମରନ୍ତୁ ।"

ବନ୍ଧୁକୁ ଯଥାସମ୍ଭବ ସାନ୍ତ୍ୱନା ଦେଲା ଲେଦେନୋଭ୍ ।

ଆହୁରି ଥରେ ଆରମ୍ଭ କରିବା ବ୍ୟତୀତ ଗତ୍ୟନ୍ତର ନଥିଲା । କାଗଜପତ୍ର ଯୋଗାଇଦେଇ ଲେଖା କାଗଜଗୁଡ଼ିକ ଟାଇପ୍ କରାଇ ଦେବାରେ ସାହାଯ୍ୟ କଲା ସେ । ଛଅ ସପ୍ତାହ ଭିତରେ ପ୍ରଥମ ପରିଚ୍ଛେଦଟି ପୁନର୍ଲିଖିତ ହୋଇଗଲା ।

କୋର୍ଚ୍ଚାଗିନ୍ ପରିବାର ଯେଉଁ ଫ୍ଲାଟ୍ ଘରେ ରହୁଥିଲେ, ତା'ର ଆରପଟ ଫ୍ଲାଟ୍ ଘରେ ଆଲେକ୍‌ସେୟେଭ୍ ବୋଲି ଗୋଟିଏ ପରିବାର ମଧ୍ୟ ରହୁଥିଲେ । ତାଙ୍କର ବଡ଼ ପୁଅ ଆଲେକ୍‌ଜାନ୍ଦର ଏକ ଜିଲା କମ୍‌ସୋମୋଲ୍‌ର ସଂପାଦକ ଥିଲା । ତା' ସାନ ଭଉଣୀ, ଅଠର ବର୍ଷର ବେଶ୍ ମେଳାପୀ ଝିଅ ଗାଲ୍ୟା, କାରିଗରୀ ବିଦ୍ୟା ସ୍କୁଲରୁ ପାଶ୍ କରିଥିଲା । ପାଭେଲ୍ ମା'କୁ କହିଲା, ଗାଲ୍ୟାକୁ ପଚାରିବାକୁ, ଯଦି ସେ 'ସେକ୍ରେଟାରୀ' ଭଳି ତା' କାମରେ ସାହାଯ୍ୟ କରିବାକୁ ରାଜିହୁଏ । ଗାଲ୍ୟା ଖୁସିରେ ରାଜିହେଲା । ଦିନେ ସେ ମନଖୁସିରେ ହସିହସି ପଶିଆସିଲା ଓ ପାଭେଲ୍ ଗୋଟିଏ ଉପନ୍ୟାସ ଲେଖୁଛି ଶୁଣି ଭାରି ଖୁସି ହୋଇଗଲା ।

"ଆପଣଙ୍କୁ ସାହାଯ୍ୟ କରିପାରିଲେ ମୁଁ ଭାରି ଖୁସି ହେବି, କମ୍ରେଡ୍ କୋର୍ଚ୍ଚାଗିନ୍", କହିଲା ସେ । "ବାପାଙ୍କ ପାଇଁ ବିଭିନ୍ନ ସ୍ଥାନରେ ସ୍ୱାସ୍ଥ୍ୟରକ୍ଷା ପାଇଁ ସର୍କୁଲର୍ ଲେଖିବା ଅପେକ୍ଷା ଏହା ଅନେକ ଆମୋଦଦାୟକ ।"

ସେହି ଦିନଠାରୁ ପାଭେଲ୍‌ର କାମ ଦୁଇଗୁଣ ବେଗରେ ବଢ଼ିଗ୍ଲଲିଲା । ମାସକ ଭିତରେ ଏତେ ଲେଖି ହୋଇଗଲା ଯେ, ପାଭେଲ୍ ନିଜେ ନିଜେ ସତରେ ଆଶ୍ଚର୍ଯ୍ୟାନ୍ୱିତ ହେଲା ।

ଗାଲ୍ୟାର ସଜୀବ ସହଯୋଗ ଓ ସମବେଦନା ତା'ପ୍ରତି ଅତ୍ୟନ୍ତ ସହାୟକ ହେଲା । ତା'ର ପେନ୍‌ସିଲ ଖସ୍‌ଖସ୍ ହୋଇ କାଗଜ ଉପରେ ଗଡ଼ିଗଲେ ଓ ଯେତେବେଳେ ତାକୁ କୌଣସି ଅଂଶ ବେଶୀ ଭଲଲାଗେ, ସେ ବାରମ୍ବାର ସେ ଅଂଶଟିକୁ ପଢ଼େ ଓ ପାଭେଲ୍‌ର ସଫଳତାରେ ବିହ୍ୱଳିତ ହୁଏ । ଘରଟି ଭିତରେ ତା'କାମରେ ବିଶ୍ୱାସ କରୁଥିବା ଏକମାତ୍ର ଲୋକ ସେ । ଅନ୍ୟମାନେ ବିଗ୍ରୁଥିଲେ ଏଥିରେ କିଛି ଲାଭ ହେବ ନାହିଁ ଓ ପାଭେଲ୍ ନିଜର ଅବସର ସମୟତକ ଏମିତି ବିତାଇବାକୁ ଗ୍ରହୁଁଛି ।

କାମଦାମ ସଂକ୍ରାନ୍ତ ବୁଲାବୁଲି ସାରି ଲେଦେନୋଭ୍ ମସ୍କୋକୁ ଆସି, ତା'ର ଲେଖାର ପ୍ରଥମ କେଇ ପରିଚ୍ଛେଦ ପଢ଼ିସାରି କହିଲା, "ଚଳାଇ ଯା', ବନ୍ଧୁ! ମୋର ବିଶ୍ୱାସ, ତୋର ବିଜୟ ସୁନିଶ୍ଚିତ! ଭବିଷ୍ୟତରେ ଅପାର ଆନନ୍ଦ ଗଚ୍ଛିତ ଅଛି ତୋ' ପାଇଁ । କର୍ମୀଦଳ ମଧ୍ୟକୁ ଫେରିବାର ତୋର ସ୍ୱପ୍ନ ଶୀଘ୍ର ଫଳବତୀ ହେବ ବୋଲି ମୋର ଆଶା । ନିରାଶ ହୁଅନାଁ ବନ୍ଧୁ!"

ପାଭେଲ୍‌କୁ ପୂର୍ଣ୍ଣ ଉତ୍ସାହରେ ଲାଗିପଡ଼ିବା ଦେଖି ମନ ଆନନ୍ଦରେ ଫେରିଗଲେ ବୃଦ୍ଧ ।

ଧାରାବାହିକ ଭାବରେ ଆସେ ଗାଲ୍ୟା । ଅବିସ୍ମରଣୀୟ ଅତୀତର ଦୃଶ୍ୟ ଲିପିବଦ୍ଧ କରିବା ପାଇଁ ତା'ର ପେନ୍‌ସିଲ ଦ୍ରୁତ ଅବିଚଳିତ ଭାବରେ କାଗଜ ଉପରେ ଛୁଟି ଗ୍ଲେ । ମଝିରେ ମଝିରେ ଅତୀତର ଭାବନାର ବନ୍ୟାରେ ଭାସିଯାଇ ପାଭେଲ୍ ଚିନ୍ତାରେ ବୁଡ଼ିଗଲାବେଳେ ସେ ଲକ୍ଷ୍ୟ କରେ, ତା'ର ଥରଥର ଆଖିପତାକୁ, ତା'ର ଆଖି ଉପରେ ପ୍ରତିଫଳିତ ଦ୍ରୁତ ଚଳମାନ ଚିନ୍ତାର ପ୍ରତିବିମ୍ବକୁ । ତା'ର ଆଖିର ସ୍ୱଚ୍ଛ ଅମ୍ଲାନ ତାରା ଦୁଇଟି ଏତେ ପ୍ରାଣମୟ ଯେ, ସେ ଦୁଇଟିକୁ ଦେଖିଲେ ତା'ର ଆଖି ଦୁଇଟି ଦୃଷ୍ଟିହୀନ ବୋଲି ବିଶ୍ୱାସ ହୁଏ ନାହିଁ ।

ଦିନକର କାମ ସାରିଲା ପରେ, ଯାହା ଲେଖିଥାଏ ସେତକ ବଡ଼ ପାଟିରେ ପଢ଼େ ସେ ଓ ପାଭେଲ୍ ନିବିଷ୍ଟ ମନରେ ଶୁଣେ ତାକୁ । ତା'ର ଭ୍ରୂ କୁଞ୍ଚିତ ହୋଇଯାଏ ଶୁଣୁଣୁଣୁ ।

"ଆପଣ ଏମିତି ଅନାଉଛନ୍ତି କାହିଁକି କମ୍ରେଡ୍ କୋର୍ଗିନ୍ ? ଏଇଟା କ'ଣ ଭଲ ଭାବେ ଲେଖା ହୋଇଛି ନା କ'ଣ ?"

"ନାହିଁ, ଗାଲ୍ୟା । ଏଇଟା ଖରାପ ହୋଇଛି ।"

ଯେଉଁ ପୃଷ୍ଠାଗୁଡ଼ାକ ତାକୁ ପସନ୍ଦ ଲାଗେନାଁ, ସେଗୁଡ଼ିକ ପୁଣି ଥରେ ନିଜେ ଲେଖେ ସେ । ସରୁ କାଗଜପଟା ଖଣ୍ଡକରେ ବାଧା ପାଇ ବେଳେବେଳେ ଧୈର୍ଯ୍ୟ ହରାଏ ସେ । ଦୂରକୁ ଫୋପାଡ଼ି ଦିଏ ସେ ଖଣ୍ଡକ । ତା'ପରେ, ଜୀବନ ତା'ଠାରୁ ଦୃଷ୍ଟି ଛିନ୍ନ କରିନେଇଛି ବୋଲି ଭୟଙ୍କର କ୍ରୋଧରେ ଉତ୍ତେଜିତ ହୋଇ, ପେନ୍‌ସିଲ ଭାଙ୍ଗିଦିଏ । ରକ୍ତ ଝରିଲା ପର୍ଯ୍ୟନ୍ତ ରାଗିଯାଇ ଓଠକୁ ନିଜର କାମୁଡ଼ି ରକ୍ତ ବାହାର କରି ପକାଏ ।

ଲେଖା କାମ ଯେତେ ଶେଷ ହୋଇ ଆସୁଛି ସେତେ ଅବାଧ ଉଚ୍ଛ୍ୱାସସବୁ ତା'ର ସଦାଜାଗ୍ରତ ମନର ପାଚିରୀକୁ ଡେଇଁ ଅବରୁଦ୍ଧ ଆବେଗସବୁକୁ ଅଧିକରୁ ଅଧିକ

ଆତ୍ମପ୍ରକାଶ କରୁଛନ୍ତି । ସେସବୁ ହେଉଛି ଦୁଃଖ, ବେଦନା ଆଦି ସାଧାରଣ ମାନବୀୟ ଭାବାବେଗ, କୋମଳ ଓ ମଧୁର ଅନୁଭୂତିସବୁ, ଯେଉଁସବୁକୁ ପାଭେଲ୍ ଛଡ଼ା ଅନ୍ୟ ସମସ୍ତଙ୍କର ପ୍ରକାଶ କରିବାର ଅଧିକାର ଅଛି । ମାତ୍ର ସେ ଜାଣିଥାଏ ଯେ, ଏଥିରୁ କୌଣସି ଗୋଟିକୁ ପ୍ରଶ୍ରୟ ଦେବା ଅର୍ଥ ତା'ର ପରିଣତି ଅତି କରୁଣ, ଦୁଃଖପ୍ରଦ ହେବ ।

ଅନେକ ରାତିରେ ତାୟା କାରଖାନାରୁ ଘରକୁ ଫେରି ମାରିୟା ଯାକୋଭ୍‌ଲେଭ୍‌ନାଙ୍କ ସହିତ ଆସ୍ତେ ଆସ୍ତେ ଦିପଦ କ'ଣ କଥାବାର୍ତ୍ତା କରି ଶୋଇପଡ଼ିଲା ।

* * *

ଶେଷରେ ସର୍ବଶେଷ ପରିଚ୍ଛେଦଟି ଲେଖା ସରିଲା । ତା'ପର କେଇଦିନ ପର୍ଯ୍ୟନ୍ତ ଗାଲ୍ୟା ବଡ଼ପାଟିରେ ପୂରା ଉପନ୍ୟାସଟିର ପାଣ୍ଡୁଲିପି ପାଭେଲ୍‌କୁ ପଢ଼ି ଶୁଣାଇଲା ।

କାଲି ପାଣ୍ଡୁଲିପିଟିକୁ ଲେନିନ୍‌ଗ୍ରାଦ୍ ପଠାହେବ ଆଞ୍ଚଳିକ ପାର୍ଟି କମିଟିର ସାଂସ୍କୃତିକ ବିଭାଗକୁ । ସେଠାରେ ବହିଟି ଯଦି ଅନୁମୋଦିତ ହୋଇଯାଏ, ତେବେ ସେଟାକୁ ପ୍ରକାଶଭବନକୁ ପଠାଇ ଦିଆଯିବ, ତା'ପରେ ...

ଏହି ଚିନ୍ତା କଲାମାତ୍ରେ ତା'ର ହୃତ୍‌ସ୍ପନ୍ଦନ ବୃଦ୍ଧି ପାଇବାକୁ ଲାଗିଗଲା । ସବୁ ଯଦି ଠିକ୍ ଥାଏ, ତେବେ ତା'ର ନବଜୀବନ ଆରମ୍ଭ ହେବ! ଅନେକ ବର୍ଷର ବିଶ୍ରାମବିହୀନ, ଅଣନିଶ୍ୱାସୀ ଶ୍ରମ ଦ୍ୱାରା ଯେଉଁ ଜୀବନକୁ ସେ ଲାଭ କରିଛି ।

ଏହି ବହିଟିର ଭାଗ୍ୟ ପାଭେଲ୍‌ର ଭାଗ୍ୟ ମଧ୍ୟ ନିର୍ଦ୍ଧାରଣ କରିବ । ପାଣ୍ଡୁଲିପି ଯଦି ମନୋନୀତ ନହୁଏ ତେବେ ତା'ର ଜୀବନର ପରିସମାପ୍ତି ଘଟିବ । ଅନ୍ୟପକ୍ଷରେ ଯଦି ସେଥିରେ ଆଂଶିକ ତ୍ରୁଟି ପରିଲକ୍ଷିତ ହୁଏ ଓ ପରିବର୍ତ୍ତନ ଲୋଡ଼ା ହୁଏ ତେବେ ସେ ପୁଣି ନୂଆ କରି କାମ ଆରମ୍ଭ କରିବ ।

ମା' ତା'ର ପାଣ୍ଡୁଲିପି ପାର୍ଶଲ୍‌ଟି ଡାକଘରକୁ ନେଲେ । ଦିନ ପରେ ଦିନ ଉତ୍କଣ୍ଠିତ ପ୍ରତୀକ୍ଷାର ଦିନ ଆରମ୍ଭ ହେଲା । ଜୀବନରେ କେବେହେଲେ ପାଭେଲ୍ ଏଭଳି ଉତ୍କଣ୍ଠିତ ହୋଇ ଆବେଗପୂର୍ଣ୍ଣ ଭାବରେ ପ୍ରତୀକ୍ଷା କରି ନଥିଲା । ସକାଳଠାରୁ ସଞ୍ଜ ଡାକ ପର୍ଯ୍ୟନ୍ତ ଅପେକ୍ଷା କରିଥାଏ ସେ, ମାତ୍ର ଲେନିନ୍‌ଗ୍ରାଦ୍‌ରୁ କୌଣସି ସମ୍ବାଦ ଆସିଲା ନାହିଁ ।

ପ୍ରକାଶକମାନଙ୍କର କ୍ରମାଗତ ଧାରାବାହିକ ନୀରବତା ଅଶୁଭପ୍ରଦ ଭଳି ଲାଗିଲା । ଦିନକୁ ଦିନ ଉତ୍କଣ୍ଠା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସର୍ବନାଶର ପୂର୍ବାନୁଭୂତି ମଧ୍ୟ ବଢ଼ିବାକୁ ଲାଗିଲା । ପାଭେଲ୍ ନିଜେ ଚିନ୍ତା କଲା ଯେ, ବହିଟି ଯଦି ପୂରାପୂରି ଅମନୋନୀତ ହୁଏ, ତେବେ ସେ ନିଃଶେଷ ହୋଇଯିବ, ସେ ସହ୍ୟ କରିପାରିବ ନାହିଁ ସେ ଦୁଃଖ । ବଞ୍ଚିବାର ଆଉ କୌଣସି ଅର୍ଥ ରହିବ ନାହିଁ ।

ଏଭଳି ମୁହୂର୍ତ୍ତରେ ତା'ର ମନେ ପଡ଼େ, ସମୁଦ୍ର ଧାରରେ ପାହାଡ଼ ଉପରର ସେଇ ପାର୍କଟିର କଥା ଓ ସେ ମନକୁ ମନ ସେହି ଗୋଟିଏ ପ୍ରଶ୍ନ ବାରମ୍ବାର ପଗ୍ଚରେ :

"ଏ ଲୌହ ଶୃଙ୍ଖଳ ଛିଡ଼ାଇ କର୍ମୀଦଳ ମଧ୍ୟକୁ ଫେରିଯିବା ପାଇଁ, ଜୀବନକୁ କାମରେ ଲଗେଇବା ପାଇଁ ଯେତେ ଯାହା ସମ୍ଭବ, ସବୁ କ'ଣ କରିଛୁ ତୁ?"

ଏବଂ ତାକୁ ଉତ୍ତର ଦେବାକୁ ପଡ଼େ ନିଜକୁ ନିଜେ :

"ହଁ, ମୋର ବିଶ୍ୱାସ, ଯେତେ ଯାହା ସମ୍ଭବ ସବୁ କରିଛି ମୁଁ ।"

ପରିଶେଷରେ, ପ୍ରତୀକ୍ଷାର ଯନ୍ତ୍ରଣା ଯେତେବେଳେ ବଢ଼ି ବଢ଼ି କ୍ରମଶଃ ଅସହ୍ୟ ହୋଇ ଆସୁଥିଲା, ମା' ତା'ର ଦିନେ ହଠାତ୍ ଦୌଡ଼ିଆସିଲେ । ପୁଅ ଅପେକ୍ଷା ମା ବି କମ୍ ଆଶଙ୍କାରେ ଭୋଗି ନାହାନ୍ତି । ଘରଭିତରକୁ ପଶିଆସିଲେ ସେ ଚିତ୍କାର କରିକରି :

"ଲେନିନ୍‌ଗ୍ରାଦ୍‌ରୁ ଖବର ଆସିଛି !!!"

ଆଞ୍ଚଳିକ କମିଟିରୁ ଗୋଟାଏ ଟେଲିଗ୍ରାମ୍—ଛୋଟ ସମ୍ବାଦଟିଏ, "ଉପନ୍ୟାସ ହାର୍ଦ୍ଦିକଭାବେ ମନୋନୀତ ... ପ୍ରକାଶକଙ୍କୁ ଦିଆହେଲା ... ଆପଣଙ୍କ ବିଜୟ ପାଇଁ ଅଭିନନ୍ଦନ ।"

ତା'ର ହୃଦୟର ସ୍ପନ୍ଦନ ବଢ଼ିବାକୁ ଲାଗିଲା । ତା'ହେଲେ ତା'ର ଅଭିଳଷିତ ସ୍ୱପ୍ନ ସାର୍ଥକ ହୋଇଛି । ଲୌହ ଶୃଙ୍ଖଳ ଆଜି ଦୀର୍ଣ୍ଣ ବିଦୀର୍ଣ୍ଣ ହୋଇଛି, ଏକ ନୂତନ ଅସ୍ତ୍ରରେ ସଜ୍ଜିତ ହୋଇ ସେ ସଂଗ୍ରାମୀ କର୍ମୀଦଳ ଆଉ ଜୀବନ ମଧ୍ୟକୁ ଫେରି ଆସିଛି ।

## ପାଠକମାନଙ୍କ ପ୍ରତି

ଏହି ପୁସ୍ତକର ଅନୁବାଦ ଏବଂ ଅଙ୍ଗସଜ୍ଜା ବିଷୟରେ ଆପଣମାନଙ୍କର ମତାମତ ଜଣାଇଲେ "ରାଦୁଗା" ପ୍ରକାଶନ ବାଧିତ ହେବ । ଅନ୍ୟାନ୍ୟ ପରାମର୍ଶ ମଧ୍ୟ ଜଣାଇବାକୁ ଅନୁରୋଧ ।

ଆମର ଠିକଣା – "ରାଦୁଗା" ପ୍ରକାଶନ , ୧୭ , ଜୁବଭ୍‌ସ୍କି ବୁଲ୍‌ଭାର , ମସ୍କୋ , ସୋଭିଏତ୍ ୟୁନିଅନ୍ ।

ଗତ ପାଞ୍ଚ ବର୍ଷ ମଧ୍ୟରେ
"ରାଦୁଗା" ପ୍ରକାଶନ ନିମ୍ନଲିଖିତ
ପୁସ୍ତକଗୁଡ଼ିକୁ ପ୍ରକାଶ କରିଛନ୍ତି :

୧) ଏମ୍. ଇଲିନ୍, ଓ୍ୱାଇ. ସେଗାଲ୍. ମଣିଷ କିପରି ମହାବଳୀ ହେଲା
୨) ଆଲ୍‌ବେର୍ଟ ଲିଖାନଭ୍. ଗୋଲକଧନ୍ଦା
୩) ମାକ୍‌ସିମ୍ ଗୋର୍କି. ମା
୪) ଆନ୍ତନ୍ ଚେଖଭ୍. କ୍ଷୁଦ୍ର ଉପନ୍ୟାସ ଓ ଗଳ୍ପମାଳା (୧୮୮୪-୧୯୦୩)
୫) ବାଙ୍କ-ଉପସାଗର (ରୁଷୀୟ ଲେଖକଙ୍କର ଗଳ୍ପ)
୬) ଚିଙ୍ଗିଜ୍ ଆଇତ୍‌ମାତଭ୍. ପାହାଡ଼ର ଫୁଲ
୭) ଚିଙ୍ଗିଜ୍ ଆଇତ୍‌ମାତଭ୍. ପ୍ରଥମ ଶିକ୍ଷକ
୮) ବୋରିସ୍ ଲଭ୍ରେନିଓଭ୍. ଶ୍ରେଷ୍ଠ ରଚନାବଳୀ
୯) ବୋରିସ୍ ପୋଲିଭୋଇ. ଅପରାଜିତ
୧୦) ଆଲେକ୍‌ଜାଣ୍ଡର ଗ୍ରୀନ୍. ଲାଲ ଅଞ୍ଚଳ

ଗତ ପାଞ୍ଚ ବର୍ଷ ମଧ୍ୟରେ
"ରାଦୁଗା" ପ୍ରକାଶନ ପିଲମାନଙ୍କ ପାଇଁ
ନିମ୍ନଲିଖିତ ପୁସ୍ତକଗୁଡ଼ିକୁ ପ୍ରକାଶ କରିଛନ୍ତି :

୧) ଭିତାଲି ବିୟାଙ୍କି . ପ୍ରଥମ ଶିକାର
୨) ୟା. ଦ୍ରୁଗଲେନ୍‌ସି . ଘଣ୍ଟା ଓ ଘଡ଼ି (ଛବି ବହି)
୩) ଆଲେକ୍‌ସେଇ କ୍ରାସ୍ନୋଭ୍ . ଝିଆଙ୍କରର ଇତିହାସ
୪) ଚୁଟିଆ ମୂଷାର ପାଣିଅଣା
୫) ତାତ୍ୟାନା ମାକାରୋଭା . ସାହସୀ ପିମ୍ପୁଡ଼ି
୬) କୋନ୍‌ଷ୍ଟାନ୍ତିନ୍ ପାଉସ୍ତୋଭ୍‌ସ୍କି. ଉପକାରୀ ଘରଚଟିଆ
୭) ଭାସିଲି ସୁଖୋମ୍ଲିନ୍‌ସ୍କି . ଗାଆଣ ପର
୮) ୟେ . ଗ୍ରୁଶିନ୍ . କିଏ କେମିତି ରହେ
୯) କର୍ନେଇ ଚୁକୋଭ୍‌ସ୍କି . ଘେରି ଯାଇଥିବା ସୂର୍ଯ୍ୟ
୧୦) କାର୍ଲ ଆରୋନ୍ . ଆକାଶ ପଥେ ମଣିଷ
୧୧) ଶ୍ଵେତସ୍ଲାଭ୍ ସାଖାର୍‌ନୋଭ . ସମୁଦ୍ରରେ ଜାହାଜର ଜଳଯାତ୍ରା

ଏହି ଉପନ୍ୟାସର ନାୟକନାୟିକାମାନେ ହେଉଛନ୍ତି ବାସ୍ତବ ଜୀବନର ଚରିତ୍ରମାନଙ୍କର ପ୍ରତିରୂପ ।

ପୁସ୍ତକଟିର ପ୍ରଧାନ ନାୟକ—ପାଭେଲ୍ କୋର୍ଚ୍ଚାଗିନ୍ ବିଶ୍ୱର ବିଭିନ୍ନ ଦେଶର ପାଠକମାନଙ୍କର ଅତି ପ୍ରିୟ । ଲେଖକ ନିଜର ଜୀବନ ଧାରାକୁ ଭିତ୍ତିକରି ଏହି ଚରିତ୍ରଟିକୁ ଚିତ୍ରଣ କରିଛନ୍ତି ।

ନିକୋଲାଇ ଅସ୍ତ୍ରୋଭ୍‌ସ୍କି ତରୁଣ ବୟସରେ (୧୯୦୪-୧୯୩୬) ମୃତ୍ୟୁବରଣ କରିଥିଲେ । ସେତେବେଳେ ତାଙ୍କୁ ମାତ୍ର ବତିଶ ବର୍ଷ ହୋଇଥିଲା । ଜୀବନର ଶେଷ ବାର ବର୍ଷ କାଳ ସେ ଭୟଙ୍କର ଭାବେ ରୋଗରେ ପୀଡ଼ିତ ଥିଲେ : ଯୁଦ୍ଧ ସମୟରେ ରଣାଙ୍ଗନରେ ଆହତ ହୋଇ ଅନ୍ଧ ଓ ପଙ୍ଗୁ ଅବସ୍ଥାରେ ବିଛଣାରେ ପଡ଼ି ରହିବାକୁ ତାଙ୍କୁ ପଡ଼ିଥିଲା । ଏବଂ ସେହି ସମୟରେ ସେ ତାଙ୍କର ଆତ୍ମଜୀବନୀସ୍ୱ, ବୀରତ୍ୱପୂର୍ଣ୍ଣ ଏହି ପୁସ୍ତକଟିକୁ ଲେଖିଥିଲେ । ଯୌବନ, ପ୍ରେମ, ସଂଗ୍ରାମକୁ ନେଇ ପୁସ୍ତକଟି ରଚିତ । ତାଙ୍କର ନିଜସ୍ୱ ଜୀବନ ବନ୍ଧୁବାନ୍ଧବ ଏବଂ ସୋଭିଏତ୍ ୟୁନିଅନ୍‌ର ପ୍ରଥମ ତରୁଣ କମ୍ୟୁନିଷ୍ଟ ଲିଗ୍‌ର ସଦସ୍ୟମାନଙ୍କ ଚରିତ୍ର ଏଥିରେ ପ୍ରତିଫଳିତ ହୋଇଛି ।



ନିକୋଲାଇ ଅସ୍ତ୍ରୋଭ୍‌ସ୍କି ତାଙ୍କ ରଚନାରେ ସୋଭିଏତ୍ ଶାସନର ପ୍ରଥମ ବର୍ଷଗୁଡ଼ିକର ସୋଭିଏତ୍ ତରୁଣତରୁଣୀମାନଙ୍କର ଜୀବନ ଧାରାକୁ ବର୍ଣ୍ଣନା କରିଛନ୍ତି । ଏହି ପୁସ୍ତକଟିର ପାଣ୍ଡୁଲିପିର ପ୍ରଥମ ପାଠକ ଥିଲେ ମାକ୍‌ସିମ୍ ଗୋର୍କି । ସର୍ବହରାର ମହାନ୍ ଲେଖକ, ବିଶ୍ୱବିଖ୍ୟାତ "ମା" ଉପନ୍ୟାସର ସ୍ରଷ୍ଟା ଅସ୍ତ୍ରୋଭ୍‌ସ୍କିଙ୍କୁ ଆନ୍ତରିକ ଅଭିନନ୍ଦନ ଜଣାଇଥିଲେ ।

"ମଣିଷର ଜୀବନ ବହୁ ମୂଲ୍ୟବାନ । ଜୀବନ ଥରେ ଆସେ । ତେଣୁ ତାକୁ ଏପରିଭାବରେ ବଞ୍ଚିବାକୁ ହେବ, ଯେପରି ସେ ମହାର୍ଘ ଜୀବନ ବ୍ୟର୍ଥ ନ ହୋଇଯାଏ, ଯେପରି ଅତୀତର ହତାଶା, ବ୍ୟର୍ଥତାର ପୁଞ୍ଜିଭୂତ ଗ୍ଲାନି ତାକୁ ଅବସାଦଗ୍ରସ୍ତ ନ କରେ ! ତାକୁ ଏଭଳି ବଞ୍ଚିବା ପାଇଁ ପଡ଼ିବ, ଯେପରି ମୃତ୍ୟୁ ସମୟରେ ସେ ହସିହସି କହିପାରିବ, ମୋର ସମଗ୍ର ଜୀବନ, ସମସ୍ତ ଶକ୍ତି, ମୁଁ ବିଶ୍ୱର ସର୍ବଶ୍ରେଷ୍ଠ କାମ ପାଇଁ ନିୟୋଜିତ କରିଛି—ମାନବ ସମାଜର ମୁକ୍ତି ପାଇଁ ବିନିଯୋଗ କରିଛି !"

ନିକୋଲାଇ ଅସ୍ତ୍ରୋଭ୍‌ସ୍କି
"ଇସ୍‌ପାତ"

ISBN 5-05-001351-8